DESAPRANA MADHUSUDAN by Pandit S. N. Das

Published by Grantha Mandir, Cuttack-2,

First Edition—February, 1971.

Second Edition—July, 1976.

Reprinted—December, 1988.

ପ୍ରକାଶକ : ଶ୍ରୀ ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର

ଗ୍ରନ୍ଥପ୍ରକାଶିନୀ, ସୁତାହାଟ, କଟକ

ପ୍ରଥମ ମୁଦ୍ରଣ—ଫେବୃୟାରୀ, ୧୯୭୧

ଦ୍ୱିତୀୟ ମୁଦ୍ରଣ—ଜୁଲାଇ, ୧୯୭୬

ପୁନର୍ମୁଦ୍ରଣ—ଡିସେମ୍ବର, ୧୯୮୮



# ନିବେଦନ

'ଦେଶପ୍ରାଣ ମଧୁସୂଦନ' ଗ୍ରନ୍ଥ ଲେଖିବାରେ ପ୍ରାୟ ଦୁଇବର୍ଷକାଳ ପୂର୍ଣ୍ଣ ଭାବରେ ଲାଗିଛି । ମଧୁବାବୁଙ୍କ ଜୀବନୀ ଓ କାର୍ଯ୍ୟକଳାପ ଓଡ଼ିଶାର ପ୍ରାୟ ଅର୍ଦ୍ଧ ଶତାବ୍ଦୀର ଇତିହାସ । ସେ ନିଜେ ନିଜ ଜୀବନୀ ସମ୍ବନ୍ଧରେ ବିଶେଷ କିଛି ଲେଖି ନାହାନ୍ତି । ସେ 'ଆତ୍ମଜୀବନୀ' ଇଂରେଜୀରେ ଲେଖୁଥିଲେ; କିନ୍ତୁ ଅଳ୍ପ କେତେ ପୃଷ୍ଠା ଲେଖା ହେବା ପରେ ତାହା ବନ୍ଦ ହୋଇ ଯାଇଥିଲା । ମଧୁବାବୁ କଲିକତାରୁ ଫେରିଆସି ଖ୍ରୀ : ୧୮୮୧-୮୨ରେ କଟକରେ ଓକିଲାତି ଆରମ୍ଭ କରିବା ପରେ ତାଙ୍କର ସ୍ୱଦେଶହିତକର କାର୍ଯ୍ୟ ବ୍ୟାପକଭାବେ ଆରମ୍ଭ ହୋଇଥିଲା । ସେତେବେଳକୁ ତାଙ୍କର ବୟସ ୩୩।୩୪ । ସେ ସ୍ୱବ୍ୟବସାୟରେ ରତ ଥିବା ସମୟରେ ମଧ୍ୟ ଦେଶ ପାଇଁ ଚିନ୍ତା କରୁଥିଲେ ଏବଂ କାର୍ଯ୍ୟ କରୁଥିଲେ । ମଧୁବାବୁଙ୍କର ଯାବତୀୟ ବିଶିଷ୍ଟ କାର୍ଯ୍ୟାବଳୀର ବିବରଣ ସାପ୍ତାହିକ "ଉତ୍କଳ ଦୀପିକା"ରେ ପ୍ରକାଶ ପାଉଥିଲା । ତାଙ୍କର ପ୍ରାୟ ପଚିଶ ବର୍ଷର କର୍ମମୟ ଜୀବନର ପ୍ରଧାନ ପ୍ରଧାନ ଘଟଣାବଳୀ "ଉତ୍କଳ ଦୀପିକା"ରେ ପ୍ରକାଶିତ ହୋଇଛି । ଶେଷ ପ୍ରାୟ ପଚିଶ ବର୍ଷର ଘଟଣାବଳୀ "ସମାଜ" ମଧ୍ୟ ପ୍ରକାଶ କରୁଥିଲା । ଏ ଦୁଇଟି ସର୍ବମାନ୍ୟ ଦେଶହିତବ୍ରତୀ ପତ୍ରିକା ମଧୁବାବୁଙ୍କ ବିବିଧ କାର୍ଯ୍ୟକଳାପ ଉପରେ ସମାଲୋଚନା କିମ୍ବା ପ୍ରଶଂସା କରିଥିଲେ ମଧ୍ୟ ତାଙ୍କ ପ୍ରତି ସେମାନଙ୍କର ପ୍ରଗାଢ଼ ଶ୍ରଦ୍ଧା ଥିଲା । ଅତଏବ ମଧୁବାବୁଙ୍କ ସମ୍ବନ୍ଧରେ ଏ ଦୁଇଟି ପତ୍ରିକାର ଲେଖା ଯେ ଅମୂଲ୍ୟ ଏଥିରେ କୌଣସି ସନ୍ଦେହ ନାହିଁ । ଏ ଦୁଇଟି କାଗଜର ପ୍ରାଚୀନ ସଂଖ୍ୟାଗୁଡ଼ିକ ମିଳିବା ମଧ୍ୟ ସେତେ ସହଜ ନୁହେଁ । ଓଡ଼ିଶାର ସୌଭାଗ୍ୟ, ଏ ଦୁଇଟି ପତ୍ରିକା ସହ ଅନ୍ୟ କେତୋଟି ପତ୍ରିକାର ପ୍ରାଚୀନ ଓ ଦୁଷ୍ପ୍ରାପ୍ୟ ସଂଖ୍ୟାଗୁଡ଼ିକ କଟକସ୍ଥ ଶ୍ରୀରାମଚନ୍ଦ୍ର ଭବନର "ଉତ୍କଳ-ଗୌରବ ମଧୁସୂଦନ ପାଠାଗାର"ରେ ସଂରକ୍ଷିତ ହୋଇ ବହୁ ଗବେଷକଙ୍କୁ ସାହାଯ୍ୟ କରୁଛି । "ଉତ୍କଳ ସାହିତ୍ୟ ସମାଜ"ର କର୍ତ୍ତୃପକ୍ଷ ଏ ପ୍ରାଚୀନ ପତ୍ରିକାଗୁଡ଼ିକରୁ ପାଠ ଉଦ୍ଧାର କରିବାରେ ମୋତେ ସାହାଯ୍ୟ କରିଥିବାରୁ ମୁଁ ସାହିତ୍ୟ ସମାଜ କର୍ତ୍ତୃପକ୍ଷଙ୍କ ନିକଟରେ କୃତଜ୍ଞ । ଗ୍ରନ୍ଥାଗାରର ତତ୍ତ୍ୱାବଧାରକ ଆୟୁଷ୍ମାନ୍ ଶ୍ରୀ ବିଜୟଚନ୍ଦ୍ର ମହାନ୍ତି ମୋତେ ନାନାବିଧ ସାହାଯ୍ୟ କରିଥିବାରୁ ତାଙ୍କୁ ମୋର କୃତଜ୍ଞତା ଜଣାଇବା ସଙ୍ଗେ ସଙ୍ଗେ ତାଙ୍କର ଦୀର୍ଘଜୀବନ କାମନା କରୁଛି ।

କଟକର ବିଶିଷ୍ଟ ଆଡ଼ଭୋକେଟ୍ ଓ ଓଡ଼ିଶା ଇତିହାସର ଗବେଷକ ଶ୍ରୀ ବ୍ରଜବନ୍ଧୁ ଦାସ କିଛି କାଳ ମଧୁବାବୁଙ୍କର ଜୁନିୟର ଥିଲେ ଏବଂ ମଧୁବାବୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର

ପ୍ରତ୍ୟେକ କାର୍ଯ୍ୟ ପ୍ରତି ଲକ୍ଷ୍ୟ ରଖୁଥିଲେ । ସେ ଅତି ଆଗ୍ରହର ସହ ମୋତେ ବହୁ ତଥ୍ୟ ଯୋଗାଇଛନ୍ତି । ଏହି ଜୀବନୀ ଲେଖା ହେବା ସମୟରେ ସେ ପ୍ରାୟ ପ୍ରତିଦିନ ମୋ ବସାକୁ ଆସି କାର୍ଯ୍ୟର ଅଗ୍ରଗତି ଲକ୍ଷ୍ୟ କରୁଥିଲେ ଏବଂ ଉପାଦେୟ ପରାମର୍ଶ ମଧ୍ୟ ଦେଉଥିଲେ । ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରିବା ପାଇଁ ମୁଁ ଭାଷା ପାଉନାହିଁ । ତାଙ୍କଠାରେ ମୁଁ ଚିରଋଣୀ ରହିଲି ।

ଓଡ଼ିଶାର ବରିଷ୍ଠ ଗବେଷକ ଭ୍ରାତୃପ୍ରତିମ ଶ୍ରୀ ଗୋପୀନାଥ ଦାଶ, ଏମ୍.ଏ., "ସମାଜର" ବାର୍ତ୍ତାସମ୍ପାଦକ ଓ ସୁସାହିତ୍ୟିକ ଶ୍ରୀ ଉଦୟନାଥ ଷଡ଼ଙ୍ଗୀ, ସହ-ସମ୍ପାଦକ କବି ଶ୍ରୀ ମୁରଲୀଧର ମଲ୍ଲିକ ମୋତେ ସ୍ୱତଃପ୍ରବୃତ୍ତ ହୋଇ ବହୁ ତଥ୍ୟ ଯୋଗାଇ ଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞ ରହିଲି ।

"ସମାଜ" ଅନୁଷ୍ଠାନ ଶ୍ରଦ୍ଧା ସହକାରେ ଏହି ଗ୍ରନ୍ଥରେ ବ୍ୟବହୃତ ବ୍ଲକ୍ ଯୋଗାଇ ମୋତେ ବିଶେଷ ଉତ୍ସାହ ଦାନ କରିଥିବାରୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

"ଗ୍ରନ୍ଥମନ୍ଦିର"ର ମ୍ୟାନେଜର ଶ୍ରୀ ଅଭିରାମ ମହାପାତ୍ର ମୋତେ ଏ ଜୀବନୀ ଲେଖା କାର୍ଯ୍ୟରେ ବହୁ ପ୍ରକାର ସାହାଯ୍ୟ କରିଛନ୍ତି । ମୋର ସ୍ୱାସ୍ଥ୍ୟ ଭଲ ରହୁ ନ ଥିବା ଯୋଗୁଁ ମୁଁ ମୋର ପାଣ୍ଡୁଲିପିକୁ ଦ୍ୱିତୀୟ ଥର ଦେଖିବା ସମ୍ଭବପର ହୋଇନାହିଁ । କଲ୍ୟାଣୀୟ ଅଭିରାମବାବୁ ଏହି ଅଯତ୍ନରକ୍ଷିତ ପାଣ୍ଡୁଲିପିକୁ ନୂତନ ଜୀବନ ଦାନ କରିଛନ୍ତି । ସେ ବହୁସ୍ଥାନରେ ଲେଖାକୁ ମାର୍ଜିତ କରିଛନ୍ତି ଏବଂ ଘଟଣାବଳୀ ଓ ମନ୍ତବ୍ୟକୁ ଯଥାଯୋଗ୍ୟ ରୂପ ଦାନ କରିଛନ୍ତି । ତାଙ୍କୁ ମୁଁ ମୋର ଆଶୀର୍ବାଦ ଜଣାଉଛି ।

"ଗ୍ରନ୍ଥପ୍ରକାଶିନୀ"ର ମ୍ୟାନେଜର ଶ୍ରୀ ଜୟରାମ ମହାପାତ୍ର ଓ କର୍ମଚାରୀମାନେ ପାଣ୍ଡୁଲିପି-ବିଡ଼ାକୁ ସଫା କରିବାରେ ବହୁ ପରିଶ୍ରମ କରି ମୋତେ ବାଧିତ କରିଛନ୍ତି ।

'ଗ୍ରନ୍ଥମନ୍ଦିରର' ମାଲିକ ଶ୍ରୀ ଶ୍ରୀଧର ମହାପାତ୍ର ମୂଳରୁ ଶେଷ ପର୍ଯ୍ୟନ୍ତ ଏହି ଗ୍ରନ୍ଥ ପ୍ରକାଶନରେ ସ୍ନେହପୂର୍ଣ୍ଣ ଦୃଷ୍ଟି ରଖିଥିବାରୁ ମୁଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଅଛି ।

ଶ୍ରୀପଞ୍ଚମୀ, ତା ୩୦ । ୧ । ୧୯୭୧

ସୂର୍ଯ୍ୟନାରାୟଣ ଦାଶ

ଲଣ୍ଡା ଦେଉଳ,
ପୁରୁଣା କଲେଜ ଗଳି
କଟକ-୨

# ସୂଚୀ

୫୧୭, ମୁଁ ଜଣେ ଓଡ଼ିଆ-୫୧୮, ଭଗବାନ ଭରସା-୫୧୯, ମୁଁ ବାକ୍‌ପଟୁ କିନ୍ତୁ ଚିନ୍ତାଶୀଳ ଲେଖକ ନୁହେଁ-୫୨୦, ନିଜ ଜୀବନର ଫଳାଫଳ-୫୨୦, ଆନ୍ତରିକତା ଓ ସମବେଦନା ପ୍ରକାଶ-୫୨୦, ଉଦାରତା, ହୃଦୟବତ୍ତା, ଅକାତର ଦାନ-୫୨୧, ଭିକାରି, ଅନ୍ଧ ଓ ପାଗଳଙ୍କ ପ୍ରତି ଦୟା-୫୨୫, ଗରିବଙ୍କୁ ସାହାଯ୍ୟ-୫୨୫, ଗୁରୁଜନଙ୍କ ପ୍ରତି ସ୍ନେହ-୫୨୬, ଶିଶୁ ପ୍ରତି ସ୍ନେହ-୫୨୬, ପ୍ରତି ରବିବାର ଦିନ ଦାନ-୫୨୭, ଅନ୍ଧବିଶ୍ୱାସ-୫୨୭, ସମୟାନୁବର୍ତ୍ତିତା-୫୨୮, ସ୍ପଷ୍ଟବାଦିତା-୫୨୯, ନାମ ବିଶ୍ଳେଷଣରେ ବ୍ୟଙ୍ଗ-୫୨୯, କ୍ଷଣକୋପୀ-୫୨୯, ଜୀବନର ଏକ ପରସ୍ପରବିରୋଧୀ ଲକ୍ଷଣ-୫୩୦, ଜାତୀୟ ଉନ୍ନତିରେ ଶ୍ରଦ୍ଧା-୫୩୧, ଜାତି ସେବାରେ ଅକାତର ବ୍ୟୟ-୫୩୨, ଜାତୀୟ ଗୌରବ ପ୍ରତି ଅଭିମାନ-୫୩୩, ଓଡ଼ିଶାର ଇତିହାସ କ୍ଷେତ୍ରରେ ଗବେଷଣା ପାଇଁ ଆହ୍ୱାନ-୫୩୩ ।

# ୧ । ନାମ ପରିଚୟ

ମଧୁସୂଦନ ଦାସ ସାଧାରଣତଃ ଉଚ୍ଚ **ଶିକ୍ଷିତ** ଇଂରେଜୀ ପଢ଼ୁଆଙ୍କ ଭିତରେ 'ମିଷ୍ଟର ଦାସ' ନାମରେ ବିଶେଷଭାବରେ ପରିଚିତ ଥିଲେ । ଓଡ଼ିଶା ବାହାରେ ବହୁ ଭଦ୍ରବ୍ୟକ୍ତି ତାଙ୍କୁ 'ମିଷ୍ଟର ଦାସ' ନାମରେ ଚିହ୍ନୁଥିଲେ । ପୂର୍ଣ୍ଣନାମ ନ ଲେଖି ବା ନ କହି 'ମିଷ୍ଟର ଦାସ' କହିଲେ ମଧୁସୂଦନ ଦାସଙ୍କୁ କେବଳ ବୁଝାଉଥିଲା । ସେ ଅଳ୍ପ ବୟସରେ ଖ୍ରୀଷ୍ଟିଆନ୍ ହୋଇଥିଲେ ଏବଂ ସେହି ସମୟରେ ଖ୍ରୀଷ୍ଟିଆନ୍‌ମାନେ ଚାଲିଚଳଣିରେ ଇଂରେଜମାନଙ୍କୁ ଅନୁକରଣ କରୁଥିଲେ । କଥାକହିବା ଢଙ୍ଗ, ଉଚ୍ଚାରଣ, ମୁଦ୍ରା, ବେଶଭୂଷା, ଭାଷା ସବୁ ଇଂରେଜମାନଙ୍କ ଅନୁକରଣରେ ହେଉଥିଲା । ମଧୁସୂଦନ ଏଥିରୁ କେତେକାଂଶ ଗ୍ରହଣ କରିନେଇଥିଲେ । ଅବଶ୍ୟ ସେ ଅନ୍ଧଅନୁକରଣର ଘୋର ବିରୋଧୀ ଥିଲେ । କୋଟ୍‌ପ୍ୟାଣ୍ଟ, ନେକ୍‌ଟାଇ ପିନ୍ଧି ବ୍ୟବହାରରେ କେତେକ ସାହେବ କାଇଦା ତାଙ୍କର ପ୍ରକାଶ ପାଉଥିବାରୁ ତାଙ୍କର ବନ୍ଧୁମାନେ ତାଙ୍କୁ ମିଷ୍ଟର ଦାସ ନାମରେ ସମ୍ବୋଧନ କରୁଥିଲେ ଏବଂ ପରିଚୟ ମଧ୍ୟ କରାଉଥିଲେ । ଇଂରେଜ ପଢ଼ୁଆଙ୍କ ଭିତରେ ଏହି **ନାମଟି** ବିଶେଷଭାବରେ ଆଦୃତ ହୋଇଯାଇଥିଲା । ଶେଷପର୍ଯ୍ୟନ୍ତ ସରକାରୀ ଉଚ୍ଚ ମହଲରେ ଓ ନେତୃମଣ୍ଡଳୀରେ ସେ ମିଷ୍ଟର ଦାସ ନାମରେ ହିଁ ପରିଚିତ ଥିଲେ ।

କିନ୍ତୁ ଓଡ଼ିଶାର ଜନସାଧାରଣ ତାଙ୍କୁ 'ମଧୁବାବୁ' ନାମରେ ହିଁ ଜାଣୁଥିଲେ । 'ମଧୁବାବୁ' କହିଲେ ଅନ୍ୟ କୌଣସି ମଧୁସୂଦନ ନାମଧାରୀ ବ୍ୟକ୍ତିଙ୍କୁ ବୁଝାଉ ନ ଥିଲା, କେବଳ ମଧୁସୂଦନ ଦାସଙ୍କୁ ବୁଝାଉଥିଲା । 'ମଧୁବାବୁ' ନାମଟି ଓଡ଼ିଶାବାସୀଙ୍କର ଅତି ପ୍ରିୟ ଥିଲା ।

ମଧୁବାବୁ 'ମଧୁବାରିଷ୍ଟର' **ନାମରେ** ମଧ୍ୟ ଲୋକସାଧାରଣରେ ପରିଚିତ ଥିଲେ । ସେ ବାରିଷ୍ଟରୀ ପାସ୍ କରି ନ ଥିଲେ ମଧ୍ୟ ତାଙ୍କର ଓକିଲତି ଢଙ୍ଗ, ଉଚ୍ଚକୋଟୀର ବିଚକ୍ଷଣତା, ୟୁରୋପୀୟ ବେଶଭୂଷାର ପରିପାଟୀ ସହିତ ଇଂଲଣ୍ଡ ଅଧିବାସୀ ଯୋଗ ଦେଇ ଏ ଧାରଣାଟି ସୃଷ୍ଟି କରିଥିଲା । ସେତେବେଳକୁ ଓଡ଼ିଶାରେ କେହି ବାରିଷ୍ଟରୀ ପାସ୍ କରି ନ ଥିଲେ । ମଧୁବାବୁଙ୍କଠାରେ ବାରିଷ୍ଟରୀ ଦକ୍ଷତା ପ୍ରକାଶିତ ହେଉଥିବାରୁ ଲୋକେ ତାଙ୍କୁ ସମ୍ମାନ ସହକାରେ 'ମଧୁବାରିଷ୍ଟର' ବୋଲି କହୁଥିଲେ । ଓଡ଼ିଆ ସମାଜରେ ମଧୁବାବୁଙ୍କର ଉଚ୍ଚ ଆସନ ହିଁ ଏହାର କାରଣ ।

ମଧୁବାବୁଙ୍କୁ ବେଶି ବୟସ ହୋଇଯିବା ପରେ ତାଙ୍କୁ 'କୁଳବୃଦ୍ଧ' (Grand Oldman) ବୋଲି ବନ୍ଧୁମାନେ ସମ୍ବୋଧନ କରୁଥିଲେ । ବୟସ ଅନୁସାରେ ଦେଖିଲେ

ସେ ଏ ପଦବୀର ଯୋଗ୍ୟ ହୋଇଥିଲେ ମଧ୍ୟ ସେ ନିଜେ ଏହାକୁ ପସନ୍ଦ କରୁ ନ ଥିଲେ । ସେ କହୁଥିଲେ, "ମୋତେ କୁଳବୃଦ୍ଧ ବୋଲି ଡାକିବା ଦ୍ୱାରା ମୋର ଶକ୍ତି କମାଇ ଦେଉଛ । ମୋତେ ବରଂ Grand Youngman (ଚିରଯୁବକ, ନବଯୁବକ) ବୋଲି ଡାକ । ଏହାଦ୍ୱାରା ମୋର କର୍ମ କରିବା ଶକ୍ତି ବୃଦ୍ଧି ପାଇବ ।"

ମଧୁବାବୁ ପ୍ରଥମ ଥର ବିଲାତକୁ ଖ୍ରୀ: ୧୮୯୭ରେ ଯାଇ ଖ୍ରୀ: ୧୮୯୮ରେ ଫେରିବା ପରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ସେତେବେଳେ କଟକର 'ଉତ୍କଳଦୀପିକା' ସାପ୍ତାହିକ ଖବର-କାଗଜରେ ମଧୁବାବୁ ଉତ୍କଳର ଗୌରବ ବୃଦ୍ଧି କରିଛନ୍ତି ବୋଲି ଲେଖିଥିଲେ । ବହୁ ସଭା ସମିତିରେ ମଧୁବାବୁଙ୍କ ସ୍ୱଦେଶହିତକର କାର୍ଯ୍ୟକୁ ପ୍ରଶଂସା କରି ବହୁ ବିଶିଷ୍ଟ ବ୍ୟକ୍ତି ସେ ଉତ୍କଳର ଗୌରବ ବୃଦ୍ଧି କରିଛନ୍ତି ବୋଲି ସୂଚନା ଦେଇଛନ୍ତି । ଏହାକୁ ଦୃଷ୍ଟିରେ ରଖି ମଧୁବାବୁଙ୍କ ଅନ୍ତେ ତାଙ୍କର ବନ୍ଧୁମାନେ 'ଉତ୍କଳ ଗୌରବ' ପଦବୀ ସୃଷ୍ଟି କରିଛନ୍ତି ।

ବିଖ୍ୟାତ ନେତା ସାର୍ ସୁରେନ୍ଦ୍ରନାଥ ବାନାର୍ଜୀ (ବନ୍ଦୋପାଧ୍ୟାୟ) ପ୍ରଭୃତି ବନ୍ଧୁମାନେ ତାଙ୍କୁ "He is pride of Orissa and enhanced the glorv of Orissa" ବୋଲି ପ୍ରଶଂସା କରୁଥିଲେ । ଏଥିରୁ 'pride' ଓ 'glory' ବା ଗୌରବ ଶବ୍ଦରୁ 'ଉତ୍କଳ ଗୌରବ' ପଦବୀକୁ ଭାବଗତ ଓ ଆକ୍ଷରିକ ସମର୍ଥନ ମିଳୁଛି । ଏହା ସତ୍ତ୍ୱେ 'ମଧୁବାବୁ' ପଦବୀଟି ସବୁ ପଦବୀ ଅପେକ୍ଷା ଶ୍ରେଷ୍ଠ । ଏହି ନାମରେ ହିଁ ସେ ଓଡ଼ିଶାରେ ଚିରସ୍ମରଣୀୟ ହୋଇ ରହିଥିବେ । ସେ ଦେଶର ପ୍ରଧାନ ସେବକ ଥିବାରୁ ତାଙ୍କ ପ୍ରତି 'ଦେଶପ୍ରାଣ' ପଦବୀଟି ସର୍ବତୋଭାବେ ପ୍ରଯୁଜ୍ୟ ।

## ୨ । ଜନ୍ମ ଓ ବାଲ୍ୟଜୀବନ

ମଧୁସୂଦନ ଦାସ କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ସତ୍ୟଭାମାପୁର ଗ୍ରାମରେ ୧୮୪୮ ଖ୍ରୀଷ୍ଟାବ୍ଦ ଏପ୍ରିଲମାସ ୨୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷମାନେ ସେ ଅଞ୍ଚଳରେ ଏକ ପ୍ରସିଦ୍ଧ ଜାଗିରଦାର ରୂପେ ପରିଚିତ ହେଉଥିଲେ । ସେ ଅଞ୍ଚଳର ଲୋକେ ଏହି କୁଟୁମ୍ବକୁ ଅତି ଶ୍ରଦ୍ଧା ଓ ମାନ୍ୟ କରୁଥିଲେ । କାଳକ୍ରମେ ଏ ବଂଶର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇପଡ଼ିଲା, ଭୂ-ସମ୍ପତ୍ତିର ପରିମାଣ କ୍ରମେ କ୍ଷୟ ହେବାକୁ ଲାଗିଲା । ତଥାପି ମଧୁବାବୁଙ୍କ ପିତାଙ୍କ ସମୟକୁ ପୂର୍ବର ଆଢ୍ୟ ନ ଥିଲେ ମଧ୍ୟ ତାହାର ଚ୍ଛାୟା କିଛି ଥିଲା—କର୍ପୂର ଯାଇ କନା ଥିଲା କହିଲେ ଚଳେ ।

ତାଙ୍କର ପୂର୍ବପୁରୁଷମାନେ ସେ ଅଞ୍ଚଳରେ ବହୁ ଦେବମନ୍ଦିରକୁ ଓ ବ୍ରାହ୍ମଣମାନଙ୍କୁ ସମ୍ପତ୍ତି ଦାନ କରିଥିବା ଜଣାଯାଏ । ଗ୍ରାମର ଲୋକେ ଏ ବଂଶକୁ ବେଶି ସମ୍ମାନ କରୁଥିବାରୁ ଏ ବଂଶ ଲୋକଙ୍କର ମର୍ଯ୍ୟାଦାଜ୍ଞାନ ଥିଲା । ସେମାନେ ନିଜକୁ ଏକ ଉଚ୍ଚସମ୍ଭୂତ ବଂଶର ମାନ ମର୍ଯ୍ୟାଦାର ଅଧିକାରୀ ବୋଲି ଭାବୁଥିଲେ । ଏହି କାରଣରୁ ନିଜ ମାନମହତ୍ତ୍ୱକୁ ଜଗିରଖି ସେମାନେ କାର୍ଯ୍ୟ କରୁଥିଲେ ।

ମଧୁବାବୁ ଜନ୍ମ ହେବାବେଳକୁ ତାଙ୍କ ବଂଶର ପୂର୍ବ ଗୌରବ କିଛି ଅଂଶରେ ଥିଲା । ବାଲ୍ୟକାଳରୁ ସେ ତାଙ୍କ ବଂଶର ଆଢ଼୍ୟ ଭିତରେ କ୍ରମେ ବର୍ଦ୍ଧିତ ହୋଇଥିଲେ । ଏହି କାରଣରୁ ସେ ସବୁବେଳେ ଭାବୁଥିଲେ ଯେ, ସେ ସମସ୍ତ ଗ୍ରାମର ଅଧିକାରୀ । ଏହି କାରଣରୁ ମଧ୍ୟ ବାଲ୍ୟଜୀବନରେ ତାଙ୍କର ବ୍ୟବହାର ଟିକିଏ ବେପରୁଆ ଥିଲା । ସବୁ ଶ୍ରେଣୀର ଲୋକଙ୍କ ସହିତ ସେ ନିର୍ଭୟରେ କୌତୁକ ବ୍ୟବହାର କରୁଥିଲେ; କିନ୍ତୁ ଏ କୌତୁକ ଭିତରେ ତାଙ୍କର ମର୍ଯ୍ୟାଦାଜ୍ଞାନର ଆଭାସ ଦେଖାଯାଉଥିଲା । ଯଦି କାହାର କୌଣସି ପଦାର୍ଥକୁ ସେ କୌତୁକରେ ଧରିନେଉଥିଲେ, ସେ ପଦାର୍ଥକୁ ମାଲିକ ଛଡ଼ାଇନେଲେ ମଧୁବାବୁ ବିରକ୍ତ ହେଉଥିଲେ । ଥରେ ତାଙ୍କ ପିତାଙ୍କର ଜଣେ ବନ୍ଧୁ ତାଙ୍କ ଘରକୁ ଆସିଥିଲେ । ତାଙ୍କ ପକେଟ୍‌ରେ ଘଡ଼ିଟିଏ ଥିଲା । ଅତିଥି ଏହି ଘଡ଼ିଟି ପକେଟରୁ ବାହାରକରି ସମୟ ଦେଖୁଥିଲାବେଳେ ବାଳକ ମଧୁ ଘଡ଼ିଟିକୁ ଛଡ଼ାଇନେଲେ । ଘଡ଼ିଟି ଭାଙ୍ଗିଯିବା ଆଶଙ୍କାରେ ଅତିଥି ଘଡ଼ିଟି ତାଙ୍କ ହାତରୁ ଛଡ଼ାଇ ନେଲେ । ଏଥିରେ ମଧୁବାବୁଙ୍କର ଅଭିମାନ ଜାଗ୍ରତ ହେଲା । ସେ ରାଗରେ କାନ୍ଦି ଅଳି କଲେ । ପିତା ଓ ଅତିଥି ବହୁତ ବୁଝାଇବା ପରେ ତାଙ୍କର ମନ ଶାନ୍ତ ହେଲା । ଏହିପରି ବହୁ ଘଟଣା ତାଙ୍କ ବାଲ୍ୟ ଜୀବନରେ ଘଟିଥିଲା । ପୁଣି ବୃଥା ପ୍ରଭୁତ୍ୱଜନିତ ଅଭିମାନର ପ୍ରତିବାଦ ସେ ସହ୍ୟ କରିପାରୁ ନଥିଲେ । ତାଙ୍କ ଜୀବନର ପରବର୍ତ୍ତୀ କାଳରେ ମଧ୍ୟ ସେ ଏହି ଦୁର୍ଗୁଣରୁ ମୁକ୍ତ ହୋଇନଥିଲେ । ମଧୁବାବୁ ଯାହା କହୁଥିଲେ ତାହାକୁ ବିରୋଧ କଲେ ସେ ବନ୍ଧୁମାନଙ୍କ ଉପରେ ରାଗିଯାଉଥିଲେ । ସେ ନିଜେ ବଙ୍ଗଳା ଭାଷାରେ ଓଡ଼ିଆମାନଙ୍କ ସହିତ ଓଡ଼ିଶାରେ ମଧ୍ୟ କଥାବାର୍ତ୍ତା କରୁଥିଲେ । କିନ୍ତୁ କେହି ଯଦି ବଙ୍ଗଳାରେ ଉତ୍ତର ଦେଉଥିଲେ ତାହାହେଲେ ସେ ଭୀଷଣ ରାଗିଯାଇ "ମୋତେ କିଏ ଥଟ୍ଟା କରୁଛି" ଏହି କଥା କହୁଥିଲେ । ଏହି କାରଣରୁ ବହୁଲୋକ ତାଙ୍କୁ ଉତ୍ୟକ୍ତ ନକରିବା ଉଦ୍ଦେଶ୍ୟରେ ତାଙ୍କ କଥାର ବିରୋଧ କରୁ ନଥିଲେ । ଏ ଦୁର୍ଗୁଣଟି ଯୋଗୁଁ ସେ ପରୋକ୍ଷରେ ସମାଲୋଚିତ ମଧ୍ୟ ହେଉଥିଲେ ।

ବାଳକ ମଧୁବାବୁ ଜେଜେମାଙ୍କଠାରୁ କାହାଣୀ ଶୁଣିବାକୁ ଶ୍ରଦ୍ଧା କରୁଥିଲେ । ବୃଦ୍ଧା ଅନେକ ଗଳ୍ପ ତାଙ୍କୁ ଶୁଣାଉଥିଲେ । ବୃଦ୍ଧାଙ୍କ ଶାଶୁ ସତୀ ହୋଇଥିବା ଗଳ୍ପ ସେ ଆଗ୍ରହରେ ଶୁଣୁଥିଲେ । ପରବର୍ତ୍ତୀ ସମୟରେ ମଧୁବାବୁ ତାଙ୍କର ପ୍ରପିତାମହୀ ସତୀ ହୋଇଥିବା ପ୍ରସଙ୍ଗ ଏକାଧିକାର ଉତ୍ଥାପନ କରି ଆନନ୍ଦ ଓ ଗର୍ବ ଅନୁଭବ କରୁଥିଲେ । ଶିଶୁ ମଧୁଙ୍କୁ

କୋଳରେ ଧରି ଜେଜେମା ତାଙ୍କ ଶାଶୂଙ୍କର ଏହି ପୁଣ୍ୟକାର୍ଯ୍ୟ ବର୍ଣ୍ଣନା କଲାବେଳେ ସେ ଆନନ୍ଦ ଓ ଗର୍ବରେ ଗଦ୍‌ଗଦ୍ ହୋଇ ଯାଉଥିଲେ । ତାଙ୍କର ଚକ୍ଷୁରୁ ଲୋତକ ଝରୁଥିଲା । ମଧୁବାବୁ ଏହି କଥାକୁ ବର୍ଣ୍ଣନାକରି ତାଙ୍କ ଧମନୀରେ ଏ ସତୀଙ୍କ ରକ୍ତ ପ୍ରବାହିତ ହେଉଥିବା କଥା କହି ଗର୍ବ ପ୍ରକାଶ କରୁଥିଲେ । ତାଙ୍କ ଜେଜେମା ଶାଶୂଙ୍କର ସତୀ ହେବା ଦୃଶ୍ୟକୁ ସୁନ୍ଦରଭାବରେ ଚିତ୍ରଣ କରୁଥିଲେ । ସତୀଙ୍କ ସ୍ୱାମୀ ମାତ୍ର ଗୁରୁତର ରୋଗରେ ପଡ଼ି ଅସୁସ୍ଥ ହେଲେ । ଏହା ପରେ ସେ ଅନ୍ନ ତ୍ୟାଗ କଲେ । ସେ ଧାରଣା କରନେଲେ ଯେ, ଭଗବାନଙ୍କ ଡାକରା ଆସିଗଲା । ତାଙ୍କର ଅର୍ଦ୍ଧାଙ୍ଗିନୀ ରୋଗଶଯ୍ୟାରେ ସେବା ଶୁଶ୍ରୂଷା କଲେ । ସ୍ୱାମୀ ଅନ୍ନ ତ୍ୟାଗ କରିଥିବାରୁ ସେ ମଧ୍ୟ ଅନ୍ନ ତ୍ୟାଗ କରିଥିଲେ । ରୋଗୀ ସକାଳେ ପ୍ରାଣତ୍ୟାଗ କଲେ । ତାଙ୍କ ସ୍ତ୍ରୀ ସଙ୍ଗେ ସଙ୍ଗେ ଚିତାଗ୍ନି ସଜାଡ଼ିବା ପାଇଁ ଆଦେଶ ଦେଲେ । ତାଙ୍କ ଆଖିରୁ ଲୁହ ଝରୁ ନଥିଲା । ବିବାହ ସମୟରେ ବରକୁ କନ୍ୟା ସମର୍ପଣ କଲାବେଳେ ଯେଉଁ ବିଧିବିଧାନ ହୁଏ ତାହା ସେ କରାଇଲେ ଓ ତାଙ୍କ ପୁତ୍ରବଧୂଙ୍କୁ ଦୁଇଟି ଫୁଲମାଳ କରିବାପାଇଁ ଆଦେଶ ଦେଲେ । ସେଥିରୁ ଗୋଟିଏ 'ବୋହୂ'ଙ୍କ ବେକରେ ତାଙ୍କ ଆଦେଶରେ ଦିଆହେଲା । ବୋହୂଙ୍କୁ ଘରର କର୍ତ୍ତ୍ରୀରୂପେ ଅଧିଷ୍ଠାନ କରାଇ ବୁଢ଼ୀ କେତେକ ଉପଦେଶ ଦେଲେ । ଅନ୍ୟ ଫୁଲମାଳଟି ସେ ନିଜେ ହାତରେ ଧରିଲେ । ଜ୍ଞାତି କୁଟୁମ୍ବର ସମସ୍ତେ ଓ ସମବେତ ଜନତା ଶ୍ମଶାନକୁ ଗଲେ । ସମସ୍ତେ ନୀରବ ନିସ୍ତବ୍ଧ ହୋଇ ଠିଆହେଲେ । କୌଣସି ବାଜା ବା ଆନନ୍ଦ କୋଳାହଳ ବା କ୍ରନ୍ଦନ ସେଠାରେ ଶୁଣାଗଲା ନାହିଁ । ଚିତାଗ୍ନିରେ ଚନ୍ଦନକାଠ ଓ ଘିଅ ଯଥେଷ୍ଟ ପରିମାଣରେ ପକାହେଲା । ଶବକୁ ତା ଉପରେ ରଖିଦିଆଗଲା । ସତୀ ପ୍ରଣାମକରି ସେଇ ଜୁଇର ଚାରିପଟେ ତିନଥର ବୁଲିଲାପରେ ଆପେ ଜୁଇ ଉପରକୁ ଉଠି ସ୍ୱାମୀଙ୍କ ଗଳାରେ ଫୁଲମାଳଟିକୁ ପକାଇଦେଲେ । ଏହାପରେ ସେ ସ୍ୱାମୀଙ୍କ ପାଦଦେଶରେ ଯୋଡ଼ହସ୍ତ ହୋଇ ଜୁଇ ଉପରେ ବସି ଅଗ୍ନି ସଂଯୋଗ କରିବାକୁ ଆଦେଶ ଦେଲେ । ଜଣେ ଅଗ୍ନିହୋତ୍ରୀ ଏ ଅଗ୍ନି ଦେଇଥିଲେ । ନିମିଷକେ ଅଗ୍ନି ହୁ-ହୁ ହୋଇ ଜଳିଉଠିଲା । ସୁଗନ୍ଧବାଷ୍ପ ଆକାଶ ଉପରକୁ ଅଗ୍ନି ଶିଖା ସହିତ ଉଠିବାରୁ ମନେହେଉଥିଲା ସତେ ଯେପରି ସ୍ୱାମୀଙ୍କର ସ୍ୱର୍ଗାରୋହଣ ହେଉଛି ଏବଂ ସେହି ପଥରେ ତାଙ୍କର ଯାତ୍ରା ହେଉଥିବା ଘୋଷଣା କରୁଛି ! ଏହି ଦୁଇ ପ୍ରାଣୀଙ୍କର ମରଶରୀର ପରେ ଦୁଇ ଆତ୍ମାର ପୁନର୍ବାର ବିବାହ ହେଉଥିବା ପରି ଏ ଦୃଶ୍ୟ ଦେଖାଯାଉଥିଲା । ଏ ସ୍ୱାମୀ-ସ୍ତ୍ରୀଙ୍କ ମରଶରୀର ଭସ୍ମ ହୋଇଯିବା ପରେ ସେହି ଅଗ୍ନି ଦର୍ଶକମାନଙ୍କର ହୃଦୟରେ ଯଥେଷ୍ଟ ପ୍ରଭାବ ପକାଇଥିଲା ।

## ବଂଶଲତା

ମଧୁବାବୁଙ୍କ ବଂଶଲତାରୁ ଜଣାଯାଏ, ମଧୁସୂଦନଙ୍କ ଊର୍ଦ୍ଧ୍ୱତନ ୭ମ ପୁରୁଷ ମଣିଙ୍କ ସଂଜ୍ଞା 'ମଲ୍ଲ' ଥିଲା । ବୃଦ୍ଧ ପ୍ରପିତାମହ ବଳଭଦ୍ରଙ୍କର ସଂଜ୍ଞା 'ଦାସ', ତାଙ୍କ ଜ୍ୟେଷ୍ଠ ଭ୍ରାତା ବଂଶୀଙ୍କର ସଂଜ୍ଞା 'କାନଗୋଇ', ଅନ୍ୟ ବଡ଼ ଭାଇ ଗୋପୀଙ୍କର 'ରାଉତରା' ସଂଜ୍ଞା ଥିଲା ।

ମଧୁବାବୁଙ୍କ ପିତା ଚୌଧୁରୀ ଉପାଧି ସଞ୍ଜ୍ଞା ସହିତ ଯୋଗକଲେ । ବିଭିନ୍ନ ରାଜସ୍ୱ ବନ୍ଦୋବସ୍ତ ସମୟରେ ଏପରି ସଞ୍ଜ୍ଞା ପରିବର୍ତ୍ତନ ଅନେକେ କରିଥାଆନ୍ତି । ମଣିଙ୍କ ବଂଶ ଏହି ରୀତି ଅବଲମ୍ବନ କରିଥିଲେ । ମଲ୍ଲ, କାନଗୋଇ, ରାଉତରାୟ, ଦାସ, ଚୌଧୁରୀ ପ୍ରଭୃତି ଏ ବଂଶରେ ସଞ୍ଜ୍ଞାରୂପେ ବ୍ୟବହୃତ ହୋଇଛି ।




ଖୋର୍ଦ୍ଧା ମୁକାମରୁ ପ୍ରଥମେ ଏହି ବଂଶର ଜଣେ ପୂର୍ବପୁରୁଷ ମଣି ମଲ୍ଲ ଦେବ ଖୋର୍ଦ୍ଧା ଜିଲ୍ଲା ଘାଥିପୁର ମୁକାମର ତାରଫା ମୌଜାରୁ (ବର୍ତ୍ତମାନ ସେଠି ସୁଲଭ ନାୟକଙ୍କ ନାତି ରାମ ନାୟକଙ୍କ ଘର ଅଛି) ଆସି ପଦ୍ମପୁର ପ୍ରଗନାରେ ସତ୍ୟଭାମାପୁର ବା ସାଇତମାପୁର ମୌଜାରେ ବାସକରିଥିଲେ । ମଧୁବାବୁଙ୍କ ଗ୍ରାମରେ ତାଙ୍କ ଘରେ ରକ୍ଷିତ ବଂଶାବଳୀ, କୃଷିନାମା ଓ ବନ୍ଧୁ ତାଲିକାରୁ ଏ ତଥ୍ୟ ମିଳିଛି ।

ମଧୁବାବୁଙ୍କ ପିତା ରଘୁନାଥ ଖ୍ରୀ: ୧୮୨୮ ରେ, ପିତାମହ ଭଜନ ନନ୍ଦ ଖ୍ରୀ: ୧୭୯୦ରେ, ପ୍ରପିତାମହ ସୁଦର୍ଶନ ଖ୍ରୀ: ୧୭୬୪ରେ, ବୃଦ୍ଧପ୍ରପିତାମହ ବଳଭଦ୍ର

ଖ୍ରୀ: ୧୬୬୪ରେ ଜନ୍ମଗ୍ରହଣ କରିଥିବା ଜଣାଯାଏ । ବଳଭଦ୍ରଙ୍କ ପିତା ଶ୍ରୀବନ ଖ୍ରୀ: ୧୬୯୦ରେ, ପିତାମହ ଦାମୋଦର ଖ୍ରୀ: ୧୬୬୫ରେ ଓ ପ୍ରପିତାମହ ମଣି ମଲ୍ଲ ଖ୍ରୀ: ୧୬୩୫ରେ ଜନ୍ମଗ୍ରହଣ କରିଥିଲେ ।

ବଂଶଲତାର ଫର୍ଦ୍ଦ ସୂତ୍ରରୁ ଜଣାଯାଏ ଯେ ମଧୁବାବୁଙ୍କ ପୂର୍ବପୁରୁଷ ମଣି ମଲ୍ଲ ଖଣ୍ଡାଏତ ଥିଲେ । ପରେ ତାଙ୍କ ବଂଶଧରମାନେ କରଣ ବୋଲାଇଲେ । ଏପରି ପରିବର୍ତ୍ତନ ବହୁ କୁଟୁମ୍ବରେ ଘଟିଥିବା ଦେଖାଯାଏ । ସାଧାରଣତଃ ଆର୍ଥିକ ଅବସ୍ଥାର ସ୍ୱଚ୍ଛଳତା ଉପରେ ଏହି ପରିବର୍ତ୍ତନ ନିର୍ଭର କରେ । ପ୍ରାଚୀନ କାଳରୁ ଏହି ରୀତି ବହୁସ୍ଥାନରେ ପ୍ରଚଳିତ ଥିବା ଦେଖାଯାଏ । ମଧୁବାବୁ ଫର୍ଦ୍ଦ ପରିବର୍ତ୍ତନକୁ ପସନ୍ଦ କରୁନଥିଲେ । ବେଳେବେଳେ ମଧୁବାବୁ ତାଙ୍କ ବଂଶର ଫର୍ଦ୍ଦ ପରିବର୍ତ୍ତନକୁ ଲକ୍ଷ୍ୟ କରି ପରିହାସରେ କେତେକ ଢଗ ବୋଲୁଥିଲେ ।

## ଜନ୍ମପତ୍ରିକା (ଜାତକ)

"ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ବିଜେ ଶୁଭ ରାଜ୍ୟେ ୩୮ ଅଙ୍କ ମେଷ ୧୬ ଦିନ ସନ ୧୨୫୫ ସାଲ ଜ୍ୟେଷ୍ଠ ମାସ ଶୁକ୍ଳ ପକ୍ଷ ଅଦ୍ୟ ଏକାଦଶୀ ତିଥୌ ଭୌମବାସରେ ଏ ଦିନ ବେଳ ଦ ୨୮।୧୦ ଲିତା ସମୟେ ତୁଳଲଗ୍ନ ଆଦ୍ୟ ପାଦରେ ଶ୍ରୀ ଚୌଧୁରୀ ଉପାଧି ରଘୁନାଥ ଦାସଙ୍କର ସ୍ୱପତ୍ନ୍ୟୋଦରେ ଦ୍ୱିତୀୟ ଗର୍ଭକୁ କୁଳୋଦ୍ଭବ ପୁତ୍ର ଜନ୍ମ । ସ୍ୱ ରାଶି ରେବତୀ (୨୭ । ୧୨) ମୀନ । ଜାତିରେ ଦେବତାଗଣ, ରାଶିନାମ ଦୟାନିଧି, ଦାମୋଦର, ଦୈତ୍ୟାରି ଶ୍ରଦ୍ଧା ନାମ ଗୋବିନ୍ଦ । ଅର୍ଥ ରାଶି ଲକ୍ଷଣ—ଦେହ ଗୌର ବର୍ଣ୍ଣ ଅକ୍ଷର ବକ୍ତା, ଏକ ଭାର୍ଯ୍ୟା, ବିନାଶ, ଦ୍ୱିତୀୟ ଭାର୍ଯ୍ୟା ପ୍ରବନ୍ଧ । ଆଉ ପ୍ରଥମ ଭାର୍ଯ୍ୟା ପୁତ୍ରରେ କଷ୍ଟି × × ଗଳ କପୋଳେ ଦେବତା-ବ୍ରାହ୍ମଣରେ ଶ୍ରଦ୍ଧା; ଗୀତ ବୀଣା ବାଦ୍ୟରେ ଶ୍ରଦ୍ଧା, ଯଶ × × × ।"
(ଶ୍ରୀ ନବକିଶୋର ଦାସଙ୍କ 'ଉତ୍କଳ ଗୌରବ ମଧୁସୂଦନ' ଗ୍ରନ୍ଥରେ ପ୍ରଦତ୍ତ ଜାତକରୁ ଗୃହୀତ)

ଜାତକରେ ଶ୍ରଦ୍ଧା ନାମ ଗୋବିନ୍ଦ ଥିଲା । ଡାକ ନାମ ମଧୁସୂଦନ । ମଧୁବାବୁ ମଧୁସୂଦନ ନାମରେ ହିଁ ଉଚ୍ଚବିଦ୍ୟାଳୟ ଓ କାର୍ଯ୍ୟକ୍ଷେତ୍ରରେ ପରିଚିତ ଥିଲେ ଏବଂ ଏହି ନାମହିଁ ବ୍ୟବହାର କରିଥିଲେ ।

ବହୁକାଳ ପୂର୍ବେ ଲିଖିତ ଜାତକ ପତ୍ରିଟିରୁ ଦୋଷଶୂନ୍ୟ ନକଲ କରିବା ସହଜ ନୁହେଁ । ଏହି କାରଣରୁ ଏଥିରେ ସାମାନ୍ୟ ଭ୍ରମ ଦେଖାଯାଇଛି । ତେବେ, ଜାତକରେ ମଧୁବାବୁଙ୍କର ବିଶ୍ୱାସ ଥିବା ଜଣାଯାଇନାହିଁ । ଏହି ହେତୁ ହୁଏତ ତାଙ୍କ ନିକଟରେ ତାଙ୍କର ଜାତକ ନଥିଲା ।

ଜାତକର ଫଳାଫଳ ସମ୍ବନ୍ଧରେ କଟକର ବରିଷ୍ଠ ଜ୍ୟୋତିର୍ବିଦ୍ ପଣ୍ଡିତ ଶ୍ରୀ ବାମନଚନ୍ଦ୍ର ଆଚାର୍ଯ୍ୟ କାବ୍ୟବ୍ୟାକରଣତୀର୍ଥ, ଏହିପରି ମତ ବ୍ୟକ୍ତ କରିଛନ୍ତି—




**ଜାତକ**

୩
୧୧୫।୫୧
୨୭୨।୮
୧୨।୬୦
୧୨୩।୪୦
୪୨୫।୫
୨୮୧।୫
ହ ୩୧
୧୫।୩୫

## ବର୍ଷପତାକୀ

| | | |
|---|---|---|
| ଚ | ର | ଶୁ କେ |
| ମ | ୨୭।୧୨ | ରା |
| ବୁ | ଶ | ବୃ |

## ଗୁରୁ କୁଣ୍ଡଳୀ

| | | | | |
|---|---|---|---|---|
| ର | ଚ | ୦ | ୦ | ଶ |
| ମ | ବୁ | ବୃ | ଶୁ | ରା |
| କ୍ତ | ୦ | ୦ | ୦ | ୦ |




ଉକ୍ତ କୋଷ୍ଠୀର ଗ୍ରହାବସ୍ଥାନ ବର୍ଣ୍ଣନ କରିବାରେ 'ରଘୁବଂଶ' କାବ୍ୟରେ ଥିବା ଶ୍ଳୋକଟି ମନେପଡ଼ିଲା । ଯଥା—

ଗଚ୍ଛେତ୍ ତତଃ ପଞ୍ଚଭରୁଚ ଫଗ୍ରେସ୍ତୈ
ରସୃଯ୍ୟ ଗୈଃ ସୃତତ ଭାଗ୍ୟ ଫପଦମ୍ ।
ଅସୃତ ପୁନଂ ସମସ୍ତେ ଶଚସମା
ନିସାଧନା ଶକ୍ତରବାର୍ଥ ମକ୍ଷସ୍ତୀ ।

ଏ ଶ୍ଳୋକଟିର ଅନେକାଂଶରେ ଏ କୋଷ୍ଠୀର ଗ୍ରହମାନଙ୍କ ଅବସ୍ଥିତ ଦ୍ୱାରା ଖାପ ଖାଇଲା ଭଳି ହୋଇଅଛି । ଗ୍ରହମାନେ ପାଞ୍ଚଟି ରାଶିରେ ଅବସ୍ଥାନ କରୁଥିବାରୁ ପଞ୍ଚାନନ ଯୋଗ ହୋଇଅଛି । ଆଉ ମଧ୍ୟ ଶନକୁମ୍ଭାଯୋଗଃ, ରବି ଉଚ୍ଚ, ରାହୁ ଉଚ୍ଚ, ବୃହସ୍ପତି ଉଚ୍ଚାଭିଳାଷୀ । ବୁଧାଦିତ୍ୟ ଯୋଗଃ ଇତ୍ୟାଦି ଯୋଗ ହୋଇଥିଲେ ।

ସ ଭବତି ନରନାଥୋ ବିଶ୍ୱବିଖ୍ୟାତ କୀର୍ତ୍ତିଃ ।
ମଦ୍‌ଗଳିତ କପୋଳୈଃ ସଦ୍ ଗଜୈଃ ସେବ୍ୟମାନଃ ।। ଇତ୍ୟାଦି ।

କେବଳ ପଞ୍ଚମରେ ଶନି ମଙ୍ଗଳ ଯୁକ୍ତ ହୋଇଥିବାରୁ ସୁସନ୍ତାନ ଲାଭ ଯୋଗ ନାହିଁ । କନ୍ୟା ଦୁଇ ଲାଭ ଯୋଗ ଅଛି । ସନ୍ତାନ ଲାଭ ଯୋଗ ନ ଥିଲେ ମଧ୍ୟ ବହୁ ସନ୍ତାନର ପିତା ଯୋଗ । ବୁଧ ସ୍ଥାନରେ ଶନି ମଙ୍ଗଳ ଯୁକ୍ତ ହୋଇ ରହିଥିବାରୁ ଉତ୍କଟ ତୀକ୍ଷ୍ଣ ସୂକ୍ଷ୍ମ ବୁଦ୍ଧି ବିଦ୍ୟା ନିପୁଣ । ଅସୁର ଗୁରୁ ଶୁକ୍ର, ସୁର ଗୁରୁ ବୃହସ୍ପତି ଏକତ୍ର ଭାଗ୍ୟସ୍ଥାନରେ ଥିବାଦ୍ୱାରା ଆସୁର ବିଦ୍ୟା ଓ ସାହିତ୍ୟ ବିଦ୍ୟାଦ୍ୱାରା ଭାଗ୍ୟ ବୃଦ୍ଧି, ଯଶୋବୃଦ୍ଧି ପୂର୍ବକ ସୁଖ୍ୟାତି ଅର୍ଜନାଧିକାରୀ; ଯଥା—ଭାଗ୍ୟେଶ ଉଚ୍ଚସ୍ତରବିଯୁକ୍ତ ଲଗ୍ନଭବକୁ ପୂର୍ଣ୍ଣ ଦୃଷ୍ଟି କରୁଥିବାରୁ ଉଚ୍ଚ ଭାଗ୍ୟବାନ୍ ଓ ଭୂପବନ୍ଦ୍ୟଃ । କର୍ମ-କ୍ଷେତ୍ରରେ ଅଧିପତି ଚନ୍ଦ୍ର, ଷଷ୍ଠରେ କେତୁଯୁକ୍ତ ଥିବାରୁ କର୍ମମୟ ଜୀବନ ଫଷ୍ଟାରେ ବହୁ ଶତ୍ରୁ ଓ ବାଧାବିଘ୍ନମାନ ଉପୁଜିଲେ ମଧ୍ୟ ଲଗ୍ନକୁ ଶୁକ୍ର ଓ ବୃହସ୍ପତିଙ୍କର ପୂର୍ଣ୍ଣ ଦୃଷ୍ଟି ଥିବାରୁ ଯଥାତଥା ପ୍ରକାରେ ଆପ୍ରାଣାନ୍ତ କର୍ମସାଧନରେ ଯତ୍ନବାନ୍ ହୋଇପାରିବ । ଦେହ ଅଧିପତି ଓ ଶତ୍ରୁ ସ୍ଥାନ ଅଧିପତି ଏକତ୍ର ଅବସ୍ଥାନ କରୁଥିବାରୁ କାର୍ଯ୍ୟ ସାଧନ କ୍ଷେତ୍ରରେ ବହୁ ଶତ୍ରୁ ଓ କ୍ଳେଶ ଅନୁଭବ କରି କାର୍ଯ୍ୟ ସାଧନକ୍ଷମ ହୋଇପାରିବ । (ପଣ୍ଡିତ ଶ୍ରୀ ବାମନଚନ୍ଦ୍ର ଆଚାର୍ଯ୍ୟ, କାବ୍ୟ ବ୍ୟାକରଣ ତୀର୍ଥ, ବିହାରୀବାଗ, କଟକ-୨, ୧୭-୭-୬୮ ।)

ଜାତକର ଫଳାଫଳରୁ ଗଣକ ଯେଉଁ ତଥ୍ୟ ଉପସ୍ଥାପିତ କରିଅଛନ୍ତି ତାହା ମଧୁବାବୁଙ୍କ ଜୀବନରେ ବହୁଳାଂଶରେ ଦେଖାଯାଇଛି । ମଧୁବାବୁ ଓଡ଼ିଶା ରାଜ୍ୟରେ ଓଡ଼ିଆଙ୍କ ହୃଦୟରେ ସମ୍ରାଟର ସମ୍ମାନ ପାଇଥିଲେ ଓ ଶ୍ରଦ୍ଧାର ଆସନ ଅଧିକାର କରିଥିଲେ । ସେ ଅମାପ ସମ୍ପତ୍ତି ସ୍ୱହସ୍ତରେ ଅର୍ଜନ କରିଥିଲେ ମଧ୍ୟ ଶେଷରେ ଆର୍ଥିକ ଦୁର୍ଗତି ଭିତରେ ଜୀବନ ତ୍ୟାଗ କରିଥିଲେ । ତାଙ୍କ ସମକକ୍ଷ ତୀକ୍ଷ୍ଣ-ବୁଦ୍ଧିସମ୍ପନ୍ନ, ସେବାପରାୟଣ, ବୁଦ୍ଧିଜୀବୀ ଓ ନେତା ଓଡ଼ିଶାରେ କେହି ନଥିଲେ । ଏ କ୍ଷେତ୍ରରେ ସେ ଅପ୍ରତିଦ୍ୱନ୍ଦ୍ୱୀ ଥିଲେ । ଜାତକରେ କେତେକ ଭ୍ରମପ୍ରମାଦ ରହିଥିବା ପଣ୍ଡିତ ମହାଶୟ କହନ୍ତି । ତେବେ ମୋଟ ଉପରେ ଫଳାଫଳ ଏହିପରି ।

ମଧୁବାବୁଙ୍କ ଶିଶୁ ସମୟର କେତେକ ଅଦ୍ଭୁତ ଓ କୌତୁକ ଗଳ୍ପ ଶୁଣାଯାଏ । ସେତେବେଳକୁ ମଧୁବାବୁଙ୍କୁ ମୋଟେ ୫ କି ୬ ମାସ ହୋଇଥାଏ । ଶୀତଦିନ । ଶିଶୁଟିକୁ ମାତା ଅଗଣା ଭିତରେ ଖଟରେ ଶୁଆଇଦେଇଥିଲେ । ଅନ୍ୟ କୌଣସି କାର୍ଯ୍ୟ ପଡ଼ିବାରୁ ମାଆ ଘର ଭିତରକୁ ଯାଇଥିଲେ । ସେ ଅଗଣାକୁ ଫେରିବା ପରେ ଦେଖିଲେ ଗୋଟିଏ ନାଗସାପ ଫଣା ଟେକି ମଧୁଙ୍କ ମୁଣ୍ଡପାଖରେ ଖେଳୁଛି । ଏ ଦୃଶ୍ୟ ଦେଖି ମାତା କଣ କରିବେ କିଛି ବୁଝିପାରିଲେ ନାହିଁ । ଶିଶୁର ଜୀବନ ଆଶଙ୍କା କଲେ । ଏକ ମୁହୂର୍ତ୍ତ ପରେ ସାପଟି ଶିଶୁର କୌଣସି ଅନିଷ୍ଟ ନକରି ବାହାରକୁ ଚାଲିଗଲା । ଏ ଘଟଣାଟିକୁ ଗ୍ରାମର ମୁଖିଆମାନେ ବୁଝାଇଲେ ଯେ ଶିଶୁଟି ଭାଗ୍ୟବାନ ହେବ, ରାଜଚକ୍ରବର୍ତ୍ତୀର ସମ୍ମାନ ପାଇବ । ମଧୁବାବୁ ଓଡ଼ିଶାରେ ରାଜଚକ୍ରବର୍ତ୍ତୀର ସମ୍ମାନ ଲାଭ କରିଥିଲେ ଏଥିରେ ସନ୍ଦେହ ନାହିଁ । ବହୁକାଳ ଧରି ସେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ, ମୁକୁଟହୀନ ରାଜାରୂପେ ତାଙ୍କୁ ଲୋକେ ସମ୍ମାନ କରୁଥିଲେ ।

ଏପରି ଗଳ୍ପ ପୃଥିବୀର ବହୁ ବଡ଼ଲୋକ ଓ ରାଜାଙ୍କ ସମ୍ବନ୍ଧରେ ଶୁଣାଯାଏ । ଲୋକେ ଯାହାକୁ ଯେତେ ଶ୍ରଦ୍ଧା ଓ ଭକ୍ତି କରନ୍ତି ତାହା ସମ୍ବନ୍ଧରେ ସେତିକି ଅଦ୍ଭୁତ ଗଳ୍ପ ସୃଷ୍ଟି କରନ୍ତି । ଏହି ଗଳ୍ପଟି ସେହିପରି ଏକ ଗଳ୍ପ ବୋଲି ମନେହୁଏ ।

ମଧୁ ଚଟଶାଳୀରେ ଅଧ୍ୟୟନ କରୁଥିବା ବେଳର ତାଙ୍କର ଚଗଲାମି ସମ୍ବନ୍ଧରେ କେତୋଟି ଗଳ୍ପ ଶୁଣାଯାଏ । ସେ ପାଠପଢ଼ାବେଳେ ମନଦେଇ ପଢ଼ୁଥିଲେ । କିନ୍ତୁ ଅନ୍ୟ ସମୟରେ ଖେଳବୁଲରେ ମାତିଯାଉଥିଲେ । ବେଳେ ବେଳେ ଚଟଶାଳୀ ଅବଧାନଙ୍କୁ ହଇରାଣ ମଧ୍ୟ କରୁଥିଲେ ।

ଦିନେ ଅବଧାନେ ଛାତ୍ରମାନଙ୍କୁ 'ଗୋଶାଳା' ଓ 'ହସ୍ତୀଶାଳା' ପ୍ରଭୃତିର ଅର୍ଥ ବୁଝାଉଥିଲେ । ତହିଁ ଆରଦିନ ଅବଧାନେ ଚଟଶାଳୀକୁ ଆସିବା ପୂର୍ବରୁ ମଧୁ ଦ୍ୱାର ପାଖରେ କାନ୍ଥରେ ଲେଖିଦେଲେ 'ଅବଧାନଶାଳା' । ଅବଧାନେ ଏ ଶବ୍ଦଟିକୁ ପଢ଼ି ଅଗ୍ନିଶର୍ମା ହୋଇଗଲେ । ସେ ଭାବିଲେ ପିଲାଏ ତାଙ୍କୁ 'ଶାଳ' ବା 'ଶଳା' ବୋଲି ଥଟ୍ଟା କରିବା ଉଦ୍ଦେଶ୍ୟରେ ଏପରି ଲେଖିଛନ୍ତି । ମଧୁ ଏପରି ଲେଖିଥିବା ଜଣାପଡ଼ିବାରୁ ତାଙ୍କୁ ଶାସ୍ତି ଦେବାପାଇଁ ଅବଧାନ ଉଦ୍ୟତ ହେଲେ । ମଧୁ କହିଲେ, "ଆଜ୍ଞା, ମୁଁ ଲେଖିଛି ସତ, କିନ୍ତୁ ମୁଁ ଅପମାନ ଦେବା ଶବ୍ଦ ଲେଖିନାହିଁ । ଆପଣ ଗତକାଲି 'ଗୋଶାଳା' ଓ 'ହସ୍ତୀଶାଳା'ର ଅର୍ଥ ବୁଝାଉଥିଲେ । ସେହି ଅର୍ଥ ଅନୁସାରେ ମୁଁ ଆମର ଏ ଚଟଶାଳୀକୁ ଅବଧାନଶାଳା ଲେଖିଲି ।" ଅବଧାନେ ଏହା ପରେ ଆଉ କିଛି କହିଲେ ନାହିଁ ।

ଦିନେ ଅବଧାନେ ପାଠ ପଢ଼ାଉ ପଢ଼ାଉ ଢୁଲାଇପଡ଼ିଲେ ଓ ପାଟି ମେଲା କରି ନିଶ୍ୱାସ ଛାଡ଼ିଲେ । ପିଲାଏ ଏ ଦୃଶ୍ୟ ଦେଖି ଖୁବ୍ କୌତୁକ ଅନୁଭବ କଲେ । ନିଜ ନିଜ ଭିତରେ ଠେଲାଠେଲି ଓ ଚିମୁଟାଚିମୁଟି ହେଲେ । ମଧୁ ଧୀରେ ଧୀରେ ଅବଧାନଙ୍କ ବସିବା

ସ୍ଥାନ ପାଖକୁ ଆସି ଅବଧାନଙ୍କ କଠଉ ହାଲରୁ ପଟେ ନେଇଗଲେ ଓ କଠଉରେ ଟେକାଟେ ବାନ୍ଧି ପୋଖରୀ ଭିତରେ ପକାଇଦେଲେ । ଅବଧାନଙ୍କର ନିଦ ଭାଙ୍ଗିବାରୁ ସେ କଠଉ ଖୋଜିଲେ । ପୋଖରୀ ଭିତରେ ପଡ଼ିଥିବା କଠଉକୁ ପରେ ପିଲାମାନେ କାଢ଼ିଆଣି ଅବଧାନଙ୍କୁ ଦେଇଥିଲେ । ମଧୁ ଏ କାଣ୍ଡ କରିଥିବେ ବୋଲି ଅବଧାନେ ସନ୍ଦେହ କରିଥିଲେ ମଧ୍ୟ ଅନ୍ୟ ଛାତ୍ରମାନେ ତାଙ୍କ ନାମ କହି ନ ଥିଲେ । ଅବଧାନଙ୍କ ବେତମାଡ଼ର ଭୟ ସମସ୍ତଙ୍କୁ ଚୁପ୍ କରିଦେଇଥିଲା । ମଧୁ ଅବଧାନଙ୍କୁ କହିଲେ, "ଆଜ୍ଞା, ଆପଣ ତ ଏପରି ବହୁତ ଥର କଠଉ ହଜାଉଛନ୍ତି, ଏଥର ମଧ୍ୟ ହଜେଇଥିବେ । ପୋଖରୀରେ ଖୋଜିଲେ ମିଳିଯାଇପାରେ ।" ଅବଧାନେ ଯାହା ସନ୍ଦେହ କରିଥିଲେ ତାହା ସତ୍ୟବୋଲି ପ୍ରମାଣିତ ହେଲା । ସେ ମଧୁକୁ ଧମକାଧମକି କଲେ ଏବଂ ଭବିଷ୍ୟତରେ ଏପରି ନ କରିବାକୁ କହିଲେ ।

ମଧୁବାବୁଙ୍କ ପିଲାଦିନର କଥା । ମଧୁବାବୁ ସେତେବେଳେ ୧୫ କି ୧୬ ବର୍ଷର ବାଳକ । ଏଣ୍ଟ୍ରାନ୍ସ ପାସ୍ (୧୮୬୪ରେ) କରିଥାନ୍ତି । ମଧୁବାବୁଙ୍କ ବାପା ଚୌଧୁରୀ ରଘୁନାଥ ଦାସ କଟକରେ ଓକିଲ ହୋଇଥାନ୍ତି । ସେତେବେଳେ ପାର୍ସୀ କଚେରି ଭାଷା ହୋଇଥାଏ । ପଟିଆରାଜାଙ୍କର ଓକିଲ ଥିବାରୁ ମାଲମୋକଦ୍ଦମା ପଡ଼ିଲେ ପଟିଆ ରାଜା ଓକିଲଙ୍କୁ ଡକାଇ ପଠାନ୍ତି । ପଟିଆ ରାଜାଙ୍କ ହାତୀ ଉପରେ ଚଢ଼ି ଓକିଲବାବୁ କଟକରୁ ପଟିଆ ଯାଆନ୍ତି । ସେଠାରେ ବେଳେ ବେଳେ ଦୁଇ ତିନି ଦିନ ମଧ୍ୟ ରହିବାକୁ ପଡ଼େ ।

ମଧୁବାବୁ ଏଣ୍ଟ୍ରାନ୍ସ ପାସ କରିବା ପରେ ଥରେ ବାପାଙ୍କ ସାଙ୍ଗରେ ପଟିଆ ଯାଇଥିଲେ । ରାଜା ରଘୁନାଥ ଦେବ ବାପ ପୁଅଙ୍କୁ ବହୁ ଆଦର ଅଭ୍ୟର୍ଥନା କରି ରଖିଥିଲେ । ଛୁଟି ହୋଇଥିବାରୁ ମଧୁଙ୍କୁ ମଧ୍ୟ ଆଉ ଅଧିକା କିଛୁ ଦିନ ରହିବାକୁ ରାଜା ଅନୁରୋଧ କରିଥିଲେ । ମଧୁଙ୍କ ପ୍ରତ୍ୟୁତ୍ପନ୍ନମତିତା ଓ ଜିଜ୍ଞାସୁ ସ୍ୱଭାବ ଦେଖି ରଘୁନାଥ ଦେବ ବଡ଼ ଖୁସି ହୋଇଥିଲେ । ପ୍ରଥମ ଦେଖାରେ ମଧୁବାବୁଙ୍କ ପ୍ରତି ରାଜାଙ୍କର ସ୍ନେହ ବୃଦ୍ଧି ପାଇଥିଲା । ପିଲାଟି ଅତି ବୁଦ୍ଧିମାନ୍, ନିର୍ଭୀକ ଓ ଜିଜ୍ଞାସୁ ଥିବାରୁ ଏ ଯେ ଦିନେ ଜଣେ ବିଖ୍ୟାତ ଲୋକ ହେବ ଏ ଧାରଣା ରାଜାଙ୍କର ହୋଇଥିଲା ।

ମଧୁବାବୁଙ୍କର ସେତେବେଳେ ଚୁଟି ନଥାଏ । ଚୁଟି ନଥିବା ସେ କାଳରେ ଏକ 'ଅଜାଡ଼ିଆ' 'ଚଗଲା' ସ୍ୱଭାବ ବୋଲି ଧରାଯାଉଥିଲା । ମଧୁବାବୁଙ୍କର ଚୁଟି ନଥିବା ଦେଖି ଓକିଲଙ୍କୁ ରାଜା ପଚାରିଲେ, "ଆପଣଙ୍କ ପୁଅର ମୁଣ୍ଡରେ ଚୁଟି ନାହିଁ ? କାଟି ଦେଇଛନ୍ତି କି ?" ମଧୁବାବୁ ଉତ୍ତର କଲେ—"ସ୍କୁଲରେ ବଙ୍ଗାଳୀ ପିଲାମାନେ ମୋର ବେଣ୍ଡିକୁ ଦେଖି ଥଟ୍ଟା କରୁଥିଲେ, ବେଣ୍ଡି ଧରି ଟାଣିଦେଉଥିଲେ । 'ଝୁଟିବାନ୍ଧା ଉଡ଼େ' ବୋଲି ପରିହାସ କରୁଥିଲେ । ଦିନେ ମୁଁ ଶୋଇଥିବାବେଳେ ମୋର ଜଣେ ବିଦ୍ୟାର୍ଥୀ ସାଙ୍ଗ ମୋ ବେଣ୍ଡିକୁ ମୂଳରୁ କାଟିପକାଇଲା ।" ରାଜା ଏହା ଶୁଣି ମନରେ ଦୁଃଖ କରି କହିଲେ, "ଦେଖ, ବଙ୍ଗାଳୀ ଚଗଲା ଟୋକାଙ୍କ ବଦମାସୀ ! ଟିକିଏ ଭଲ ଆଖିରେ ଦେଖୁନାହାନ୍ତି ।"

ରାଜାଙ୍କର ଘୋଡ଼ାଶାଳରେ ଭଲ ଭଲ ଘୋଡ଼ା କେତୋଟି ଥାଆନ୍ତି । ମଧୁ ସକାଳୁ ଉଠି ନଜେ ନଜେ ଘୋଡ଼ାକୁ ଫିଟେଇ ଦୌଡ଼ କରନ୍ତି, ପଟିଆର ବଣ ଜଙ୍ଗଲ ଜମିବାଡ଼ି ସବୁ ଜାଗାବୁଲି ଦେଖନ୍ତି । ପୂର୍ବେ ପଟିଆ ରାଜବଂଶର କେତେ ଜଣ ରାଣୀ ସତୀ ହୋଇଥିଲେ । ସେମାନଙ୍କ ସ୍ମୃତିଚଉରା ବର୍ତ୍ତମାନ ସୁଦ୍ଧା ଚନ୍ଦନଗଡ଼ ନିକଟରେ ଅଛି । ପଟିଆ ଲୋକେ ସତୀ ସ୍ମୃତିକୁ ସ୍ମରଣ କରି ଗର୍ବ ଅନୁଭବ କରନ୍ତି । ମଧୁବାବୁ ଶୁଣିଥିଲେ ତାଙ୍କ ପ୍ରପିତାମହୀ ସତୀ ହୋଇଥିଲେ । ପଟିଆର ଏହି ସ୍ମୃତି ଚିହ୍ନ ଦେଖି ତାଙ୍କ ନିଜ ବଂଶର ଗୌରବ ଚିହ୍ନଟି ତାଙ୍କ ଚକ୍ଷୁ ସମ୍ମୁଖରେ ନାଚିଗଲା । ସେ ମଧ୍ୟ ନିଜ ବଂଶର ଗୌରବ ସ୍ମରଣ କରି ଗୌରବାନ୍ୱିତ ହେଲେ । ପରବର୍ତ୍ତୀ ସମୟରେ ମଧୁବାବୁ ବହୁତ ଥର ତାଙ୍କ ପ୍ରପିତାମହୀ ସତୀ ହୋଇଥିବା ପ୍ରସଙ୍ଗ ସଭାସମିତିରେ ଅବତାରଣା କରି ଗର୍ବ ଅନୁଭବ କରୁଥିଲେ ।

ରାଜାଙ୍କର ନଅର ବାଡ଼ିକୁ ଲାଗି ଶିକାର ଘର । ନଅର ପଛଆଡ଼େ ଘୋର ଜଙ୍ଗଲ । ମହାବଳ, କଲରାପତରିଆ ବାଘ, ହାତୀ, ଗୟଳ ପ୍ରଭୃତି ରାତିରେ ନଅର ବାଡ଼ି ପର୍ଯ୍ୟନ୍ତ ଆସନ୍ତି । ଶିକାର ଘରେ ବସି ରାଜା ଓ ଶିକାରୀମାନେ ଶିକାର କରନ୍ତି, ଜନ୍ତୁ ମାରନ୍ତି । ମଧୁ ଏକା ଏକା ଶିକାର ଘରେ ବସି ଜୀବଜନ୍ତୁ ବୁଲାଚୁଲା କରୁଥିବା ଦେଖି ଆନନ୍ଦ ଉପଭୋଗ କରନ୍ତି । ଶିକାର ଘରେ ମଧୁ ବସୁଥିବା ରାଜା ଜାଣିପାରିଲେ । ମଧୁଙ୍କର ଶିକାର କୌଶଳ ଜାଣିବା ପ୍ରବୃତ୍ତିକୁ ପସନ୍ଦ କଲେ ମଧ୍ୟ ତାଙ୍କ ନିରାପତ୍ତା ସମ୍ବନ୍ଧରେ ରାଜା ଉଦ୍‌ବିଗ୍ନ ହୋଇପଡ଼ିଲେ । ଶିକାରୀଙ୍କ ସଙ୍ଗରେ ନେଇ ଶିକାର ଘରକୁ ଯିବାପାଇଁ ରାଜା ପରାମର୍ଶ ଦେଲେ । ବନ୍ଧୁକାଦିର ବ୍ୟବହାର ଶିକାରୀମାନେ ମଧୁଙ୍କୁ ଶିଖାଇଥିଲେ । ଘୋଡ଼ାଚଢ଼ା, ହାତୀଚଢ଼ା, ଶିଖର ଚଣ୍ଡୀ ପାହାଡ଼ରେ ବଣଭୋଜି, ପଟିଆ ଦେହରେ ନୌକାବିହାର, ଶିକାର, ବନ୍ଧୁକାଦି ଚାଳନା ଦିଗରେ ମଧୁଙ୍କ ପ୍ରବୃତ୍ତି ରହିଥିବା ଦେଖି ଶିକାରପ୍ରିୟ ରାଜା ରଘୁନାଥ ଅତ୍ୟନ୍ତ ଖୁସି ହୋଇଥିଲେ ଏବଂ ମଧୁବାବୁଙ୍କ ପିଠିରେ ହାତମାରି ହସି ହସି କହୁଥିଲେ, "ସାବାସ୍, ଚଗଲା !" ଏହି ଦିନଠାରୁ ବାଳକ ମଧୁଙ୍କୁ ସେଠାର ଲୋକେ 'ଚଗଲା ମଧୁ' ବୋଲି ଶ୍ରଦ୍ଧାରେ କହୁଥିଲେ ।

ମଧୁଙ୍କ ପ୍ରଖର ବୁଦ୍ଧି ଦେଖି ରାଜା ତାଙ୍କ ବାପାଙ୍କୁ କହୁଥିଲେ, "ଓକିଲବାବୁ, ମଧୁକୁ ଘରକରିବାକର ଭିତରେ ପୂରେଇବେ ନାହିଁ । ଓକିଲାତି କରୁ, ସେ ଭଲ ଓକିଲ ହେବ । ଆମର ସବୁ ମକଦ୍ଦମା ବୁଝିବ ।" ରାଜାଙ୍କ ଉପଦେଶ ସତ୍ୟରେ ପରିଣତ ହେଲା । ଘରକରେ ମଧୁବାବୁ ବେଶିଦିନ ରହିଲେ ନାହିଁ । ଓକିଲାତି ତାଙ୍କୁ ଟାଣିଲା । ସେ ଓଡ଼ିଶାରେ କାହିଁକି ସମଗ୍ର ଭାରତବର୍ଷରେ ଜଣେ ବିଖ୍ୟାତ ଓକିଲ ରୂପେ ଖ୍ୟାତି ଲାଭ କରିଥିଲେ ।

ପିତାଙ୍କ ସହିତ ପଟିଆ ଯାଇଥିବାବେଳେ ବାଳକ "ଚଗଲା ମଧୁ" କାହାକୁ କିଛି ନକହି ସ୍ଥାନୀୟ ଜଗନ୍ନାଥ ମନ୍ଦିର ଉପରେ ଚଢ଼ି ଚକ୍ର ଉପରେ ପତାକା ବାନ୍ଧିବାକୁ ଚେଷ୍ଟା କରିଥିଲେ । ସେ ଅଧା ପର୍ଯ୍ୟନ୍ତ ଚଢ଼ିଥିବା ଅବସ୍ଥାରେ ତାଙ୍କ ବାପାଙ୍କ ଦୃଷ୍ଟି ପଡ଼ିଲା । ବାପା

ଗାଳିଦେବାରୁ ସେ ଓହ୍ଲାଇ ଆସିଲେ । ତାଙ୍କର ସାହସକୁ ସ୍ଥାନୀୟ ଲୋକେ ଖୁବ୍ ପ୍ରଶଂସା କରିଥିଲେ ।

ଖ୍ରୀ: ୧୮୬୪ ଦୋଳପୂର୍ଣ୍ଣିମା ଉପଲକ୍ଷେ ମେଳନ ହେଉଥିଲା । ପଟିଆ ରାଜାଙ୍କ ନିମନ୍ତ୍ରଣ କ୍ରମେ ମଧୁବାବୁଙ୍କୁ ସାଙ୍ଗରେ ନେଇ ତାଙ୍କ ପିତା ପଟିଆ ଯାଇଥିଲେ । ସେଠାରେ ଉତ୍ସବ ଦେଖିବାକୁ କିଛି ଦିନ ଅବସ୍ଥାନ କରିଥିଲେ । ଏ ଅବସରରେ ସେ ପଟିଆଗଡ଼ ନିକଟସ୍ଥ ପ୍ରସିଦ୍ଧ ଶିଖର ଚଣ୍ଡୀ ପର୍ବତ ଉପରକୁ ଯାଇ ଶିଖରଚଣ୍ଡୀ ଠାକୁରାଣୀଙ୍କୁ ଦର୍ଶନ କରିଥିଲେ । ଶିଖରଚଣ୍ଡୀ ଏକ ପ୍ରାଚୀନ ଶକ୍ତିପୀଠ । ଆଖପାଖର ବହୁଲୋକ ପାହାଡ଼ ଉପରକୁ ଯାଇ ଠାକୁରାଣୀଙ୍କୁ ଦର୍ଶନ କରନ୍ତି ଏବଂ ମେଳା ମହୋତ୍ସବ ମଧ୍ୟ କରନ୍ତି । ମଧୁବାବୁ ଏ ପ୍ରାଚୀନ କୀର୍ତ୍ତିଟିକୁ ଦେଖି ସନ୍ତୋଷ ଲାଭ କରିଥିଲେ ଏବଂ ଏହାର ପ୍ରାଚୀନତମ ଇତିହାସ ଜାଣିବା ନିମନ୍ତେ ଇଚ୍ଛୁକ ହୋଇଥିଲେ ।

ପଟିଆ ଏକ ପ୍ରାଚୀନ ଅଞ୍ଚଳ ଥିବାରୁ ଏହା ନିକଟରେ ବହୁ ପ୍ରାଚୀନ ଐତିହାସିକ ଭଗ୍ନାବଶେଷ ରହିଛି । ଚୂଡ଼ଙ୍ଗ ଦିହ, ପଟିଆ ଦିହ, ଚୂଡ଼ଙ୍ଗ ଗଡ଼ ବା ଯୁଦ୍ଧଗଡ଼, ବାରଙ୍ଗ ଗଡ଼ ବା ସାରଙ୍ଗ ଗଡ଼ ଦେଖିବା ପାଇଁ ମଧୁଙ୍କର ଇଚ୍ଛା ହେବାରୁ ରାଜା ତାହାର ବ୍ୟବସ୍ଥା କରିଦେଇଥିଲେ ।

ପଟିଆ ଓ ତନ୍ନିକଟବର୍ତ୍ତୀ ଦାରୁଠେଙ୍ଗ, ରଘୁନାଥପୁର ପ୍ରଭୃତି ସ୍ଥାନ ଖୋର୍ଦ୍ଧାର ପ୍ରସିଦ୍ଧ ପାଇକବିଦ୍ରୋହର କେତେକ ପ୍ରସିଦ୍ଧ ନେତାଙ୍କର ଜନ୍ମଭୂମି । ଏହି ଚୂଡ଼ଙ୍ଗଗଡ଼, ସାରଙ୍ଗ ଗଡ଼ ପ୍ରଭୃତି ଅଞ୍ଚଳର ଟାଙ୍ଗି ଉପରେ ବିଦେଶୀ ଆକ୍ରମଣକାରୀମାନଙ୍କ ସହ ଓଡ଼ିଆ ପାଇକମାନଙ୍କର ବହୁତ ଥର ଯୁଦ୍ଧ ହୋଇଥିଲା । ଓଡ଼ିଶା ରାଜ୍ୟ ଭିତରେ ଗୃହବିବାଦରୁ ମଧ୍ୟ ବହୁତ ଯୁଦ୍ଧ ଏଠାରେ ହୋଇଯାଇଥିଲା । ଏ କଥା ରାଜା ଓ ଲୋକଙ୍କଠାରୁ ଶୁଣି ମଧୁଙ୍କର କୌତୂହଳ ଜାଗ୍ରତ ହୋଇଥିଲା । ସେ ଏସବୁ ପ୍ରସିଦ୍ଧ ଅଞ୍ଚଳ ବୁଲି ଦେଖିଥିଲେ । ସ୍ଥାନୀୟ କେତେଜଣ ପ୍ରାଚୀନ ବୃଦ୍ଧ ଓ ବୃଦ୍ଧାଙ୍କଠାରୁ ବିଭିନ୍ନ ଯୁଦ୍ଧକାହାଣୀର ସୂଚନାମୂଳକ ପ୍ରବାଦ, ଢଗ, କ୍ଷୁଦ୍ର ଗୀତ ଶୁଣିଥିଲେ । ଏମାନେ ବିଦ୍ରୋହ ସମୟରେ ପିଲା ଥିଲେ । ପରବର୍ତ୍ତୀ ସମୟରେ ବୃଦ୍ଧ ମଧୁବାବୁ ଏହି ଐତିହାସିକ ଉପାଦାନଗୁଡ଼ିକ ସଂଗ୍ରହ କରିବାପାଇଁ ଚେଷ୍ଟା କରିଥିଲେ ଏବଂ କେତେକ ଉତ୍ସାହୀ ଯୁବକଙ୍କୁ ଏଥିରେ ଲାଗିଯିବାପାଇଁ ଉପଦେଶ ଦେଇଥିଲେ । ତାଙ୍କର ବୃଦ୍ଧ ବୟସର ଉପଦେଶ ଯୁବକମାନଙ୍କୁ ମଧ୍ୟ ଉତ୍ସାହିତ କରିଥିଲା । ପଟିଆନିବାସୀ ବିଶିଷ୍ଟ ଓକିଲ ଶ୍ରୀ ବ୍ରଜବନ୍ଧୁ ଦାସ ମଧୁବାବୁଙ୍କ ନିର୍ଦ୍ଦେଶମତେ କେତେଗୁଡ଼ିଏ ଉପାଦାନ ସଂଗ୍ରହ କରିଥିଲେ । ଯେଉଁ ଯେଉଁ ବୃଦ୍ଧ ଓ ବୃଦ୍ଧାମାନଙ୍କଠାରୁ ମଧୁ ଗୀତ, ଢଗ ଇତ୍ୟାଦି ପିଲାଦିନେ ଶୁଣିଥିଲେ, ସେମାନଙ୍କ ନାମଧାମ ମଧ୍ୟ ମନେରଖିଥିଲେ । ମଧୁ ବହୁ ଢଗ ଓ ଗୀତ ମଧ୍ୟ ମୁଖସ୍ଥ କରିଥିଲେ ଏବଂ ବେଳେ ବେଳେ ଏଥିରୁ କିଛି ବୋଲି ପୂର୍ବଗୌରବ କାହାଣୀ ଶୁଣାଉଥିଲେ । ପଟିଆର କେତେକ ପ୍ରାଚୀନ ଐତିହାସିକ ସ୍ଥାନ ଦେଖି ସେ ସମ୍ବନ୍ଧରେ ସବିଶେଷ ବିବରଣ ଜାଣିବା ପାଇଁ ଇଚ୍ଛା

କରିଥିଲେ । ବୋଇତବନ୍ଦାବାଙ୍କ, କଠଉଚନ୍ଦ୍ର ଝାଙ୍କି, ଆଙ୍ଗୁଠିରେ ହାଲିବା ବଡ଼ ପଥର ପ୍ରଭୃତି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ପଟିଆକୁ ଖ୍ରୀ: ୧୮୬୪ରେ ଯାଇଥିଲାବେଳେ ମଧୁବାବୁ ସେଠାରେ ମହିମାଧର୍ମ ସ୍ଥାପୟିତା ମହିମାଗୋସାଇଁଙ୍କୁ ଦେଖିଥିଲେ । ଦୋଳପୂର୍ଣ୍ଣିମୀ ଦିନ ମହିମାଗୋସାଇଁ ଦାରୁଠେଙ୍ଗାକୁ ଆସି ପଟିଆରେ ଉପସ୍ଥିତ ହୋଇଥିଲେ । ଗୋସାଇଁଙ୍କ ପ୍ରବଚନ ଶୁଣିବା ସୌଭାଗ୍ୟ ମଧ୍ୟ ସେ ଲାଭକରିଥିଲେ । ଏହି ଅଭିନବ ଧର୍ମସଂସ୍କାରକଙ୍କ ଆଚାର ବ୍ୟବହାର ଓ ଧାର୍ମିକ ଚିନ୍ତା, ଗୋଷ୍ଠୀବିଧାନ ପ୍ରଭୃତିରେ ଉଦାରତା ଦେଖି ସେ ମୁଗ୍ଧ ହୋଇଯାଇଥିଲେ ।

ପରବର୍ତ୍ତୀ ସମୟରେ ସେ କହୁଥିଲେ ଯେ ମହିମାଧର୍ମ ପ୍ରବର୍ତ୍ତକ ଯଦି ଓଡ଼ିଶାରେ ଜନ୍ମ ନ ହୋଇ ମହାରାଷ୍ଟ୍ର କି ପଞ୍ଜାବ କି ବଙ୍ଗରେ ଜନ୍ମଗ୍ରହଣ କରିଥାଆନ୍ତେ, ତାହାହେଲେ ସେ ଆର୍ଯ୍ୟସମାଜ ପ୍ରତିଷ୍ଠାତା ଦୟାନନ୍ଦ ସରସ୍ୱତୀ, ବ୍ରାହ୍ମସମାଜ ପ୍ରତିଷ୍ଠାତା ରାମମୋହନ ରାୟଙ୍କ ପରି ଖ୍ୟାତି ଓ ସମ୍ମାନ ଲାଭକରିଥାଆନ୍ତେ । କଲିକତା ଓ ଅନ୍ୟାନ୍ୟ ପ୍ରସିଦ୍ଧ ସ୍ଥାନମାନଙ୍କରେ ମଧ୍ୟ ସେ ଏହି ମତ ବନ୍ଧୁମଣ୍ଡଳୀଙ୍କ ଆଗରେ ପ୍ରକାଶ କରୁଥିଲେ ଏବଂ ଏହା ଓଡ଼ିଶାର ଏକ ଗୌରବ ବୋଲି କହୁଥିଲେ । ଉଦାର ଜଗନ୍ନାଥ ଧର୍ମ ଓ ମହିମା ଧର୍ମ ଏ ଉତ୍କଳ ମାଟିରେ ଜନ୍ମଲାଭ କରିଥିବାରୁ ଏହା ଓଡ଼ିଶାର ପୃଥିବୀକୁ ବିଶିଷ୍ଟ ଦାନ ବୋଲି ମଧ୍ୟ କହୁଥିଲେ । ଏହି କୈଶୋର ବୟସରୁ ମଧୁବାବୁଙ୍କର ଉତ୍କଳର ପ୍ରାଚୀନ ଗୌରବ ପ୍ରତି ଶ୍ରଦ୍ଧା ଜାତ ହୋଇଥିଲା । ତୁଳସୀ ଦୁଇପତ୍ରରୁ ବାସେ; ପରବର୍ତ୍ତୀ କାଳରେ ଏହି ମାତୃଭୂମିପ୍ରୀତି ତାଙ୍କଠାରେ ପୂର୍ଣ୍ଣଭାବରେ ବିକଶିତ ହୋଇଥିଲା ।

## ୩ । ମଧୁବାବୁଙ୍କ ବାଲ୍ୟଶିକ୍ଷା

ଇଂରେଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଅଧିକାର କରିବାପରେ ରାଜ୍ୟ ଶାସନର ବିଭିନ୍ନ ଦିଗ ପ୍ରତି ଦୃଷ୍ଟି ଦେଇଥିଲେ । ସେତେବେଳେ ବାଲେଶ୍ୱର, କଟକ, ପୁରୀକୁ ମିଶାଇ ଗୋଟିଏ ଜିଲ୍ଲାରେ ପରିଣତ କରାହୋଇଥିଲା । ପ୍ରଥମେ ଦୁଇଜଣ ଯୁଗ୍ମ କମିଶନରଙ୍କୁ ନିଯୁକ୍ତକରି ସେମାନଙ୍କ ହସ୍ତରେ ଓଡ଼ିଶା ଅଞ୍ଚଳର ସମଗ୍ର ଶାସନଭାର ଅର୍ପିତ ହୋଇଥିଲା । ଏହା ପରେ ଏହି ଯୁଗ୍ମ କମିଶନରଙ୍କ ପରିବର୍ତ୍ତେ କଲେକ୍ଟର ନିଯୁକ୍ତ ହେଲେ ଏବଂ ଉନବିଂଶ ଶତାବ୍ଦୀର ପ୍ରଥମ ପାଦ ଶେଷହେବା ପୂର୍ବରୁ ସ୍ୱତନ୍ତ୍ର ଓଡ଼ିଶା ଡିଭିଜନ ଗଠିତ ହୋଇ ଜଣେ କମିଶନର ନିଯୁକ୍ତ ହେଲେ ।

ଇଂରେଜ ଶାସକମାନେ ପ୍ରଥମ ଅବସ୍ଥାରେ ପାର୍ସି ଭାଷାରେ ସରକାରୀ କାର୍ଯ୍ୟାନୁଷ୍ଠାନ କରୁଥିଲେ । ଓଡ଼ିଆମାନଙ୍କ ଭିତରେ ଇଂରେଜ ଶାସନ ପଦ୍ଧତିରେ ଅଭିଜ୍ଞ ଲୋକ ନଥିବାରୁ ଇଂରେଜ ଶାସକମାନେ ପରଦେଶୀଙ୍କ ଉପରେ ନିର୍ଭର କରୁଥିଲେ । କଲିକତାରେ ପ୍ରଦେଶର ରାଜଧାନୀ ଥିବାରୁ ବଡ଼ ବଡ଼ ହାକିମମାନେ କଲିକତାରୁ ଆସୁଥିଲେ । ଓଡ଼ିଶାର ଓଡ଼ିଆମାନେ ସରକାରୀ କାର୍ଯ୍ୟ କରିବାପାଇଁ ଅନୁପଯୁକ୍ତ ଥିବାର କାରଣ ଦେଖାଇ ବହୁ ବଙ୍ଗୀୟଙ୍କୁ ଓଡ଼ିଶା ବାହାରୁ ଆଣି ସରକାରୀ ଅଫିସ୍‌ରେ ନିଯୁକ୍ତ କରୁଥିଲେ । ଅବସ୍ଥା ଏପରି ଥିଲା ଯେ, ଇଂରେଜ ହାକିମମାନଙ୍କ ମନରେ ଧାରଣା ହୋଇଥିଲା, ମୋହରିର ବା କିରାନିକାମକୁ ଯୋଗ୍ୟ ହେବା ଭଳି ଜଣେ ହେଲେ ଓଡ଼ିଆ ମିଳିବା କଷ୍ଟକର ।

୧୮୦୫ରେ, ଓଡ଼ିଶା ଅଧିକାରର ଦୁଇବର୍ଷ ପରେ, ଇଂରେଜ ଶାସକମାନେ ଓଡ଼ିଆ ଭାଷାକୁ ଅନ୍ୟତମ ସରକାରୀ ଭାଷାରୂପେ ଗ୍ରହଣ କରିବାରୁ ଓଡ଼ିଆଙ୍କର ଚାକିରି ପାଇବା ଟିକିଏ ସୁବିଧା ହୋଇଥିଲା । ଓଡ଼ିଆ ସହିତ ପାର୍ସିଭାଷା ମଧ୍ୟ ସରକାରୀ ଭାଷାରୂପେ ଚାଲୁଥିଲା । ଏହି ଆଦେଶ ପରେ ବହୁ ସଂଖ୍ୟାରେ ଓଡ଼ିଆ ମୋହରିର ବା କିରାନି ଆବଶ୍ୟକ ପଡ଼ିଲେ । କିନ୍ତୁ କାଗଜ ଉପରେ କଲମରେ ଲେଖିବା ଭଳି ଓଡ଼ିଆଲୋକ ବହୁ ସଂଖ୍ୟାରେ ମିଳୁ ନଥିଲେ । ବହୁ ଲୋକ ତାଳପତ୍ରରେ ଲେଖନୀ ସାହାଯ୍ୟରେ ଲେଖି ଓ ପଢ଼ିପାରୁଥିଲେ ମଧ୍ୟ କଲମରେ କାଗଜ ଉପରେ ଲେଖିବାକୁ ଅସମର୍ଥ ଥିଲେ । ଏହି କାରଣରୁ ପ୍ରାୟ ୨୦ ବର୍ଷ ଓଡ଼ିଆମାନଙ୍କ ପାଇଁ ସରକାରୀ ଅଫିସ୍ ଚାକିରିର ଦ୍ୱାର ବନ୍ଦହୋଇଯାଇଥିଲା ।

୧୮୨୧ରେ ଦୁଃଖକରି ଜଣେ ମାଜିଷ୍ଟ୍ରେଟ ସରକାରଙ୍କୁ ଜଣାଇଥିଲେ, "ଜଣେ ହେଲେ ପ୍ରକୃତ ଓଡ଼ିଆ ମାସକୁ ଦଶଟଙ୍କା ଦରମା ପାଉନାହାନ୍ତି । ସରକାରୀ ଚାକିରିଆଙ୍କ ଭିତରେ ଅଧିକାଂଶ ସ୍ଥାୟୀ ବାସିନ୍ଦା ବଙ୍ଗାଳୀ ବା ମୁସଲମାନ୍ । ମୁଁ ସବୁ ସମୟରେ ଓଡ଼ିଆମାନଙ୍କୁ ଅଗ୍ରାଧିକାର ଦେଉଛି । କିନ୍ତୁ ବର୍ତ୍ତମାନ ସୁଦ୍ଧା ଜଣେ ହେଲେ କେହି ଓଡ଼ିଆ ମୁଁ ଦେଖୁନାହିଁ ଯେ କି ଜଣେ ସାଧାରଣ ମୋହରିର ହେବାକୁ ଯୋଗ୍ୟ ।" ଏ ଧାରଣା କେତେକାଂଶରେ ସତ୍ୟ । ସରକାରୀ ଚାକିରି ପାଇବାପାଇଁ ଯେଉଁ କୌଶଳ ଆବଶ୍ୟକ, ତାହା ଅଧିକାଂଶ ଓଡ଼ିଆ ଜାଣୁନଥିଲେ ।

କ୍ରମେ ଓଡ଼ିଶାରେ ନୂତନ ପଦ୍ଧତିର ବିଦ୍ୟାଳୟ ସ୍ଥାପିତ ହେବାକୁ ଲାଗିଲା । ୧୮୩୮ ବେଳକୁ ମିଶନାରୀମାନଙ୍କ ଯତ୍ନରେ ଦି-ଚାରୋଟି ସ୍କୁଲ ଚାଲୁଥିଲା । ସ୍ଥାନେ ସ୍ଥାନେ ସଂସ୍କୃତ ପାଠଶାଳା ଓ ଚାଟଶାଳୀ ଥିଲା, କିନ୍ତୁ ସେଠାରେ ଶାସନୋପଯୋଗୀ ଶିକ୍ଷାର ଅଭାବ ଥିଲା । ୧୮୩୮ରେ ସରକାର ନିଜେ ସ୍କୁଲ ସ୍ଥାପନ କରିବା ଦିଗରେ ଅଗ୍ରଣୀ ହେଲେ । ସେହି ବର୍ଷ ପୁରୀରେ ଏକ ଇଂରାଜୀ ସ୍କୁଲ ଓ ଏକ ସଂସ୍କୃତ ସ୍କୁଲ ସ୍ଥାପନ କଲେ । କିନ୍ତୁ ଜନସାଧାରଣ ଏଥିରେ ଯଥେଷ୍ଟ ଆଗ୍ରହ ପ୍ରକାଶ କରିନଥିଲେ । ଅନ୍ଧବିଶ୍ୱାସ ଓ ରକ୍ଷଣଶୀଳତାହିଁ ଏହାର କାରଣ । ଲୋକେ ଭାବୁଥିଲେ, ସରକାରସ୍ଥାପିତ ସ୍କୁଲମାନଙ୍କରେ ବିଦ୍ୟା ଶିକ୍ଷା କଲେ ଜାତି

ଯିବ, ଇଂରେଜୀ ପାଠ ପଢ଼ିଲେ ଖ୍ରୀଷ୍ଟିୟାନ୍ ହୋଇଯିବେ । ଏହିପରି କେତେକ ଅନ୍ଧବିଶ୍ୱାସ ଥିଲା । ଏହି କାରଣରୁ ଏହି ଦୁଇଟି ସ୍କୁଲ୍ ପୁରୀରେ ଅଗ୍ରଗତି କରିପାରିଲା ନାହିଁ ।

୧୮୪୧ରେ ସରକାର କଟକରେ ଏକ ଉଚ୍ଚ ଇଂରେଜୀ ସ୍କୁଲ୍ ସ୍ଥାପନ କଲେ । ପ୍ରଥମ କେତେ ବର୍ଷ ଏହି ସ୍କୁଲର ଅଗ୍ରଗତି ମଧ୍ୟ ସନ୍ତୋଷଜନକ ନଥିଲା । ୧୮୪୫ରେ—ବଡ଼ଲାଟ୍ ଲର୍ଡ ହାର୍ଡିଞ୍ଜଙ୍କ ଅମଳରେ ଦୁଇଟି ଭର୍ନାକୁଲାର ସ୍କୁଲ୍ ସ୍ଥାପିତ ହୋଇଥିଲା । ୧୮୪୮ରେ ଆଉ ଗୋଟିଏ ଭରନାକୁଲାର ସ୍କୁଲ୍ ହେଲା । ବାଲେଶ୍ୱରରେ ୧୮୫୩ରେ ଗୋଟିଏ ଇଂରାଜୀ ସ୍କୁଲ ସ୍ଥାପିତ ହେଲା, ଓ ପୁରୀର ସ୍କୁଲଟିର ପୁନରୁଦ୍ଧାର କରାଗଲା । ୧୮୫୪ରେ ବ୍ରିଟିଶ ସରକାରଙ୍କ ବିଖ୍ୟାତ ଶିକ୍ଷାନୀତିର ଆଦେଶ ଅନୁସାରେ ଭାରତରେ ପାଶ୍ଚାତ୍ୟ ଶିକ୍ଷାର ବହୁଳ ପ୍ରଚାର ଆରମ୍ଭ ହେଲା ।

ମଧୁବାବୁଙ୍କ ଜନ୍ମ ବର୍ଷ କଟକ ସ୍କୁଲ୍ ପରିଚାଳନା କମିଟିରେ ସଭ୍ୟ ଥିଲେ କମିଶନର ଗୋଲ୍ଡସ୍‌ବେରି, ସେସନସ୍ ଜଜ୍ ଗିଲମୋର, କଲେକ୍ଟର ଆର୍. ବି. ଗେରେଟ୍, ସିଭିଲସର୍ଜନ୍ ବାର୍ଟନ, ଜଏଣ୍ଟ ମାଜିଷ୍ଟ୍ରେଟ୍ ଡ୍ୟାମେଲର, ହେଡ୍ ସଦର ଅମିନ (ବର୍ତ୍ତମାନର ସବ୍‌ଜଜ୍) ବାବୁ ତାରକନାଥ ବିଦ୍ୟାସାଗର, ଆଇନ ଅଫିସର ମୌଲଭୀ ମହମ୍ମଦ ଫଜଲ୍, ଡେପୁଟି କଲେକ୍ଟର ମିର ଜାଫର୍ ଆଲ୍ଲି ଓ ଜମିଦାର ବାବୁ କାଶୀନାଥ ଚୌଧୁରୀ । ସ୍କୁଲର ହେଡ଼ମାଷ୍ଟର ଥିଲେ ଏଡ୍‌ୱାର୍ଡ୍ ଫେଲ୍, ସେକେଣ୍ଡ ମାଷ୍ଟର ନବୀନଚନ୍ଦ୍ର ଷଡ଼ଙ୍ଗୀ, ଥାର୍ଡ୍‌ମାଷ୍ଟର କାଳୀମୋହନ ଘୋଷାଲ ଓ ପଣ୍ଡିତ ଶ୍ରୀ ବିଶ୍ୱମ୍ଭର ବିଦ୍ୟାଭୂଷଣ ।

ଏଥିରୁ ଜଣାପଡ଼ିବ ଯେ, ସେତେବେଳେ ସରକାରୀ ଅଫିସରମାନେ ଅନୁଷ୍ଠାନ ଚଳାଇବାପାଇଁ ବିଶେଷଭାବରେ ଯତ୍ନ ନେଉଥିଲେ । ବେସରକାରୀ ଭଦ୍ରବ୍ୟକ୍ତିଙ୍କ ଭିତରେ ପୁରୀଜିଲ୍ଲାର ଭିଙ୍ଗାରପୁର ଜମିଦାର ଶ୍ରୀ କାଶୀନାଥ ଚୌଧୁରୀ କେବଳ ଜଣେ ପରିଚାଳନା କମିଟିର ସାଧାରଣ ସଭ୍ୟ ହୋଇଥିଲେ । ସେ ମଧ୍ୟ ସ୍କୁଲର ଉନ୍ନତି ଦିଗରେ ଯତ୍ନ ନେଉଥିଲେ । ୧୮୪୮ରେ (ମଧୁବାବୁଙ୍କ ଜନ୍ମବର୍ଷ) ଏହି ସ୍କୁଲର ପୁରସ୍କାର ବିତରଣୀ ସଭାରେ ୧୬ ଟଙ୍କାର ବହି କାଶୀନାଥ ଚୌଧୁରୀ ଓ ଅନ୍ୟ ଜଣେ ଇଉରୋପୀୟ ଭଦ୍ରବ୍ୟକ୍ତି ମିଷ୍ଟର ଅଇନ୍‌ସିଲ୍ ଦାନ କରିଥିଲେ । ସେ ବର୍ଷ ସମଗ୍ର ସ୍କୁଲରେ ୮୫ ଜଣ ଛାତ୍ର ଥିଲେ । ତା ପୂର୍ବ ବର୍ଷ ୮୧ ଜଣ ଥିଲେ । ବହୁ ଛାତ୍ର ଏହି ସ୍କୁଲରେ ପଢ଼ିବାପାଇଁ ଦରଖାସ୍ତ କରିଥିଲେ ମଧ୍ୟ ସମସ୍ତେ ସ୍ଥାନ ପାଉ ନ ଥିଲେ । କଟକ ଡିଭିଜନ୍‌ରେ ସେ ବର୍ଷ ମୋଟ ୧୧ଟି ଭର୍ଣ୍ଣାକୁଲାର ସ୍କୁଲ୍ ସରକାର ପ୍ରତିଷ୍ଠା କରିଥିଲେ ।

କଟକ ଜିଲ୍ଲାରେ : ୧ । କେନ୍ଦ୍ରାପଡ଼ା ଦୈନିକ ଛାତ୍ର ଉପସ୍ଥାନ ସଂଖ୍ୟା ୨୨ । ୨ । ହରିହରପୁର (ଜଗତ୍‌ସିଂହପୁର) ଛାତ୍ର ସଂଖ୍ୟା ୪୪ । ପୁରୀଜିଲ୍ଲା : ୧ । ପୁରୀସହର ଛାତ୍ର ସଂଖ୍ୟା ୨୦ । ୨ ଖୋର୍ଦ୍ଧା ଛାତ୍ରସଂଖ୍ୟା ୧୬ । ବାଲେଶ୍ୱର ଜିଲ୍ଲା : ୧ । ବାଲେଶ୍ୱର ସହର ଛାତ୍ରସଂଖ୍ୟା ୨୯ । ୨ । ରେମୁଣା ଛାତ୍ର ସଂଖ୍ୟା ୨୯,୩ । ଭଦ୍ରଖ ଛାତ୍ର ସଂଖ୍ୟା ୨୫ ।

ମେଦିନୀପୁରଜିଲ୍ଲା : ୧ । ମେଦିନୀପୁର ସହର ଛାତ୍ରସଂଖ୍ୟା ୨୫ । ୨ । ପିଙ୍ଗଳା ଛାତ୍ର ସଂଖ୍ୟା ୨୮।୩ । ଗଗନେଶ୍ୱର ଛାତ୍ର ସଂଖ୍ୟା ୩୯ । ଏପରି ମୋଟରେ ୧୧ଟି ସ୍କୁଲରେ ୨୮୬ ଛାତ୍ର ପଢ଼ୁଥିଲେ । ସେଥିରୁ କଟକ, ପୁରୀ, ବାଲେଶ୍ୱର ଏହି ତିନି ଜିଲ୍ଲାରେ ମୋଟ ୮ଟି ସ୍କୁଲ ଥିଲା । କଟକ ଜିଲ୍ଲାରେ ୩, ପୁରୀ ଜିଲ୍ଲାରେ ୨, ବାଲେଶ୍ୱର ଜିଲ୍ଲାରେ ୩, ଏହି ତିନି ଜିଲ୍ଲାରେ ମୋଟ ଛାତ୍ର ସଂଖ୍ୟା ୧୯୪ ।

ମଧୁବାବୁଙ୍କ ଜନ୍ମସ୍ଥାନ ସତ୍ୟଭାମାପୁର (କଟକଜିଲ୍ଲା) ନିକଟସ୍ଥ ମହାସିଂହପୁରଠାରେ ୧୮୪୭ରେ ଗୋଟିଏ ସ୍କୁଲ ସ୍ଥାପିତ ହୋଇଥିଲା । ସେ ସମୟରେ ଶିକ୍ଷାର ଅବସ୍ଥା ଯେ ନିତାନ୍ତ ନିରୁତ୍ସାହଜନକ ଥିଲା, ଏଥିରେ ସନ୍ଦେହ ନାହିଁ । ଜଗତ୍‌ସିଂହପୁର ସ୍କୁଲ ସମ୍ବନ୍ଧରେ ସ୍କୁଲ ଇନ୍‌ସପେକ୍ଟର ରିପୋର୍ଟ ଲେଖିଛନ୍ତି ଯେ, କାଲେକ୍ଟର ସେହି ସ୍କୁଲ ପରିଦର୍ଶନ କଲାବେଳେ ପ୍ରଥମ ଶ୍ରେଣୀର ଜଣେ ମାତ୍ର ଛାତ୍ର ଯଥାତଥା ପଢ଼ିପାରୁଥିଲା । ଅନ୍ୟମାନେ ମୋଟେ ପଢ଼ିପାରୁନଥିଲେ । ଏହି କାରଣରୁ ଜଗତ୍‌ସିଂହପୁର ସ୍କୁଲଟି ବନ୍ଦ ହୋଇ-ଯାଇଥିଲା । ମହାସିଂହପୁରର ଭର୍ଣ୍ଣାକୁଲାର ସ୍କୁଲଟି ୧୮୪୭ ଅଗଷ୍ଟ ୧୫ ତାରିଖରେ ସ୍ଥାପିତ ହୋଇଥିଲା ଏବଂ ସ୍କୁଲ ଘରଟି ଅବସରପ୍ରାପ୍ତ ଡେପୁଟି-କଲେକ୍ଟର ମୌଲବୀ ଅବଦୁଲ୍ ଓ୍ୟାହିଦ୍‌ଙ୍କ ଯତ୍ନରେ ନିର୍ମିତ ହୋଇଥିଲା । ସେଠାରେ ପିଲାମାନେ ଭଲ ପଢ଼ୁଥିଲେ । ସ୍କୁଲ ମାଷ୍ଟର ଉପଯୁକ୍ତ ଥିବା ଓ ମନଧ୍ୟାନ ଦେଇ ପଢ଼ାଉଥିବା ରିପୋର୍ଟରେ ଲେଖାଅଛି ।

କଟକ ଜିଲ୍ଲାରେ ସରକାରୀ ଭର୍ଣ୍ଣାକୁଲାର ସ୍କୁଲମାନଙ୍କରେ ସେହି ବର୍ଷ ଶିକ୍ଷାପାଉଥିବା ୧୧୧ ଜଣ ଛାତ୍ରଙ୍କ ଭିତରୁ ମୋଟେ ଏକଚତୁର୍ଥାଂଶ ଓଡ଼ିଆ ମାତୃଭାଷା ଥିବା ଛାତ୍ର । ଅନ୍ୟମାନେ ସମସ୍ତେ ମୁସଲମାନ କିମ୍ବା ବଙ୍ଗାଳୀ ବା ମରହଟ୍ଟା ଛାତ୍ର । ଏମାନେ ବିଦେଶୀ ଭାଷା ସ୍ୱରୂପ ଓଡ଼ିଆ ଭାଷାକୁ ଗ୍ରହଣ କରିଥିଲେ । ମୋଟ ଉପରେ, ଏହି ଅଣଓଡ଼ିଆ ଛାତ୍ରମାନେ ହିଁ ସ୍କୁଲର ସମ୍ବଳ ଥିଲେ ।

ଏହି ଦୟନୀୟ ଅବସ୍ଥା ଦେଖି କଟକ ଜିଲ୍ଲା କଲେକ୍ଟର ବାଉରିଂ ସାହେବ ମତ ବ୍ୟକ୍ତକରି ସରକାରଙ୍କୁ ଲେଖିଥିଲେ, "ଏହି ଜିଲ୍ଲାର ଓଡିଆଭାଷା ଆରମ୍ଭରୁ ଯାହା ହୋଇ ଥାଉନା କାହିଁକି, ବର୍ତ୍ତମାନ ବଙ୍ଗଳା ଭାଷାର ଏକ ଉପଭାଷା ମାତ୍ର । ବଙ୍ଗଳା ଭାଷାଠାରୁ ଓଡ଼ିଆ ଉଚ୍ଚାରଣ ଓ ଲିଖିତ ଅକ୍ଷରରେ କେବଳ ବିଶେଷଭାବେ ଅଲଗା ଦିଶୁଛି । ଅବଶ୍ୟ ମୁଁ ଜାଣେନାହିଁ ଯେ, ମୋର ଏ ମନ୍ତବ୍ୟ ମୋର ଅଧିକାର ଭିତରେ କି ନୁହେଁ, କିନ୍ତୁ ମୁଁ ନିବେଦନ କରୁଛି ଯେ, ସାଧାରଣ ନୀତି ହିସାବରେ ବ୍ରିଟିଶ ରାଜ୍ୟମାନଙ୍କ ଭିତରେ ଓଡ଼ିଆଭାଷା ଏକ ସ୍ୱତନ୍ତ୍ର ଭାଷାରୂପେ ରହିବା ଆବଶ୍ୟକ ନୁହେଁ । ବର୍ତ୍ତମାନ କେବଳ ଅଳ୍ପ କେତେକ ଲୋକ ଏହି ଭାଷାରେ କଥାବାର୍ତ୍ତା କରନ୍ତି । ଏମାନଙ୍କର ଲିଖିତ ଭାଷା ବଙ୍ଗ ପ୍ରଦେଶର ଅନ୍ୟାନ୍ୟ ଅଧିବାସୀମାନେ ଆଦୌ ବୁଝି ପାରନ୍ତି ନାହିଁ । ଅବଶ୍ୟ ଉଚ୍ଚାରଣ ଶୁଣିବା ଅଭ୍ୟାସ ହୋଇଗଲେ କଥିତଭାଷା ସହଜରେ ବୁଝି ହେବ । ଏହି କ୍ଷୁଦ୍ର ପ୍ରଦେଶଟି

କେବେହେଲେ ଏକ ସ୍ୱତନ୍ତ୍ର ସାହିତ୍ୟ ଗଠନ କରିପାରିବ ନାହିଁ । କିନ୍ତୁ ଯଦି ବଙ୍ଗଳା ଅକ୍ଷର ଓଡ଼ିଆ ଅକ୍ଷର ପରିବର୍ତ୍ତେ ପ୍ରଚଳନ କରାଯାଏ, ତାହାହେଲେ ଓଡ଼ିଶାର ଅଧିବାସୀମାନେ ଓଡ଼ିଆ ଗ୍ରନ୍ଥକୁ ଯେପରି ଭାବରେ ବୁଝି ଥାନ୍ତି ସେହିପରି ଭାବରେ ବଙ୍ଗଳାକୁ ମଧ୍ୟ ବୁଝି ପାରିବେ । ପ୍ରତ୍ୟେକ ବଙ୍ଗଳା ଅକ୍ଷରର ପ୍ରତି ଅକ୍ଷର ଓଡ଼ିଆରେ ଅଛି । ସେହି କାରଣରୁ ବିନାକଷ୍ଟରେ ଏହା କାର୍ଯ୍ୟକାରୀ କରାଯାଇପାରିବ ।"

କମିଶନର ଗୋଲ୍ଡ଼ସ ବେରି ସାହେବ ଏଥିରେ ଏକମତ ହୋଇନାହାନ୍ତି । ସେ କହିଛନ୍ତି ଯେ, କଲେକ୍ଟର ଓଡ଼ିଆଭାଷା ବଙ୍ଗଭାଷାର ଏକ ଉପଭାଷା ବୋଲି ଯାହା କହିଛନ୍ତି ତାହା ଠିକ୍ ନୁହେଁ । ଅତି ଉତ୍କୃଷ୍ଟ ପଣ୍ଡିତମାନଙ୍କର ମତ ଯେ, ସଂସ୍କୃତ ଭାଷାରୁ ଓଡ଼ିଆ-ଭାଷା ଉତ୍ପତ୍ତି ଲାଭ କରିଅଛି । ବଙ୍ଗଭାଷା ସହିତ ଏହାର ସାଦୃଶ୍ୟ ଥିଲେ ମଧ୍ୟ, ଏହା ବଙ୍ଗ-ଭାଷାରୁ ଉତ୍ପତ୍ତି ଲାଭ କରିନାହିଁ । ଅତି କମ୍‌ରେ ପ୍ରାୟ କୋଡ଼ିଏ, ତିରିଶ ଲକ୍ଷ ଲୋକଙ୍କର ଏହି ଭାଷା ମାତୃଭାଷା ଏବଂ ସୁବର୍ଣ୍ଣରେଖାଠାରୁ ଆରମ୍ଭ କରି ଦକ୍ଷିଣରେ ଗଞ୍ଜାମ ଠାରୁ ପଞ୍ଚାଶଲିଶ ମାଇଲ୍ ଦୂର ପର୍ଯ୍ୟନ୍ତ ସମସ୍ତ ରାଜ୍ୟ, ଓଡ଼ିଶାର ଗଡ଼ଜାତମହଲ ଓ ମାନ୍ଦ୍ରାଜ ପ୍ରଦେଶର ବହୁ ପାର୍ବତ୍ୟ ଜମିଦାରୀରେ ଏହି ଭାଷା ପ୍ରଚଳିତ ହେଉଅଛି । ଏହି ଭାଷା ଲୋପ ପାଇଯାଉବୋଲି କହିବା ଏକ ନିଷ୍ଫଳ ମତ ମାତ୍ର । ଏହାର ଲିଖିତ ଲିପିକୁ ପରିବର୍ତ୍ତନ କରିବା ପ୍ରସ୍ତାବ ମଧ୍ୟ ସେପରି ସାରଶୂନ୍ୟ । ଓଡ଼ିଆ ଭାଷା ଓ ଲିପି ପରିବର୍ତ୍ତନ କରିବା ଅତ୍ୟନ୍ତ ଗର୍ହିତ କାର୍ଯ୍ୟ ହେବ, ପୁଣି ଏହା ପରିବର୍ତ୍ତରେ ବଙ୍ଗଳା ଲିପି ଓ ଭାଷା ପ୍ରବର୍ତ୍ତନ କରିବା ଆହୁରି ଦୋଷାବହ । ଏହିପରି କଲେ ଏ ପ୍ରଦେଶର ସରକାରୀ ଅଫିସମାନଙ୍କରେ ବଙ୍ଗ ଦେଶର ଅଧିବାସୀମାନେ ସ୍ଥାନୀୟ ଲୋକଙ୍କୁ ଦାବିଦେବେ ଏବଂ ସେମାନଙ୍କର ନିଜର ଆଧିପତ୍ୟ ବିସ୍ତାର କରିବେ । ଏହିପରି ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ, ଏହାର ସ୍ୱାଭାବିକ ପରିଣତି ଏହାଛଡ଼ା ଅନ୍ୟ କିଛି ହୋଇନପାରେ ।"

ଶିକ୍ଷାବୋର୍ଡ଼ କମିଶନରଙ୍କ ମତକୁ ସମ୍ପୂର୍ଣ୍ଣଭାବେ ଗ୍ରହଣ କରିଥିଲେ । ଖ୍ରୀ. ୧୮୫୦ ବେଳକୁ ଓଡ଼ିଶାର ଲୋକସଂଖ୍ୟା ପ୍ରାୟ ୩୦, ୦୦, ୦୦୦ ହେବ । ବାଙ୍କୀ, ଖୋର୍ଦ୍ଧା, ଅନୁଗୁଳ ଏହି ତିନୋଟି ଖାସ୍ ଜମିଦାରୀରେ ୧୮୫୫ ଠାରୁ ୧୮୫୯ ଭିତରେ ୧୯ଟି ପ୍ରାଥମିକ ସ୍କୁଲ ସରକାର ସ୍ଥାପନ କରିଥିଲେ । ୧୮୫୯ ବେଳକୁ ସମଗ୍ର ଓଡ଼ିଶାରେ ମୋଟେ ୨୯ଟି ପ୍ରାଥମିକ ସ୍କୁଲ୍ ଥିଲା । ଲୋକଙ୍କର ଆଗ୍ରହ ଆଦୌ ନଥିଲା କହିଲେ ଚଳେ । ଏହି ସରକାରୀ ସ୍କୁଲ୍‌ମାନଙ୍କରେ ଅଧିକାଂଶ ଛାତ୍ର ନବାଗତ ବଙ୍ଗାଳୀ ସରକାରୀ ଚାକରିଆଙ୍କ ପିଲା । ଅବସ୍ଥା ଏପରି ହୋଇଥିଲା ଯେ, ୧୮୬୮ ପର୍ଯ୍ୟନ୍ତ ଏଣ୍ଟ୍ରାନ୍ସ ପରୀକ୍ଷାରେ ଓଡ଼ିଶାରୁ ଯେଉଁ ୫୮ ଜଣ ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ, ଏମାନଙ୍କ ଭିତରୁ କେବଳ ୧୦ ଜଣ ଓଡ଼ିଆ ଓ ଅନ୍ୟ ସମସ୍ତେ ନବାଗତ ବଙ୍ଗାଳୀ ପରିବାରର ପିଲା ।

ଗଭର୍ଣ୍ଣମେଣ୍ଟ ସ୍କୁଲରେ ପାଠ ପଢ଼ିଲେ ଜାତି ଯିବା ଧାରଣାଟା ଏତେ ବଦ୍ଧମୂଳ ହୋଇଯାଇଥିଲା ଯେ, ଏହି ସ୍କୁଲମାନଙ୍କରେ କୌଣସି ବ୍ରାହ୍ମଣ ଚାକିରି କଲେ ତାଙ୍କୁ

ଜାତି ହରାଇବାଠାରୁ ନାନାପ୍ରକାର ନିର୍ଯାତନା ସହ୍ୟ କରିବାକୁ ପଡ଼ୁଥିଲା । ୧୮୬୦ରେ ଜଣେ ଶିକ୍ଷିତ ବ୍ରାହ୍ମଣ ଯୁବକଙ୍କୁ ସରକାର ପୁରୀ ସ୍କୁଲରେ ସଂସ୍କୃତ ଶିକ୍ଷକରୂପେ ନିଯୁକ୍ତ-କରିବାରୁ ସେ ଶିକ୍ଷକ ଦିବର୍ଷ ପାଇଁ ଜାତିରୁ ବାସନ୍ଦ ହୋଇଥିଲେ ଏବଂ ତାଙ୍କୁ ସ୍ଥାୟୀ-ଭାବରେ ବାସନ୍ଦ କରାଯିବ କି ନାହିଁ ସେ ସମ୍ବନ୍ଧରେ ବହୁତ ତର୍କ ବିତର୍କ ଚାଲିଥିଲା ।

ଓଡ଼ିଶାରେ ଖ୍ରୀ: ୧୮୪୮ରେ ସରକାରୀ ସ୍କୁଲ ସଂଖ୍ୟା ୯ ଓ ଛାତ୍ର ସଂଖ୍ୟା ୨୭୯ ଥିଲା । ଦଶବର୍ଷ ପରେ ସ୍କୁଲ ସଂଖ୍ୟା ୨୯ ଓ ଛାତ୍ର ସଂଖ୍ୟା ୧୦୪୨ ହେଲା । ଏହାର ଦଶବର୍ଷ ପରେ, ଅର୍ଥାତ୍ ୧୮୫୮ ଠାରୁ ୧୮୬୮ ମଧ୍ୟରେ, ସ୍କୁଲସଂଖ୍ୟା ୬୩ ଓ ଛାତ୍ର ସଂଖ୍ୟା ୪୦୪୩ ହେଲା ।

୧୮୬୯ରେ କଟକରେ ସରକାର ନର୍ମାଲସ୍କୁଲ ସ୍ଥାପନକଲେ । ଏଠାରେ ବହୁ ଯୁବକଙ୍କୁ ଶିକ୍ଷକ ତାଲିମ ଦେବାର ବ୍ୟବସ୍ଥା ହେଲା ଏବଂ ଅଳ୍ପ କେତେ ବର୍ଷ ମଧ୍ୟରେ ବହୁ ସଂଖ୍ୟକ ତାଲିମପ୍ରାପ୍ତ ଶିକ୍ଷକ ଦେଶର ସବୁ ଅଞ୍ଚଳକୁ ବ୍ୟାପିଗଲେ ଏବଂ ନୂତନ ପଦ୍ଧତିରେ ଶିକ୍ଷା ଦାନ କରି ଆଧୁନିକ ଶିକ୍ଷାର ଅଗ୍ରଗତି କରାଇଲେ । ଏମାନଙ୍କ ଯତ୍ନରେ ବହୁ ସଂଖ୍ୟକ ନୂତନ ସ୍କୁଲ ମଧ୍ୟ ସ୍ଥାପିତହେଲା ଏବଂ କ୍ରମେ ଶିକ୍ଷାର ଉନ୍ନତି ସାଧିତ ହେଲା । ଖ୍ରୀ. ୧୮୭୫ ବେଲକୁ ସରକାରୀ ପରୀକ୍ଷକଙ୍କ ତତ୍ତ୍ୱାବଧାନରେ ୫୩୯ଟି ସ୍କୁଲ ଆସିଥିଲା ଏବଂ ଏହି ସ୍କୁଲ-ମାନଙ୍କରେ ୧୦,୧୯୬ ଛାତ୍ର ପଢ଼ୁଥିଲେ । ଏହି ସଂଖ୍ୟା କ୍ରମେ ବୃଦ୍ଧି ପାଇ ଦଶ ବର୍ଷ ପରେ ଖ୍ରୀ: ୧୮୮୫ ବେଲକୁ ସ୍କୁଲ ସଂଖ୍ୟା ୪୭୩୬ ଓ ଛାତ୍ର ସଂଖ୍ୟା ପ୍ରାୟ ୬୫,୦୦୦ ହୋଇଥିଲା । ଏହା ପରେ ବନ୍ୟା ଓ ଦୁର୍ଭିକ୍ଷ ଫଳରେ ସ୍କୁଲମାନଙ୍କର ସଂଖ୍ୟା ସେତେ ବୃଦ୍ଧି ପାଇ ପାରିଲା ନାହିଁ । କେତେକ ସ୍ଥାନରେ ଅର୍ଥାଭାବ ଓ ଅନ୍ୟାନ୍ୟ କାରଣରୁ ସ୍କୁଲ ସଂଖ୍ୟା ଓ ଛାତ୍ର ସଂଖ୍ୟା ଅଳ୍ପ କମିଯାଇଥିଲା । ଖ୍ରୀ: ୧୮୯୫ ବେଲକୁ ସ୍କୁଲ ସଂଖ୍ୟା ୩୫୯୦ ଓ ଛାତ୍ର ସଂଖ୍ୟା ୫୫,୮୭୬ ଥିଲା । ଏହାର ପରବର୍ତ୍ତୀ ଦଶ ବର୍ଷରେ ମଧ୍ୟ ସ୍କୁଲ ସଂଖ୍ୟା କମିଯାଇଥିଲା । ଖ୍ରୀ: ୧୯୦୫ ସରିକି ସ୍କୁଲ ସଂଖ୍ୟା ଥିଲା ୩୫୨୭, କିନ୍ତୁ ଛାତ୍ର ସଂଖ୍ୟା ବୃଦ୍ଧିପାଇ ୬୫୨୩୭ ହୋଇଥିଲା । ଏହା ବ୍ୟତୀତ ଅନୁମୋଦିତ ୨୦୩ଟି ସ୍କୁଲରେ ୧୮୭୦ ଛାତ୍ର ଶିକ୍ଷାଲାଭ କରୁଥିଲେ ।

୧୮୮୩ରେ ଓଡ଼ିଶାରେ ୧୧ଟି ମଧ୍ୟଇଂରାଜୀ ସ୍କୁଲ ଥିଲା । ଏହି ସ୍କୁଲମାନଙ୍କ ସ୍ଥାପନ ପରେ ଇଂରାଜୀ ଶିକ୍ଷା ଦିଗରେ ଲୋକଙ୍କ ଆଗ୍ରହ କ୍ରମେ ବୃଦ୍ଧି ପାଇଲା । କ୍ରମେ ଏହି ସ୍କୁଲଗୁଡ଼ିକର ଉନ୍ନତି ସାଧିତ ହେବାରୁ ମଧ୍ୟ-ଇଂରାଜୀ ସ୍କୁଲ ସଂଖ୍ୟା ୧୮ରୁ ୩୭କୁ ବୃଦ୍ଧି ପାଇଲା । ଏଥିରୁ ୩ଟି ସରକାରୀ ବା ସ୍ୱାୟତ୍ତଶାସନ ସଂସ୍ଥାମାନଙ୍କଦ୍ୱାରା ପରିଚାଳିତ ହେଉ-ଥିଲା ଓ ୩୧ଟିକୁ ସରକାରୀ ସାହାଯ୍ୟ ଦିଆଯାଉଥିଲା । ୩ଟି ସ୍କୁଲ ବିନା ସରକାରୀ ସାହାଯ୍ୟରେ ଚାଲୁଥିଲା । ହାଇସ୍କୁଲ ଶିକ୍ଷା କ୍ଷେତ୍ରରେ ୧୮୮୩ରେ ୪ଟି ବିଦ୍ୟାଳୟ ଥିଲା ଏବଂ ୪୫୪ ଛାତ୍ର ଥିଲେ । ଏଠାରେ ମ୍ୟାଟ୍ରିକ୍ୟୁଲେସନ୍ ବା ଏଣ୍ଟ୍ରେନ୍ସ ପରୀକ୍ଷା ପର୍ଯ୍ୟନ୍ତ ଶିକ୍ଷା

ଦିଆଯାଉଥିଲା । ଖ୍ରୀ: ୧୯୦୫ ବେଳକୁ ହାଇସ୍କୁଲ ସଂଖ୍ୟା ୬ ଓ ଛାତ୍ର ସଂଖ୍ୟା ୧୪୦୧ ହେଲା ।

ମଧୁବାବୁଙ୍କ ସମୟକୁ କଟକ ଜିଲ୍ଲାରେ 'କଟକ ଜିଲ୍ଲା ସ୍କୁଲ'ଟି କେବଳ ହାଇସ୍କୁଲ ହୋଇଥିଲା । ଏହି ସ୍କୁଲଟି ଜିଲ୍ଲାସ୍କୁଲ ରୂପେ ଖ୍ରୀ: ୧୮୪୧ରେ ସରକାରଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ଏବଂ ପରେ ହାଇସ୍କୁଲ ହେଲା । ଖ୍ରୀ: ୧୮୬୮ରେ ଏଠାରେ କଲେଜ ଶିକ୍ଷାର ଦୁଇଟି କ୍ଲାସ (ଆଇ.ଏ) ଖୋଲାହେଲା । ଖ୍ରୀ: ୧୮୭୮ରେ ଏଠାରେ ବି.ଏ. କ୍ଲାସ ଖୋଲା ହେଲା ଏବଂ ଏଥି ନିମନ୍ତେ ମୟୂରଭଞ୍ଜର ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ୫୬୫,୦୦୦ ସରକାରଙ୍କ ହସ୍ତରେ ଦାନ ସ୍ୱରୂପ ଅର୍ପଣ କରିଥିଲେ । ମହାରାଜାଙ୍କ ଅନୁରୋଧକ୍ରମେ କଲେଜର ନାମ 'ରେଭେନ୍‌ସା କଲେଜ' ହେଲା । ୧୮୬୫-୬୬ର ଦୁର୍ଭିକ୍ଷ ବେଳେ ମହାମନା ଓଡ଼ିଶାପ୍ରେମୀ ଟି. ରେଭେନ୍‌ସା ( T. Ravenshaw ) ଓଡ଼ିଶାର କମିଶନର ଥିଲେ । ଓଡ଼ିଆଙ୍କ ଉନ୍ନତି ପାଇଁ ରେଭେନ୍‌ସା ବହୁତ କାର୍ଯ୍ୟ କରିଥିବାରୁ ତାଙ୍କର କୃତଜ୍ଞତାସ୍ୱରୂପ ତାଙ୍କ ନାମରେ କଲେଜଟି ନାମିତ କରିବା ପାଇଁ ଦେଶବାସୀ ପ୍ରସ୍ତାବ କରିଥିଲେ । ଏମାନଙ୍କର ଜଣେ ନେତା ରୂପେ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ପ୍ରସ୍ତାବ କରିବାରୁ ସରକାର ରାଜି ହୋଇଗଲେ । ଖ୍ରୀ: ୧୮୮୧ରେ ଆଇନ୍ ଶିକ୍ଷା ବିଭାଗ ଏଠାରେ ଖୋଲିଗଲା ।

ରେଭେନ୍‌ସା କଲେଜ ଓ ଜିଲ୍ଲା ସ୍କୁଲ ଏକ ସ୍ଥାନରେ ସ୍କୁଲ ହତା ଭିତରେ ବସୁଥିଲା । ଖ୍ରୀ: ୧୯୧୬ରେ ସ୍କୁଲ ବିଭାଗ କଲେଜ ବିଭାଗଠାରୁ ଅଲଗା ହୋଇଗଲା ଏବଂ ସ୍କୁଲ ବିଭାଗ 'ରେଭେନ୍‌ସା କଲେଜିଏଟ୍ ହାଇସ୍କୁଲ' ନାମରେ ନାମିତ ହେଲା ।

କଲେଜ ସହିତ ଗୋଟିଏ ସର୍ଭେ ସ୍କୁଲ ମଧ୍ୟ ସଂଲଗ୍ନ ଥିଲା । ଖ୍ରୀ: ୧୯୧୫ରେ ଏହି ବିଭାଗଟିକୁ ଅଲଗା କରିଦିଆଗଲା ଏବଂ ଏହି ସ୍କୁଲଟି 'ଓଡ଼ିଶା ସ୍କୁଲ ଅଫ୍ ଇଞ୍ଜିନିଅରିଙ୍ଗ୍' (Orissa School of Engineering) ନାମରେ ନାମିତ ହେଲା । ସ୍କୁଲର ଗୃହ ନିର୍ମାଣ ଓ ଅନ୍ୟାନ୍ୟ ଉନ୍ନତି ପାଇଁ ଆଠଗଡ଼ (ଗଡ଼ଜାତ)ର ରାଜା ୫୧୫,୦୦୦ଙ୍କା ଦାନ କରିଥିଲେ । ଖ୍ରୀ: ୧୯୨୧ରେ ରେଭେନ୍‌ସା କଲେଜ ଚାଉଳିଆଗଞ୍ଜ ଅଞ୍ଚଳରେ ନବନିର୍ମିତ କୋଠାକୁ ଘୁଞ୍ଚିଗଲା ।

ମଧୁବାବୁଙ୍କ ବିଦ୍ୟା ଶିକ୍ଷା ବେଳକୁ ଓଡ଼ିଶାର ଶିକ୍ଷାଦାନ ପଦ୍ଧତି ବର୍ତ୍ତମାନ ପଦ୍ଧତିଠାରୁ ସଂପୂର୍ଣ୍ଣରୂପେ ପୃଥକ୍ ଥିଲା । ତାଙ୍କ ସମୟରେ, ଅର୍ଥାତ୍ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ, ମଧ୍ୟ ଗ୍ରାମମାନଙ୍କରେ ଅବଧାନମାନଙ୍କର ପ୍ରଭୁତ୍ୱ ବାଲ୍ୟଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ଥିଲା । ଜ୍ଞାନାର୍ଜନ ଭିତରେ କଣ୍ଠସ୍ଥ ମୁଖ୍ୟ ସାଧନରୂପେ ଗୃହୀତ ହେଉଥିଲା । ଶିକ୍ଷାର୍ଥୀ ଶିଶୁ ଓ ବାଳକମାନଙ୍କୁ ଶାରୀରିକ ଦଣ୍ଡ ଦିଆଯାଉଥିଲା । ଅପରାଧର ଗୁରୁତ୍ୱ ପ୍ରତି ଧ୍ୟାନ ନଦେଇ ଯଥେଚ୍ଛାଭାବରେ ଅବଧାନମାନେ ବେତ୍ରଚାଳନ କରୁଥିଲେ । ପିଲମାନଙ୍କୁ ଖରାରେ ଏକ ଗୋଡ଼ରେ ଠିଆ କରାଇ ଦେଉଥିଲେ । କାହାର କାହାର ଚୁଟିକୁ ଦଉଡ଼ିରେ ବାନ୍ଧି କଡ଼ି ।ଟ କମ୍ବା ଅନ୍ୟ କୌଣସି ଜିନିଷରେ ବାନ୍ଧିଦେଇ ତାକୁ ଘୁଞ୍ଚିବାର କିମ୍ବା ଉଠିବାର ସୁବିଧା

ଦେଉ ନଥିଲେ । ଯଦି କେହି ପରସ୍ରା କରିବା ପାଇଁ ଇଚ୍ଛାକଲା ତାହାହେଲେ ଗୁରୁଙ୍କ ଦ୍ୱାରା ନିର୍ଦ୍ଧାରିତ ସମୟ ଭିତରେ ଫେରି ନ ଆସିଲେ ତାକୁ ମାଡ ହେଉଥିଲା । ଘରକୁ କୌଣସି ଜରୁରୀ କାମରେ ଯିବାକୁହେଲେ ଛାତ୍ର ଦାଣ୍ଡରେ ଛେପ ପକାଇ ଯାଉଥିଲା । ଯଦି ଫେରିବାବେଳକୁ ସେ ଛେପ ଶୁଖିଯାଇଥାଏ ତେବେ ଛାତ୍ରକୁ ବେତାଘାତ ହେଉଥିଲା । ବହୁ ଚାଟଶାଳୀରେ ବେତ୍ରାଘାତଦ୍ୱାରା ଛାତ୍ରର ନାକ ଫାଟିଲା, କି ଦାନ୍ତ ଭାଙ୍ଗିଲା, କି କାନରୁ ରକ୍ତ ବୋହିଲା ଏଥିପ୍ରତି ଅବଧାନମାନଙ୍କର ଲକ୍ଷ୍ୟ ରହୁନଥିଲା । ଅବଧାନମାନଙ୍କ ସବୁ କାର୍ଯ୍ୟ ଛାତ୍ରମାନେ କରୁଥିଲେ । ଅନ୍ୟ ଗ୍ରାମରୁ ଆସିଥିବା ଅବଧାନଙ୍କର ଯାବତୀୟ ଖର୍ଚ୍ଚ ଗ୍ରାମବାସୀ ଚାନ୍ଦା ଭେଦାରେ ଚଳାଉଥିଲେ । ଛାତ୍ରମାନେ ଅବଧାନଙ୍କ ପାଇଁ ରୋଷେଇ ଯୋଗାଡ଼, ବାସନମଜା ପ୍ରଭୃତି କାମ କରିଦେଉଥିଲେ । ପୂଣ୍ୟ ପର୍ବ ଦିନମାନଙ୍କରେ ଗ୍ରାମବାସୀ ଅବଧାନଙ୍କୁ ପିଠାପଣା ପ୍ରଭୃତି ଦେଉଥିଲେ । ଅବଧାନଙ୍କ ବିଦ୍ୟା, ବୁଦ୍ଧି, ଆଚରଣ ବ୍ୟବହାର ଅନୁସାରେ ଗ୍ରାମବାସୀ ତାଙ୍କୁ ସମ୍ମାନ କରୁଥିଲେ ଏବଂ ଗ୍ରାମର ସମୂହ ରାଜନୀତିରେ ତାଙ୍କର ପରାମର୍ଶ ନେଉଥିଲେ ।

ଚାଟଶାଳୀରେ ଅଧିକାଂଶ ସ୍ଥଳରେ ତଳେ ଖଡ଼ି ସାହାଯ୍ୟରେ ଛାତ୍ରମାନେ ଲେଖା କରୁଥିଲେ । ଛାତ୍ରମାନଙ୍କ ବସିବା ସ୍ଥାନର ଚାରିପଟେ ଖଡ଼ିରେ ଛାତ୍ରମାନେ ନିଜେ ଲେଖୁ-ଥିଲେ । ଅକ୍ଷର ଶିକ୍ଷା ଅବଧାନଙ୍କ ମର୍ଜ଼ି ଅନୁସାରେ ହେଉଥିଲା । ଛାତ୍ରମାନେ ପଣିକିଆ, ଛୋଟ ଛୋଟ ପ୍ରାର୍ଥନା, ଚଉତିଶା, ଗୁଣକ୍ୟଶ୍ଳୋକ ମୁଖସ୍ଥ କରୁଥିଲେ । ସନ୍ଧ୍ୟାବେଳେ ସବୁ ଛାତ୍ର ଦଳ ଦଳ ହୋଇ ପିଣ୍ଡାମାନଙ୍କରେ ବସି ମୁଖସ୍ଥ କରିଥିବା ପଣିକିଆ ପ୍ରଭୃତି ଆବୃତ୍ତି କରୁଥିଲେ । ବର୍ଣ୍ଣଶିକ୍ଷାଦି ଶେଷ ହେବା ପରେ ଛାତ୍ରମାନେ ଲେଖନ ଧରି ତାଳପତ୍ରରେ ଲେଖିବା ଶିକ୍ଷା କରୁଥିଲେ । ଶ୍ରେଣୀ ବିଭାଗର କ୍ରମ ଅନୁସାରେ ଚୌତିଶା, ଛାନ୍ଦ, ଭାଗବତ, ଲୀଳାବତୀ ସୂତ୍ର ଶିକ୍ଷା ଦିଆଯାଉଥିଲା । ଏ ଶିକ୍ଷାପଦ୍ଧତିରେ ବୈଜ୍ଞାନିକ ରୀତିର କିଛି ଆଭାସ ଦେଖାଯାଉ ନ ଥିଲେ ମଧ୍ୟ ଛାତ୍ର ଓ ଅବଧାନଙ୍କ ମଧ୍ୟରେ ବିଦ୍ୟମାନ-ଥିବା ସୌହାର୍ଦ୍ଦ୍ୟ ଉଲ୍ଲେଖଯୋଗ୍ୟ । ଅବଧାନମାନେ ନିଜ ଛାତ୍ରମାନଙ୍କୁ ନିଜ ପୁତ୍ର ରୂପେ ଦେଖୁଥିଲେ ଏବଂ ଛାତ୍ରମାନେ ଗୁରୁଙ୍କୁ ପିତୃତୁଲ୍ୟ ଭକ୍ତିକରୁଥିଲେ । ଚାଟଶାଳୀମାନଙ୍କରେ ବାଳିକାଶିକ୍ଷା ଆଦୌ ନ ଥିଲା କହିଲେ ଚଳେ । ଅତି ଅଳ୍ପ ସ୍ଥାନରେ କେତେକ ବାଳିକା ୭।୮ବର୍ଷ ବୟସ ପର୍ଯ୍ୟନ୍ତ କେବଳ ଚାଟଶାଳୀରେ ପଢ଼ୁଥିଲେ ।

ମଧୁବାବୁ ଗ୍ରାମରେ ପ୍ରାଥମିକ ଶିକ୍ଷା ଶେଷ କରିଥିଲେ । ତାଙ୍କ ପିତା ତାଙ୍କୁ ପାର୍ସି ଭାଷା ଶିକ୍ଷା କରିବାପାଇଁ ତାଙ୍କ ଗ୍ରାମ ନିକଟସ୍ଥ ମହାସିଂହପୁର ଗ୍ରାମର ମୁକ୍ତାବ (ପାର୍ସିସ୍କୁଲ)ରେ ପଢ଼ାଉଥିଲେ । ଏହି ସ୍କୁଲରେ ସେ ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ କରିଥିବା ଜଣାଯାଏ । ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ କରିବା ପରେ ମଧୁସୂଦନଙ୍କୁ ତାଙ୍କ ପିତା କଟକ ନେଇଆସିଲେ ଏବଂ ଜିଲ୍ଲା ସ୍କୁଲରେ ୬ଷ୍ଠ ଶ୍ରେଣୀରେ ନାମ ଲେଖାଇଥିଲେ । ଏହି ସ୍କୁଲରୁ ସେ ଏଣ୍ଟ୍ରାନ୍ସ (ମାଟ୍ରିକ) ପାସ୍‌କରିଥିଲେ ।

ନିଜ ବାଲ୍ୟଶିକ୍ଷା ସମ୍ବନ୍ଧରେ ମଧୁବାବୁ ତାଙ୍କର ଅସମ୍ପୂର୍ଣ୍ଣ 'ଆତ୍ମ ଚରିତ' (ଇଂରାଜୀ) ରେ ଲେଖିଛନ୍ତି— "ମୋର ମାତୃଭାଷା ଓଡ଼ିଆ ପଢ଼ାଇପାରିବା ଓ ଲେଖାଇପାରିବା ଭଳି ଯୋଗ୍ୟତା ଥିବା ଜଣେ ବ୍ୟକ୍ତିଙ୍କ ହସ୍ତରେ ମୋର ପ୍ରାଥମିକ ଶିକ୍ଷାର ଭାର ଅର୍ପିତ ହୋଇ-ଥିଲା । ସେ ଅଙ୍କ ମଧ୍ୟ ଜାଣିଥିଲେ । ଖାଇବା, ପିନ୍ଧିବା ବ୍ୟତୀତ ମାସିକ ସାତଟଙ୍କା ବେତନ ତାଙ୍କୁ ଦିଆହେଉଥିଲା । ଆମ ବାସଭବନର ଏକ ଅଂଶରେ ପଢ଼ାପଢ଼ି ହେଉଥିଲା । ଏହି ଗମ୍ଭିରିଟିର କାନ୍ଥ ଓ ମେଜିଆ ମାଟିର ଥିଲା । ଇଟା ଚୂନରେ ପଲସ୍ତରା ହୋଇଥିବା କାନ୍ଥ ଏ ପଢ଼ାର ଉପଯୋଗୀ ନୁହେଁ । ମାଟିର ତଳ ଓ ଖଣ୍ଡେ ଖଡ଼ିହେଲା ଗ୍ରାମର ଚାଟଶାଳୀରେ ଲେଖାରେ ବ୍ୟବହୃତ ସମଗ୍ର ପଦାର୍ଥ । ଅବଧାନ ତଳେ ଖଡ଼ିରେ ଅକ୍ଷର ଲେଖି-ଦେଉଥିଲେ । ଛାତ୍ର ପାଟିକରି ଅକ୍ଷର ନାମ ଡାକି ସେ ଗାର ଉପରେ ଖଡ଼ି ମଡ଼ାଇ ଲେଖୁ-ଥିଲେ । ମାଟି କାନ୍ଥ ଉପରେ ଅବଧାନ ଖଡ଼ିରେ ହିସାବ, ରଚନା ପ୍ରଭୃତି ଲେଖୁଥିଲେ । ଏହି ମାଟି କାନ୍ଥରେ ଚିତା ଦେଇ ସ୍ତ୍ରୀମାନେ ମନୁଷ୍ୟ, ପଶୁ ଓ ଦୃଶ୍ୟର ଚିତ୍ର ଅଙ୍କନ କରୁଥିଲେ । ନକ୍ସାଗୁଡ଼ିକ ବେଳେ ବେଳେ ଚିତ୍ତାକର୍ଷକ ହୋଇଥାଏ । ମାଟିକୁ ପାଣିରେ ଗୋଳେଇ, ବିଭିନ୍ନ ରଙ୍ଗ ସେଥିରେ ମିଶାଇ, ରଙ୍ଗ ପ୍ରସ୍ତୁତ ହେଉଥିଲା । ଏହା ଚିତ୍ରକାରର ରଙ୍ଗ ରୂପେ ବ୍ୟବହୃତ ହେଉଥିଲା । ସ୍ତ୍ରୀମାନଙ୍କ ଆଙ୍ଗୁଠି ତୁଳୀର କାମ କରୁଥିଲା । ଦକ୍ଷ ଚିତ୍ରକାରମାନେ ଏଗୁଡ଼ିକ ଦେଖି ସେଥିରୁ କେତେକ ଅତି ଉଚ୍ଚକୋଟୀର ହୋଇଥିବା ମତ ଦେଉଥିଲେ ଏବଂ ଏ ଶିଳ୍ପ ପ୍ରତି ଆଦରଥିବା ସୂଚନା ଅଯତ୍ନତଃ ଏଥିରେ ପ୍ରକାଶପାଉଥିଲା ।

"ତଳେ ଗୋଡ଼କୁ ଭାଙ୍ଗି, ଅଣ୍ଟୁ ଭାଙ୍ଗି ଛାତ୍ରମାନେ ବସୁଥିଲେ । ସେମାନଙ୍କର ଦେହର ଭାର ପାଦ ଉପରେ ରହୁଥିଲା । ତାକୁ ଆସନ ଦିଆଯାଉ ନଥିଲା, କାରଣ ସେ ବସିବା ସ୍ଥାନ ଉପରେ ଖଡ଼ିରେ ଅକ୍ଷରଗୁଡ଼ିକ ଲେଖୁଥିଲା । ତଳ ଅଙ୍ଗଗୁଡ଼ିକର ବ୍ୟାୟାମ ନିମନ୍ତେ ଏହା ଉତ୍ତମ ଶିକ୍ଷା । ନଡ଼ିଆ ଗୁଞ୍ଝ ଉପରେ ଅବଧାନେ ବସୁଥିଲେ ।"

"ଏହା ପରବର୍ତ୍ତୀ ପଦକ୍ଷେପ ହେଉଛି ତାଳପତ୍ର ଉପରେ ଲେଖନରେ ଲେଖିବା । ତାଳପତ୍ର ଓ ଖଣ୍ଡିଏ ଲେଖନ ଓଡ଼ିଶାରେ ମୁଦ୍ରଣ ସାମଗ୍ରୀର କାର୍ଯ୍ୟ କରୁଥିଲା । ପରବର୍ତ୍ତୀ ସମୟରେ କାଗଜ ଓ ସିଆଇ ଏହି ତାଳପତ୍ର ଓ ଲେଖନର ସ୍ଥାନକୁ ସମ୍ପୂର୍ଣ୍ଣରୂପେ ଅଧିକାର କରିପାରିନାହିଁ । ଗ୍ରାମମାନଙ୍କରେ ଏହା ଅଦ୍ୟାପି ବ୍ୟବହୃତ ହେଉଛି । ବିଖ୍ୟାତ ଜଗନ୍ନାଥ ମନ୍ଦିରରେ ବର୍ତ୍ତମାନ ସବୁ ବିବରଣ ତାଳପତ୍ର ଓ ଲେଖନରେ ଲେଖାହୋଇ ରହୁଛି । କେତେକ ଉତ୍ସବ ଓ ଜାତକ ଲେଖାରେ ଏହାହିଁ ବ୍ୟବହୃତ ହେଉଛି । ତାଳପତ୍ରରେ ଲେଖନ ସାହାଯ୍ୟରେ ଲେଖା ଖୋଦନ ଶିଳ୍ପ ଓ କାଗଜରେ କାଳି ଓ କଲମରେ ଲେଖା ମୁଦ୍ରଣ ଶିଳ୍ପୀ ଲେଖନ ତାଳପତ୍ରକୁ କାଟୁଛି । ଲେଖନର ମୁନଟି ଖୁବ୍ ଗୋଜିଆ ।"

ମଧୁବାବୁ ନିଜ ଗ୍ରାମର ପ୍ରାଚୀନ ଶିକ୍ଷାପଦ୍ଧତି ସମ୍ବନ୍ଧରେ ଯାହା କହିଛନ୍ତି ତାହା ପ୍ରାକୃତିକ ଉତ୍କଳର ସବୁ ସ୍ଥାନରେ ପ୍ରଚଳିତ ଥିଲା । ଏହାହିଁ ସେ କାଳର ଶିକ୍ଷା ଦାନ

ସ୍ଥିତ ଥିଲା । ମଧୁବାବୁଙ୍କ ସମସାମୟିକ ଫକିରମୋହନ ସେନାପତି "ଆତ୍ମଜୀବନ ଚରିତ"ରେ ସେ କାଳର ଚାଟଶାଳୀ ବା ଶିଶୁଶିକ୍ଷା ସମ୍ବନ୍ଧରେ ଏକ ଜ୍ୱଳନ୍ତ ଚିତ୍ର ଦେଇଛନ୍ତି । ସେ ବାଲେଶ୍ୱର ଜିଲ୍ଲାର ଚିତ୍ର ଦେଇଥିଲେ ହେଁ ଓଡ଼ିଶାର ସର୍ବତ୍ର ଏହି ରୀତିର ଶିକ୍ଷାହିଁ ପ୍ରଚଳିତ ଥିଲି । "ସହର ମଧ୍ୟସ୍ଥ ପ୍ରତ୍ୟେକ ବଡ଼ ଗ୍ରାମରେ, ଗ୍ରାମ ସାନଥିଲେ ଦୁଇ ତିନିଟା ଗ୍ରାମରେ, ଗୋଟିଏ ଚାଟଶାଳୀ ଥିଲା । ସ୍ୱଚ୍ଛଳ ଲୋକଙ୍କ ଘରେ ସ୍ୱତନ୍ତ୍ର ରୂପେ ଜଣେ ଜଣେ ଅବଧାନ ଥିଲେ । ଗ୍ରାମର ବାଉରୀ, କଣ୍ଡରା ଆଦି ଅସ୍ପୃଶ୍ୟ ଜାତିର ପିଲାମାନେ ମଧ୍ୟ ଉଚ୍ଚଜାତୀୟ ପିଲାମାନଙ୍କଠାରୁ କିଛି ଦୂରରେ ବସି ଚାହାଲୀରେ ପାଠ ପଢ଼ୁଥିଲେ ।"

"ସେ ସମୟରେ କଟକ ଜିଲ୍ଲା, ବିଶେଷତଃ କଟକ ଜିଲ୍ଲାସ୍ଥ ଝଙ୍କଡ଼ ପ୍ରଗଣାରୁ, ଅବଧାନମାନେ ବାଲେଶ୍ୱର ଜିଲ୍ଲାକୁ ଆସୁଥିଲେ । ଚଇତ୍ରମାସଟା ଅବଧାନ ଆମଦାନୀର ସମୟ । ବେଶଭୂଷାରୁ ଅବଧାନ କର୍ମପ୍ରାର୍ଥୀ ବୋଲି ଚହ୍ନାପଡ଼ନ୍ତି । ଆଣ୍ଠୁ ଲୁଗା ଝିଣ୍ଡିଏ ପଖାଳକରିଆ, ମୁଣ୍ଡରେ ଖଣ୍ଡେ ମଳିଆ ଗାମୁଛା, କାନ୍ଧରେ ଗୋଟିଏ ଯାଉଁଳି, ଏକ ପାଖରେ ଅଧସେର ଚାଉଳ ଫୁଟିବା ଭଳି ଖଣ୍ଡେ ପିତଳ, ସାନ ଉଶ୍ୱାସ ଗୋଟିଏ ଲୋଟା, ଆର ପାଖରେ ଯୋଡ଼ିଏ ତିନିଟା ପୋଥିର ଖେଦା ଏବଂ ଆଠ କି ନଅ ହାତ ପିନ୍ଧା, ଏହା ହେଲି କର୍ମପ୍ରାର୍ଥୀ ଅବଧାନଙ୍କ ଚିହ୍ନ । ଫଗୁଣ ଅଧାଅଧିଠାରୁ ଚୈତ୍ର ଶେଷ ଶେଷି ଯାଏଁ ଅବଧାନମାନେ ଗୋହିର ଦାଣ୍ଡରେ ବୁଲୁଥିବାର ଦେଖାଯାଉଥିଲି ।

"ଅବଧାନଙ୍କ ମଧ୍ୟରେ ଅଧିକାଂଶ କରଣ ଜାତି, ଅଳ୍ପସଂଖ୍ୟକ ମାତ୍ର ମାଟିବଂଶ ଓଝା । ବାଲେଶ୍ୱରବାସୀ ଅବଧାନଗୁଡ଼ିକ ଜାତିରେ ଜ୍ୟୋତିଷ । ଅବଧାନମାନଙ୍କ ମଧ୍ୟରେ ମାଟିବଂଶ ଓଝାମାନେ ଖଡ଼ିପାଠରେ ଖୁବ୍ ଟାଣ ବୋଲି ଦେଶରେ ଖ୍ୟାତି ଥିଲି, ସେମାନଙ୍କୁ ଲୀଳାବତୀ ସୂତ୍ର ଜଣାବୋଲି ସେମାନଙ୍କର ବିଶ୍ୱାସ । ପାଠ ବଳରେ ଓଝାମାନେ ଗଛର ପତ୍ର ଏବଂ ଉଡ଼ନ୍ତା ପକ୍ଷୀର ପର ଗଣିପାରନ୍ତି ବୋଲି ମୁଁ ପିଲାଦିନୁ ଶୁଣିଆସୁଅଛି ।

"ଚାଟଶାଳୀରେ ବେଆଇନ କାର୍ଯ୍ୟ କିଛି ନଥିଲି । ସମସ୍ତ ନିୟମାବଦ୍ଧ । କାର୍ଯ୍ୟବିଧି ଲଙ୍ଘନକାରୀ ପ୍ରତି ଦଣ୍ଡ ଅନିବାର୍ଯ୍ୟ । ଅବଧାନଙ୍କ ଆଜ୍ଞା ବିନା କୌଣସି ଚାଟର ଉଠ ବସ ହେବାର ଆସୁଭି ନଥିଲି । ଗୋଟିଏ ଜାଗାରେ ବସି ବସି ଗୋଡ଼ ଲାଗିଗଲେ, ସେହିଠାରେ ବସି ହାତଯୋଡ଼ି ପ୍ରାର୍ଥନା କରିବାକୁ ହୁଏ, 'ଅବଧାନେ, ଏକ' ଅର୍ଥାତ୍ ପ୍ରସ୍ରାବ କରିବାକୁ ଯିବି; 'ଅବଧାନେ ଦୁଇ' ଅର୍ଥାତ୍ ଝାଡ଼ା ଫେରିବାକୁ ଯିବି, 'ଅବଧାନେ ପାଞ୍ଚ' ଅର୍ଥାତ୍ ପାଣି ପିଇବାକୁ ଯିବି ।

"ଚାହାଲୀ ଦଣ୍ଡବିଧିରେ ନିମ୍ନଲିଖିତ କେତେ ରୂପ ଦଣ୍ଡର ବିଧାନ ଥିଲି । ୧ମ-ବେତାଘାତ । ୨ୟ-ଏକଗୋଡ଼ିଆ, ଅର୍ଥାତ୍ ଗୋଟିଏ ଗୋଡ଼ରେ ଛିଡ଼ା ହେବା । ୩ୟ-ନାକବାଲ-ଗୋଟିଏ ହାତରେ ନାକ ଆଉ ଗୋଟିଏ ହାତରେ ମୁଣ୍ଡ ବାଲ ଧରି ଛିଡ଼ାହେବା । ୪ର୍ଥ-ଆଣ୍ଠୁ ଗୋପାଳ । ଆଣ୍ଠୁ ମାଡ଼ି ବାମହାତ ମୁଣ୍ଡରେ ଦେଇ, ଡାହାଣ ହାତରେ ଗୋଟିଏ

ଖଡ଼ି ଗୋଟାଲ ଥୋଇ ସେହି ହାତ ଆଗକୁ ବଢ଼ାଇ ଦେଇ ବସିବା । କମ-ମଢ଼ୁଆ ଶାଙ୍କୁଳ-ତାଳପତ୍ର ମଢ଼ୁଆରେ ଦେଢ଼ହାତ ପ୍ରାୟ ଲମ୍ବ ଗୋଟିଏ ଦଉଡ଼ିଡସ୍ତାଣ ହୁଏ । ସେହି ଦଉଡ଼ି ଅପରାଧୀ ବେକରେ ପକାଇ, ଦୁଇଗୋଡ଼ ବୁଢ଼ା ଆଙ୍ଗୁଳରେ ଫାଶ ଲଗାଇଦିଆଯାଏ ।''

''ପ୍ରତିଦିନ ଚାଟଶାଳି ଛୁଟିବେଳେ ଚାଟମାନଙ୍କ ହାତରେ ''ଶୂନ୍ୟଗୁଟି'' ଦିଆଯାଏ । କେଉଁ ଚାଟ କେତେବେଳେ ଚାଟଶାଳିକୁ ଆସିଥିଲା, ତାହା ଆପେ ଅବଧାନେ ଏବଂ ବଡ଼ଚାଟ, ଅର୍ଥାତ୍ ଯେଉଁ ଚାଟ ସମସ୍ତଙ୍କଠାରୁ ବେଶି ପଢ଼ିଥାଏ, ମନରେ ରଖିଥାନ୍ତି । ଚାଟଶାଳି ଭାଙ୍ଗିବା ବେଳେ ଚାଟମାନେ ଦୁଇହାତ ପାପୁଲି ଯୁକ୍ତଭାବରେ ମେଲାଇରଖି ଅବଧାନଙ୍କ ଆଡ଼କୁ ହାତ ବଢ଼ାଇ ଦେଇ ଧାଡ଼ି ବାନ୍ଧି ଛିଡ଼ାହୋଇଯାଆନ୍ତି । ଯେଉଁ ଚାଟ ସମସ୍ତଙ୍କ ଆଗେ ଚାଟଶାଳୀକୁ ଆସିଥାଏ ତାହା ହାତ ପାପୁଲିରେ ଅବଧାନ ବେତର ଅଗ ଛୁଆଁଇ ଦିଅନ୍ତି । ସେଟା ହେଲା ଶୂନ୍ୟ । ତହିଁ ଉତ୍ତାରୁ ଦୁଇ ତିନି କରି ଶେଷ ପର୍ଯ୍ୟନ୍ତ ଏକ ଏକ ସଂଖ୍ୟା ବଢ଼ି ଭିନ୍ନ ଭିନ୍ନ ଚାଟଙ୍କ ହାତରେ ବେତର ପାହାର ପଡ଼ୁଥାଏ, ଅର୍ଥାତ୍ ଉପସ୍ଥିତି କ୍ରମରେ ଯେ ଦ୍ୱିତୀୟ ତାହା ହାତରେ ଦୁଇଥର, ଯେ ତୃତୀୟ ତାହା ହାତରେ ତିନିଥର, ଯେ ଚତୁର୍ଥ ତାହା ହାତରେ ଚାରିଥର ପାହାର ପଡ଼େ । ଏହି ବେତର ପାହାରର ବଳ ସବୁ ସମୟରେ ସମାନ ନୁହେଁ—ଟାଣ ଓ ଢିଲା ଥାଏ । ଶୂନଗୁଟି ଦେଲାବେଳେ ଅବଧାନେ ଚାଟଙ୍କ ମୁହଁକୁ ଅନାନ୍ତି । ଯେଉଁଠାରେ କୌଣସି ଜବାବଦେହି ହେବାର ସମ୍ଭାବନା ଥାଏ, ସେଠାରେ ବେତର ଆଘାତ କିଛି କୋହଳ ହୋଇଯାଏ; ଅନ୍ୟ ଚାଟଙ୍କ ହାତରେ ବେତର ଶବ୍ଦଟା ପଟାପଟ୍ ଶୁଭେ ।

'କୌଣସି ଚାଟ ଯଦି ବେଶିବେଳଯାଏ ଶୋଇପଡ଼େ ଏବଂ ବିଛଣାରୁ ଉଠି ମଝି ବାହାରେ ଚାଲ ଉପରେ ଖରା ପଡ଼ିଥିବାର ଦେଖେ, ତେବେ ସେ ଶୂନଗୁଟି ଡରରେ ଚାଟଶାଳୀକୁ ନଯାଇ, ନିରାପଦ ସ୍ଥାନ, ଅର୍ଥାତ୍ ହାଣ୍ଡିଶାଳରେ ହାଣ୍ଡି ସନ୍ଦଟା ଧରି ବସି ପଡ଼େ । ହେଲେ, ସେ ଅବସ୍ଥାରେ ମଧ୍ୟ ତାହାର ରକ୍ଷାନାହିଁ । ସ୍ୱଜାତୀୟ ଯୋଡ଼ାଏ ପୁଞ୍ଜାଏ ପିଲା ଲଙ୍ଗଳା ହୋଇପଡ଼ି, ହାଣ୍ଡିଶାଳେ ପଶି, ଅପରାଧୀକୁ ଧରିଆଣି ଶୂନ୍ୟେ ଶୂନ୍ୟେ ଟେକି ଚାଟଶାଳୀକୁ ଧରି ନେଇଯାଆନ୍ତି । ଚାଟଶାଳୀରେ ଉପସ୍ଥିତ ହେବା ମାତ୍ରେ ବିଚାରକ ଅବଧାନ ତାହା ପିଠିରେ କେତୋଟା ପାହାର ବସାଇଦିଅନ୍ତି ।''

ଫକୀରମୋହନ ଏପରି ଏକ ଚାଟଶାଳୀରେ ପଢ଼ୁଥିଲେ । ''ସେଠାରେ ସକାଳେ ଖଡ଼ିପାଠ ହୁଏ ଏବଂ ଉପରଓଳି ପୋଥି ପଢ଼ାହୁଏ । ପଢ଼ା ସରିଲେ, ଅନ୍ୟାନ୍ୟ ଚାଟମାନେ ଘରକୁ ଯାଆନ୍ତି । କିନ୍ତୁ ମୋତେ ଚାଟଶାଳିରେ ରହି ଅବଧାନଙ୍କର ସେବା ଏବଂ ତାଙ୍କର ରୋଷେଇରେ ସାହାଯ୍ୟ କରିବାକୁ ହୁଏ ।''

ମଧୁବାବୁଙ୍କ ଚାଟଶାଳୀ ତାଙ୍କ ନିଜ ଘରେ ବସୁଥିଲା । ଅବଧାନଙ୍କ ସେବା କି ରୋଷେଇ କଥା ତାଙ୍କୁ ବୁଝିବାକୁ ପଡ଼ୁ ନ ଥିଲା । ଘରର ଚାକରମାନେ ଅବଧାନଙ୍କ ଏହି

କାମ ଭୁଲିଇ ଦେଉଥିଲେ । ଅବଧାନେ ଖାଇବା, ଲୁଗା ଏବଂ ମାସିକ ଦରମା ସାତଟଙ୍କା ପାଉଥିଲେ । ସେତେବେଳର ଅବସ୍ଥାକୁ ଚାହିଁଲେ ଏହା କିଛି କମ୍ ନ ଥିଲା । ସେତେବେଳର ଖାଦ୍ୟ ପଦାର୍ଥ ଓ ଅନ୍ୟାନ୍ୟ ପଦାର୍ଥର ଦରଦାମ୍ ଅତି ଅଳ୍ପ ଥିଲା । ଚାଉଳ ଟଙ୍କାକୁ ଦେଢ଼ ମହଣ, ଖରି ମହଣକୁ ଟ॰୍ୟ, ମୁଗ ମହଣକୁ ଟ॰୍ୟ୵, ହରଡ଼ ମହଣକୁ ଟ॰୍ୟ୵, ତେଲ ଟଙ୍କାକୁ ସାତସେର (ବାଲେଶ୍ୱରୀ ୮୦ ତୋଳା ସେରରେ), ଘିଅ ଟଙ୍କାକୁ ତିନି ସେର, ମାଛ ପଇସାକୁ ସେରେ ଦୁଇ ସେରେ ପର୍ଯ୍ୟନ୍ତ । ଏହି ଦର ସର୍ବତ୍ର ପ୍ରାୟ ସମାନଭାବରେ ପ୍ରଚଳିତ ଥିଲା ।

ମଧୁବାବୁଙ୍କ ଜନ୍ମର ଅଳ୍ପ କେତେକ ବର୍ଷ ପୂର୍ବରୁ କଟକରେ ଚାଉଳ ଟଙ୍କାକୁ ୪୨ ସେର (କଟକୀ ୧୦୫ ତୋଳା)ଥିଲା । ସେ ଅନୁପାତରେ ଅନ୍ୟାନ୍ୟ ଜିନିଷର ଦରଦାମ ଥିଲା । ଏ ଦର କ୍ରମେ ବୃଦ୍ଧିପାଇ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଅତି ଅସମ୍ଭବ ରୂପ ଧାରଣ କରିଛି । ମଧୁବାବୁଙ୍କ ମହାପ୍ରୟାଣ ବେଳକୁ (୧୯୩୪) କଟକ ଜିଲ୍ଲାରେ ଟଙ୍କାକୁ ପ୍ରାୟ ୧୫-୧୬ ସେର ଚାଉଳ ମିଳୁଥିଲା ।

ଚାଟଶାଳୀ ଓ ଉଚ୍ଚସ୍କୁଲର ଛାତ୍ରମାନେ ଦେଶରେ ପ୍ରସ୍ତୁତ ହେଉଥିବା ଲୁଗା ବ୍ୟବହାର କରୁଥିଲେ । "ଅମଲା ଓ ବଡ଼ଲୋକମାନେ ବାଲେଶ୍ୱରୀ ପତଳା ଲୁଗା ପିନ୍ଧୁଥିଲେ । ମଫସଲବାସୀ ସମସ୍ତ ଚାଷୀ ଲୋକ ଘରର ଅରଟ କଟା ସୂତାରେ ବୁଣା ଲୁଗା ପିନ୍ଧୁଥିଲେ । ସୂତା କାଟିବା ନିମନ୍ତେ ଯେଉଁମାନଙ୍କ ଘରେ ମାଇକିନିଆ ନଥାଆନ୍ତି ସେହିମାନେ କେବଳ ବଜାରରୁ ଲୁଗା କିଣି ପିନ୍ଧୁଥିଲେ । ମଫସଲବାସୀ ସମସ୍ତଙ୍କର କପାଚାଷ ଥାଏ । କପା ବିଲରୁ ତୋଳା ହୋଇ ଆସିଲେ ଘରର କର୍ତ୍ତା ମାଇକିନିଆମାନଙ୍କୁ ତୁଳା ବାଣ୍ଟି ଦିଅନ୍ତି । ପ୍ରତ୍ୟେକ ସ୍ତ୍ରୀଲୋକର ଗୋଟିଏ ଗୋଟିଏ ଅରଟ ଥାଏ । ସୂତା କଟା ହୋଇଗଲେ ତନ୍ତୀଆଣୀ ନେଇ ସେହି ସୂତାରେ ଲୁଗା ବୁଣିଦିଏ । ବାଣି ସଚରାଚର ହାତକୁ ପଇସାଏ ଥିଲା ।" (ଫକିରମୋହନ ସେନାପତିଙ୍କ ଆତ୍ମଜୀବନଚରିତ ।)

ମଧୁବାବୁ କଟକ ସ୍କୁଲରେ ନାମ ଲେଖାଇବାବେଳେ ମଧ୍ୟ ଏହି ତନ୍ତ ଲୁଗା ପିନ୍ଧୁଥିଲେ । ତାଙ୍କର କର୍ମମୟ ଜୀବନ ଭିତରେ ସେ ଓଡ଼ିଶାରେ ବସ୍ତ୍ରଶିଳ୍ପର ଉନ୍ନତି ପାଇଁ ମନ ବଳାଇଥିଲେ । ସ୍ୱଦେଶ ଶିଳ୍ପୋନ୍ନତି ଉଦ୍ୟମ ନିମନ୍ତେ ମଧୁବାବୁ ଚିରସ୍ମରଣୀୟ ହୋଇ ରହିଛନ୍ତି । ମଧୁବାବୁଙ୍କ ବାଲ୍ୟକାଳରେ ସୂତାକଟା ଓ ଲୁଗାବୁଣାରେ ବହୁ ଲୋକ ବ୍ୟସ୍ତଯାଉଥିଲେ । ଏହା ଦେଶର ଏକ ପ୍ରଧାନ ଜୀବିକା ଥିଲା । କ୍ରମେ ଏହା ଲୋପହୋଇଯାଉଥିବା ଦେଖି ସେ ପରବର୍ତ୍ତୀ ସମୟରେ ଚିନ୍ତିତ ହୋଇପଡ଼ିଥିଲେ ଏବଂ ଏହି ପ୍ରାଚୀନ ଅର୍ଥକରୀ ଶିଳ୍ପଟିକୁ ନୂତନ ପ୍ରଣାଳୀରେ ପ୍ରତିଷ୍ଠିତ କରିବା ପାଇଁ ଯେଉଁ ଉଦ୍ୟମ କରିଥିଲେ ତାହା ତାଙ୍କର ବାଲ୍ୟକାଳ ଅଭିଜ୍ଞତାର ପ୍ରେରଣାର ଫଳ ।

# ୪ । ହାଇସ୍କୁଲ ଶିକ୍ଷା

ଗ୍ରାମ ପାଠଶାଳାର ଶିକ୍ଷା ସମାପ୍ତ ହେବା ପରେ ମଧୁବାବୁଙ୍କ ପିତା ରଘୁନାଥ ଦାସ ତାଙ୍କୁ କଟକରେ ଉଚ୍ଚ ଶିକ୍ଷା ଦେବାପାଇଁ ସ୍ଥିରକଲେ । ଏଥିପାଇଁ ସେ ଜ୍ୟୋତିଷଙ୍କୁ ତାଙ୍କ ପୁତ୍ରର ଜାତକ ଦେଖାଇଥିଲେ । ଜ୍ୟୋତିଷ କହିଲେ ଯେ ବାଳକଟିକୁ ଇଂରାଜୀ-ବିଦ୍ୟାଳୟରେ ଅଧ୍ୟୟନ କରିବା ସୁବିଧା ଦେଲେ ସେ ଉନ୍ନତି କରିବା ସୁନିଶ୍ଚିତ । ରଘୁନାଥ ଜ୍ୟୋତିଷଙ୍କ ଭବିଷ୍ୟତ ବାଣୀରେ ଆଶାନ୍ୱିତ ଓ ଉତ୍ସାହିତ ହୋଇ ମଧୁସୂଦନଙ୍କୁ ନେଇ କଟକରେ ସରକାରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ । ସେତେବେଳର ଏହି ଜିଲ୍ଲା ସ୍କୁଲଟି ପରେ ରେଭେନ୍ସା କଲିଜିଏଟ୍ ସ୍କୁଲ୍ ନାମରେ ପରିଚିତ ହେଲା ।

ଏହି ଜିଲ୍ଲା ସ୍କୁଲରେ ଓଡ଼ିଆ ଛାତ୍ରଙ୍କ ଅପେକ୍ଷା ବଙ୍ଗୀୟ ଛାତ୍ରଙ୍କ ସଂଖ୍ୟା ବେଶୀ ଥିଲା । ଓଡ଼ିଶାରେ ସେତେବେଳେ ସବୁ ସରକାରୀ ହାକିମ ଓ କିରାନି ବଙ୍ଗୀୟ ଥିଲେ କହିଲେ ଚଳେ । କଟକରେ ବଙ୍ଗୀୟ ଜମିଦାରଙ୍କର ବହୁ କୋଠାବାଡ଼ି ଥିଲା ଏବଂ ସେମାନେ ଏଠାରେ ବସବାସ କରୁଥିଲେ । ଫଳରେ ଶିକ୍ଷାର ବେଶୀ ସୁବିଧା ବଙ୍ଗୀୟ ଛାତ୍ରମାନେ ହିଁ ଭୋଗକରୁଥିଲେ । ଓଡ଼ିଆ ଛାତ୍ରଙ୍କ ସଂଖ୍ୟା ଅତି ଅଳ୍ପ ଥିଲା । ଶିକ୍ଷକମାନଙ୍କ ଭିତରେ ପ୍ରାୟ ସମସ୍ତେ ବଙ୍ଗୀୟ ଥିଲେ କହିଲେ ଚଳେ । ଶିକ୍ଷକଙ୍କ ଭିତରୁ ବହୁତ ନବାଗତ ଥିଲେ; ସେମାନେ କଲିକତା ଅଞ୍ଚଳରୁ ଆସିଥିଲେ । ଅଧିକାଂଶ ଶିକ୍ଷକ ବଙ୍ଗୀୟ ଥିବାରୁ ଓ ଏମାନଙ୍କ ଭିତରୁ ବହୁଲୋକ ଓଡ଼ିଆ ଭାଷାରେ କଥାବାର୍ତ୍ତା କରିପାରୁ ନ ଥିବାରୁ ସ୍କୁଲରେ ଛାତ୍ର ଓ ଶିକ୍ଷକମାନେ ବଙ୍ଗଳା ଭାଷାରେ କଥାବାର୍ତ୍ତା କରୁଥିଲେ । ବଙ୍ଗୀୟ ଛାତ୍ର ଓ ଶିକ୍ଷକମାନଙ୍କ ଭିତରୁ କେହି କେହି ଓଡ଼ିଆଜାତିର ସ୍ୱାର୍ଥ ନୀତି ପ୍ରତି ଅନୁକୂଳ ମତ ପୋଷଣ କରୁ ନ ଥିଲେ ଏବଂ ସୁବିଧା ପାଇଲେ ଏଣି ଓଡ଼ିଆ ଛାତ୍ରଙ୍କ ଚାଲିଚଳଣି ପ୍ରତି କଟାକ୍ଷ କରୁଥିଲେ ।

ସେତେବେଳେ ଓଡ଼ିଆମାନେ କି ଗ୍ରାମାଞ୍ଚଳ କି ସହରାଞ୍ଚଳ, ସବୁଠାରେ ପେଣ୍ଡାବାଳ ରଖୁଥିଲେ । ଚୁଟି ରଖିବା ଏକ କର୍ତ୍ତବ୍ୟ ଭିତରେ ଯାଉଥିଲା । ଇଂରେଜମାନେ ପ୍ରଥମେ କଲିକତା ଓ ବଙ୍ଗଦେଶ ଅଧିକାର କରିନେଇଥିଲେ ଏବଂ କଲିକତାକୁ ସେମାନେ ଭାରତ ସାମ୍ରାଜ୍ୟର ରାଜଧାନୀ କରିଥିଲେ । ବଙ୍ଗୀୟମାନେ ପୂର୍ବରୁ ମୁସଲମାନମାନଙ୍କ ରାଜତ୍ୱରେ ବହୁକାଳ ରହି ସେମାନଙ୍କ ଚାଲିଚଳଣିରୁ କିଛି ଅନୁକରଣ କରିଥିଲେ । ପୂର୍ବେ ଅନାଦିକାଳରୁ ବଙ୍ଗ ଦେଶରେ ମଧ୍ୟ ଶିଖା ଓ ଶିଖା-ବନ୍ଧନ ନୈଷ୍ଠିକତାର ଏକ ଚିହ୍ନରୂପେ ଗୃହୀତ ହୋଇଆସୁଥିଲା । ମୁସଲମାନ ଓ ଇଂରେଜମାନଙ୍କୁ ଅନୁକରଣ କରି କଲିକତାର ବଙ୍ଗୀୟମାନେ ଚାଲିଚଳଣି ବେଶଭୂଷା ପ୍ରଭୃତି ପରିବର୍ତ୍ତନ କରିଥିଲେ । କଲିକତାର ପ୍ରଭାବ କ୍ରମେ ସମଗ୍ର ବଙ୍ଗଦେଶରେ ବ୍ୟାପିଥିଲା ।

ଓଡ଼ିଶା ବଙ୍ଗର ବହୁ ବର୍ଷ ପରେ ମୁସଲମାନ ଓ ଇଂରେଜମାନଙ୍କଦ୍ୱାରା ଅଧିକୃତ ହୋଇଥିବାରୁ ଏ 'ନବ୍ୟ' ଆଚାର ବ୍ୟବହାର ଓଡ଼ିଶାରେ ବିଳମ୍ବରେ ପ୍ରବେଶ ଲାଭ

କରିଥିଲା । ବିଶେଷତଃ ଓଡ଼ିଶା ହିନ୍ଦୁ ସାମ୍ରାଜ୍ୟରେ ଏକ ପ୍ରଧାନ ହିନ୍ଦୁ ରାଜ୍ୟ ଥିବାରୁ ଏଠାର ଲୋକେ ହଜାର ହଜାର ବର୍ଷ ହେଲା 'ନୈଷ୍ଠିକ ହିନ୍ଦୁ' ରୂପେ ହିଁ ପରିଚିତ ଓ ସମ୍ମାନିତ ହେଉଥିଲେ ।

ମଧୁବାବୁ ଏ ସମ୍ବନ୍ଧରେ ଏକ ସୁନ୍ଦର ଟିପପ୍ପଣୀ ଲେଖିଯାଇଛନ୍ତି । "କଟକର ଇଂରେଜୀ ସ୍କୁଲରେ ମୁଁ ନାମ ଲେଖାଇବାରୁ ବଙ୍ଗାଳୀ ଛାତ୍ର, ପିଲା ଓ ଶିକ୍ଷକଙ୍କର ସଂସ୍ପର୍ଶରେ ଆସିଲି । ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ରାଜ୍ୟ ଶାସନ ଫଳରେ ଓଡ଼ିଶାରେ ବହୁ ବଙ୍ଗାଳୀ ପ୍ରବେଶ କଲେ । ବ୍ରିଟିଶ ରାଜ୍ୟଶାସନ ପଦ୍ଧତି ସମ୍ବନ୍ଧରେ ଏମାନଙ୍କର ଅଭିଜ୍ଞତା ଥିଲା । ବଙ୍ଗ ରାଜ୍ୟ ଇଂରେଜମାନଙ୍କ ଶାସନରେ ଦୀର୍ଘ ସମୟ ରହିଥିଲା । ସେମାନେ ଇଂରେଜୀ ଶାସନର ରୀତି, ନୀତି, ପଦ୍ଧତି ଓ ଇଂରେଜୀଭାଷାରେ ଅଭିଜ୍ଞତା ଲାଭକରିଥିଲେ । ଓଡ଼ିଶା ଶାସନରେ ସେମାନେ ଅଫିସରମାନଙ୍କୁ ସାହାଯ୍ୟ କରିପାରୁଥିଲେ । ଓଡ଼ିଶାବାସୀ ଇଂରେଜ ରାଜ୍ୟଶାସନର ରୀତିନୀତି, ପଦ୍ଧତି ସମ୍ବନ୍ଧରେ ଏକାବେଳେକେ ଅଜ୍ଞ ଥିଲେ । ଓଡ଼ିଆମାନଙ୍କୁ ବଙ୍ଗାଳୀମାନେ ଘୃଣା କରିବା ସ୍ୱାଭାବିକ ହୋଇପଡ଼ିଲା । ଓଡ଼ିଶା ଭାରତବର୍ଷର ପବିତ୍ର ରାଜ୍ୟ । ଏଠାର ଲୋକେ ବଙ୍ଗାଳୀମାନେ ଯେଉଁ ପ୍ରଣାଳୀରେ ଜୀବନ ଯାପନ କରୁଛନ୍ତି ସେହି ପ୍ରଣାଳୀକୁ ଗ୍ରହଣ କରିବା ପାଇଁ ଆଗ୍ରହାନ୍ୱିତ ନୁହନ୍ତି; ବେଶଭୂଷା, ଭାଷା, ଖାଦ୍ୟ ଓ ଏପରି ହଜାରେ ବିଷୟରେ ବଙ୍ଗାଳୀଙ୍କଠାରୁ ଓଡ଼ିଆଙ୍କର ପ୍ରଭେଦ ରହିଥିଲା ।"

"ମୁଁ ସେମାନଙ୍କର ଶରବ୍ୟ ଥିଲି । ମୋ ଉପରେ ମୋର ବଙ୍ଗାଳୀ ସହାଧ୍ୟାୟୀମାନେ ସବୁବେଳେ ଅବିଶ୍ରାନ୍ତଭାବରେ ଥଟ୍ଟା ପରିହାସ ବାଣ ବର୍ଷଣ କରୁଥିଲେ । ମୁଁ ଦେଶୀୟ ତନ୍ତୀଙ୍କ ବୁଣା ଲୁଗା ପିନ୍ଧୁଥିଲି । ଇଂରେଜ କୁରୁତା (shirt) ସେତେବେଳେ ଓଡ଼ିଶାରେ ପ୍ରବେଶ କରିନଥିଲା । ମୁଁ ମୁରୁଜାଇ (ବା ମେର୍ଜା) ପିନ୍ଧୁଥିଲି ।"

ବଙ୍ଗାଳୀ ସହାଧ୍ୟାୟୀମାନଙ୍କର ଅବିଶ୍ରାନ୍ତ ଥଟ୍ଟା ପରିହାସ ମଧୁସୂଦନଙ୍କ ମନରେ କ୍ଷୋଭ ଜନ୍ମାଉଥିଲେ ମଧ୍ୟ ନୂତନ ପରିବେଶ ମଧ୍ୟରେ ସେ ହଠାତ୍ କିଛି କରିପାରୁ ନଥିଲେ । ସ୍କୁଲରେ 'ବଙ୍ଗାଳୀ' ସଂଖ୍ୟାଗରିଷ୍ଠତା ଓ ବଙ୍ଗାଳୀ ପରିବେଶ ମଧ୍ୟ ଏହାର ଏକ କାରଣ । 'ରୁଦ୍ଧବୀର୍ଯ୍ୟ ଭୋଗୀ' ସ୍ୱରୂପ ମଧୁସୂଦନ ଏ ସବୁ ପରିହାସ ସହିଯାଉଥିଲେ । ପ୍ରତିଦିନ ଏପରିଭାବରେ ପରିହାସ ସହିବାକୁ ପଡ଼ୁଥିବାରୁ ମଧୁସୂଦନ ଏହି ସହାଧ୍ୟାୟୀ-ମାନଙ୍କ ପ୍ରତି ଆଉ ଦୃଷ୍ଟି ଦେଉ ନ ଥିଲେ, କିଏ କଣ କହୁଛି କିଛି ଶୁଣୁ ନ ଥିଲେ । କ୍ରମେ ଏମାନଙ୍କୁ କ୍ଷମାଦେବା ଅଭ୍ୟାସ ହୋଇଗଲା ।

ମଧୁବାବୁ ଲେଖିଛନ୍ତି—"ମୋ ମୁଣ୍ଡରେ ଲମ୍ବା ବାଳ ଥିଲା ଏବଂ ପଛଆଡ଼େ ଜୁଡ଼ା ଥିଲା । ଏହାକୁ ଦେଖି ବଙ୍ଗାଳୀ ସହାଧ୍ୟାୟୀମାନେ ମୋଠାରେ ମାଇପିଆ ଚିହ୍ନ ଅଛି ବୋଲି ଭାବୁଥିଲେ । କାରଣ ସେହି ସମୟରେ ବଙ୍ଗଦେଶରେ ଅତି ଗ୍ରେଟ ବାଳକଟା (clo e cutting) ସର୍ବତ୍ର ପ୍ରଚଳିତ ଥିଲା । ଦିନେ ଜଣେ ବଙ୍ଗାଳୀ ବାଳକ ମୋର ଚୁଟିଟାକୁ କତୁରିରେ କାଟିପକାଇଲା । ମୁଁ ଏଥିରେ ରାଗି ନ ଥିଲି । ଆମର ହେଡ୍ମାଷ୍ଟର ଜଣେ

ଅଳ୍ପ ବୟସ୍କ ବଙ୍ଗାଳୀ ଯୁବକ ଥିଲେ । ତାଙ୍କର ଯୋଗ୍ୟତା ହେଲା, ସେ ଏଣ୍ଟ୍ରାନ୍ସ୍ (ବର୍ତ୍ତମାନର ମାଟ୍ରିକୁଲେଶନ୍) ପାସ୍ କରିଥିଲେ । କଟାହୋଇଥିବା ଚୁଟିବାଳାତକ ମୋତେ ଦେଇଦେବା ପାଇଁ ମୁଁ ବଙ୍ଗାଳୀ ଛାତ୍ରବନ୍ଧୁମାନଙ୍କୁ ଅନୁରୋଧ କଲି । ଯଦି ମୁଁ କେବେ ଜଣେ ବଙ୍ଗାଳୀ କନ୍ୟାକୁ ବିବାହ କରିବାକୁ ଭାବିବି, ତେବେ ଏହି କଟା ଚୁଟିଟି ଦେଖାଇ ମୁଁ ପୁରୁଷ ଥିବା ପ୍ରମାଣ କରିବି ବୋଲି କହିଲି । ଏ ଉତ୍ତରରେ ନାହିଁଡ଼ ଥିଲା, ସେମାନଙ୍କ ଦେହକୁ କାଟିଲା ।"

ବଙ୍ଗାଳୀ ସହାଧ୍ୟାୟୀମାନେ କେଉଁପରୁଆଭାବରେ ମଧୁସୂଦନଙ୍କୁ ପ୍ରତିଦିନ ଥଟ୍ଟାତାମସା କରୁଥିଲେ, ଶେଷରେ ଚୁଟି କାଟିପକାଇଲେ । କିନ୍ତୁ ମଧୁ ଓଲଟା ଜବାବ ଦେବେ ବୋଲି ସେମାନେ ଭାବିନଥିଲେ । ମଧୁଙ୍କ ପରିହାସ ସେମାନଙ୍କୁ ବାଧିଲା ।

"ଏହି ଘଟନାଟି ଜାତିଗତ ଭେଦଭାବକୁ ଶେଷସୀମାକୁ ନେଇଗଲା । ଏଣ୍ଟ୍ରାନ୍ସ ପରୀକ୍ଷା ନିମନ୍ତେ ଯେଉଁ ଇଂରାଜୀ ସଙ୍କଳନ ପାଠ୍ୟ ନିର୍ଦ୍ଧାରିତ ଥିଲା ତାହା ହେଡ୍‌ମାଷ୍ଟର ପଢ଼ାଉଥିଲେ । ସେ ଜଣେ ନବାଗତ ବଙ୍ଗାଳୀ । ସେ ରଚନାର ଏକ ବାକ୍ୟକୁ ଏକପ୍ରକାର ଅର୍ଥ କଲେ । ମୁଁ ଏ ଅର୍ଥଟି ଠିକ୍ ନୁହେଁ ଭାବିଲି ଏବଂ ଏହା ମଧ୍ୟ ପ୍ରକାଶ କଲି । ସେତିକି ଧୈର୍ଯ୍ୟ ମୋର ଥିଲା । ଏହାକୁ ହେଡ୍‌ମାଷ୍ଟର ସ୍ୱାଧୀନତା ଓ ଅବାଧ୍ୟତାର ଏକ ନମୁନା ବୋଲି ଭାବିଲେ ଏବଂ ଜଣେ ଓଡ଼ିଆ ବାଳକଠାରେ ଏହା କେବେ ସହ୍ୟ କରାଯିବାର ନୁହେଁ । ମୋ ନାମକୁ ରେଜିଷ୍ଟ୍ରି ବହିରୁ କାଟିଦିଆଗଲା ଓ ମୋତେ ସ୍କୁଲରୁ ବହିଷ୍କାର କରାଗଲା ।"

ସ୍କୁଲରୁ ବହିଷ୍କୃତ ହେବା ଆଦେଶ ପାଇବା ପରେ ମଧୁସୂଦନଙ୍କ ଚିନ୍ତା ବୃଦ୍ଧି ପାଇଲା । ତାଙ୍କ ଜୀବନରେ ଏକ ସଙ୍କଟସନ୍ଧିବେଳା ଉପସ୍ଥିତ ହୋଇଥିବା ସେ ଉପଲବ୍ଧି କଲେ । ସ୍କୁଲରୁ ବହିଷ୍କୃତ ହେବାର ଅର୍ଥ ତାଙ୍କର ଉଚ୍ଚଶିକ୍ଷାର ପରିସମାପ୍ତି । ତାଙ୍କର ପିତା ତାଙ୍କୁ ଉଚ୍ଚଶିକ୍ଷା ପାଇବା ପାଇଁ କଟକ ପଠାଇଥିଲେ, ଉନ୍ନତି ମଧ୍ୟ ଆଶା କରିଥିଲେ । ଯଦି ଏହିଠାରେ ଏ ଯାତ୍ରା ଶେଷହୋଇଯାଏ ତାହାହେଲେ ଭବିଷ୍ୟତରେ ଉଚ୍ଚଶିକ୍ଷା-ମନ୍ଦିରର ଦ୍ୱାର ମାଡ଼ିବା ଆଉ ସମ୍ଭବ ନୁହେଁ । ଏହା ସେ ମର୍ମେ ମର୍ମେ ଅନୁଭବ କଲେ । ତାଙ୍କପ୍ରତି ଘୋର ଅନ୍ୟାୟ ହୋଇଛି ବୋଲି ସେ ଭାବିଲେ । ବିଶେଷତଃ ଜାତିଆଣିଭାବ ଏହି ଶାସ୍ତିର ମୂଳରେ ଥିବାରୁ ବାଳକ ମଧୁ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଲେ । ତେବେ ସେ ଧୈର୍ଯ୍ୟ ହରାଇ ନ ଥିଲେ । ଏ ବିପଦକୁ ସେ ଏକ ଆହ୍ୱାନ ସ୍ୱରୂପ ଗ୍ରହଣ କରିଥିଲେ । ଅନ୍ୟାୟର ପ୍ରତିକାର ପାଇଁ ସେ ଉଦ୍‌ଯୋଗୀ ହେଲେ । ସେ ସମୟର ପରିବେଷ୍ଟନୀ ମଧ୍ୟରେ ଜଣେ ଓଡ଼ିଆ ଛାତ୍ରର ପ୍ରତିକାର ଉଦ୍ୟମ ଦୁଃସାହସିକ ବ୍ୟାପାର ଥିଲା ।

ମଧୁବାବୁ ଲେଖିଛନ୍ତି, "ମୋ ଜୀବନର ଏ ଏକ ସଙ୍କଟସନ୍ଧି ମୁହୂର୍ତ୍ତ । ସ୍କୁଲରୁ ମୋତେ ବହିଷ୍କାର କରାଇଯାଇଥିବା କାର୍ଯ୍ୟର ଗୁରୁତ୍ୱ ମୁଁ ଅନୁଭବ କଲି । ଏହାର ଅର୍ଥ,

ମୋର ଉଚ୍ଚ ଇଂରେଜୀ ଶିକ୍ଷାର ପଥ ଏକାବେଳେ ବନ୍ଦ ହୋଇଯିବ । ବଙ୍ଗାଳୀମାନଙ୍କର ଇଂରେଜୀ ଭାଷାରେ ଜ୍ଞାନ ସେମାନଙ୍କର ପ୍ରାଧାନ୍ୟର କାରଣ । ଏହି ଭାଷାରେ ଜ୍ଞାନାର୍ଜନ ବିନା ମୋର ଜୀବନଯାତ୍ରା ମରୁଭୂମିରେ ଦୀର୍ଘ ଯାତ୍ରା ସମ ହେବ । ହେଡ୍ ମାଷ୍ଟରଙ୍କଠାକୁ ଯାଇ କ୍ଷମା ମାଗିବାକୁ ମୋର କେତେଜଣ ଓଡ଼ିଆ ସହାଧ୍ୟାୟୀ ପରାମର୍ଶ ଦେଲେ । ଗୋଟିଏ ରାତ ଅତି ଅଶାନ୍ତିରେ କଟିଲା, କିନ୍ତୁ ଏ ପରାମର୍ଶଟି ମୋର ବିବେକ ଓ ଆତ୍ମସମ୍ମାନକୁ ସ୍ପର୍ଶ କରିପାରିଲା ନାହିଁ । ବଡ଼ସକାଳେ କଲେକ୍ଟର ହେଲି (Healy)ଙ୍କ ବଙ୍ଗଳାକୁ ଗଲି । ସେ ସ୍କୁଲର ନାୟକ ନିର୍ଣ୍ଣେତା । ତାଙ୍କର ଦୂର ନାମ ମୋର ମନେନାହିଁ । ସେ ଅଫିସରେ କଣ କାମ କରୁଥିଲେ । ଇଣ୍ଡିଆନ୍ ସିଭିଲ ସର୍ଭିସ୍ (I. C S.)ର ବିଦ୍ୟମାନତା ମୋତେ ଜଣାନଥିଲା । ଏ ଘଟଣାର ଅବ୍ୟବହିତ ପରେ ମୁଁ ଜାଣିଲି ଯେ ହେଲେ ଇଂଲଣ୍ଡରୁ ଆସିଛନ୍ତି ଏବଂ ନିକଟରେ ଅଳ୍ପ କେତେକ ବର୍ଷ ଭିତରେ ଦେଶ ଶାସନର ସର୍ବୋଚ୍ଚ ଅଧିକାରୀଙ୍କ ସ୍ଥାନ ସେ ଅଧିକାର କରିପାରିବେ ।

"ବଡ଼ସକାଳୁ ଏ ଭଦ୍ରବ୍ୟକ୍ତିଙ୍କ ବଙ୍ଗଳାକୁ ମୁଁ ଗଲି । ମୁଁ ଜଣେ ଓଡ଼ିଆ ଭଣ୍ଡାରୀ ମୁରକାଇ ପିନ୍ଧିଲି । ତାଙ୍କ ପିଣ୍ଡାରେ ଏକ ଟେବୁଲ ଉପରେ କେତେକ ଧଳା କପ୍ ଓ ପ୍ଲେଟ୍ ଥୁଆ ହୋଇଥିବା ଦେଖିଲି । ସେତେବେଳେ ପୋରସ୍‌ଲେନ୍ କଣ ତାହା ମୁଁ ଜାଣିନଥିଲି । ଜଣେ ୟୁରୋପୀୟ ଭୋଜନ କରୁଥିବା ମଧ୍ୟ ମୁଁ କେବେ ଦେଖିନାହିଁ । ଯେଉଁ ଚପରାସୀଟି ଏହି ଟେବୁଲ ପାଖରେ ଠିଆ ହୋଇଥିଲା ସେ ମୋତେ ଟେବୁଲ ଓ ଟେବୁଲ ଉପରେ ଥିବା ଜିନିଷର କପରି ବ୍ୟବହାର ହୁଏ ତାହା ବୁଝାଇଦେଇଥିଲା । ସାହେବ ବାହାରକୁ ଆସିବାକ୍ଷଣି ତାଙ୍କ ସହିତ ଦେଖା କରିବାକୁ ମୁଁ ଉଚ୍ଚ ବାରଣ୍ଡା ତଳେ ଠିଆହେଲି ।

"ଶେଷକୁ ସେ ଶୁଭମୁହୂର୍ତ୍ତ ଉପସ୍ଥିତ ହେଲା । ସାହେବ ବାହାରକୁ ଆସିଲେ । ସେ ଓଡ଼ିଆରେ କଥାବାର୍ତ୍ତା କଲେ, ମୁଁ କଣ ଚାହୁଁଛି ବୋଲି ମୋତେ ପଚାରିଲେ । ଯାହା ଯାହା ଘଟିଥିଲା ତାହା ମୁଁ ବର୍ଣ୍ଣନା କଲି ଏବଂ ପାଠର ଅଂଶଟି ଦେଖାଇଲି । ମୁଁ ଏହି ଅଂଶଟି କପରି ବୁଝିଛି ଏବଂ ହେଡ୍‌ମାଷ୍ଟର କପରି ବୁଝାଇଛନ୍ତି ତାହା ମୋତେ ପଚାରିଲେ । ମୁଁ ବୁଝାଇଦେବା ପରେ ସେ ଟିକିଏ ବସିଲେ ଏବଂ ମୁଁ ଓଡ଼ିଆ କି ଓ ମୋର କି ଜାତି ଏହା ମୋତେ ପଚାରିଲେ । ତହିଁଆରଦିନ ପୂର୍ବାହ୍ନ ୧୧ଟା ବେଳେ ସ୍କୁଲରେ ଉପସ୍ଥିତ ହେବାପାଇଁ ମୋତେ ନିର୍ଦ୍ଦେଶ ଦେଲେ । ନିର୍ଦ୍ଧାରିତ ସମୟର ଅଳ୍ପ କିଛି କ୍ଷଣ ପୂର୍ବରୁ ମୁଁ ସ୍କୁଲରେ ଉପସ୍ଥିତ ହେଲି ଏବଂ ସ୍କୁଲର ପ୍ରବେଶଦ୍ୱାର ନିକଟରେ ଅପେକ୍ଷାକରି ଠିଆହେଲି । ମି. ହେଲି ଠିକ୍ ସମୟରେ ଉପସ୍ଥିତ ହେଲେ । ସେ ବଗିରେ ମୋ ପାଖ ଦେଇ ଯାଉଥିବାବେଳେ ମୁଁ ତାଙ୍କୁ ପ୍ରଣାମ କଲି । ହେଡ୍ ମାଷ୍ଟରଙ୍କ ସହିତ ହେଲିଙ୍କ ସାକ୍ଷାତରେ କଣ କଣ ଘଟିଲା ତାହା ମୁଁ ଜାଣେନାହିଁ, କିନ୍ତୁ ସେସବୁ ଜାଣିବାପାଇଁ ମୋର ପ୍ରବଳ କୌତୂହଳ ଜାତ ହେଲା । ଅଳ୍ପ କ୍ଷଣ ପରେ

ହେଲି ସେ ସ୍ଥାନରୁ ଚାଲିଯିବା ସଙ୍ଗେ ସଙ୍ଗେ ମୋତେ ହେଡ୍‌ମାଷ୍ଟର ଡକାଇ ପଠାଇଲେ । ସେ ମୋତେ ଦେଖିବାକ୍ଷଣି ମୋତେ କହିଲେ ଯେ, ସେ ମୋତେ କ୍ଷମା ଦେଉଛନ୍ତି ଏବଂ ସ୍କୁଲରେ ମୋତେ ପୁନର୍ବାର ଗ୍ରହଣ କରିବାପାଇଁ ସ୍ଥିର କରିଛନ୍ତି ।"

ଏହି ଘଟଣା ପରେ ମଧୁସୂଦନଙ୍କ ପ୍ରତି ବଙ୍ଗୀୟ ଛାତ୍ରମାନଙ୍କର ବ୍ୟବହାର ଆଉ ମନ୍ଦ ଆଡ଼କୁ ଗତି କଲାନାହିଁ । ହେଡ୍‌ମାଷ୍ଟର ଓ ଛାତ୍ରମାନେ ମଧୁସୂଦନ ହେଲି ସାହେବଙ୍କଠାରେ ଆପତ୍ତି କରିବେ ବୋଲି କଳ୍ପନା ସୁଦ୍ଧା କରିନଥିଲେ । ତାଙ୍କର ସାହସ ଦେଖି ତାଙ୍କ ପ୍ରତି ସମସ୍ତଙ୍କର ଭୟ ଓ ସମ୍ମାନ ମଧ୍ୟ ବୃଦ୍ଧିପାଇଲା । ବଙ୍ଗାଳୀ ଛାତ୍ରମାନେ ଆଉ ମଧୁବାବୁଙ୍କୁ ଥଟ୍ଟା ପରିହାସ କଲେନାହିଁ ।

ହେଲିସାହେବ ହେଡ୍‌ମାଷ୍ଟରଙ୍କ ଅର୍ଥରେ ଭ୍ରମ ଦେଖିଲେ କି ନାହିଁ ତାହା ଜଣାଯାଇ ନାହିଁ, ତେବେ ଜଣେ ଛାତ୍ର ଅନ୍ୟପ୍ରକାର ଅର୍ଥ କଲା ବୋଲି ତାକୁ ସ୍କୁଲରୁ ବହିଷ୍କାର କରିବା ଅତି କଠୋର ଦଣ୍ଡ ହୋଇଥିବା ସେ ଉପଲବ୍ଧି କରିଥିବେ । ଜାତି-ବିଦ୍ୱେଷର ଅପକାରିତା ସମ୍ବନ୍ଧରେ ମଧ୍ୟ ହେଡ୍‌ମାଷ୍ଟରଙ୍କୁ ବୁଝାଇଥିବା ଅସମ୍ଭବ ନୁହେଁ । ଓଡ଼ିଆମାନଙ୍କ ଭିତରେ ଶିକ୍ଷାର ପ୍ରସାର ପାଇଁ ସରକାର ଯତ୍ନ କରୁଥିଲାବେଳେ, ହେଡ୍‌ମାଷ୍ଟରଙ୍କର ଏଭଳି ମତଗତ ସରକାରୀ ନୀତିର ପରିପନ୍ଥୀ ବୋଲି ହାକିମ ଭାବିଥିବା ମଧ୍ୟ ସମ୍ଭବ । ସର୍ବୋପରି, ମଧୁସୂଦନଙ୍କ ପରି ଜଣେ ନିର୍ଭୀକ ଛାତ୍ରକୁ ସୁବିଧା ଦାନ କରିବା ସ୍ଥଳେ ତାଙ୍କୁ ବିନା କାରଣରେ କଠୋର ଦଣ୍ଡ ଦେବାଦ୍ୱାରା ଦେଶବାସୀଙ୍କ ମଧ୍ୟରେ ପ୍ରତିକୂଳ ମନୋଭାବ ପ୍ରକାଶ ପାଇବା ସମ୍ଭବ ଥିବା ମଧ୍ୟ ହାକିମ ବୁଝିଥିବେ । 'କାକୁଡ଼ି-ଚୋରକୁ ମୁଣ୍ଡକାଟ' ନୀତିରେ ହେଡ୍‌ମାଷ୍ଟର ତାଙ୍କୁ ତାଲକରି ଥୋଇବା ଅନୁଚିତ ହୋଇଥିଲା । ସାହେବ ସ୍ଥିତାବସ୍ଥା ରକ୍ଷାପାଇଁ ନିର୍ଦ୍ଦେଶ ଦେଇ ସମସ୍ୟାର ସନ୍ତୋଷଜନକ ସମାଧାନ କରିଥିଲେ, ଏଥିରେ ସନ୍ଦେହ ନାହିଁ ।

ସ୍କୁଲରେ ବଙ୍ଗୀୟ ଛାତ୍ରମାନଙ୍କର କ୍ରମାଗତ ଅବିଶ୍ରାନ୍ତ ପରିହାସ ଫଳରେ ମଧୁବାବୁଙ୍କ ମନରେ ଏକପ୍ରକାର ବିଷାଦର ଛାୟା ଖେଳିଯାଇଥିଲା । ସେ ସ୍ୱଗ୍ରାମରେ କିପରି ସମ୍ମାନ ଓ ସୁଖରେ କାଳଯାପନ କରୁଥିଲେ । ତାହା ମନେ ପକାଇବା କ୍ଷଣି ତାଙ୍କ ଆଖିରୁ ଲୁହ ଗଡ଼ିଯାଉଥିଲା । 'ଆପଣା ଦେଶରେ ରାଜା ତ, ପରଦେଶରେ କୁକୁର' ଏ ନୀତିବାକ୍ୟଟି ତାଙ୍କର ମନେପଡ଼ିଯାଉଥିଲା । ପିଲାଦିନର 'ଜମିଦାରିଆ' ସୁଖଭୋଗ ଓ ସମ୍ମାନ ଆଉ ଜୀବନରେ ଘଟିବା ସମ୍ଭବ ନୁହେଁ ବୋଲି ଭାବି ସେ ମନକୁ ଶାନ୍ତକଲେ ।

ଏ ଘଟଣା ପରେ ତାଙ୍କର ମନୋଭାବରେ ଏକ ପରିବର୍ତ୍ତନ ଦେଖାଦେଲା । ନିରାଶା ବା ହତାଶା ସ୍ଥାନରେ ଆଶାର ସଞ୍ଚାର ହେଲା, ଭବିଷ୍ୟତ ଉଜ୍ଜ୍ୱଳ ଦେଖାଗଲା । ଇଂରେଜୀ ଉଚ୍ଚଶିକ୍ଷା ଉଦ୍ଦେଶ୍ୟରେ ସେ ଗ୍ରାମାଞ୍ଚଳରୁ କଟକ ସହରକୁ ଆସିଥିଲେ । ସେହି ଉଦ୍ଦେଶ୍ୟ ସିଦ୍ଧି ବାଟରେ ତାଙ୍କର ଗତି ଅପ୍ରତିହତ ରହିବ, ଏହି ସନ୍ତୋଷ ତାଙ୍କ ମନକୁ ଆପ୍ଳୁତ

କରିଦେଲା । ସେ ନିଜେ ଏହାକୁ ଏପରି ଭାବରେ ବିଶ୍ଳେଷଣ କରିଛନ୍ତି । "କେତେବର୍ଷକାଳ ସ୍କୁଲରେ ବଙ୍ଗୀୟମାନଙ୍କର ଅତ୍ୟାଚାର ସହ୍ୟକରିଥିବା କଥା ମନେପଡ଼ିଲେ ମୋର ମନରେ ଦୁଃଖ ଜାତହେଉଥିଲା । ଏଥିରୁ ଏବେ ପରିତ୍ରାଣ ଲାଭକରି ଟିକିଏ ନିଶ୍ଚିନ୍ତ ହୋଇଛି । ଗ୍ରାମରେ ଥିଲାବେଳେ ଲୋକଙ୍କଠାରୁ ଯେଉଁ ସମ୍ମାନ ଓ ଶ୍ରଦ୍ଧା ଲାଭକରୁଥିଲି ତାହା କଟକ ଆସିବା ପରେ କୁଆଡ଼େ ଉଭେଇଗଲା; ଆଉ ତାକୁ ଫେରିପାଇବା ସମ୍ଭବ ନୁହେଁ । ଜୀବନରେ ଘୃଣା ଓ ଅପମାନ ପାଇବାକୁ ହେବ, ଏଥିପାଇଁ ମୁଁ ନିଜ ମନକୁ ପ୍ରସ୍ତୁତ କରି ରଖୁଥିଲି, ଏଥିପାଇଁ ଦୁଃଖ କରିବାର କିଛିନାହିଁ । ସ୍କୁଲରୁ ବିତାଡ଼ିତ ହେବା ସିଦ୍ଧାନ୍ତ ପରେ ମୋର ମନରେ ଯେଉଁ ନିରାଶଭାବ ଦେଖାଯାଇଥିଲା, ତାହା ସେହି ସିଦ୍ଧାନ୍ତ ରଦ୍ଦ ହେବାପରେ କୁଆଡ଼େ ଉଭେଇଗଲା । ଆଶାଦିଗ୍‌ବଳୟରେ ଯେଉଁ ମେଘ ଦେଖାଦେଇଥିଲା, ତାହା ଦୂର ହୋଇଯିବାରୁ ଉଜ୍ଜ୍ୱଳ ଦେଖାଗଲା ଓ ଭବିଷ୍ୟତ ଜୀବନର ଏକ ଦୀର୍ଘ ଚିତ୍ର ଆଖିଆଗରେ ଭାସିଉଠିଲା ।"

ଗ୍ରାମରେ ଥିବାବେଳେ ସେ ଯେଉଁ ସମ୍ମାନ ଓ ଆଦର ପାଉଥିଲେ ତାହା ପୂର୍ବପୁରୁଷଙ୍କ ପଦବୀ ଯୋଗୁଁ ସମ୍ଭବ ହୋଇଥିଲା । ଏ ସମ୍ମାନ ଓ ଆଦର ସେ ଉତ୍ତରାଧିକାରୀ ସୂତ୍ରରେ ପାଇଥିଲେ । ଏହା ଅପେକ୍ଷା ଯୋଗ୍ୟତା ଅର୍ଜିତ ସମ୍ମାନ ଓ ଆଦର ଅତି ମୂଲ୍ୟବାନ୍ ଓ କାମ୍ୟ, ଏହା ସେ ଅନୁଭବ କରିଥିଲେ । ଏହି କାରଣରୁ ସେ ଯୋଗ୍ୟତା ଅର୍ଜିତ ସମ୍ମାନ ଓ ଆଦର ଲାଭକରିବାପାଇଁ ଜୀବନର ବ୍ରତ କଲେ ।

ଖ୍ରୀ: ୧୮୬୪ରେ ୧୬ ବର୍ଷ ବୟସରେ କଟକ ଜିଲ୍ଲା ସ୍କୁଲରେ ପରୀକ୍ଷା ଦେଇ ମଧୁବାବୁ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ମଧୁବାବୁ ଯେଉଁ ବର୍ଷ (ଖ୍ରୀ: ୧୮୬୪) ଏଣ୍ଟ୍ରାନ୍‌ସ ପାସ୍ କଲେ, ସେ ବର୍ଷ ପାଞ୍ଚଜଣ ଛାତ୍ର କଟକ ଜିଲ୍ଲା ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କ ପୂର୍ବରୁ ଓ ପରେ ମଧ୍ୟ ଦୁଇ ତିନିଜଣ ଛାତ୍ର ପ୍ରତିବର୍ଷ ଉତ୍ତୀର୍ଣ୍ଣ ହୋଇଥିବା ଦେଖାଯାଏ ।

୧୮୫୯—ଶ୍ରୀ ବନମାଳୀ ସିଂହ (ଢେଙ୍କାନାଳ, 'ଶକୁନ୍ତଳା ଉପାଖ୍ୟାନ'ର ଲେଖକ), ହାରାଧନ ଘୋଷ (କ), ପ୍ୟାରିମୋହନ ସେନ (ଭାଷା ବ୍ୟାକରଣ ଲେଖକ) ।

୧୮୬୦—ବିଚ୍ଛନ୍ଦ ପଟ୍ଟନାୟକ (ସ୍କୁଲ ଡେପୁଟି ଇନ୍‌ସପେକ୍ଟର, 'ରଘୁବଂଶ'ର ଲେଖକ), ଲାଲ୍ ଜଗମୋହନ ଲାଲ ('ବାବାଜୀ' ନାଟକର ଲେଖକ), ନନ୍ଦକିଶୋର ଦାସ ('ଓଡ଼ିଶା ବିଜୟ', 'ଭ୍ରମଭଞ୍ଜନ'ର ଲେଖକ),

୧୮୬୧—ଦୁଇଜଣ

୧୮୬୨ – ହାରାଧନ ଘୋଷ (ଖ), ମହେନ୍ଦ୍ରନାଥ ପାଲିତ, ବସନ୍ତ କୁମାର ସେନ ।

୧୮୬୩ ଗୋପାଳଚନ୍ଦ୍ର ଦାସ, ଯୋଗେନ୍ଦ୍ରନାଥ ପାଲିତ ।

୧୮୬୪—ଇ. ଜେ. ଗ୍ରିଟାଲି, ହରିଚରଣ ମୁଖାର୍ଜି, ମଧୁସୂଦନ ଦାସ, ମଧୁସୂଦନ ମହାପାତ୍ର, ଶ୍ୟାମଚରଣ ବେନେର୍ଜୀ ।

(କବିବର) ରାଧାନାଥ ରାୟ ୧୮୬୩ରେ ବାଲେଶ୍ୱର ଜିଲ୍ଲା ସ୍କୁଲରୁ ଏଣ୍ଟ୍ରାନ୍‌ସ ପାସ୍ କରିଥିଲେ । ୧୮୬୪ରେ ପୁରୀ ଜିଲ୍ଲା ସ୍କୁଲରୁ ରାସବିହାରୀ ନାୟକ ପାସ୍ କରିଥିଲେ ।

## ୪ । ବାଲେଶ୍ୱର ଓ କଲକତା ଅବସ୍ଥାନ

ମଧୁବାବୁ କଟକରୁ ଯାଇ ବାଲେଶ୍ୱରରେ ଖ୍ରୀ: ୧୮୬୫ରେ ପହଞ୍ଚିଲେ । ସେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ତୃତୀୟ ଶିକ୍ଷକ (ଥାର୍ଡ଼ ମାଷ୍ଟର) ରୂପେ ନିଯୁକ୍ତିପାଇଥିଲେ ।

ସେତେବେଳେ ବାଲେଶ୍ୱର ସହରରେ ବଙ୍ଗାଳୀ-ଓଡ଼ିଆ ଭେଦଭାବ ମୁଣ୍ଡ ଟେକୁଥିଲା । ପୂର୍ବେ ସରକାରୀ ଅଫିସମାନଙ୍କରେ ସବୁ କିରାଣି ଓ ହାକିମ ବଙ୍ଗାଳୀ ଥିଲେ । ଓଡ଼ିଆମାନଙ୍କୁ ଏମାନଙ୍କ ଭିତରୁ କେହି କେହି ଘୃଣା କରୁଥିଲେ । ବହିରାଗତ ବଙ୍ଗାଳୀଙ୍କ ଭିତରୁ ଏହା ଆରମ୍ଭ ହୋଇଥିଲା । ଓଡ଼ିଆମାନେ ନିଜ ଭାଷା ଓ ସ୍ୱକୀରବାକରର ଉନ୍ନତି ପାଇଁ ଚେଷ୍ଟା ଚଳେଇଲେ, ଏହି ନବାଗତ ବିଦେଶୀ ବଙ୍ଗାଳୀମାନେ ଏହା ସହ୍ୟ କରି ପାରୁ ନଥିଲେ । ଫକୀରମୋହନ ସେନାପତିଙ୍କୁ କେନ୍ଦ୍ର କରି ଓଡ଼ିଆମାନେ ନିଜ ନିଜର ଅଭାବ ଅସୁବିଧା ଜଣାଇବାକୁ ଚେଷ୍ଟା କରୁଥିବାରୁ, ଏହି ସ୍ୱାର୍ଥାନ୍ୱେଷୀ ବଙ୍ଗାଳୀମାନେ ବିଶେଷ ଭାବରେ ଅସନ୍ତୁଷ୍ଟ ଥିଲେ । ସେନାପତି ନିଜର ଆତ୍ମଚରିତରେ ଲେଖିଛନ୍ତି "ସେ ସମୟରେ ବାଲେଶ୍ୱରରେ ବଙ୍ଗାଳୀ ଏବଂ ଓଡ଼ିଆଙ୍କ ମଧ୍ୟରେ ବିବାଦ ଚଳୁଥିଲା । ସାହେବ-ମାନେ ମୋ ସପକ୍ଷ ଥିବାରୁ ବଙ୍ଗାଳୀ ହାକିମ ଏବଂ ବଡ଼ ବଡ଼ କିରାଣିମାନେ ମୋ ପାଖରେ ଶଙ୍କି ରହୁଥାନ୍ତି । ସେ ସମୟରେ ବାଲେଶ୍ୱରରେ ନିମ୍ନଶ୍ରେଣୀର ହାକିମ ଏବଂ ବଡ଼ ବଡ଼ ବେତନଭୋଗୀ କର୍ମଚାରୀ ପ୍ରାୟ ସମସ୍ତେ ବଙ୍ଗାଳୀ ଥିଲେ ।"

ସେତେବେଳେ ବିଖ୍ୟାତ ଭାଷାବିତ୍ ଓ ଓଡ଼ିଆପ୍ରେମୀ ଜନ୍ ବିମ୍‌ସ (John Beams) ସାହେବ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଥିଲେ ଏବଂ ସେ ପଞ୍ଚଭାଷିକ ବ୍ୟାକରଣ (Comparative Grammar of the Indian Languages) ଲେଖୁଥିଲେ । ସେନାପତିଙ୍କ ସହିତ ଏ ସମ୍ପର୍କରେ ସେ ବହୁତ ଥର ଆଲୋଚନା କରୁଥିଲେ ଏବଂ ତାଙ୍କୁ ପଣ୍ଡିତ ବୋଲି ଡାକୁଥିଲେ । ସେତେବେଳେ ସେନାପତି ବାଲେଶ୍ୱର ମିସନ୍ ସ୍କୁଲରେ ପ୍ରଥମ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । (ଖ୍ରୀ: ୧୮୬୪-୧୮୭୬) ।

ମଧୁବାବୁ ବାଲେଶ୍ୱରରେ ଶିକ୍ଷକତା କରୁଥିବା ସମୟରେ ଏହି ଜାତିବିଦ୍ୱେଷ ଥିଲା । ପ୍ରାଚୀନ ବଙ୍ଗାଳୀ ଅଧିବାସୀଙ୍କ ଭିତରୁ ଅଧିକାଂଶ ଓଡ଼ିଆଙ୍କ ସପକ୍ଷରେ ଥିଲେ ।

ମୋତିଗଞ୍ଜ ବଜାରରେ ମଧୁବାବୁ ରହୁଥିଲେ । ଫକୀରମୋହନ, ରାଧାନାଥ ରାୟ (ସେ ମଧ୍ୟ ଶିକ୍ଷକ ଥିଲେ) ଓ ମଧୁବାବୁ ପାଖପାଖରେ ରହୁଥିଲେ । "ବାଲେଶ୍ୱରର

ମୋତିଗଞ୍ଜବଜାରର ଦକ୍ଷିଣ ପ୍ରାନ୍ତରେ ଗୋଟିଏ ପୁଷ୍କରଣୀର ନାମ ଗଡ଼ଗଡ଼ିଆ । ସେ ପୁଷ୍କରଣୀ ବଳେଶ୍ୱର ମୌଜାର ଅନ୍ତର୍ଗତ । ବିଦେଶୀ ଅଧିକାଂଶ ଅମଲ, କିରାଣୀ ଏବଂ ଶିକ୍ଷକମାନଙ୍କର ଏହି ଗ୍ରାମରେ ବାସ । କଦାଚିତ୍ କେହି ଡେପୁଟି, ମୁନ୍‌ସିଫ୍ ମଧ୍ୟ ସେଠାରେ ବସାକରି ରହିଯାଆନ୍ତି । ଗଡ଼ଗଡ଼ିଆ ପୂର୍ବଦିଗ କିଛି ଦୂରରେ କବିବର ରାଧାନାଥଙ୍କ ବସା । ପଶ୍ଚିମ ଦିଗକୁ କିଛି ଅଧିକ ଦୂରରେ ମୋହର ଘର । ବାବୁ ମଧୁସୂଦନ ଦାସ (Hon. M. S. Das, C. I. E.) ସେ ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲର ଥାର୍ଡ ମାଷ୍ଟର ଥିଲେ । ତାଙ୍କର ବସା ମଧ୍ୟ ଗଡ଼ଗଡ଼ିଆ ସମୀପରେ ଥିଲା । ଗ୍ରୀଷ୍ମକାଳରେ ଆମ୍ଭେମାନେ ପ୍ରାୟ ପ୍ରତିଦିନ ପରସ୍ପର କଥୋପକଥନ ଓ ବାୟୁସେବନ ନିମନ୍ତେ ଉକ୍ତ ପୁଷ୍କରଣୀର ପକ୍‌କା ଘାଟରେ ଏକତ୍ରିତ ହେଉଥିଲୁ । ପିତାଙ୍କ ଭୟରେ ରାଧାନାଥ ଦିବାଲୋକରେ ପ୍ରକାଶ୍ୟରେ ଆମ୍ଭମାନଙ୍କ ସହିତ ଆସି ବସିପାରନ୍ତି ନାହିଁ । ଦିନେ ଦିନେ ସନ୍ଧ୍ୟା ଉତ୍ତାରେ ଆସି ପହଞ୍ଚିଯାଆନ୍ତି । କିନ୍ତୁ ମଧୁସୂଦନ ପ୍ରତ୍ୟହ ଆସି ଆମ୍ଭମାନଙ୍କ ଦଳରେ ମିଶୁଥିଲେ । ସେହି ତରୁଣ ବୟସରେ ମଧ୍ୟ ତାହାଙ୍କର ଉଚ୍ଚାକାଙ୍କ୍ଷା ବିଷୟ ଶୁଣି ଆମ୍ଭେମାନେ ସ୍ତମ୍ଭିତ ହୋଇଯାଉଥିଲୁ । ସେ ସେଠାରୁ କର୍ମ ତ୍ୟାଗ କରି କଲିକତା ଚାଲିଯାଇଥିଲେ ।" (ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀ)

ହାଇସ୍କୁଲର ଶିକ୍ଷକ ପଦ ତ୍ୟାଗକରି ମଧୁସୂଦନ ବାଲେଶ୍ୱରର ରେଜିଷ୍ଟ୍ରେସନ୍ ଅଫିସରେ କିରାଣି ରୂପେ ଯୋଗଦେଲେ । ସେଠାରେ କାର୍ଯ୍ୟ କରୁଥିବା ବେଳେ କେତେ ଜଣ ଖଳପ୍ରକୃତିର ଲୋକ ତାଙ୍କ ବିରୁଦ୍ଧରେ ସରକାରୀ ଅଫିସରୁ ଟଙ୍କା ତୋସରପାତ୍ କରିଥିବା ଅଭିଯୋଗ କରିଥିଲେ । ସେତେବେଳେ ବଙ୍ଗୀୟ-ଉତ୍କଳୀୟ ଭେଦଭାବ ବାଲେଶ୍ୱରରେ ଉତ୍କଟ ଆକାର ଧାରଣ କରିଥିଲା । ମଧୁସୂଦନ ଏହାର ଶିକାର ହୋଇପଡ଼ିଥିବା କେହି କେହି ଅନୁମାନ କରନ୍ତି । କିନ୍ତୁ ସେ ନିର୍ଦୋଷ ଥିବା ପ୍ରମାଣିତ ହୋଇଥିଲା । ବାଲେଶ୍ୱର ଅବସ୍ଥାନ ବେଳେ ସେ ମିତବ୍ୟୟୀ ନଥିଲେ । ଏହି କାରଣରୁ ତାଙ୍କର ବନ୍ଧୁମାନେ ତାଙ୍କୁ ସମାଲୋଚନା କରୁଥିଲେ ଏବଂ ତାଗିଦ ମଧ୍ୟ କରୁଥିଲେ । ଉଚ୍ଚଶିକ୍ଷା ଲାଭ ଆଶାରେ ମଧୁସୂଦନ କଲିକତା ପ୍ରୟାଣ କଲେ ।

## ପ୍ରଥମ କଲିକତା ଯାତ୍ରା (ଖ୍ରୀ: ୧୮୬୬)

ମଧୁସୂଦନ ବାଲେଶ୍ୱରରେ କଲେକ୍ଟରଙ୍କ ଅଫିସରେ କିରାଣି କାମ କରୁଥିବାବେଳେ ବେତନରୁ କିଛି କିଛି ସଞ୍ଚୟ କରି ରଖୁଥିଲେ । ଉଚ୍ଚ ଶିକ୍ଷାର ଅଭିଳାଷ ଥିବାରୁ ସେ କଲିକତା ଯାଇ ଅଇ. ଏ., ବି. ଏ. ପ୍ରଭୃତି ପଢ଼ିବା ପାଇଁ ମନେ ମନେ ସ୍ଥିର କରିସାରିଥିଲେ ।

ଖ୍ରୀ: ୧୮୬୬ରେ ସେ କଲିକତା ଯିବା ପ୍ରସ୍ତାବ କରି ପିତାଙ୍କୁ ପତ୍ର ଲେଖିଲେ । ପିତା ଏଥିରେ ରାଜି ହେଲେ ନାହିଁ । ମଧୁ ସୁସ୍ଥ ସବଳ ନୁହନ୍ତି, ସବୁବେଳେ ରୁଗ୍ଣ । ଏପରି ଅବସ୍ଥାରେ ଏତେ ଦୂରକୁ ତାଙ୍କୁ ଛାଡ଼ିବା ପାଇଁ ପିତାଙ୍କର ମନ ହେଲା ନାହିଁ । ବାଟ ମଧ୍ୟ ନିରାପଦ ନଥିଲା । ସମୁଦ୍ର ଯାତ୍ରାରେ ସ୍ୱାସ୍ଥ୍ୟଭଙ୍ଗ ହେବାର ଆଶଙ୍କା ମଧ୍ୟ ଥିଲା । କଲିକତାରେ ସ୍ୱାସ୍ଥ୍ୟହାନି କି ଅନ୍ୟ କୌଣସି ଅସୁବିଧା ହେଲେ କଟକରେ ସମ୍ବାଦ ପହଞ୍ଚିବା ଓ ତାପରେ କଲିକତା ଯିବା କିଛି ସହଜ ନଥିଲା । ୫।୦ ଦଶ ଦିନ କାଳ ବହୁ କଷ୍ଟ ସହ୍ୟ କରିବାକୁ ହେଉଥିଲା । ସବୁଆଡ଼ୁ ବିଚାର କରି ପିତା ଏ ପ୍ରସ୍ତାବରେ ସମ୍ମତ ହୋଇନଥିଲେ । କିନ୍ତୁ ମଧୁଙ୍କ ଉଚ୍ଚଶିକ୍ଷା ପାଇଁ ପ୍ରବଳ ଆଗ୍ରହ ପିତାଙ୍କ ଅସମ୍ମତ ଯୋଗୁଁ ହ୍ରାସ ପାଇନଥିଲା । ସେ ପିତାଙ୍କୁ ନଜଣାଇ କଲିକତା ବାହାରିପଡ଼ିଲେ । ପିତାଙ୍କଠାରୁ କୌଣସି ଅର୍ଥ ପାଇବାକୁ ମଧ୍ୟ ସେ ଆଶା କରିନଥିଲେ । ନିଜେ ବେତନରୁ ଯାହା ସଞ୍ଚୟ କରିଥିଲେ ତାହାକୁ ସମ୍ବଳ କରି ଖ୍ରୀ: ୧୮୬୬ରେ କଲିକତା ଯାତ୍ରାକଲେ ।

ପିତାଙ୍କ ଅସମ୍ମତି ସତ୍ତ୍ୱେ କଲିକତା ଯିବାରୁ ମଧୁସୂଦନଙ୍କ ପ୍ରତି ପିତା ଅସନ୍ତୁଷ୍ଟ ହୋଇଥିଲେ । କଲିକତା ଯିବା ପ୍ରସ୍ତାବକୁ ସେ ପସନ୍ଦ କରିନଥିବାରୁ ସେ ପୁତ୍ରକୁ ରାସ୍ତା ଖର୍ଚ୍ଚାଦି ଦେଇନଥିଲେ । ପୁତ୍ର ଚାକିରି କରି ରୋଜଗାର କରୁଥିବାରୁ ନିଶ୍ଚୟ କିଛି ସଞ୍ଚୟ କରୁଥିବା ସେ ଅନୁମାନ କରିଥିବେ । କାରଣ, ଏହି ସମୟରେ ମଧୁ ପିତାଙ୍କଠାକୁ କିଛି ଅର୍ଥ ପଠାଉନଥିଲେ । ପୁତ୍ର ଯୋଗ୍ୟ ଓ ରୋଜଗାରିଆ ହେବା ପରେ ତାଙ୍କ ପ୍ରତି କଡ଼ା ବ୍ୟବହାର କରିବାକୁ ପିତା ଉଚିତ ମନେ କରି ନଥିଲେ । ପିତା ମଧ୍ୟ ଶିକ୍ଷିତ, ପୁଣି ଓକିଲାତିରେ କିଛି ଅର୍ଥ ମଧ୍ୟ ଉପାର୍ଜନ କରୁଥିଲେ । ଘର ଖର୍ଚ୍ଚ ଚଳାଇବା ପାଇଁ ମଧୁଙ୍କ ଉପରେ ସେ ନିର୍ଭର କରୁନଥିଲେ । ମଧୁ ପଢ଼ା ଛାଡ଼ି କେତେ ଦିନ ବା ଚାକିରି କରିଛନ୍ତି ଯେ ପିତାଙ୍କଠାକୁ ଅର୍ଥ ପଠାଇବେ । ପିତା ଏହା ଜାଣିଥିବାରୁ ଅର୍ଥ ପାଇଁ ପୁତ୍ରଠାରେ କେବେ ଦାବୀ କରିନଥିଲେ । ପୁତ୍ର ଉଚ୍ଚଶିକ୍ଷାର ଅଭିଳାଷରେ ତନ୍ମୟ ହୋଇ ଅର୍ଜିତ ଅର୍ଥରୁ କିଛି କିଛି ସଞ୍ଚୟ କରି ରଖିଥିଲେ । ସେ ଭାବିଥିଲେ ଯେ ଏହି ପ୍ରସଙ୍ଗରେ ପିତାଙ୍କ ଉପରେ ବୋଝ ଲଦି ଦେବା ଆଦୌ ଉଚିତ ହେବନାହିଁ ।

କଲିକତା ଯିବା, ସେଠାରେ ରହିବା, ଶିକ୍ଷା କରିବା ପ୍ରଭୃତି ପାଇଁ ଯେତେ ଅର୍ଥ ଆବଶ୍ୟକ ସେତେ ମଧୁସୂଦନଙ୍କଠାରେ ନଥିଲା । ସେ କଲିକତାରେ ଉପସ୍ଥିତ ହେବାମାତ୍ରେ ସବୁ ଦିଗର ବିଚାର ତାଙ୍କ ମନକୁ ଆକ୍ରମଣ କଲା । ସେ ଚିନ୍ତିତ ହୋଇପଡ଼ିଥିଲେ ମଧ୍ୟ ହତାଶ ହୋଇନଥିଲେ । ନିଜ ବାହୁବଳ ଉପରେ ନିର୍ଭର କରି ଭବିଷ୍ୟତ ପନ୍ଥା ସ୍ଥିର କରି ନେଇଥିଲେ ।

ସେତେବେଳକୁ ସମଗ୍ର ଓଡ଼ିଶାରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ଏ ଭୟାବହ ଦୁର୍ଭିକ୍ଷକୁ ଲୋକେ ନଅଙ୍କ-ଦୁର୍ଭିକ୍ଷ କହନ୍ତି । ଖ୍ରୀ: ୧୮୬୫ ଓ ୧୮୬୬ ଏ ଦୁଇବର୍ଷ ଭିତରେ ଓଡ଼ିଶାର

ପ୍ରାୟ ଏକତୃତୀୟାଂଶ ବା ଆଠ ଦଶ ଲକ୍ଷ ଲୋକ ଅନ୍ନ ବିନା ମରିଯାଇଥିଲେ । ମନୁଷ୍ୟ ମାଂସ ମନୁଷ୍ୟ ଖାଇଥିବା ଘଟଣା ମଧ୍ୟ ଏକାଧିକ ସ୍ଥାନରେ ଦେଖାଯାଇଥିଲା । କି ରାଜା, ପ୍ରଜା, ଧନୀ, ଦରିଦ୍ର ସମସ୍ତେ ନିଜ ନିଜ ଜୀବନ ରକ୍ଷା ପାଇଁ ସର୍ବଦା ଚିନ୍ତିତ ଥିଲେ । ଏ ଅବସ୍ଥାରେ ପୁତ୍ରକୁ କଲିକତା ଛାଡ଼ିବା ପାଇଁ ପିତାଙ୍କର ମନ ବଳି ନ ଥିବା ଅସଙ୍ଗତ ନୁହେଁ । ସେ ପୁଣି ତାଙ୍କର ଜ୍ୟେଷ୍ଠପୁତ୍ର ! ଦୁର୍ଭିକ୍ଷ ହେତୁ, ପିତାଙ୍କର ଜମିରୁ ଓ ବ୍ୟବସାୟରୁ ଆୟ ଏକାବେଳକେ କମିଯାଇଥିଲା । ସେ ବା କେଉଁଠାରୁ କି ଅର୍ଥ ଆଣି ପୁତ୍ରକୁ ଦେବେ ? ତତ୍କାଳୀନ ଭୟାବହ 'ହା ଅନ୍ନ' 'ହା ହୁତାଶ' ମନୋଭାବ ଅର୍ଥସାପେକ୍ଷ ଯେ କୌଣସି ଉଦ୍ୟମକୁ, ବିଶେଷତଃ ବିଦେଶଯାତ୍ରାକୁ ଯେ ଉତ୍ସାହିତ କରୁନଥିଲା ଏହା ସ୍ୱାଭାବିକ ।

ଏ ଅବସ୍ଥାରେ ମଧୁବାବୁ କଲିକତା ଯାତ୍ରାକରି ଦୁଃସାହସିକ କାର୍ଯ୍ୟ କରିଛନ୍ତି ବୋଲିବାକୁ ହେବ । ବାଲେଶ୍ୱରରୁ ଯାଇ କଲିକତାରେ ପହଞ୍ଚି ମଧୁବାବୁ ନିଜର ବାସସ୍ଥାନ ନିର୍ଣ୍ଣୟ କରିବାପାଇଁ ବ୍ୟଗ୍ର ହୋଇପଡ଼ିଲେ । ସେତେବେଳର କଲିକତା ସହର ବର୍ତ୍ତମାନ ପରି ଏତେ ବିରାଟ ନଥିଲେ ମଧ୍ୟ, ବଡ଼ ଆକାର ଧାରଣ କରିସାରିଥିଲା । ଟ୍ରାମ୍, ବସ୍, ମୋଟରକାରର ପ୍ରଚଳନ ନଥିଲା କହିଲେ ଚଳେ । ଘୋଡ଼ାଗାଡ଼ି ଓ ପାଲିଙ୍କି ବଡ଼ଲୋକ ଓ ହାକିମ ହୁକୁମାଙ୍କ ଯାନବାହନ ଥିଲା । ସାଧାରଣ ଲୋକେ ଚାଲିକରି ଯିବା-ଆସିବା କରୁଥିଲେ ।

ହୁଗୁଳୀ (ଗଙ୍ଗା) ନଦୀ ଘାଟରୁ ଓହ୍ଲାଇ ମଧୁବାବୁ କେଉଁଠାକୁ ଯିବେ କିଛି ଠିକ୍ କରିପାରିଲେ ନାହିଁ । କଲିକତାରେ ମଧ୍ୟ ତାଙ୍କର କେହି ପରିଚିତ ନଥିଲେ । ବାଲେଶ୍ୱରରୁ ମଧ୍ୟ କୌଣସି ଭଦ୍ରବ୍ୟକ୍ତିଙ୍କଠାରୁ ସେ କଲିକତାର କାହା ପାଖକୁ ଚିଠି ଆଣିନଥିଲେ । ମଧୁବାବୁ ଓ ଫକୀରମୋହନଙ୍କ ପ୍ରତି ବାଲେଶ୍ୱରର ବଙ୍ଗାଳୀ ଭଦ୍ରବ୍ୟକ୍ତି ଓ ହାକିମହୁକୁମା-ମାନେ ସନ୍ତୁଷ୍ଟ ନଥିଲେ । ତାଙ୍କୁ 'ବଙ୍ଗାଳୀ ବିଦ୍ୱେଷୀ' ବୋଲି କହୁଥିଲେ । ଏହି କାରଣରୁ କୌଣସି ବଙ୍ଗୀୟ ଭଦ୍ରବ୍ୟକ୍ତି ବା ବଙ୍ଗୀୟ ହାକିମହୁକୁମାଙ୍କଠାରୁ ଚିଠି ଆଣିବା ପାଇଁ ସେ ଇଚ୍ଛା କରିନଥିବେ । ଇଚ୍ଛା କରିଥିଲେ ମଧ୍ୟ ଚିଠି ମିଳନ୍ତା କି ନାହିଁ ତାହା ମଧ୍ୟ ସନ୍ଦେହ ଥିଲା । 'ଯାହା ହେବ ଦେଖାଯିବ', 'କ୍ଷେତ୍ରେ କର୍ମ ବିଧୀୟତେ' ନୀତିକୁ ଆଗରେ ରଖି ମଧୁବାବୁ କଲିକତା ଯାଇଥିଲେ ଏବଂ ଏହି କାରଣରୁ ଅସୁବିଧା ମଧ୍ୟ ହୋଇଥିବା ସ୍ୱାଭାବିକ । କିନ୍ତୁ ଅସୁବିଧା ହେବାର ସମ୍ଭାବନା ସମ୍ବନ୍ଧରେ ସେ ସଚେତନ ଥିଲେ ।

ସେ ପ୍ରଥମେ କଲେଜର ସନ୍ଧାନ ନେବା କାର୍ଯ୍ୟ ବାଲେଶ୍ୱରରେ ଶେଷ କରିଥିଲେ । ସେତେବେଳକୁ ଯାଜପୁର ଅଞ୍ଚଳର ଖ୍ୟାତନାମା ଦେଶପ୍ରେମୀ ବିଚିତ୍ରାନନ୍ଦ ଦାସ (ଖ୍ରୀ: ୧୮୨୮-୭୫) କଟକରେ କମିଶନର ଓ ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଫିସର ସିରସ୍ତାଦାର ଥିଲେ । କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନ୍ ଅନ୍ତର୍ଗତ କଣ୍ଟାବଣିଆ ଗ୍ରାମରେ ତାଙ୍କର ଜନ୍ମ । ସେ ମାଟ୍ରିକ୍ ପାସ୍ କରିନଥିଲେ । ଘରେଇ ଭାବରେ ପଢ଼ି କିଛି କିଛି ପାର୍ସି ଜାଣିଥିଲେ । ସେ ମଧୁବାବୁଙ୍କଠାରୁ ବୟସରେ ବଡ଼ ଥିଲେ ମଧ୍ୟ କଟକରେ ଥିଲାବେଳେ

ଯୁବକ ମଧୁଙ୍କୁ ବିଚିତ୍ରାନନ୍ଦ କହୁଥିଲେ, "ଓଡ଼ିଆ ପିଲାଏ ଉଚ୍ଚଶିକ୍ଷା ପ୍ରତି ଧ୍ୟାନ ଦେବା ଦରକାର । ତା ନହେଲେ ଆମେ ନିଜ ଘରେ ଚାକର ପରି ଚିରଦିନ ରହିଥିବା । ଆମ ଓଡ଼ିଆମାନେ ଉଚ୍ଚଶିକ୍ଷିତ ହେଲେ ବଡ଼ ବଡ଼ ହାକିମ, ଓକିଲ ହୋଇପାରନ୍ତେ, ଦେଶର ଚେହେରା ବଦଳିଯାଆନ୍ତା । ବଙ୍ଗାଳୀମାନେ କଲିକତାରେ ବି. ଏ., ଏମ୍. ଏ. ପରି ଉଚ୍ଚ ଶିକ୍ଷା ଲାଭକରି ବଡ଼ ବଡ଼ ଚାକିରି ପାଇଁ ଯୋଗ୍ୟ ହେଉଛନ୍ତି, ଓକିଲ ହେଉଛନ୍ତି । ଆମେ ଆଉ କେତେ ଦିନ ଏପରି ପଡ଼ିଥିବା ? ଯୁବକମାନେ କଲିକତା ଯାଇ ବି. ଏ.,ଏମ୍.ଏ., ବି. ଏଲ. ହେବାପାଇଁ ଚେଷ୍ଟାକର । ତୁମେ ଏଥିରେ ମନଦେବା ଉଚିତ । କଲିକତା ଯାଅ; ବି.ଏ., ଏମ୍.ଏ., ବି.ଏଲ୍. ହୁଅ ।"

ବିଚିତ୍ରାନନ୍ଦଙ୍କ ପ୍ରେରଣା ଯୁବକ ମଧୁଙ୍କୁ ଆଲୋଡ଼ିତ କରିଥିଲା । ଏତେ ଦୂରଦୃଷ୍ଟି ସହିତ ତାଙ୍କ ପିତା ଏ ଦିଗଟି ଦେଖିପାରିବେ ବୋଲି ତାଙ୍କର ବିଶ୍ୱାସ ନ ଥିଲା । ତାଙ୍କ ରୁଗ୍ଣ ଅବସ୍ଥାହିଁ ପିତାଙ୍କର ଏହି ହତୋତ୍ସାହର କାରଣ ବୋଲି ସେ ବୁଝିପାରିଥିଲେ ।

କଲିକତା ଯିବା ସ୍ଥିର କରିସାରି ମଧୁବାବୁ ବିଚିତ୍ରାନନ୍ଦ ଦାସଙ୍କଠାରୁ କଲିକତାରେ ଥିବା ତାଙ୍କର ଜଣେ ଆତ୍ମୀୟ ଶ୍ରୀ ନୀଳମାଧବ ଦାସ (ଯାଜପୁରର କଣ୍ଟାବଣିଆ ଗ୍ରାମ)ଙ୍କଠାରୁ ଏକ ପତ୍ର ଆଣିଥିଲେ । ନୀଳମାଧବ କଲିକତା ହାଇକୋର୍ଟରେ ଜଣେ କିରାଣି ଥିଲେ । କଲିକତାରେ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟ ଥିବାରୁ ଓଡ଼ିଶାର କାଗଜପତ୍ର ସବୁ ବୁଝିବାପାଇଁ ଓଡ଼ିଶାରୁ କେତେଜଣ କିରାଣି ନିଯୁକ୍ତ ହୋଇଥିଲେ । ଏହା ବ୍ୟତୀତ କେତେକ ଓଡ଼ିଆ କିରାଣି ମୋହରିର ମଧ୍ୟ କୋର୍ଟମାନଙ୍କରେ କାମ କରୁଥିଲେ । ଜାହାଜ ବ୍ୟବସାୟ ସହିତ ସଂପୃକ୍ତ ଥିବା କେତେଜଣ ଓଡ଼ିଆ ଧନୀ ବ୍ୟକ୍ତି ମଧ୍ୟ କଲିକତାରେ ବାସକରୁଥିଲେ । କୁଲି ସରବାର, ବେହେରାରୂପେ ସହସ୍ରାଧିକ ଓଡ଼ିଆ ମଧ୍ୟ ଚାକିରି କରୁଥିଲେ ।

ମଧୁବାବୁ କଲିକତାରେ ପହଞ୍ଚିବାମାତ୍ରେ ଶ୍ରୀ ନୀଳମାଧବ ଦାସଙ୍କ ବସାକୁ ଗଲେ ଏବଂ ତାଙ୍କ ପରାମର୍ଶମତେ ତାଙ୍କ ଘରେ ରହିଲେ । ପାଠପଢ଼ା ସଙ୍ଗେ ସଙ୍ଗେ ରୋଜଗାର କରିବାକୁ ମଧ୍ୟ ନୀଳମାଧବ ପରାମର୍ଶ ଦେଲେ । ମଧୁବାବୁ ଦାସଙ୍କ ପିଲାମାନଙ୍କର ଗୃହଶିକ୍ଷକ ନିଯୁକ୍ତ ହେଲେ । ଏହି ସମୟ ଭିତରେ ସେ କଲିକତା ଅନ୍ତର୍ଗତ ଭବାନୀପୁରରେ ଥିବା ଲଣ୍ଡନ ମିସନାରୀ ସୋସାଇଟିର କଲେଜରେ ନାମ ଲେଖାଇଲେ । ଏହି କଲେଜରେ ପଢ଼ିବା କଥା ବାଲେଶ୍ୱରରେ ମଧୁବାବୁ ବନ୍ଧୁମାନଙ୍କ ପରାମର୍ଶରେ ସ୍ଥିର କରିଥିଲେ । ମଧୁସୂଦନ କଲେଜକୁ ଯାଇ କଲେଜର କର୍ତ୍ତା ପାଦ୍ରୀ ରେଭରେଣ୍ଡ୍ ଜେ.ପି. ଆଷ୍ଟୋନଙ୍କ ସହିତ ଦେଖାକଲେ । ମଧୁବାବୁଙ୍କ ସହିତ କଥାବାର୍ତ୍ତାକରି ସାହେବ ତାଙ୍କର ଆର୍ଥିକ ଅବସ୍ଥା କଥା ବୁଝିନେଲେ । କଥାବାର୍ତ୍ତାବେଳେ ପାଦ୍ରୀ ସାହେବ ଜାଣିପାରିଲେ ଯେ ଯୁବକଟି ମେଧାବୀ ଓ ଉଚ୍ଚାଭିଳାଷୀ । ସାହେବ ତାଙ୍କୁ ମାସିକ ଟ୭ (ସାତଟଙ୍କା) ବୃତ୍ତି ଖଞ୍ଜିଦେଲେ ଏବଂ କଲେଜ ହଷ୍ଟେଲ୍‌ରେ ରଖାଇଦେଲେ । ଏହା ପରେ ମଧ୍ୟ ମଧୁବାବୁ ଦାସଙ୍କ ଘରକୁ ବରାବର ଯାଉଥିଲେ ଏବଂ ତାଙ୍କ ପିଲାମାନଙ୍କୁ ପଢ଼ାଉଥିଲେ ।

ଏହି କଲେଜରେ ଅମ୍ବିକାଚରଣ ହାଜରା ନାମକ ମେଦିନୀପୁର ଜିଲ୍ଲାର ଜଣେ ହିନ୍ଦୁ ଯୁବକ ମଧ୍ୟ ନାମ ଲେଖାଇଥିଲେ । ସେ ମଧ୍ୟ ହଷ୍ଟେଲରେ ରହିଲେ । ମଧୁସୂଦନ ଓ ଅମ୍ବିକାଚରଣ ଦୁହେଁ ଏକ କୋଠରୀରେ ରହି ପଢ଼ାପଢ଼ି କଲେ । କ୍ରମେ ଉଭୟଙ୍କ ଭିତରେ ପ୍ରଗାଢ଼ ବନ୍ଧୁତ୍ୱ ଜାତହୋଇଥିଲା । ଏବଂ ପରେ ମଧୁବାବୁ ହାଜରା ପରିବାର ସହିତ ଘନିଷ୍ଠଭାବରେ ସଂପୃକ୍ତ ହୋଇପଡ଼ିଥିଲେ । ସେତେବେଳକୁ ହାଜରା ହିନ୍ଦୁ ପରିବାରରେ ପ୍ରସନ୍ନମୟୀ ନାମ୍ନୀ ୧୦-୧୧ବର୍ଷ ବୟସର ଏକ ବାଳିକାକୁ ବିବାହ କରିଥିଲେ । ସେତେବେଳେ ସର୍ବତ୍ର ବାଲ୍ୟବିବାହ ପ୍ରଚଳିତ ଥିଲା ।

## ୭ । କଲିକତା ଜୀବନ

**ବେଥୁନ କଲେଜର ତର୍କସଭା:** ମଧୁବାବୁ କଲିକତାରେ ବେଥୁନ୍ କଲେଜରେ ଛାତ୍ର ଥିଲାବେଳେ ଛାତ୍ରମାନଙ୍କର ବହୁ ସଭା ସମିତି ଓ ତର୍କସଭାରେ ଯୋଗ ଦେଉଥିଲେ । ତାଙ୍କର ବାଗ୍ମୀତା ଦେଖି ବିଶିଷ୍ଟ ଇଂରେଜ ପଣ୍ଡିତମାନେ ମଧ୍ୟ ପ୍ରଶଂସା କରୁଥିଲେ । ବଙ୍ଗଳା ଓ ଇଂରାଜୀରେ ସେ ଅନର୍ଗଳ ବକ୍ତୃତା ଦେଇପାରୁଥିଲେ ଏବଂ ଶ୍ରୋତାଙ୍କୁ ଚିତ୍ତାକର୍ଷକ କରିପାରୁଥିଲେ ମଧ୍ୟ । ତାଙ୍କର ଯୁକ୍ତିତର୍କର ଢଙ୍ଗ ଅତି ଚମତ୍କାର ଥିବାରୁ ଅଧ୍ୟାପକ ଓ ଛାତ୍ରମାନେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଏହି କଲେଜର ତର୍କସଭାରେ ହାଇକୋର୍ଟର ଜଜ୍‌ସାହେବମାନେ ମଧ୍ୟ ଯୋଗଦେଉଥିଲେ । ଲର୍ଡ ନେପିଅର୍ (Lord Napier) ଓ ଜଷ୍ଟିସ୍ ଫିଅର୍ (Justice Phear) ବେଳେ ବେଳେ ତର୍କସଭାରେ ଯୋଗଦେଇ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ । ମଧୁବାବୁଙ୍କୁ ଏ ଦୁହେଁ ଶ୍ରଦ୍ଧା କରୁଥିଲେ । ମଧୁବାବୁ ସମୟେ ସମୟେ ସେମାନଙ୍କ ସହିତ ଦେଖାକରି ପରାମର୍ଶ ନେଉଥିଲେ ।

**ମଧୁବାବୁ ଖ୍ରୀଷ୍ଟିଆନ୍ ହେଲେ (୧୮୬୯):** ବଡ଼ ବଡ଼ ଇଂରେଜ ହାକିମ ଓ ପାଦ୍ରି ସାହେବମାନଙ୍କ ସଂସ୍ପର୍ଶରେ ଆସିବାରୁ ଖ୍ରୀଷ୍ଟିଆନ୍ ଧର୍ମପ୍ରତି ତାଙ୍କର ଆଦର ଦେଖାଦେଲା । ଦେଶସେବକ ପରୋପକାରୀ ଡାକ୍ତର ଡଫ୍‌ସାହେବ ତାଙ୍କୁ ସୁଖପାଉଥିଲେ । ତାଙ୍କର ବକ୍ତୃତା ଓ ଉପଦେଶ ଶୁଣି ମଧୁବାବୁଙ୍କର ଖ୍ରୀଷ୍ଟିଆନ୍ ଧର୍ମପ୍ରତି ଆଦର କ୍ରମେ ବୃଦ୍ଧି ପାଇଲା । ଥରେ ରବିବାର ଦିନ ଡଫ୍ ସାହେବ ଗିର୍ଜାରେ ପ୍ରାର୍ଥନାତ୍ମକ ଭାଷଣ ଦେଉଥିବାବେଳେ ପ୍ରଭୁ ଯିଶୁ ଖ୍ରୀଷ୍ଟଙ୍କ ଏହି ବାଣୀଟି ଉଚ୍ଚାର କରିଥିଲେ—"ହେ ସ୍ୱର୍ଗୀୟ ପିତା, ଏମାନଙ୍କୁ ରକ୍ଷାକର । କାରଣ, ସେମାନେ କଣ କରୁଛନ୍ତି ତାହା ଜାଣିପାରୁନାହାନ୍ତି ।" ଏ ବାଣୀଟି ମଧୁବାବୁଙ୍କ ହୃଦୟରେ ଗଭୀର ରେଖାପାତ କଲା ଏବଂ ଖ୍ରୀଷ୍ଟିଆନ୍ ଧର୍ମର ମହନୀୟତା ତାଙ୍କୁ ଉଦ୍‌ବୁଦ୍ଧ କଲା । ବହୁଦିନଯାଏଁ ଏହି ବିଷୟ ନିବିଡ଼ଭାବରେ ତାଙ୍କର ମନକୁ ଆଲୋଡ଼ିତ କଲା । ତାଙ୍କ ସହାଧ୍ୟାୟୀ ଅମ୍ବିକାଚରଣ ହାଜରା ମଧ୍ୟ ତାଙ୍କ ସହ

ଆଗ୍ରହାନ୍ୱିତ ହେଲେ । ସେ ପ୍ରତିଦିନ ଗୃହାବାସରେ ନିବିଷ୍ଟ ଚିତ୍ତରେ ବାଇବେଲ ପାଠ କରୁଥିଲେ । ସେହିଙ୍କର ଖ୍ରୀଷ୍ଟଧର୍ମ ଗ୍ରହଣ କରିବାପାଇଁ ମନହେଲା । ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିବା ପାଇଁ ତାଙ୍କର ଆଗ୍ରହ କ୍ରମେ ବଢ଼ିବାରୁ ବେଥୁନ୍ କଲେଜର ପ୍ରିନ୍‌ସିପାଲ୍ ରେଭେରେଣ୍ଡ ଜେ. ପି. ଆସ୍‌ଟନ୍ (Rev. J. P. Aston) ଙ୍କ ସହିତ ସେ ଏ ସମ୍ବନ୍ଧରେ ଆଲୋଚନା କଲେ ଏବଂ ତାଙ୍କର ପରାମର୍ଶ ଲୋଡ଼ିଲେ । ପାଦ୍ରି ସାହେବ ଅନୁକୂଳ ମତ ଦେଇ କହିଲେ, "ପ୍ରଥମେ ତୁମ ପିତାଙ୍କର ଅନୁମତି ଆଣ, ପରେ ଦୀକ୍ଷିତ ହେବ ।"

ରାଜନାରାୟଙ୍କ ପିତା ମନାକରିଦେଲେ । ସେତେବେଳକୁ ସେ ବିବାହ କରିସାରିଥିଲେ । ମଧୁବାବୁଙ୍କ ପିତା କଲିକତା ଆସି ପୁଅକୁ ଏ ସଂକଳ୍ପରୁ ନିବୃତ୍ତ ହେବାପାଇଁ ବହୁତ ଉପଦେଶ ଦେଲେ । ମଧୁବାବୁ କୌଣସି କଥା ଶୁଣିଲେ ନାହିଁ । ପିତା ଦୁଃଖରେ କଟକ ଫେରିଲେ । ଖ୍ରୀ: ୧୮୬୯ରେ ମଧୁସୂଦନ ଓ ଅମ୍ବିକାଚରଣ ଏକ ସମୟରେ, ଏକା ପାଦ୍ରିଙ୍କଠାରୁ, ଏକା ଗିର୍ଜାରେ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କଲେ । ସେମାନେ ଖ୍ରୀଷ୍ଟିଆନ୍ ନାମକରଣ କରିବେ କି ନାହିଁ ଏହା ପାଦ୍ରି ପଚାରିବାରୁ ଦୁହେଁ ନାମ ପରିବର୍ତ୍ତନ କରିବାକୁ ମନାକରିଦେଲେ ।

ଖ୍ରୀଷ୍ଟଧର୍ମ ଗ୍ରହଣ ପରେ ମଧୁବାବୁଙ୍କ ପ୍ରତି ପାଦ୍ରି ଆସ୍‌ଟନ୍‌ଙ୍କ ସୁଦୃଷ୍ଟି ପଡ଼ିଲା । ମଧୁବାବୁ ଖୁବ୍ ସୁନ୍ଦର ବକ୍ତା ଓ ତାର୍କିକ ଥିବାରୁ ତାଙ୍କୁ ପାଦ୍ରି କଲେ ଭଲହେବାର ଭାବନାରେ ପ୍ରଚାରକ ହେବାପାଇଁ ଆସ୍‌ଟନ୍ ତାଙ୍କୁ ପରାମର୍ଶ ଦେଲେ । ମଧୁବାବୁ ପାଦ୍ରି-ସାହେବଙ୍କୁ କହିଲେ, "ଦୁଇ ପ୍ରକାର ପାଦ୍ରି ବା ପ୍ରଚାରକ ହେବା ସମ୍ଭବ । ଏକ ବେତନ-ଭୋଗୀ, ଅନ୍ୟଟି ଅବୈତନିକ । ଅବୈତନିକ ହିଁ ପ୍ରକୃତ ପ୍ରଚାରକ । ବେତନ ଦେଲେ ଯାବତୀୟ ସୁବିଧାର ବ୍ୟବସ୍ଥା ମଧ୍ୟ କରିବାକୁ ହେବ । କିନ୍ତୁ ଏଥିରେ ପାଦ୍ରିଙ୍କର ଆନ୍ତରିକତା ବେଶି ରହିବା ସମ୍ଭବ ନୁହେଁ । ମନେକରନ୍ତୁ, ପାଦ୍ରିଙ୍କ ଦେହ ଭଲନାହିଁ କି ମନ ଭଲନାହିଁ । ଏତିକିବେଳେ ତାଙ୍କୁ କୁହାଯିବ ଗିର୍ଜାରେ ଭାଷଣ ଦିଅ । ସେ ବାଧ୍ୟହୋଇ ଭାଷଣ ଦେବେ ସତ, କିନ୍ତୁ ଭଗବାନଙ୍କଠାରେ ତାଙ୍କର ମନ ନଥିବ । ଅବୈତନିକ ଏହାଠାରୁ ଭଲ । ତେବେ ଜୀବିକାନିର୍ବାହ ପାଇଁ କିଛି ଅର୍ଥ ଆବଶ୍ୟକ । ମୁଁ ଆପଣଙ୍କ ପରି ବେତନଭୋଗୀ ପାଦ୍ରି ହେଲେ ମାସିକ ଟ ୪୦୦ (ଚାରିଶହ ଟଙ୍କା)ରୁ ନ୍ୟୂନରେ ଚଳିପାରିବି ନାହିଁ । ପୁଣି ଗାଡ଼ିଟିଏ ମଧ୍ୟ ଆବଶ୍ୟକ । ମିଶନ୍ ଏତିକି ଦେଲେ ମୁଁ ମିଶନାରୀ ହେବାକୁ ରାଜିଅଛି । ଆପଣଙ୍କ ପରି ନିୟମିତ ଭାବରେ ପ୍ରଚାର କରିବି ।" ପାଦ୍ରି ମଧୁବାବୁଙ୍କଠାରୁ ଏପରି ଉତ୍ତର ଆଶା କରି ନଥିଲେ । ସେ ରାଗିଯାଇ କହିଲେ, "ପାଜି, ସୈତାନ୍, ଏଠାରୁ ଚାଲିଯାଅ ।" ମଧୁବାବୁ କିଛି ନକହି ଫେରିଆସିଲେ । ଅନ୍ଧବିଶ୍ୱାସ ତାଙ୍କୁ ଅନ୍ଧ କରିଦେଉ ଏହା ସେ ଚାହୁଁ ନ ଥିଲେ । ଖ୍ରୀଷ୍ଟଧର୍ମର ଯାବତୀୟ ସଦ୍‌ଗୁଣକୁ ସେ ପ୍ରେମ ସହିତ ଗ୍ରହଣ କରିଥିଲେ ।

ମଧୁବାବୁ ଖ୍ରୀ: ୧୮୬୫ରେ କଟକରୁ ବାଲେଶ୍ୱର ଯାଇଥିଲେ । ସେଠାରେ କେତେ ମାସ ରହିବା ପରେ ଖ୍ରୀ: ୧୮୬୬ରେ କଲିକତା ଯାଇଥିଲେ । ୧୮୬୬ରେ ଯେଉଁ ଭୟାବହ ଦୁର୍ଭିକ୍ଷ ଓଡ଼ିଶାକୁ ନଷ୍ଟଭ୍ରଷ୍ଟ କରିଦେଇଥିଲା, ତାହାକୁ ମଧୁବାବୁ ପ୍ରତ୍ୟକ୍ଷରେ

ଅନୁଭବ କରନଥିଲେ । ଖବରକାଗଜରୁ ଓ ଓଡ଼ିଆ ଚାକର, ପୂଜାରୀ, ମଜୁରିଆଙ୍କଠାରୁ ସେସବୁ ଶୁଣୁଥିଲେ । ସେ ଦୁର୍ଭିକ୍ଷ ରିଲିଫ କାର୍ଯ୍ୟରେ ନିଜେ ଲିପ୍ତ ନ ଥିଲେ, କିନ୍ତୁ କିପରି ବ୍ୟବସ୍ଥା ସରକାର କରୁଛନ୍ତି ତାହା ଲକ୍ଷ୍ୟ କରୁଥିଲେ । ସେତେବେଳକୁ ମଧୁବାବୁଙ୍କ ବୟସ ମାତ୍ର ୧୮ ।

ଏ ସମୟରେ କଲିକତା ରହଣି ତାଙ୍କ ପକ୍ଷେ ବଡ଼ କଷ୍ଟକର ହୋଇଥିଲା । ନିଜେ ପାଠ ପଢ଼ିବାପାଇଁ ବହୁତ ପରିଶ୍ରମ କରୁଥିଲେ । ଖ୍ରୀଷ୍ଟିଆନ୍ ମିଶନାରୀ ସ୍କୁଲରେ ଶିକ୍ଷକତା କରିବା ସଙ୍ଗେ ସଙ୍ଗେ କଲିକତା ହାଇକୋର୍ଟରେ ଅଧା ସମୟ ଦେଇ ଟ୍ରାନ୍ସଲେଟର (ଅନୁବାଦକ) କାର୍ଯ୍ୟ ମଧ୍ୟ କରୁଥିଲେ । ଏହି ହେତୁ ସେ ସମୟାନୁବର୍ତ୍ତୀ ହେବାକୁ ବାଧ୍ୟ ହୋଇଥିଲେ । ପରେ ଏହି ସମୟାନୁବର୍ତ୍ତିତା ତାଙ୍କ ଜୀବନର ଏକ ପ୍ରଧାନ ଅଭ୍ୟାସ ଓ ଗୁଣ ହୋଇଯାଇଥିଲା । ସେ ନିଜେ ଠିକ୍ ସମୟ ଅନୁସାରେ କାର୍ଯ୍ୟ କରୁଥିଲେ ଏବଂ ଅନ୍ୟ କେହି ସମୟାନୁବର୍ତ୍ତୀ ନହେଲେ ସେ ବିରକ୍ତ ହେଉଥିଲେ ।

ଖ୍ରୀ: ୧୮୬୪ରେ ମଧୁବାବୁ କଲିକତାରେ ଥିବା ସମୟରେ ହାଜିକ୍ସଙ୍କ ସହ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ । ବାଲେଶ୍ୱର ସ୍କୁଲରେ ଶିକ୍ଷକ ଥିଲାବେଳେ ରାଧାନାଥ ରାୟ, ମଧୁସୂଦନ ଓ ଫକିରମୋହନ ସେନାପତି ଏକ ଗୋଷ୍ଠୀ ସ୍ଥାପନ କରିଥିଲେ । ତିନିହେଁ ଯୁବକ, ସମବୟସ୍କ । ପ୍ରତିଦିନ ସେମାନେ ଅବସର ସମୟରେ ନାନା ପ୍ରସଙ୍ଗର ଆଲୋଚନା କରୁଥିଲେ । ହିନ୍ଦୁଧର୍ମର ଆଚାର ବ୍ୟବହାର, ଜାତିଗତି, ବର୍ଣ୍ଣାଶ୍ରମ ଧର୍ମର ଅପକାରିତା ସମ୍ବନ୍ଧରେ ମଧ୍ୟ ବିଚାର କରୁଥିଲେ । ସେତେବେଳେ କଲିକତା ଓ ଭାରତର ଅନ୍ୟାନ୍ୟ ବଡ ବଡ଼ ସହରମାନଙ୍କରେ ନବ୍ୟ ଇଂରେଜୀ ଶିକ୍ଷିତ ଯୁବକମାନଙ୍କ ଭିତରେ ଖ୍ରୀଷ୍ଟିଆନ୍ ଧର୍ମ ଓ ବ୍ରାହ୍ମଧର୍ମ ଆଦର ଲାଭ କରିଥିଲା । ସଂସ୍କାରପ୍ରେମୀମାନଙ୍କ ଭିତରେ କେତେକ ଏହି ଦୁଇ ଧର୍ମରୁ ଗୋଟିକରେ ଦୀକ୍ଷିତ ହେବା ଦେଖାଯାଉଥିଲା । ଉଭୟ ସଂସ୍କାର ଧର୍ମପ୍ରତି ଇଂରେଜ ଶାସକମାନଙ୍କର ସହାନୁଭୂତି ଥିବାରୁ ଉଦୀୟମାନ ଯୁବକମାନେ ମଧ୍ୟ ଏଥିରେ ଆକୃଷ୍ଟ ହେଉଥିଲେ । ଉତ୍କଳର ଏହି ତିନି କୃତୀ ସନ୍ତାନ ପ୍ରଥମେ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିବାକୁ ମନ ବଳାଇଥିଲେ । ମଧୁବାବୁ ଖ୍ରୀଷ୍ଟିଆନ୍ ହେଲେ, କିନ୍ତୁ ପରେ ମନର ପରିବର୍ତ୍ତନ ଯୋଗୁଁ ରାଧାନାଥ ଓ ଫକିରମୋହନ ଖ୍ରୀଷ୍ଟିଆନ୍ ହେଲେ ନାହିଁ । ଫକିରମୋହନ ବ୍ରାହ୍ମ ହେଲେ ଏବଂ ରାଧାନାଥ ହିନ୍ଦୁ ହୋଇ ରହିଲେ ।

**ବୈବାହିକ ଜୀବନ :** ମଧୁସୂଦନ ଖ୍ରୀଷ୍ଟିଆନ୍ ମିଶନାରି ସ୍କୁଲରେ ପ୍ରଧାନଶିକ୍ଷକ ଥିଲାବେଳେ ଖ୍ରୀ: ୧୮୬୩ରେ କଲିକତାରେ ତାଙ୍କର ବିବାହ ହୋଇଥିଲା । ସୌଦାମିନୀ ଚଟ୍ଟୋପାଧ୍ୟାୟ ନାମ୍ନୀ ଏକ ବଙ୍ଗୀୟ ଖ୍ରୀଷ୍ଟିଆନ୍ ଯୁବତୀଙ୍କୁ ସେ ବିବାହ କରିଥିଲେ । ସୌଦାମିନୀ ଉଚ୍ଚଶିକ୍ଷିତା ଥିଲେ ଏବଂ ସୁଗୃହିଣୀର ସବୁ ଗୁଣ ତାଙ୍କଠାରେ ଥିଲା । ମଧୁବାବୁ ବେଥୁନ କଲେଜରେ ବି. ଏ. ପଢ଼ୁଥିବାବେଳେ ସୌଦାମିନୀ ସେହି କଲେଜରେ ପଢ଼ୁଥିଲେ, ସେହିଠାରେ ସୌଦାମିନୀଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା ଏବଂ କ୍ରମେ ଉଭୟଙ୍କ

ଭିତରେ ପ୍ରଗାଢ଼ ବନ୍ଧୁତ୍ୱ ପ୍ରତିଷ୍ଠିତ ହୋଇଥିଲା । ଉଭୟେ ପରସ୍ପରକୁ ପ୍ରେମ କରୁଥିଲେ । ମଧୁବାବୁ ବି. ଏ. ପାସ୍ କରିବା ପରେ ସୌଦାମିନୀଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧ ହୋଇଥିଲେ । ନାରାୟଣପୁରରେ ଗିର୍ଜାରେ ବିବାହକାର୍ଯ୍ୟ ସମ୍ପନ୍ନ ହୋଇଥିଲା । ମଧୁବାବୁ ସ୍କୁଲରୁ ଆସି, ପୋଷାକ ନବଦଳାଇ ସିଧା ଗିର୍ଜାକୁ ଯାଇଥିଲେ ।

ଅବଶ୍ୟ, ଏ ସମୟରେ ତାଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା । ସେତେବେଳେ ମଧୁବାବୁ କଲିକତା ଅନ୍ତର୍ଗତ ଭବାନୀପୁର ନିକଟସ୍ଥ ଚକ୍ରବାଗ ରୋଡ଼ରେ ବସା କରିଥିଲେ । ସ୍ୱାମୀ-ସ୍ତ୍ରୀ ସେହିଠାରେ ରହିଲେ । ମଧୁସୂଦନଙ୍କଠାରୁ ସୌଦାମିନୀ ଏକ ବର୍ଷ ବଡ଼ ଥିଲେ । ବିବାହ ବେଳକୁ ମଧୁସୂଦନଙ୍କ ବୟସ ୨୭ ଓ ସୌଦାମିନୀଙ୍କ ବୟସ ୨୬ ।

କଲିକତାକୁ ଶିକ୍ଷାଲାଭ କରିବାକୁ ଆସିବା ପରେ ମଧୁବାବୁଙ୍କ ସ୍ୱାସ୍ଥ୍ୟ ମଧ କ୍ରମେ ଅବନତି ଆଡ଼କୁ ଗତିକରୁଥିଲା । ସଂସାର ଚଳାଇବା ପାଇଁ ଏ ଭଗ୍ନସ୍ୱାସ୍ଥ୍ୟରେ ମଧ ତାଙ୍କୁ ଅତିରିକ୍ତ ପରିଶ୍ରମ କରିବାକୁ ପଡ଼ୁଥିଲା । କଲେଜରେ ପଢ଼ୁଥିଲାବେଳେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହୋଇଯିବାରୁ ପାଦ୍ରି ମେକ୍‌ନାମାରା ସାହେବ ତାଙ୍କୁ ନିଜ ଖର୍ଚ୍ଚରେ ବିହାର ପଠାଇ କିଛି ଦିନ ବିଶ୍ରାମ ନେବାର ବ୍ୟବସ୍ଥା କରିଦେଇଥିଲେ । ସ୍ୱାସ୍ଥ୍ୟର କିଛି ଉନ୍ନତିଘଟିବା ପରେ ମଧୁବାବୁ ପୁଣି କଲିକତାକୁ ଫେରିଆସିଥିଲେ ।

ସୌଦାମିନୀ ସୁଗୃହିଣୀ ଥିଲେ । ବିବାହର ଦୁଇ ବର୍ଷ ପରେ ଅମ୍ବିକାଚରଣ ସକୁଟୁମ୍ବ ମଧୁବାବୁଙ୍କ ବସାରେ ବାସକଲେ । ଏହି ବସାରେ ଖ୍ରୀ: ୧୮୭୫ରେ ଅମ୍ବିକାଚରଣଙ୍କ କନ୍ୟା ଶୈଳବାଳାଙ୍କର ଜନ୍ମ ହୋଇଥିଲା । ଅମ୍ବିକାଚରଣଙ୍କ ସ୍ତ୍ରୀ ପ୍ରସନ୍ନମୟୀ ଚିରରୁଗ୍ଣା ଥିଲେ । ସେ ଏକପ୍ରକାର ଅଚଳ ଥିଲେ । ସୌଦାମିନୀ ତାଙ୍କର ସେବାଶୁଶ୍ରୂଷା କରୁଥିଲେ । ସୌଦାମିନୀଙ୍କୁ ଗୃହିଣୀ ଅବସ୍ଥାରେ ପ୍ରସନ୍ନମୟୀ ପାଠ ପଢ଼ାଇଥିଲେ ।

ଖ୍ରୀ: ୧୮୭୩ ରୁ ଖ୍ରୀ: ୧୮୭୮ ପର୍ଯ୍ୟନ୍ତ କେବଳ ପାଞ୍ଚଟି ବର୍ଷ ମଧୁସୂଦନ ଦାମ୍ପତ୍ୟ-ଜୀବନ ଉପଭୋଗ କରିଥିଲେ । ଖ୍ରୀ: ୧୮୭୮ରେ ସୌଦାମିନୀଙ୍କର ମୃତ୍ୟୁ ହୋଇଥିଲା । ସୌଦାମିନୀଙ୍କ ମୃତ୍ୟୁ ଆକସ୍ମିକ ଭାବରେ ଘଟିଥିଲା । ମଧୁବାବୁ ସ୍ତ୍ରୀଙ୍କୁ ପାଣି ଗିଲାସେ ଆଣିବାପାଇଁ କହିଲେ । ସେ ପାଣି ଆଣିବା ପାଇଁ ପାଖ ବଖରାକୁ ଯାଇ ସୁରେଇରୁ ପାଣି କାଢ଼ୁ କାଢ଼ୁ ତଳେ ଢଳିପଡ଼ି ପ୍ରାଣ ହରାଇଲେ । ହୃତ୍‌ସମ୍ବନ୍ଧିୟ ବନ୍ଦ ହୋଇଯାଇ ତାଙ୍କର ମୃତ୍ୟୁ ହୋଇଗଲା । ମଧୁବାବୁ ସ୍ତ୍ରୀଙ୍କ ଆସିବା ବିଳମ୍ବ ହେଉଥିବା ଦେଖି ନିଜେ ସେ ବଖରାକୁ ଗଲେ । ସେତେବେଳକୁ ସୌଦାମିନୀଙ୍କ ପ୍ରାଣବାୟୁ ଉଡ଼ିଯାଇଥିଲା ।

ସୌଦାମିନୀ ନିଃସନ୍ତାନ ଥିଲେ । ତାଙ୍କ ମୃତ୍ୟୁରେ ମଧୁବାବୁ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଲେ ଏବଂ ଦ୍ୱିତୀୟବାର ଦାର ପରିଗ୍ରହ କରିବାକୁ ଆଉ ମନ ବଳାଇଲେ ନାହିଁ । ସେ ବିପତ୍ନିକ ହୋଇ ଜୀବନଯାପନ କଲେ । ସଂସାର ଜଞ୍ଜାଳ ପ୍ରତି ମଧୁସୂଦନଙ୍କ ଆଉ ଆଗ୍ରହ ରହିଲା ନାହିଁ । ସେ ଏ କ୍ଷେତ୍ରରେ ଉଦାସୀନ ହୋଇ ରହିଲେ ।

ସ୍ତ୍ରୀଙ୍କ ବିୟୋଗ ପରେ ମଧୁସୂଦନ ତାଙ୍କର ଶାଳିକାଙ୍କର ଝିଅକୁ ପାଳିତା କନ୍ୟା ରୂପେ ଗ୍ରହଣ କରିବାକୁ ସ୍ଥିର କରିଥିଲେ । ସେ କନ୍ୟାର ନାମ ସ୍ୱର୍ଣ୍ଣାଙ୍ଗିନୀ ଗୃହର୍ଜୀ । ଏ ଝିଅଟିର ଶିକ୍ଷା ଭାର ମଧୁବାବୁ ବହନ କରିବା ସ୍ଥିରକରି କଲିକତାର ଖ୍ରୀଷ୍ଟିଆନ୍ ମିଶନାରୀ ସ୍କୁଲରେ ଗ୍ରୀଷ୍ମ ଅବକାଶ ପରେ ନାମ ଲେଖାଇବା ବ୍ୟବସ୍ଥା କରିଥିଲେ । କିନ୍ତୁ ଅବକାଶ ଭିତରେ ଏ କନ୍ୟାର ବିବାହ ହୋଇଯିବାରୁ ମଧୁବାବୁ ବିରକ୍ତ ହୋଇ ତାହାକୁ ପାଳିତା କନ୍ୟା କରିବା ପ୍ରସ୍ତାବ ତ୍ୟାଗକଲେ ।

ଖ୍ରୀ: ୧୮୯୧ରେ ଶୈଳବାଳାଙ୍କ ମାତା ପ୍ରସନ୍ନମୟୀଙ୍କ ବିୟୋଗ ପରେ ହାଜରା କୁଟୁମ୍ବଙ୍କୁ ମଧୁବାବୁ ନିଜ ଘରେ ନିଜ ତତ୍ତ୍ୱାବଧାନରେ ରଖିଲେ ଏବଂ ଶୈଳବାଳାଙ୍କୁ ପାଳିତା କନ୍ୟା କରିବା ସ୍ଥିର କରିଥିଲେ । ପତ୍ରପତ୍ରିକା ଓ ଗେଜେଟରେ ଶୈଳବାଳା ମଧୁସୂଦନ ଦାସଙ୍କ ପାଳିତା କନ୍ୟା ହେବାରୁ ତାଙ୍କର ସଂଜ୍ଞା 'ହାଜରା' ପରିବର୍ତ୍ତେ 'ଦାସ' ହେଲବୋଲି ନୋଟିସ୍ ପ୍ରକାଶିତ ହେଲା ।

ମଧୁବାବୁ ଖ୍ରୀଷ୍ଟିଆନ୍ ହୋଇଯାଇଥିବାରୁ ତାଙ୍କ ସ୍ୱକୁଟୁମ୍ବର ଲୋକେ ସେତେ ସୁଖୀ ନଥିଲେ । ସେମାନଙ୍କ ସଙ୍ଗେ ଚଳିବା ସୁବିଧା ହେବ କି ନହେବ ଏହି ଆଶଙ୍କାରେ ସେ ସ୍ୱକୁଟୁମ୍ବ ଭିତରେ ରହିଲେ ନାହିଁ, ତାଙ୍କର ବାଲ୍ୟବନ୍ଧୁ ହାଜରାଙ୍କ ପରିବାର ସହିତ ରହିବାପାଇଁ ପସନ୍ଦ କଲେ । ହାଜରାଙ୍କ ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁ ପରେ ହାଜରା ଦ୍ୱିତୀୟ ବାର ଦାର ପରିଗ୍ରହ କଲେ ଏବଂ ପ୍ରଥମ ସ୍ତ୍ରୀଙ୍କ ପୁତ୍ରକନ୍ୟାମାନଙ୍କୁ କଲିକତାରେ ଛାଡ଼ିଦେଇ ନୂତନ ପରିବାରଙ୍କୁ ଧରି ଦିଲ୍ଲୀ ଗ୍ଳଲିଗଲେ ଏବଂ ସେଠାରେ ବସବାସ କଲେ । ପ୍ରଥମ ସ୍ତ୍ରୀଙ୍କ ପୁତ୍ରକନ୍ୟାମାନେ ମଧୁବାବୁଙ୍କଦ୍ୱାରା ଲାଳିତ-ପାଳିତ ହେବାକୁ ଲାଗିଲେ । କଲିକତାରୁ ମଧୁବାବୁ କଟକକୁ ଓକିଲାତି କରିବାପାଇଁ ଗ୍ଳଲିଆସିବା ବେଳେ ହାଜରା କୁଟୁମ୍ବକୁ ମଧ୍ୟ ନିଜ ଆଶ୍ରୟରେ ରଖିଥିଲେ ।

ମଧୁବାବୁ ସ୍ୱକୁଟୁମ୍ବ ଭିତରେ ରହିନଥିଲେ ମଧ୍ୟ ଭାଇ ଗୋପାଳବଲ୍ଲଭଙ୍କ ପୁତ୍ର କନ୍ୟାଙ୍କ ସହିତ ତାଙ୍କର ସଦ୍‌ଭାବ ଥିଲା । ଭାଇଙ୍କ କାର୍ଯ୍ୟନିମିତ୍ତରେ ସେ ଯୋଗଦେଇ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଭାଇଙ୍କ ବିବାହ ବେଳେ ସେ ନିଜେ ସବୁ ଆୟୋଜନର ଭାର ନେଇଥିଲେ । ଗୋପାଳଙ୍କ ଦୁଇ କନ୍ୟାଙ୍କ ବିବାହ ବେଳେ ମଧ୍ୟ ସେ ବହୁ ଉତ୍ସାହରେ କର୍ତ୍ତାଭଳି କାର୍ଯ୍ୟ କରିଥିଲେ । ଭାଇଙ୍କ ବଡ଼ ଝିଅଙ୍କ ସ୍ୱାମୀ କଟକ ଜିଲ୍ଲାର ପ୍ରସିଦ୍ଧ ତେନ୍ତୁଲିପଦା ଗ୍ରାମର ଜମିଦାର ପରିଜା ପରିବାରର ଲୋକ । ତାଙ୍କୁ ମଧୁବାବୁ କଟକରେ ନିଜ ଗୃହରେ ରଖି ତାଙ୍କର ଶିକ୍ଷାର ବ୍ୟବସ୍ଥା କରିଥିଲେ । ଭାଇଙ୍କ ଝିଅ ରମା ଦେବୀ (ଡାକନାମ ବେଲ) ଉତ୍କଳ ସମ୍ମିଳନୀର ଅନ୍ୟତମ ପ୍ରସିଦ୍ଧ ନେତା କଟକର ଉତ୍କଳ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀଙ୍କ ସ୍ୱନାମଧନ୍ୟ ପୁତ୍ର ଦେଶପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କୁ ବିବାହ କରିଥିଲେ । ବିବାହର ସବୁପ୍ରକାର ଆୟୋଜନରେ ମଧୁବାବୁ ଅଂଶ ଗ୍ରହଣ କରିଥିଲେ । ରମାଦେବୀଙ୍କୁ ମଧୁବାବୁ ଅତି ସ୍ନେହ କରୁଥିଲେ । ଭାଇଙ୍କୁ ମଧୁବାବୁ ବେଳେ

ବେଳେ କହୁଥିଲେ, "ତୁ ତୋର ଦୁଇ ଝିଅରୁ ଗୋଟିକୁ ମୋତେ ଦେ, ମୁଁ ତାକୁ ଆଦର୍ଶ ନାରୀ କରି ଗଢ଼ିବି।" ଦୁଇ ଝିଅଙ୍କ ବିବାହ ହୋଇଯିବା ପରେ ଏମାନଙ୍କୁ ସ୍ୱ କର୍ତ୍ତୃତ୍ୱା-ଧୀନରେ ରଖି 'ଆଦର୍ଶ ନାରୀ' କରି ଗଢ଼ିବା କଳ୍ପନା ତାଙ୍କର ଉଭେଇଯାଇଥିଲା।

**ଶ୍ରୀରାମପୁର କଲେଜର ଅଧ୍ୟାପକ ପଦ ପାଇଁ ଦରଖାସ୍ତ** : ଖ୍ରୀ: ୧୮୬୩ରେ ମଧୁବାବୁ କଲିକତାରେ ଶୁଣିଲେ ଯେ ସହର ନିକଟସ୍ଥ ଶ୍ରୀରାମପୁର ଖ୍ରୀଷ୍ଟିଆନ୍ କଲେଜରେ ଜଣେ ଅଧ୍ୟାପକ ଆବଶ୍ୟକ। ଖ୍ରୀଷ୍ଟିଆନ୍ ମିଶନାରି ଯୋଗାଇଟି ଏହାକୁ ଚଳାଉଥିଲେ। ସେତେବେଳେ ଶ୍ରୀରାମପୁର ଖ୍ରୀଷ୍ଟିଆନ ପ୍ରଚାରକମାନଙ୍କର ଏକ ପ୍ରଧାନ ଧର୍ମ ଓ ସାଂସ୍କୃତିକ ପୀଠ ଥିଲା। ଓଡ଼ିଆ ପ୍ରେସ୍‌ଟିଏ ମଧ୍ୟ ମିଶନାରୀମାନେ ସ୍ଥାପନ କରି ବହୁ ପ୍ରଚାର ବହି, ପ୍ରଚାର ପତ୍ର ଓଡ଼ିଆରେ ପ୍ରକାଶ କରିଥିଲେ। ସର୍ବପ୍ରଥମେ ଏହି ମିଶନାରିମାନଙ୍କଦ୍ୱାରା ଓଡ଼ିଆ ବହି ମୁଦ୍ରିତ ହୋଇଥିଲା, ଓଡ଼ିଶାର ଆଖି ଫିଟିଥିଲା। ମୁଦ୍ରଣର ପ୍ରାଥମିକ ସୁବିଧା ଓଡ଼ିଆମାନେ ସେହି ସମୟରୁ ପାଇଛନ୍ତି।

ମଧୁବାବୁ ଶ୍ରୀରାମପୁର ଯାଇ କଲେଜ ଅଧ୍ୟକ୍ଷଙ୍କୁ ଦେଖାକଲେ। ଅଧ୍ୟକ୍ଷ ତାଙ୍କୁ ପ୍ରଶଂସାପତ୍ର ମାଗିଲେ। ମଧୁବାବୁ କହିଲେ, "ମୁଁ ତ ନିଜେ ଆସିଛି, ଆଉ ପ୍ରଶଂସାପତ୍ର କ'ଣ ହେବ ? ପ୍ରଶଂସାପତ୍ର ମିଥ୍ୟାପତ୍ର। ଆପଣ ନିଜେ ପରୀକ୍ଷା କରି ଯାହା ଜାଣିବାର କଥା ତାହା ବୁଝନ୍ତୁ।" ଅଧ୍ୟକ୍ଷ ଏଥିରେ ସମ୍ମତ ହୋଇ ମଧୁବାବୁଙ୍କୁ କଲେଜର କେତେକ ଶ୍ରେଣୀକୁ ନେଲେ।

ସେତେବେଳେ କଲେଜମାନଙ୍କରେ ଛାତ୍ର ସଂଖ୍ୟା ବେଶି ନଥିଲା, ଅଧ୍ୟାପକ ମଧ୍ୟ ବେଶି ରହୁନଥିଲେ। ଗୋଟିଏ ଗୋଟିଏ ଶ୍ରେଣୀରେ ୧୦୦ରୁ ୧୫୦ ଛାତ୍ର ରହୁଥିଲେ। ଜଣେ ଜଣେ ଶିକ୍ଷକ ଏକାଧିକ ବିଷୟରେ ଶିକ୍ଷା ଦେଉଥିଲେ। କଲେଜ ଅଧ୍ୟକ୍ଷ ମଧୁବାବୁଙ୍କୁ ଇଂରେଜୀ ଶିକ୍ଷା ଶ୍ରେଣୀକୁ ନେଇଗଲେ ଓ ସେକ୍‌ସପିଅରଙ୍କ ବିଖ୍ୟାତ ନାଟକ 'ମେକ୍‌ବେଥ୍' ପଢ଼ାଇବାକୁ କହିଲେ। ମଧୁବାବୁ ଚମତ୍କାର ଭାବରେ ୧୦ ମିନିଟ ପର୍ଯ୍ୟନ୍ତ ଛାତ୍ରମାନଙ୍କୁ ବୁଝାଇଲେ। ଅଧ୍ୟକ୍ଷ ଖୁସିହୋଇ ତାଙ୍କୁ ଗଣିତ କ୍ଲାସକୁ ନେଲେ। ସେଠାରେ ଜ୍ୟାମିତି ଶିକ୍ଷଣରେ ତାଙ୍କର ବିଚକ୍ଷଣତା ପ୍ରକାଶ ପାଇଥିଲା। ଇତିହାସ ଶ୍ରେଣୀରେ ମଧ୍ୟ ସେ କୃତିତ୍ୱ ସହକାରେ ଶିକ୍ଷାଦେଇଥିଲେ।

ଅଧ୍ୟକ୍ଷ ମଧୁବାବୁଙ୍କ ଜ୍ଞାନ, ବିଚକ୍ଷଣତା, ବାଗ୍ମୀତାରେ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ପରଦିନ ଆସି କଲେଜରେ ଯୋଗଦେବାକୁ ମଧୁବାବୁଙ୍କୁ କହିଲେ। ମଧୁବାବୁ ଦରମାର ପରିମାଣ କଥା ପଚାରିବାରୁ ସାହେବ କହିଲେ, "ଆମ ଅନୁଷ୍ଠାନର ଆର୍ଥିକ ଅବସ୍ଥା ସେତେ ଭଲ ନୁହେଁ। ମାସିକ ଟ ୨୦୦ (ଦୁଇଶହ)ରୁ ବେଶି ବେତନ ଆମେ ଦେଇପାରିବୁ ନାହିଁ।" ମଧୁବାବୁ କହିଲେ, "ଆପଣ ତ ନିଜେ ପରୀକ୍ଷା କରି ମୋର ଯୋଗ୍ୟତା ଦେଖିଲେ। ଯଦି ପରୀକ୍ଷା କଲେ, ତାହାହେଲେ ବେଶି ଦରମା ନ ଦେବେ କାହିଁକି ? ଟ୪୦୦ (ଚାରିଶହ)ରୁ କମ୍ ହେଲେ ମୁଁ କାର୍ଯ୍ୟରେ ଯୋଗ ଦେବି ନାହିଁ।" ଅଧ୍ୟକ୍ଷ ଆର୍ଥିକ ଦୃଷ୍ଟିରୁ

ଅକ୍ଷମତା ପ୍ରକାଶ କରିବାରୁ ମଧୁବାବୁ କାର୍ଯ୍ୟରେ ଯୋଗ ନ ଦେଇ କଲିକତାକୁ ଫେରିଆସିଲେ ।

**ହାଇକୋର୍ଟ ଟ୍ରାନ୍ସଲେଟର :** ଶ୍ରୀରାମପୁରରୁ ଫେରିଆସି ମଧୁବାବୁ କଲିକତାରେ ଚାକିରି ଅନୁସନ୍ଧାନରେ ରହିଲେ । ସେତେବେଳେ କଲିକତା ହାଇକୋର୍ଟରେ ଓଡ଼ିଆ ଦଲିଲପତ୍ର ପ୍ରଭୃତିର ଅନୁବାଦ ପାଇଁ ଭଲ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ହାଇକୋର୍ଟ ଚିଫ୍ ଜଷ୍ଟିସ୍ ତାଙ୍କୁ ଓଡ଼ିଆ ଅନୁବାଦକ (Oriya Translator) ରୂପେ ଠିକାରେ ହାଇକୋର୍ଟରେ ନିଯୁକ୍ତ କଲେ । ଖ୍ରୀ: ୧୮୬୩ଠାରୁ ୧୮୬୮ ପର୍ଯ୍ୟନ୍ତ ସେ ଓଡ଼ିଆ ଅନୁବାଦକ ଥିଲେ । ଏହି ଚାକିରିରେ ନିଯୁକ୍ତ ହେବା ବେଳକୁ ସେ ଏମ୍. ଏ. ପାସ୍ କରିସାରିଥିଲେ ।

**ଏମ୍. ଏ. ପାସ୍ (ଖ୍ରୀ : ୧୮୬୩) :** କଲିକତା ହାଇକୋର୍ଟରେ ଟ୍ରାନ୍ସଲେଟର କାମ କରୁଥିଲାବେଳେ ମଧୁବାବୁ ଏମ୍.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ । କଲିକତାର ଇନଷ୍ଟିଚ୍ୟୁସନ୍‌ରେ ଇଂରେଜୀରେ ଏମ୍:ଏ: ପଢ଼ୁଥିଲେ ଏବଂ ଖ୍ରୀ: ୧୮୬୩ରେ ପାସ୍ କଲେ ।

**ଇଂରେଜୀ ମାନେବହି ଲେଖା :** କଲିକତାରେ ଥିବା ସମୟରେ ଶିକ୍ଷକ ମଧୁସୂଦନ ଛାତ୍ରମାନଙ୍କ ସୁବିଧା ପାଇଁ ଇଂରେଜୀରେ Model Questions ନାମକ ମାନେବହିଟି ଲେଖି ଖ୍ରୀ: ୧୮୬୪ରେ ପ୍ରକାଶ କରିଥିଲେ । ଏଥିରେ ରଚନା, ଇଂରେଜୀ ବ୍ୟାକରଣ, ଅନୁବାଦ ପ୍ରଭୃତି ବିଷୟ ଥିଲା । ଏହି ବହିଟି ଏଣ୍ଟ୍ରାନ୍ସ ପିଲାମାନଙ୍କପାଇଁ ଲିଖିତ ହୋଇଥିଲା । ବହିଟିକୁ ଛାତ୍ରମାନେ ପସନ୍ଦ କରୁଥିବାରୁ ଏହାର ପ୍ରସାର ବୃଦ୍ଧିପାଇ-ଥିଲା । ଅଳ୍ପ ସମୟ ମଧ୍ୟରେ ଏହାର ଆଠଟି ସଂସ୍କରଣ ହୋଇଯାଇଥିଲା ଏବଂ ବହିବିକ୍ରିରୁ ମଧୁସୂଦନ ବହୁତ ଟଙ୍କା ପାଇଥିଲେ ।

**ଗାର୍ଡ଼ନ୍‌ରିଚ ହାଇସ୍କୁଲର ପ୍ରଧାନ-ଶିକ୍ଷକ** ମଧୁସୂଦନ ଖ୍ରୀ: ୧୮୬୦ରେ ବି.ଏ. ଓ ଖ୍ରୀ: ୧୮୬୩ରେ ଇଂରେଜୀରେ ଏମ୍.ଏ. ପାସ କରିଥିଲେ । ମିଶନାରି ସୋସାଇଟି ହାଇସ୍କୁଲରେ ଖ୍ରୀ: ୧୮୬୨ରେ ଶିକ୍ଷକତା କରୁଥିବା ସମୟରେ ଶିକ୍ଷକ ହିସାବରେ ତାଙ୍କର ସୁଖ୍ୟାତି ପ୍ରଚାର ହୋଇସାରିଥିଲା । ସେ ଭଲ ଇଂରେଜୀ ଜାଣୁଥିଲେ ଏବଂ ଶିକ୍ଷା ଦେଲାବେଳେ ନିଜେ ଏଥିରେ ତନ୍ମୟ ହୋଇଯାଉଥିଲେ । ସୋସାଇଟି ହାଇସ୍କୁଲ ତ୍ୟାଗ କରି କଲିକତା ଅନ୍ତର୍ଗତ ଖିଦିରପୁରର ଗାର୍ଡ଼ନରିଚ୍ ହାଇସ୍କୁଲରେ ପ୍ରଧାନଶିକ୍ଷକ ରୂପେ ଖ୍ରୀ: ୧୮୬୬ରେ ସେ ନିଯୁକ୍ତ ହେଲେ । ଏହି ସମୟରେ କଲିକତା ହାଇକୋର୍ଟର ଅନୁବାଦକ (ଆଂଶିକ ସମୟ ଦେଇ) ରୂପେ ମଧ୍ୟ କାର୍ଯ୍ୟ କରୁଥିଲେ ।

**ନୈଶ ବିଦ୍ୟାଳୟ :** ଖିଦିରପୁର ଅଞ୍ଚଳରେ ବହୁ ଶ୍ରମିକ ବାସ କରୁଥିଲେ । ଅର୍ଥାଭାବରୁ ସେମାନଙ୍କର ପିଲାମାନେ ଶିକ୍ଷାଲାଭ କରିପାରୁନଥିଲେ, ଅଧିକାଂଶ ନିରକ୍ଷର ରହୁଥିଲେ । ଦେଶପ୍ରାଣ ମଧୁବାବୁ ଏହି ଅସହାୟ ଦୁଃଖୀ ଲୋକଙ୍କ ଦୁର୍ଗତି ନାଶନରେ ସହାୟକ ହେଲେ । ନିରକ୍ଷରତା ଦୂର କରି କ୍ରମେ ଉଚ୍ଚ ଶିକ୍ଷା ଦେବା ଉଦ୍ଦେଶ୍ୟରେ

ସେ ଏକ ନୈଶବିଦ୍ୟାଳୟ ସ୍ଥାପନ କଲେ । ଏଥିରେ ବଢ଼େଇ, କମାର, ମିସ୍ତ୍ରୀ ପ୍ରଭୃତି ଶ୍ରେଣୀର ଲୋକଙ୍କ ପିଲାମାନେ ଶିକ୍ଷାଲାଭ କରୁଥିଲେ । ମଧୁବାବୁଙ୍କୁ ନିଜ ହାତରୁ ମାସିକ ପ୍ରାୟ ଟ୨୦ (କୋଡ଼ିଏ ଟଙ୍କା) ସ୍କୁଲ ପାଇଁ ଖର୍ଚ୍ଚ କରିବାକୁ ପଡ଼ୁଥିଲା ।

**କଲିକତାରେ ଦୈନନ୍ଦିନ କାର୍ଯ୍ୟସୂଚୀ** : କଲିକତାରେ ମଧୁବାବୁ ସୁଖରେ ଜୀବନଯାପନ କରିପାରିନାହାନ୍ତି । ଆର୍ଥିକ ଦୁରବସ୍ଥାରୁ ସେ ସମ୍ପୂର୍ଣ୍ଣ ମୁକ୍ତ ନଥିଲେ । ଏଫ୍.ଏ., ବି.ଏ., ଏମ୍.ଏ., ବି.ଏଲ୍. ଶିକ୍ଷା ସମୟରେ ସେ ନିଜେ ନିଜ ଗୋଡ଼ରେ ଠିଆ ହୋଇଥିଲେ । କଲିକତାକୁ ଆସିବା ପରେ ସେ ଆତ୍ମନିର୍ଭରଶୀଳ ହୋଇ ନିଜର ଉନ୍ନତିର ମାର୍ଗ ନିର୍ବାଚନ କରିଥିଲେ । ସେ ଖର୍ଚ୍ଚ ବିଷୟରେ ମୁକ୍ତହସ୍ତ ଥିଲେ । ନିଜ ପାଇଁ ଓ ପର ପାଇଁ ମଧ୍ୟ ସେ ଖର୍ଚ୍ଚ ତୁଲାଇବାରେ ପଛଉନଥିଲେ । ସମୟ ସମୟରେ ଆୟଠୁ ବ୍ୟୟ ବଳି ଯାଉଥିଲା । ଖ୍ରୀଷ୍ଟିଆନ୍ ଗୋଷ୍ଠୀର ଚାଲିଚଳନ ଟିକିଏ ଉନ୍ନତ ଧରଣର ଥିଲା । ଏହି ଗୋଷ୍ଠୀର ବହୁ ପରିବାର ୟୁରୋପୀୟମାନଙ୍କ ପରିବାରର ଚଳଣୀକୁ ଅନୁକରଣ କରୁଥିଲେ । ଏଥିରେ ବ୍ୟୟର ପରିମାଣ ଅପେକ୍ଷାକୃତ ବେଶି ହେଉଥିଲା । ମଧୁବାବୁ ଏଥିରୁ ମୁକ୍ତ ନଥିଲେ । ଏହି କାରଣରୁ ତାଙ୍କର ଖର୍ଚ୍ଚର ପରିମାଣ ବେଶି ହୋଇଯାଉଥିଲା । ଅନଟନ ଦୂର କରିବା ପାଇଁ ବେଶି ପରିଶ୍ରମ କରିବା ପାଇଁ ସେ ବାଧ୍ୟ ହେଉଥିଲେ । ସ୍କୁଲ୍ ଚାକିରି, ହାଇକୋର୍ଟ ଚାକିରି, ଗୃହଶିକ୍ଷକତା, ନୈଶ ବିଦ୍ୟାଳୟ ଓ ନିଜ ଶିକ୍ଷା ପ୍ରଭୃତିରେ ସେ ସମଗ୍ର ଦିନ ବ୍ୟସ୍ତ ରହୁଥିଲେ । ଏହି କର୍ମବହୁଳତା ଯୋଗୁଁ ସେ ସମୟାନୁବର୍ତ୍ତିତାକୁ ନିଖୁଣ ଭାବରେ ପାଳନ କରିବାକୁ ବାଧ୍ୟ ହେଉଥିଲେ । ପରେ ଏହା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇଯାଇଥିଲା ।

ସକାଳେ ନିତ୍ୟକର୍ମ ସାରି ସେ ଟ୍ୟୁସନ କରିବାକୁ ଯାଉଥିଲେ । ୧୦ଟାରୁ ୪ଟା ପର୍ଯ୍ୟନ୍ତ ଗାର୍ଡ଼ନରିଚ ହାଇସ୍କୁଲରେ ପାଠ ପଢ଼ାଉଥିଲେ ଓ ସ୍କୁଲର ପରିଚାଳନା ଦେଖୁଥିଲେ । ସନ୍ଧ୍ୟାରେ ଆଇନ୍ କଲେଜରେ ବି. ଏଲ୍. ପଢ଼ୁଥିଲେ । ରାତି ୯ଟାରେ ଘରକୁ ଫେରି ସ୍ନାନ କରି ଭୋଜନ କରୁଥିଲେ । ବିବାହ ପରେ ତାଙ୍କର ଦାୟିତ୍ୱ ଓ ଖର୍ଚ୍ଚ ମଧ୍ୟ ବୃଦ୍ଧିପାଇଥିଲା ।

ହାଇକୋର୍ଟରେ ଓଡ଼ିଆ ଅନୁବାଦକ ରୂପେ କାର୍ଯ୍ୟ କରୁଥିଲାବେଳେ ସେ ସକାଳ ୭ଟା ବେଳେ ହାଇକୋର୍ଟରେ ପହଞ୍ଚି କାମରେ ଯୋଗଦେଉଥିଲେ । ସେ ଆଂଶିକ ଅନୁବାଦକରୂପେ କାର୍ଯ୍ୟ କରୁଥିବାରୁ ତାଙ୍କୁ ପୂରା ସମୟ ହାଇକୋର୍ଟରେ ରହିବାକୁ ପଡ଼ୁନଥିଲା ।

**ବି. ଏଲ୍. ପାସ ଓ ଓକିଲତି** : କଲିକତା ହାଇକୋର୍ଟରେ ଠିକା ଓଡ଼ିଆ ଅନୁବାଦକ (Part-time Translator) ରୂପେ କାର୍ଯ୍ୟ କରୁଥିବାବେଳେ ମଧୁସୂଦନ ପ୍ରେସିଡେନ୍ସି କଲେଜର ସାନ୍ଧ୍ୟ କଲେଜରେ ବି.ଏଲ୍. ପଢ଼ୁଥିଲେ । ଖ୍ରୀ: ୧୮୭୮ରେ ବି.ଏଲ୍. ପାସ୍ କଲେ ଏବଂ କଲିକତା ନିକଟସ୍ଥ (ଚବିଶ ପରଗଣା ଜିଲ୍ଲା ଅନ୍ତର୍ଗତ) ଆଲିପୁର କୋର୍ଟରେ ଓକିଲାତି ଆରମ୍ଭକଲେ ।

କଲିକତାରେ ମଧୁବାବୁ କେବଳ ଛଦୋଟି ବର୍ଷ ଓକିଲାତି କରିଥିଲେ । ତାଙ୍କ ସ୍ତ୍ରୀଙ୍କ ବିୟୋଗ ପରେ ତାଙ୍କର ମନ ଦୁଃଖଭାରାକ୍ରାନ୍ତ ହୋଇପଡ଼ିଥିଲା । ଏହି ସମୟରେ କେତେ-ଜଣ ବିଶିଷ୍ଟ ବନ୍ଧୁ ତାଙ୍କୁ କଟକରେ ଓକିଲାତି କରିବାପାଇଁ ପରାମର୍ଶ ଦେବାରୁ ସେ ଖ୍ରୀ: ୧୮୮୧ ସେପ୍ଟେମ୍ବର ୨୪ ତାରିଖ ଦିନ କଟକକୁ ଫେରିଗଲେ ଏବଂ ସେଠାରେ ଓକିଲାତି ଆରମ୍ଭ କଲେ ।

**ସଂସ୍କୃତ ପ୍ରଶ୍ନର ଉତ୍ତର ଓଡ଼ିଆ ଲିପିରେ ଲେଖିବାପାଇଁ ଦାବୀ :** ମଧୁବାବୁ ବାଲେଶ୍ୱରରୁ ଖ୍ରୀ: ୧୮୬୬ରେ କଲିକତା ଗଲେ ବୋଲି ମଧ୍ୟ କେହି କେହି କହନ୍ତି । କଲିକତାରେ ଲଣ୍ଡନ୍ ମିଶନାରୀ ସୋସାଇଟି ଇନ୍‌ଷ୍ଟିଚ୍ୟୁଟ୍‌ରେ ଏଫ୍. ଏ. ପଢ଼ିଲେ ଏବଂ ଖ୍ରୀ: ୧୮୬୯ରେ ଏଫ୍. ଏ. (ଆଇ. ଏ.) ପାସ୍ କଲେ । ଏହି କଲେଜରୁ ଖ୍ରୀ: ୧୮୭୦ରେ ସେ ବି. ଏ ପାସ୍ କଲେ । ସେ ସମୟରେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟର ସ୍ଥାନ ନ ଥିଲା । ମଧୁବାବୁ ସଂସ୍କୃତ ପ୍ରଶ୍ନର ଉତ୍ତର ଓଡ଼ିଆ ଲିପିରେ ଲେଖିବା ପାଇଁ ଅନୁମତି ଦେବାକୁ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କଲେ । ବଙ୍ଗାଳୀ ଛାତ୍ରମାନେ ସ୍ୱ ମାତୃଭାଷାର ଲିପି ବ୍ୟବହାର କରି ସଂସ୍କୃତ ପ୍ରଶ୍ନର ଉତ୍ତର ଲେଖୁଥିଲେ । ସେତେବେଳେ ସଂସ୍କୃତ ଅଧ୍ୟାପକ ରେଭରେଣ୍ଡ କୃଷ୍ଣମୋହନ ବନ୍ଦୋପାଧ୍ୟାୟ ଓଡ଼ିଆ ଲିପି ଜାଣୁନଥିବାରୁ ଉତ୍ତର ପଢ଼ିବାରେ ଅସୁବିଧା ହେଉଥିଲା । ଏହି କାରଣରୁ ସେ ମନା କରୁଥିଲେ । ମଧୁବାବୁ ଓଡ଼ିଆ ଲିପିରେ ସଂସ୍କୃତ ପ୍ରଶ୍ନର ଉତ୍ତର ଦେବାପାଇଁ ଆବେଦନ କରିବାରୁ ଚହଳ ପଡ଼ିଯାଇଥିଲା । ମଧୁବାବୁଙ୍କୁ "କଲିକତା ବିଶ୍ୱବିଦ୍ୟାଳୟଙ୍କ ସହିତ ଲଢ଼େଇ କରିବାକୁ ପଡ଼ିଥିଲା" ବୋଲି ସେ ଏକ ପତ୍ରରେ ଲେଖିଥିଲେ । ('ଉତ୍କଳ ସାହିତ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ'—ଉତ୍କଳ ସାହିତ୍ୟ ସମାଜ ରିପୋର୍ଟ, ୧୯୩୮ । ) ମଧୁବାବୁ ସଂସ୍କୃତକୁ ଦ୍ୱିତୀୟ ଭାଷା ରୂପେ ନେଇଥିଲେ । ବିଶ୍ୱବିଦ୍ୟାଳୟ ଓଡ଼ିଆ ଲିପିରେ ଉତ୍ତର ଦେବାପାଇଁ ଅନୁମତି ଦେଇଥିଲେ ।

ସେତେବେଳେ ମାନେବହି ବେଶି ନଥିଲା । ମଧୁବାବୁ ଅଭିଧାନ ସାହାଯ୍ୟରେ ସଂସ୍କୃତ, ଇଂରେଜୀ ପାଠ ପଢ଼ୁଥିଲେ ।

**ଖ୍ରୀଷ୍ଟିଆନ୍ ମିଶନାରୀ ସୋସାଇଟି ସ୍କୁଲରେ ଚାକିରି :** ଖ୍ରୀ: ୧୮୭୨ରେ ମଧୁବାବୁ କଲିକତାସ୍ଥ ଖ୍ରୀଷ୍ଟିଆନ୍ ମିଶନାରୀ ସୋସାଇଟି ହାଇସ୍କୁଲରେ ହେଡ଼ମାଷ୍ଟର ରୂପେ ନିଯୁକ୍ତ ହୋଇଥିଲେ । ସେତେବେଳେ ବଙ୍ଗ ଦେଶରେ ମଧ୍ୟ ବି. ଏ., ଏମ୍. ଏ. ପାସ୍-ବାଲାଙ୍କ ସଂଖ୍ୟା ବେଶି ନଥିଲା । ଅର୍ଥ ଓ କ୍ଷମତା ଥିବାରୁ ସରକାରୀ ଚାକିରି ପ୍ରତି ଲୋକେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ଏହି କାରଣରୁ ବେସରକାରୀ ସ୍କୁଲମାନଙ୍କୁ ଭଲ ଶିକ୍ଷକ ଆସୁନଥିଲେ । କେବଳ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱଧର୍ମ ସମ୍ପ୍ରଦାୟର ସ୍କୁଲରେ ଚାକିରି କରିବାକୁ ମଧୁବାବୁ ମନବଳାଇଥିଲେ । ପୁଣି ସେ ମିଶନାରୀ ସୋସାଇଟି-

ଠାରୁ ମାସିକ ଆଠଟଙ୍କା ବୃତ୍ତି ପାଇ କଲିକତାରେ ଏଫ୍.ଏ. ଶିକ୍ଷା ଆରମ୍ଭ କରିଥିବାରୁ ସେ କୃତଜ୍ଞତାର ଚିହ୍ନ ସ୍ୱରୂପ ସୋସାଇଟି ସ୍କୁଲରେ ଶିକ୍ଷକ ହୋଇଥିବା ସ୍ୱାଭାବିକ ।

**ଗୃହଶିକ୍ଷକତା (ଆଶୁତୋଷଙ୍କ ଗୃହଶିକ୍ଷକ)** : କଲିକତାରେ ଚଳିବା ପକ୍ଷରେ ସ୍କୁଲ ଗୃହରୁ ମିଳୁଥିବା ଟଙ୍କା ମଧୁସୂଦନଙ୍କୁ ଯଥେଷ୍ଟ ହେଉନଥିଲା । ଏଥିପାଇଁ ସେ ଟ୍ୟୁସନ୍ କରି କିଛି ଅଧିକା ରୋଜଗାର କରିବାକୁ ମନକଲେ । ଭଲ ଇଂରେଜୀ ଜାଣିଥିବାର ଖ୍ୟାତି ତାଙ୍କର ଥିଲା । ମେଧାବୀ, ଚରିତ୍ରବାନ୍ ଥିବାରୁ ଉତ୍ତମ ଶିକ୍ଷକ ରୂପେ ସେ ଭବାନୀପୁର ଅଞ୍ଚଳରେ ସୁପରିଚିତ ହୋଇଗଲେ । ଆଶୁତୋଷ ମୁଖୋପାଧ୍ୟାୟଙ୍କ ପିତା ଡାକ୍ତର ଗଙ୍ଗାଧର ମୁଖୋପାଧ୍ୟାୟ ତାଙ୍କୁ ଆଶୁତୋଷଙ୍କ ଗୃହଶିକ୍ଷକରୂପେ ନିଯୁକ୍ତ କରିଥିଲେ । ଆଶୁତୋଷ ବାଲ୍ୟଗୁରୁଙ୍କୁ ସବୁବେଳେ ସମ୍ମାନ କରୁଥିଲେ ଏବଂ ତାଙ୍କ କର୍ମମୟ ଜୀବନରେ ଘନିଷ୍ଠ ଭାବରେ ଆତ୍ମୀୟତା ରକ୍ଷା କରିଥିଲେ । ମଧୁବାବୁ ଖାଇବସିଲାବେଳେ ଆଶୁତୋଷଙ୍କୁ ଶିକ୍ଷା ଦେଉଥିଲେ । ଆଶୁଙ୍କ ଇଂରେଜୀ ଶିକ୍ଷା ଓ ସଚ୍ଚରିତ୍ରଗଠନରେ ମଧୁବାବୁଙ୍କ ଦାନ ସେ ମୁକ୍ତ କଣ୍ଠରେ ସ୍ୱୀକାର କରୁଥିଲେ ।

ଆଶୁତୋଷ ମଧୁବାବୁଙ୍କ ତତ୍ତ୍ୱାବଧାନରେ ଉନ୍ନତି କରୁଥିବା ଦେଖି ସେହି ଅଞ୍ଚଳର (ଭବାନୀପୁର) ଶ୍ରୀ ଆନନ୍ଦମୋହନ ଦାସ ତାଙ୍କ ପୁତ୍ର ଚିତ୍ତରଞ୍ଜନ (ଦେଶବନ୍ଧୁ)ଙ୍କୁ ପଢ଼ାଇବା ପାଇଁ ମଧୁବାବୁଙ୍କୁ ଅନୁରୋଧ କରୁଥିଲେ । କିନ୍ତୁ ସମୟ ଅଭାବରୁ ମଧୁବାବୁ ଏ ଅନୁରୋଧ ରକ୍ଷା କରିପାରି ନଥିଲେ ।

ଥରେ ଏକ ସଭାରେ ଇଂରେଜୀରେ ଆଶୁବାବୁଙ୍କ ବକ୍ତୃତା ଶୁଣି ଜଣେକ ହାଇକୋର୍ଟ ଜଜ୍ ମୁଗ୍ଧ ହୋଇଯାଇଥିଲେ । ତାଙ୍କୁ ଜଜ୍ ପଚାରିଲେ, "ଆପଣ ଏତେ ସୁନ୍ଦର ଇଂରେଜୀରେ କହିବା କାହାଠାରୁ ଶିଖିଲେ ?" ଆଶୁବାବୁ କହିଥିଲେ, "ମୋ ବାଲ୍ୟଗୁରୁ ମଧୁବାବୁଙ୍କର ଏ ଦାନ ।"

ପରବର୍ତ୍ତୀ ସମୟରେ ଆଶୁତୋଷ ବଙ୍ଗ ପ୍ରଦେଶରେ ଜଣେ ବିଖ୍ୟାତ ଜାତିନିର୍ମାତା ଓ ଚରିତ୍ରବାନ ଆଦର୍ଶ ନେତାରୂପେ ଖ୍ୟାତି ଲାଭ କରିଥିଲେ । ମଧୁବାବୁ କଲିକତା ଗଲେ ଆଶୁତୋଷଙ୍କ ସହିତ ଦେଖାକରୁଥିଲେ ଏବଂ ଦୁହେଁ ଦେଶର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ବହୁ ସମୟ ଆଲୋଚନା କରୁଥିଲେ । ଉଭୟେ ପରସ୍ପର ପ୍ରତି ସ୍ନେହ ଓ ସହାନୁଭୂତି ପ୍ରଦର୍ଶନ କରୁଥିଲେ । ମଧୁବାବୁ ଅନ୍ୟାନ୍ୟ ପ୍ରସଙ୍ଗ ଭିତରେ ଉତ୍କଳର ବିଭିନ୍ନ ସମସ୍ୟା ସମ୍ପର୍କରେ ମଧ୍ୟ ଆଲୋଚନା କରୁଥିଲେ । ବଡ଼ ବଡ଼ ମକଦ୍ଦମାରେ ଓ ପ୍ରଧାନ ପ୍ରଧାନ ବିଷୟରେ ସରକାରଙ୍କ ସହିତ ପରାମର୍ଶ କରିବା ସମ୍ପର୍କରେ ଉଭୟେ ପରସ୍ପର ଭାବବିନିମୟ କରୁଥିଲେ । ପୁରୀର ଜଗନ୍ନାଥ ମନ୍ଦିରରେ ଖୋର୍ଦ୍ଧା ରାଜାଙ୍କ ସ୍ୱତ୍ୱାସ୍ୱତ୍ୱ ସମ୍ବନ୍ଧରେ ମଧୁବାବୁ ଆଶୁତୋଷଙ୍କ ସହିତ ଘନିଷ୍ଠ ଯୋଗାଯୋଗ ସ୍ଥାପନ କରିଥିଲେ ।

ଥରେ ଆଶୁତୋଷଙ୍କ ସୁଯୋଗ୍ୟ ପୁତ୍ର ସ୍ୱର୍ଗତ ଶ୍ୟାମାପ୍ରସାଦ ମୁଖୋପାଧ୍ୟାୟ ନିଜ ଘରେ ପିତା ଓ ତାଙ୍କ ଗୁରୁଙ୍କ ଭିତରେ ଆଳାପ-ଆଲୋଚନା ବେଳେ ଉପସ୍ଥିତ ଥିଲେ । ସେତେବେଳକୁ ଶ୍ୟାମାପ୍ରସାଦଙ୍କ ବୟସ ମୋଟେ ୧୧ ବର୍ଷ । ବହୁ ସମୟ ପର୍ଯ୍ୟନ୍ତ ଆଲୋଚନା ଚାଲିଥିଲା । ମଧୁବାବୁଙ୍କ ସହିତ କଥା କହିଲାବେଳେ ଆଶୁବାବୁ ବହୁ ନମ୍ରତା ପ୍ରକାଶ କରୁଥାନ୍ତି । ଆଳାପ ଶେଷ ହେବାପରେ ଆଶୁତୋଷ ଆସନରୁ ଉଠି ବହୁଦୂର ପର୍ଯ୍ୟନ୍ତ ଯାଇ ମଧୁବାବୁଙ୍କୁ ବିଦାୟ ଦେଇଥିଲେ । ବାଳକ ଶ୍ୟାମାପ୍ରସାଦ କେବେ ତାଙ୍କ ପିତା ସାଧାରଣ ଆଲୋଚନାରେ ଏତେ ସମୟ ବ୍ୟୟ କରିଥିବା ଦେଖି ନ ଥିଲେ । ଏଣୁ କୌତୂହଳରେ ପିତାଙ୍କଠାରୁ ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କ ପରିଚୟ ଜାଣିବାକୁ ଚାହିଁଲେ । ଆଶୁତୋଷ କହିଲେ, "ତୁମେ ଜାଣିନାହଁ ? ସେ ପରି ଓଡ଼ିଶାର ବିଖ୍ୟାତ ନେତା ମଧୁସୂଦନ ଦାସ । ସେ ମୋର ପିଲାଦିନର ଗୁରୁ ।" ଏହା କହିବାବେଳେ ଆଶୁତୋଷଙ୍କ ମୁଖ ଉଜ୍ଜ୍ୱଳ ହୋଇଯାଇଥିଲା । ସେ ଏହା କହିବାରେ ଗର୍ବ ଅନୁଭବ କରିଥିଲେ ।

ଆଶୁତୋଷ ମଧୁବାବୁଙ୍କଠାରୁ ବିଦ୍ୟାଶିକ୍ଷା ବ୍ୟତୀତ ବହୁ ବିଷୟରେ ଶିକ୍ଷାଲାଭ କରିଥିବା ଗର୍ବସହକାରେ ସ୍ୱୀକାର କରୁଥିଲେ ଏବଂ ଗୁରୁଙ୍କଠାରେ ବହୁ ବିଷୟରେ ସେ କୃତଜ୍ଞ ଥିବା ବ୍ୟକ୍ତ କରୁଥିଲେ । ଆଶୁତୋଷ କହୁଥିଲେ, "ମଧୁବାବୁ ମୋତେ କେବଳ ଇଂରେଜୀ ଶିକ୍ଷା ଦେଇ ନ ଥିଲେ, ମନୁଷ୍ୟ ଜୀବନରେ ଚରିତ୍ର ଓ ସ୍ୱାଧୀନତା ଦୁଇଟି ପ୍ରଧାନ ଗୁଣ ବୋଲି ବ୍ୟକ୍ତ କରି ସେଥିରେ ଅନୁପ୍ରାଣିତ ହେବାକୁ କହୁଥିଲେ ।" ମଧୁବାବୁଙ୍କ ବିରାଟ ବ୍ୟକ୍ତିତ୍ୱର ପ୍ରଭାବ ଆଶୁତୋଷଙ୍କ ଉପରେ ପଡ଼ିଥିଲା । ଏ ଦୁଇଜଣ ବିରାଟ ପୁରୁଷଙ୍କ ଭିତରେ ଆନ୍ତରିକତା ଥିଲା । ଦୁହେଁ ଦୁହିଁଙ୍କୁ ଦେଖି, ଆଳାପ କରି ବିମଳ ଆନନ୍ଦ ଉପଭୋଗ କରୁଥିଲେ । ଆଶୁତୋଷ ମୃତ୍ୟୁ ପର୍ଯ୍ୟନ୍ତ ମଧୁବାବୁଙ୍କୁ ଗୁରୁରୂପେ ଆଦର ଓ ସମ୍ମାନ କରୁଥିଲେ ।

ଆଶୁତୋଷ ଖ୍ରୀ: ୧୯୨୪ ମଇମାସ ୧୭ତାରିଖରେ ପାଟନାରେ ଦେହତ୍ୟାଗ କଲେ । ଏହାର ଆଠଦିନପୂର୍ବରୁ ଆଶୁତୋଷଙ୍କ ସହ ମଧୁବାବୁଙ୍କର ଆଶୁତୋଷଙ୍କ କଲିକତାସ୍ଥ ବାସ-ଭବନରେ କିଛି ସମୟ ଆଲୋଚନା ହୋଇଥିଲା । ଉଭୟଙ୍କ ଭିତରେ ଏହି ଆଲୋଚନା ଶେଷ ଆଲୋଚନା । ଶ୍ୟାମାପ୍ରସାଦ ସେତେବେଳେ ସିମଳା ଯିବାକୁ ପ୍ରସ୍ତୁତ ହୋଇ ରହିଥିଲେ; ରେଳଷ୍ଟେସନକୁ ଯିବାକୁ ଆଉ ଅଳ୍ପ ସମୟ ଥିଲା । ମଧୁବାବୁ ଓ ଆଶୁତୋଷଙ୍କ ଭିତରେ କୌଣସି ଏକ ଗୁରୁତର ବିଷୟ ନେଇ ଗମ୍ଭୀର ଆଲୋଚନା ଚାଲିଥିଲା । ଶ୍ୟାମାପ୍ରସାଦ କୋଠରି ଭିତରକୁ ପଶି ପିତାଙ୍କୁ ପ୍ରଣାମ କରି ତାଙ୍କର ପଦଧୂଳି ନେଲେ । ମଧୁବାବୁ ପ୍ରିୟ ଶିଷ୍ୟ ଓ ତାଙ୍କ ପୁତ୍ରଙ୍କ ଆଡ଼କୁ ଆନନ୍ଦମନରେ ଚାହିଁଥିଲେ । ମଧୁବାବୁ ଧୀର କଣ୍ଠରେ କହିଲେ, "ଆଶୁ, ତୁମେ ରେଳଷ୍ଟେସନକୁ ଯାଇ ପିଲାକୁ ବିଦାୟଦେବା ଭଲ ହେବ ବୋଲି ମୁଁ ଭାବୁଛି । ଆସନ୍ତା କାଲିକୁ ଆଲୋଚନା ମୁଲତବି ରଖିବା ।" ଆଶୁତୋଷ ଏଥିରେ ଅତ୍ୟନ୍ତ ପ୍ରୀତ ହେଲେ । ମଧୁବାବୁଙ୍କ ସହିତ ହେଉଥିବା ଆଲୋଚନାକୁ ବନ୍ଦ କରିଦେଲେ

କାଳେ ଗୁରୁଙ୍କ ମନରେ କଷ୍ଟହେବ, ଏହି ଆଶଙ୍କାରେ ହୁଏତ ସେ କିଛି କହିପାରୁ ନ ଥିଲେ । ଗୁରୁଙ୍କ ହୃଦୟବତ୍ତା ଶିଷ୍ୟଙ୍କର ପ୍ରାଣକୁ ସ୍ପର୍ଶ କରିଥିଲା ।

ମଧୁବାବୁଙ୍କୁ ଆଶୁତୋଷ ଏତେ ସମ୍ମାନ କରୁଥିଲେ ଏବଂ ମଧୁବାବୁ ଆଶୁତୋଷଙ୍କୁ ଏତେ ସ୍ନେହ କରୁଥିଲେ ଯେ ଚିଠି-ପତ୍ର ଲେଖିଲାବେଳେ ଚିଠିରେ ଆଶୁତୋଷ ମଧୁବାବୁଙ୍କୁ 'My Dear Mr. Das' (ମୋର ପ୍ରିୟ ମିଃ ଦାସ) ବୋଲି ଲେଖୁନଥିଲେ; କେବଳ 'My Dear Sir' ( ମୋର ସ୍ନେହର ଗୁରୁ ) ସମ୍ବୋଧନାଂଶରେ ଓ ଶେଷାଂଶରେ 'Yours affectionately' ( ତୁମର ସ୍ନେହର ) ବୋଲି ଲେଖୁଥିଲେ ।

ଶ୍ୟାମାପ୍ରସାଦ ଲେଖିଛନ୍ତି ଯେ ଅତି ଦୁଃଖ ସମୟରେ ଆଶୁତୋଷ, ଖୁବ୍ ଅଳ୍ପ ଲୋକଙ୍କୁ ନିଜ ମନର ବେଦନା ଓ ବ୍ୟକ୍ତିଗତ ସମସ୍ୟା ସମ୍ବନ୍ଧରେ କିଛି ପ୍ରକାଶ କରୁଥିଲେ । ଏ ଅଳ୍ପ ଲୋକଙ୍କ ଭିତରେ ମଧୁବାବୁ ଥିଲେ । ଉଭୟଙ୍କ ଭିତରେ ବହୁ ପ୍ରସଙ୍ଗରେ ଚିଠିପତ୍ର ଆଦାନପ୍ରଦାନ ହେଉଥିଲା । ମନଖୋଲାଭାବରେ ଗୁରୁଶିଷ୍ୟ ଚିଠି ସାହାଯ୍ୟରେ ଆଲାପ-ଆଲୋଚନା କରୁଥିଲେ । ଚିଠି ପାଇଲେ ଉତ୍ତର ଦେବାରେ କେହି ବିଳମ୍ବ କରୁନଥିଲେ । ମଧୁବାବୁ ସ୍ୱହସ୍ତରେ ବହୁ ଚିଠି ଲେଖିଥିଲେ । ତାଙ୍କର ହସ୍ତାକ୍ଷର ଅତି ବିରଳ ଓ ବଳିଷ୍ଠ ରେଖାବିଶିଷ୍ଟ ଥିଲା । ଉଭୟେ ଉଭୟଙ୍କ ସମସ୍ୟା ଖୋଲାଖୋଲିଭାବରେ ଆଲୋଚନା କରୁଥିଲେ । ମଧୁବାବୁ ତାଙ୍କ ଚିଠିରେ ବିଶ୍ୱାସ ଓ ଧୈର୍ଯ୍ୟ ଉପରେ ବିଶେଷ ଜୋର୍ ଦେଉଥିଲେ ଏବଂ ସେ ସବୁବେଳେ ଆଶାବାଦୀ ଥିଲେ ।

ଆଶୁତୋଷ ମୁଖାର୍ଜୀ କଲିକତା ବିଶ୍ୱବିଦ୍ୟାଳୟର ଜଣେ ପ୍ରଧାନ ନିର୍ମାତାକହିଲେ ଅତ୍ୟୁକ୍ତି ହେବ ନାହିଁ ଏବଂ ଏହାର ବର୍ତ୍ତମାନ ଯୁଗର ଅଧିକାଂଶ ଉନ୍ନତି ଓ ଖ୍ୟାତି ମୂଳରେ ଆଶୁତୋଷଙ୍କ ତ୍ୟାଗ ଓ ଦାନ ରହିଛି । ଏହି ସନ୍ଧାନରେ ତାଙ୍କର କେତେଜଣ ଶତ୍ରୁ ତାଙ୍କର ସବୁ ଉଦ୍ୟମକୁ ପଣ୍ଡ କରିଦେବା ପାଇଁ ଚେଷ୍ଟା କରୁଥିଲେ । ହିଂସୁକମାନେ ଜୟଯୁକ୍ତ ହୋଇଥିଲେ କଲିକତା ବିଶ୍ୱବିଦ୍ୟାଳୟ ଧ୍ୱଂସ ପାଇଯାଇଥାଆନ୍ତା ଏବଂ ଆଶୁତୋଷଙ୍କ ଅକ୍ଲାନ୍ତ ପରିଶ୍ରମରେ ଗଠିତ ଶିକ୍ଷାନିକେତନଟି ଧୂଳିସାତ୍ ହୋଇଯାଇ-ଥାଆନ୍ତା । ଏହି କାରଣରୁ ଆଶୁତୋଷ ବିଶେଷଭାବରେ ଚିନ୍ତିତ ହୋଇପଡ଼ିଥିଲେ । ତାଙ୍କର ପ୍ରକୃତ ବନ୍ଧୁମାନଙ୍କ ଭିତରେ ତାଙ୍କର ଗୁରୁ ମଧୁବାବୁ ଜଣେ । ଗୁରୁ ଯେତେବେଳେ ଶିଷ୍ୟର ମାନସିକ ଦୁଶ୍ଚିନ୍ତାର ସନ୍ଦେଶ ପାଇଲେ ସେତେବେଳେ ସେ କଲିକତା ଯାଇ ଶିଷ୍ୟଙ୍କ ସହିତ ଆଲାପ କରିଥିଲେ ଏବଂ ଉତ୍ସାହ ପ୍ରଦାନ କରିଥିଲେ । ଉଭୟେ ପରସ୍ପର ସୁଖ-ଦୁଃଖର ଭାବନାରେ ଭାଗୀ ହୋଇ ନିଜ ନିଜର ମାନସିକ ଶକ୍ତି ବୃଦ୍ଧି କରୁଥିଲେ ।

ଆଶୁତୋଷଙ୍କ ପାଖକୁ ମଧୁବାବୁ ଯେଉଁସବୁ ଚିଠି ଦେଉଥିଲେ ସେଥିରେ ଦୁଇଟି ସ୍ପଷ୍ଟ ବିଶିଷ୍ଟତା ଦେଖାଯାଉଥିଲା । ପ୍ରଥମଟି ହେଉଛି ମଧୁବାବୁ ବିପଦ ଆଗରେ ମୁଣ୍ଡ ନ ନୁଆଁଇ ତା ବିରୁଦ୍ଧରେ ଲଢ଼େଇ କରିବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲେ; ଦ୍ୱିତୀୟଟି ତାଙ୍କର ଅଟଳ

ଭଗବତ୍ ବିଶ୍ୱାସ । ଭଗବାନ୍ କେବେ ସତ୍‌କାର୍ଯ୍ୟକୁ ଧ୍ୱଂସ କରିବାକୁ ଦେବେ ନାହିଁ, ଏହି ବିଶ୍ୱାସ ତାଙ୍କର ଥିଲା ।

[ 'My Impressions' by Syamaprasad Mukharjee. "Life of M. S. Das as seen by many eyes." (P 3—5) ]

## ୭ । କଟକ ପ୍ରତ୍ୟାବର୍ତ୍ତନ ଓ ଅବସ୍ଥାନ

**କଟକରେ ଓକିଲାତି କରିବାର କାରଣ :** ବି.ଏଲ୍. ପାସ୍ କରିବା ପରେ ମଧୁବାବୁ କଲିକତାରେ ରହି ଓକିଲାତି କରିବା ସ୍ଥିର କରିଥିଲେ । ସେଠାରେ ବହୁ ଖ୍ୟାତନାମା ଓକିଲ ଥିଲେ । ବଙ୍ଗ, ବିହାର, ଆସାମ ଓ ଓଡ଼ିଶା ଅପିଲ୍ ମକଦ୍ଦମାଗୁଡ଼ିକ କଲିକତାରେ ବିଚାର ହେଉଥିଲା । ଦେଶୀୟ ରାଜା, ମହାରାଜା ଓ ଜମିଦାରମାନେ ସରକାରଙ୍କ ସହିତ ସମ୍ବନ୍ଧ ରକ୍ଷା କରିବା ପାଇଁ କଲିକତା ଯାଉଥିଲେ । କେନ୍ଦ୍ର ଓ ପ୍ରାଦେଶିକ ସରକାରଙ୍କ ରାଜଧାନୀ ଥିବାରୁ କଲିକତାର ପ୍ରାଧାନ୍ୟ ଯଥେଷ୍ଟ ଥିଲା ଏବଂ ସମଗ୍ର ପୂର୍ବଭାରତଖଣ୍ଡର ଧନଦୌଲତ କଲିକତାକୁ ଗ୍ରୁଣିହୋଇଯାଉଥିଲା ।

ବଡ଼ ବଡ଼ ଓକିଲଙ୍କ ସଙ୍ଗରେ ରହିଲେ ଭଲ ଓକିଲ ହେବାର ସମ୍ଭାବନା କଲିକତାରେ ଥିଲା । ଏହା ବ୍ୟତୀତ ଓଡ଼ିଶାର ଅପିଲ୍ କେସ୍ ସବୁ କଲିକତା ଯାଉଥିବାରୁ ଏହି କେସ୍ ଭିତରୁ କିଛି ପାଇବା ଆଶା ମଧ୍ୟ ମଧୁବାବୁଙ୍କର ଥିଲା । ସ୍ୱବ୍ୟବସାୟର ମାନ ବୃଦ୍ଧି ଓ ଅର୍ଥାଗମ ଉଭୟ କ୍ଷେତ୍ର ଅନୁକୂଳ ହେବା ଆଶା କରି ମଧୁବାବୁ କଲିକତାରେ ଓକିଲାତି ଆରମ୍ଭ କରିଥିଲେ ।

ସେଠାରେ କିଛି କାଳ ଓକିଲାତି କରିବା ପରେ ହାଇକୋର୍ଟରେ ପ୍ରଧାନ ଜଜ ସାର୍ ରିଚାର୍ଡ଼ ଗାର୍ଥ ( Sir Richard Girth ) ଥରେ କଥା ପ୍ରସଙ୍ଗରେ ତାଙ୍କୁ କହିଥିଲେ—"ଆପଣମାନେ ତ କଲିକତାରେ ରହିଲେ । ତଳ କୋର୍ଟରୁ ଭଲଭାବରେ ପ୍ରସ୍ତୁତ ହୋଇଥିବା ମକଦ୍ଦମା ଆସିଲେ ତ ଆପଣମାନେ ନିଜର ପ୍ରତିଭା ଦେଖାଇପାରିବେ; ନ ହେଲେ ଅପିଲ୍ ଯୋଗ୍ୟ ବହୁ ମକଦ୍ଦମା ମଧ୍ୟ ଉପଯୁକ୍ତ ତଦ୍‌ବିର ଅଭାବରୁ ଅପିଲ୍‌କୁ ଆସିପାରିବ ନାହିଁ, ଆସୁନାହିଁ ମଧ୍ୟ । ଅତଏବ, ଆପଣମାନଙ୍କ ଭିତରୁ କେତେଜଣ ଉଦୀୟମାନ ଓକିଲ ମଫସଲ କୋର୍ଟକୁ ଯାଇ ଓକିଲାତି କରିବା ଉଚିତ । ଏହାଦ୍ୱାରା ତଳ କୋର୍ଟମାନଙ୍କର ଓକିଲାତି ମାନ ନିଶ୍ଚୟ ବୃଦ୍ଧି ପାଇବ ।" ଜଜ୍ ସାହେବ କେତେକ ଉଦୀୟମାନ ଯୁବକ ବଙ୍ଗାଳୀ ଓକିଲଙ୍କୁ ମଧ୍ୟ ଏହିଭଳି ଉପଦେଶ ଦେଉଥିଲେ । ଏହା ଫଳରେ ମଧୁବାବୁ କଟକକୁ ଓକିଲାତି କରିବା ପାଇଁ ଆସିଥିଲେ । ଖ୍ରୀ: ୧୮୮୧ରେ ମଧୁବାବୁ କଟକରେ ଓକିଲାତି ଆରମ୍ଭ କଲେ ।

**ବହାରୀବାଗରେ ବସା** କଲିକତାରେ ଏକାଦିକ୍ରମେ ଷୋହଳବର୍ଷ ରହି ଖ୍ରୀ: ୧୮୮୧ରେ ମଧୁବାବୁ କଲିକତାରୁ କଟକକୁ ଫେରିଆସିଲେ । କଲିକତାରେ ତାଙ୍କ ଭାର୍ଯ୍ୟାଙ୍କ ମୃତ୍ୟୁ ହୋଇଯିବାରୁ ସେ ଟିକିଏ ଉଦାସୀନ ହୋଇପଡ଼ିଥିଲେ । କଟକକୁ ଫେରିଆସି କଟକର ତଗରପଡ଼ା ଅଞ୍ଚଳରେ ଅବସ୍ଥିତ ପ୍ରସିଦ୍ଧ ବହାରୀବାଗରେ ଏକ କୋଠା ଭଡ଼ାକୁ ନେଇ ଓକିଲାତି ଆରମ୍ଭ କଲେ । ବହୁ ବର୍ଷ କଲିକତାରେ ରହିଗଲା ପରେ କଟକକୁ ଫେରିଆସିବାଦ୍ୱାରା ତାଙ୍କର ବନ୍ଧୁମାନେ ଖୁସି ହୋଇଥିଲେ । ମାତୃଭୂମିର ମୋହ କପର ଟାଣେ ତାହା ସେ କୌତୁକରେ ଏ ଢଗଟି ବୋଲି ବୁଝାଉଥିଲେ—

"ବାର ବରଷର ମଉଳା ପୋଷେ,
ଖୁଡ଼ୁତା ଦେଖିଲେ କନ୍ଧରେ ବସେ ।"

**ଓଡ଼ିଶା ଯୁବକସଂଘ ସ୍ଥାପନ :** କଲିକତାରୁ ଆସି କଟକର ବହାରୀବାଗରେ ଭଡ଼ା ଘରେ ରହୁଥିବା ସମୟରେ ତାଙ୍କ ଘର ବିଭିନ୍ନ ସ୍ଥାନର ଅତିଥି ଓ ଛାତ୍ରମାନଙ୍କର ଏକ ଆଶ୍ରୟସ୍ଥଳ ହୋଇପଡ଼ିଥିଲା । ସିଂହଭୂମି, ସମ୍ବଲପୁର ଓ ଅନ୍ୟାନ୍ୟ ବିଚ୍ଛିନ୍ନାଞ୍ଚଳର ବହୁ ମେଧାବୀ ଛାତ୍ର ସେଠାରେ ମଧୁବାବୁଙ୍କ ତତ୍ତ୍ୱାବଧାନରେ ରହି ବିଦ୍ୟାଶିକ୍ଷା କରୁଥିଲେ ।

ତାଙ୍କ ଘରେ 'ଓଡ଼ିଶା ୟଙ୍ଗ୍-ମେନ୍ସ ଆସୋସିଏସନ୍' ବୈଠକ ବସୁଥିଲା । ମଧୁବାବୁ ଏହି ସଂଘ (Orissa Young-mens Association) ସ୍ଥାପନ କରିଥିଲେ । ଓଡ଼ିଶା ଯୁବକ ସଂଘର ଏକ ପାଠାଗାର ମଧ୍ୟ ଥିଲା । ପାଠାଗାରରେ ମଧୁବାବୁ ମଗାଉଥିବା ଦେଶବିଦେଶର ପତ୍ରପତ୍ରିକା ମଧ୍ୟ ରହୁଥିଲା । ସେ ନିୟମିତଭାବେ ଇଂଲଣ୍ଡର କେତୋଟି ଉଚ୍ଚକୋଟୀର ସାପ୍ତାହିକ ଓ ମାସିକ ପତ୍ରିକା ମଗାଉଥିଲେ । ଯୁବକସଂଘର ସଭ୍ୟମାନଙ୍କର ଓ ଅନ୍ୟାନ୍ୟ ପାଠକମାନଙ୍କର ଜ୍ଞାନବୃଦ୍ଧି, ଦୃଷ୍ଟିଭଙ୍ଗୀର ଶୋଭନ ପରିବର୍ତ୍ତନ ଉଦ୍ଦେଶ୍ୟରେ ମଧୁବାବୁ ଏହି ପତ୍ରିକାଗୁଡ଼ିକର ପଠନ ଉପରେ ଜୋର୍ ଦେଉଥିଲେ । ଏହାଦ୍ୱାରା ପାଠକମାନଙ୍କର ଦେଶବିଦେଶ ସମ୍ବନ୍ଧରେ ସମ୍ୟକ୍ ଧାରଣା ହେଉଥିଲା ଏବଂ ଦୃଷ୍ଟିଭଙ୍ଗୀର ସଂକୀର୍ଣ୍ଣତା ଦୂର ହେଉଥିଲା ।

ସେ 'ଆମେ' (ourselves) ଏହି ବିଷୟରେ ବକ୍ତୃତା ଦେଉଥିଲେ । ବିଚିତ୍ରାନନ୍ଦ ଦାସ, ଭୁବନାନନ୍ଦ ଦାସ, ଲକ୍ଷ୍ମୀଧର ମହାନ୍ତି, ପାରେଶ୍ବର ମହାନ୍ତି ଓ ଅଭିରାମ ଭଞ୍ଜ ପ୍ରଭୃତି ଏଥିରେ ଯୋଗଦେଇ ସଭ୍ୟ ହୋଇଥିଲେ ।

**ଦେଶମିଶ୍ରଣଭାବର ଉନ୍ମେଷ :** କଲିକତା କଲେଜରେ ଅଧ୍ୟୟନ କରୁଥିଲାବେଳେ ମଧୁବାବୁ ୟୁରୋପର ରାଜନୈତିକ ଅବସ୍ଥାକୁ ଭଲଭାବରେ ଅନୁଧ୍ୟାନ କରୁଥିଲେ । ଜର୍ମାନ୍ ଲୋକଙ୍କର 'ବୃହତ୍ତର ଜର୍ମାନୀ ଆନ୍ଦୋଳନ' ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ଖ୍ରୀ: ୧୮୭୧ରେ ସେ ଏମ୍. ଏ. ପଢ଼ୁଥିବାବେଳେ ଜର୍ମାନୀର ବିସ୍‌ମାର୍କ, ଇଟାଲୀର

ଗାରବାଲଡ଼ି ପ୍ରଭୃତିଙ୍କ ଦେଶାଭିମାନ ଓ ତ୍ୟାଗ କାହାଣୀ ସେ ଶ୍ରଦ୍ଧାର ସହିତ ଶୁଣୁଥିଲେ ଏବଂ ଓଡ଼ିଶାର ଦୁର୍ଦ୍ଦଶା କଥା ମନେପକାଇ ଚିନ୍ତିତ ହୋଇପଡ଼ୁଥିଲେ । ବୃହତ୍ତର ଓଡ଼ିଶା ଗଠନରେ ଏପରି ତ୍ୟାଗ ଓ ଆନ୍ଦୋଳନ ଆବଶ୍ୟକ ଥିବା ଅନୁଭବ କରୁଥିଲେ । ସେହି ସମୟରୁ ଓଡ଼ିଶା ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶଗଠନର ଭାବ ତାଙ୍କ ମନରେ ଉଦୟ ହୋଇଥିଲା । ଦେଶମିଶ୍ରଣ ଆନ୍ଦୋଳନର ବୀଜ ଏହି ସମୟରୁ ତାଙ୍କ ହୃଦୟରେ ରୋପିତ ହୋଇଥିଲା । କଟକ ଫେରିବା ପରେ ଏହି ବୀଜ ଅଙ୍କୁରିତ ହୋଇ ବିରାଟ ବୃକ୍ଷର ଆକାର ଧାରଣ କଲା । ମଧୁବାବୁ ଏକାଧିକ ସ୍ଥଳରେ ସଭାସମିତିରେ ଏହା ପ୍ରକାଶ କରୁଥିଲେ ।

**'ଉତ୍କଳ ସଭା' ବା Orissa Association ସ୍ଥାପନ :** ଖ୍ରୀ: ୧୮୮୨ରେ ସମ୍ବାଦପତ୍ରରେ ମଧୁବାବୁ, ଗୌରୀଶଙ୍କର ରାୟ, ଚୌଧୁରୀ କାଶୀନାଥ ଦାଶ ପ୍ରଭୃତି କେତେଜଣ ଓଡ଼ିଶାରେ ଏକ ଜାତୀୟ ଅନୁଷ୍ଠାନ ଗଠନ କରିବା ପାଇଁ ବିଜ୍ଞାପନ ପ୍ରକାଶ କଲେ । ଅଗଷ୍ଟ ୧୬ ତାରିଖରେ ଓଡ଼ିଶାରେ ସର୍ବପ୍ରଥମ ଧାରାବାହିକ ଆନ୍ଦୋଳନ ଚଳାଇବା ନିମନ୍ତେ 'ଉତ୍କଳ ସଭା' ସ୍ଥାପିତ ହୋଇଥିଲା । ଓଡ଼ିଶାର ସର୍ବବିଧ ହିତକର କାର୍ଯ୍ୟ ପାଇଁ ଯୋଜନା ପ୍ରଣୟନ କରିବା ଅନ୍ୟ ଏକ ଲକ୍ଷ୍ୟ ଥିଲା । ଧାରାବାହିକ ଭାବେ ଉତ୍କଳ ସଭାର ବୈଠକ ବହୁ ବର୍ଷ ଅନୁଷ୍ଠିତ ହୋଇଥିଲା । ପ୍ରଥମେ 'ଉତ୍କଳ ସଭା'ର ସଭାପତିରୂପେ ପୁରୀ ଜିଲ୍ଲାର ଭିଙ୍ଗାରପୁର ଜମିଦାର ଶ୍ରୀ କାଶୀନାଥ ଦାସ ସଭାପତି, ଉତ୍କଳ ଦୀପିକାର ସମ୍ପାଦକ ଶ୍ରୀ ଗୌରୀଶଙ୍କର ରାୟ ସମ୍ପାଦକ ନିର୍ବାଚିତ ହୋଇଥିଲେ । ଶ୍ରୀ ଗୌରୀଶଙ୍କର ରାୟ କ୍ରମାଗତ ପ୍ରାୟ ୨୫ ବର୍ଷ ପର୍ଯ୍ୟନ୍ତ ସମ୍ପାଦକ ଥିଲେ । ମଧୁବାବୁ ଉତ୍କଳସଭାର ଉପସଭାପତି ଥିଲେ ।

ଏହି 'ଉତ୍କଳ ସଭା' ମାଧ୍ୟମରେ ମଧୁସୂଦନ ତାଙ୍କର ସହକର୍ମୀମାନଙ୍କ ସାହାଯ୍ୟ ନେଇ ବହୁ ଦେଶହିତକର କାର୍ଯ୍ୟ କରିଛନ୍ତି । ଏହି ସଭାର ଆନୁକୂଲ୍ୟରେ ଦେଶର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ସଭାସମିତି ଅନୁଷ୍ଠିତ ହୋଇଛି, ବହୁ ପ୍ରସ୍ତାବ ଗୃହୀତ ହୋଇଛି, ଓଡ଼ିଶାର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ବହୁ ସ୍ମାରକପତ୍ର ରଚିତ ହୋଇ ସରକାରଙ୍କଠାରୁ ପଠା-ଯାଇଛି ।

ମଧୁବାବୁ କଲିକତାରୁ କଟକ ପ୍ରତ୍ୟାଗମନ କରି ଓକିଲାତି ଆରମ୍ଭ କରିବା ପରେ ତାଙ୍କର ବାଲ୍ୟ ଶିକ୍ଷାଗୁରୁ ଗୌରୀଶଙ୍କର ରାୟଙ୍କ ସହଯୋଗରେ ଏହି ସଭା ଆନୁକୂଲ୍ୟରେ ବହୁ କାର୍ଯ୍ୟ କରିପାରିଛନ୍ତି । 'ଉତ୍କଳ ସଭା'ର ଅଧିକାଂଶ ବୈଠକ 'ଉତ୍କଳ ଦୀପିକା' ଅଫିସ ଗୃହରେ ଅନୁଷ୍ଠିତ ହେଉଥିଲା । ବଙ୍ଗରୁ ଓଡ଼ିଶାକୁ ଫେରିଆସିବା ପରେ ଉତ୍କଳ ସଭା ସ୍ଥାପନ ମଧୁବାବୁଙ୍କର ସର୍ବ ପ୍ରଧାନ କାର୍ଯ୍ୟ ।

**ଗଡ଼ଜାତର ଖାତକ-ମହାଜନ ବିବାଦ (୧୮୮୩) :** ବହୁଦିନ ଆଗରୁ ଓଡ଼ିଶା ଗଡ଼ଜାତମାନଙ୍କରେ ଖାତକ ଓ ମହାଜନଙ୍କ ମଧ୍ୟରେ ମହାଜନଙ୍କ ଧନ ଅସୁଲ ସମ୍ବନ୍ଧରେ

ବିବାଦ ଉପସ୍ଥିତ ହୋଇଥିଲା । ମହାଜନମାନେ ଖାତକମାନଙ୍କ ଚାଷଜମି ଜୋରଖଟ କରି ନେଇଯାଉଥିବାରୁ ଚାଷୀମାନେ ବହୁତ ଅସୁବିଧା ଭୋଗୁଥିଲେ । କେତେକ ସର୍ବସ୍ୱାନ୍ତ ମଧ୍ୟ ହୋଇଯାଉଥିଲେ । ଖ୍ରୀ: ୧୮୮୩ ଜୁନ୍ ମାସରେ ଓଡ଼ିଶା ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ (ଓଡ଼ିଶାର କମିସନର)ଙ୍କ କୋର୍ଟରେ ମଧୁବାବୁ ଆଇନର ବ୍ୟାଖ୍ୟା କରି ଖାତକ ସପକ୍ଷରେ ଏକ ସମାଧାନ କରାଇନେଲେ । ଚାଷଜମି ଉପରେ ଆଞ୍ଚ ନ ଆସିବାଭଳି ସମାଧାନ ହେଲା । ଏହାଦ୍ୱାରା ଗଡ଼ଜାତର ଚାଷୀ ଓ ଖାତକକୁଳ ବହୁତ ଉପକାର ପାଇଲେ । ଏହାଦ୍ୱାରା ଚାଷର ଅଭିବୃଦ୍ଧି ହେଲା ଏବଂ ଧନୀଲୋକଙ୍କ ହାତକୁ ଯେଉଁ ବିସ୍ତର ଜମି ଚାଲିଯାଉଥିଲା ତାହା ବାଧାପ୍ରାପ୍ତ ହେଲା । ଚାଷୀ ଓ ଗରିବ ଲୋକେ ମଧୁବାବୁଙ୍କୁ ବହୁତ ଆଶୀର୍ବାଦ କଲେ ।

**ଜାତୀୟ କଂଗ୍ରେସରେ ମଧୁବାବୁ :** ଖ୍ରୀ: ୧୮୮୫ ଡିସେମ୍ବର ମାସ ଶେଷ ସପ୍ତାହରେ ନିଖିଳ ଭାରତ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେରେ ବସିଥିଲା । କଟକସ୍ଥ 'ଉତ୍କଳ ଦୀପିକା' ଅଫିସ (ବର୍ତ୍ତମାନର ଜେଲ୍ ସମ୍ମୁଖର ବିରାଟ ଦୋମହଲା କୋଠା)ରେ ଏକ ସାଧାରଣ ସଭା ବସିଥିଲା ଏବଂ ଏହି ସଭାରେ ମଧୁସୂଦନ ଦାସ ସଭାପତିତ୍ୱ କରିଥିଲେ । ବମ୍ବେ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବଗୁଡ଼ିକ ଏଠାରେ ଆଲୋଚିତ ହୋଇ ସମର୍ଥିତ ହୋଇଥିଲା । ଏଗୁଡ଼ିକୁ କିପରି କାର୍ଯ୍ୟକାରୀ କରାଯିବ ସେ ସମ୍ବନ୍ଧରେ ମଧ୍ୟ ଆଲୋଚନା ହୋଇଥିଲା ।

ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନ ଖ୍ରୀ: ୧୮୮୬ ଡିସେମ୍ବର ମାସରେ ବସିବା ସ୍ଥିର ହେବା ପରେ ଏହି ଅଧିବେଶନକୁ ଓଡ଼ିଶାରୁ ପ୍ରତିନିଧି ଯିବା ଆୟୋଜନ ହୋଇଥିଲା । କଟକରୁ ପ୍ରତିନିଧି ପଠାଇବା ପାଇଁ ପ୍ରଜାସଭା ବା ଓଡ଼ିଶା ଆସୋସିଏସନ୍ ଯତ୍ନବାନ୍ ହେଲେ । ଡିସେମ୍ବର ମାସ ୧୧ ତାରିଖରେ ଆସୋସିଏସନ୍‌ର ଉପସଭାପତି ମଧୁସୂଦନ ଦାସଙ୍କ ସଭାପତିତ୍ୱରେ ଏକ ବୈଠକ କଟକରେ ବସିଥିଲା ଏବଂ ଏଠାରେ ସଂଘ ତରଫରୁ ପ୍ରତିନିଧି ପଠାଇବା ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ପ୍ରତିନିଧି ନିର୍ବାଚନ ମଧ୍ୟ ହୋଇଥିଲା ଏବଂ ମଧୁବାବୁ ପ୍ରତିନିଧିଦଳର ଦଳପତି ନିର୍ବାଚିତ ହୋଇଥିଲେ ।

ଖ୍ରୀ: ୧୮୮୭ ଡିସେମ୍ବର ୧୮ ତାରିଖରେ ନିଖିଳ ଭାରତ ଜାତୀୟ କଂଗ୍ରେସର ତୃତୀୟ ଅଧିବେଶନ ମାନ୍ଦ୍ରାଜଠାରେ ବସିଥିଲା । ଏଥିରେ ମଧୁବାବୁ ଓଡ଼ିଶାର ଜଣେ ପ୍ରତିନିଧିରୂପେ ଯୋଗଦେଇଥିଲେ । ତାଙ୍କ ସହିତ ଉତ୍କଳ-ଦୀପିକାର ସମ୍ପାଦକ ଶ୍ରୀ ଗୌରୀଶଙ୍କର ରାୟ ମଧ୍ୟ ପ୍ରତିନିଧିରୂପେ ଯାଇଥିଲେ । ଉଭୟେ କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ଷ୍ଟିମର୍‌ରେ ଯାଇ, ଚାନ୍ଦବାଲିଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ଥୋମାସ୍ କୁକ୍ ଏଣ୍ଡ୍ ସନ୍ସ (Thomas Cook and Sons) ଙ୍କ ଜାହାଜରେ ଯାତ୍ରା କରିଥିଲେ । କଟକ ମହାନଦୀ ତୀରସ୍ଥ ଜୋବ୍ରାଘାଟଠାରେ ଉଭୟଙ୍କୁ ବିଦାବେଳେ କଟକବାସୀ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ ଥିଲେ ।

ମଧୁବାବୁ ଓ ଗୌରୀଶଙ୍କର କଂଗ୍ରେସ ଅଧିବେଶନରେ ଯୋଗଦେଇ କଟକ ଫେରିଲେ ଏବଂ ଏମାନଙ୍କୁ ସମ୍ବର୍ଦ୍ଧନା କରିବାପାଇଁ କଟକରେ ଖ୍ରୀ: ୧୮୮୮ ଜାନୁଆରୀ ୨୮ ତାରିଖରେ ଏକ ସଭା ହୋଇଥିଲା । ଏହି ସଭାରେ ମଧୁବାବୁ କଂଗ୍ରେସର ଆଦର୍ଶ ଓ କାର୍ଯ୍ୟ ସମ୍ବନ୍ଧରେ ଲୋକଙ୍କୁ ବୁଝାଇ ଏକ ଦୀର୍ଘ ବକ୍ତୃତା ଦେଇ କଂଗ୍ରେସ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବମାନଙ୍କର ତାତ୍ପର୍ଯ୍ୟ ଚମତ୍କାର ବୁଝାଇଥିଲେ । ସେ କହିଥିଲେ, "ସଂକୀର୍ଣ୍ଣ ଜାତିଭାବ ଓ ପ୍ରାଦେଶିକତାକୁ ପଛରେ ପକେଇଦେବାକୁ ହେବ । ସମଗ୍ର ଭାରତବର୍ଷକୁ ନିଜର ମାତୃଭୂମିରୂପେ ଗ୍ରହଣ କରି ମହାଭାରତୀୟ ଭାବରେ ଅନୁପ୍ରାଣିତ ହେବାକୁ ହେବ । ଜାତି ଜାତି ମଧ୍ୟରେ, ପ୍ରଦେଶ ପ୍ରଦେଶ ମଧ୍ୟରେ ଥିବା ଭେଦଭାବକୁ ଭୁଲିଯିବାକୁ ହେବ, ଏକତା ପ୍ରତିଷ୍ଠା କରିବାକୁ ହେବ । ଭାରତବାସୀ ସମସ୍ତେ ଏକ ଜାତି ବୋଲି ଭାବି କାର୍ଯ୍ୟ କରିବାକୁ ହେବ । ଓଡ଼ିଶା ମହାଭାରତର ଏକ ଅଙ୍ଗ । ସମଗ୍ର ଭାରତର ଉନ୍ନତି ନ ହେଲେ ଓଡ଼ିଶାର ଉନ୍ନତି ଅସମ୍ଭବ । ଭାରତର ସୁଖଦୁଃଖ ସଙ୍ଗେ ଜଡ଼ିତ ରହି, ସାମ୍ୟ ରକ୍ଷା କରି, ତାଳ ମିଶାଇ ଓଡ଼ିଶାକୁ ଅଗ୍ରସର ହେବାକୁ ହେବ । ଜାତୀୟତା ଭିତରେ ନୀଚ ସ୍ୱାର୍ଥପରତା, ସଂକୀର୍ଣ୍ଣତାର ସ୍ଥାନ ନାହିଁ । ପ୍ରାଦେଶିକ ଉନ୍ନତି ଭାରତୀୟ ଉନ୍ନତିର ପରିପନ୍ଥୀ ନୁହେଁ । ଓଡ଼ିଆ ଭାଷା ଓ ସଂସ୍କୃତି, ଶାସନ ପ୍ରଭୃତିର ଉନ୍ନତି ବିଧାନ ପାଇଁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ସମଗ୍ର ଭାରତବର୍ଷର ଉନ୍ନତି ପ୍ରତି ମଧ୍ୟ ଲକ୍ଷ୍ୟ ରଖିବାକୁ ହେବ ।"

ସଭାସମିତି ସାହାଯ୍ୟରେ କଂଗ୍ରେସର ନୀତି ଓ କାର୍ଯ୍ୟର ପ୍ରଚାର କରିବା ପ୍ରଣାଳୀ ମଧୁବାବୁ ଅନୁସରଣ କରିଥିବାରୁ ଲୋକେ ସନ୍ତୁଷ୍ଟ ହୋଇଥିଲେ ଏବଂ କଂଗ୍ରେସର ବାଣୀ ମଧ୍ୟ ଉତ୍କଳରେ ପ୍ରଚାରିତ ହୋଇପାରିଥିଲା । ସାପ୍ତାହିକ 'ଉତ୍କଳ ଦୀପିକା' ମଧୁବାବୁଙ୍କର ଏହି ବକ୍ତୃତାକୁ ପ୍ରଶଂସା କରି ଏକ ସମ୍ପାଦକୀୟ ପ୍ରକାଶ କରି ଲୋକଙ୍କୁ ମଧୁବାବୁଙ୍କ ଉପଦେଶ ଗ୍ରହଣ କରିବା ପାଇଁ ନିବେଦନ କରିଥିଲେ । ଓଡ଼ିଶା ଆସୋସିଏସନ୍ ପକ୍ଷରୁ କଂଗ୍ରେସର ଚତୁର୍ଥ ଅଧିବେଶନ ନିମନ୍ତେ ମଧୁବାବୁ ପ୍ରତିନିଧି ନିର୍ବାଚିତ ହୋଇଥିଲେ । ଏହି ଅଧିବେଶନ ଖ୍ରୀ: ୧୮୮୮ ଡିସେମ୍ବର ମାସରେ ଆଲହାବାଦରେ ବସିଥିଲା ।

## ୮ । ବିବିଧ କାର୍ଯ୍ୟାବଳୀ (୧୮୮୧-୧୮୮୯)

କଲିକତାରେ ଥିଲାବେଳେ ମଧୁବାବୁ ଓକିଲାତି କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ରାଜନୈତିକ ଓ ସାମାଜିକ କାର୍ଯ୍ୟକ୍ରମରେ ଯୋଗଦେଉଥିଲେ । ସେ ଇଂରାଜୀ ଭାଷାରେ ଜଣେ ଭଲ ବକ୍ତା ହିସାବରେ ଖ୍ୟାତି ଲାଭ କରିଥିଲେ । ପୁଣି ସେ ଭଲ ଆଳାପୀ ମଧ୍ୟ ଥିଲେ । ପ୍ରଗାଢ଼ ଦେଶାତ୍ମବୋଧ, ଜନସେବା ମନୋଭାବ, ତୀକ୍ଷ୍ଣ ବୁଦ୍ଧି ଓ ସରସ ଆଳାପ

ଯୋଗୁଁ ସେ କଲିକତାର ବହୁ ବିଶିଷ୍ଟ ନେତା ଓ ଆଇନଜ୍ଞମାନଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିପାରିଥିଲେ ।

ମଧୁବାବୁ କଲିକତାରେ ପହଞ୍ଚି ଅର୍ଥ ଅନଟନ ଯୋଗୁଁ କିଛି ସମୟ ଅସୁବିଧା ଭୋଗ କରିଥିଲେ । ଏହି ସମୟରେ ସେ ଖ୍ରୀଷ୍ଟିଆନ୍ ପାଦ୍ରିମାନଙ୍କର ସ୍ନେହ ଓ ସହାନୁଭୂତି ପାଇ ନ ଥିଲେ ତାଙ୍କର ଦୁଃଖ ବୃଦ୍ଧି ପାଇବାର ସମ୍ଭାବନା ଥିଲା । ବହୁ ଦୁଃଖ ଭିତରେ ସେ ନିଜେ ନିଜ ଗୋଡ଼ରେ ଠିଆହେବା ପାଇଁ ପ୍ରଗାଢ଼ ପରିଶ୍ରମ କରିଥିଲେ । ଗୃହଶିକ୍ଷକ ହେବାଠାରୁ ଆରମ୍ଭ କରି ହାଇକୋର୍ଟରେ ଠିକା ଅନୁବାଦକ ହୋଇ କାର୍ଯ୍ୟ କରିବା ପର୍ଯ୍ୟନ୍ତ ସେ ବହୁ ଧନ୍ଦା କରିଛନ୍ତି । ଶିକ୍ଷକ ହିସାବରେ ତାଙ୍କର ସୁନାମ ହୋଇଯିବାରୁ ଛାତ୍ରମାନଙ୍କ ପାଇଁ ଇଂରେଜୀରେ ପାଠ୍ୟପୁସ୍ତକର ଅର୍ଥ (ମାନେ) ପୁସ୍ତକ ମଧ୍ୟ ରଚନା କରିଥିଲେ । ବହୁ ଛାତ୍ର ଏହି ମାନେ ବହିକୁ ଆଦର କରୁଥିଲେ । ଉତ୍ତମ ଇଂରେଜୀ ଭାଷାରେ ଲିଖିତ ହୋଇ-ଥିବାରୁ ବିଶିଷ୍ଟ ଇଂରେଜୀ ଶିକ୍ଷକମାନେ ମଧ୍ୟ ଏହାକୁ ପସନ୍ଦ କରିଥିଲେ । ଏହାଦ୍ୱାରା ତାଙ୍କର କିଛି ଅର୍ଥାଗମ ମଧ୍ୟ ହୋଇଥିଲା ।

କଲିକତାରେ ଥିଲାବେଳେ ସେ ବିଖ୍ୟାତ 'ଇଣ୍ଡିଆନ୍ ଆସୋସିଏସନ୍' ସହିତ ସମ୍ପର୍କ ରଖିଥିଲେ । ଏଠାରେ ସାର୍ ସୁରେନ୍ଦ୍ରନାଥ ବାନାର୍ଜୀ, ଆନନ୍ଦମୋହନ ବସୁ, ଶିଶିର କୁମାର ଘୋଷ ପ୍ରଭୃତି ବଙ୍ଗ ନେତାମାନଙ୍କ ସହିତ ବନ୍ଧୁତ୍ୱ ଓ ସମ୍ପର୍କ ସ୍ଥାପନ କରିପାରି-ଥିଲେ । ତାଙ୍କର ରାଜନୈତିକ ଚେତନା ଏହି ସମୟରୁ ଜାଗ୍ରତ ହୋଇଥିଲା ।

କଲିକତା ହାଇକୋର୍ଟ ଓ ଆଲିପୁର କୋର୍ଟରେ ଓକିଲାତି କରିବା ବେଳେ ସେ ବହୁ ବିଶିଷ୍ଟ ଦେଶୀୟ ଓ ଇଂରେଜ ଆଇନଜ୍ଞଙ୍କ ସଂସ୍ପର୍ଶରେ ଆସିଥିଲେ । ଏମାନେ ତାଙ୍କର ତୀକ୍ଷ୍ଣବୁଦ୍ଧି, ଜବାବସୁଆଲରେ ଚମତ୍କାର କୌଶଳ, ଗଭୀର ଆଇନଜ୍ଞାନ, ନିର୍ଭୀକତା ଦେଖି ତାଙ୍କୁ ପ୍ରଶଂସା, ଆଦର ଓ ସମ୍ମାନ କରୁଥିଲେ ଏବଂ ଏ କ୍ଷେତ୍ରରେ ଭବିଷ୍ୟତରେ ସେ ଯେ ଜଣେ ଖ୍ୟାତିସମ୍ପନ୍ନ ବ୍ୟକ୍ତି ହେବେ, ଏହି ଆଶା ସେମାନେ ପୋଷଣ କରିଥିଲେ ।

କଟକ ଆସିବା ପରେ ମଧୁବାବୁ କଲିକତାରେ ଅର୍ଜନ କରିଥିବା ବିଭିନ୍ନ ଅଭିଜ୍ଞତାକୁ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ବ୍ୟବହାର କରିବାକୁ ଲାଗିଲେ । ଅଳ୍ପକାଳ ମଧ୍ୟରେ ସେ କଟକ ତଥା ସମଗ୍ର ପ୍ରାକୃତିକ ଉତ୍କଳର ଜନସେବା, ରାଜନୀତି, ସଂସ୍କୃତି ପ୍ରଭୃତି କ୍ଷେତ୍ରରେ ଅଗ୍ରଗଣ୍ୟ ହୋଇଗଲେ । ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର କଥା ନାହିଁ । ସ୍ୱାଭାବିକ ଭାବରେ ହିଁ ଏହା ସଂଘଟିତ ହୋଇଛି । ତାଙ୍କର କାର୍ଯ୍ୟକଳାପ ତାଙ୍କୁ ସେହି ଉଚ୍ଚ ଆସନର ଅଧିକାରୀ କରିଛି । ବହୁ ବର୍ଷ ପର୍ଯ୍ୟନ୍ତ ତାଙ୍କର କଟକ ବିହାରୀବାଗସ୍ଥ ବସାଘର ଓ କାଳୀମନ୍ଦିର ନିକଟସ୍ଥ ନିଜ ଘର ଓଡ଼ିଶାର ଯାବତୀୟ ଜାତୀୟ କାର୍ଯ୍ୟର କେନ୍ଦ୍ରସ୍ଥଳ ହୋଇପଡ଼ିଥିଲା ।

୧୮୮୧ —ସେପ୍ଟେମ୍ବର ୨୪ ତାରିଖରେ କଟକରେ ଭାରତୀୟ ଲିପି ଏକୀକରଣ ସମ୍ବନ୍ଧରେ ବକ୍ତୃତା ପ୍ରଦାନ କରିଥିଲେ ।

୧୮୮୨—ବଡ଼ଲାଟ୍ ଲର୍ଡ ରିପନ୍‌ଙ୍କ ସ୍ୱାୟତ୍ତଶାସନ ପ୍ରସ୍ତାବକୁ ସମର୍ଥନ କରି ୩୦।୬।୧୮୮୨ ଦିନ କଟକର ଏକ ସାଧାରଣ ସଭାରେ ବକ୍ତୃତା ଦେଇ ନିର୍ବାଚନ ପ୍ରଣାଳୀର ଦାବୀ କରିଥିଲେ । ସେହି ବର୍ଷ ଜାତୀୟ ଆନ୍ଦୋଳନ ନିମନ୍ତେ ଅନୁଷ୍ଠାନ ଗଠନର ସୂତ୍ରପାତ ମଧ୍ୟ କଲେ । "ଉତ୍କଳ ସଭା" ଗଠିତ ହେଲା । ୧୦।୬।୧୮୮୨ରେ ରେଭେନ୍‌ସା କଲେଜରେ ଡାରଉ୍‌ଇନ୍ ଥିଓରି (Darwin Theory) ଓ ମାନବର ସୃଷ୍ଟି ସମ୍ବନ୍ଧରେ ବକ୍ତୃତା ପ୍ରଦାନ କରିଥିଲେ ।

୧୮୮୩—ବଙ୍ଗ ନେତା ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ଅଦାଲତ ଅବମାନନା ଦୋଷରେ ଦଣ୍ଡିତ ହେବାରୁ କଟକରେ ଅନୁଷ୍ଠିତ ପ୍ରତିବାଦ ସଭାରେ ସଭାପତିତ୍ୱ କରିଥିଲେ । ଏହି ବର୍ଷ ସେ ରେଭେନ୍‌ସା କଲେଜରେ ଠିକାରେ ଆଇନ ଅଧ୍ୟାପକ ନିଯୁକ୍ତ ହେଲେ ।

୧୮୮୪—ଓଡ଼ିଶାରେ କେନାଲ୍ ଓ କୃଷି ପ୍ରସାର ସମ୍ପର୍କରେ ଅନୁଷ୍ଠିତ ସଭାରେ ବକ୍ତୃତା ଦେଇଥିଲେ ।

୧୮୮୫—କୃଷି ଓ ଆନୁଷଙ୍ଗିକ ଶିଳ୍ପର ବିକାଶ ଦିଗରେ ଉଦ୍ୟମ କରିବା ପାଇଁ ସରକାରଙ୍କୁ ପରାମର୍ଶ ଦେଇଥିଲେ । ଏ ସମ୍ପର୍କରେ ଏକ ପ୍ରତିନିଧି ସଭାର ନେତୃତ୍ୱ ନେଇ ଗ୍ଲେଟଲାଟ୍ ସାର୍ ରିଚାର୍ଡ୍ସ ଥମ୍‌ସନ୍ (Sir Richards Thomson)ଙ୍କୁ କଟକରେ ଭେଟି କେତେକ ପ୍ରସ୍ତାବ ପ୍ରଦାନ କରିଥିଲେ ।

ଗ୍ଲେଟଲାଟଙ୍କ ପ୍ରଦତ୍ତ ମାନପତ୍ରରେ ନିମ୍ନଲିଖିତ ଅଭାବ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା :

(୧) ରେଳବାଇର ପ୍ରସାର, (୨) ଶିଳ୍ପଶିକ୍ଷାର ପ୍ରସାର, (୩) ମେଡ଼ିକାଲ୍ ଓ ନର୍ସିଂ (ଧାତ୍ରୀବିଦ୍ୟା) ପ୍ରବର୍ତ୍ତନ, (୪) ଉଚ୍ଚତର ସରକାରୀ କାର୍ଯ୍ୟରେ ଓଡ଼ିଆଙ୍କ ନିଯୁକ୍ତି, (୫) କୃଷିର ଉନ୍ନତି ପାଇଁ ସରକାରୀ ସାହାଯ୍ୟ ଓ ଉପଯୁକ୍ତ ଯୋଜନା, (୬) ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ ସମ୍ବଲପୁର ଜିଲ୍ଲା ଓ ଗଡ଼ଜାତମାନ, ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅନ୍ତର୍ଭୁକ୍ତ ଗଞ୍ଜାମ ଜିଲ୍ଲା ଓ ବିଶାଖାପାଟଣା ଜିଲ୍ଲାର ଜୟପୁର ଜମିଦାରୀ, ବଙ୍ଗ ପ୍ରଦେଶ ଅନ୍ତର୍ଭୁକ୍ତ ଓଡ଼ିଶା ବିଭାଗ ସଙ୍ଗେ ମିଶ୍ରଣ ଓ ଗଡ଼ଜାତ-ମାନଙ୍କୁ ସଙ୍ଗରେ ନେଇ ବୃହତ୍ତର ଓଡ଼ିଶାର ଶାସନ ଓ ଶିକ୍ଷାର ବ୍ୟବସ୍ଥା ।

ଏହା ଉତ୍କଳ ସମ୍ମିଳନୀ ସ୍ଥାପନର ଅଠର ବର୍ଷ ଆଗରୁ ଦେଶମିଶ୍ରଣ ପାଇଁ ସର୍ବପ୍ରଥମ ଆନ୍ଦୋଳନ ।

୧୮୮୫—ବମ୍ବେଠାରେ ଡିସେମ୍ବର ମାସରେ ଭାରତୀୟ ଜାତୀୟ ମହାସଭା (କଂଗ୍ରେସ)ର ପ୍ରଥମ ଅଧିବେଶନ ବସିଥିଲା । ସେହି ସପ୍ତାହରେ କଲିକତାରେ ସୁରେନ୍ଦ୍ରନାଥ ବାନାର୍ଜୀ ଇଣ୍ଡିଆନ୍ ଆସୋସିଏସନ୍ ଆନୁକୂଲ୍ୟରେ ଏକ ଜାତୀୟ ସମ୍ମିଳନୀ

କଲିକତାରେ ବସାଇଥିଲେ । ମଧୁବାବୁ ଉତ୍କଳ ସଭାର ପ୍ରତିନିଧି ସ୍ୱରୂପ କଲିକତାର ଜାତୀୟ ଧର୍ମ୍ମ ଲିଗରେ ଯୋଗଦେଇଥିଲେ ।

୧୮୮୬—(କ) ବମ୍ବେରେ ବସିଥିବା ପ୍ରଥମ କଂଗ୍ରେସର ଅଧିବେଶନରେ ଗୃହୀତ ପ୍ରସ୍ତାବ-ଗୁଡ଼ିକ ଜନସାଧାରଣଙ୍କ ଆଗରେ ଉପସ୍ଥାପିତ କରି ସେଗୁଡ଼ିକର ଗୁରୁତ୍ୱ ବୁଝାଇବା ଉଦ୍ଦେଶ୍ୟରେ କଟକରେ ଏକ ସାଧାରଣ ସଭା ପ୍ରିଣ୍ଟିଂ କମ୍ପାନୀ ଗୃହରେ ବସିଥିଲା । ମଧୁବାବୁ ସଭାପତି ହୋଇଥିଲେ । ଏଠାରେ ଭାରତୀୟ ଜାତୀୟ ପ୍ରଗତିର ଚର୍ଚ୍ଚା ହୋଇଥିଲା ।

(ଖ) ସେହି ବର୍ଷ କଲିକତାରେ ଦାଦାଭାଇ ନୌରୋଜୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନ (୨ୟ) ରେ ମଧୁବାବୁ ଯୋଗଦେଇ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

(ଗ) ପୁରୀ ମନ୍ଦିର ମକଦ୍ଦମାରେ ମଧୁବାବୁ ରାଜାଙ୍କ ତରଫରୁ ଓକିଲ ନିଯୁକ୍ତ ହୋଇଥିଲେ ।

(ଘ) ବଡ଼ଲାଟ ଲର୍ଡ଼ ଡଫ୍‌ରିନ୍‌ଙ୍କ ସ୍ତ୍ରୀଙ୍କ ବିୟୋଗ ହେବାରୁ ତାଙ୍କର ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ 'ଲେଡ଼ି ଡଫରିନ୍ ଫଣ୍ଡ' ଗଠିତ ହେଲା । ଏହି ଅର୍ଥରେ ସ୍ତ୍ରୀଲୋକମାନଙ୍କର ଚିକିତ୍ସା ପାଇଁ ଯେଉଁ ଅନୁଷ୍ଠାନ ଗଠିତ ହେଲା ସେଥିରେ ମଧୁବାବୁ ନେତୃତ୍ୱ ନେଇଥିଲେ ।

**ବ୍ୟବସ୍ଥାପକ ସଭାର ସଂସ୍କାର ଦାବୀ (୧୮୮୬)**—ଖ୍ରୀ: ୧୮୮୬ ଡିସେମ୍ବର ୧୯ ତାରିଖ ଦିନ କଟକରେ 'ଉତ୍କଳ ସଭା'ର ଏକ ଅଧିବେଶନ ହୋଇଥିଲା । ମଧୁବାବୁ ଏହି ସଭାର ସମ୍ପାଦକ ଥିଲେ । ବାବୁ ଯୋଗେଶ୍ୱର ଚନ୍ଦ୍ର ଏହି ପ୍ରସ୍ତାବ ଆଗତ କରିଥିଲେ ଯେ ବ୍ୟବସ୍ଥାପକ ସଭାରେ କେବଳ ଇଂରେଜମାନଙ୍କର ଆଧିପତ୍ୟ ରହିଥିଲା । ସେମାନେ ଦେଶୀୟ ଲୋକଙ୍କ ଭାବ ଓ ପ୍ରୟୋଜନ ସମ୍ବନ୍ଧରେ ସମ୍ୟକ୍‌ରୂପେ ଧାରଣା କରିପାରୁ ନଥିଲେ । ଅନେକ ସ୍ଥଳରେ ସହାନୁଭୂତିର ଅଭାବ ମଧ୍ୟ ଦେଖାଯାଉଥିଲା । ଅବଶ୍ୟ କୌଣସି କୌଣସି ଦେଶୀୟ ଲୋକଙ୍କୁ ପ୍ରତିନିଧିରୂପେ ବେଳେ ବେଳେ ନିଆଯାଉଥିଲା, କିନ୍ତୁ ସେମାନେ ଏପରି ଲୋକ ନୁହନ୍ତି ଯାହାଙ୍କୁ କି ଲୋକପ୍ରତିନିଧି ବୋଲିହିବ ଏବଂ ଅଧିକାଂଶ ସ୍ଥଳେ ଯେଉଁମାନେ ଶାସନକର୍ତ୍ତାଙ୍କ ମନରଖା କଥା କହୁଥିଲେ ସେହିମାନେ ହିଁ ମନୋନୀତ ହେଉଥିଲେ । ଏଥିର ଫଳ ଏହା ହୋଇଥିଲା ଯେ ଶାସନକର୍ତ୍ତାମାନେ ଇଚ୍ଛାନୁରୂପେ କାର୍ଯ୍ୟ କରିପାରୁଥିଲେ ଏବଂ ଦେଶୀୟ ଲୋକ ଆପଣା କଥା ଜଣାଇ ପାରୁ ନଥିଲେ । ଏହି ହେତୁ କରଭାର ଦିନକୁ ଦିନ ବୃଦ୍ଧି ପାଉଥିଲା । ଟଙ୍କା ଏଣେତେଣେ ବାହାରିଯାଉଥିଲା; ଅଥଚ ଲୋକଙ୍କର କିଛି ଉନ୍ନତି ହେଉ ନଥିଲା । "ଭାରତବର୍ଷ ଓ ଇଂଲଣ୍ଡ ଉଭୟ ଦେଶର ମଙ୍ଗଳ ନିମନ୍ତେ ଅତ୍ୟନ୍ତ ଆବଶ୍ୟକ ହେଉଅଛି ଯେ, ଏ ଦେଶର

ବ୍ୟବସ୍ଥାପକ ସଭାମାନଙ୍କରେ ଦେଶୀୟ ପ୍ରତିନିଧିମାନଙ୍କୁ ପ୍ରବେଶାଧିକାର ଦେବା ନିମିତ୍ତ କୌଣସି ନିୟମ ଗଭର୍ଣ୍ଣମେଣ୍ଟ କରନ୍ତୁ ।"

ମଧୁସୂଦନ ଦାସ ପ୍ରକୃତ ଅବସ୍ଥାର ଏକ ଚିତ୍ର ପ୍ରଦାନ କରି ଏପରି ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରିବା ପାଇଁ ସଭା ଆହ୍ୱାନ ହୋଇଥିବା ବେଳେ ଅଳ୍ପ ସଂଖ୍ୟକ ଲୋକଙ୍କ ଉପସ୍ଥିତି ଯୋଗୁଁ ଦୁଃଖ ପ୍ରକାଶ କରିଥିଲେ । "ଯେଉଁମାନେ ଦେଶର ଶାସନ ପ୍ରଣାଳୀ ଏବଂ ଆପଣାର ଅବସ୍ଥା କଥା ଚିନ୍ତା କରନ୍ତି, ସେମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯେ କି ପ୍ରସ୍ତାବକୁ ସମର୍ଥନ କରିବ ନାହିଁ । ମାତ୍ର ଦୁଃଖର ବିଷୟ ଯେ, ଏ ପ୍ରଦେଶରେ ଏସବୁ ଚିନ୍ତା କରିବା ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ଊଣା । ଯେଉଁମାନେ ପେଟର ଚିନ୍ତାରେ ଦିବାରାତ୍ର ବ୍ୟସ୍ତ ସେମାନଙ୍କଠାରୁ ଏ ପ୍ରକାର ଗୁରୁତର ବିଷୟର ଭାବନା ଆଶା କରିବା ଅସଙ୍ଗତ । ମାତ୍ର ଯେଉଁମାନଙ୍କୁ ପରମେଶ୍ୱର ସଙ୍ଗତିସମ୍ପନ୍ନ ଅବସ୍ଥାରେ ରଖିଅଛନ୍ତି ଏବଂ ସେମାନଙ୍କୁ ପେଟର ଚିନ୍ତା ଆଦୌ ବାଧୁନାହିଁ ଅଥବା ଅଳ୍ପ ସମୟ ସେହି ଚିନ୍ତାରେ ବ୍ୟୟ କରିବାକୁ ହୁଏ, ସେମାନଙ୍କର ଏହି ଗୁରୁତର ଚିନ୍ତାରେ ମଗ୍ନ ହେବା ଏବଂ ତହିଁର ବ୍ୟବସ୍ଥା କରିବା ନିତାନ୍ତ କର୍ତ୍ତବ୍ୟ । ଏଠାର ସମ୍ଭ୍ରାନ୍ତ ଓ ଧନାଢ୍ୟ ଲୋକମାନେ ଏ ବିଷୟରେ ଅଧିକତର ମନୋଯୋଗୀ ନ ହେଲେ କିପରି ଆମ୍ଭମାନଙ୍କର ଦୂରବସ୍ଥାର ପ୍ରତିକାର ହେବ ?"

ଉପଯୁକ୍ତ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ସଂଖ୍ୟାର ନ୍ୟୂନତା ଓ ଚିନ୍ତାଶୀଳ ବ୍ୟକ୍ତିଙ୍କ ଭିତରେ ସର୍ବସାଧାରଣଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ସ୍ୱାର୍ଥତ୍ୟାଗ ମନୋଭାବର ଅଭାବ ମଧୁବାବୁଙ୍କୁ ବ୍ୟଥିତ କରିଥିଲା । ଏହି 'ନିରାଶା'କୁ ଦୂର କରି 'ଆଶା'ର ବାଣୀ ସଞ୍ଚାର କରିବା ପାଇଁ ମଧୁବାବୁ ଦୃଢ଼ସଂକଳ୍ପ କରିଥିଲେ । ସେ ବହୁଳାଂଶରେ ସଫଳକାମ ହୋଇଥିଲେ ।

**ପୁରୀମନ୍ଦିର ମକଦ୍ଦମା (ଖ୍ରୀ: ୧୮୮୭) :** ପୁରୀର ପ୍ରସିଦ୍ଧ ଶ୍ରୀଜଗନ୍ନାଥ ମନ୍ଦିରରେ ପୁରୀ ରାଜାଙ୍କ ପାରଂପରିକ ଅଧିକାର ସମ୍ବନ୍ଧରେ ସରକାର ଓ ରାଜାଙ୍କ ଭିତରେ ମତଭେଦ ଘଟିବାରୁ କଲିକତା ହାଇକୋର୍ଟରେ ସରକାର ମକଦ୍ଦମା ଦାଏର କରିଥିଲେ । ଖ୍ରୀ: ୧୮୮୭ ଅପ୍ରେଲ ମାସରେ ଅଧିକାର ସମ୍ପର୍କୀୟ ମକଦ୍ଦମାର ବିଚାର ହୋଇଥିଲା । ରାଜାଙ୍କ ତରଫରେ ମୂଳରୁ ମଧୁବାବୁ ଓକିଲ ଥିଲେ । ସେ ଅର୍ଜି ଚିଠା ମଧ୍ୟ କରିଥିଲେ । କଲିକତାର ବିଖ୍ୟାତ ବାରିଷ୍ଟର ଜେ: ଟି: ଉଡ୍‌ରୋଫ୍ (J. T. Woodroffe) ଓ ମିଷ୍ଟର ସେଣ୍ଡେଲ (Mr. Sandell)ଙ୍କ ସହ ମଧୁସୂଦନ ରାଜାଙ୍କ ସପକ୍ଷରେ ଲଢ଼ିଥିଲେ । ଚିଠାଟି ଅତି ଉଚ୍ଚଧରଣର ହୋଇଥିବା ସମସ୍ତେ ସ୍ୱୀକାର କରିଥିଲେ । ଉଡ୍‌ରୋଫ୍ ଏହାର ବିଶେଷ ପ୍ରଶଂସା କରିଥିଲେ । ସରକାର ରାଜମାତାଙ୍କ ସହିତ ଏକ ଆପୋଷ କଲେ । ଫଳରେ ଏକ ଚୁକ୍ତିବଳରେ ରାଜାଙ୍କର କେତେକ ଅଧିକାର ସ୍ୱୀକୃତ ହେଲା ସିନା, ରାଜାଙ୍କୁ ସର୍ବାଧିକାରୀରୂପେ ସରକାର ସ୍ୱୀକାର କଲେ ନାହିଁ ।

ଆଂଶିକ ହେଲେ ମଧ୍ୟ ରାଜାଙ୍କ ଅଧିକାର ସ୍ୱୀକୃତ ହେବାରୁ ଓଡ଼ିଶାର ଧର୍ମପ୍ରାଣ ହିନ୍ଦୁଙ୍କ ଭିତରେ ଆନନ୍ଦ ଖେଳିଗଲା । ମଧୁବାବୁଙ୍କ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ଏହା ସମ୍ଭବ ହୋଇଥିବାରୁ ଲୋକେ ମଧୁବାବୁଙ୍କୁ ବହୁତ ପ୍ରଶଂସା କଲେ; ଫଳରେ ମଧୁବାବୁଙ୍କ ଖ୍ୟାତି ଉତ୍କଳରେ ବୃଦ୍ଧି ପାଇଲା । ଦେଶସେବୀ ଓ ଜଣେ ଉଚ୍ଚକୋଟୀର ଆଇନଜ୍ଞରୂପେ ମଧୁବାବୁ ଓଡ଼ିଶାରେ ଆଦର ଲାଭ କଲେ । ଏହା ଫଳରେ ଓଡ଼ିଶାର ବହୁ ଗଡ଼ଜାତ ରାଜା ଓ ଜମିଦାର ମଧୁବାବୁଙ୍କୁ ସେମାନଙ୍କର ଆଇନ ପରାମର୍ଶଦାତାରୂପେ ନିଯୁକ୍ତ କରିଥିଲେ । ଏହି ମକଦ୍ଦମାର ମଧୁବାବୁଙ୍କ ଆଇନ ବ୍ୟବସାୟର ପ୍ରସାର ଘଟିଲା । ସେ ବାରିଷ୍ଟର ନଥିଲେ ମଧ୍ୟ ବାରିଷ୍ଟର ପରି ଲଢ଼ିଥିବାରୁ ଲୋକେ ତାଙ୍କୁ 'ବାରିଷ୍ଟର' ବୋଲି କହୁଥିଲେ ।

ଏ ମକଦ୍ଦମାରେ ପୁରୀର ରାଜାମାତା ବହୁ ଅର୍ଥ ବ୍ୟୟ କରିଥିଲେ । ବହୁ ବହୁମୂଲ୍ୟର ହୀରା ମାଳା ବିକ୍ରି କରି ସେ ଏ ମକଦ୍ଦମା ଚଳାଇଥିଲେ । ଏହି ମକଦ୍ଦମାରେ ଅବଶେଷ ସ୍ୱରୂପ ରାଜାମାତାଙ୍କ ବିରୁଦ୍ଧରେ ମଧୁବାବୁ ବକେୟା ଓକିଲ ଫିସ୍ ଆଦାୟ ନିମନ୍ତେ ମକଦ୍ଦମା କରିଥିଲେ । ଡିଗ୍ରୀଜାରି ମଧ୍ୟ କରାଯାଇଥିବା ଜଣାଯାଏ ।

ଏହି ମକଦ୍ଦମା ଉତ୍କଳରେ ତଥା ବାହାରେ ଚହଳ ପକାଇଦେଇଥିଲା । ଦେଶୀ ଓ ବିଦେଶୀ ଖବର ପତ୍ରିକାମାନଙ୍କରେ ଏହାର ଚର୍ଚ୍ଚା ହୋଇଥିଲା । 'ହିନ୍ଦୁଧର୍ମ ଉପରେ ଖ୍ରୀଷ୍ଟିୟାନ୍ ସରକାରଙ୍କ ହସ୍ତକ୍ଷେପ' ଥିଲା ବୋଲି ମଧ୍ୟ କେହି କେହି କଟୁ ସମାଲୋଚନା କରିଥିଲେ । ଓଡ଼ିଶାବାସୀଙ୍କ ଚକ୍ଷୁରେ ପୁରୀ ରାଜା 'ଠାକୁରରାଜା' ଥିବା ଦର୍ଶାଇ ମଧୁବାବୁ ନେତୃତ୍ୱ ନେଇ ଆନ୍ଦୋଳନ କଲେ ଓ ଏହା ଓଡ଼ିଆଜାତି ଓ ହିନ୍ଦୁଙ୍କ ପ୍ରତି ଅପମାନ ଥିବା ଦର୍ଶାଇଥିଲେ । ଆନ୍ଦୋଳନର କେନ୍ଦ୍ର ଥିଲେ ମଧୁବାବୁ । ସେ ମଧ୍ୟ ରାଜାଙ୍କ ଓକିଲ ଥାଇ ମକଦ୍ଦମା ତଦ୍‌ବିର କରୁଥିଲେ । ଏଥି ନିମନ୍ତେ ସେ ପୁରୀରାଜାଙ୍କଠାରୁ ଲକ୍ଷାଧିକ ଟଙ୍କା ଫିସ୍ ପାଇଥିଲେ । କେହି କେହି ମଧୁବାବୁ ଫିସ୍ ନେବା ବ୍ୟାପାରକୁ ପସନ୍ଦ କରି ନଥିଲେ । ଦେଶର ମର୍ଯ୍ୟାଦା, ଜାତିର ମର୍ଯ୍ୟାଦା, ଧର୍ମର ମର୍ଯ୍ୟାଦା ରକ୍ଷା ପାଇଁ ଆନ୍ଦୋଳନ କରୁଥିବାବେଳେ ବହୁଲୋକଙ୍କର ଧାରଣା ହୋଇଥିଲା ଯେ ମଧୁବାବୁ ସ୍ୱତଃପ୍ରବୃତ୍ତ ହୋଇ ବିନା ପଇସାରେ ଏହି କାର୍ଯ୍ୟରେ ହାତ ଦେଇଛନ୍ତି । ମକଦ୍ଦମା ପରେ ତାଙ୍କର ଫିସର ପରିମାଣ ଦେଖି ଲୋକେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

ଏହି ପ୍ରସ୍ତାବିତ ମକଦ୍ଦମା ସମ୍ବନ୍ଧରେ 'ଉତ୍କଳ ସଭା'ର ବିରୁଦ୍ଧ ମତ ଏକ ସାଧାରଣ ସଭାରେ ପ୍ରକାଶ ପାଇଥିଲା । ପୁରୁଷୋତ୍ତମ କ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ମନ୍ଦିରର କାର୍ଯ୍ୟନିର୍ବାହ ସମ୍ପର୍କରେ ସନ ୧୮୮୭ ସାଲ ଡିସେମ୍ବର ମାସ ୪ ତାରିଖରେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ ଦ୍ୱିତଳ ଗୃହରେ ଉତ୍କଳ ସଭାର ଯେଉଁ ଅଧିବେଶନ ହୋଇଥିଲା, ତହିଁରେ ନିମ୍ନଲିଖିତ ନିର୍ଦ୍ଧାରଣମାନ ଧାର୍ଯ୍ୟ ହେଲା; ଯଥା—

୧ମ ନିର୍ଦ୍ଧାରଣ—ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ମନ୍ଦିରର କାର୍ଯ୍ୟନିର୍ବାହ ସମ୍ପର୍କରେ ଉତ୍ତମ ବନ୍ଦୋବସ୍ତ କରିବା କାରଣ ଦେବାନି କାର୍ଯ୍ୟବିଧିର ୫୩୯ ଧାରା

ଅନୁସାରେ ଗଭର୍ଣ୍ଣମେଣ୍ଟ ମୋକଦ୍ଦମା ଦାୟର କରିବାକୁ ମନସ୍ଥ କରିବାର 'ଉତ୍କଳ ସଭା' ଅବଗତ ହୋଇ ସେ ବିଷୟରେ ସଭାର ଅଭିପ୍ରାୟ ଓ ଭାବ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇବା କର୍ତ୍ତବ୍ୟଜ୍ଞାନ କରୁଅଛନ୍ତି । ବର୍ତ୍ତମାନ ଯେଉଁ ବନ୍ଦୋବସ୍ତରେ ମନ୍ଦିର କାର୍ଯ୍ୟ ନିର୍ବାହ ହେଉଅଛି ତହିଁରେ ଏପରି କିଛି ବିଶୃଙ୍ଖଳା ଘଟିବାର ସଭା ଜ୍ଞାତ ନୁହନ୍ତି, କି ଯହିଁ ନିମିତ୍ତ ପ୍ରସ୍ତାବିତ ପ୍ରକାର କଠିନ ଉପାୟ ପ୍ରୟୋଗ କରିବାକୁ ହେବ । ଅଥଚ କୌଣସି ଗୁରୁତର ଅପକାର୍ଯ୍ୟ ହୋଇଥିଲେ ଏ ସଭା ମନ୍ଦିରର ଅତି ନିକଟରେ ଥିବାରୁ ଅବଶ୍ୟ ତାହା ଜାଣିପାରନ୍ତେ ।

୨ୟ ନିର୍ଦ୍ଧାରଣ—ପୁରୀ ରାଜାମାନେ ଗୋଟିଏ ପ୍ରାଚୀନ ରାଜବଂଶର ପ୍ରତିନିଧି ଅଟନ୍ତି । ଏହାଙ୍କର ପୂର୍ବପୁରୁଷମାନେ କେବଳ ଓଡ଼ିଶା କାହିଁକି ପ୍ରାୟ ୪୦ ହଜାର ବର୍ଗମାଇଲ ଭୂମିର ଶାସନକର୍ତ୍ତା ଥିଲେ । ସେହିମାନେ ପୁରୀର ମନ୍ଦିର ନିର୍ମାଣ ଏବଂ ସେଠାରେ ଦେବତା ପ୍ରକାଶ କରିଥିବାରୁ ପୁରୀର ରାଜାମାନେ ଠାକୁରରାଜା ନାମରେ ଅଭିହିତ ହୋଇ ଆସୁଛନ୍ତି । ଏମାନଙ୍କୁ ମନ୍ଦିରର ସୁପ୍ରିଣ୍ଟେଣ୍ଡିରୁ ଖାରଜ କଲେ ସେମାନଙ୍କର ମର୍ଯ୍ୟାଦା ଅନର୍ଥକ ଓ ଅନୁପଯୁକ୍ତ ରୂପେ ଖର୍ବ ହେବ ଏବଂ ତାହା ସମସ୍ତ ହିନ୍ଦୁଙ୍କର ଇଚ୍ଛାବିରୁଦ୍ଧ ହେବ ଏବଂ ଏ ସଭା ଅନୁସନ୍ଧାନ ଦ୍ୱାରା ବୁଝିଅଛନ୍ତି ଯେ କେତେକ ଗଡ଼ଜାତର ରାଜାମାନେ ଏଥିପୂର୍ବରୁ ଅର୍ଥାତ୍ ଗ୍ଲେଡଷ୍ଟୋନ ସାହେବ ଓଡ଼ିଶାକୁ ଆସିଥିବା ସମୟରେ ତାହାଙ୍କ ନିକଟରେ ଏକ ଆବେଦନପତ୍ର ଦ୍ୱାରା ହିନ୍ଦୁମାନଙ୍କର ଏହି ଭାବକୁ ପ୍ରକାଶ କରିଅଛନ୍ତି ।

୩ୟ ନିର୍ଦ୍ଧାରଣ—ସେବା ସମ୍ପର୍କୀୟ ଭୋଗରାଗ ଏବଂ ଅନ୍ୟାନ୍ୟ ଦ୍ରବ୍ୟର ମୂଲ୍ୟ ବୃଦ୍ଧି ହେବାରୁ ଗଭର୍ଣ୍ଣମେଣ୍ଟ ସେ ସମସ୍ତ ବ୍ୟୟ ନିର୍ବାହ ନିମିତ୍ତ ଯେଉଁ ଜମିଦାରୀ ଖଞ୍ଜି ଦେଇଛନ୍ତି ତହିଁର ଆୟ ନିଅଣ୍ଟ ହୋଇଅଛି ଏବଂ କେତେକ ବର୍ଷ ହେଲା ସୁପ୍ରିଣ୍ଟେଣ୍ଡେଣ୍ଟ ଆପଣା ହାତରୁ ତାହା ପୂର୍ଣ୍ଣ କରୁଅଛନ୍ତି । ଏ ସଭାର ବିବେଚନାରେ କୌଣସି କାର୍ଯ୍ୟ ନିର୍ବାହକ କମିଟି ଏ ଭାର ନେବେ ନାହିଁ ଏବଂ ଫଳ ଏହି ଯେ ଗଭର୍ଣ୍ଣମେଣ୍ଟ ଅଧିକ ଦାନ କରିବେ ନରୁବା ମଠଗୁଡ଼ିକରୁ କିଛି କାଟି ହେବ ।

ଶ୍ରୀ ଗୌରୀଶଙ୍କର ରାୟ, ଅବୈତନିକ ସମ୍ପାଦକ

ଏହି ସଭାରେ ଉତ୍କଳର ବହୁ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ । ରାୟ ବୈଦ୍ୟନାଥ ପଣ୍ଡିତ ବାହାଦୁର, ବାବୁ ରାମଶଙ୍କର ରାୟ, ବାବୁ ଗୋଲକ ଚନ୍ଦ୍ର ବୋଷ, ବାବୁ ଜଗନ୍ମୋହନ ରାୟ, ଯଜ୍ଞେଶ୍ୱର ଚନ୍ଦ୍ର, ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ, ଗୌରୀଶଙ୍କର ରାୟ ପ୍ରଭୃତି ଭାଷଣ ଦେଇଥିଲେ ।

ଶ୍ରୀକ୍ଷେତ୍ରର ବଡ଼ଦେଉଳର ବ୍ୟବସ୍ଥାର ଉନ୍ନତି ନିମନ୍ତେ ସରକାର ଯେଉଁ ଦେବାନୀ ମକଦ୍ଦମା କରିବା ପ୍ରସ୍ତାବ କରିଥିଲେ, ଉତ୍କଳର ଜନସାଧାରଣ ତାହା ପସନ୍ଦ କରୁ ନଥିବା 'ଉତ୍କଳ ଦୀପିକା' ଲେଖିଥିଲେ । ସଭାସମିତି ମଧ୍ୟ ହୋଇଥିଲା । 'ଉତ୍କଳ ଦୀପିକା' ଲେଖିଥିଲେ—"ପୁରୀର ଶ୍ରୀଜଗନ୍ନାଥଙ୍କ ସେବାକାର୍ଯ୍ୟ ନିର୍ବାହ ସମ୍ପର୍କରେ ଉତ୍ତମ ବନ୍ଦୋବସ୍ତ

କରିବା ନିମିତ୍ତ ଗଭର୍ଣ୍ଣମେଣ୍ଟରୁ ଯେଉଁ ଦେବାନୀ ମୋକଦ୍ଦମା ଦାୟର ହେବାର କଥା ହେଉଅଛି ତାହା ପାଠକମାନେ ଉତ୍ତମରୂପେ ଜାଣନ୍ତି । ଓଡ଼ିଶାର ଯାହା କିଛି ଗୌରବ ଏକା ଜଗନ୍ନାଥଙ୍କ ହେତୁରୁ, ନଚେତ୍ ଏ ଦେଶକୁ ଭାରତବର୍ଷର ସକଳ ସ୍ଥାନରୁ ଅସଂଖ୍ୟ ଯାତ୍ରୀ ଆସିବାର ଦୂରେ ଥାଉ ଏହାର ନାମ ସୁଦ୍ଧା ବର୍ତ୍ତମାନ କେହି ଧରନ୍ତେ ନାହିଁ । ଜଗନ୍ନାଥଙ୍କ ସେବା ଯେତେଦିନ ରହିଥିବ ଓଡ଼ିଶାର ଠେକ ତେତେଦିନ ରହିଥିବ । ଅତଏବ ଏହି ସେବାକାର୍ଯ୍ୟରେ ଓଡ଼ିଶାବାସୀ ସମସ୍ତଙ୍କର ଘନିଷ୍ଠ ସମ୍ବନ୍ଧ ରହିଅଛି ଏବଂ ଗଭର୍ଣ୍ଣମେଣ୍ଟ ସେବାର ସେହି ସୁବନ୍ଦୋବସ୍ତ ପ୍ରତି ଦୃଷ୍ଟି ରଖିଅଛନ୍ତି । ଅବଶ୍ୟ ଏହା ସୁଖର ବିଷୟ ବୋଲିବାକୁ ହେବ । ମାତ୍ର ଦେଖାଯାଏ ଯେ ଅମ୍ଭମାନଙ୍କ ଶାସନକର୍ତ୍ତାମାନେ ବିଦେଶୀୟ ଏବଂ ଭିନ୍ନ ଧର୍ମାବଲମ୍ବୀ ଏବଂ ସେମାନଙ୍କର ଚକ୍ଷୁସ୍ୱରୂପ ପ୍ରଧାନ ସ୍ଥାନୀୟ କର୍ମଚାରୀମାନେ ତଦ୍ରୂପ ଥିବାରୁ ଅମ୍ଭମାନଙ୍କର ପ୍ରକୃତ ଭାବ, ଅବସ୍ଥା ଓ ପ୍ରୟୋଜନ ବୁଝି ସୁବ୍ୟବସ୍ଥା କରିବାକୁ ସର୍ବଦା ସକ୍ଷମ ହୁଅନ୍ତି ନାହିଁ । ଏଥିପାଇଁ କୌଣସି ନୂତନ କାର୍ଯ୍ୟରେ ଗଭର୍ଣ୍ଣମେଣ୍ଟ ପ୍ରବୃତ୍ତ ହେଲେ ଦେଶୀୟ ଲୋକଙ୍କର ସତ୍ ପରାମର୍ଶ ଦେବାର ଉଚିତ୍ ଏବଂ ଏହି କାରଣରୁ ମନ୍ଦିର ସଂପର୍କୀୟ ମୋକଦ୍ଦମାର ପ୍ରସ୍ତାବକୁ ବିଚାର କରି ମତାମତ ପ୍ରକାଶ କରିବା କାରଣ ଅନେକ ଦିନରୁ ଆମ୍ଭେମାନେ ଅସ୍ମଦ୍ଦେଶୀୟ ଅନୁରୋଧ କରିଆସୁଥିଲୁ । ବଡ଼ ସୁଖର ବିଷୟ ଯେ ସଂପ୍ରତି ଆମ୍ଭମାନଙ୍କର ଆଶା ପୂର୍ଣ୍ଣହେଲା । ଗତ ରବିବାର ଅପରାହ୍ନ ଘଟିକା ସମୟରେ ଉତ୍କଳ ସଭାର ଏକ ଅଧିବେଶନ ଏହି ଉପଲକ୍ଷରେ ହୋଇଥିଲା ଏବଂ କେବଳ ଏକ ଦିନ ପୂର୍ବରୁ ନୋଟିସ୍ ଦିଆଯାଇଥିଲେ ହେଁ ଶତାଧିକ ଲୋକ ଏକତ୍ରିତ ହୋଇ ସଭାର ସ୍ଥାନ ଛାପାଖାନାଗୃହକୁ ପୂର୍ଣ୍ଣ କରିଥିଲେ । ଏ ନଗରରେ ଏତେଲୋକ କ୍ଷଣକାଳର ବିଜ୍ଞାପନରେ କୌଣସି ସଭାରେ ଉପସ୍ଥିତ ହେବା ବଡ଼ ସାଧାରଣ ନୁହଁଇ । ଉତ୍କଳ ସଭାର ସଭାପତି ଚୌଧୁରୀ କାଶୀନାଥ ଦାସ (ପୁରୀଜିଲ୍ଲା ଭିଙ୍ଗାରପୁରର ଜମିଦାର) ସଭାର ଉଦ୍ଦେଶ୍ୟ ବୁଝାଇ ଦେଇ ସଭାର କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ସଭାରେ ସର୍ବସମ୍ମତିକ୍ରମେ ଏହି ପ୍ରସ୍ତାବିତ ମକଦ୍ଦମାକୁ ବିରୋଧ କରାଯାଇଥିଲା । ଗଭର୍ଣ୍ଣମେଣ୍ଟ କି କାରଣରୁ ଆମ୍ଭେମାନେ କହି ନପାରୁ ମନେ କରିଅଛନ୍ତି ଯେ ମନ୍ଦିରର ସେବାରେ ଘୋର ବିଶୃଙ୍ଖଳା ଘଟିଅଛି । ମାତ୍ର ଯେଉଁ ସେବା ବାହୁଲ୍ୟ ନିୟମାବଳୀ ଦ୍ୱାରା ବାଧ୍ୟବଦ୍ଧ ହୋଇ ଅତି ପ୍ରାଚୀନକାଳରୁ ଏକଧାରାରେ ଚାଲିଆସୁଅଛି ଏବଂ ଭିନ୍ନ ଭିନ୍ନ କାର୍ଯ୍ୟ ସକାଶେ ଭିନ୍ନ ଭିନ୍ନ ଲୋକ ନିଯୁକ୍ତ ହୋଇ ପୁରୁଷାନୁକ୍ରମେ କରି ଆସୁଅଛନ୍ତି ତହିଁରେ ଗୁରୁତର ବିଶୃଙ୍ଖଳା ଘଟିବା ଅସମ୍ଭବ । ଅବଶ୍ୟ ଏକଥା ଆମ୍ଭେମାନେ ସ୍ୱୀକାର କରୁ ଯେ, ତତ୍ତ୍ୱାବଧାରଣର ଶିଥିଳତା ଯୋଗୁଁ ନୀତିବିଶେଷରେ ନ୍ୟୂନାଧିକ ବିଳମ୍ବ ଘଟଇ । ମାତ୍ର ତହିଁ ସଙ୍ଗେ ଏ କଥା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ଅତି ସୁନିର୍ବାହିତ ବ୍ୟାପାରରେ ବେଳେ ବେଳେ ଏପରି ହେବା ଆଶ୍ଚର୍ଯ୍ୟ ନୁହଁଇ ଓ ଲକ୍ଷିତ ହେଉଅଛି । ଅତଏବ ପୁରୀର ରାଜବଂଶୀୟଙ୍କଦ୍ୱାରା ଏତେକାଳ ମନ୍ଦିରର କାର୍ଯ୍ୟ ସୁନ୍ଦରରୂପେ ନିର୍ବାହିତ ହୋଇ ଆସିଥିବା ପ୍ରତ୍ୟକ୍ଷେ ଏଣିକି

ସେପରି ହୋଇ ପାରିବ ନାହିଁ ଓ ସେମାନଙ୍କ ହସ୍ତରୁ ଏପରି ଭାର କାଢ଼ି ନେବାକୁ ହେବ ଏପରି ବିଗ୍ରହ କାହାର ମନକୁ ଆସିନାହିଁ । ପଶ୍ଚାତ୍ତରେ କମିଟି ଅଧୀନରେ ଥିବା ଅନ୍ୟାନ୍ୟ ଦେବାଳୟର ଯେପରି ଅବସ୍ଥା ଦେଖାଯାଏ ତାହା ସୁଖକର ନୁହଁଇ । ଆମ୍ଭେମାନେ ଗଭର୍ଣ୍ଣମେଣ୍ଟକୁ ଏକାନ୍ତ ଅନୁରୋଧ କରୁଅଛୁ ଯେ ମନ୍ଦିରର ଭାର ପୁରୀ ରାଜାଙ୍କଠାରୁ କାଢ଼ିନେବା କଳ୍ପନା ପରିତ୍ୟାଗପୂର୍ବକ ତାହାଙ୍କଦ୍ୱାରା ବାଞ୍ଛିତ ସୁବନ୍ଦୋବସ୍ତମାନ କରାଇ ନେବାର ଚେଷ୍ଟା କରନ୍ତୁ । ତାହାହେଲେ ଉତ୍ତମ ହେବ । କେବଳ ଜଗନ୍ନାଥଙ୍କୁ ଯେନ ପୁରୀ ରାଜାଙ୍କ ମର୍ଯ୍ୟାଦା । ସୁତରାଂ ତାହାଙ୍କଠାରୁ ବଳକରି କେହି ସେବା ରକ୍ଷା କରିବାକୁ ଯତ୍ନବାନ୍ ହେବେ ନାହିଁ । ସ୍ଥାନୀୟ ହାକିମଙ୍କ ପରାମର୍ଶ ଯେନ ରାଜା ସମସ୍ତ ବିଷୟରେ ସନ୍ତୋଷଜନକ ବନ୍ଦୋବସ୍ତ କରିପାରନ୍ତି ଯେମନ୍ତ କି ବାବୁ ରାମପ୍ରସାଦ ସିଂହଙ୍କୁ ଦେବାନୀ ପଦରେ ରଖି କେତେବର୍ଷ ମନ୍ଦିର କାର୍ଯ୍ୟ ଅତି ସୁନ୍ଦରରୂପେ ନିର୍ବାହିତ ହୋଇଥିଲା । (ଉତ୍କଳ ଦୀପିକା, ତା ୧୧।୧୨।୧୮୮୬)

"ପୁରୀ ବଡ଼ଦେଉଳର ଭାର ସେଠା ରାଜାଙ୍କ ହାତରୁ କାଢ଼ିନେବା କାରଣ ଗଭର୍ଣ୍ଣମେଣ୍ଟ ଯେଉଁ ମୋକଦ୍ଦମା ଦାଏର କରିବେ ବୋଲି କେତେକାଳରୁ ଶୁଣାଯାଉଥିଲା ଗତ ବୁଧବାରେ (ତା୮।୧୧।୧୮୮୬) ତାହା ଦାଏର ହେଲା । ପୁରୀର କଲେକ୍ଟର ସାଭେଜ୍ ସାହେବ ସ୍ୱୟଂ ଏଠାକୁ ଆସି ଅଦାଲତରେ ଉପସ୍ଥିତ ହୋଇ ଅରଜୀ ଦାଖଲ କଲେ ଏବଂ ତହିଁ ସଙ୍ଗେ ଆଗାମୀ କୋରକୀର ଦରଖାସ୍ତ ଓ ଅଫେଡ଼େଭିଟ୍ ଏହି ମର୍ମରେ କଲେ କି ମନ୍ଦିରରେ ରଖାଯାଇଥିବା ଶ୍ରୀଜଗନ୍ନାଥଙ୍କର ବହୁମୂଲ୍ୟ ପଦାର୍ଥମାନ ଏବଂ ମନ୍ଦିରର ଆୟ ପୁରୀ ରାଜବଂଶୀୟ ତତ୍ତ୍ୱାବଧାରକମାନେ ଆତ୍ମସାତ୍ କରିଅଛନ୍ତି ଏବଂ ଏ ମୋକଦ୍ଦମା ଦାଏର ହେବା କଥା ଶୁଣିଲେ ଆହୁରି ଅନେକ ଦ୍ରବ୍ୟ ଆତ୍ମସାତ୍ ବା ଗୋପନ କରିବାର ସମ୍ଭାବନା । ଅତଏବ ମନ୍ଦିରର ସବୁ ମାଲ କୋରକକରି ତହିଁରୁ ସେବା ସଂକ୍ରାନ୍ତ ନିତ୍ୟପ୍ରୟୋଜନୀୟ ଦ୍ରବ୍ୟମାନ ଯେଉଁମାନେ କାରବାର କରନ୍ତି ସେମାନଙ୍କ ଜିମା ରଖାଯିବା ଓ ଅପର ଦ୍ରବ୍ୟମାନ ମୋକଦ୍ଦମା ନିଷ୍ପତ୍ତି ପର୍ଯ୍ୟନ୍ତ ସେବା ଚଳାଇବା କାରଣ ରିସିଭର ନିଯୁକ୍ତ କରି ସେହି ରିସିଭରଙ୍କର ଜିମା ରଖିବାର ପ୍ରାର୍ଥନା କଲେ ଏବଂ ସେହି ପ୍ରାର୍ଥନାମାନ ମଞ୍ଜୁର ହେଲା । କଲେକ୍ଟର ସାହେବଙ୍କ ସୁପାରସ୍ ମତେ ଏମାର ମଠର ମହନ୍ତଙ୍କ ଚେଲା ଶ୍ରୀ ରଘୁନନ୍ଦନ ଦାସ ରିସିଭର, ବାବୁ ନନ୍ଦୀଗ୍ରାମନ୍ଦ ଦତ୍ତ ସହକାରୀ ରିସିଭର, ବାବୁ ରାମପ୍ରସାଦ ସିଂହ ତହସିଲଦାର ନିଯୁକ୍ତ ହେଲେ । ରିସିଭର ବିନାବେତନରେ କାର୍ଯ୍ୟ କରିବେ, ସହକାରୀ ରିସିଭରଙ୍କର ମାସକୁ ଟ ୧୫୦ ଓ ତହସିଲଦାରଙ୍କର ମାସକୁ ଟ ୧୦୦ ବେତନ ଧାର୍ଯ୍ୟ ହୋଇଛି । ଏଛଡ଼ା ଜଣେ ସହକାରୀ ତହସିଲଦାର ଟ ୫୦ ରେ, ଜଣେ ଇଂରାଜୀ କିରାଣି ଟ ୩୦ ରେ ଏବଂ ଦୁଇଜଣ ଓଡ଼ିଆ ଅମଲା ଟ ୨୦ ଲେଖାଏଁ ବେତନରେ ନିଯୁକ୍ତ ହେବେ ଏବଂ ତାହାଙ୍କ ସହକାରୀ ନିଯୁକ୍ତ ହେବେ । ମାଲ ସବୁ କୋରକ କରି ରିସିଭର ଓ ଅନ୍ୟ ବ୍ୟକ୍ତିଙ୍କର ଜିମାରେ ରଖାଇଦେବା କାରଣ ଅଦାଲତର ନାଜର

ସେଠାକୁ ପ୍ରେରିତ ହେବେ । ଏହିପରି ମୋକଦ୍ଦମା ଆରମ୍ଭ ହେଲା ଏବଂ ଏଥିର ଶେଷ ଫଳ ଯାହା ହେଉ ଆରମ୍ଭ ସଙ୍ଗେ ସଙ୍ଗେ ପୁରୀ ରାଜାଙ୍କର ଅନର୍ଥକ ଅପମାନରେ ଆମ୍ଭେମାନେ ଏ ପ୍ରଦେଶୀୟ ସର୍ବସାଧାରଣଙ୍କ ସହିତ ଅତ୍ୟନ୍ତ ଦୁଃଖିତ ହେଲୁ । ପୁରୀ ରାଜାମାନେ ଜଗନ୍ନାଥଙ୍କ ମାଲ ଆତ୍ମସାତ୍ କରିଛନ୍ତି କି ନାହିଁ ପ୍ରମାଣ ବିଷୟ ଅଟଇ । ସମ୍ଭବ, ଗଭର୍ଣ୍ଣମେଣ୍ଟ ସେଭଳି କିଛି ପ୍ରମାଣ ପାଇଥିବେ, କିନ୍ତୁ ତାହାହେଲେ ସୁଦ୍ଧା ଆଜି ମୋକଦ୍ଦମା ଦାଏର ହେଲା ବୋଲି ବର୍ତ୍ତମାନର ରାଜା ଅଥବା ତାହାଙ୍କ ଅଭିଭାବକ ମନ୍ଦିର ଦ୍ରବ୍ୟମାନ ଯେବେ ପଳାଇଯିବେ ଓ କୌଣସିମତେ ତାହାଙ୍କଠାରୁ ସେ ସବୁ ପୁନଃ ପ୍ରାପ୍ତି ହେବ ନାହିଁ, ଏପରି ଆଶଙ୍କା କରି ଗଭର୍ଣ୍ଣମେଣ୍ଟ ଯାହା ଆଗାମୀ କୋର୍ଟଙ୍କୀ ଓ ରିସିଭର ନିଯୁକ୍ତ କରିବାର ପ୍ରାର୍ଥନା କଲେ ବଡ଼ ଦୁଃଖର ବିଷୟ ଅଟଇ ଏବଂ ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କର କିଛିମାତ୍ର ମହତ୍ତ୍ୱପଣିଆ ଦେଖାଗଲା ନାହିଁ । ପୁରୀର ରାଜା ଓଡ଼ିଶାର ଅତି ପ୍ରାଚୀନ କୀର୍ତ୍ତିମାନ୍ ସଂଭ୍ରାନ୍ତ ବଂଶୋଦ୍ଭବ ବ୍ୟକ୍ତି । ତାହାଙ୍କର ନିଜର ବିଷୟ ସମ୍ପତ୍ତି ଅଛି ଓ ଶ୍ରୀଜଗନ୍ନାଥଙ୍କୁ ଆପଣା ନିଜର ଇଷ୍ଟଦେବତା ବୋଲି ଜ୍ଞାନ କରି ଆସୁଥିବାରୁ ତାହାଙ୍କ ସେବାରେ ତାହାଙ୍କର ଯଥେଷ୍ଟ ମମତା ଅଛି । ଏମନ୍ତ ରାଜା ଆଜି ମୋକଦ୍ଦମା ହେଲା ବୋଲି କେବଳ ଅର୍ଥଲୋଭରେ ଆପଣା କୁଳମର୍ଯ୍ୟାଦା ଓ ଇଷ୍ଟଦେବତାଙ୍କ ସେବାରେ ଜଳାଞ୍ଜଳି ଦେଇ ଇତର ଲୋକଙ୍କପରି କାର୍ଯ୍ୟ କରିବେ ଏ କଥା କିଏ ବିଶ୍ୱାସ କରିବ ? ଗଭର୍ଣ୍ଣମେଣ୍ଟ ଯଦି ନିତାନ୍ତ ସନ୍ଦିହାନ ହେଲେ, ତେବେ ରାଜାଙ୍କଠାରୁ ଜାମିନ୍ ମୋକଦ୍ଦମା ବିଚାର ପର୍ଯ୍ୟନ୍ତ ତାହାଙ୍କ ହାତରେ ସବୁ ଭାର ରଖିବାର ପ୍ରାର୍ଥନା ଅଦାଲତରେ କରିଥାନ୍ତେ ଓ ତହିଁରେ କାହାରି ଏତାଦୃଶ୍ୟ ମନସ୍ତାପ ହୁଅନ୍ତା ନାହିଁ । ଗଭର୍ଣ୍ଣମେଣ୍ଟ ଯାହାକୁ ରିସିଭର୍ ମନୋନୀତ କରିଅଛନ୍ତି ସେ ଅବଶ୍ୟ ଉପଯୁକ୍ତ ଲୋକ, କିନ୍ତୁ ରାଜାଙ୍କଠାରୁ କେଉଁ ଅଂଶରେ ଅଧିକ ହେଲେ ଯେ ତାହାଙ୍କୁ ଅଗ୍ରଗଣ୍ୟ କରାଗଲା ଏକଥା ଆମ୍ଭେମାନେ ବୁଝିପାରିଲୁନାହିଁ ।" (ଉତ୍କଳ ଦୀପିକା, ୧୮ । ୧୨ । ୧୮୮୬)

ମଧୁବାବୁ କୋର୍ଟ ବାହାରେ ଓ ଭିତରେ ଏହିପରି ଯୁକ୍ତି କରୁଥିବା ଜଣାଯାଏ— "ପୁରୀ ମନ୍ଦିର ପରିଚାଳନାର ଉନ୍ନତି ସାଧନ ଦିଗରେ ସରକାର ଯେଉଁ ଉଦ୍ୟମ କରୁଛନ୍ତି ତାହା ଅସତ୍ ଉଦ୍ଦେଶ୍ୟରେ କରାଯାଉଛି ବୋଲି କେବେ କହିହେବ ନାହିଁ । ଏହା କେବେ ଅସତ୍ ହୋଇପାରେନାହିଁ । ଲୋକଙ୍କର ଯଥାସମ୍ଭବ ସର୍ବୋଚ୍ଚ ସୁଖ ଆନୟନ ହିଁ ସରକାରଙ୍କର ଲକ୍ଷ୍ୟ । ଏହା ବୋଲି ଯେ ଶାସକମାନେ ନିର୍ଭୁଲ ତଥ୍ୟ ସବୁବେଳେ ପାଇଥାଆନ୍ତି ଏବଂ ପଥଭ୍ରଷ୍ଟ ହୁଅନ୍ତି ନାହିଁ, ଏହା ଧାରଣା କରିବା ଉଚିତ ନୁହେଁ । ସେମାନେ ଅବାଟରେ ମଧ୍ୟ ଚାଲିବା ସମ୍ଭବ । ଦୟା ପୃଥିବୀପୃଷ୍ଠରୁ ଦୁଷ୍ଟ ଆତ୍ମାମାନଙ୍କୁ ଏକାବେଳକେ ଲୋପ କରିଦେଇ ପାରିନାହିଁ । ଗୁଜବ ଗୋଟିଏ ସ୍ତ୍ରୀ ବ୍ୟକ୍ତି, ସେ ବେଶି କ୍ଷମତାଶାଳୀ ଦର୍ପଣରେ ପଦାର୍ଥକୁ ଦେଖେ । ଏପରି ଲୋକ ଅଛନ୍ତି ଯେଉଁମାନେ କି ତାଙ୍କ କୁପ୍ରକୃତିରୁ ହେଉ ବା କୁଉଦ୍ଦେଶ୍ୟରୁ ହେଉ ପ୍ରତ୍ୟେକ କଥାକୁ ବିକୃତ ଭାବରେ ଦେଖନ୍ତି ।

ଅବଶ୍ୟ ସବୁଠାରେ ଓ ସବୁ ସମୟରେ ସତ୍ ବ୍ୟକ୍ତିଙ୍କୁ ପାଇବା ସମ୍ଭବ ନୁହେଁ । କିନ୍ତୁ ବ୍ରିଟିଶ୍ ସରକାରଙ୍କ ଉପରେ ଯେ ଅସତ୍ ଲୋକଙ୍କ ବେଶି ପ୍ରଭାବ ପଡ଼ୁଛି ଏବଂ ସେମାନଙ୍କ କଥା ଶୁଣି ନିଜର ଉଚ୍ଚ ଚରିତ୍ର ଓ ଆଦର୍ଶ ଭୁଲିଯାଉଛନ୍ତି, ଏହାହିଁ ଲକ୍ଷ୍ୟ କରିବାର କଥା । ଅବଶ୍ୟ ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ସରକାରରେ ତ ପୁଣି ମନୁଷ୍ୟମାନେ ଅଛନ୍ତି ! ଆଦମ ପୁରୁଷ ଓ ପ୍ରକୃତିଙ୍କ ଉପରେ ପ୍ରଭାବ ପକାଇବାରେ ପୁଣି ତ ସଇତାନ ସମର୍ଥ ହୋଇପାରିଛି !

"ଏଥିରୁ ବୁଝିବା ଉଚିତ ନୁହେଁ ଯେ, ପୁରୀ ମନ୍ଦିରରେ ସବୁ ସୁନ୍ଦର ଭାବରେ ଚାଲୁଛି । ଏହା ଜଣେ ମାନବଦ୍ୱାରା ପରିଚାଳିତ ହେଉଛି । ମାନବ ପ୍ରକୃତି ସର୍ବତ୍ର ସମାନ । ଯଦି ଏପରି ହୋଇ ନ ଥାଆନ୍ତା, ତାହାହେଲେ ସମ୍ରାଟଙ୍କ ସିଂହାସନ ସୁଖସ୍ୱାଚ୍ଛନ୍ଦ୍ୟର ସିଂହାସନ ହୋଇଥାଆନ୍ତା । ବ୍ୟବସ୍ଥାପକ ସଭା ନ ଥାଆନ୍ତା, ନୀତି କିମ୍ବା ନ୍ୟାୟ ନ ଥାଆନ୍ତା । ଯଦି ଏହା ନିର୍ଦ୍ଦୋଷ ଆଦର୍ଶସ୍ଥାନୀୟ ହୋଇଥାଆନ୍ତା ତାହାହେଲେ ପାର୍ଲିଆମେଣ୍ଟ ଭାଙ୍ଗି ଦେବାକୁ ପଡ଼ନ୍ତା ନାହିଁ କି ଆଇନର ପରିବର୍ତ୍ତନ କରିବାକୁ ହୁଅନ୍ତା ନାହିଁ, ନ୍ୟାୟାଧୀଶମାନେ ସେମାନଙ୍କର କାର୍ଯ୍ୟ ସୁଚାରୁରୂପେ, ସନ୍ତୋଷ ଭାବରେ ଚଳାଉଥିବା ପର୍ଯ୍ୟନ୍ତ ଚାକିରିରେ ରହିବେ ବୋଲି ଆଇନ୍ ହୋଇନଥାଆନ୍ତା ।

"ଜଣେ ମନୁଷ୍ୟ ହାତରୁ ମନ୍ଦିରର ପରିଚାଳନା କାଢ଼ି ନେଇ ଅନ୍ୟ ମନୁଷ୍ୟ ହାତରେ ସରକାର ଏହାକୁ ଦେବା ସମ୍ଭବ ହି । ମନୁଷ୍ୟର ଦୋଷ ଦୁର୍ବଳ ଥିବା ସମ୍ଭବ, ଏହି କାରଣରୁ କେହି ଦୋଷୀକୁ ଦଣ୍ଡମୁକ୍ତ କରାଯାଉନାହିଁ । ସର୍ବସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ନ୍ୟାୟ ମିଳିବା ନିତାନ୍ତ ଆବଶ୍ୟକ । କିନ୍ତୁ ବ୍ରିଟିଶ ଶାସକଙ୍କ ରାଜ୍ୟାଭିଷେକ ସମୟରେ ଶପଥ ନିଆଯାଇ ଯେ ନ୍ୟାୟର ବ୍ୟବସ୍ଥା ଦିଆଯାଇଛି—ନ୍ୟାୟ ଦୟାଶାଣିତ ହେବ । ଦାକ୍ଷିଣ୍ୟ ବାରମ୍ବାର ଆସି ପହଞ୍ଚୁଛି ଏବଂ ବିଶିଷ୍ଟ କ୍ଷେତ୍ରରେ କୋହଳ ନୀତି ଅବଲମ୍ବନ କରିବା ପାଇଁ ଦାବୀ କରୁଛି । ଯେଉଁମାନେ ଆମର ସଦୟ ସରକାରଙ୍କୁ ବିପଥଗାମୀ କରିବାକୁ ଚେଷ୍ଟା କରୁଛନ୍ତି ସେମାନେ ଏହି ଉଚ୍ଚ ନୀତିଗୁଡ଼ିକ ଆଦୌ ଜ୍ଞାତ ନୁହନ୍ତି । ସେମାନଙ୍କର କାମଳରୋଗଗ୍ରସ୍ତ ଚକ୍ଷୁରେ ଏହାକୁ ଆଦୌ ଦେଖିପାରୁ ନାହାନ୍ତି ଯେ, ମନ୍ଦିରର ପରିଚାଳନା ଜଣେ ମହିଳା ହାତରେ କେତେବର୍ଷ ରହିଆସିଅଛି ଏବଂ ଏହି ମହିଳା ଅସୂର୍ଯ୍ୟଂପଶ୍ୟା, ସେ କେବେ ନିଜ ପିତା, ଭ୍ରାତା, ସ୍ୱାମୀ, ପୁତ୍ର ଓ ସ୍ୱଜନଙ୍କ ମୁଖ ବ୍ୟତୀତ ଅନ୍ୟ କୌଣସି ପୁରୁଷର ମୁଖ ଦର୍ଶନ କରିନାହାନ୍ତି । ସେ ରାଜଅନ୍ତଃପୁରର ସୀମା ଅତିକ୍ରମ କରି କେବେ ବାହାରକୁ ଆସିନାହାନ୍ତି । ସେ ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀ ନୁହଁନ୍ତି କି ସରକାର ଶାସନନୀତିରେ ଉତ୍ତମ ଶିକ୍ଷା ପାଇନାହାନ୍ତି । ସେମାନେ ପାଶୋରି ଦେଉଛନ୍ତି ଯେ ମନ୍ଦିରର ବହୁସଂଖ୍ୟକ ଜାନିଯାତ୍ରା ହେଉଛି ଏବଂ ପରିଚାଳନାରେ ବହୁଲୋକ ସମ୍ପୃକ୍ତ ଏହି ମନ୍ଦିରକୁ ପ୍ରତି ବର୍ଷ ଜାନିଯାତ୍ରା ସମୟରେ ଭାରତର ବିଭିନ୍ନ ଅଞ୍ଚଳରୁ ହଜାର ହଜାର ଯାତ୍ରୀ ଆସୁଛନ୍ତି । ଏମାନଙ୍କର ଆଚାର-ବ୍ୟବହାର, ଚାଲିଚଳନ, ହାବଭାବ

ପ୍ରଭୃତି କ୍ଷେତ୍ରରେ ବହୁତ ପ୍ରଭେଦ ରହିଛି । ନ୍ୟୁଜିଲଣ୍ଡ ଅଧିବାସୀଙ୍କଠାରୁ ଇଂଲଣ୍ଡ ଅଧିବାସୀଙ୍କର ଯେଉଁ ପ୍ରଭେଦ ସେହିପରି ପ୍ରଭେଦ ଏଠାରେ ଦେଖାଯାଏ । ମନ୍ଦିରର ପରିଚାଳନାରେ ଏପରି କିଛି ଗୁରୁତର ତ୍ରୁଟି ଘଟିନାହିଁ ଯେ ମନ୍ଦିର ପରିଚାଳନା ରାଣୀଙ୍କ ହାତରୁ କାଢ଼ିନେବା ଆବଶ୍ୟକ ହେବ । ଏହି ଉକ୍ତିକୁ ଉତ୍କଳ ସମ୍ମିଳନୀ ଅଲ୍‌ବର୍ଟ ହଲର ଅଧିବେଶନରେ ଓଡ଼ିଶାର ଅତି ବିଶିଷ୍ଟ ଲୋକଙ୍କ ଉପସ୍ଥିତିରେ ଯେଉଁ ପ୍ରସ୍ତାବ ଗୃହୀତ ହୋଇଛି ତାହା ମୁଁ ସମର୍ଥନ କରୁଛି ।

"ଯଦି ପରିଚାଳନାରେ କୌଣସି ତ୍ରୁଟି ଦେଖାଯାଏ, ତାହାହେଲେ ତାର କୌଣସି ପ୍ରତିକାର କରାଯିବ ନାହିଁ, ଏହା କେବେ କୁହାଯାଇ ପାରିବ ନାହିଁ । ବହୁ ପ୍ରାଚୀନ କାଳରୁ ପୁରୀ ରାଜାମାନେ ଭୋଗକରି ଆସୁଥିବା ସୁବିଧାରୁ ତାଙ୍କୁ ବଞ୍ଚିତ କରିବା ଅନ୍ୟାୟ ହେବ । ମୁସଲମାନମାନଙ୍କ ରାଜତ୍ୱ ସମୟରେ ଏହି ସୁବିଧା ବା ଅଧିକାର ଉପରେ ବହୁବାର ଆକ୍ରମଣ ହୋଇଥିଲା । ଅତ୍ୟାଚାରୀ ମରହଟ୍ଟା ଶାସନରେ ମଧ୍ୟ ଏପରି ଆକ୍ରମଣ ହୋଇଥିଲା । ଏହିସବୁ ଆକ୍ରମଣକୁ ପ୍ରତିହତ କରିବା ପାଇଁ ପ୍ରବଳ ଉଦ୍ୟମ କରିବାକୁ ହୋଇଛି; କିନ୍ତୁ ଇଂରେଜ ସମ୍ବିଧାନ ଅନୁସାରେ ଏପରି ଆକ୍ରମଣ କରିବାର ସୁବିଧା ସୁଯୋଗ ନାହିଁ । ଇଂରେଜମାନଙ୍କ ଭିତରେ କେତେଜଣ ଏହି ଆକ୍ରମଣର ଉଦ୍ୟମ କରୁଥିବା ଆଶ୍ଚର୍ଯ୍ୟର କଥା ।

"କୌଣସି ବିପଦ ପଡ଼ିଲେ ତଦନୁସାରେ ବ୍ୟବସ୍ଥା ହେବା ଉଚିତ । ଶହ ଶହ ଲୋକ ଜାହାଜବୁଡ଼ି, ରେଳଦୁର୍ଘଟଣାରେ ମରୁଛନ୍ତି । ଏହା ବୋଲି କଣ ରେଳବାଇକୁ ବନ୍ଦ କରିଦିଆଯାଉଛି ନା ମାଲିକର ଅନ୍ୟ ଜାହାଜକୁ ନ ଚଳାଇବାକୁ ଆଦେଶ ଦିଆଯାଉଛି ? ସାଧାରଣଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରେ ଆଇନ ପ୍ରଣୟନ ହୋଇଥାଏ । ସାର୍ବଭୌମ ଶାସକର ଇଚ୍ଛାରୁ ଆଇନସିଦ୍ଧ ଅଧିକାର ମିଳୁଛି । ଜାହାଜ ଓ ରେଳବାଇର ପରିଚାଳନା ପରିବର୍ତ୍ତନ କଲା ପରି ପୁରୀମନ୍ଦିର ପରିଚାଳନାରେ ମଧ୍ୟ ପରିବର୍ତ୍ତନ ହୋଇପାରେ । ସାର୍ବଭୌମ ବିରୁଦ୍ଧରେ ନୈତିକତାକୁ ଅପିଲ କରାଯାଉଛି, ଆଇନକୁ ନୁହେଁ । ନୈତିକତାକୁ ଅପିଲ କରିବା ଅଧିକାର ଅନ୍ୟମାନଙ୍କ ପରି ପୁରୀ ରାଜାଙ୍କର ମଧ୍ୟ ଅଛି । ବର୍ତ୍ତମାନ ଜଣେ ବୃଦ୍ଧା ଓଡ଼ିଆ ମହିଳାଙ୍କ ହସ୍ତରେ ପୁରୀ ମନ୍ଦିରର ପରିଚାଳନା ଭାର ନ୍ୟସ୍ତ ଅଛି । ମନ୍ଦିର ପରିଚାଳନା ତାଙ୍କ ହାତରୁ ବାହାର କରିନେବା ପାଇଁ ଯେଉଁ ମକଦ୍ଦମା ଦାଏର ହୋଇଛି, ତାହା କେତେକ ଖଳଲୋକଙ୍କ କୁପରାମର୍ଶରେ ହୋଇଛି । ସ୍ୱର୍ଗୀୟ ଦୂତମାନେ ଅବତରଣ କରି ନୈତିକତାର ମାର୍ଗ ଦେଖାଇବେ ବୋଲି ଆଶା କରାଯାଉଛି । ସାର୍ବଭୌମଙ୍କ ଉଚ୍ଚ ମନୋଭାବଠାରେ ଆବେଦନ କରାଯାଉଛି । ଏହାଠାରୁ ବଳି ଅନ୍ୟ ଉତ୍କୃଷ୍ଟ ପନ୍ଥା ନାହିଁ ।"

ମଧୁବାବୁ କହୁଥିଲେ ଯେ—ରାଜାଙ୍କ ହାତରୁ ପରିଚାଳନା କାଢ଼ିନେଲେ ଯେ ସ୍ୱର୍ଗରୁ ଦେବତା ଆସି ପରିଚାଳନା କରିବେ, ଏହା ଭାବିବା ଅନୁଚିତ । ମନୁଷ୍ୟ ତ ପୁଣି

ପରିଚାଳନା କରିବ ? ସେହିଭଳି ଦକ୍ଷ ବ୍ୟକ୍ତି କାହାନ୍ତି ? ସେହି ଦୋଷ ଦୁର୍ବଳତା ଦେଖାଦେବ । ଏତେ ଲୋକଙ୍କ କାରବାର କ୍ଷେତ୍ରରେ ଏପରି ବିଶୃଙ୍ଖଳା ଦେଖାଦେବା ଅସମ୍ଭବ ନୁହେଁ । ଏହା ବୋଲି କ୍ଷମତାଚ୍ୟୁତ କରିବା ପନ୍ଥା ଯୁକ୍ତିଯୁକ୍ତ ଓ ନ୍ୟାୟାନୁମୋଦିତ ହେବ ନାହିଁ । ବ୍ରିଟିଶ ଜାତିର ନ୍ୟାୟ ମନୋଭାବ ଓ ବିଚାର ବୁଦ୍ଧିକୁ ଆବେଦନ କରାଯାଉଛି ।

ପୁରୀ ମନ୍ଦିରର ପରିଚାଳନା ସହିତ ସାଧାରଣ ଗୃହପରିଚାଳନାର ତୁଳନା କରି ମଧୁବାବୁ କହିଥିଲେ—ପୁରୀ ରାଜା ନିଜ ପରିବାରକୁ ଚଳାଇଲା ପରି ପୁରୀ ମନ୍ଦିରର ପରିଚାଳନା କାର୍ଯ୍ୟ ଚଳାଉଛନ୍ତି । ଆଇନ ତିଆରି କରିବା ଅଧିକାର ତାଙ୍କର ନାହିଁ କି ମ୍ୟୁନିସିପାଲିଟି ଚଳାଇବା କ୍ଷମତା ତାଙ୍କର ନାହିଁ । ଯଦି ଏପରି କ୍ଷମତା ତାଙ୍କର ଥାଆନ୍ତା, ତାହା ତାହାଙ୍କୁ ସ୍ଥାନାନ୍ତରିତ କରି ଦିଆଯାଇ ପାରିଥାଆନ୍ତା । ବର୍ତ୍ତମାନ ସେ ଏକ ବଡ଼ ପରିବାର ଚଳାଇବା ଭଳି ଅବସ୍ଥାରେ ଅଛନ୍ତି । ତାଙ୍କର କର୍ତ୍ତବ୍ୟ ହେଉଛି, ମନ୍ଦିରର ସେବକ ସମ୍ପ୍ରଦାୟ ଭିତରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା ଓ ଠାକୁରଙ୍କ ନୀତି ନିୟମିତଭାବେ ନିର୍ବାହ କରିବା । ଏହି କ୍ଷେତ୍ରରେ ବହୁ ସେବାକାରୀ ଥିବାରୁ ଏବଂ ଦୈନିକ ସହସ୍ର ସହସ୍ର ଯାତ୍ରୀଙ୍କ ସମାଗମ ହେଉଥିବାରୁ ଶାନ୍ତିଶୃଙ୍ଖଳାଦି ରକ୍ଷାକରିବା କଷ୍ଟକର । ଏଥିପାଇଁ ଉଚିତ ବ୍ୟବସ୍ଥା ହେବା ଆବଶ୍ୟକ । ଏଥିରେ ସରକାରଙ୍କ ସହଯୋଗ ଓ ପରାମର୍ଶ ଆବଶ୍ୟକ । ଏହା ନ କରି ରାଜାଙ୍କ ହାତରୁ କ୍ଷମତା କାଢ଼ିନେବା ପାଇଁ ଯେଉଁ ବ୍ୟବସ୍ଥା କରାହୋଇଛି, ତାହା ଆଦୌ ଉଚିତ ହୋଇନାହିଁ ।

ଅଭିଷେକୋତ୍ସବ ସମୟରେ ମହାରାଣୀ ଧର୍ମନିରପେକ୍ଷତା ଘୋଷଣା କରିଥିଲେ; କିନ୍ତୁ ବର୍ତ୍ତମାନ ଏଠାରେ ତାହାର ବ୍ୟତିକ୍ରମ ହେଉଥିବାରୁ ବ୍ରିଟିଶ ସରକାର ନ୍ୟାୟ ବିଚାର କରି ମକଦ୍ଦମା ଉଠାଇ ନେବା ଉଚିତ । ଇତ୍ୟାଦି ।

ଏହି ମକଦ୍ଦମାରେ ମଧୁବାବୁ ରାଜାଙ୍କ ତରଫରୁ ଆଇନ ପରାମର୍ଶଦାତା ଓ ଘରୋଇ ପରାମର୍ଶଦାତାରୂପେ କାର୍ଯ୍ୟ କରୁଥିବା ଦେଖାଯାଇଥିଲା । ସରକାର ମକଦ୍ଦମା କରିବା ବିରୁଦ୍ଧରେ ବିଭିନ୍ନ ସ୍ଥଳରେ ସଭା-ସମିତି ପ୍ରଭୃତି କରିବାରେ ମଧ୍ୟ ସେ ଉତ୍ସାହ ଦେଉଥିଲେ ।

### କଟକ ଜିଲ୍ଲାବୋର୍ଡ଼ ଭାଇସ୍-ଚେଆରମ୍ୟାନ୍ (ଖ୍ରୀ: ୧୮୮୭)

ଖ୍ରୀ: ୧୮୮୭ରେ ମଧୁବାବୁ କଟକ ଜିଲ୍ଲାବୋର୍ଡ଼ର ପ୍ରଥମ ବେସରକାରୀ ଭାଇସ୍-ଚେଆରମ୍ୟାନ୍ ରୂପେ ନିଯୁକ୍ତ ହୋଇଥିଲେ । ଜିଲ୍ଲା କଲେକ୍ଟର ଚେଆରମ୍ୟାନ୍ ଥିଲେ ।

ତାଙ୍କ ଅମଳରେ ପୁରୀ ରଥଯାତ୍ରା ସମୟରେ ହଇଜା ପ୍ରତିକାର ଓ ନିରାକରଣ ନିମନ୍ତେ ଜଗନ୍ନାଥ ରୋଡ଼ର ସ୍ଥାନେ ସ୍ଥାନେ ଚିକିତ୍ସା ଓ ପ୍ରତିଷେଧକ କେନ୍ଦ୍ର ସ୍ଥାପିତ ହୋଇଥିଲା । ବନ୍ୟା ସାହାଯ୍ୟ କ୍ଷେତ୍ରରେ ସେ ବିଶେଷରୂପେ କାର୍ଯ୍ୟ କରିଥିଲେ । ସମଗ୍ର

ବନ୍ୟାଞ୍ଚଳ ବୁଲି ଲୋକଙ୍କର ସେବା କରିଥିଲେ । ଅତି ରୁଗ୍‌ଣ ଶରୀରରେ ମଧ୍ୟ ସେ ପାଲିକି, ବଳଦ ଗାଡ଼ିରେ ଯାଇଥିଲେ ଓ କେତେକ ସ୍ଥାନକୁ ଚାଲି ଚାଲି ମଧ୍ୟ ଯାଇଥିଲେ ।

**କଂଗ୍ରେସ ଅଧିବେଶନରେ ଯୋଗଦାନ :** ଏହି ବର୍ଷ ମାନ୍ଦ୍ରାଜରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନରେ ଯୋଗଦେଇଥିଲେ । ସେ ଉତ୍କଳ ସଭାର ପ୍ରତିନିଧିରୂପେ ଯାଇଥିଲେ । ସେତେବେଳେ ଚାନ୍ଦବାଲିଠାରୁ ବୋଇତରେ ମାନ୍ଦ୍ରାଜ ଯିବାକୁ ପଡ଼ୁଥିଲା ।

**ପ୍ରାଥମିକ ଶିକ୍ଷାର ପ୍ରସାର :** କଟକ ଜିଲ୍ଲାବୋର୍ଡ଼ର ଭାଇସ୍-ଚେଆରମ୍ୟାନ୍ ରୂପେ ମଧୁବାବୁ ଜିଲ୍ଲାର ସବୁଆଡ଼େ ପ୍ରାଇମେରୀ ଶିକ୍ଷାର ପ୍ରସାର କରିଥିଲେ । ବହୁତ ସ୍କୁଲ୍ ବସାଇଥିଲେ । ମାଷ୍ଟ୍ରମାନଙ୍କର ଦରମା ବୃଦ୍ଧି କରିଦେଇଥିଲେ ଓ ସେମାନଙ୍କୁ ନୂତନ ପଦ୍ଧତିରେ ଶିକ୍ଷାଦାନ କରିବା ପାଇଁ ପ୍ରବର୍ତ୍ତାଉଥିଲେ । ସେମାନଙ୍କର ଟ୍ରେନିଂ ପାଇଁ ମଧ୍ୟ ବ୍ୟବସ୍ଥା କରୁଥିଲେ । ଜିଲ୍ଲାରେ କ୍ରମେ ପ୍ରାଥମିକ ଶିକ୍ଷା ବୃଦ୍ଧି ପାଇଲା ଏବଂ ତାଙ୍କ କାର୍ଯ୍ୟକାଳ ଭିତରେ କଟକ ଜିଲ୍ଲା ପ୍ରାଥମିକ ଶିକ୍ଷା ପ୍ରସାର କ୍ଷେତ୍ରରେ ଭାରତବର୍ଷରେ ଅତି ଉଚ୍ଚ ସ୍ଥାନ ଅଧିକାର କରିଥିଲା ।

ମଧୁବାବୁ ନିଜ କାର୍ଯ୍ୟର ସାର୍ଥକତାକୁ ଲକ୍ଷ୍ୟ କରି କହୁଥିଲେ, "ଗୋପାଳକୃଷ୍ଣ ଗୋଖଲେ ପ୍ରାଥମିକ ଶିକ୍ଷାର ପ୍ରସାର ପାଇଁ କେବଳ ବକ୍ତୃତା ଦେଉଥିଲେ । କିନ୍ତୁ ମୁଁ ପ୍ରାଥମିକ ଶିକ୍ଷାର ପ୍ରସାର କାର୍ଯ୍ୟ କରିଥିଲି, ବିଦ୍ୟାଳୟ ସଂଖ୍ୟା ବୃଦ୍ଧି କରିଥିଲି ଓ ଶିକ୍ଷକମାନଙ୍କୁ ଟ୍ରେନିଂ ଦେଇଥିଲି ।"

**ବ୍ୟାୟାମଶିକ୍ଷାର ପ୍ରସାର :** ଯେଉଁ ନାବାଳକମାନେ ଜେଲଦଣ୍ଡ ଭୋଗୁଥିଲେ, ସେମାନଙ୍କୁ ବ୍ୟାୟାମଶିକ୍ଷା ଦେବା ପାଇଁ ମଧୁବାବୁ ପ୍ରସ୍ତାବ ଦେଇଥିଲେ । ଜେଲ କର୍ତ୍ତୃପକ୍ଷ ତାହା ଗ୍ରହଣ କରି କାର୍ଯ୍ୟକାରୀ କରିଥିଲେ । ଏହି ବାଳକମାନେ ବ୍ୟାୟାମଶିକ୍ଷାରେ ଟ୍ରେନିଂ ପାଉଥିଲେ । ପ୍ରାପ୍ତବୟସ୍କ ହେବାମାତ୍ରେ ସେମାନଙ୍କୁ ମଧୁବାବୁ ଜିଲ୍ଲାବୋର୍ଡ଼ ସ୍କୁଲମାନଙ୍କରେ ବ୍ୟାୟାମ ଶିକ୍ଷକରୂପେ ନିଯୁକ୍ତ କରୁଥିଲେ । ଟ୍ରେନିଂପ୍ରାପ୍ତ ବ୍ୟାୟାମ ଶିକ୍ଷକ ରହିବାରୁ ବ୍ୟାୟାମଶିକ୍ଷାର ଅଗ୍ରଗତି ସମ୍ଭବ ହୋଇଥିଲା । ଛାତ୍ରମାନେ ଶୃଙ୍ଖଳାରକ୍ଷାର ଶିକ୍ଷା ପାଉଥିଲେ । ସ୍ୱାସ୍ଥ୍ୟ ଓ ଶୃଙ୍ଖଳାର ଆଦର ଗ୍ରାମମାନଙ୍କରେ ମଧ୍ୟ ବୃଦ୍ଧି ପାଉଥିଲା ।

କଟକ ଜିଲ୍ଲାବୋର୍ଡ଼ର ଭାଇସ୍-ଚେଆରମ୍ୟାନ ହିସାବରେ ମଧୁବାବୁ ବହୁତ ପରିଶ୍ରମ କରୁଥିଲେ । ସେ ଜିଲ୍ଲାର ବିଭିନ୍ନ ସ୍ଥାନକୁ ଯାଇ ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତି ବିଷୟରେ ତତ୍ତ୍ୱ ନେଉଥିଲେ । ତାଙ୍କର ଉପସ୍ଥିତି ଶିକ୍ଷକ, ସ୍ୱାସ୍ଥ୍ୟକର୍ମୀ, ଗ୍ରାମବାସୀ ପ୍ରଭୃତିଙ୍କ ଭିତରେ ଉତ୍ସାହ ଖେଳେଇଦେଉଥିଲା । ତାଙ୍କୁ ଦେଖିବାପାଇଁ ବହୁ ଲୋକ ରୁଣ୍ଡ ହେଉଥିଲେ ଏବଂ ତାଙ୍କର ବାକ୍ୟ ଅତିନ ଭଲି କାମ କରୁଥିଲା । ଯାହାକୁ ଯାହା କହୁଥିଲେ ତାହା ସେ କରୁଥିଲା । ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ ହୋଇ ନିଜର କର୍ତ୍ତବ୍ୟ କର୍ମ କରିବାକୁ ସେ

ସମସ୍ତଙ୍କୁ ଉପଦେଶ ଦେଉଥିଲେ । ସ୍ଥାନୀୟ ସରକାରୀ ଓ ବେସରକାରୀ ବ୍ୟକ୍ତିମାନେ ତାଙ୍କର ଉପଦେଶକୁ ବିଶେଷ ମାନ୍ୟ ଦେଖାଉଥିଲେ । ମଧୁବାବୁଙ୍କ ନାମର ଖ୍ୟାତି ସହିତ ସ୍ୱଶରୀରେ ଉପସ୍ଥିତି ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରି ଲୋକଙ୍କୁ ମନ୍ତ୍ରମୁଗ୍‌ଧବତ୍‌ ରଖିଦେଉଥିଲି ।

ମଧୁବାବୁ ସ୍ୱଚ୍ଛ ହୃଦୟରେ ଜନସେବା କରୁଥିବାରୁ ତାଙ୍କର ସେବାଆଦର୍ଶରେ ଅନୁପ୍ରାଣିତ ହୋଇ ବହୁ କର୍ମୀ ଅଣ୍ଟାଭିଡ଼ି କର୍ମକ୍ଷେତ୍ରକୁ ବାହାରିପଡ଼ୁଥିଲେ । ଜିଲ୍ଲାର ପ୍ରତ୍ୟେକ ପ୍ରାକୃତିକ ବିପର୍ଯ୍ୟୟରେ ବହୁ ଯୁବକଙ୍କୁ ସେବାକ୍ଷେତ୍ରକୁ ଟାଣିଆଣିବାର ସୌଭାଗ୍ୟ ମଧ୍ୟ ମଧୁବାବୁଙ୍କର ହୋଇଥିଲି । ତାଙ୍କୁ କର୍ମୀମାନେ ନେତା ହିସାବରେ ଓ ଓଡ଼ିଆ ଜାତିର ଜନକ ହିସାବରେ ମାନ୍ୟ କରୁଥିଲେ ।

ମଧୁବାବୁ ଗସ୍ତଖର୍ଚ୍ଚ ଜିଲ୍ଲାବୋର୍ଡରୁ ନେଇ ନଥିଲେ; ନିଜ ବ୍ୟୟରେ ଗସ୍ତ କରୁଥିଲେ । ତାଙ୍କ ଅମଳରେ ଜିଲ୍ଲାର ବିଦ୍ୟାଳୟ ଓ ଡାକ୍ତରଖାନା ସଂଖ୍ୟା ଖୁବ୍‌ ବୃଦ୍ଧି ପାଇଥିଲି । ପ୍ରାଥମିକ ବିଦ୍ୟାଳୟମାନଙ୍କର ଗୁରୁଙ୍କ ସଂଖ୍ୟାରେ ଉନ୍ନତି ଅତି ପ୍ରଶଂସନୀୟ ଥିଲି । ବେଳେ ବେଳେ ଏହା ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଅତି ଉଚ୍ଚସ୍ଥାନ ଅଧିକାର କରୁଥିଲି । ସରକାରୀ ଆର୍ଥିକ ସାହାଯ୍ୟରେ ଆଶା ନ ରଖି ମଧ୍ୟ ଅନେକ ସ୍ଥାନରେ ଗ୍ରାମବାସୀମାନେ ମଧୁବାବୁଙ୍କ କଥାରେ ପ୍ରଭାବିତ ହୋଇ ନୂତନ ବିଦ୍ୟାଳୟ ପ୍ରତିଷ୍ଠା କରୁଥିଲେ ଏବଂ ଶିକ୍ଷାର ପ୍ରସାର ଦିଗରେ ମଧ୍ୟ ଚେଷ୍ଟା କରୁଥିଲେ ।

କଲେରା, ବସନ୍ତ ପ୍ରଭୃତି ସଂକ୍ରାମକ ରୋଗର ନିରାକରଣ ପାଇଁ ତାଙ୍କର ଚେଷ୍ଟା ଊଣା ନଥିଲି । ସେ ବହୁ ସ୍ଥାନରେ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ଥାପନ କରି ସେବାମନୋଭାବର ପ୍ରସାର ପାଇଁ ଯଥୋପରୋନାସ୍ତି ଚେଷ୍ଟା କରୁଥିଲେ । ପ୍ରତିଷେଧକ ବ୍ୟବସ୍ଥାର ବ୍ୟାପକତା ଯୋଗୁଁ ସଂକ୍ରାମକ ରୋଗ ପ୍ରସାର ପ୍ରତିରୋଧ କରାଯାଇ ପାରୁଥିଲି ।

ଭାଇସ୍‌ ଚେଆରମ୍ୟାନରୂପେ ମଧୁବାବୁଙ୍କ ଭଳି ବିଚକ୍ଷଣ, ବୁଦ୍ଧିମାନ୍‌, ନିଃସ୍ୱାର୍ଥପର ସେବକ ଓ ଉଚ୍ଚକୋଟୀର ନେତା ମିଳିଯିବାରୁ ଚେଆରମ୍ୟାନ (ଜିଲ୍ଲା ହାକିମ) ଆଶ୍ୱସ୍ତ ମଣୁଥିଲେ । ବେସରକାରୀ ଭାଇସ୍‌-ଚେଆରମ୍ୟାନ ହିସାବରେ ମଧୁବାବୁ ଅତି ବିଚକ୍ଷଣ ଭାବରେ କାର୍ଯ୍ୟ ତୁଲାଉଥିବାରୁ କଲେକ୍ଟର-ଚେଆରମ୍ୟାନ ତାଙ୍କୁ ନିଜର ସବୁ କ୍ଷମତା ଅର୍ପଣ କରି ନିଶ୍ଚିନ୍ତ ରହିଥିଲେ । ସେ ମଧୁବାବୁଙ୍କ ଉପରେ ଏତେଦୂର ନିର୍ଭର କରୁଥିଲେ ଯେ ସେ ଜିଲ୍ଲାବୋର୍ଡର ମିଟିଂକୁ ମଧ୍ୟ ବହୁ ସମୟରେ ଆସୁନଥିଲେ । ଏହି କାରଣରୁ ତାଙ୍କୁ ସରକାର କୈଫିୟତ୍‌ ମଧ୍ୟ ମାଗିଥିଲେ । ଚେଆରମ୍ୟାନ୍‌ କୈଫିୟତ୍‌ ଦେଲେ ଯେ, ସେ ଜଣେ ବିଚକ୍ଷଣ ଭାଇସ୍‌-ଚେଆରମ୍ୟାନ୍‌ ପାଇଛନ୍ତି, ଯେ କି ନିଜ ବ୍ୟୟରେ ସମଗ୍ର ଜିଲ୍ଲା ଭ୍ରମଣ କରୁଛନ୍ତି ଏବଂ ଅତି କଠିନ ପରିଶ୍ରମ କରୁଛନ୍ତି । ସରକାରଙ୍କର ଯଦି ଇଚ୍ଛା ଥାଏ ଯେ ଲୋକଙ୍କ ମଧ୍ୟରେ ସ୍ୱାୟତ୍ତଶାସନ ଭାବନା ଖେଳୁ ତାହାହେଲେ ଭାଇସ୍‌-

ଚେଆର୍‌ମ୍ୟାନଙ୍କ କାର୍ଯ୍ୟରେ ବ୍ୟାଘାତ ଘଟାଇବା ଉଚିତ ନୁହେଁ । ସେ ବିନା ପ୍ରତିବନ୍ଧକରେ କାର୍ଯ୍ୟ କରିବା ଉଚିତ । ସେ ଯେଉଁ କାର୍ଯ୍ୟ କରୁଛନ୍ତି ତାହାପାଇଁ ତାଙ୍କୁ ପୂର୍ଣ୍ଣମାତ୍ରାରେ ପ୍ରଶଂସା କିମ୍ବା ନିନ୍ଦା ବହନ କରିବା ସୁବିଧା ମିଳିବା ଆବଶ୍ୟକ । ମୁଁ ଜାଣେ, ଥରେ ସ୍କୁଲ ଇନ୍‌ସପେକ୍ଟର ତାଙ୍କର ଗୋଟିଏ କାମକୁ ସମାଲୋଚନା କରିଥିଲେ ଏବଂ ଶିକ୍ଷାବିଭାଗର ଡିରେକ୍ଟର ଦୋଷ ଦେଲେ ଯେ ତାଙ୍କର କ୍ଷମତାର ବହିର୍ଭୂତ କାର୍ଯ୍ୟ ସେ କରିଛନ୍ତି । ଡିଭିଜନ୍‌ର କମିଶନର୍ ଭାଇସ୍-ଚେଆରମ୍ୟାନଙ୍କୁ କୈଫିୟତ୍ ମାଗିବାରୁ ସେ ଉତ୍ତରରେ ଲେଖିଲେ ଯେ ଡିଭିଜନାଲ୍ କମିଶନର୍‌ଙ୍କର କୈଫିୟତ୍ ମାଗିବାର କ୍ଷମତା ନାହିଁ ଏବଂ ଏ ସମ୍ବନ୍ଧରେ କମିଶନର୍ ସରକାରଙ୍କୁ ଜଣାଇ ତାଙ୍କର ମତାମତ ନେଉନ୍ତୁ । ଏହାର ଶେଷ ଫଳ ହେଲା ଯେ ଭାଇସ୍-ଚେଆରମ୍ୟାନ୍‌ଙ୍କୁ ଆଉ ସରକାରଙ୍କୁ କୈଫିୟତ୍ ଦେବାକୁ ପଡ଼ିଲା ନାହିଁ । ଚେଆର୍‌ମ୍ୟାନ୍ ଲେଖିଥିଲେ—

"Give a man a free hand and hold him responsible for the work. Let the man realise that he can earn either censure or praise and he will work. The situation will develop a public spirit, a spirit of self-sacrifice and energy and activity worthy of commendable discharge of duties."

"ଲୋକକୁ କାର୍ଯ୍ୟ କରିବା ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦିଅ ଏବଂ ତାକୁ ତା'ର କାର୍ଯ୍ୟ ପାଇଁ ଦାୟୀ ରଖ । ଲୋକଟି ଅନୁଭବ କରୁ ଯେ ସେ ନିନ୍ଦା କିମ୍ବା ପ୍ରଶଂସା ପାଇବ ଓ ସେ କାମ କରିବ । ଏହି ପରିସ୍ଥିତି ତାହା ଭିତରେ ତାହାର କାର୍ଯ୍ୟର ପ୍ରଶଂସନୀୟ ନିର୍ବାହର ଯୋଗ୍ୟ, ଦେଶାତ୍ମବୋଧ, ସେବାମନୋଭାବ, ଶକ୍ତି ଓ କର୍ମତତ୍ପରତା ଜାଗ୍ରତ କରିବ ।" ସ୍ୱାୟତ୍ତଶାସନ କାର୍ଯ୍ୟ ସମ୍ବନ୍ଧରେ ଏହି ଉକ୍ତିଟି ଯେ ମୂଲ୍ୟବାନ୍, ଏଥିରେ ସନ୍ଦେହ ନାହିଁ ।

୧୮୮୮ ଜାନୁଆରୀ ମାସରେ ମାନ୍ଦ୍ରାଜର କଂଗ୍ରେସ ଅଧିବେଶନ (୧୮୮୭ ଶେଷରେ ଅନୁଷ୍ଠିତ ହୋଇଥିଲା) ପରେ ସେ କଟକ ଫେରିଆସିଲେ । ଏହି ମାସରେ ଏକ ସାଧାରଣ ସଭା କରି କଂଗ୍ରେସ ପ୍ରସ୍ତାବାବଳୀ ଲୋକମାନଙ୍କୁ ବୁଝାଇଥିଲେ । ସର୍ବସାଧାରଣଙ୍କ ତରଫରୁ ମଧ୍ୟ ତାଙ୍କୁ ଅଭ୍ୟର୍ଥନା କରାଯାଇଥିଲା ।

ଏହି ବର୍ଷ ଉତ୍କଳ ସଭାର ଏକ ବୈଠକରେ ବନାରସ-କଲିକତା-ପୁରୀ ରେଲପଥ ନିର୍ମାଣ ପାଇଁ ଦାବି ହୋଇଥିଲା । ଏଥିରେ ମଧୁବାବୁ ପ୍ରଧାନ ଉଦ୍ୟୋକ୍ତା ଥିଲେ ।

**ଓଡ଼ିଶା ଗ୍ରାଜୁଏଟ୍ ଅଣ୍ଡର-ଗ୍ରାଜୁଏଟ୍ ସମିତି ଗଠନ** : ଖ୍ରୀ: ୧୮୮୮ ମାର୍ଚ୍ଚ ମାସ ୧୭ ତାରିଖରେ ଏକ ସାଧାରଣ ସଭାରେ ମଧୁବାବୁ ସଭାପତି ହୋଇଥିଲେ । ଏହି ସଭାରେ ଓଡ଼ିଶା ଗ୍ରାଜୁଏଟ୍ ଅଣ୍ଡର୍-ଗ୍ରାଜୁଏଟ୍ ସମିତି (Orissa Graduates

and Under-Graduates Association) ଗଠିତ ହୋଇଥିଲା । ଏହି ସମିତିର ଉଦ୍ଦେଶ୍ୟ ଥିଲା—(୧) ଓଡ଼ିଶାରେ ଶିକ୍ଷାର ପ୍ରସାର, (୨) ରାଜନୈତିକ, ସାମାଜିକ ଓ ସାହିତ୍ୟିକ ବିଷୟର ଚର୍ଚ୍ଚା ।

ମଧୁବାବୁ ଏହାର ପରବର୍ଷ ( ଖ୍ରୀ: ୧୮୮୯ ) ଜାନୁଆରୀ ମାସରେ ଏହି ସମିତିର ଏକ ସଭାରେ ଓଡ଼ିଶାର ଶିକ୍ଷିତ ଲୋକଙ୍କ ଲକ୍ଷ୍ୟ ଓ ଆକାଂକ୍ଷା ସମ୍ବନ୍ଧରେ ଛାତ୍ରମାନଙ୍କୁ ବୁଝାଇଥିଲେ । ଶିକ୍ଷିତ ଲୋକଙ୍କ ଦାୟିତ୍ୱ, ଜନସାଧାରଣଙ୍କର ଶିକ୍ଷା ଓ ବିଦ୍ୟାଳୟ ତ୍ୟାଗ ପରେ ଛାତ୍ରମାନଙ୍କର ଜନସେବାର ଆବଶ୍ୟକତା ବିଷୟରେ ଅଭିଭାଷଣ ଦେଇଥିଲେ ।

**ଫଏଜ୍ ଆମ୍ ସଭା ( ଖ୍ରୀ : ୧୮୮୮ ) :** ଖ୍ରୀ: ୧୮୮୮ ମାର୍ଚ୍ଚ ମାସ ୨୪ ତାରିଖରେ କଟକର କଦମ୍‌ରସୁଲଠାରେ ଏକ ସାଧାରଣ ସଭା ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । ସେଠାରେ 'ଫଏଜ୍ ଆମ୍' ସଭା ଗଠିତ ହୋଇଥିଲା । ହିନ୍ଦୁ ମୁସଲମାନ ସଦ୍‌ଭାବ ସମ୍ବନ୍ଧରେ ମଧୁବାବୁ ସୁନ୍ଦର ବକ୍ତୃତା ଦେଇଥିଲେ ଓ ଦେଶର ଉନ୍ନତି ନିମନ୍ତେ ବିଭିନ୍ନ ସଂପ୍ରଦାୟ ଭିତରେ ସଦ୍‌ଭାବ ରହିବା ନିତାନ୍ତ ଆବଶ୍ୟକ ଥିବା ବୁଝାଇଥିଲେ । ଏହି ସଙ୍ଗଠନର ସେ ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । ସାମ୍ପ୍ରଦାୟିକ ସଦ୍‌ଭାବ ବ୍ୟତିରେକେ ଭାରତର ତଥା ଓଡ଼ିଶାର ଉନ୍ନତି ଅସମ୍ଭବ ବୋଲି ସେ କହୁଥିଲେ । ଭାରତ ଶରୀରରେ ହିନ୍ଦୁ, ମୁସଲମାନ ଓ ଅନ୍ୟାନ୍ୟ ସମ୍ପ୍ରଦାୟଙ୍କୁ ଏକ ଏକ ଅଙ୍ଗ ସଙ୍ଗେ ତୁଳନା କରି ଏମାନଙ୍କ ଭିତରେ ଅସଦ୍‌ଭାବ ଓ ଅସହଯୋଗ ଘଟିଲେ କିପରି ଭାରତ ଶରୀର ମନୁଷ୍ୟ-ଶରୀର ପରି ଧ୍ୱଂସ ପାଇବ, ତାହାର ଦୃଷ୍ଟାନ୍ତ ଦେଉଥିଲେ ।

ଅପ୍ରେଲ ୭ ତାରିଖରେ ପ୍ରିଣ୍ଟିଂ କମ୍ପାନୀ ହଲ୍‌ରେ ଏକ ସଭାରେ ମଧୁବାବୁ ଉତ୍କଳ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ସମ୍ବନ୍ଧରେ ଦାବୀ କରିଥିଲେ ।

ଅଗଷ୍ଟ ୨୫ ତାରିଖରେ ଲେଡ଼ି ଟାମସନ୍ ମହିଳା ଡାକ୍ତରଖାନାର ସମ୍ପାଦକରୂପେ ମଧୁବାବୁ ନିଯୁକ୍ତ ହେଲେ ।

ନିଜ ବାସଭବନରେ ଏ ବର୍ଷ ବିଭିନ୍ନ ସମୟରେ ସଂଗୀତଜ୍ଞମାନଙ୍କର ବୈଠକ କରାଇ ସଂଗୀତର ପ୍ରଚାର ଓ ପ୍ରସାର କରିଥିଲେ ।

**ଲାଟଙ୍କଠାରେ ଦେଶମିଶ୍ରଣ ଦାବି ( ୧୮୮୮ ) :** ଖ୍ରୀ: ୧୮୮୮ ନଭେମ୍ବର ୨୪ ତାରିଖରେ ବଙ୍ଗ ପ୍ରଦେଶର ଲାଟ୍ ସାର୍ ଷ୍ଟୁଆର୍ଟ ବେଲି କଟକ ଆଗମନ କରିଥିଲେ । ତାଙ୍କ ସମ୍ବର୍ଦ୍ଧନା ପାଇଁ ଏକ ସଭା ଅନୁଷ୍ଠିତ ହୋଇଥିଲା । ମଧୁବାବୁ ଉତ୍କଳ ସଭାର ଉପସଭାପତିରୂପେ ଏକ ସ୍ମାରକପତ୍ର ଲାଟ୍‌ଙ୍କ ହସ୍ତରେ ଦେଇଥିଲେ । ସେଥିରେ ଏହି ବିଷୟଗୁଡ଼ିକର ଉଲ୍ଲେଖ ଥିଲା—(୧) ପୁରୀ ମନ୍ଦିରର ସୁପରିଚାଳନା, (୨) ଧୋଇ-ମରୁଡ଼ିର ପ୍ରତିକାର, (୩) ଜଙ୍ଗଲ ନିୟମାବଳୀ ପରିବର୍ତ୍ତନ, (୪) ଜଳକର ସମସ୍ୟା, (୫) ରେଳପଥ

ଓ ସୀମା ସଂପ୍ରସାରଣ, (୭) ବଙ୍ଗଳା, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ର କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ । ଏହା ଦେଶମିଶ୍ରଣ ଆନ୍ଦୋଳନର ଦ୍ୱିତୀୟ ପଦକ୍ଷେପ । ପ୍ରିଣ୍ଟିଂ କମ୍ପାନୀ ହଲରେ ଅନୁଷ୍ଠିତ ସଭାରେ ମଧୁବାବୁ ଦେଶମିଶ୍ରଣ ଦାବି ଓଡ଼ିଆଙ୍କ ପକ୍ଷେ ଜୀବନମରଣ ସମସ୍ୟା ବୋଲି କହିଥିଲେ । ଇଂରେଜମାନେ ରାଜନୈତିକ କାରଣରୁ ଓଡ଼ିଆ ଭୂଖଣ୍ଡ ଖଣ୍ଡ ଖଣ୍ଡ କରି ବିଭିନ୍ନ ପ୍ରଦେଶ ରଖିଲେ । ଏହି ପ୍ରଦେଶମାନଙ୍କର ସଂଖ୍ୟାଲଘୁ ହୋଇ ଏକ କୋଣରେ ପଡ଼ିରହିଲା । ଇଂରେଜ ସରକାର ଏଥିପାଇଁ ଦାୟୀ ଥିବାରୁ ଏହାର ସମାଧାନ ସେମାନେ ହିଁ କରିବା ଉଚିତ ।

**ନାଟକ ଅଭିନୟ ରଙ୍ଗମଞ୍ଚର ମୂଳଦୁଆ** ଓଡ଼ିଶାରେ ସେତେବେଳେ ବହୁ ଯାତ୍ରାଦଳ ଥିଲେ ମଧ୍ୟ ରଙ୍ଗମଞ୍ଚ ଓ ରଙ୍ଗମଞ୍ଚରେ ଅଭିନୟର ବ୍ୟବସ୍ଥା ଆଦୌ ନଥିଲା କହିଲେ ଚଳେ । ଗଡ଼ଜାତ ଓ ଗଞ୍ଜାମର ରାଜା ଜମିଦାରମାନେ ସ୍ୱ ସ୍ୱ ନଗରରେ ରଙ୍ଗମଞ୍ଚ ଓ ନାଟକ ଅଭିନୟ ପାଇଁ ଆବଶ୍ୟକୀୟ ଦଳ ଗଠନ ଇତ୍ୟାଦିରେ କିଛିଦୂର ଅଗ୍ରସର ହୋଇଥିଲେ । ସର୍ବସାଧାରଣଙ୍କ ଭିତରୁ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଉଦ୍ୟମ କେହି କରି ନଥିଲେ । ମଧୁବାବୁ ଏ ଅଭାବକୁ ଦୂର କରିବା ପାଇଁ କଟକରେ ତାଙ୍କ ବାସଭବନଠାରେ ସାମୟିକ ରଙ୍ଗମଞ୍ଚ ନିର୍ମାଣ କରି ନାଟକ ଅଭିନୟ କରାଉଥିଲେ । ତାଙ୍କ ସାନଭାଇ ଗୋପାଳବଲ୍ଲଭଙ୍କ ବିବାହବେଳେ ଗୋଟିଏ ଚମତ୍କାର ରଙ୍ଗମଞ୍ଚ ନିର୍ମାଣ କରିଥିଲେ । ଏଠାରେ ନାଟକ ଅଭିନୟ ଦେଖି ଶିକ୍ଷିତମାନେ ମଧ୍ୟ ମୁଗ୍ଧ ହୋଇଯାଇଥିଲେ ।

ମଧୁବାବୁଙ୍କ ରଙ୍ଗମଞ୍ଚରେ ରାମଶଙ୍କର ରାୟଙ୍କ 'ଯୁଗଧର୍ମ' ନାଟକଟି ସର୍ବପ୍ରଥମେ ଅଭିନୀତ ହୋଇଥିଲା । ପରେ ତାଙ୍କର ଆଉ କେତୋଟି ନାଟକ ମଧ୍ୟ ମଞ୍ଚସ୍ଥ ହୋଇଥିବାର ଜଣାଯାଏ । ମଫସଲରୁ ମଧ୍ୟ ନାଟକଦଳ ଆସି ଏଠାରେ ଅଭିନୟ ଦେଖାଉଥିଲେ । କଟକ ଜିଲ୍ଲାର ଦୀକ୍ଷିତପଡ଼ାର (ଅସୁରେଶ୍ୱର ନିକଟସ୍ଥ) ନାଟକଦଳ ଏଠାରେ ଅଭିନୟ ଦେଖାଇଥିଲେ । ଗୌରୀଶଙ୍କରବାବୁ ଦୀକ୍ଷିତପଡ଼ାର ଲୋକ । ମଧୁବାବୁଙ୍କ ମଞ୍ଚର ସଫଳତା ଦେଖି, ଏଥିରେ ଅନୁପ୍ରାଣିତ ହୋଇ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେବ କଟକର ମହାନଦୀ କୂଳ ଅଞ୍ଚଳରେ ଥିବା ତାଙ୍କ ନିବାସ ଭିତରେ ଏକ ରଙ୍ଗମଞ୍ଚ ନିର୍ମାଣ କରିଥିଲେ । ଏଠାରେ ମଧ୍ୟ ବହୁ ନାଟକ ଅଭିନୀତ ହୋଇଥିଲା ।

୧୮୮୭ ଡିସେମ୍ବର ୯ ତାରିଖ ଶନିବାର ରାତିରେ 'କଟକ ଆମେଚର୍ ଥିଏଟର'-ଦଳ 'ହରିଶ୍ଚନ୍ଦ୍ର' ନାଟକ ଅଭିନୟ କରିଥିଲେ ।

ଉତ୍କଳ ଦୀପିକା' ୧୮୮୮ ଜୁନ୍ ୨ ତାରିଖ ଶନିବାର ସଂଖ୍ୟାରେ ଲେଖିଥିଲେ— "ବାବୁ ମଧୁସୂଦନ ଦାସଙ୍କ କଲ୍ୟାଣରୁ ଏ ନଗରରୁ ନାଟଶାଳାର ଅଭାବ ବିଦୂରିତ ହେବାରୁ ଏଠା ସୌଖିନ-ଅଭିନୟ ଦର୍ଶକ ସମ୍ପ୍ରଦାୟ ନାଟ୍ୟାଭିନୟ ଦେଖାଇବାକୁ ଅଧିକ ତତ୍ପର ହେବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁ । ମଧୁବାବୁ ଯେପରି

ନାଟଶାଳାଟି ନିର୍ମାଣ ଏବଂ ନାନା ଦୃଶ୍ୟପଟରେ ରଞ୍ଜିତ କରିଅଛନ୍ତି ଏବଂ ବେସନାଇ ଇତ୍ୟାଦି ସକଳ ବିଷୟରେ ସୁବନ୍ଦୋବସ୍ତ କରିବାଦ୍ୱାରା ଯେମନ୍ତ ଉତ୍ସାହ ଦେଇଅଛନ୍ତି, ତହିଁରେ କିଛି କାଳ ସୁନ୍ଦରରୂପେ କାର୍ଯ୍ୟ ନିର୍ବାହ ହେବ ଏବଂ ବର୍ଷାକାଳରେ ସୁଦ୍ଧା ବ୍ୟାଘାତ ହେବନାହିଁ । ଅଭିନେତା ସମ୍ପ୍ରଦାୟ ମଧ୍ୟ ଯେମନ୍ତ ମନୋଯୋଗୀ ହୋଇଅଛନ୍ତି ତାହା ଆଶାପୂର୍ଣ୍ଣ ଅଟଇ । × × ।”

୧୮୮୮ ମଇ ୨୫ ତାରିଖ ଦିନ ମଧୁବାବୁଙ୍କ ରଙ୍ଗମଞ୍ଚରେ ‘କାଉଡାର୍କ୍ଲାପ୍ତ’ ନାଟକ ଓ ‘ବିବାହ ବିଭ୍ରାଟ’ ପ୍ରହସନ ଅଭିନୀତ ହୋଇଥିଲା । ଏହି ବର୍ଷ ନଭେମ୍ବର ୨୨ ତାରିଖ ଶନିବାର ରାତିରେ କଟକର ‘ଜଗନ୍ନାଥ ଥିଏଟର’ ଦଳ ‘ଆଦର୍ଶ ସତୀ’ ନାମକ ନାଟକ ଓ ‘ଭଣ୍ଡ ଦଳପତି ଦଣ୍ଡ’ ନାମକ ପ୍ରହସନ ଅଭିନୟ କରିଥିଲେ । ଦର୍ଶକମାନେ ଏହା ଦେଖି ଅତ୍ୟନ୍ତ ଆନନ୍ଦ ଅନୁଭବ କରିଥିଲେ ଏବଂ ମଧୁବାବୁ ବହୁ ଅର୍ଥ ବ୍ୟୟ କରି ରଙ୍ଗମଞ୍ଚଟି ନିର୍ମାଣ କରିଥିବାରୁ ତାଙ୍କୁ ଧନ୍ୟବାଦ ଦେଇଥିଲେ ।

୧୮୯୧ରେ ‘କଟକ ଆମେଚର୍ ଥିଏଟର’ ଦଳଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ କଲିକତାରୁ ବହୁ ଅର୍ଥ ବ୍ୟୟ କରି ମଧୁବାବୁ କେତେକ ଦୃଶ୍ୟ ଅଣାଇଥିଲେ । ନିଜ ବସା (ବିହାରୀବାଗ)ର ପଶ୍ଚାତ୍‌ଭାଗରେ ରଙ୍ଗଭୂମି ନିର୍ମାଣ କରିବାର ସୁବିଧା ମଧ୍ୟ କରିଦେଇଥିଲେ ଏବଂ ଯେତେବେଳେ ଇଚ୍ଛା ସେତେବେଳେ ଅଭିନୟ କରିବାକୁ ଅନୁମତି ଦେଇଥିଲେ । କିନ୍ତୁ ଏହି ବର୍ଷ ମଧୁବାବୁଙ୍କୁ ଏ ସ୍ଥାନଟି ମିଳିବା ସୁବିଧା ନହେବାରୁ ଆମେଚର୍ ଦଳ ବଡ଼ ଚିନ୍ତିତ ହୋଇପଡ଼ିଥିଲେ ।

**ଗୋପାଳବଲ୍ଲଭଙ୍କ ବିବାହ ଉତ୍ସବର ଆଡ଼ମ୍ବର :** ମଧୁବାବୁଙ୍କ କନିଷ୍ଠଭ୍ରାତା ଗୋପାଳବଲ୍ଲଭଙ୍କ ସହିତ କଟକ ଜିଲ୍ଲାର ଜୟପୁର ଗ୍ରାମନିବାସୀ ବିଖ୍ୟାତ ବାବୁ ନନ୍ଦକିଶୋର ଦାସଙ୍କ କନ୍ୟାଙ୍କର ଶୁଭପରିଣୟ ହୋଇଥିଲା (ଖ୍ରୀ: ୧୮୮୮) । ଏ ଉତ୍ସବରେ ମଧୁବାବୁ ଯୋଗଦେଇଥିଲେ । ମଧୁବାବୁ ଖ୍ରୀଷ୍ଟିଆନ୍ ହୋଇଥିଲେ ସୁଦ୍ଧା ଭାଇର ବିବାହ ଉତ୍ସବରେ ଯୋଗଦେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ଗୋପାଳଙ୍କ ପ୍ରତି ମଧୁଙ୍କର ଅତି ସ୍ନେହ ଥିବାରୁ ଏ ବିବାହ ଉତ୍ସବଟିକୁ ଅତି ଜାକଜକମରେ କରିବାପାଇଁ ସେ ଯତ୍ନ କରିଥିଲେ ଏବଂ ଏଥିରେ ବହୁ ଅର୍ଥ ମଧ୍ୟ ବ୍ୟୟ କରିଥିଲେ । ବାଇନାଚ, ବାଣଫୁଟା, ଗୋଟିପୁଅନାଚ ପ୍ରଭୃତି ଅତି ଆଡ଼ମ୍ବର ସହକାରେ ହୋଇଥିଲା ।

ଏହି ଉତ୍ସବଟି ‘ଉତ୍କଳ ଦୀପିକା’ ସାପ୍ତାହିକରେ ଖ୍ରୀ: ୧୮୮୮ ଏପ୍ରିଲ ୨୧ ତାରିଖ ସଂଖ୍ୟାରେ ଏହିପରି ବର୍ଣ୍ଣିତ ହୋଇଥିଲା—“ଏ ନଗରର ଅନ୍ତଃପାତୀ ସତ୍ୟଭାମାପୁର ନିବାସୀ ବାବୁ ରଘୁନାଥ ଦାସଙ୍କ କନିଷ୍ଠ ପୁତ୍ର ଗୋପାଳବଲ୍ଲଭ ଦାସଙ୍କ ଶୁଭବିବାହ ଜୟପୁର ନିବାସୀ ବିଖ୍ୟାତ ବାବୁ ନନ୍ଦକିଶୋର ଦାସଙ୍କ କନ୍ୟାଙ୍କ ସହିତ ଗତ ସୋମବାର ରାତିରେ ସମାଧାନ ହେଲା । ବାବୁ ଗୋପାଳବଲ୍ଲଭ ଦାସ ବର୍ତ୍ତମାନ ବାଲେଶ୍ୱରର ଜଣେ

ଡେପୁଟି କଲେକ୍ଟର ଅଛନ୍ତି । ଏହାଙ୍କ ଜ୍ୟେଷ୍ଠ ଭ୍ରାତା ଏବଂ ଏ ନଗରର ଜଣେ ପ୍ରଧାନ ଓକିଲ ବିଖ୍ୟାତ ବାବୁ ମଧୁସୂଦନ ଦାସ ଭ୍ରାତୃସ୍ନେହବଶରୁ ବହୁ ଆଡ଼ମ୍ବର ଓ ବ୍ୟୟରେ ଏ କାର୍ଯ୍ୟ ନିର୍ବାହ କରିଅଛନ୍ତି । ଗତ ଶନିବାର ଓ ରବିବାର ଏହି ଉପଲକ୍ଷ୍ୟରେ ସତ୍ୟଭାମା-ପୁରଠାରେ ଭାରି ମଜଲିସ୍ ଓ ଭୋଜି ହୋଇଥିଲା । କଟକର ପ୍ରଧାନ ବାଣବାଲା ସାମ ମହମ୍ମଦ ଏବଂ ପ୍ରଧାନ ରୋଷଣିବାଲା ଅମିର ଖାନ୍ ଆପଣା କାର୍ଯ୍ୟର ଭାର ନେଇଥିଲେ ଏବଂ ଏଠାର ପ୍ରଧାନ ଗାୟିକା ଲକ୍ଷ୍ମୀବାଈ ଏବଂ ଅନ୍ୟାନ୍ୟ ଅନେକ ନାଚୁଆ ଦଳ ଉପସ୍ଥିତ ଥିଲେ । × × ×

"ଗତ ଗୁରୁବାର ରାତିରେ ଏହି ଉପଲକ୍ଷ୍ୟରେ ଏ ନଗରରେ ମଧୁବାବୁଙ୍କ କୋଠିରେ ନାଟକ ଅଭିନୟ ଏବଂ କଲିକତାରୁ ଆନୀତ ବାଦ୍ୟକାର ଏବଂ ଖେମଟାବାଲୀଙ୍କ ବାଦ୍ୟନାଚ ଇତ୍ୟାଦି ବହୁ ଆଡ଼ମ୍ବରରେ ହୋଇଥିଲା । ନଗରବାସୀ, ଅନେକ ୟୁରୋପୀୟ ସ୍ତ୍ରୀ, ପୁରୁଷ ଏବଂ ଦେଶୀୟ ଭଦ୍ରଲୋକ ଆମନ୍ତ୍ରଣମତେ ଆସିଥିଲେ ଏବଂ ନାଟଶାଳା ଓ କୋଠାର ହତା ଏମନ୍ତ ସୁନ୍ଦରରୂପେ ସଜ୍ଜିତ ହୋଇଥିଲା ଯେମନ୍ତ କି ସଚରାଚର ଦେଖିବାରେ ଆସଇନାହିଁ । ସଂକ୍ଷେପରେ ସ୍ଥାନଟି ଇନ୍ଦ୍ରଭୁବନ ତୁଲ୍ୟ ହୋଇଥିଲା । ଏହି ବ୍ୟାପାରରେ ମଧୁବାବୁଙ୍କ ପ୍ରଶସ୍ତ ହୃଦୟକୁ ସମସ୍ତେ ପ୍ରଶଂସା କରୁଅଛନ୍ତି ।"

ତତ୍କାଳୀନ ବଡ଼ଲୋକ ଗୃହଚଳଣି ଭିତରେ ବେଶ୍ୟାନାଚ, ଗୋଟିପୁଅନାଚ, ଯାତ୍ରାଦି ପ୍ରଧାନ ସ୍ଥାନ ଅଧିକାର କରିଥିଲା । ଶିକ୍ଷିତ ସମାଜରେ ଏହା ଘୃଣ୍ୟ ବୋଲି ବିବେଚିତ ହେଉ ନଥିଲା । ବଡ଼ ବଡ଼ ଲୋକଙ୍କ ଭିତରେ କେତେକ ଦିନବେଳେ ଭଦ୍ରବ୍ୟକ୍ତି ଏବଂ ରାତିବେଳେ ମଦୁଆ ଓ ବେଶ୍ୟାସକ୍ତ ଥିଲେ । ବେଶ୍ୟାମାନଙ୍କୁ ନିଜ ଘରକୁ ଆଣୁଥିଲେ । ଏ ରୀତି କେତେକ ରାଜଦରବାରରେ ମଧ୍ୟ ପ୍ରଚଳିତ ଥିଲା । କଲିକତାର ଖ୍ୟାତନାମା ଜମିଦାର, ହାକିମହୁକୁମା, ଓକିଲ ପ୍ରଭୃତିଙ୍କ ଭିତରେ ଏ ନିଶା ଅତି ଉତ୍କଟ ଆକାର ଧାରଣ କରିଥିଲା । ଏହାର ପ୍ରଭାବ ରାଜଧାନୀରୁ ଦେଶର ବିଭିନ୍ନ ସ୍ଥାନକୁ ବ୍ୟାପିଥିଲା । ଇଂରେଜ ଅମଳ ପୂର୍ବରୁ ମୁସଲମାନ ରାଜତ୍ୱବେଳେ ମଧ୍ୟ ସର୍ବତ୍ର ଏହି ରୀତି ଥିଲା ।

ଏ ବିବାହ ଉତ୍ସବ ବେଳକୁ ମଧୁବାବୁଙ୍କ ବୟସ ପ୍ରାୟ ୪୦ ଏବଂ ସେ ବିପତ୍ନୀକ ଥିଲେ । କଟକରେ ଓକିଲାତି କରିବା ପ୍ରାୟ ସାତ ଆଠ ବର୍ଷ ହୋଇଯାଇଥିଲା ଏବଂ ସେ ସେତେବେଳକୁ ଖୁବ୍ ଖ୍ୟାତି ଲାଭ କରିସାରିଥିଲେ । ସର୍ବପ୍ରଥମ ଓଡ଼ିଆ ଏମ୍. ଏ. ବି. ଏଲ୍ ହୋଇଥିବାରୁ ଲୋକେ ତାଙ୍କୁ ବହୁତ ସମ୍ମାନ ପ୍ରଦର୍ଶନ କରୁଥିଲେ । ଓକିଲାତିରେ ତାଙ୍କର ଅନନ୍ୟସାଧାରଣ ପ୍ରତିଭା ପ୍ରକାଶିତ ହୋଇଥିବାରୁ ସେହି କ୍ଷେତ୍ରରେ ସେ କ୍ରମେ ଅପ୍ରତିଦ୍ୱନ୍ଦ୍ୱୀ ନେତାରୂପେ ଦଣ୍ଡାୟମାନ ହୋଇଥିଲେ । ଯଥେଷ୍ଟ ଅର୍ଥାଗମ ହେଉଥିଲା । ଭାଇ ପ୍ରତି ତାଙ୍କର ସ୍ନେହ ଏହି ଆଡ଼ମ୍ବରରୁ ସ୍ପଷ୍ଟଭାବରେ ପ୍ରକାଶିତ ହୋଇଛି । ମଧୁବାବୁଙ୍କ କନିଷ୍ଠଭ୍ରାତା ଗୋପାଳବଲ୍ଲଭ ଦାସଙ୍କ କନ୍ୟା ରମା ଦେବୀଙ୍କ ସହିତ କଟକର ଓକିଲ

ଶ୍ରୀ ଗୋକୁଳାନନ୍ଦ ଚୌଧୁରୀଙ୍କ ଜ୍ୟେଷ୍ଠପୁତ୍ର ଗୋପବନ୍ଧୁ ଚୌଧୁରୀଙ୍କର ବିବାହ ଉତ୍ସବ ଗୋପାଳବାବୁଙ୍କ ଗ୍ରାମ ସତ୍ୟଭାମାପୁରରେ ଅନୁଷ୍ଠିତ ହୋଇଥିଲା ।

୧୮୮୯ ଜାନୁଆରୀ ୧୯ ତାରିଖରେ 'ଓଡ଼ିଶା ଗ୍ରାଜୁଏଟ୍ ଅଣ୍ଡର ଗ୍ରାଜୁଏଟ୍ ସମିତି'ର ଏକ ବୈଠକରେ ଦେଶର ବିଭିନ୍ନ ସମସ୍ୟା ଓ ଛାତ୍ରମାନଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ମଧୁବାବୁ ଉପଦେଶ ଦେଇଥିଲେ ।

୧୮୮୯ ଫେବୃଆରୀ ମାସ ୧ ତାରିଖରେ 'ଉତ୍କଳ ସଭା'ର ଏକ ବୈଠକରେ ସଭାପତି ହୋଇ ମଧୁବାବୁ ଶାସନସଂସ୍କାର ସମ୍ବନ୍ଧରେ ଭାଷଣ ଦେଇଥିଲେ । ପ୍ରାଦେଶିକ ସଭାର ସଂପ୍ରସାରଣ ଓ ନିର୍ବାଚନ ପ୍ରଣାଳୀରେ ସଭ୍ୟ ମନୋନୟନ ବିଷୟ ଚର୍ଚ୍ଚା କରିଥିଲେ ।

ସେହି ବର୍ଷ ମାର୍ଚ୍ଚ ମାସରେ ପାରଳାଖେମୁଣ୍ଡିର ହିତୈଷିଣୀ ସମାଜ ମାନ୍ଦ୍ରାଜର ଓଡ଼ିଆ ଅଞ୍ଚଳମାନ କଚେରିରେ ଓଡ଼ିଆ ଭାଷା ପ୍ରଚଳନ କରିବା ନିମନ୍ତେ ମାନ୍ଦ୍ରାଜ ସରକାରଙ୍କଠାରେ ଯେଉଁ ଦାବି କରିଥିଲେ, ଉତ୍କଳ ସଭାର ସଭାପତି ମଧୁବାବୁ ତାହାକୁ ସମର୍ଥନ କରି ଭାରତ ସରକାରଙ୍କୁ ଲେଖିଥିଲେ ।

ନଭେମ୍ବର ମାସ ୧୧ ତାରିଖରେ ଉତ୍କଳସଭାର ଏକ ବୈଠକରେ ମଧୁବାବୁ ରାଜସ୍ୱ ବନ୍ଦୋବସ୍ତରେ ପ୍ରଜାମାନେ ଯେଉଁସବୁ ଅସୁବିଧା ଭୋଗ କରୁଛନ୍ତି ସେଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ଉପଯୁକ୍ତ ପ୍ରସ୍ତାବମାନ ମଧ୍ୟ ଦେଇଥିଲେ ।

**ଓକିଲଖାନାରେ ଅଭଦ୍ର ବ୍ୟବହାର :** ୧୮୮୧ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସରେ ମଧୁବାବୁ କଲିକତାରୁ ଆସି କଟକରେ ଓକିଲାତି ଆରମ୍ଭ କରିବାରୁ ଓଡ଼ିଆମାନେ ଖୁସି ହୋଇଥିଲେ । ସ୍ଥାନୀୟ ପତ୍ରିକା ତାଙ୍କୁ ସାଦର ଅଭ୍ୟର୍ଥନା ଜଣାଇଥିଲେ, "ଓଡ଼ିଶାର ପ୍ରଥମ ଏବଂ ଏ ପର୍ଯ୍ୟନ୍ତ ଏକମାତ୍ର ଏମ୍. ଏ, ବି. ଏଲ୍. ଉପାଧିଧାରୀ ବାବୁ ମଧୁସୂଦନ ଦାସ ଗତ ସପ୍ତାହରୁ ଏ ନଗରକୁ ଆସି ଏଠା ଅଦାଲତମାନଙ୍କରେ ଓକିଲାତି କରିବା ଆରମ୍ଭ କରିଅଛନ୍ତି । ଏଥିପୂର୍ବେ ଏ ମହାଶୟ ହାଇକୋର୍ଟର ଜଣେ ଅନୁବାଦକ ଥିଲେ ଏବଂ ଚବିଶପରଗଣାରେ ଓକିଲାତି କରିବା ଆରମ୍ଭ କରିଥିଲେ । ଏତେଦିନେ ଓଡ଼ିଶାର ଅଦାଲତରେ ଜଣେ ଶିକ୍ଷିତ ଉଚ୍ଚଶ୍ରେଣୀସ୍ଥ ଓକିଲ ଦେଖି ଆମ୍ଭେମାନେ ଆନନ୍ଦିତ ହେଲୁ ।" (ଉତ୍କଳ ଦୀପିକା ତା ୨୪ ସେପ୍‌ଟେମ୍ବର ଖ୍ରୀ: ୧୮୮୧) । ଏହି ଅଭିନନ୍ଦନଟିରେ ଆନନ୍ଦର କାରଣ ନିର୍ଦ୍ଦେଶ କରାଯାଇଛି, (୧) ମଧୁବାବୁ ଓଡ଼ିଶାର ପ୍ରଥମ ଏବଂ ଏପର୍ଯ୍ୟନ୍ତ ଏକମାତ୍ର ଏମ୍. ଏ., ବି. ଏଲ୍. ଉପାଧିଧାରୀ, (୨) ଓଡ଼ିଶାର ଅଦାଲତରେ ଜଣେ ଶିକ୍ଷିତ ଉଚ୍ଚଶ୍ରେଣୀର ଓକିଲରୂପେ ମଧୁବାବୁ ଦେଖାଦେଇଛନ୍ତି । ତାଙ୍କ ପୂର୍ବରୁ ମୁକ୍ତିଆର ଓ ଡିଗ୍ରୀବିହୀନ ଓକିଲ ଥିଲେ ।

ମଧୁବାବୁ ଖ୍ରୀଷ୍ଟିଆନ୍ ହେବା ପରେ ପ୍ରାୟ ୧୩ କି ୧୪ ବର୍ଷ ପର୍ଯ୍ୟନ୍ତ କଲିକତାରେ ରହିଥିଲେ । ସେତେବେଳେ ଯେଉଁ ହିନ୍ଦୁ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରୁଥିଲେ ସେମାନଙ୍କ

ପ୍ରତି କେତେ ଲୋକଙ୍କର ଘୃଣା ଥିଲା । ଏ ଭିତରେ କେତେକ ଉଚ୍ଚଶିକ୍ଷିତ ହିନ୍ଦୁ ମଧ୍ୟ ଥିଲେ । ମଧୁବାବୁ କଲିକତାରୁ କଟକ ଆସିବା ବେଳେ କେତେକ ଲୋକ ତାଙ୍କ ପ୍ରତି ଭଲ ବ୍ୟବହାର କରିନଥିଲେ । ଏ ସମ୍ବନ୍ଧରେ ଏକ ଘଟଣା ତାଙ୍କର ବନ୍ଧୁମାନେ କହନ୍ତି— କଟକରେ ବହୁ ଓକିଲ ପ୍ରାଚୀନପନ୍ଥୀ ହିନ୍ଦୁ-ବଙ୍ଗୀୟ-ବ୍ରାହ୍ମଣ ଥିଲେ । ମଧୁବାବୁ ଖ୍ରୀଷ୍ଟିଆନ୍ ହୋଇଥିବାରୁ ତାଙ୍କୁ ସ୍ପର୍ଶ କରିବା ମଧ୍ୟ ପାପ ବୋଲି କେହି କେହି ଭାବୁଥିଲେ । ଖ୍ରୀଷ୍ଟିଆନ୍ ଯେଉଁ ଗ୍ଲାସ୍‌ରେ ପାଣି ପିଇବ, ସେହି ଗ୍ଲାସ୍‌ରେ ଜଣେ ନୈଷ୍ଠିକ ହିନ୍ଦୁ କପରି ବା ପାଣି ପିଇବ ! ମଧୁବାବୁ ଓକିଲଖାନାରେ ବସିବାକ୍ଷଣି ସମସ୍ତେ ତାଙ୍କ ବିଷୟରେ ଗୁହିଁରହିଲେ । ତାଙ୍କର ଗୁଲିଚଳଣି ଲକ୍ଷ୍ୟ କରୁଥିଲେ । କାଳେ ଜାତି ଯିବ, ଏହି ଭୟରେ ତାଙ୍କ ପାଖରେ ବସିବାକୁ ମଧ୍ୟ ଘୃଣା କରୁଥିଲେ । ଦିନେ ମଧୁବାବୁ ପାଣି ପିଇବାକୁ ଗ୍ଲାସଟି ମାଗିଲେ । ମାତ୍ର ଚପରାସୀ ଦେଲାନାହିଁ, କାହିଁକି ନଦେଲା ବୋଲି ମଧ୍ୟ କେହି କହିଲେ ନାହିଁ । ଫଳରେ ମଧୁବାବୁ ପାଣି ପିଇପାରିଲେ ନାହିଁ ।

ସେତେବେଳେ ଓରଗନ୍ (Worgan) ସାହେବ ଜିଲା ଜଜ୍ ଥାଆନ୍ତି । ସେ ଏହି କଥା ଶୁଣିଲେ । ମଧୁବାବୁଙ୍କୁ ତାଙ୍କ ଅଫିସ କୋଠରିକୁ ଡାକି କହିଲେ, "ମି: ଦାସ, ଆପଣ ପାଣି ପିଇବାକୁ ପାଇଲେ ନାହିଁ ଶୁଣି ମୁଁ ବଡ଼ ଦୁଃଖିତ । ଆପଣ ପ୍ରତିଦିନ ମୋ ଅଫିସ୍ ରୁମ୍‌ରେ ଆସି ବସିବେ, ଏଠାରେ ପାଣି ପିଇବେ ।"

ମଧୁବାବୁ କିଛି ଦିନ ସେପରି କରିବାକୁ ବାଧ୍ୟ ହୋଇଥିଲେ । ଏହାର ଫଳ ଏହା ହେଲା, ମହୁକିଲମାନେ ଜାଣିଲେ ଯେ ମଧୁବାବୁଙ୍କୁ ହାକିମ ଅନ୍ୟ ଓକିଲମାନଙ୍କ ଅପେକ୍ଷା ବେଶି ଖାତିର କରନ୍ତି । ଓକିଲମାନେ ମଧ୍ୟ ଭୟ କଲେ, କାଳେ ମଧୁବାବୁ ସେମାନଙ୍କ ବିରୁଦ୍ଧରେ ସାହେବଙ୍କୁ କିଛି କହିଦେବେ; କ୍ରମେ ଏହି ଭୟ ବ୍ୟାପିଲା । ଯେଉଁମାନେ ବଡ଼ ବୋଲାଉଥିଲେ, ସେମାନେ କ୍ରମେ ମଧୁବାବୁଙ୍କ ସହିତ ମିଳାମିଶା କରିବାକୁ ଆରମ୍ଭ କଲେ, କ୍ରମେ ଜାତି ବିଚାର ଲୋପ ପାଇଲା ।

ମଧବାବୁ ଖ୍ରୀଷ୍ଟିଆନ୍ ସିନା ହୋଇଥିଲେ, କିନ୍ତୁ ସଙ୍କୀର୍ଣ୍ଣମନା ନ ଥିଲେ । ସେହି ସମୟରେ କେତେକ ସଙ୍କୀର୍ଣ୍ଣମନା ପାଦ୍ରୀଙ୍କ ପରି ସେ କେବେ ହିନ୍ଦୁ ଧର୍ମର କୁତ୍ସାରଟନା କରୁନଥିଲେ; ବରଂ କେହି ଖ୍ରୀଷ୍ଟିଆନ୍ ଏପରି କରୁଥିବାର ଦେଖିଲେ ତାକୁ ଭର୍ତ୍ସନା କରୁଥିଲେ ଏବଂ ସେଥିରୁ ନିବୃତ୍ତ କରାଉଥିଲେ । ଓଡ଼ିଶାର ସବୁ ପ୍ରାଚୀନ ମନ୍ଦିର, ଜଗନ୍ନାଥ ମନ୍ଦିର ଓ ଓଡ଼ିଆ ଜାତିର ପୂର୍ବ ଗୌରବ ପ୍ରତି ମଧୁବାବୁ ଏକାନ୍ତ ଅନୁରକ୍ତ ଥିବା ଦେଖି ଓକିଲ ଓ ମହୁକିଲମାନଙ୍କ ଧାରଣା ପରିବର୍ତ୍ତିତ ହୋଇଗଲା । କ୍ରମେ ମଧୁବାବୁଙ୍କୁ ସେମାନେ ଶ୍ରଦ୍ଧା ଓ ଭକ୍ତିପୂର୍ଣ୍ଣ ଚକ୍ଷୁରେ ଦେଖିବାକୁ ଆରମ୍ଭ କଲେ ଏବଂ ତାହାଙ୍କୁ ଜାତିର ଅଦ୍ୱିତୀୟ ନେତାରୂପେ ଗ୍ରହଣ କରିଥିଲେ ।

**ଲେଡ଼ି ଟାମ୍‌ସନ୍ ଡିସ୍‌ପେନ୍‌ସେରି :** ୧୮୮୬ରେ ଏହି ଦାତବ୍ୟ ଡାକ୍ତରଖାନାଟି କଟକର ରେଭେନ୍‌ସା କଲେଜ ଗୃହରେ ସ୍ତ୍ରୀମାନଙ୍କର ଚିକିତ୍ସା ନିମିତ୍ତ ସ୍ଥାପିତ

ହୋଇଥିଲା । ଏହି ଚିକିତ୍ସାଳୟଟି ପରେ ଲାଲବାଗରେ ନିର୍ମିତ ନୂତନ ଗୃହକୁ ଉଠିଆସିଲା । ମଧୁବାବୁ ଏ ଚିକିତ୍ସାଳୟର ସମ୍ପାଦକ ଥିଲେ । କଲିକତାର କାଉଣ୍ଟେସ୍ ଅଫ୍ ଡଫରିନ୍ ପାଣ୍ଠିରୁ ଚିକିତ୍ସାଳୟ ମାସିକ ସାହାଯ୍ୟ ପାଉଥିଲା ।

**ଲବଣକର ପ୍ରସ୍ତାବର ବିରୋଧ** ( ଖ୍ରୀ : ୧୮୮୮-୮୯ ) ଫେବୃଆରୀ ୧୧ ତାରିଖ ଦିନ କଟକର ମ୍ୟୁନିସିପାଲିଟି ହାଟଠାରେ ଏକ ବିରାଟ ସଭା ହୋଇଥିଲା । ଲବଣକର ସହିତ ସକଳ ଶ୍ରେଣୀର ଲୋକଙ୍କ ସମ୍ପର୍କ ଥିବାରୁ ବହୁଲୋକ ଉପସ୍ଥିତ ହୋଇଥିଲେ । କରଭାର ସମସ୍ତଙ୍କୁ ବାଧୁଥିବାରୁ ଜାତିବର୍ଣ୍ଣ-ନିର୍ବିଶେଷରେ ଲୋକେ ସମବେତ ହୋଇଥିଲେ ଏବଂ ପ୍ରତିକାର ଲୋଡ଼ିବାକୁ ବଦ୍ଧପରିକର ଥିଲେ । ବାବୁ କାଳିପଦ ବାନାର୍ଜୀ ସଭାପତି ହୋଇଥିଲେ । ପ୍ରଥମ ବକ୍ତା ଥିଲେ ମଧୁବାବୁ ।

ମଧୁସୂଦନ ଦାସ ଯେମନ୍ତ ସୁବକ୍ତା ତହିଁର ପରିଚୟ ଏଥି ପୂର୍ବେ ପାଠକମାନେ ପାଇଅଛନ୍ତି । ଓଡ଼ିଆ ଭାଷାରେ ବକ୍ତୃତା କରିବାର ତାହାଙ୍କର ଅଭ୍ୟାସ ନଥିବାରୁ ଭାଷାଗତ ତ୍ରୁଟି ମାର୍ଜନା କରିବା କାରଣ ପ୍ରାର୍ଥନା କରି କାଳୋଚିତ ସଦୁପଦେଶପୂର୍ଣ୍ଣ ସୁନ୍ଦର ବକ୍ତୃତାଟିଏ କଲେ । ତହିଁର ସାରମର୍ମ ଏହିକି—"ଭାରତବାସୀ ସମସ୍ତେ ଏକ ଦେଶୀୟ ହେବାରୁ ଭାଇ ଅଟନ୍ତି । ସମସ୍ତଙ୍କ ମଧ୍ୟରେ ଭ୍ରାତୃଭାବ ରହିବା ଉଚିତ । ଧନୀ ଓ ଗରିବ ମଧ୍ୟରେ କିଛି ପ୍ରଭେଦ ନାହିଁ । ବାସ୍ତବରେ ଗରିବମାନେ ଦେଶର ସ୍ତମ୍ଭ ହେଉଛନ୍ତି ଏବଂ ଯେ ସ୍ଥଳେ ଯେ ଦିଏ ସେ ଧନୀ ଓ ଯେ ନିଏ ସେ ନିର୍ଦ୍ଧନୀ । ସେ ସ୍ଥଳେ ଗରିବମାନେ କର ଦେଉଥିବା ଜମିଦାର ଓ ରାଜା ପ୍ରଭୃତି ତାହା ନେଇ ବଡ଼ଲୋକ ହେଉଥିବାରୁ ପ୍ରକୃତରେ ସେହିମାନେ ଧନୀ ଅଟନ୍ତି । ତାହାର ଯେଉଁ ଶକ୍ତି ଅଛି ତାହା ସେମାନେ ଜାଣି ନଥିବାରୁ ଆପଣାକୁ ଗରିବ ଓ ଅସହାୟ ଭାଳୁଛନ୍ତି । ଇଂରେଜରାଜ ଗରିବଙ୍କର ପ୍ରକୃତ ବନ୍ଧୁ । ପ୍ରଜାଙ୍କୁ କଷ୍ଟ ଦେବା ତାହାଙ୍କର ଅଭିପ୍ରାୟ ନୁହେଁ । ପ୍ରଜାମାନେ ସମବେତ ହୋଇ ଆପଣା ଦୁଃଖ ଜଣାଇଲେ ସେ ଅବଶ୍ୟ ତହିଁର ପ୍ରତିକାର କରିବେ । ଏକତ୍ର ହୋଇ ଦୁଃଖ ଜଣାଇବା ଓ ରାଜନୈତିକ ବିଷୟରେ ମତାମତ ପ୍ରକାଶ କରିବା ପ୍ରଜାଙ୍କର ଗୋଟିଏ ଭାରି ଅଧିକାର । ଏହି ଅଧିକାର ରାଜଭକ୍ତି ଅଥଚ ଦୃଢ଼ଭାବରେ ପ୍ରକାଶ କଲେ କଦାଚ ବ୍ୟର୍ଥ ହେବନାହିଁ । ରୋଗୀ ଆପଣାର ପୀଡ଼ା ବୃତ୍ତାନ୍ତ ନଜଣାଇଲେ ଯେମନ୍ତ ବୈଦ୍ୟ ତହିଁର ପ୍ରତିକାର କରିନପାରେ, ପ୍ରଜାମାନେ ଆପଣା ଦୁଃଖ ନଜଣାଇଲେ ରାଜାଙ୍କଦ୍ୱାରା ତହିଁର ପ୍ରତିକାର ହୋଇନପାରେ । ଇଂରେଜ ଗଭର୍ଣ୍ଣମେଣ୍ଟ କେତେବେଳେ ପ୍ରଜାପୀଡ଼କ ନୁହନ୍ତି ।"

ଲବଣକର ସମ୍ପର୍କରେ ସେ କହିଲେ, "ଭାରତବାସୀମାନେ ବିଲାତର ତୁଳନାରେ ଅତି ଗରିବ । ବିଲାତର ବାର୍ଷିକ ଆୟ ଟ ୩୦୦ ଙ୍କା; ମାତ୍ର ଭାରତବର୍ଷରେ ଟ ୨୦ ଙ୍କା ଅଟଇ । ଅଥଚ ବିଲାତରେ କରର ସମଷ୍ଟି ଶତକଡ଼ା ଟ ୮ ଙ୍କା ସ୍ଥଳେ ଭାରତବର୍ଷରେ ଟ ୧୭ ଙ୍କା ଲେଖାଏଁ ପଡ଼ୁଅଛି । ଭାରତବାସୀମାନେ ଗରିବ ହୋଇ ଏତେ ଅଧିକ କର

ଦେଉଥିବା ସ୍ଥଳେ ସେମାନଙ୍କ ଉପରେ ଆଉ ଗୋଟିଏ କର ଲଦିବା ନିତାନ୍ତ ଅନ୍ୟାୟ । ଲୁଣକର ନୂତନ କର ନହେଲେହେଁ ଯେତେବେଳେ ପୁରୁଣା ଘା ଉପରେ ଆଉ ଗ୍ଭେଟେ ବସିଲା ସେତେବେଳେ ଅନାୟାସ ନୂତନ ପୀଡ଼ା ବୋଲିଯାଇପାରେ । ଲବଣ ସମସ୍ତଙ୍କର ନିତ୍ୟ ପ୍ରୟୋଜନୀୟ ପଦାର୍ଥ । ପୁଣି, ଓଡ଼ିଶାରେ ପଖାଳଖିଆଳି ଅଧିକ ଥିବାରୁ ବହୁତ ଲୁଣ ଲୋଡ଼ା ହୁଏଇ । ଏପରି ଦେଶ ପ୍ରତି ଲବଣକର ଅଳ୍ପ ବଢ଼ିଲେ ସୁଦ୍ଧା ଅଧିକ ବାଧିବାର କଥା ।

"ଏପରି ଓଡ଼ିଶାର ନିମକମାହାଲ ବଙ୍ଗଳାରୁ ମାନ୍ଦ୍ରାଜକୁ ବଦଳି ହେବାରୁ ଏଠା ଲବଣ ପୋକ୍ତାନ ବନ୍ଦ ହୋଇ ଅନେକ ଲୋକଙ୍କର ରୋଜଗାର ବନ୍ଦ ହୋଇଅଛି । ଅତଏବ ସେ ପ୍ରସ୍ତାବ କଲେ କି ଲବଣକର ଊଣା କରିବା ଏବଂ ଓଡ଼ିଶାର ନିମକମାହାଲ ପୂର୍ବପ୍ରାୟ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ ରହି ଏଠାରେ ଲୁଣ ପୋକ୍ତାନ ହେବା ବିଷୟରେ ଗଭର୍ଣ୍ଣମେଣ୍ଟଙ୍କୁ ଆବେଦନପତ୍ର ଖଣ୍ଡେ ପଠାଯାଉ । ପ୍ରସ୍ତାବଟି ଗୃହୀତ ହୋଇଥିଲା ।" (ଉତ୍କଳଦୀପିକା ୨୮ । ୨ । ୮୮) ।

**ଅଭ୍ୟର୍ଥନା ସଭା** : ଭାରତ ଜାତୀୟ ସମିତିର ମାନ୍ଦ୍ରାଜଠାରେ ଖ୍ରୀ. ୧୮୮୭ ଡିସେମ୍ବରରେ ହୋଇଥିବା ତୃତୀୟ ଅଧିବେଶନରେ କଟକରୁ ଉତ୍କଳସଭାର ପ୍ରତିନିଧିରୂପେ ବାବୁ ମଧୁସୂଦନ ଦାସ ଓ ବାବୁ ଗୌରୀଶଙ୍କର ରାୟ ଯୋଗଦେଇଥିଲେ । ସେମାନେ କଟକରୁ ଜାହାଜଯୋଗେ ଯାଇଥିଲେ । ସେତେବେଳେ କଟକକୁ ଦକ୍ଷିଣ ଓ ଉତ୍ତରରୁ ରେଲଲାଇନ ଯାଇନଥିଲା । ଗଞ୍ଜାମର ଇଚ୍ଛାପୁର ପର୍ଯ୍ୟନ୍ତ ଜାହାଜରେ ଯାଇ ସେଠାରୁ ରେଲରେ ମାନ୍ଦ୍ରାଜ ଯାଉଥିଲେ । ଏ ଦୁହେଁ ମାନ୍ଦ୍ରାଜ ଅଧିବେଶନରେ ଯୋଗଦେଇ ଫେରିବା ପରେ ୧୮୮୮ ଜାନୁଆରୀ ୨୭ ତାରିଖ ରବିବାର ଦିନ ସେମାନଙ୍କୁ ସମ୍ବର୍ଦ୍ଧନା କରିବା ନିମନ୍ତେ କଟକର ପ୍ରିଣ୍ଟିଂ କମ୍ପାନୀ ଗୃହରେ ଏକ ସଭା ହୋଇଥିଲା । ବହୁ ଲୋକ ଉପସ୍ଥିତ ହୋଇଥିଲେ । ବାବୁ କାଳିପଦ ବାନାର୍ଜୀ ସଭାପତି ହୋଇଥିଲେ । ମଧୁବାବୁ ଇଂରେଜୀରେ ପ୍ରାୟ ଦେଢ଼ଘଣ୍ଟା କାଳ ଅନର୍ଗଳ ବକ୍ତୃତା କରି ଲୋକଙ୍କୁ ମୁଗ୍ଧ କରିଦେଇ-ଥିଲେ । ଇଂରେଜୀ ଭାଷା ଉପରେ ତାଙ୍କର ଦଖଲ, ବକ୍ତୃତା କରିବା ଭଙ୍ଗୀ ଓ କୌଶଳକୁ ସମସ୍ତେ ପ୍ରଶଂସା କରିଥିଲେ । ବକ୍ତୃତାଟି ଅତ୍ୟନ୍ତ ମନୋହାରୀ ହୋଇଥିଲା । ପ୍ରଥମେ ଇଂରେଜୀରେ ବକ୍ତୃତା ଦେଇ ପରେ ମଧୁବାବୁ ଓଡ଼ିଆରେ ତାହାର ମର୍ମ ବୁଝାଇ ଦେଇଥିଲେ ।

ମଧୁବାବୁ ତାଙ୍କ ବକ୍ତୃତା ଭିତରେ ସୟେଦ୍ ଆମେଦ୍ ହୋସେନ୍ ଲକ୍ଷ୍ନୌଠାରେ ଜାତୀୟ ସମିତି ବିରୁଦ୍ଧରେ ଯେଉଁ ବକ୍ତୃତା ଦେଇଥିଲେ ତାହା ଉଲ୍ଲେଖ କରି ସୟେଦଙ୍କ ଉକ୍ତିକୁ ନିଜ ଯୁକ୍ତି ବଳରେ ତନ୍ନ ତନ୍ନ କରି ଖଣ୍ଡନ କରିଦେଇଥିଲେ । ମଧୁବାବୁ କହିଥିଲେ, ମୁସଲମାନ ଧର୍ମର ଆଦିନେତା ମହମ୍ମଦ ନିଜେ ସ୍ୱାର୍ଥତ୍ୟାଗର ଚୂଡ଼ାନ୍ତ ଉଦାହରଣ ଦେଖାଇ ସେହି ଭିତ୍ତିରେ ମୁସଲମାନ ଧର୍ମ ସ୍ଥାପନ କରିଯାଇଅଛନ୍ତି । ତାଙ୍କର

ଧର୍ମାବଲମ୍ବୀ ହୋଇ ଆପଣାର ପୁଅ ନାତି ପୁତୁରାର ମଙ୍ଗଳବାଞ୍ଛା କରିବା ଅଧର୍ମ । ଏହି ଅଧର୍ମ ସ୍ୱାର୍ଥପ୍ରଣୋଦିତ ହୋଇ ସୟେଦ୍ ଆମେଦ ପ୍ରଭୃତି ପଞ୍ଚବିଂଶ କୋଟି ଭାରତବାସୀଙ୍କର ଉନ୍ନତି ମୂଳରେ କୁଠାରାଘାତ କରିବାକୁ ଯିବା ନିତାନ୍ତ ଦୁଃଖର ବିଷୟ । ଏପରି ବହୁ ବିଷୟରେ ସେ ସୁନ୍ଦର ଉଦାହରଣ ଦେଇ ବୁଝାଇଥିଲେ ।

ମଧୁବାବୁ ଇଂରେଜୀରେ ବକ୍ତୃତା ଦେଇଥିବାରୁ କଟକରେ ବାବୁ ଲଳିତ ମୋହନ ଚକ୍ରବର୍ତ୍ତୀ 'ସମ୍ପାଦକ' ପତ୍ରିକାରେ ଏକ ପତ୍ର ପ୍ରକାଶକରି ତୀବ୍ର ସମାଲୋଚନା କରିଥିଲେ । 'ସମ୍ପାଦକ'ରେ ପତ୍ରଟି ପ୍ରକାଶ କରିବା ସଙ୍ଗେ ସଙ୍ଗେ ଲଳିତବାବୁଙ୍କ ମନ୍ତବ୍ୟଗୁଡ଼ିକ କୁରୁଚି-ପୂର୍ଣ୍ଣ ଥିବା ସମ୍ପାଦକ ବ୍ୟକ୍ତ କରିଥିଲେ । 'ଉତ୍କଳଦୀପିକା'ରେ ଲଳିତବାବୁଙ୍କ ସମାଲୋଚନାକୁ ତୀବ୍ରଭାବରେ ବିରୋଧ କରାଯାଇଥିଲା । ଦୀପିକା ମନ୍ତବ୍ୟ କରିଥିଲେ ଯେ, "ଆମ୍ଭେମାନେ ଆକାଶରୁ ଲଳିତବାବୁଙ୍କ ଅଯଥା ଲେଖାରେ ମଧୁବାବୁ ଭ୍ରୂକ୍ଷେପ ନ କରି ବରଂ ସମଧିକ ପରିମାଣରେ ଦେଶହିତ ବ୍ରତରେ ଉତ୍ତେଜିତ ହେବେ । ତାହାଙ୍କଦ୍ୱାରା ସ୍ୱଦେଶ ଓ ବିଦେଶରେ ଓଡ଼ିଶାର ମାନ ରକ୍ଷାପାଇଅଛି ଏବଂ ଭବିଷ୍ୟତକୁ ଅନେକ ଆଶା ଅଛି ।" (ଉ.ଦୀ. ୧୧।୨।୧୮୮୮) ଦୀପିକାଙ୍କ ଭବିଷ୍ୟତ୍‌ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ ହୋଇଛି । ମଧୁବାବୁ ଓଡ଼ିଶାର ମାନରକ୍ଷାକାରକ, ପଥପ୍ରଦର୍ଶକ, ହୃଦୟବାନ୍ ନେତାରୂପେ ଆବିର୍ଭୂତ ହୋଇଛନ୍ତି ।

**ପୁରୀ-ବନାରସ ରେଳଲାଇନପାଇଁ ଦାବୀ ( ଖ୍ରୀ ୧୮୮୮ )** : ୧୮୮୮ ମାର୍ଚ୍ଚ ୨୩ ତାରିଖ ରବିବାର ଦିନ ଉତ୍କଳ ସଭାର ଏକ ବୈଠକ କଟକରେ ବସିଥିଲା । ସଭାର ସହକାରୀ ସଭାପତି ବାବୁ ମଧୁସୂଦନ ଦାସ ପ୍ରକାଶ କଲେ ଯେ ପୁରୀ-କଟକ ବନାରସ ରେଲବାଟ ହୋରମିଲର୍ କମ୍ପାନୀ ନିର୍ମାଣ କରିବା ଓ ଚଳାଇବାର ଭାର ନେଇଛନ୍ତି । ବଙ୍ଗଳା-ନାଗପୁର ରେଲଲାଇନ୍ ମଧ୍ୟ ଏ କମ୍ପାନୀ କରୁଛନ୍ତି । ସେହି କାର୍ଯ୍ୟ ଶେଷକଲା ଉତ୍ତାରୁ ଏ ରେଲବାଟରେ ହାତଦେବା ଉକ୍ତ କମ୍ପାନୀର ଇଚ୍ଛା; କିନ୍ତୁ ଏପରି ହେଲେ ଓଡ଼ିଶା ରେଲବାଟ ନିର୍ମାଣ ବହୁତ ଦିନ ପଛକୁ ପଡ଼ିଯିବ । ଏ କମ୍ପାନୀ ଏ ବାଟ ଶୀଘ୍ର ନ କଲେ, ଗଭର୍ଣ୍ଣମେଣ୍ଟ ଏହାଙ୍କୁ ନ ଦେଇ ଅନ୍ୟ କମ୍ପାନୀକୁ ଦେବେ ବୋଲି ପ୍ରକାଶ କଲେ, ଅଗତ୍ୟା ସେମାନେ ଶୀଘ୍ର କାର୍ଯ୍ୟାରମ୍ଭ କରିପାରନ୍ତି । ବଙ୍ଗଳା-ନାଗପୁର ରେଲବାଟ ଆଗେ ହେଲେ ଓଡ଼ିଶା ରେଲବାଟ ନିର୍ମାଣ କରିବାର ଅଧିକ ସୁବିଧା ହେବ, ଏ ବିଚାର ଯୁକ୍ତିସିଦ୍ଧ ନୁହେଁ; ବରଂ ସମୁଦ୍ରବାଟେ ରେଲବାଇ ରେଲର ଉପକରଣମାନ ଜାହାଜରେ ପୁରୀକୁ ଆଣି ସେଠାରୁ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ଅଧିକ ସୁବିଧା ହେବ । ପୁଣି କଟକରୁ ପୁରୀକି ଯିବା ନିମନ୍ତେ ଯାତ୍ରୀଙ୍କର ଅନ୍ୟ ଉପାୟ ନାହିଁ । ଏ ରେଲ ହେବା ସଙ୍ଗେ ସଙ୍ଗେ କମ୍ପାନୀର ଆୟ ହେବ ଏବଂ କଟକକୁ ସମୁଦ୍ର ଓ ନାଳବାଟେ ରେଲ ଉପକରଣମାନ ଆଣିବାର ସମ୍ପୂର୍ଣ୍ଣ ସୁବିଧା ଅଛି । ସୁତରାଂ ରେଲବାଟ ନିର୍ମାଣ ପକ୍ଷରେ କିଛି ଅସୁବିଧା ନାହିଁ । ଏହି ସବୁ ବିବେଚନାରେ ରେଲବାଟ ପାଇଁ ଶୀଘ୍ର ଗଭର୍ଣ୍ଣମେଣ୍ଟଙ୍କୁ ଆବେଦନ କରିବା ସକାଶେ ସଭା ପ୍ରସ୍ତାବ କରିଥିଲେ ।

ବନାରସ-ପୁରୀ ରେଲବାଟ ଅଥବା ତାହାର ଯେଉଁ ଅଂଶଟି କଟକ-ପୁରୀ ମଧ୍ୟରେ ଅଛି, ସେହି ଅଂଶଟି ଶୀଘ୍ର ନିର୍ମାଣ ହେବା ବିଷୟରେ ଉତ୍କଳ ସଭା ଗଭର୍ଣ୍ଣମେଣ୍ଟଙ୍କୁ ଯେଉଁ ଆବେଦନପତ୍ର ପଠାଇଥିଲେ, ତାହାର ଉତ୍ତର ଇଣ୍ଡିଆ ଗଭର୍ଣ୍ଣମେଣ୍ଟରୁ ଆସିଥିଲା । ସରକାର ଜଣାଇଥିଲେ ଯେ, ସେ ଓଡ଼ିଶାକୁ ରେଲବାଇ ସଂପ୍ରସାରଣ ଗୁରୁତ୍ୱ ଉପଲବ୍ଧି କରୁଛନ୍ତି । ଯଦି କୌଣସି ବେସରକାରୀ ଉଦ୍ୟମଦ୍ୱାରା ଏହା ସଂଘଟିତ ହେବା ଯୋଜନା ସରକାରଙ୍କଠାରେ ଉପସ୍ଥାପିତ ହୁଏ, ତାହାହେଲେ ସରକାର ତାହା ସହାନୁଭୂତି ସହିତ ଗ୍ରହଣ କରି ବିଚାର କରିବେ ।

ମଧୁବାବୁ ପୁଣି କହିଥିଲେ ଯେ, ଘରୋଇ ଉଦ୍ୟମର ସମ୍ଭାବନା ନ ଥିବାରୁ ଏହି ପ୍ରସ୍ତାବିତ ରେଲପଥ ନିର୍ମାଣର ଆଶା ନିକଟ ଭବିଷ୍ୟତରେ ନ ଥିବା ସ୍ପଷ୍ଟ ହେଉଛି । ଓଡ଼ିଶା ଗରିବ ଦେଶ ଥିବାରୁ ଏଥିରେ ଧନ ଖଟାଇବାକୁ କେହି ବାହାରିବେ ନାହିଁ । ରାୟପୁର-ପୁରୀ ଲାଇନ୍ ପାଇଁ କେବଳ ଅଢ଼େଇ କୋଟି ଟଙ୍କାରେ ଅଟକଳ ହୋଇଥିଲା । ଓଡ଼ିଶାରେ କଟକ-ପୁରୀ ରେଲପଥ ନିର୍ମାଣପାଇଁ ଅଳ୍ପ ଧନ ଲାଗିବ ନାହିଁ । ବର୍ତ୍ତମାନ ଓଡ଼ିଶାର ଯେଉଁ କିଛି ଉନ୍ନତି ହୋଇଅଛି, ତାହା ଗତ ଦୁର୍ଭିକ୍ଷର ମଙ୍ଗଳଫଳ ବୋଲିବାକୁ ହେବ; କିନ୍ତୁ ଘରୋଇ ଉଦ୍ୟମରେ ଏତେ ବଡ଼ କାର୍ଯ୍ୟ ନିର୍ବାହ ହେବାର ସମ୍ଭାବନା ନ ଥିବାରୁ ଭବିଷ୍ୟତ ବିପଦରୁ ଦେଶକୁ ରକ୍ଷାକରିବା ମଧ୍ୟ ପୂର୍ବପରି କଠିନ ହେବ ।

**ସ୍ୱାୟତ୍ତଶାସନର ଦାୟିତ୍ୱ : ଦାବୀର ରୂପରେଖ :** କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟିର ପରିଚାଳନାରେ ତ୍ରୁଟି ଦେଖାଯାଉଥିବାରୁ ତାହାର ବିଚାର ନିମନ୍ତେ ୧୮୮୮ରେ ଏକ ସଭା ଦୋଳଯାତ୍ରା ଭିତରେ କେନ୍ଦ୍ରାପଡ଼ାର ମେଳନ ପଡ଼ିଆ ନିକଟରେ ହୋଇଥିଲା । ବାବୁ ବଳରାମ ସଭାପତି ହୋଇଥିଲେ । ବାବୁ ମଧୁସୂଦନ ଦାସ, ବାବୁ ସୁଦର୍ଶନ ମହାନ୍ତି, ମୁନ୍‌ସି ଏକ୍‌ରାମ ଅଲି ପ୍ରଭୃତି ବକ୍ତୃତା ଦେଇଥିଲେ । ଉତ୍କଳ ସଭାର ଏକ ଶାଖା କେନ୍ଦ୍ରାପଡ଼ାରେ ସ୍ଥାପନ କରିବାପାଇଁ ଏମାନେ ପରାମର୍ଶ ଦେଇଥିଲେ । ମ୍ୟୁନିସିପାଲିଟିର ଅଭାବ ଅଭିଯୋଗ ସମ୍ପର୍କରେ କେତୋଟି ପ୍ରସ୍ତାବ ମଧ୍ୟ ଗୃହୀତ ହୋଇଥିଲା । ଏ ସମ୍ପର୍କରେ ଆଲୋଚନାବେଳେ ମଧୁବାବୁ କହିଥିଲେ, "ଭାରତବର୍ଷରେ ନାନାଜାତୀୟ ଧର୍ମାବଲମ୍ବୀ ଲୋକ ବାସ କରୁଥିଲେହେଁ ସମସ୍ତେ ଏକଶାସନାଧୀନ; ରାଜକାର୍ଯ୍ୟ କାର୍ଯ୍ୟର ଉଦ୍ଦେଶ୍ୟ ମଧ୍ୟ ଏକ । ଅତଏବ ସମସ୍ତେ ଭାଇ ଭାଇ । ଆମ୍ଭମାନଙ୍କର ଜନ୍ମଭୂମି ଭାରତ ଅତି ପ୍ରାଚୀନ ରାଜ୍ୟ । ଏକ ସମୟରେ ଏହା ରାମରାଜ୍ୟ ହୋଇଥିଲା; ଅର୍ଥାତ୍ ଲୋକେ ବଡ଼ ସୁଖରେ ବାସ କରୁଥିଲେ, ପ୍ରଜାଙ୍କର ଦୁଃଖ ନ ଥିଲା । ସେ ସମୟରେ ବିଲାତ ପ୍ରଭୃତି ଅନ୍ୟ ଦେଶର ଲୋକ ଅସଭ୍ୟ ଓ ପଶୁପରି ଥିଲେ । ବର୍ତ୍ତମାନ ଭାରତର ସେ ଅବସ୍ଥା ନାହିଁ । ଇଂରେଜଙ୍କ ଅମଳରେ ରେଳପଥ, ଡାକତାର ଇତ୍ୟାଦିର ଅନେକ ଉନ୍ନତି ହୋଇଅଛି ଏବଂ ଇଂରେଜମାନେ ପ୍ରଜାଙ୍କ ସୁଖସ୍ୱଚ୍ଛନ୍ଦତା ନିମିତ୍ତ ଅନେକ ଉପାୟ କରୁଛନ୍ତି । ଇଂରେଜ

ଜାତି ସ୍ୱଭାବତଃ ଦୟାଳୁ । ପ୍ରଜାଙ୍କର ଦୁଃଖ ସେମାନେ କେବେ ସହିପାରନ୍ତି ନାହିଁ । କେହି କେହି ହାକିମ ଇଂରେଜ ଜାତୀୟ ହୋଇ ପ୍ରଜାଙ୍କ ଦୁଃଖରେ ସହାନୁଭୂତି ପ୍ରକାଶ କରୁ-ନାହାନ୍ତି ବୋଲି ଇଂରେଜ ଜାତୀୟ ଲୋକଙ୍କୁ ଦୋଷ ଦିଆଯାଇ ନ ପାରେ । ସେ ସବୁ ବ୍ୟକ୍ତିଗତ ଦୋଷ । ପ୍ରଜାଙ୍କ ଦୁଃଖ ଜାଣିବା ନିମିତ୍ତ ଏଠାରୁ ବିଲାତ ପର୍ଯ୍ୟନ୍ତ ଡାକତାର ବସାଯାଇଛି । ମାତ୍ର ସେ ଡାକତାରରେ ଯେବେ ଆମ୍ଭମାନଙ୍କର ଦୁଃଖର ସମ୍ବାଦ ଇଂରେଜଜାତିଙ୍କ ପାର୍ଲିଆମେଣ୍ଟ ସଭାକୁ ଯାଉନାହିଁ, ତେବେ ସେ ଦୋଷ ଆମ୍ଭମାନଙ୍କର । ଆପଣା ଦୁଃଖ କି କେବେ ଆମେ ଡାକତାରରେ ପଠାଇ ଅଛୁ, ନା ଟେଲିଗ୍ରାମ୍ ବା ଜାହାଜରେ ଯାଇ ବ୍ୟକ୍ତ କରିଅଛୁଁ ? କାନ୍ଦିବା ଆମ୍ଭମାନଙ୍କର ଅଭ୍ୟାସ । ଘରେ ବସି ଅନେକ କାନ୍ଦୁଅଛୁ; ମାତ୍ର ସେଥିରେ କିଛି ଫଳ ହେବନାହିଁ । କେହି ତାହା ଜାଣିବେ ନାହିଁ । ସମସ୍ତେ ଏକତ୍ର ବସି ଉଚ୍ଚସ୍ୱରରେ କାନ୍ଦ, ଯେପରି ଇଂରେଜ ଜାତି ଓ ସର୍କାର ତାହା ଶୁଣିପାରିବେ । ତେବେ ଅବଶ୍ୟ ଆମ୍ଭମାନଙ୍କର ଦୁଃଖର ପ୍ରତିକାର ହେବ ।

"ଆଜି ମ୍ୟୁନିସିପାଲିଟି ଯୋଗୁଁ ଘଟିଥିବା ଦୁଃଖ ସକାଶେ ଏକତ୍ର ହୋଇଅଛୁଁ । ମାତ୍ର ଆମ୍ଭମାନଙ୍କର ଦୁଃଖ ଏହି ଗୋଟିଏ ନୁହେଁ । ଲବଣ, ନାଳ ଓ ହାକିମଙ୍କ କାର୍ଯ୍ୟ ଇତ୍ୟାଦି ଅନେକ ଦୁଃଖ ଅଛି । ସମସ୍ତେ ଏକତାସୂତ୍ରରେ ଆବଦ୍ଧ ହୋଇ ସଭା କରି ଦୁଃଖର ପ୍ରତିକାର ଲୋଡ଼ିବାକୁ ପ୍ରବୃତ୍ତ ହୁଅ, ଅବଶ୍ୟ ଫଳ ହେବ ।

"ମୁଁ ଆପଣମାନଙ୍କର ଚାକର । ଆପଣମାନେ ଯାହା କହିବେ, ତାହା କରିବାକୁ ପ୍ରସ୍ତୁତ ଅଛି; ମାତ୍ର ମୁଁ ଜଣକର ଚାକର ହେବନାହିଁ, ପଞ୍ଚଙ୍କର ଚାକର ହେବାକୁ ମୋର ଇଚ୍ଛା । ଆପଣମାନେ ସମସ୍ତେ ଏକତ୍ର ହୋଇ ମୋତେ ଆଦେଶ ଦେଲେ ମୁଁ ଯଥାସାଧ୍ୟ ତାହା ପାଳିବାକୁ ଚେଷ୍ଟା କରିବି ।

"ମୁଁ ଏଠାରେ ବୁଲି ଦେଖିଲି ଯେ ମ୍ୟୁନିସିପାଲିଟି ସମ୍ପର୍କରେ ଲୋକଙ୍କର ଅନେକ ଦୁଃଖ ଅଛି । ଯେଉଁମାନେ ଭିକ୍ଷାଦ୍ୱାରା ଦିନ କଟାଉ ଅଛନ୍ତି, ତାହାଙ୍କଠାରୁ ସୁଦ୍ଧା ଟିକସ ନିଆଯାଉଅଛି । ବିଲାତରେ ଭିକ୍ଷାଜୀବୀ ନାହାନ୍ତି ବୋଲି ସାହେବମାନେ ତାହା ବୁଝିପାରନ୍ତି ନାହିଁ । ଆପଣାର ଦୁଃଖ ଓ ଅଭାବ ନିର୍ଭୟରେ ସାହେବମାନଙ୍କୁ ଜଣାଇବା ଉଚିତ । ସମସ୍ତେ ଏକମେଳ ହୋଇ ଦୁଃଖ କହ; ଅବଶ୍ୟ ଶୁଣାଯିବ । ସାହସପୂର୍ବକ ଦୁଃଖ କହିବ । ଓଡ଼ିଆ ଧମକକୁ ଡରିବ ନାହିଁ । ଡରି ରହିଲେ କଦାଚ ଭଲ ହେବନାହିଁ । ନିର୍ଭୟରେ ଦୁଃଖ କହ । ଆମ୍ଭେ ଯଥାସାଧ୍ୟ ସାହାଯ୍ୟ କରିବୁ । କଟକରେ ଗୋଟିଏ ବଡ଼ ସଭା ଅଛି । ତୁମ୍ଭେମାନେ ଏଠାରେ ଗୋଟିଏ ଶାଖା ସଭା କର । ତାହାହେଲେ ସେଠାରେ ବିବେଚକ ଓ ଅନ୍ୟ ସମସ୍ତ ବ୍ୟକ୍ତିଙ୍କର ସାହାଯ୍ୟ ପାଇବ । ଜମିଦାର, ପ୍ରଜା, ହିନ୍ଦୁ, ମୁସଲମାନ, ବଡ଼ଲୋକ ଓ ଗରିବଙ୍କ ମଧ୍ୟରେ ସହାନୁଭୂତି ରହିଲେ ଅବଶ୍ୟ ଭଲ ହେବ । ସଭାଦ୍ୱାରା ସେପରି କାର୍ଯ୍ୟ ସାଧନ ହୋଇ ପାରିବ ।" ( ଉତ୍କଳ ଦୀପିକା ୩ । ୩ । ୧୮୮୮ )

**ମେଟକାଫ୍ ସାହେବଙ୍କୁ ବିଦାୟ ସମ୍ବର୍ଦ୍ଧନା :** ଓଡ଼ିଶାର କମିଶନର ମେଟ୍‌କାଫ୍ ସାହେବ ପୀଡ଼ିତ ହେବାରୁ ବିଲାତ ଯିବା ଉଦ୍ଦେଶ୍ୟରେ ଏଠାରୁ ବିଦାୟ ନେଲେ । ୫ ତାରିଖ ମାର୍ଚ୍ଚ (୧୮୮୮) ରେ ମଧୁବାବୁ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେଇଥିଲେ । ତାଙ୍କ ନିଜ କୋଠିରେ ଗୋଟିଏ ବଡ଼ ମଜଲିସ୍ ହୋଇଥିଲା । ସମସ୍ତ ପ୍ରକାର ବନ୍ଦୋବସ୍ତ ଅତି ମନୋହର ହୋଇଥିଲା । ସାଜସଜ୍ଜାରେ ଓ ଭୋଜନରେ ବହୁ ଅର୍ଥ ବ୍ୟୟ ହୋଇଥିଲା । ମେଟ୍‌କାଫ୍ ସାହେବ ମଧୁବାବୁଙ୍କର ଜଣେ ବନ୍ଧୁ ଥିଲେ । ସେହି କାରଣରୁ ସେ ଏତେ ଆଡ଼ମ୍ବରରେ ସମ୍ବର୍ଦ୍ଧନା କରିଥିଲେ । ମଧୁବାବୁ ଏହି ସମ୍ବର୍ଦ୍ଧନାରେ କଥାବାର୍ତ୍ତାରେ ପ୍ରକାଶ କରିଥିଲେ ଯେ ଇଂରେଜମାନଙ୍କ ମଧ୍ୟରେ ତାଙ୍କର ଏପରି ଅନେକ ବନ୍ଧୁ ଅଛନ୍ତି, ଯାହାଙ୍କୁ ସେ ପିତାମାତାପରି ସ୍ନେହ କରନ୍ତି । ସମ୍ବର୍ଦ୍ଧନା ଭାଷଣରେ (ଇଂରେଜୀରେ) ସେ ପୁଣି କହିଥିଲେ, "ଯେଉଁ ଇଂରେଜମାନେ ଆମ୍ଭର ଦେଶ ପ୍ରତି ଅନୁରାଗ ପ୍ରକାଶ କରନ୍ତି, ଆମ୍ଭେ ସେମାନଙ୍କୁ ପିତାମାତାପରି ସ୍ନେହ ଓ ଆଦର କରୁଁ ।"

**ହିନ୍ଦୁ-ମୁସଲମାନ ସମ୍ପର୍କ :** ୧୮୮୮ ମାର୍ଚ୍ଚ ମାସ ୨୩ ତାରିଖ ରବିବାର ଦିନ କଟକର ଯେଉଁ "ଫଏଜ୍ ଆମ୍" ସଭାର ବୈଠକ କଟକ ପ୍ରିଣ୍ଟିଂ ଗୃହରେ ଅନୁଷ୍ଠିତ ହୋଇଥିଲା, ସେଥିରେ ମଧୁବାବୁ ସଭାପତି ହୋଇଥିଲେ । ମଧୁବାବୁ ପ୍ରାୟ ଏକଘଣ୍ଟାକାଳ ବକ୍ତୃତା ଦେଇଥିଲେ । ସେ ବକ୍ତୃତା ଭିତରେ କହିଲେ, "ମୁସଲମାନମାନେ ଚିରକାଳ ନିମିତ୍ତ ଭାରତବର୍ଷରେ ରହିବାରୁ ହିନ୍ଦୁଙ୍କର ଭାଇସ୍ୱରୂପ ହୋଇଅଛନ୍ତି । ଏକ ରାଜା ଅଧୀନରେ ଏକ ନିୟମରେ ଶୃଙ୍ଖଳିତ ହେଉଥିବାରୁ ସାଧାରଣରେ କିଛି ପ୍ରଭେଦ ନାହିଁ । ହିନ୍ଦୁର ଯେ ଅଭାବ, ତାହା ମୁସଲମାନର ଅଭାବ ଓ ମୁସଲମାନର ଅଭାବ ମଧ୍ୟ ହିନ୍ଦୁର ଅଭାବ । ଅତଏବ ଦେଶର ଅଭାବ ଦୂରକରିବା ନିମନ୍ତେ ସମସ୍ତଙ୍କୁ ମିଳିମିଶି କାର୍ଯ୍ୟ କରିବାକୁ ହେବ । ମୁସଲମାନମାନେ ପୃଥିବୀର ନାନା ଦେଶରେ ରାଜତ୍ୱ କରିଅଛନ୍ତି । ଅତଏବ ଅନ୍ୟଙ୍କ ସହିତ ମିଶିବାର କୌଶଳ ସେମାନେ ଭଲ ଜାଣନ୍ତି । ହିନ୍ଦୁ ସ୍ୱରାଜ୍ୟର ବାହାରକୁ ଯାଇ ନ ଥିବାରୁ ସେ ବିଗରେ ଟିକିଏ ଊଣା ।" କଂଗ୍ରେସ ଓ ସଏଦ୍ ଅହମଦ୍‌ଙ୍କ କଥାର ଉଲ୍ଲେଖ କରି ସେ କହିଲେ ଯେ, ସେ ଆପଣା ଭାଇବିରାଦରଙ୍କୁ ସରକାରୀ ଚାକିରି ଦେବା ନିମିତ୍ତ ସାହେବଙ୍କ ଖୋସାମଦରେ ଅଛନ୍ତି; ମାତ୍ର ସେମାନେ ବିଚାର କରିବା ଉଚିତ ଯେ ସମସ୍ତ ମୁସଲମାନମାନେ ସରକାରୀ ଚାକିରି ପାଇପାରିବେ ନାହିଁ । ଅଧିକାଂଶ ଲୋକ ଅନ୍ୟ ଉପାୟରେ ଜୀବିକା ନିର୍ବାହ କରିବେ । ଅତଏବ ସମସ୍ତଙ୍କର ଯହିଁରେ ମଙ୍ଗଳ ହେବ, ତାହା କରିବା ଉଚିତ । ଇଂରେଜମାନଙ୍କର ଏ ଦେଶ ପ୍ରତି ମମତା ନ ଜନ୍ମିବାର କେତେକ କାରଣ ସେ ଦର୍ଶାଇଥିଲେ । ସେମାନଙ୍କ ସହିତ ସଦ୍‌ଭାବ ରଖିବା ଆବଶ୍ୟକ ବୋଲି ସେ କହିଥିଲେ । ବଙ୍ଗାଳୀମାନଙ୍କଦ୍ୱାରା ଅନେକ ଉପକାର ହୋଇଅଛି । ମାତ୍ର ଇଂରେଜ ସହିତ ଏ ଦେଶୀୟଙ୍କର ବିଚ୍ଛେଦ ଜନ୍ମାଇବାଭଳି ଗୋଟିଏ ମହା ଅପକାର ସେମାନେ କରୁଅଛନ୍ତି । ଏ ପ୍ରଦେଶର ହିନ୍ଦୁ ଓ ମୁସଲମାନମାନଙ୍କର ଐକ୍ୟ ବିଷୟରେ

କେତେକ ଉଦାହରଣ ଦେଇ ସେ ଆପଣା ପକ୍ଷରୁ କହିଲେ ଯେ ମୁସଲମାନମାନଙ୍କର ସେବାରେ ସେ ସର୍ବଦା ନିଯୁକ୍ତ ହେଲେ ସୁଖୀ ହେବେ ଏବଂ ତାହାଙ୍କ ସାଧ୍ୟାନୁସାରେ ସେମାନଙ୍କୁ ସାହାଯ୍ୟ କରିବାକୁ ତ୍ରୁଟି କରିବେ ନାହିଁ ।

**ଓଡ଼ିଶା ପେଟ୍ରିୟଟ୍ :** ୧୮୮୮ରେ 'ଓଡ଼ିଶା ପେଟ୍ରିୟଟ୍' ନାମରେ ଏକ ଇଂରେଜୀ ପତ୍ରିକା କଟକରୁ ବର୍ଷର ପ୍ରଥମାର୍ଦ୍ଧରେ ବାବୁ କାଳୀପଦ ବନ୍ଦୋପାଧ୍ୟାୟଙ୍କ ସମ୍ପାଦକତ୍ୱରେ ପ୍ରକାଶ ପାଇଥିଲା । ଏହି ପତ୍ରିକା ସହିତ 'ସଂସ୍କାରକ ଓ ସେବକ' ପତ୍ରିକାଟି ଯୋଗ ହୋଇଯାଇଥିଲା । ସଂସ୍କାରକ ଓ ସେବକ ପତ୍ରିକାଟି ବାମଣ୍ଡା ରାଜାଙ୍କ ଆର୍ଥିକ ଆନୁକୂଲ୍ୟରେ ପ୍ରକାଶିତ ହେଉଥିବା ଜଣାଯାଏ । ଇଂରେଜୀ ପତ୍ରିକାଟି ବାହାରିବାପରେ କେହି କେହି ଅନୁମାନ କରୁଥିଲେ ଯେ ମଧୁବାବୁ ଏହାର ପୃଷ୍ଠପୋଷକ ଏବଂ ତାଙ୍କର ଉତ୍ସାହ ଓ ଆର୍ଥିକ ସାହାଯ୍ୟରେ ପ୍ରକାଶ ପାଉଛି । ଅନୁମାନଟି ମଧୁବାବୁଙ୍କ ବିରୁଦ୍ଧରେ ଯାଉଥିବାରୁ ଏବଂ ଏହା ଗୁଜବରୁ ପ୍ରଚୁର ଆକାର ଧାରଣ କରିବାରୁ ସେ ଏହା ଅସ୍ୱୀକାର କରି ଇଂରେଜୀରେ ଏକ ପତ୍ର 'ଉତ୍କଳ ଦୀପିକା'ରେ ମଇ ୧୫ ତାରିଖରେ ପ୍ରକାଶ କରାଇଥିଲା ।

**ମହାସମିତି (କଂଗ୍ରେସ)ର ପ୍ରାଦେଶିକ ଶାଖା ( ଖ୍ରୀ : ୧୮୮୮)**—୧୮୮୮ ଅକ୍ଟୋବର ୨ ତାରିଖ ଦିନ 'ଉତ୍କଳ ସଭା'ର ଏକ ଅଧିବେଶନ ସହକାରୀ ସଭାପତି ଶ୍ରୀ ମଧୁସୂଦନ ଦାସଙ୍କ ସଭାପତିତ୍ୱରେ ବସିଥିଲା । ଆଗାମୀ ପ୍ରଦେଶୀୟ ଓ ମହାସମିତି-ମାନଙ୍କରୁ ପ୍ରତିନିଧି ନିର୍ବାଚନ କରିବା ବିଷୟ ଆଲୋଚିତ ହୋଇଥିଲା । ମଧୁବାବୁ ଜଣାଇଥିଲେ ଯେ "ଗତବର୍ଷ ଡିସେମ୍ବରରେ ମାନ୍ଦ୍ରାଜରେ ମହାସମିତି ବସିଥିଲା ଏବଂ ସେତେବେଳେ ପ୍ରଦେଶୀୟ ସମିତିର କଳ୍ପନା ହୋଇଅଛି । ମହାସମିତିରେ ସମସ୍ତ ଭାରତବର୍ଷର ଅଭାବ ଓ ଦୁଃଖର ଚର୍ଚ୍ଚା ହୁଏ; କିନ୍ତୁ ପ୍ରଦେଶର ଦୁଃଖ ଓ ଅଭାବର ଚର୍ଚ୍ଚା ହୁଏନାହିଁ । ଏହା କରିବାକୁ ହେଲେ ପ୍ରଦେଶବିଶେଷର କେଉଁ ଦୁଃଖ ବା ଅଭାବ ଗୁରୁତର, ତାହା ଆଗେ ଆପଣା ମଧ୍ୟରେ ସ୍ଥିର କରିବାକୁ ହେବ ଏବଂ ମହାସମିତିରେ ଉପସ୍ଥାପିତ ହେବ । ଅତଏବ ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଲେଖାଏଁ ପ୍ରଦେଶୀୟ ସମିତି ହେବାର ବିଚାର ହୋଇଛି । ଏହି ଅନୁସାରେ ବଙ୍ଗ ପ୍ରଦେଶୀୟ ସମିତିର ଅଧିବେଶନ ହେବାର ଧାର୍ଯ୍ୟ ହେଲା । ବଙ୍ଗଳାର ପ୍ରଥମ ପ୍ରଦେଶୀୟ ସମିତି ଅକ୍ଟୋବର ମାସ ୨୫, ୨୬, ୨୭ ତାରିଖରେ ବସିବ । ଏଥିରେ ଖାସମହାଲ, ଅବକାରୀ, ପୋଲିସ, ଆସାମ କୁଲିଙ୍କ ଅବସ୍ଥା ଇତ୍ୟାଦି ବିଷୟରେ ବିଚାର ହେବ । ଉତ୍କଳର ପ୍ରତିନିଧିମାନେ ସେଠାରେ ଉତ୍କଳ ପ୍ରସଙ୍ଗ ଉଠାଇବେ । ବିଶେଷତଃ ଓଡ଼ିଶାରେ ଦେଖାଦେଇଥିବା ଦୁର୍ଭିକ୍ଷ କଥା ବିଚାର ହେବ ।" ବାବୁ ମଧୁସୂଦନ ଦାସ, ଜଗମୋହନ ରାୟ, ବାବୁ ବିପିନବିହାରୀ ମିତ୍ର, ଲାଲବିହାରୀ ଘୋଷ, ଜାନକୀନାଥ ବୋଷ ପ୍ରଭୃତି ପ୍ରତିନିଧିମାନେ ନିର୍ବାଚିତ ହେଲେ । ଦୁର୍ଭିକ୍ଷ ସାହାଯ୍ୟ ବଣ୍ଟନ କରିବା ଏହି ସଭାରେ ସ୍ଥିର ହୋଇଥିଲା । ସମଗ୍ର ବଙ୍ଗ ପ୍ରଦେଶ ପାଇଁ

ଏକ ପ୍ରଦେଶୀୟ ସମିତି ଗଠିତ ହେବା ସ୍ଥିର ହୋଇଥିଲା । ଉତ୍କଳ ବଙ୍ଗପ୍ରଦେଶର ଅଂଶବିଶେଷ ହୋଇଥିଲେ ମଧ୍ୟ ଏହା ପ୍ରାକୃତିକ ଓଡ଼ିଶାରେ କଂଗ୍ରେସର ଶାଖା-ସମିତି-ରୂପେ କାର୍ଯ୍ୟ କରୁଥିଲା; ପ୍ରତିନିଧି ମଧ୍ୟ ପଠାଉଥିଲା । (ଉ. ଦୀ. ୬ । ୧୦ । ୮୮)

ଏହାକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଆନ୍ଦୋଳନର ଏକ ବଳିଷ୍ଠ ପଦକ୍ଷେପ ବୋଲିବାକୁ ହେବ ।

**ନାଟ୍ୟଶାଳାର ଉନ୍ନତି**—ମଧୁବାବୁ କଟକରେ ନାଟ୍ୟଶାଳାର ଅଭାବ ଦୂର କରିବା ନିମନ୍ତେ ନିଜ ବାସଭବନ ହତାଭିତରେ ଯେଉଁ ନାଟ୍ୟଶାଳା ନିର୍ମାଣ କରିଥିଲେ, ତାହାକୁ ସେ ନାନା ଦୃଶ୍ୟପଟରେ ରଞ୍ଜିତ କରିଥିଲେ । ସେଥିରେ ରୋସନାଇ ଇତ୍ୟାଦି ସକଳ ବିଷୟର ସୁବନ୍ଦୋବସ୍ତ କରାଯାଇଥିଲା । ସେ ଯେଉଁ ଉତ୍ସାହ ଦେଇଥିଲେ, ତହିଁରେ କିଛିକାଳ ସୁନ୍ଦରରୂପେ କାର୍ଯ୍ୟନିର୍ବାହ ହୋଇଛି ଏବଂ ବର୍ଷାକାଳରେ ସୁଦ୍ଧା ବ୍ୟାଘାତ ସୃଷ୍ଟି ହୋଇନାହିଁ । ସୌଖୀନ ଅଭିନୟ ପ୍ରଦର୍ଶନ ପାଇଁ ବିଶେଷ ସୁବିଧା ହୋଇଗଲା । ଅଭିନେତା ସମ୍ପ୍ରଦାୟ ଏହାର ସୁଯୋଗ ନେଇଥିଲେ । ପ୍ରଥମ ଥର 'କରିତାର୍ଜ୍ଜୁନୀୟ' ନାଟକ ଓ 'ବିବାହ ବିଭ୍ରାଟ' ପ୍ରହସନ ଅଭିନୀତ ହୋଇଥିଲା ।

## ୯ । ବିବିଧ କାର୍ଯ୍ୟାବଳୀ ( ୨ ) ( ୧୮୯୦—୧୮୯୭)

ମଧୁବାବୁ ୧୮୯୦ରେ ଓଡ଼ିଶାର କେତୋଟି ଗଡ଼ଜାତ ଭ୍ରମଣ କରିଥିଲେ ଏବଂ ସ୍ଥାନୀୟ ସମସ୍ୟା ସମ୍ବନ୍ଧରେ ଅନୁସନ୍ଧାନ କରିଥିଲେ । ୧୯୯୧ରେ କେଉଁଝରର ରାଜାଙ୍କ ଓକିଲ ହିସାବରେ ବିଭୁଥିରେ କଲିକତାରୁ ଯାଇ ଲାଟ୍ ଓ ବଡ଼ ବଡ଼ ହାକିମମାନଙ୍କ ସହିତ କଥାବାର୍ତ୍ତା କରିଥିଲେ । ୧୮୯୨ରେ ରାଜସ୍ୱ ବନ୍ଦୋବସ୍ତରେ ପ୍ରଜାଙ୍କ ସ୍ୱାର୍ଥ ପାଇଁ ଦାବୀ କରିଥିଲେ । "ଉତ୍କଳ ସଭା" ପକ୍ଷରୁ ଏ ସମ୍ବନ୍ଧରେ ଏକ ସ୍ମାରକପତ୍ର ମଧ୍ୟ ମଧୁବାବୁ ସରକାରଙ୍କୁ ଦେଇଥିଲେ । କଟକରେ ନିଜ କୋଠିରେ ବଙ୍ଗର ଚିଫ୍ ସେକ୍ରେଟେରୀ ସାର୍ ହେନେରି କଟନ (Sir Henry Cotton)ଙ୍କୁ ସମ୍ବର୍ଦ୍ଧନା କରିଥିଲେ । ଦେଶ-ମିଶ୍ରଣାଦି ବିଭିନ୍ନ ଓଡ଼ିଆ ସମସ୍ୟା ସମ୍ବନ୍ଧରେ ତାଙ୍କ ସହିତ ଆଲୋଚନା କରିଥିଲେ ।

ଏହି ବର୍ଷ ଡିସେମ୍ବର ମାସ ୧୨ ତାରିଖରେ ଏକ ସାଧାରଣ ସଭା କରାଇ ମଧୁବାବୁ କଟକରେ ଏକ କୁଷ୍ଠାଶ୍ରମ ସ୍ଥାପନର ଉଦ୍ୟମ ଆରମ୍ଭ କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ନିଜ ହାତରୁ ବହୁ ଅର୍ଥ ମଧ୍ୟ ବ୍ୟୟ କରିଥିଲେ । ନିଜ ଘରେ ନିର୍ମିତ ହୋଇଥିବା ରଙ୍ଗମଞ୍ଚରେ ଏକ ସଙ୍ଗୀତ ସମ୍ମିଳନୀ କରାଇଥିଲେ ।

**ଧର୍ମ୍ମଚର୍ଚ୍ଚାର ଆବଶ୍ୟକତା ( ଆତ୍ମା, ପରମାତ୍ମା )** : ଖ୍ରୀ: ୧୮୯୧ ଜୁଲାଇ ୨୦ ତାରିଖ ରବିବାର ଦିନ କଟକର ପ୍ରିଣ୍ଟିଂ କମ୍ପାନୀ ଗୃହରେ ଏକ ସାଧାରଣ ସଭା

ହୋଇଥିଲା । ସେଥିରେ ବିଖ୍ୟାତ ଧର୍ମପ୍ରଚାରକ ରାମଚନ୍ଦ୍ର ବସୁ ସଭାପତିତ୍ୱ କରିଥିଲେ । ଏହା ପୂର୍ବରୁ ଦୁଇ ତିନୋଟି ବକ୍ତୃତା ସେହିଠାରେ ଧର୍ମ ସମ୍ବନ୍ଧରେ ହୋଇଥିଲା । "ଧର୍ମର ଆବଶ୍ୟକତା ପ୍ରକୃତ ମାର୍ଗ" ବିଷୟରେ ରାମଚନ୍ଦ୍ର ବସୁ ବକ୍ତୃତା ଦେଇ ସେଥିରେ ନାସ୍ତିକମାନଙ୍କର ଆପତ୍ତିର ବିଚାର ନକରି ଈଶ୍ୱରଙ୍କର ଅସ୍ତିତ୍ୱ ବିନା ପ୍ରମାଣରେ ସ୍ୱୀକାର କରିନେଇ ଧର୍ମାଚରଣର ଉପଦେଶ ଦେଇଥିଲେ । ଏଥିରେ ଏକଦର୍ଶିତା ଲକ୍ଷ୍ୟ କରାଯାଇ ଥିବାରୁ ମଧୁବାବୁ ସେଇ ଅଭାବ ପୂରଣ କରିଥିଲେ । ତାଙ୍କର ବକ୍ତୃତା ଅତି ପ୍ରୀତିକର ହୋଇଥିଲା । ବକ୍ତୃତାବେଳେ ଲୋକେ ମନ୍ତ୍ରମୁଗ୍ଧ ପ୍ରାୟ ରହି ଧୀରସ୍ଥିର ଭାବରେ ଶୁଣୁ-ଥିଲେ । ଘନଘନ କରତାଳି ହେଉଥିଲା । ଦୀର୍ଘ ଏକ ଘଣ୍ଟା ଅନର୍ଗଳ ବକ୍ତୃତା ଦେବାପରେ ମଧୁବାବୁ ବନ୍ଦ କରିବାକୁ ଅନୁମତି ଚାହିଁବାରୁ ସଭାସଦ୍‌ବର୍ଗ "ଆଉ କହନ୍ତୁ" "ଆଉ କହନ୍ତୁ" ବୋଲି ପାଟିକଲେ । ବକ୍ତା ପୁନର୍ବାର ବକ୍ତୃତା ଆରମ୍ଭ କଲେ । ବକ୍ତୃତାଟି ଅତି ସରସ ତଥ୍ୟପୂର୍ଣ୍ଣ ହୋଇଥିଲା । ପ୍ରତ୍ୟେକ ସିଦ୍ଧାନ୍ତକୁ ସେ ପ୍ରମାଣ କଲାବେଳେ ବହୁ ଉଦାହରଣ ଦେଇଥିଲେ । ଏହି ବକ୍ତୃତାର ଢଙ୍ଗ ମଧୁବାବୁଙ୍କର ସ୍ୱକୀୟ । "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ"—କବିବର ରାଧାନାଥଙ୍କ ଏହି ଉକ୍ତିଟି ମଧୁବାବୁଙ୍କ ବକ୍ତୃତା ପ୍ରତି ସର୍ବତୋଃଭାବେ ପ୍ରଯୁଜ୍ୟ ।

ମଧୁବାବୁଙ୍କ ବକ୍ତୃତାର ସାରାଂଶ ଏହିପରି—"ଭାରତବର୍ଷରେ, ବିଶେଷତଃ ଉତ୍କଳ ପ୍ରଦେଶରେ ସର୍ବଦା ଧର୍ମର ଚର୍ଚ୍ଚା ହେଉଥିବା ବିଶେଷ ଦେଖାଯାଏ । ସ୍ୱୟଂ ଜଗନ୍ନାଥଙ୍କ ସେବାର ଆଡ଼ମ୍ବର ଓ ଯାତ୍ରୀ ସଂଖ୍ୟାରୁ ତାହା ପ୍ରତ୍ୟେକ୍ଷ ହେଉଥିବାରୁ ଏଠାରେ ଧର୍ମର ଆବଶ୍ୟକତା ବିଚାର କରିବା ଏକପ୍ରକାର ଆଶ୍ଚର୍ଯ୍ୟର ବିଷୟ । କିନ୍ତୁ, ବର୍ତ୍ତମାନର ଶିକ୍ଷିତ ଯୁବକଦଳଙ୍କ ଧର୍ମଭାବଦୃଷ୍ଟିରେ ଏ ବିଚାର ଆବଶ୍ୟକ ହୋଇପଡ଼ିଅଛି । କଲେଜମାନଙ୍କରେ ଯେଉଁ ଉଚ୍ଚଶିକ୍ଷା ଅବା ବିଜ୍ଞାନ ଶିକ୍ଷା ଦିଆଯାଉଅଛି, ତାହା ସବୁ କେବଳ ବହିର୍ଜଗତରେ ଆବଦ୍ଧ । ଛାତ୍ରମାନଙ୍କର ଜ୍ଞାନ କେବଳ ବହିର୍ଜଗତ ବିଷୟରେ ହେଉଅଛି, ଅନ୍ତର୍ଜଗତ ଅର୍ଥାତ୍ ମନୋବିଜ୍ଞାନର ଶିକ୍ଷା ପ୍ରାପ୍ତ ନାହିଁ । ଏହିପରି ସ୍ଥଳେ ଶିକ୍ଷିତ ଯୁବକମାନଙ୍କର ଧର୍ମରେ ମତି ଓ ଶ୍ରଦ୍ଧା ନ ହେବା ବିଚିତ୍ର ନୁହେଁ । ସେମାନଙ୍କୁ ଏଥିପାଇଁ ଦୋଷୀ କରାଯାଇ ନ ପାରେ ।"

ସେ ପୁଣି କହିଲେ, "ଶରୀର ମଧ୍ୟରେ ଆତ୍ମା ଥିବାର ବିଶେଷ ପ୍ରମାଣ ଅଛି । ବର୍ତ୍ତମାନ ଯୁଗରେ ବିଜ୍ଞାନର ଶିକ୍ଷା ଯଥେଷ୍ଟ ହେଉଛି ଏବଂ ଏହାର ଗୌରବ ଅଛି । ଏହି ବିଜ୍ଞାନଶାସ୍ତ୍ର ମଧ୍ୟ ଆତ୍ମାର ଅସ୍ତିତ୍ୱକୁ ଅପ୍ରମାଣ କରୁନାହିଁ । ବୈଜ୍ଞାନିକମାନେ କହନ୍ତି, ଶରୀର ପରମାଣୁପୁଞ୍ଜରେ ନିର୍ମିତ । ସେଥିରେ ଅଉ କିଛି ପଦାର୍ଥ ଅବା ଆତ୍ମା ଦେଖା ନଯାଏ, ଏପରି କହିବା ଯାହା, କୌଣସି ପୁସ୍ତକର ଭାବ ଛାଡ଼ିଦେଇ କେବଳ ତାହା କାଗଜ-କାଳିର ସମଷ୍ଟି କହିବା ତାହା । କୌଣସି ଗ୍ରନ୍ଥକାର ଦୀର୍ଘକାଳ ପରିଶ୍ରମ କରି ଉତ୍କୃଷ୍ଟ ବିଷୟରେ ଦୀର୍ଘାକାର ପୁସ୍ତକଟିଏ ସ୍ୱହସ୍ତେ ଲେଖିଥିଲେ । କେହି ଜଣେ ତାହା ନଷ୍ଟ କରିଦେବାରୁ

ଗ୍ରନ୍ଥକାର ତାହା ଉପରେ ଅନେକ କ୍ଷତିପୂରଣ ଦାବୀକଲେ । ନିଷ୍କାମୀ କହିଲ, "ଏ ପୁସ୍ତକରେ ଯେତିକ କାଗଜ କାଳି ଲଗିଥିଲ, ତହିଁର ମୂଲ୍ୟ ଯାହା ହେବ ତେତିକ ନେଇପାର । ସେଥିରେ ଆଉ କଣ ଥିଲ ଯେ ଏତେ ଟଙ୍କା ଦାବୀ କରୁଅଛ ?" ବୈଜ୍ଞାନିକମାନେ ଏଥିରେ ବୋଧ ହେବେ କ ? ଯେବେ ପୁସ୍ତକ ମଧ୍ୟରେ କାଗଜ-କାଳି ଛଡ଼ା ଆଉ କିଛି ମହତ୍ ପଦାର୍ଥ ଅଛି, ତେବେ ଶରୀର ମଧ୍ୟରେ ପରମାଣୁ ଛଡ଼ା ଆଉ କିଛି ମହାନ୍ ପଦାର୍ଥ ନାହିଁ ବୋଲି କପରି ପ୍ରତିପନ୍ନ ହେଲି । ?"

"ବକ୍ତା ଯେପରି ସାଧାରଣ ବୋଧଗମ୍ୟମତେ ଆତ୍ମାର ଅସ୍ତିତ୍ୱ ସପ୍ରମାଣ କଲେ, ଠିକ୍ ସେହି ପ୍ରକାରରେ ପରମାତ୍ମା ଅବା ପରମେଶ୍ୱରଙ୍କର ଅସ୍ତିତ୍ୱ ପ୍ରମାଣ କଲେ । ସେ କହିଲେ, ପ୍ରଚଳିତ ସକଳ ଧର୍ମଶାସ୍ତ୍ର ଈଶ୍ୱରଙ୍କର ଅସ୍ତିତ୍ୱ ମାନନ୍ତି । କେବଳ ତାଙ୍କର ସ୍ୱରୂପ ଆରାଧନା ପ୍ରଣାଳୀ ଇତ୍ୟାଦି କେତେକ ସାମାନ୍ୟ ବିଷୟରେ ମତଭେଦ ଦେଖାଯାଏ । ଶାସ୍ତ୍ରର ବିଚାର ଛାଡ଼ିଦେଇ ମନୁଷ୍ୟର ଦୈନିକ କାର୍ଯ୍ୟ ଓ ବ୍ୟବହାର ଇତ୍ୟାଦିଦ୍ୱାରା ଈଶ୍ୱରଙ୍କର ଅସ୍ତିତ୍ୱ ସପ୍ରମାଣ ହେଉଅଛି । ଜୀବ ସ୍ୱଭାବତଃ ଆପଣା ଅପେକ୍ଷା ଅଧିକ ଅବା ସର୍ବଶ୍ରେଷ୍ଠ ଶକ୍ତିର ସାହାଯ୍ୟ ଲୋଡ଼େ ଓ ସେହି ସାହାଯ୍ୟ ବିନା ଦିନେ କି ମୁହୂର୍ତ୍ତେ ଚଳି ନ ପାରେ । ଦୃଷ୍ଟାନ୍ତସ୍ୱରୂପ କହିଲେ, ପିଲି ଜଞ୍ଜାଳ କଲେ ତାହାର ପିତାମାତା ଭୂତର ଭୟ ଦେଖାନ୍ତି । ବାସ୍ତବରେ ଭୂତପ୍ରେତ କିଛି ନାହିଁ । ତାହା କେବଳ କାଳ୍ପନିକ ବ୍ୟାପାର; କିନ୍ତୁ ପିତାମାତା ଜଞ୍ଜାଳିଆ ପିଲିକୁ ଆୟତ୍ତ କରିବାରେ ଆପଣାକୁ ଅପାରଗ ମଣି ଭୂତପ୍ରେତର ସାହାଯ୍ୟ ଲୋଡ଼ନ୍ତି ଓ ପିଲି ମଧ୍ୟ ତହିଁରେ ବୋଧହୁଏ । ପ୍ରତ୍ୟକ୍ଷ ପିତାମାତାଙ୍କ କଥାରେ ଭୁଲେନାହିଁ; କିନ୍ତୁ ତାଙ୍କ ଅପେକ୍ଷା ଅଧିକ କ୍ଷମତାପନ୍ନ ଶକ୍ତିର କଥା ଶୁଣିବା କ୍ଷଣି ତାହା ଅପ୍ରତ୍ୟକ୍ଷ ଓ ଅପ୍ରକୃତ ହେଲେହେଁ ତହିଁରେ ଶାନ୍ତ ହୋଇପଡ଼େ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସାମାନ୍ୟ କାର୍ଯ୍ୟରେ ସୁଦ୍ଧା ମନୁଷ୍ୟ ଆପଣା କ୍ଷମତା ଅପେକ୍ଷା ଅଧିକ କ୍ଷମତାର ଆଶ୍ରୟ ନିଏ ଓ ତାହା ବିନା ଚଳିନପାରେ ।

ଅତଏବ, ମନୁଷ୍ୟର ସର୍ବାଶ୍ରୟ କର୍ତ୍ତା ପରମାତ୍ମା ଅଟନ୍ତି । ତାଙ୍କର ରକ୍ଷଣାବେକ୍ଷଣ ସାହାଯ୍ୟରେ ମନୁଷ୍ୟ ସର୍ବଦା ଚଳୁଅଛି । ତାହାଙ୍କର ସାହାଯ୍ୟ ବିନା ଏକ ମୁହୂର୍ତ୍ତି ଚଳି ନପାରେ କିମ୍ବା ଟେକି ନପାରେ । ସେ ପ୍ରାଣୀମାନଙ୍କର ରକ୍ଷାକର୍ତ୍ତା, ପାଳନକର୍ତ୍ତା ଓ ସର୍ବ ସୁଖଦାତା । ତାଙ୍କର ନିୟମ ପ୍ରତିପାଳନ କରି ଧର୍ମାଚରଣ କରିବା ମନୁଷ୍ୟର କର୍ତ୍ତବ୍ୟ ଓ ନିତାନ୍ତ ଆବଶ୍ୟକ । ତାଙ୍କର ଉପରେ ନିର୍ଭର କରି ଓ ତାଙ୍କୁ ଆତ୍ମସମର୍ପଣ କରି ମନୁଷ୍ୟ ଚଳିଲେ, ତାହାର ଆତ୍ମା ନିତ୍ୟ ସୁଖଶାନ୍ତ ଭୋଗକରି ପରମ ସୁଖୀ ହେବ । × ×" ଉ: ଦୀ: )

୧୮୯୧ ଜୁଲାଇ ୬ ତାରିଖ ଶୁକ୍ରବାର ଦିନ କଲିକତାର ଡାକ୍ତର ରାମଚନ୍ଦ୍ର ବସୁ "ପ୍ରାଚୀନ ଓ ବର୍ତ୍ତମାନ ସଭ୍ୟତା" ସମ୍ବନ୍ଧରେ ଆଉ ଏକ ବକ୍ତୃତା ନଟକା ପ୍ରିଣ୍ଟିଂ କମ୍ପାନୀଙ୍କ

ଗୃହରେ ଏକ ସାଧାରଣ ସଭାରେ ଦେଇଥିଲେ । ମଧୁବାବୁ ଏହି ସଭାର ସଭାପତି ହୋଇଥିଲେ ।

୧୮୯୨ରେ ଖାଦ୍ୟଦ୍ରବ୍ୟର ମୂଲ୍ୟ ବୃଦ୍ଧି ପାଇବାରୁ ଲୋକେ ବହୁ ଅସୁବିଧା ଭୋଗ କରିଥିଲେ । ଜାନୁୟାରୀ ମାସରେ 'ଉତ୍କଳ ସଭା'ର ଏହି ବୈଠକରେ ମଧୁବାବୁ (ସଭାପତି) ଏହାର କାରଣ ବିଶ୍ଳେଷଣ କରି ପ୍ରତିକାର ପନ୍ଥା ସମ୍ବନ୍ଧରେ ବୁଝାଇଥିଲେ । ସରକାର ନିଜ କର୍ତ୍ତବ୍ୟ କରିବାକୁ ମଧ୍ୟ ସେ ଏଥିରେ ପରାମର୍ଶ ଦେଇଥିଲେ ।

**କୁଷ୍ଠାଶ୍ରମ ସ୍ଥାପନ ଉଦ୍ୟମ (ଖ୍ରୀ:'୧୮୯୨)** ୧୮୯୨ ଡିସେମ୍ବର ମାସ ୧୨ ତାରିଖରେ କଟକରେ ଏକ ସାଧାରଣ **ସଭା** କରାଇ ସେଥିରେ ମଧୁବାବୁ କଟକରେ ଏକ କୁଷ୍ଠାଶ୍ରମ ସ୍ଥାପନର ଆବଶ୍ୟକତା ସମ୍ପର୍କରେ ବୁଝାଇଥିଲେ । ଏ ଦିଗରେ ସେ ଉଦ୍ୟମ କରିଥିଲେ ଏବଂ ନିଜ ହାତରୁ ବହୁ ଅର୍ଥ ମଧ୍ୟ ବ୍ୟୟ କରିଥିଲେ । ସେତେବେଳକୁ ବର୍ତ୍ତମାନର କୁଷ୍ଠାଶ୍ରମଟି ସ୍ଥାପିତ ହୋଇ ନଥିଲା । (୧୯୧୨ରେ ସ୍ଥାପିତ ହେଲା ।)

**ଉତ୍କଳ ସଂସ୍କୃତ ସମିତି : (ଖ୍ରୀ: ୧୮୯୩) :** ମାର୍ଚ୍ଚ ମାସ ୪ ତାରିଖରେ କଟକର କଟକ ନର୍ମାଲ ସ୍କୁଲ (ବର୍ତ୍ତମାନର ଗୁରୁଟ୍ରେନିଂ ସ୍କୁଲ)ରେ ଏକ ସାଂସ୍କୃତିକ ସଭା କରାଇ ସେଠାରେ "ଉତ୍କଳ ସଂସ୍କୃତ ସମିତି" ସ୍ଥାପନ କରିବାରେ ସାହାଯ୍ୟ କରିଥିଲେ । ଏ ସଭାରେ ଓଡ଼ିଶାର କମିଶନର କୁକ୍ ସାହେବ ସଭାପତିତ୍ୱ କରିଥିଲେ । ଏହି ସଭାରେ ଜିଲ୍ଲା ଜଜ୍ ପାର୍ଜିଟର ସାହେବ (ଏ ଜଣେ ବିଖ୍ୟାତ ପୁରାଣତତ୍ତ୍ୱ ଅନୁସନ୍ଧିତ୍ସୁ) ଥିଲେ । ରାଧାନାଥ ରାୟ, ମଧୁସୂଦନ ରାଓ, ଯୋଗେଶଚନ୍ଦ୍ର ରାୟ (ଯାହାବଜାରା ବଜାର ଅଞ୍ଚଳରେ ଥିବା ବର୍ତ୍ତମାନର ସ୍ୱାସ୍ଥ୍ୟାଶ୍ରମ ଯେଉଁ କୋଠାରେ ହୋଇଛି, ସେହିଠାରେ ସେ ରହୁଥିଲେ) ପ୍ରଭୃତି ବହୁ ଶିକ୍ଷାବିତ୍ ଉପସ୍ଥିତ ଥିଲେ ଏବଂ ଏମାନେ ସମିତିର ସଭ୍ୟ ହୋଇଥିଲେ ।

**ଓଡ଼ିଶା ନିମନ୍ତେ ଚିରସ୍ଥାୟୀ ବନ୍ଦୋବସ୍ତ ଦାବୀ** ( ଖ୍ରୀ: ୧୮୯୩) : ବଙ୍ଗରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତନ ସମୟରେ ମଧୁସୂଦନ ଓଡ଼ିଶାରେ ଏ ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ଉତ୍ସାହୀ ହେଲେ । ଏହି ଚିରସ୍ଥାୟୀ ବନ୍ଦୋବସ୍ତଦ୍ୱାରା ଓଡ଼ିଶା ଉପକୃତ ହେବ ବୋଲି ସେ ଭାବୁଥିଲେ । ବ୍ରିଟିଶ୍ ସରକାରଙ୍କ ଆଗରେ ଏହି ଦାବୀ ଉପସ୍ଥାପିତ କରିବାପାଇଁ ତାଙ୍କୁ ଖ୍ରୀ: ୧୮୯୬ରେ ବିଲାତରେ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ସେ ଇଂଲଣ୍ଡରେ ଭାରତ-ସଚିବ ଓ ପାର୍ଲିଆମେଣ୍ଟର ବହୁ ବିଶିଷ୍ଟ ସଭ୍ୟଙ୍କୁ ଦେଖାକରି ଦାବୀର ଯଥାର୍ଥ ସମ୍ବନ୍ଧରେ ଯୁକ୍ତି ପ୍ରଦର୍ଶନ କରିଥିଲେ ।

**ଓଡ଼ିଶା ବନ୍ଦୋବସ୍ତ ସମ୍ବନ୍ଧରେ ମତ :** ୧୮୯୬ରେ ବଙ୍ଗର ଲାଟ୍ ସାର୍ ଆଲେକ୍‌ଜାଣ୍ଡାର ମେକେନ୍‌ଜି ସାହେବ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ମଧୁବାବୁଙ୍କୁ ଓଡ଼ିଶା ରାଜସ୍ୱ ବନ୍ଦୋବସ୍ତ ସମ୍ବନ୍ଧରେ ନିଜର ନିରପେକ୍ଷ ମତ ଗୋପନରେ ଜଣାଇବାକୁ

ନିମନ୍ତ୍ରଣ କରିଥିଲେ । ଲର୍ଡ ସାହେବଙ୍କ ଇଚ୍ଛା ଥିଲା ଯେ ସେ ନିଜେ ମଧ୍ୟ ଏ ସମ୍ବନ୍ଧରେ ସ୍ପଷ୍ଟ ମତ ଗଠନ କରିପାରିବେ । ଓଡ଼ିଶାର ଜମିଦାରମାନେ ଚିରସ୍ଥାୟୀ ବନ୍ଦୋବସ୍ତର ପକ୍ଷପାତୀ ଥିଲେ ଏବଂ ଏହି ଉଦ୍ଦେଶ୍ୟରେ ବହୁପ୍ରକାର ଆବେଦନ କରିଥିଲେ । ବ୍ୟବସ୍ଥାପକ ସଭାରେ ମଧ୍ୟ ଏମାନଙ୍କର ସ୍ୱର କ୍ଷୀଣ ନଥିଲା । ଗରିବ ପ୍ରଜାଙ୍କ ସପକ୍ଷରେ ସେତେ ପ୍ରଚାର ହୋଇପାରୁନଥିଲା । ବୁଦ୍ଧିଜୀବୀମାନଙ୍କ ଭିତରୁ ଅଧିକାଂଶ ଜମିଦାର ଓ ଜମିଦାର ସପକ୍ଷର ଲୋକ ଥିଲେ । ପ୍ରଜା ଆନ୍ଦୋଳନ ଅତି ଦୁର୍ବଳ ଥିଲା କହିଲେ ଚଳେ । ମେକେନ୍‌ଜୀ ପ୍ରଜାଙ୍କ ତରଫରୁ ମତ ଜାଣିବାକୁ ଇଚ୍ଛା କରିଥିଲେ । ମଧୁବାବୁ ଅଧିକାଂଶ ଜମିଦାରଙ୍କର ଓକିଲ ଥିଲେ ଏବଂ ଜମିଦାରମାନଙ୍କ ତରଫରୁ ଆବେଦନପତ୍ର ପ୍ରସ୍ତୁତ କରିବାରେ ସାହାଯ୍ୟ ମଧ୍ୟ କରୁଥିଲେ । ପ୍ରକାଶ୍ୟରେ ସେ ଚିରସ୍ଥାୟୀ ବନ୍ଦୋବସ୍ତର ସମର୍ଥକ ଥିଲେ ମଧ୍ୟ ଗୋପନରେ ଏହାର ବିରୋଧ କରୁଥିଲେ ବୋଲି ସେତେବେଳେ ଶୁଣା-ଯାଉଥିଲା । ବେସରକାରୀ ଆଲାପ-ଆଲୋଚନାବେଳେ ସେ ଚିରସ୍ଥାୟୀ ବନ୍ଦୋବସ୍ତ ନ ହେବାପାଇଁ କହୁଥିଲେ । ଏ କଥା ସରକାରୀ ହାକିମମାନେ ସୁବିଧା ପାଇ ତାଙ୍କର ପ୍ରକୃତ ମତ ଜାଣିବା ପାଇଁ "ଗୋପନୀୟତା"ର ଆଶ୍ରୟ ନେଇଥିଲେ । ଏଥି ନିମନ୍ତେ ଲର୍ଡସାହେବ ମଧୁବାବୁଙ୍କୁ ଗୋପନରେ ତାଙ୍କର ନିରପେକ୍ଷ ମତ ଜଣାଇବା ପାଇଁ ଅନୁରୋଧ କରୁଥିଲେ । ଅବଶ୍ୟ ମଧୁବାବୁଙ୍କ ଏ ଦ୍ୱୈତ ମତ ଓ କାର୍ଯ୍ୟକଳାପର ଜନରବ ତାଙ୍କର ଗୌରବ ବୃଦ୍ଧି କରିନାହିଁ । ସେ ପ୍ରଥମ ଥର ବିଲାତ ଯାଇଥିବାବେଳେ ସେଠାରେ ଚିରସ୍ଥାୟୀ ବନ୍ଦୋବସ୍ତ ସପକ୍ଷରେ ଏକ ଆବେଦନ ପୁସ୍ତିକା ଇଂରେଜୀରେ ଲେଖି ସେଠାର ମୁଖ୍ୟବ୍ୟକ୍ତି ଓ ପାର୍ଲିଆମେଣ୍ଟ ସଭ୍ୟମାନଙ୍କ ଭିତରେ ବିତରଣ କରିଥିଲେ । ଏହି କାରଣରୁ କେହି କେହି ସେତେବେଳେ ସମାଲୋଚନା କରି କହୁଥିଲେ ଯେ ମଧୁବାବୁ କନିକା ରାଜାଙ୍କ ସାଙ୍ଗରେ ଓ ତାଙ୍କ ଖର୍ଚ୍ଚରେ ବିଲାତ ଯାଇ ଚିରସ୍ଥାୟୀ ବନ୍ଦୋବସ୍ତ ସପକ୍ଷରେ ଜନମତ ସୃଷ୍ଟି କରୁଥିଲେ ଏବଂ ଓଡ଼ିଶା ସମ୍ପର୍କୀୟ ଅନ୍ୟାନ୍ୟ ପ୍ରଚାର କାର୍ଯ୍ୟ କେବଳ ପ୍ରକୃତ ଉଦ୍ଦେଶ୍ୟକୁ ଘୋଡ଼ାଇ ରଖିବାପାଇଁ କରିଥିଲେ । ସେ ଜମିଦାର ଓ ପ୍ରଜା କାହାରିକୁ ଅସନ୍ତୁଷ୍ଟ କରିବାକୁ ଚାହୁଁ ନଥିଲେ । ସମୟେ ସମୟେ ମଧୁବାବୁ ଭିତରେ କଥାଏ ବାହାରେ କଥାଏ କରୁଥିବା ଦୃଷ୍ଟାନ୍ତ ମିଳୁଥିବାରୁ ତାଙ୍କର ସମସାମୟିକ କେହି କେହି ତାଙ୍କୁ କୌତୁକରେ 'ନଟକୁଟିଆ' ବୋଲି କହୁଥିଲେ ।

ଜମିଜମା ବନ୍ଦୋବସ୍ତ ଚାଲିଥିଲାବେଳେ ସାର୍ ଆଲେକ୍‌ଜେଣ୍ଡର ମେକେନ୍‌ଜୀ (Sir Alexander Mackenze)ଙ୍କଠାରୁ ମଧୁବାବୁ ତାଙ୍କର ମତାମତ ଜଣାଇ-ଥିଲେ । ତାଙ୍କ ଚିଠିରେ ସେ ଲେଖିଥିଲେ ଯେ, ଜମିଜମା ଜନସାଧାରଣଙ୍କର ସ୍ୱାର୍ଥଦୃଷ୍ଟିରୁ ହେଉନାହିଁ । ସ୍ଥାନୀୟ ହାକିମମାନେ ବିଚାରରେ ପାତର ଅନ୍ତର କରୁଛନ୍ତି । କେହି କେହି ପ୍ରଭାବଶାଳୀ ବ୍ୟକ୍ତି ସେମାନଙ୍କର ପ୍ରଭାବ ମଧ୍ୟ ପକାଉଛନ୍ତି । ଏମାନଙ୍କ ଭିତରୁ କେତେଜଣ ମଧୁବାବୁଙ୍କର ବ୍ୟକ୍ତିଗତ ଘନିଷ୍ଠବନ୍ଧୁ । ସେମାନେ ଉପରେ ପ୍ରଜାମାନଙ୍କ ସ୍ୱାର୍ଥବିରୋଧରେ

କାର୍ଯ୍ୟ କରୁଛନ୍ତି, ତାହା ଜଣାଇଥିଲେ । ଅବଶ୍ୟ କୌଣସି ଲୋକର ନାମ ସେ ପ୍ରକାଶ କରି ନ ଥିଲେ । ହେଲେହେଁ ଯେଉଁ ବିଷୟଗୁଡ଼ିକ ସମ୍ବନ୍ଧରେ ମଧୁବାବୁ ଲେଖିଥିଲେ, ସେସବୁ ସ୍ଥାନୀୟ ଲୋକଙ୍କୁ ଜଣାଥିଲା ଏବଂ ଏହି କାରଣରୁ ନାମ ଜାଣିବା ଲୋକଙ୍କ ପକ୍ଷେ କଷ୍ଟକର ହୋଇନଥାନ୍ତା । ମଧୁବାବୁ ମେକେନ୍‌ଜୀ ସାହେବଙ୍କୁ ଅନୁରୋଧ କରିଥିଲେ ଯେ, ନାମ ପ୍ରକାଶ ନକରି ସେ କିଛି ମନ୍ଦକାର୍ଯ୍ୟ କରିନାହାନ୍ତି । କାରଣ ତାଙ୍କର ବ୍ୟକ୍ତି ବ୍ୟକ୍ତି ଭିତରେ ବା ଶ୍ରେଣୀ ଶ୍ରେଣୀ ଭିତରେ ବିଭେଦ ବା ଅସଦ୍‌ଭାବ ସୃଷ୍ଟି କରିବା ଉଦ୍ଦେଶ୍ୟ ନଥିଲା । ଏହି କାରଣରୁ ମଧୁବାବୁ ଏ ଚିଠିକୁ ଗୁପ୍ତ ରଖିବାପାଇଁ ଅନୁରୋଧ କରିଥିଲେ । ତାଙ୍କ ପ୍ରତିଦ୍ୱନ୍ଦ୍ୱୀଙ୍କ ସମର୍ଥକମାନେ ମଧୁବାବୁ ଗୁପ୍ତ ଓ ବେନାମୀ ଚିଠି ଲେଖି ବହୁ ଲୋକଙ୍କର ଅନିଷ୍ଟ କରିଛନ୍ତି ଏବଂ ଜମିଦାର ଓ ପ୍ରଜାଙ୍କ ଭିତରେ ଶ୍ରେଣୀ-ସଂଘର୍ଷ ପାଇଁ ଉତ୍ତେଜିତ କରୁଛନ୍ତି ବୋଲି ପ୍ରଚାର କରୁଥିଲେ । ମଧୁବାବୁ ବେନାମୀ ଚିଠି ନଲେଖି ନିଜ ନାମରେ ଚିଠି ଲେଖିଥିଲେ । ସମ୍ପୃକ୍ତ ବ୍ୟକ୍ତିମାନଙ୍କର ନାମ ଚିଠିରେ ଉଲ୍ଲେଖ କରିନଥିବା ଏବଂ ଚିଠି ଉପରେ 'ଗୁପ୍ତ' ଶିରୋନାମା ଦେବା ସମ୍ବନ୍ଧରେ ବିରୋଧୀଙ୍କ ପ୍ରଚାର ଖଣ୍ଡନକରି ମଧୁବାବୁ କୈଫିୟତ୍ ଦେବାକୁ ବାଧ୍ୟ ହୋଇଥିଲେ ।

ଗଡ଼ଜାତର ଖାତକ ଓ ମହାଜନଙ୍କ ଭିତରେ ଯେଉଁ ବିବାଦ ଲାଗି ରହିଥିଲା, ତାହାକୁ ମଧୁବାବୁ ଜୁନ୍ ମାସରେ ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟଙ୍କ କୋର୍ଟରେ ସମାଧାନ କରାଇଦେଲେ । ଖାତକ ଓ ଋଣୀଙ୍କର ବହୁ ଉପକାର ହେଲା ।

୧୮୯୪ରେ ଉତ୍କଳ ଟାନେରୀ ଓ ଉତ୍କଳ ଆର୍ଟ ଓ୍ୱାର୍କ୍‌ସର ପ୍ରାରମ୍ଭିକ ଆୟୋଜନ ମଧୁବାବୁ କରିଥିଲେ । ଏହି ବର୍ଷ ଜୁଲାଇ ୧ ତାରିଖ ଦିନ କଲିକତାରୁ 'ଉତ୍କଳ ହିତୈଷିଣୀ' ସମ୍ବାଦପତ୍ର ପ୍ରକାଶିତ ହେଲା । ମଧୁବାବୁ ଏହାର ପୃଷ୍ଠପୋଷକ ଥିଲେ । କଟକ ଜିଲ୍ଲା ସିଦ୍ଧେଶ୍ୱରପୁର ଗ୍ରାମରେ ଅନୁଷ୍ଠିତ ଶିକ୍ଷା ସମ୍ମିଳନୀରେ ମଧୁବାବୁ ସଭାପତି ହୋଇଥିଲେ । ପ୍ରତି ସବ୍‌ଡିଭିଜନରେ ମାଇନର ସ୍କୁଲ ଓ ହାଇସ୍କୁଲ ସ୍ଥାପନପାଇଁ ସରକାରଙ୍କଠାରେ ଏହି ସମ୍ମିଳନୀରେ ଦାବୀ ହୋଇଥିଲା । ସେପ୍ଟେମ୍ବରରେ ଯାଜପୁର ଅଞ୍ଚଳରେ ବନ୍ୟା ହେବାରୁ ମଧୁବାବୁ ରିଲିଫ୍ କାମରେ ଯାଜପୁର ଅଞ୍ଚଳକୁ ଯାଇଥିଲେ । ସମ୍ବଲପୁରରେ ହିନ୍ଦୀଭାଷା ପ୍ରଚଳନ ଆଦେଶ ବିରୋଧରେ ମଧୁବାବୁ ବଡ଼ଲାଟଙ୍କୁ ତାରବାର୍ତ୍ତା ପଠାଇଥିଲେ । 'ସମ୍ବଲପୁରରୁ ଓଡ଼ିଆଭାଷା ନିର୍ବାସନ' ଶୀର୍ଷକ ସାତୋଟି ପ୍ରବନ୍ଧ ଲେଖି ସମ୍ବାଦପତ୍ର-ମାନଙ୍କରେ ପ୍ରକାଶ କରିଥିଲେ ।

୧୧।୫।୧୮୯୫ରେ ସମ୍ବଲପୁରରେ ହିନ୍ଦୀଭାଷା ପ୍ରଚଳନ ଆଦେଶର ପ୍ରତିବାଦ କରିବାକୁ କଟକରେ ଯେଉଁ ସଭା ହୋଇଥିଲା, ସେଥିରେ ମଧୁବାବୁ ସଭାପତି ହୋଇଥିଲେ । ଏ ସଭାରେ ସରକାରୀ ଆଦେଶକୁ ରଦ୍ଦ କରିବାପାଇଁ ଦାବୀ ହୋଇଥିଲା ଏବଂ ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ଅଲଗା କରିଦେଇ ଓଡ଼ିଶା ଡିଭିଜନ ସଙ୍ଗେ ମିଶାଇଦେବା ନିମନ୍ତେ ପ୍ରବଳ

ଦାବୀ ହେଲା । ବଡ଼ଲାଟଙ୍କଠାକୁ ଏ ସମ୍ପର୍କରେ ଉତ୍କଳସଭା ପକ୍ଷରୁ ସ୍ମାରକପତ୍ର ଦିଆଯାଇଥିଲା ।

**ବ୍ୟବସ୍ଥାପକ ସଭାର ସଭ୍ୟ ମନୋନୀତ** (୧୮୯୬) : ମଧୁବାବୁ ଓଡ଼ିଶା-ଛୋଟନାଗପୁର ମ୍ୟୁନିସିପାଲିଟି ନିର୍ବାଚନ ମଣ୍ଡଳୀର ନିର୍ବାଚନଦ୍ୱାରା ସଭ୍ୟ ମନୋନୟନ ପ୍ରଣାଳୀ ପ୍ରବର୍ତ୍ତନପରେ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ମନୋନୀତ ହୋଇଥିବାରୁ କଟକର ଓକିଲମାନେ ତାଙ୍କୁ ଓକିଲଖାନାରେ ଅନୁଷ୍ଠିତ ଏକ ସଭାରେ ଅଭିନନ୍ଦନ ଜ୍ଞାପନ କରିଥିଲେ । ବନ୍ଦୋବସ୍ତ ଓ ଜଳକର ସମ୍ବନ୍ଧରେ ଓଡ଼ିଶା ଚିନ୍ତିତ ଥିବାବେଳେ ମଧୁବାବୁଙ୍କ ପରି ପ୍ରତିଭାବାନ୍ ଦେଶସେବକ ଓଡ଼ିଶା ପକ୍ଷରୁ ସଭ୍ୟ ମନୋନୀତ ହୋଇଥିବା ସୌଭାଗ୍ୟର ବିଷୟ ହୋଇଥିଲା । ଜମିଦାର ଓ ପ୍ରଜା ଉଭୟଙ୍କର ସେ ପ୍ରିୟପାତ୍ର ଥିଲେ ଏବଂ ଉଭୟେ ତାଙ୍କୁ ବିଶ୍ୱାସ କରୁଥିଲେ । ଉଭୟଙ୍କ ଦାବୀ କେତେକ ସ୍ଥଳରେ ପରସ୍ପର ବିରୋଧୀ ହୋଇଥିଲେ ମଧ୍ୟ ମଧୁବାବୁ ଏହାର ସମାଧାନ ଓ ସମନ୍ୱୟ ରକ୍ଷାପାଇଁ ଆନ୍ତରିକ ଉଦ୍ୟମ କରିବେ, ଏହି ବିଶ୍ୱାସ ସମସ୍ତଙ୍କର ଥିଲା । ମଧୁବାବୁ ସମ୍ବର୍ଦ୍ଧନାର ଉତ୍ତର ଦେଇ ନିର୍ଭର ପ୍ରତିଶ୍ରୁତି ଦେଲେ ଯେ, ଓଡ଼ିଶାର ମଙ୍ଗଳ ବିଧାନ ବିଷୟରେ ସେ ସର୍ବଦା ଓକିଲଭାଇମାନଙ୍କର ସତ୍‌ପରାମର୍ଶ ଏବଂ ସାହାଯ୍ୟ ଲୋଡ଼ିବେ ।

କଟକର ଓଡ଼ିଶା ନେଟିଭ୍ ଖ୍ରୀଷ୍ଟିଆନ୍ ଅସୋସିଏସନ୍ (ଓଡ଼ିଶା ଭାରତୀୟ ଖ୍ରୀଷ୍ଟିଆନ୍ ସଂଘ) ତାଙ୍କୁ ମିଶନ କଲେଜ ସଭାଗୃହରେ ଏକ ସଭା କରି ମାନପତ୍ର ଦେଇଥିଲେ । ସଭାରେ କେତେଜଣ ୟୁରୋପୀୟ ଖ୍ରୀଷ୍ଟିଆନ୍ ଓ କଟକର ଅନ୍ୟ ଧର୍ମାବଲମ୍ବୀ ବହୁ ଭଦ୍ରବ୍ୟକ୍ତି ଉପସ୍ଥିତ ଥିଲେ । ପାଦ୍ରି ବେଲି ସାହେବ ସଭାର କାର୍ଯ୍ୟ ଆରମ୍ଭକରି ପ୍ରଥମତଃ ଅନ୍ୟ ଧର୍ମାବଲମ୍ବୀ ଲୋକେ ସଭାରେ ବହୁସଂଖ୍ୟାରେ ଯୋଗଦେଇଥିବାରୁ ଆନନ୍ଦ ପ୍ରକାଶ କରିଥିଲେ ଏବଂ କହିଥିଲେ, "ଭିନ୍ନ ଧର୍ମାବଲମ୍ବୀ ଲୋକମାନେ ଏପରି ଏକତ୍ର ସମବେତ ହେବା ବଡ଼ ଆନନ୍ଦର ବିଷୟ । ଏଥିରେ ପରସ୍ପର ମନୋଗତ ଭାବମାନ ପ୍ରକାଶିତ ହୋଇ ପରସ୍ପର ପରିଚିତ ହେବାଦ୍ୱାରା ଉନ୍ନତି ମାର୍ଗ ପରିଷ୍କୃତ ହୁଏ ।" ମଧୁବାବୁଙ୍କ ସମ୍ବନ୍ଧରେ ସେ କହିଲେ, "ମଧୁବାବୁ ତାଙ୍କର ପ୍ରତିବେଶୀ ଓ ମିଶନ ସଭାର ପ୍ରଧାନ ମେମ୍ବର । ଯେତେବେଳେ କୌଣସି ଗୁରୁତର ବିଷୟର ପରାମର୍ଶ ଆବଶ୍ୟକ ହୁଏ, ସେତେବେଳେ ମଧୁବାବୁଙ୍କୁ ଧରିଲେ ସେ ହଜାର କାମ ଛାଡ଼ି ଆପଣାର ଲାଭ ଆଡ଼କୁ ଦୃଷ୍ଟି ନ ରଖି ସାହାଯ୍ୟ ପ୍ରଦାନ କରନ୍ତି ।" ପାଦ୍ରି ସେମ୍ ସାହୁ ଇଂରେଜୀରେ ଲିଖିତ ମାନପତ୍ର ପାଠ କରିଥିଲେ । ମଧୁବାବୁ ଏହି ସଙ୍ଘର ସଭାପତି ଥିଲେ ।

ଓଡ଼ିଶାରେ ଭାରତୀୟ ଖ୍ରୀଷ୍ଟିଆନ୍ଙ୍କ ସ୍ୱତନ୍ତ୍ର ଅଭାବ ଅସୁବିଧା ଥିବା ମଧୁବାବୁ ହୃଦୟଙ୍ଗମ କରିଥିଲେ; କିନ୍ତୁ ଏମାନଙ୍କର ହୃଦୟର ଭାବ ଭିନ୍ନାଭିନ୍ନ ଥିବା ଦେଖି ସେ ଦୁଃଖ ଅନୁଭବ କରୁଥିଲେ । ମଧୁବାବୁଙ୍କ ସଦ୍ଗୁଣ ଯୋଗ୍ୟ ଜଣେ ଖ୍ରୀଷ୍ଟିଆନ୍ ବଙ୍ଗ ବ୍ୟବସ୍ଥାପକ ସଭାର ସଭ୍ୟ ମନୋନୀତ ହୋଇଥିବାରୁ ଅଣ ଖ୍ରୀଷ୍ଟିଆନ୍‌ମାନଙ୍କ ସହିତ ଖ୍ରୀଷ୍ଟିଆନ୍‌ମାନେ ମଧ୍ୟ ଅତ୍ୟନ୍ତ ଖୁସି

ଥିଲେ । ଏହି ସ୍ଥାନ ପାଇଁ ତାଙ୍କଠାରୁ ଅଧିକ ଯୋଗ୍ୟତର ବ୍ୟକ୍ତି ଆଉ କେହି ଅଛି ବୋଲି ସେମାନେ ଭାବୁ ନଥିଲେ । ସେ ବ୍ୟବସ୍ଥାପକ ସଭାକୁ ସଭ୍ୟ ହୋଇ ଯାଇଥିବାରୁ ଉପଯୁକ୍ତ ଭାବରେ ଖ୍ରୀଷ୍ଟିଆନ୍‌ମାନଙ୍କର ଅଭାବ ଅସୁବିଧା ଉପସ୍ଥାପିତ କରି ସ୍ୱପ୍ରଭାବ ବଳରେ ପ୍ରତିକାର କରି ପାରିବେ, ଏହି ଆଶା ଓ ବିଶ୍ୱାସ ସେମାନଙ୍କର ଥିଲା । ବର୍ତ୍ତମାନ ଉପଯୁକ୍ତ ପ୍ରତିନିଧି ପାଇଥିବାରୁ ସରକାରଙ୍କ ଦୃଷ୍ଟି ଏହି ସମ୍ପ୍ରଦାୟର ଅଭାବ ଅସୁବିଧା ପ୍ରତି ପଡ଼ିବ, ଏହି କାରଣରୁ ସେମାନେ ଆଶାନ୍ୱୀ ହୋଇଥିଲେ ।

ମଧୁବାବୁ ତାଙ୍କର ସାଧାରଣ ଜୀବନରେ ଓ ବ୍ୟବସ୍ଥାପନ ସଭାଜୀବନରେ ଏ କ୍ଷେତ୍ରରେ ତାଙ୍କର କର୍ତ୍ତବ୍ୟ ଉତ୍ତମ ରୂପେ ପାଳନ କରିଛନ୍ତି । ସୁଯୋଗ ସୁବିଧା ପାଇବାମାତ୍ରେ ଏହି ସମ୍ପ୍ରଦାୟର ଅଭାବ ଅସୁବିଧା ପ୍ରତି ବ୍ୟବସ୍ଥାପକ ସଭାରେ ଓ ବାହାରେ ମଧ୍ୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ପ୍ରତିକାର ଦାବୀ କରିଛନ୍ତି । ଏହି କାରଣରୁ ସ୍ୱ ଧର୍ମ-ସମ୍ପ୍ରଦାୟର ଲୋକେ ତାଙ୍କୁ ବିଶେଷ ମାନ୍ୟ କରୁଥିଲେ । ଓଡ଼ିଶା ଓ ଓଡ଼ିଶା ବାହାରେ ସମଗ୍ର ଭାରତବର୍ଷରେ ଖ୍ରୀଷ୍ଟସମ୍ପ୍ରଦାୟ ତାଙ୍କୁ ସମ୍ମାନ କରୁଥିଲେ । ନିଖିଳ ଭାରତୀୟ ଖ୍ରୀଷ୍ଟିଆନ୍ ସଂଘର ବାର୍ଷିକ ଅଧିବେଶନରେ ଏକାଧିକ ବାର ସଭାପତିରୂପେ ସେ ନିର୍ବାଚିତ ହୋଇଥିବା ଏଥିର ପ୍ରମାଣ ।

ଅଭିନନ୍ଦନର ଉତ୍ତରରେ ମଧୁବାବୁ ଗମ୍ଭୀର ସ୍ୱରରେ କହିଥିଲେ—ତାଙ୍କୁ ଅଭିବାଦନ କରିବାଦ୍ୱାରା ସଭା ଆପଣାକୁ ଆପେ ଅଭିବାଦନ କରୁଅଛି । କାରଣ ସେ ଜାଣନ୍ତି ଯେ, ସେ ସଭାକୁ ଛାଡ଼ି ଅନ୍ୟ କିଛି ନୁହନ୍ତି । ଏହା କହି ଶରୀରର ଅଙ୍ଗପ୍ରତ୍ୟଙ୍ଗମାନେ କିଏ ବଡ଼ବୋଲି କଳି ଲଗାଇବାର ଯେଉଁ ଗଳ୍ପ ନୀତି କଥାରେ ସମସ୍ତେ ପଢ଼ିଅଛନ୍ତି, ତାହା ସ୍ମରଣ କରାଇ ଦେଇ କହିଲେ ଯେ ସେ କଦାପି ଆପଣାକୁ ବଡ଼ ବୋଲି ମଣିନାହାନ୍ତି । ବଙ୍ଗ ବ୍ୟବସ୍ଥାପକ ସଭାର କାର୍ଯ୍ୟ ବଡ଼ ଗୁରୁତର । ସେ ସଭାର ମେମ୍ବର ହେଲେ ଯେ ଭୋଜନ ଉତ୍ତାରୁ ପଲଙ୍କରେ ପଡ଼ି ଧୂମପାନ କରିବାର ସୁଖ ମିଳେ, ତାହା ନୁହେଁ । ସେ ପଦରେ ଥାଇଁ ଅତ୍ୟନ୍ତ ପରିଶ୍ରମ କରିବାକୁ ପଡ଼ିବ । ସେ ନିଜେ ପରିଶ୍ରମ ନିମିତ୍ତ କାତର ନୁହନ୍ତି । ମାତ୍ର ଭିନ୍ନ ଭିନ୍ନ ସମ୍ପ୍ରଦାୟର ଲୋକେ ସମବେତ ହୋଇ ତାଙ୍କୁ ଅଭିବାଦନ କରିବାଦ୍ୱାରା ସେ ବୁଝିଅଛନ୍ତି ଯେ ସମସ୍ତେ ତାଙ୍କୁ ସେହି ପଦର କାର୍ଯ୍ୟ ସମ୍ୟକ୍‌ରୂପେ ସମାଧାନ କରିବା ନିମନ୍ତେ ତାଙ୍କୁ ସାହାଯ୍ୟ ଓ ପରାମର୍ଶ ପ୍ରଦାନ କରିବେ ।

ମଧୁବାବୁଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ସେହି ସପ୍ତାହରେ ରବିବାର ସନ୍ଧ୍ୟା ସମୟରେ କଟକର ଉତ୍କଳ ସଭାର ଏକ ଅଧିବେଶନ ହୋଇଥିଲା । ବାବୁ ଯୋଗେଶ୍ୱର ଚନ୍ଦ୍ର ସଭାପତି ଆସନ ଗ୍ରହଣ କରି ସଭାର ଉଦ୍ଦେଶ୍ୟ ବୁଝାଇଦେବାପରେ କହିଲେ ଯେ, "ବାବୁ ମହୋଦୟ ଉତ୍କଳର ସର୍ବତ୍ର ପରିଚିତ ଏବଂ ତାଙ୍କୁ ବଳି ଯୋଗ୍ୟଲୋକ ଉତ୍କଳରେ ନାହାନ୍ତି । ସେ ଯେ ଆପଣାର ଏତେ ତ୍ୟାଗ ସ୍ୱୀକାରପୂର୍ବକ ଦେଶର କାର୍ଯ୍ୟକୁ ସ୍ୱଚ୍ଛନ୍ଦ୍ୟରେ ଅଗ୍ରସର କରାଇ ନେଇଅଛନ୍ତି, ଏଥିଁ ବଳି ଆଉ ଆନନ୍ଦର ବିଷୟ କ'ଣ ହୋଇପାରେ ? ତତ୍ପରେ

ଅନ୍ୟବ୍ୟକ୍ତିମାନେ ପ୍ରକାଶ କଲେ ଯେ, ବଡ଼ଦେଉଳର ମକଦ୍ଦମା ପ୍ରଭୃତି ଗୁରୁତର ସମସ୍ୟା ସମୟରେ ମଧୁବାବୁ ଦେଶକୁ ବିପଦରୁ ରକ୍ଷା କରିଅଛନ୍ତି । ଆତ୍ମଶାସନ ପ୍ରଣାଳୀ ଓ ଲବଣ ଶୁଳ୍କ ପ୍ରଭୃତି ଦେଶର ଯାବତୀୟ କାର୍ଯ୍ୟରେ ଅଗ୍ରସର ହୋଇ ସଭାସମିତିଦ୍ୱାରା ଲୋକମାନଙ୍କୁ ସତ୍ ପରାମର୍ଶ ଓ ଉପଦେଶ ପ୍ରଦାନ କରିଅଛନ୍ତି । ସେ ଉତ୍କଳ ସଭାର ସଭାପତି ଏବଂ ସଭା ତାଙ୍କ ନିମିତ୍ତ ବଞ୍ଚିଅଛି । ଏଥିଉତ୍ତାରୁ ତାଙ୍କର ସଭ୍ୟ ନିଯୁକ୍ତିରେ ଆନନ୍ଦ ପ୍ରକାଶ କରି ଏକ ପ୍ରସ୍ତାବ ଧାର୍ଯ୍ୟ ହେଲା । ମାନ୍ୟବର ମଧୁବାବୁ ଦଣ୍ଡାୟମାନ ହୋଇ ପ୍ରକାଶ କଲେ ଯେ ନଅବର୍ଷ ତଳେ ସେ ଏହି ଉତ୍କଳସଭାରୁ ପ୍ରତିନିଧି ହୋଇ ମାନ୍ଦ୍ରାଜ କଂଗ୍ରେସକୁ ଯାଇଥିଲେ ଏବଂ ସେତେବେଳେ ତାଙ୍କ ସଙ୍ଗେ ସଭାର ସମ୍ପାଦକ ବାବୁ ଗୌରୀଶଙ୍କର ରାୟ ଯାଇଥିଲେ । ତାଙ୍କର ସଙ୍ଗୀଠାରୁ ସେ ସମୟରେ ସେ ଯେଉଁ ଉପଦେଶ ଓ ପରାମର୍ଶମାନ ପାଇଥିଲେ, ଅଦ୍ୟାପି ତାଙ୍କର ସେ ସବୁ ସ୍ମରଣ ଅଛି । ସେ ମନେ କରୁଛନ୍ତି ଯେ ବଙ୍ଗ ବ୍ୟବସ୍ଥାପକ ସଭାକୁ ତାଙ୍କ ସଙ୍ଗେ ସେ (ଗୌରୀଶଙ୍କର) ଯାଇଥିଲେ ଅନେକ କାର୍ଯ୍ୟ ହୋଇପାରିଥାଆନ୍ତା । ମାତ୍ର ଈଶ୍ୱରଙ୍କର ତାହା ଅଭିପ୍ରେତ ନୁହେଁ । ସେ ଏହିଠାରେ ଦେଶର ଯାବତ୍ ବିଷୟରେ ତାଙ୍କୁ ସାହାଯ୍ୟ ଓ ପରାମର୍ଶ ପ୍ରଦାନ କରିବେ । ଅନେକ କହନ୍ତି ଯେ ଓଡ଼ିଶା ନିତାନ୍ତ ଅନୁନ୍ନତ; ମାତ୍ର ସେ ତାହା ମାନିବାକୁ ପ୍ରସ୍ତୁତ ନୁହନ୍ତି । ଉନ୍ନତି ଓ ଅବନତି ଦେଶର ଶିକ୍ଷିତ ଲୋକଙ୍କ ସଂଖ୍ୟା ଉପରେ ବିଶେଷ ନିର୍ଭର କରେନାହିଁ । ଲୋକେ ଯଦି ଶାସନକାର୍ଯ୍ୟ ସମ୍ବନ୍ଧରେ ପ୍ରତିନିଧି ପ୍ରେରଣ କରିପାରିଲେ, ତାହାହେଲେ ଦେଶକୁ ନିତାନ୍ତ ଅନୁନ୍ନତ ବୋଲି କପରି ବୋଲିଯିବ ? ପୁଣି ଓଡ଼ିଆଙ୍କ ମଧ୍ୟରେ ଶିକ୍ଷିତ ଲୋକ ଅଳ୍ପ ହେଲେହେଁ ଏ ଦେଶବାସୀ ବଙ୍ଗାଳୀଙ୍କୁ ମିଶାଇଲେ ତାହାଁର ସଂଖ୍ୟା ଅଳ୍ପ ହେବନାହିଁ । ବର୍ତ୍ତମାନର ବଙ୍ଗାଳୀ ଓଡ଼ିଆଙ୍କ ମଧ୍ୟରେ ପ୍ରଭେଦସୂଚକ ମନୋମାଳିନ୍ୟ ଓ ବାଦବିବାଦର କେବଳ ଯୁଗଜନୋଚିତ ଔଦ୍ଧତ୍ୟ ଭିନ୍ନ ଅନ୍ୟ କିଛି ନୁହେଁ । କାରଣ, ଏହି କାର୍ଯ୍ୟରେ ବଙ୍ଗାଳୀମାନେ ଓଡ଼ିଆଙ୍କ ସଙ୍ଗରେ ମିଶି ସମଭାବରେ ଆନନ୍ଦ କରୁଅଛନ୍ତି । ସେ ପଦରେ ନିଯୁକ୍ତ ହେଲେ, ତାହାଁର ଗୁରୁତ୍ୱ ଅଧିକ ଏ ଦେଶବାସୀଙ୍କ ପରାମର୍ଶ ଉପରେ ସେ ସର୍ବଦା ନିର୍ଭର କରନ୍ତି । ସମ୍ବାଦପତ୍ରର ବଳ ଏ ଦେଶରେ ନାହିଁ । ସମ୍ବାଦପତ୍ର ସବୁବେଳେ ଦେଶର ଲୋକଙ୍କର ମନୋଭାବ ପ୍ରକାଶ ନ କଲେହେଁ ତାହା ଲୋକଶିକ୍ଷାର ପରମ ଉପାଦେୟ ପଦାର୍ଥ । ସେ ଅନେକ ସ୍ଥାନରୁ ଅନେକ ଅଭିବାଦନ ପତ୍ର ପାଇଅଛନ୍ତି ଏବଂ ତାଙ୍କର ନିୟୋଗରେ ଇଂରେଜ ଲୋକମାନଙ୍କଠାରୁ ଦେଶୀୟ ଲୋକମାନେ ସମସ୍ତେ ଆନନ୍ଦିତ ହୋଇଥିବାର ଜାଣି ସେ ଅତ୍ୟନ୍ତ ପ୍ରୀତ ହୋଇଅଛନ୍ତି । ସେ ବଙ୍ଗ ବ୍ୟବସ୍ଥାପକ ସଭାର ଜଣେ ମେମ୍ବର ମାତ୍ର । ସେ ସଭାର ଅନେକ ମେମ୍ବର ଅଛନ୍ତି । ତାଙ୍କ ମତରେ ଯେ ସେହି ସଭା ସର୍ବଦା ପରିଚାଳିତ ହେବ, ଏହା ଆଶା କରିବା ଦୁରାଶା ମାତ୍ର । ତଥାପି ଈଶ୍ୱର ଅନୁଗ୍ରହ ରଖିଥିଲେ, ସେ କୌଣସି କାର୍ଯ୍ୟ କରିବାରେ ତ୍ରୁଟି ନ କରିବେନାହିଁ । ସେ କୌଣସି କାମ କରିପାରନ୍ତୁ ଅବା ନପାରନ୍ତୁ, ଏତିକ ନିଶ୍ଚୟ

କହିପାରିବେ ଯେ ଲୋକେ ବର୍ତ୍ତମାନ ତାଙ୍କ ପ୍ରତି ଯେଉଁ ବିଶ୍ୱାସ ଅର୍ପଣ କରିଅଛନ୍ତି, ପରେ ତାଙ୍କୁ କେହି ବିଶ୍ୱାସଘାତକ ବୋଲି ଯେପରି ନ କହନ୍ତୁ ।" ('ଉତ୍କଳ ଦୀପିକା' ୧୮୯୬)

୧୮୯୬ ମଇ ମାସ ୨୫ ତାରିଖରେ ମଧୁବାବୁ ଗୋଚର ଜମି ଉପରେ ଜିଲ୍ଲାବୋର୍ଡର କର୍ତ୍ତୃତ୍ୱ ଓ ନିୟନ୍ତ୍ରଣ ଦାବୀ କରିଥିଲେ । ଅଗଷ୍ଟ ମାସ ୧ ତାରିଖରେ ବଙ୍ଗ ବ୍ୟବସ୍ଥାପକ ସଭାରେ ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର ଉଦ୍ଦେଶ୍ୟରେ କଟକ ରେଭେନ୍‌ସା କଲେଜରେ ଅଧିକ ବିଷୟରେ ଶ୍ରେଣୀ ଖୋଲିବା ନିମନ୍ତେ ଦାବୀ କରିଥିଲେ ।

**ଅମ୍ବିକାଚରଣ ହାଜରା ବା ଶୈଳବାଳା** : ଶୈଳବାଳା ଅମ୍ବିକାଚରଣଙ୍କ ଜ୍ୟେଷ୍ଠା ସନ୍ତତି । ଅମ୍ବିକାଚରଣ ଓ ମଧୁବାବୁ କଲିକତାରେ ଏକ ସାଙ୍ଗରେ ପଢ଼ୁଥିଲେ, ହଷ୍ଟେଲରେ ଏକ କୋଠରିରେ ରହୁଥିଲେ । ଦୁହେଁ ସାଙ୍ଗ ହୋଇ ଏକ ସମୟରେ କଲିକତାରେ ଏକ ଗିର୍ଜାରେ ଖ୍ରୀଷ୍ଟିୟାନ୍ ଧର୍ମ ଗ୍ରହଣ କରିଥିଲେ । ସେତେବେଳକୁ ଅମ୍ବିକା ବିବାହ କରିସାରିଥିଲେ । ତାଙ୍କ ସ୍ତ୍ରୀ ପ୍ରସନ୍ନମୟୀ ହିନ୍ଦୁ ପରିବାରର କନ୍ୟା । ଅମ୍ବିକାଙ୍କ ଘର ମେଦିନୀପୁର ଜିଲ୍ଲାରେ ଥିଲା । ସେ ଧର୍ମାନ୍ତର ଗ୍ରହଣ କରିବା ପରେ ପୈତୃକ ସମ୍ପତ୍ତିରୁ ବଞ୍ଚିତ ହେଲେ । ସେ ସ୍ତ୍ରୀଙ୍କୁ ଧରି କଲିକତା ଚାଲିଆସିଲେ ଏବଂ ମଧୁବାବୁଙ୍କ କଲିକତାର ଭବାନୀପୁର ଅଞ୍ଚଳ ନିକଟସ୍ଥ ଚକରବାରି ରୋଡ଼ରେ ଥିବା ବସାରେ ରହିଲେ । ପ୍ରସନ୍ନମୟୀ ଚିରରୁଗ୍‌ଣା ଥିଲେ । ମଧୁବାବୁଙ୍କ ବସାରେ ଖ୍ରୀ: ୧୮୭୫ରେ ଶୈଳବାଳା ଜନ୍ମ ହୋଇଥିଲେ । ମଧୁବାବୁଙ୍କ ସ୍ତ୍ରୀ ସେତେବେଳେ ଜୀବିତା ଥିଲେ । ସେ ମଧ ଶିଶୁ ଶୈଳବାଳାଙ୍କୁ ସ୍ନେହ କରୁଥିଲେ ।

ଅମ୍ବିକାଚରଣ ଭାରତ ସରକାରଙ୍କ ଅର୍ଥ ବିଭାଗରେ ଚାକିରି କରୁଥିଲେ । ସେ ନିଜ ପରିବାରକୁ ଧରି ସିମିଲାରେ ରହିଲେ ଓ ଶୈଳବାଳା ମଧ ପିତାଙ୍କ ସଙ୍ଗରେ ରହିଲେ । ଶୈଳବାଳାଙ୍କର ତିନି ଭାଇ, ଏକ ଭଉଣୀ । ସିମଲାରୁ ଖ୍ରୀ: ୧୮୮୮ରେ ଅମ୍ବିକାଚରଣ ସକୁଟୁମ୍ବ କଲିକତାକୁ ଫେରିଆସିଲେ । ସେଠାରେ ମଧୁବାବୁ ତାଙ୍କୁ ଦେଖିବାକୁ ଯାଇଥିଲେ । ଶୈଳବାଳାଙ୍କୁ ପିଲାଦିନେ ମଧୁବାବୁ ଲାଳନପାଳନ କରିଥିଲେ । ଏବେ ପୁଣି ତାଙ୍କୁ ଦେଖି ଆନନ୍ଦିତ ହେଲେ । ସେତେବେଳକୁ ଶୈଳଙ୍କ ବୟସ ୧୩ ବର୍ଷ । ମଧୁବାବୁଙ୍କ ସ୍ତ୍ରୀଙ୍କର ଖ୍ରୀ: ୧୮୭୭ରେ ବିୟୋଗ ହୋଇଯାଇଥିଲା । ବଞ୍ଚିଥିଲାବେଳେ ସେ ଶୈଳଙ୍କୁ ଲାଳନ ପାଳନ କରୁଥିଲେ । ସେ ଶୈଳବାଳାଙ୍କୁ ପାଳିତା କନ୍ୟା କରିବାପାଇଁ କୁଆଡ଼େ ଇଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ଶୈଳଙ୍କ ମାତା ଏଥିରେ ସମ୍ମତି ଦେଇନଥିଲେ ।

ଖ୍ରୀ: ୧୮୮୮ରେ ଅମ୍ବିକାଚରଣ କଲିକତା ଆସିବା ପରେ ତାଙ୍କ ରୁଗ୍‌ଣା ସ୍ତ୍ରୀ ଓ ପିଲାମାନଙ୍କୁ ଧରି ମାସେ ଦିମାସ କଟକରେ ତାଙ୍କ ଘରେ ବାସ କରିବାକୁ ମଧୁବାବୁ ଅନୁରୋଧ କରିଥିଲେ । ଏହାଦ୍ୱାରା ପ୍ରସନ୍ନମୟୀଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ହେବ ବୋଲି ସେ କହିଥିଲେ । ତାଙ୍କ ଅନୁରୋଧରେ ଅମ୍ବିକା ଛୁଟି ନେଇ ସକୁଟୁମ୍ବ ଖ୍ରୀ: ୧୮୮୯ରେ କଟକ

ଆସି ମଧୁବାବୁଙ୍କ ଘରେ ରହିଲେ । ମଧୁବାବୁ, ଶୈଳବାଳାଙ୍କୁ କଲିକତାରେ ସ୍କୁଲଗୃହିଣୀ-ନିବାସରେ ରଖି ପାଠପଢ଼ାଇବା ପ୍ରସ୍ତାବ କରିବାରୁ ଅମ୍ବିକା ସମ୍ମତ ହେଲେ । ଶୈଳବାଳାଙ୍କ କଲିକତା ରହଣି ଓ ଶିକ୍ଷା ଖର୍ଚ୍ଚ ମଧୁବାବୁ ବହନ କଲେ । କିଛି ଦିନ ପରେ ହାଜରାଙ୍କ ପରିବାର କଲିକତାକୁ ଫେରିଗଲେ । ସେଠାରେ ଖ୍ରୀ: ୧୮୯୬ରେ ଶୈଳବାଳାଙ୍କ ମାତାଙ୍କର ମୃତ୍ୟୁ ହୋଇଗଲା । ଏହା ପରେ ଅମ୍ବିକାଙ୍କ ପିଲାମାନେ କଟକ ଆସି ମଧୁବାବୁଙ୍କ ଘରେ ରହିଲେ ଏବଂ ଏମାନଙ୍କର ସମସ୍ତ ଖର୍ଚ୍ଚ ମଧୁବାବୁ ନିଜେ ବହନ କଲେ । ଅମ୍ବିକା ଦ୍ୱିତୀୟ ବାର ବିବାହ କରିଥିଲେ ଏବଂ ସିମଲାରେ ରହୁଥିଲେ ।

ଶୈଳବାଳା ଆଇ. ଏ. ପଢୁଥିଲାବେଳେ ମଧୁବାବୁ ତାଙ୍କୁ ପାଳିତା କନ୍ୟା ବୋଲି ପରିଚିତ କରାଇଥିଲେ । ଶୈଳବାଳା ନିଜର ସଂଜ୍ଞା "ହାଜରା" ପରିବର୍ତ୍ତେ ମଧୁବାବୁଙ୍କ ସଂଜ୍ଞା 'ଦାସ' ଗ୍ରହଣ କଲେ । ଶୈଳବାଳା, ତାଙ୍କ ସାନ ଭଉଣୀ ସୁଧାଂଶୁବାଳା ଓ ତାଙ୍କ ଭାଇମାନଙ୍କର ଶିକ୍ଷା ଓ ପୋଷଣର ସମସ୍ତ ବ୍ୟୟ ମଧୁବାବୁ ବହନ କରିଥିଲେ । ମଧୁବାବୁ ଶୈଳବାଳାଙ୍କୁ କଲିକତା ପଠାଇ ସେଠାରେ ଡଭ୍‌ଟନ୍ କଲେଜ (Deveton College, Free School Street) ରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇଲେ । ସେଠାରେ ଶୈଳବାଳା ବୋର୍ଡ଼ିଂରେ ରହିଲେ । ଏହି ସ୍କୁଲରେ ୟୁରୋପୀୟ ଗୃହଗୃହିଣୀମାନେ ମଧ୍ୟ ପଢୁଥିଲେ । ବିହାରର ପ୍ରସିଦ୍ଧ ନେତା ଖ୍ୱାଜା ମହମ୍ମଦ ନୁର୍ ଏଠାରେ ପଢୁଥିଲେ । ଆଇ. ଏ. ପାଶ୍ କରିବା ପରେ ଶୈଳବାଳା କଟକ ଫେରି-ଆସିଲେ । ସେତେବେଳକୁ ମଧୁବାବୁଙ୍କ ସ୍ୱାସ୍ଥ୍ୟ ଭଲ ନ ଥିଲା । ଚିକିତ୍ସାପାଇଁ ବିଲାତ ଯିବାକୁ ଡାକ୍ତରମାନେ ତାଙ୍କୁ ପରାମର୍ଶ ଦେଇଥିଲେ । ମଧୁବାବୁ ଖ୍ରୀ:୧୮୯୭ରେ ବିଲାତ ଗଲେ ଏବଂ ଶୈଳବାଳା ଘରେ ରହିଲେ ।

**ଦ୍ୱିତୀୟ ଥର କଲିକତାରେ ବାସ :** ଖ୍ରୀ. ୧୮୯୭ରେ ମଧୁବାବୁ ବେଙ୍ଗଲ୍ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍ (ବଙ୍ଗ ବିଧାନସଭାକୁ )କୁ ନିର୍ବାଚିତ ହେଲେ । ତାଙ୍କୁ ବହୁଥର କଲିକତା ଯିବାକୁ ପଡ଼ୁଥିଲା ଏବଂ କାଉନ୍‌ସିଲ୍ କାର୍ଯ୍ୟରେ ବହୁଦିନ ମଧ୍ୟ ସେଠାରେ ଅବସ୍ଥାନ କରିବାକୁ ପଡ଼ୁଥିଲା । ସେ କଲିକତାରେ ରହି ସେହିଠାରେ ଓକିଲାତି କଲେ ଭଲହେବ ବୋଲି ତାଙ୍କର ବନ୍ଧୁ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ (ଲର୍ଡ଼ ସିଂହ) ଓ ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ପ୍ରଭୃତି ପରାମର୍ଶ ଦେଲେ । ମଧୁବାବୁ ସୁବିଧା ଦୃଷ୍ଟିରୁ କଲିକତାରେ ରହିବା ସ୍ଥିର କଲେ ଏବଂ କଲିକତାର ବାଲିଗଞ୍ଜରେ ଗୋଟିଏ କୋଠା ଭଡ଼ା ନେଲେ । ଏହା ପରେ ସେ ଇଂଲଣ୍ଡ ଗଲେ । ଇଂଲଣ୍ଡରୁ ଫେରିଆସିଲା ପରେ କଲିକତାରେ ଓକିଲାତି କରିବାକୁ ଆଉ ମନ କଲେନାହିଁ । କଲିକତାରେ ରହିଲେ ଓଡ଼ିଶା ସମସ୍ୟା ପ୍ରତି ବିଶେଷ ଦୃଷ୍ଟି ଦିଆଯାଇ ପାରିବ ନାହିଁ ଏବଂ ତାଙ୍କର ଶିଳ୍ପ ସଂସ୍ଥା ଓ ଯୋଜନା ନଷ୍ଟ ହୋଇଯିବ, ଏହି ଆଶଙ୍କାରେ କଟକକୁ ଫେରିଆସିଲେ ।

**ବାଇଦବଜା ଇତ୍ୟାଦ ଉପରେ .ଟିକସ ପ୍ରସ୍ତାବର ବରୋଧ (୧୮୯୭) :** ବଙ୍ଗ ବ୍ୟବସ୍ଥାପକ ସଭାରେ ମ୍ୟୁନସିପାଲଟି ଆଇନର ସଂଶୋଧନ ନିମନ୍ତେ ଯେଉଁ ବଲ୍ ଆଗତ କରାଯାଇଥିଲା, ତହିଁରେ ବଜାରରେ ବାଦ୍ୟ ବଜାଇ ଗଲେ ଟିକସ ଦେବାର ପ୍ରସ୍ତାବ ହୋଇଥିଲା । ଏ ସମ୍ବନ୍ଧରେ ସରକାର ଲୋକମତ ଜାଣିବା ଉଦ୍ଦେଶ୍ୟରେ ମ୍ୟୁନସିପାଲଟି ଓ ଅନ୍ୟ ଲୋକଙ୍କର ମତ ଲୋଡ଼ିଥିଲେ । ପ୍ରଥମେ ବାଲେଶ୍ୱର ମ୍ୟୁନସିପାଲଟି ଏହି ପ୍ରସ୍ତାବ ସପକ୍ଷରେ ମତ ଦେଇଥିଲେ; କିନ୍ତୁ ପରେ ଏହାର ବରୋଧ କରିଥିଲେ । ବଙ୍ଗ ପ୍ରଦେଶର ବହୁ ମ୍ୟୁନସିପାଲଟି ଏହି ଟିକସ ବସାଇବା ସପକ୍ଷରେ ମତ ଦେଇଥିଲେ । ବ୍ୟବସ୍ଥାପକ ସଭାର ଅନେକ ସଭ୍ୟ ମଧ୍ୟ ସମର୍ଥନ ଜଣାଇଥିଲେ । ମ୍ୟୁନସିପାଲଟିର ଆୟ ବୃଦ୍ଧି ହିଁ ଏହି ପ୍ରସ୍ତାବର ଉଦ୍ଦେଶ୍ୟ ଥିଲା ।

କିନ୍ତୁ ମଧୁବାବୁ ଏହାର ବରୋଧ କରିଥିଲେ ଏବଂ ଏହାକୁ ବନ୍ଦକରିବା ପାଇଁ ଯଥାସାଧ୍ୟ ଚେଷ୍ଟାକରି ସଫଳକାମ ହୋଇଥିଲେ । ପ୍ରସ୍ତାବଟି ଉଠିଯିବାରୁ ମ୍ୟୁନସିପାଲଟି-ମାନଙ୍କର ଭାବୀ ଆୟବୃଦ୍ଧି କଟିଗଲା ସତ୍ୟ; କିନ୍ତୁ ଜନସାଧାରଣଙ୍କର ସାଂସ୍କୃତିକ,ନୈତିକ, ସାମାଜିକ ଓ ସାମ୍ପ୍ରଦାୟିକ କଲ୍ୟାଣ ସାଧିତ ହୋଇଥିଲା । ମଧୁବାବୁ ଯୁକ୍ତି କରିଥିଲେ, "କେବଳ ବଜାରରେ ବାଦ୍ୟ ଉପରେ ଟିକସ ବସାଇଲେ ଏହାଦ୍ୱାରା କେଲା ଧୁଡ଼ୁକି ବଜାଇଲେ, ପିଲାଏ ପେଁକାଳି ବଜାଇଲେ, ଫକିର ଖଞ୍ଜଣି ବା ମାଙ୍କଡ଼ ନଚାଇବାପାଇଁ ଡମ୍ବରୁ ବଜାଇଲେ ଏମାନଙ୍କୁ ଟିକସ ଦେବାକୁ ହେବ । ପୁଣି, ଉତ୍ସବ ବା ପର୍ବ ଉପଲକ୍ଷରେ ମଧ୍ୟ ଟିକସ ଦେବେ; କିନ୍ତୁ କେହି ମକଦ୍ଦମା ଜିତିଥିବା ଉପଲକ୍ଷରେ ଯଦି ବାଜା ବଜାନ୍ତି କିମ୍ବା ରାଜା କି ଜମିଦାର ଆସିବାବେଳେ ବାଜା ବଜାଇ ଆସନ୍ତି, ସେତେବେଳେ ସେମାନଙ୍କଠାରୁ ଟିକସ ନିଆଯିବନାହିଁ । ଯେ ଆମୋଦ ପ୍ରମୋଦ ପାଇଁ ବାଜା ବଜାଇଲା ସେ ଅବ୍ୟାହତି ପାଇଲା; ଅଥଚ ଯେ ବିବାହରେ ବାଜା ବଜାଇବାକୁ ବାଧ୍ୟ ସେ ଟିକସ ଦେବାକୁ ବାଧ୍ୟ ହେଲା । ପୁଣି, ଏହାର ସାମ୍ପ୍ରଦାୟିକ ଦିଗ ଅଛି । ଯେଉଁ ବାଦ୍ୟ ଉପରେ ଟିକସ ଦେବାକୁ ହେବ, ତାହା ଧର୍ମ-ସମ୍ବନ୍ଧୀୟ କି ନାହିଁ ତାହା ଜାଣିବା ଦରକାର । କାରଣ, ଏଥିରେ ଗଣ୍ଡଗୋଳ ହେବାର ଆଶଙ୍କା ଅଛି । ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିଆନଙ୍କ ମଧ୍ୟରେ ମତଭେଦ ଉପସ୍ଥିତ ହୋଇ ବିବାଦ ସୃଷ୍ଟିହେବା ସମ୍ଭାବନା ରହିଛି ।" ମଧୁବାବୁଙ୍କ ଯୁକ୍ତିବଳରେ ସରକାର ଏହି ଟିକସ ପ୍ରସ୍ତାବ ଉଠାଇ ନେଇଥିଲେ ।

## ୧୦ । ପ୍ରଥମ ବିଲାତଯାତ୍ରା ( ୧୮୯୭ )

ଖ୍ରୀ: ୧୮୯୭ରେ ବଙ୍ଗ ବ୍ୟବସ୍ଥାପକ ସଭା କାର୍ଯ୍ୟରେ ଯୋଗ ଦେବାପାଇଁ ମଧୁବାବୁଙ୍କୁ କଲିକତାରେ ବହୁ ସମୟ ଅବସ୍ଥାନ କରିବାକୁ ପଡ଼ୁଥିଲା । ମଧୁବାବୁଙ୍କୁ ହାଇକୋର୍ଟ ଓ

ବୋର୍ଡ ଅଫ୍ ରେଭେନ୍ୟୁରେ ମକଦ୍ଦମା ତଦବିର କରିବା ପାଇଁ ମଧ୍ୟ ପଡ଼ୁଥିଲା । ସେଥିପାଇଁ ସେ କଲିକତା ବାଲିଗଞ୍ଜରେ ଏକ ଘର ଭଡ଼ା ନେଇ ସେଠାରେ ରହୁଥିଲେ ।

**ପ୍ରଥମ ବିଲାତ ଯାତ୍ରା ( ଖ୍ରୀ ୧୮୯୭ )**—ସ୍ୱାସ୍ଥ୍ୟଭଙ୍ଗ ହେବାରୁ ଡାକ୍ତରମାନଙ୍କ ପରାମର୍ଶରେ ମଧୁବାବୁ ବିଲାତ ଭ୍ରମଣରେ ଯିବାକୁ ସ୍ଥିର କଲେ । ସେତେବେଳେ ବିଲାତ ଭ୍ରମଣ ଏକ ବଡ଼ଲୋକୀ ବ୍ୟସନ ଥିଲା । ବିଲାତକୁ ଯାଇ ଅଳ୍ପଦିନ ଅବସ୍ଥାନ କରି ଫେରିଥିବା ଲୋକଙ୍କୁ ମଧ୍ୟ ଲୋକେ ସମ୍ମାନ ଚକ୍ଷୁରେ ଦେଖୁଥିଲେ । ମଧୁବାବୁ ବିଲାତକୁ ଯାଇ ସ୍ୱାସ୍ଥ୍ୟ ଭଲକରିବା ନିମନ୍ତେ ଯେଉଁ ନିଷ୍ପତ୍ତି ନେଇଥିଲେ, ତାହା ଭିତରେ ବିଲାତରେ ବଡ଼ ବଡ଼ ଇଂରେଜ ହାକିମହୁକୁମା ପ୍ରଭୃତିଙ୍କ ସହ ଆଳାପ ଆଲୋଚନା ଓ ବନ୍ଧୁତା କରିବା ଉଦ୍ଦେଶ୍ୟ ମଧ୍ୟ ଥିବା ଅନୁମାନ କରାଯାଏ । କାରଣ ସେ ବିଲାତ ଯିବା ପରେ ସବୁବେଳେ କାର୍ଯ୍ୟରତ ରହିଥିଲେ । ବହୁ ବିଶିଷ୍ଟ ଲୋକ ଓ ସାଧାରଣ ସଂସ୍ଥା ସହିତ ସେ ପରିଚିତ ହୋଇଥିଲେ । ଏଥିରେ ବିଲାତରେ ଓ ଆମ ଦେଶରେ ମଧ୍ୟ ତାଙ୍କର ରାଜନୈତିକ ଓ ସାମାଜିକ ସମ୍ମାନ ଓ ପ୍ରତିପତ୍ତି ବୃଦ୍ଧି ପାଇଥିଲା ।

ମଧୁବାବୁ ବିଲାତ ଯିବା ପୂର୍ବରୁ ତାଙ୍କ କଟକ ଘରେ ଅନାମଚନ୍ଦ୍ର ଦାସ ଓ ତାଙ୍କ ପରିବାରଙ୍କୁ ରଖିଯାଇଥିଲେ । ଏମାନେ ମଧୁବାବୁଙ୍କ ସହ ଏକ ପରିବାରର ଲୋକ ପରି ଚଳୁଥିଲେ । ବନ୍ଧୁ ହାଜରାଙ୍କ ପୁଅ ଓ ଝିଅଙ୍କ ବିଦ୍ୟାଶିକ୍ଷା ଭାର ମଧୁବାବୁ ନିଜେ ବହନ କରି ପ୍ରତିବର୍ଷ ବହୁ ଟଙ୍କା ବ୍ୟୟ କରୁଥିଲେ । ସେତେବେଳକୁ କୁମାରୀ ଶୈଳବାଳା କଲିକତାରେ ରହି ପଢ଼ୁଥିବାରୁ ବିଲାତ ଯିବାପୂର୍ବରୁ ତାଙ୍କୁ କଲିକତାରୁ ଆଣି ନିଜ ଘରେ ରଖିଲେ ଏବଂ ଅନାମ ଦାସଙ୍କ ପରିବାର ସହିତ ଚଳିବା ପାଇଁ ବ୍ୟବସ୍ଥା କରିଦେଲେ । ଘର ଚଳିବାପାଇଁ ଶୈଳବାଳାଙ୍କ ହସ୍ତରେ ଯଥେଷ୍ଟ ପରିମାଣରେ ଅର୍ଥ ଦେଇଯାଇଥିଲେ ।

ନିଜ ବ୍ୟୟରେ ମଧୁବାବୁ କୁମାରୀ ଇସାବେଲ ସାମୁଏଲ୍‌ଙ୍କୁ କଲିକତାରେ ଆଇ.ଏ. ପଢ଼ାଉଥିଲେ । ସେତେବେଳେ କଲିକତାର ମହିଳା କଲେଜ 'ବେଥୁନ କଲେଜ' ( Bethune College )ର ଖୁବ୍ ଖ୍ୟାତି ଥିଲା । ଇସାବେଲ ଆଇ.ଏ. ପାସ୍ କରି କଟକରେ ବି. ଏ. ପଢ଼ିଲେ । ଶୈଳବାଳା ମଧ୍ୟ ସେତେବେଳକୁ ଆଇ.ଏ. ପାସ୍ କରିସାରିଥିଲେ ।

ମଧୁବାବୁ ବିଲାତରେ ପହଞ୍ଚିବା ପରେ ତାଙ୍କର ଅନୁମତି ନ ଆଣି ଶୈଳବାଳା କଟକରେ ବି.ଏ. ପଢ଼ିବା ପାଇଁ ଇଚ୍ଛାକଲେ । ସେତେବେଳେ ରେଭେନ୍‌ସା କଲେଜରେ ଛାତ୍ରୀମାନଙ୍କୁ ନିଆଯାଉ ନ ଥିଲା । ଶୈଳବାଳା ଓ ଇସାବେଲ ସରକାରଙ୍କଠାରୁ ସ୍ୱତନ୍ତ୍ର ଅନୁମତି ପାଇ ରେଭେନ୍‌ସା କଲେଜରେ ବିଦ୍ୟାଶିକ୍ଷା ଆରମ୍ଭ କଲେ । ମଧୁବାବୁ ଘରଖର୍ଚ୍ଚ କରିବାପାଇଁ ଦେଇଯାଇଥିବା ଅର୍ଥରୁ ଦୁହିଁଙ୍କର ବିଦ୍ୟାଶିକ୍ଷା ଖର୍ଚ୍ଚ ଚଳିଲା । ଶୈଳବାଳାଙ୍କ କଲେଜ ଶିକ୍ଷା କଲିକତାରେ ସମ୍ପୂର୍ଣ୍ଣ କରିବାକୁ ମଧୁବାବୁ ସ୍ଥିର କରିଥିଲେ, କାରଣ ସେତେ

ବେଳେ କଟକର କଲେଜରେ ଛାତ୍ରୀମାନଙ୍କ ଶିକ୍ଷାର ବ୍ୟବସ୍ଥା ନ ଥିଲା । ଶୈଳବାଳା ଓ ଇସାବେଲ ଦୁହେଁ ସାଙ୍ଗହୋଇ କଲେଜକୁ ଯାଉଥିଲେ ଏବଂ ମଧ୍ୟାହ୍ନକାଳୀନ ଅବସର ବେଳେ କଲେଜ ପ୍ରିନ୍‌ସପାଲ୍‌ଙ୍କ ଅଫିସ୍‌ରେ ବିଶ୍ରାମ ନେଉଥିଲେ । ମଧୁବାବୁ ବିଲାତରୁ ଫେରିବା ପରେ ଶୈଳବାଳା କଟକରେ ବି.ଏ. ପଢ଼ୁଥିବା ଦେଖି ଖୁସି ହୋଇଥିବା ଜଣାଯାଏ ।

ଭାରତରୁ ଜାହାଜରେ ଯାଇ ଇଂଲଣ୍ଡରେ ପହଞ୍ଚିବାପାଇଁ ମଧୁବାବୁଙ୍କୁ ପ୍ରାୟ ଦୁଇମାସ ସମୟ ଲାଗିଥିଲା । ସେ ଉଚ୍ଚଶିକ୍ଷିତ, ଓକିଲ, ମାର୍ଜିତ ଇଂରେଜୀ ଭାଷାରେ ସୁବକ୍ତା, ୟୁରୋପୀୟ ଚାଲିଚଳଣୀରେ ଦକ୍ଷ, ୟୁରୋପୀୟ ବେଶଭୂଷାରେ ଭୂଷିତ ଓ ଖ୍ରୀଷ୍ଟିଆନ୍ ଧର୍ମାବଲମ୍ବୀ ଥିଲେ । ଏହି କାରଣରୁ ଅଳ୍ପକାଳ ମଧ୍ୟରେ ବହୁ ବିଶିଷ୍ଟ ସରକାରୀ ଓ ବେସରକାରୀ ଭଦ୍ରବ୍ୟକ୍ତିଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିପାରିଥିଲେ । ଉତ୍କଳର ଦୁଃଖକାହାଣୀ ବ୍ରିଟିଶ୍‌ଜାତିକୁ ଜଣାଇବାପାଇଁ ସେ ସବୁ ପ୍ରକାର ପ୍ରୟାସ କରିଥିଲେ । ସେ ଜଣେ ବ୍ୟବସ୍ଥାପକ ସଭାର ସଭ୍ୟ ଥିବାରୁ ବିଲାତ ପାର୍ଲିଆମେଣ୍ଟର ମୁଖ୍ୟ ସଭ୍ୟମାନଙ୍କଠାରୁ ସମ୍ମାନ ମଧ୍ୟ ପାଇଥିଲେ ।

ମଧୁବାବୁ ଦେଶକୁ ଫେରିଲାବେଳେ ସୁଏଜ୍ କେନାଲ ବାଟେ ଆସିଥିଲେ ଓ ବାଟରେ ୟୁରୋପର ବହୁ ଦେଶ ଭ୍ରମଣ କରିଥିଲେ । ମିଶରରେ କିଛି ସମୟ ଅବସ୍ଥାନ କରି ଏହି ଇତିହାସପ୍ରସିଦ୍ଧ ଦେଶର ମୁଖ୍ୟ ଦର୍ଶନୀୟ ସ୍ଥାନ ପିରାମିଡ୍ ଦେଖିଥିଲେ ଓ ପିରାମିଡ୍ ତଳେ ବସି କଟକର 'ଉତ୍କଳ ଦୀପିକା' ସମ୍ପାଦକଙ୍କଠାକୁ ଇଂରେଜୀରେ ଏକ ପତ୍ର ଲେଖିଥିଲେ ।

**ବିଲାତରେ ଓଡ଼ିଶା ଶିଳ୍ପ ପ୍ରଦର୍ଶନୀ :** ମଧୁବାବୁ ତାଙ୍କ ବିଲାତ ଅବସ୍ଥାନ ଭିତରେ ଓଡ଼ିଶାର ପ୍ରାଚୀନ ଓ ଆଧୁନିକ ଶିଳ୍ପର ଉତ୍କର୍ଷ ପ୍ରଚାର କରିବା ପାଇଁ ସେଠାରେ ଏକ ଶିଳ୍ପ ପ୍ରଦର୍ଶନୀ କରିଥିଲେ । ଓଡ଼ିଶାର ତାରକସୀ କାମ, ହାତୀଦାନ୍ତ ଓ ଶିଙ୍ଗର କାମ, ହାତକଟା ସୂତାର ସୂକ୍ଷ୍ମ ବସ୍ତ୍ର ପ୍ରଭୃତି ପ୍ରଦର୍ଶିତ ହୋଇଥିଲା । ପ୍ରାଚୀନ କୀର୍ତ୍ତିର ପ୍ରତୀକ କୋଣାର୍କ ଓ ଭୁବନେଶ୍ୱର ମନ୍ଦିରର ସୂକ୍ଷ୍ମ କାରୁକାର୍ଯ୍ୟର ଅନୁକୃତି ମଧ୍ୟ ପ୍ରଦର୍ଶନୀର ଆକର୍ଷଣୀୟ ବସ୍ତୁଥିଲା । ଓଡ଼ିଶାର ବଣିକମାନେ କପଡ଼ର ଉପାୟରେ ତାର ସୂକ୍ଷ୍ମତା ନିର୍ଣ୍ଣୟ କରୁଥିଲେ ତାହା ମଧ୍ୟ ସେ ନିଜେ ବୁଝାଇଥିଲେ । ମଧୁବାବୁ ତାରକୁ ଜିଭରେ ଘଷି ତାହାର ସୂକ୍ଷ୍ମତା ଜାଣିବା ଉପାୟ ବୁଝାଉଥିବାବେଳେ ବିଲାତବାସୀ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ ।

ଓଡ଼ିଶାର ପ୍ରାଚୀନ ମନ୍ଦିରଶିଳ୍ପ ବିଭବ ସମ୍ବନ୍ଧରେ ଊନବିଂଶ ଶତାବ୍ଦୀରେ ଇଂରେଜୀ ଭାଷାରେ ବହୁ ଗ୍ରନ୍ଥ ରଚିତ ହୋଇଥିବାରୁ ପୃଥିବୀର ବହୁସ୍ଥାନର ଲୋକେ ଏହା ଜାଣିପାରିଥିଲେ; କିନ୍ତୁ ହସ୍ତଶିଳ୍ପର ଅନ୍ୟାନ୍ୟ ବିଭାଗରେ ଓଡ଼ିଶାରେ ପରମ୍ପରାଗତ

ଶିଳ୍ପଗୁରୁଭାବେ ଥିବା ଅଳ୍ପ ଲୋକ ଜାଣିଥିଲେ । ଆଧୁନିକ ଯୁଗରେ ସର୍ବପ୍ରଥମେ ମଧୁବାବୁ ସ୍ୱଦେଶରେ ଏହାର ବିଧିବଦ୍ଧ ପ୍ରଚାର କରିଥିଲେ ।

ବିଲାତରୁ ଫେରିବାପରେ "ଉତ୍କଳ ଦୀପିକା" ତାଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଇଥିଲା । ଅକ୍ଟୋବର ମାସରେ ମଧୁବାବୁ ଓଡ଼ିଶାକୁ ଫେରି ଆସିଥିଲେ । ଦୀର୍ଘ ଆଠମାସ ବିଲାତ ଅବସ୍ଥାନ ଭିତରେ ମଧୁବାବୁ ଉତ୍କଳର ଗୌରବ ବୃଦ୍ଧି କରିଥିବାରୁ 'ଉତ୍କଳ ଦୀପିକା' ତାଙ୍କୁ 'ଉତ୍କଳର ଗୌରବ' ବୋଲି କହିଥିଲା ।

୧୮୯୭ ଡିସେମ୍ବର ୪ ତାରିଖରେ କଟକରେ ମଧୁବାବୁଙ୍କୁ ଏକ ସମ୍ବର୍ଦ୍ଧନା ଦିଆଯାଇଥିଲା । ମଧୁବାବୁଙ୍କ କାର୍ଯ୍ୟାବଳୀ ସମ୍ବନ୍ଧରେ ଏକ ସଂକ୍ଷିପ୍ତ ବିବରଣୀ ଲଣ୍ଡନର ବିଖ୍ୟାତ "ଲଣ୍ଡନ୍ ଟାଇମ୍‌ସ" ଦୈନିକ ସମ୍ବାଦପତ୍ରରେ ୨।୭।୧୮୯୭ ତାରିଖରେ ପ୍ରକାଶିତ ହୋଇଥିଲା ।

ଡିସେମ୍ବର ୧୨ ତାରିଖରେ କଂଗ୍ରେସର ପୂର୍ବତନ ସଭାପତି ମାନ୍ଦ୍ରାଜର ଶ୍ରୀ ଆନନ୍ଦାଚାର୍ଲୁ କଟକ ପରିଦର୍ଶନରେ ଆସିଥିଲେ । ତାଙ୍କୁ ଏକ ସାଧାରଣ ସଭାରେ ଅଭ୍ୟର୍ଥନା କରାଯାଇଥିଲା । ମଧୁବାବୁ ଏହି ସଭାରେ ସଭାପତି ହୋଇଥିଲେ ଏବଂ ମହାଭାରତୀୟ ଭାବ-ଉଦ୍ଦୀପକ ଭାଷଣ ଦେଇଥିଲେ । ଭାରତର ଆର୍ଥିକ ଓ ଶିଳ୍ପ ଅବସ୍ଥାର ଉନ୍ନତି ଜାତୀୟଭାବର ସହାୟକ ବୋଲି ସେ କହିଥିଲେ ।

ମଧୁବାବୁ ବିଲାତ ଯାତ୍ରା କରିବା ପୂର୍ବରୁ ତାଙ୍କ ଉପରେ ନ୍ୟସ୍ତ ଥିବା କେତେକ ଭାର ଅନ୍ୟ ହସ୍ତରେ ଅର୍ପଣ କରିଦେବା ପାଇଁ ତତ୍ପର ହୋଇଥିଲେ । ୧୮୯୭ ମାର୍ଚ୍ଚ ମାସରେ ପୁରୀ ରାଜାଙ୍କ ତତ୍ତ୍ୱାବଧାରଣ କାର୍ଯ୍ୟ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ରାଜାଙ୍କ ନାବାଳକତ୍ୱ ୧୮୯୬ରେ ପୂରିଯାଇଥିଲା । ଜଗନ୍ନାଥ ମନ୍ଦିର ଓ ରାଜାଙ୍କ ବ୍ୟକ୍ତିଗତ ସମ୍ପତ୍ତିର ସୁପରିଚାଳନା କରିବାରେ ନବଯୁବକ ରାଜାଙ୍କୁ ମଧୁବାବୁ ଓକିଲ ଓ ହିତାକାଂକ୍ଷୀ ହିସାବରେ ବହୁତ ସାହାଯ୍ୟ କରୁଥିଲେ ଓ ପରାମର୍ଶ ଦେଉଥିଲେ । ମନ୍ଦିର ପରିଚାଳନା ନେଇ ସରକାର ଓ ରାଜାଙ୍କ ଭିତରେ ମାଲିମକଦ୍ଦମା ଚାଲିଥିଲା । ରାଜାଙ୍କ ହସ୍ତରୁ ଜଗନ୍ନାଥ ମନ୍ଦିରର ପରିଚାଳନା ଭାର କାଢ଼ିନେବା ପାଇଁ ସରକାର ହାଇକୋର୍ଟ (କଲିକତା)ରେ ଏକ ମକଦ୍ଦମା ଦାଏର କରିଥିଲେ । ତାହାର ବିଚାର ଶେଷ ହୋଇ ନଥିଲା । ଏସବୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ବିଶିଷ୍ଟ ଲୋକଙ୍କ ସାହାଯ୍ୟ ଆବଶ୍ୟକ ମନେ କରି ରାଜାଙ୍କ ଜମିଦାରୀ ଓ ଜଗନ୍ନାଥ ମନ୍ଦିରର କାର୍ଯ୍ୟଭାର ସୁଚାରୁରୂପେ ଚଳାଇବା ନିମନ୍ତେ କଟକର ଦର୍ପଣୀ ରାଜା ବୈଦ୍ୟନାଥ ପଣ୍ଡିତ, ବାବୁ ବିହାରୀଲାଲ ପଣ୍ଡିତ ଓ ଓକିଲବାବୁ ଗୋକୁଳାନନ୍ଦ ଚୌଧୁରୀଙ୍କ ଉପରେ ମଧୁବାବୁ ନ୍ୟସ୍ତ କଲେ । ଆଗରୁ ମଧୁବାବୁଙ୍କ ପରାମର୍ଶ ଅନୁସାରେ ପୁରୀ ରାଜା ରାଜନୀତି ଓ ସମ୍ପତ୍ତି ପରିଚାଳନାରେ ଅନଭିଜ୍ଞ ଥିବାରୁ ତାଙ୍କୁ ସାହାଯ୍ୟ କରିବା ପାଇଁ ମଧୁବାବୁଙ୍କ ସହିତ ଏମାନଙ୍କୁ ନେଇ ଏକ ପରାମର୍ଶଦାତା କମିଟି ରାଜା ଗଠନ କରିଥିଲେ ଏବଂ ଏମାନଙ୍କ.

ହସ୍ତରେ ସମସ୍ତ ଭାର ଅର୍ପଣ କରିଥିଲେ; କିନ୍ତୁ ଅଳ୍ପ କେତେ ମାସ ଏ ବ୍ୟବସ୍ଥା ଚାଲିବା ପରେ ମଧୁବାବୁଙ୍କ ଅନୁପସ୍ଥିତ କାଳରେ ରାଜା ପରାମର୍ଶଦାତା କମିଟିକୁ ଭାଙ୍ଗିଦେଇ ନିଜ ହସ୍ତକୁ ପରିଚାଳନା ଭାର ନେଇଥିଲେ ।

ମାନ୍ୟବର ମଧୁବାବୁ ବିଲାତ ଯିବାପୂର୍ବରୁ ଜାହାଜରେ କଟକରୁ କଲିକତା ଗଲେ । କଲିକତାରେ କିଛୁଦିନ ରହିଥିଲେ ଏବଂ ବଙ୍ଗ ବ୍ୟବସ୍ଥାପକ ସଭାରେ ଯୋଗ ଦେଇଥିଲେ । ଅପ୍ରେଲ ମାସ (ଖ୍ରୀ: ୧୮୯୭) ରେ ସଭାର କାର୍ଯ୍ୟ ଶେଷ ହୋଇଥିଲି ଓ ବଙ୍ଗର ଲାଟ ଗ୍ରୀଷ୍ମବାସ ଦାର୍ଜିଲିଂକୁ ଚାଲିଗଲେ । ସଭାର କାର୍ଯ୍ୟ ପୁନର୍ବାର ଆରମ୍ଭ କରିବାକୁ ଆଉ କେତେମାସ ଥିଲା । ଏହି ଅବସରରେ ମଧୁବାବୁ ବିଲାତ ଯିବା ସ୍ଥିର କରିଥିଲେ । ଅପ୍ରେଲ ମାସ ୨୭ ତାରିଖ ବୁଧବାର ଦିନ କଲିକତା ତ୍ୟାଗକରିବାକୁ ଦିନ ଧାର୍ଯ୍ୟ ହୋଇଥିଲା ।

ମଧୁବାବୁ ବିଲାତ ଭ୍ରମଣ ଶେଷକରି ଅକ୍ଟୋବର ୨୫ ତାରିଖରେ ବୋମ୍ବେରେ ପହଞ୍ଚିବାର କଥା ଥିଲା; କିନ୍ତୁ ବାଟରେ ସେ ଆଉ କିଛି ଦିନ ନାନା ଦେଶ ଭ୍ରମଣ ଉଦ୍ଦେଶ୍ୟରେ ଅଟକି ଯିବାରୁ ଭାରତରେ ପହଞ୍ଚିବାକୁ ବିଳମ୍ବ ହେଲା । ବୋମ୍ବେରେ ପହଞ୍ଚି ସେଠାରୁ ସିଧାସଳଖ କଟକ ନ ଆସି ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ବଙ୍ଗଳା, ମାନ୍ଦ୍ରାଜ ପ୍ରଭୃତି ଅଞ୍ଚଳ ଭ୍ରମଣକରି ଫେରିବା ସ୍ଥିର କରିବାରୁ କଟକକୁ ପ୍ରତ୍ୟାବର୍ତ୍ତନ କରିବା ସମୟ ଗଡ଼ିଯାଇଥିଲା । ଦେଶୀୟ ଖ୍ରୀଷ୍ଟିଆନମାନଙ୍କ ସମ୍ବନ୍ଧରେ ସେ ଏକ ଆଇନର ପ୍ରସ୍ତାବ କରି ଥିଲେ ଏବଂ ଭାରତର ନାନା ସ୍ଥାନରେ ଖ୍ରୀଷ୍ଟିଆନ୍‌ମାନଙ୍କ ସହିତ ଦେଖାସାକ୍ଷାତ କରି ସେମାନଙ୍କର ମତାମତ ସଂଗ୍ରହ କରିବା ଏହି ଭ୍ରମଣରେ ଉଦ୍ଦେଶ୍ୟ ଥିଲା ।

ବିଲାତରୁ ପ୍ରତ୍ୟାଗମନ କରିଥିବାରୁ ତାହାଙ୍କୁ ସମ୍ବର୍ଦ୍ଧନା କରିବା ନିମନ୍ତେ ନଭେମ୍ବରମାସ ୨୪ ତାରିଖ ସୋମବାର ଦିନ କଟକ ପ୍ରିଣ୍ଟିଂ କମ୍ପାନୀ ଗୃହରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ବହୁ ରାଜକୁମାର, ଶିକ୍ଷକ, ମହାଜନ, ଜମିଦାର, ଓକିଲ, ମୁକ୍ତାର, ଉଚ୍ଚ ରାଜକର୍ମଚାରୀ ଏବଂ ଅନ୍ୟାନ୍ୟ ଭଦ୍ରବ୍ୟକ୍ତି ଉପସ୍ଥିତ ହୋଇଥିଲେ, ବହୁ ଛାତ୍ର ଓ ଅଧ୍ୟାପକ ମଧ୍ୟ ଉପସ୍ଥିତ ଥିଲେ । ସହରର ସବୁଶ୍ରେଣୀର ଲୋକ ଏଥିରେ ଯୋଗଦେଇଥିଲେ । ତାଙ୍କର ଲୋକପ୍ରିୟତା ହିଁ ଏହାର କାରଣ । ଶ୍ରୀଯୁକ୍ତ ହରିବଲ୍ଲଭ ବସୁ ଏହି ସଭାରେ ସଭାପତି ହୋଇଥିଲେ ।

ମଧୁବାବୁ ବହୁ ଦିନରୁ ପେଟବେମାରୀ ଭୋଗ କରୁଥିଲେ । ବହୁ ପ୍ରକାର ଚିକିତ୍ସା କରି ଆରୋଗ୍ୟ ଲାଭ ନ କରିବାରୁ ବିଲାତ ଯାଇ ଚିକିତ୍ସିତ ହେବା ତାଙ୍କ ବିଲାତ ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏତେ ଦୁର୍ବଳ ଶରୀରରେ ବିଲାତ ଯିବା ସେ ସମୟରେ ଖୁବ୍ ସାହସିକତାର କାର୍ଯ୍ୟଥିଲା, ଏଥିରେ ସନ୍ଦେହ ନାହିଁ । ଏପରି ସ୍ୱାସ୍ଥ୍ୟରେ ପ୍ରିୟ ନେତାଙ୍କର ବିଲାତ ଗମନ ଯୋଗୁଁ ଦେଶର ଲୋକେ ଓ ବନ୍ଧୁବାନ୍ଧବ ଶଙ୍କିତ ହୋଇପଡ଼ିଥିଲେ; କିନ୍ତୁ ସୁଚିକିତ୍ସାଯୋଗୁଁ ସେଠାରେ ସେ ଆରୋଗ୍ୟ ଲାଭକଲେ । ଏହାପରେ ସେ ନିଶ୍ଚିନ୍ତ ହୋଇ

ନବସି ବିଲାତର ବହୁ ବିଶିଷ୍ଟ ରାଜନୈତିକ ନେତା ଓ ସରକାରୀ କର୍ମଚାରୀଙ୍କ ସହିତ ଆଲାପ ପରିଚୟ କରିଥିଲେ । ଦେଶର ସମୃଦ୍ଧି କଲ୍ୟାଣ ନିମିତ୍ତ ବହୁ ପ୍ରଶ୍ନର ଆଲୋଚନା କରିଥିଲେ ଏବଂ ବିଲାତବାସୀଙ୍କୁ ଭାରତର ଜନମତ ସମ୍ବନ୍ଧରେ ବୁଝାଇଥିଲେ । ସେ ସେଠାରେ ବହୁ ସଭାସମିତିରେ ମଧ୍ୟ ଯୋଗଦାନ କରିଥିଲେ ଓ କେତେକ ସ୍ଥାନରେ ବକ୍ତୃତା ମଧ୍ୟ ଦେଇଥିଲେ । ଓଡ଼ିଶାର ସମସ୍ୟା ଓ ଓଡ଼ିଆ ସଂସ୍କୃତି ସମ୍ବନ୍ଧରେ ବହୁ ଆଲାପ ଆଲୋଚନା କରିଥିଲେ । ସ୍ୱଦେଶପ୍ରୀତି ବିଲାତରେ ତାଙ୍କୁ ନିଶ୍ଚିନ୍ତରେ ବସାଇ ଦେଇ ନଥିଲା । ସ୍ୱଦେଶାନୁରାଗ ଏହି ସବୁ ହିତଚେଷ୍ଟାର ମୂଳକାରଣ । ପ୍ରିଣ୍ଟିଂ କମ୍ପାନୀରେ ଆୟୋଜିତ ସଭାରେ ତାଙ୍କୁ ସମୁଚିତ ସମାଦର ଓ ଅଭ୍ୟର୍ଥନା ପ୍ରଦର୍ଶିତ ହୋଇଥିଲା ।

ଅଭ୍ୟର୍ଥନା ନିମନ୍ତେ କୃତଜ୍ଞତା ପ୍ରକାଶ କରି ମଧୁବାବୁ ବିଲାତରେ ନିଜର ଅଭିଜ୍ଞତା ବର୍ଣ୍ଣନା କରି ବହୁ ବିଷୟର ଅବତାରଣା କରିଥିଲେ । ସେ କହିଥିଲେ—"ସେ ଏଡ଼େ ସମ୍ମାନର ପାତ୍ର ନୁହନ୍ତି । ବିଲାତର ଯେଉଁ ମହାନୁଭବମାନଙ୍କର ଉଦାର ସାହାଯ୍ୟରେ ସେ ସେଠାରେ ଯତ୍କିଞ୍ଚିତ କାର୍ଯ୍ୟ କରିବାକୁ ସମର୍ଥ ହୋଇଅଛନ୍ତି, ସେହିମାନେ ଏ ସମ୍ମାନର ଯୋଗ୍ୟପାତ୍ର ଏବଂ ସେମାନଙ୍କ ସକାଶେ ତାହା ସେ ଗ୍ରହଣ କଲେ ।"

ବିଲାତ ପ୍ରସଙ୍ଗରେ ମଧୁବାବୁ କହିଲେ. "ବିଲାତର ଯେଉଁ ଦିଗକୁ ଚାହିଁବ, ଦେଖିବ ସେମନ୍ତି ଜଣକିଆ ନାହିଁ, ସକଳ ବିଷୟରେ ମେଳ ଅର୍ଥାତ୍ ବହୁଜନ ମିଶି କାର୍ଯ୍ୟ କରିବାର ବ୍ୟାପାର । ଚାରିଆଡ଼େ ଦେଖ ବ୍ୟବସାୟୀଙ୍କର ଦଳ, କ୍ରେତାଙ୍କର ଦଳ, କଳବାଲାଙ୍କ ଦଳ, ରାଜନୈତିକ, ସାମାଜିକ, ଧର୍ମପ୍ରଚାର ପ୍ରଭୃତି ବିଷୟରେ ସଭାସମିତି । କେହି ଆପଣା ମନକୁ ଚାଲିବାକୁ ନାହିଁ । ସମସ୍ତେ ଆପଣା ଆପଣା ଦଳଭୁକ୍ତ ଲୋକଙ୍କର ମତାମତର ଅଧୀନ । ଦଳଭୁକ୍ତ ବଡ଼ଲୋକ ଗରିବ ଲୋକଙ୍କ ସଙ୍ଗେ ମିଶି ପରାମର୍ଶ କରୁଅଛୁ । ଏହା ହିଁ ବିଲାତର ଉନ୍ନତିର କାରଣ । ଏ ଭାବ ଅସ୍ମଦ୍ଦେଶୀୟଙ୍କର ଶିକ୍ଷା କରିବା ଉଚିତ । ଏଠାରେ ଶିକ୍ଷିତ ଲୋକମାନେ ସାଧାରଣ ଲୋକଙ୍କଠାରୁ ପ୍ରାୟ ପୃଥକ୍ ରହନ୍ତି; ସୁତରାଂ ସେମାନଙ୍କର ଚିନ୍ତା ଭିନ୍ନ ଭିନ୍ନ ଦିଗରେ ଯାଏ ଏବଂ ଐକ୍ୟ ସ୍ଥାପନ ହୋଇପାରେନାହିଁ । ପରସ୍ପର ମେଳ ହେତୁ ବିଶ୍ୱାସ ଦୃଢ଼ ହୁଏ ଏବଂ ସେହି ବିଶ୍ୱାସ ସ୍ଥିର ରଖିବା ସକାଶେ ସତର୍କତା ଅବଲମ୍ବନ କରିବାକୁ ହୁଏ । ବିଶ୍ୱାସ ହେବାରୁ ଲୋକେ ଯୌଥ କାରବାରରେ ଟଙ୍କା ଦେବାକୁ କୁଣ୍ଠା ବୋଧ କରନ୍ତି ନାହିଁ ଏବଂ ତଦ୍ଦ୍ୱାରା ବ୍ୟବସାୟର ଉନ୍ନତି ହୁଏ । ଏ ଦେଶରେ ସେ ବିଶ୍ୱାସ ଅଭାବରୁ ଲୋକେ ଆପଣା ଆପଣା ସଞ୍ଚିତ ଧନ ସରକାରୀ କାଗଜରେ ଅଥବା ଅଳଙ୍କାରରେ ଏବଂ କେତେ ଅବା ଭୂମିରେ ଲୁଚାଇ ରଖିଦଅନ୍ତି । ଏଥିରେ ଆୟ ଅଧିକ ହୁଅଇ ନାହିଁ ଏବଂ ଅନେକ ସ୍ଥାନରେ କ୍ଷତି ହୁଅଇ । ରାଜନୈତିକ ବ୍ୟାପାରରେ ପାର୍ଲିଆମେଣ୍ଟର ମେମ୍ବର-ମାନଙ୍କୁ ଆମ୍ଭେମାନେ ବଡ଼ ମନେକରୁଁ; ମାତ୍ର ସେମାନେ ଲୋକଙ୍କଦ୍ୱାରା ମନୋନୀତହୋଇ ସେ ପଦ ପାଇ ଅଛନ୍ତି । ନିୟୋଗକର୍ତ୍ତାଙ୍କ ପରାମର୍ଶର ଅଧୀନରେ ସେମାନଙ୍କୁ ଚାଲିବାକୁ ହୁଏ । ଯେବେ ଭିନ୍ନମତ କରିବେ, ତେବେ ସେମାନଙ୍କର ପଦ ରହିବ ନାହିଁ । ସ୍କୁଲରେ

ସେମାନେ କେବଳ ଲୋକଙ୍କର ପ୍ରତିନିଧି, ସୁତରାଂ ସେମାନଙ୍କର ଅଧୀନ । ସାଧାରଣ ଲୋକଙ୍କର ମତ ହିଁ ବିଲାତର ପ୍ରଧାନ ମତ । ବିଲାତର ମହିଳାମାନଙ୍କର ଚରିତ୍ର ଅତି ମହତ୍ତ୍ୱ ଏବଂ ପ୍ରଶଂସନୀୟ । ସେମାନଙ୍କ କୋମଳ ହୃଦୟ ପରଦୁଃଖରେ ଶୀଘ୍ର ବିଗଳିତ ହୁଏ ଏବଂ ଗୃହ ମଧ୍ୟରେ ସେମାନଙ୍କର କର୍ତ୍ତୃତ୍ୱ ଅସୀମ । ସେମାନେ ପାର୍ଲିଆମେଣ୍ଟର ସଭ୍ୟ ହେବାକୁ ବିଶେଷ ଚେଷ୍ଟା କରୁଅଛନ୍ତି ।" ଏପରି ଅନେକ ବିଷୟରେ ପ୍ରାୟ ଏକ ଘଣ୍ଟାକାଳ ଅତି ସୁନ୍ଦର ଓ ଶିକ୍ଷାପ୍ରଦ ଭାଷଣ ପ୍ରଦାନକରି ଶେଷରେ ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ସମ୍ବନ୍ଧରେ କେତେଜଣ ଉଚ୍ଚପଦସ୍ଥ ବ୍ୟକ୍ତି ତାହାଙ୍କ ନିକଟକୁ ଯେଉଁ ପତ୍ର ଲେଖିଅଛନ୍ତି, ତାହା ପାଠ କରିବାରେ ଜଣାଗଲା ଯେ ସେ ବିଷୟରେ ସେ ଅନେକ ଯତ୍ନ ଓ ଚେଷ୍ଟା କରିଅଛନ୍ତି ଏବଂ ସେଠା ଲୋକଙ୍କ ଭାବରୁ ଜଣାଗଲା ଯେ ଯଦ୍ୟପି କି ଏଣିକି ଚିରସ୍ଥାୟୀ ବନ୍ଦୋବସ୍ତ କରିବା ସାଧାରଣ ମତ ନୁହେଁ; ମାତ୍ର ଓଡ଼ିଶାକୁ ତାହା ପ୍ରଦାନ କରିବାକୁ ଗଭର୍ଣ୍ଣମେଣ୍ଟ ପୂନଃ ପ୍ରତିଜ୍ଞା କରିବା କଥା ଯେବେ ପ୍ରକୃତ ହୁଏ, ତେବେ ବିଲାତର ଲୋକମାନେ ତାହା ଅବଶ୍ୟ ପ୍ରତିପାଳନ କରିବେ । ସେହି କଥା ବିଲାତର ଲୋକଙ୍କୁ ବୁଝାଇ ଦେବା ଏବଂ ସେମାନଙ୍କ ସହାନୁଭୂତି ଲାଭର ଚେଷ୍ଟାକରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ହେଉଅଛି ଏବଂ ତହିଁପାଇଁ ଅସ୍ମଦ୍ଦେଶୀୟଙ୍କର ବିଶେଷ ଚେଷ୍ଟାବାନ୍ ହେବାର ଉପଦେଶ ଦେଇ ସେ ବକ୍ତୃତା ଶେଷ କଲେ । ସଭାପତିଙ୍କୁ ଧନ୍ୟବାଦ ଦେବାପରେ ସଭାକାର୍ଯ୍ୟ ଶେଷ ହୋଇଥିଲା ।

(ଉତ୍କଳ ଦୀପିକା ତା ୪, ଡିସେମ୍ବର, ୧୮୯୭)

**ବିଲାତରେ ଓଡ଼ିଶାର ଚର୍ଚ୍ଚା:** ଏ ଶିରୋନାମାରେ 'ଉତ୍କଳ ଦୀପିକା' ଏକ ବିବରଣୀ ପ୍ରକାଶ କରିଥିଲେ—"ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ବିଲାତକୁ ଯାଇ ସେଠାର ଅନେକ ସମ୍ଭ୍ରାନ୍ତ ଲୋକ ଏବଂ ସଭାସମିତିରେ ସୁପରିଚିତ ହେବା ଏବଂ ବକ୍ତୃତାଦି ପ୍ରଦାନ କରିବାଦ୍ୱାରା ଯେପରି ଗୌରବାନ୍ୱିତ ହୋଇ ଅଛନ୍ତି, ତହିଁର କିଞ୍ଚିତ ଆଭାସ ଏଥିପୂର୍ବେ ପ୍ରକାଶିତ ତାହାଙ୍କର କେତେ ଖଣ୍ଡ ପତ୍ର ଓ ତତ୍ସମ୍ବନ୍ଧରେ ଆମ୍ଭମାନଙ୍କର ବକ୍ତବ୍ୟଦ୍ୱାରା ପାଠକମାନେ ଅବଗତ ହୋଇଅଛନ୍ତି । ଓଡ଼ିଶାପରି ସାମାନ୍ୟ ଓ ଦରିଦ୍ର ଦେଶ ପ୍ରତି ଏହା ହିଁ ଯଥେଷ୍ଟ । ମାତ୍ର ମଧୁବାବୁ ସଭ୍ୟତମ ବିଲାତରେ ଆପଣା ବିଦ୍ୟାବୁଦ୍ଧିର ପରିଚୟ ଦେବାଦ୍ୱାରା ନିଜର ଗୌରବ ବର୍ଦ୍ଧନ ସଙ୍ଗେ ସଙ୍ଗେ ଓଡ଼ିଶାର ଗୌରବ ବୃଦ୍ଧି କରିବାରୁ କ୍ଷାନ୍ତ ହୋଇନାହାନ୍ତି ।

"ପାଠକମାନେ ଶୁଣି ଆନନ୍ଦିତ ହେବେ ଯେ ଓଡ଼ିଶାର ବର୍ତ୍ତମାନ ବନ୍ଦୋବସ୍ତର ପ୍ରସଙ୍ଗ, ଯାହାକି ସର୍ବାପେକ୍ଷା ଗୁରୁତର ସାମୟିକ ପ୍ରସଙ୍ଗ ଅଟେ, ତାହା ଏକ ପୁସ୍ତିକାରେ ଇଂରେଜ ଲୋକଙ୍କୁ ଜଣାଇ ସମସ୍ତ ଓଡ଼ିଶାବାସୀଙ୍କର ବିଶେଷ କୃତଜ୍ଞତାର ପାତ୍ର ହୋଇ-ଅଛନ୍ତି ଏବଂ ସ୍ୱଦେଶାନୁରାଗିତାର ଉଜ୍ଜ୍ୱଳ ପ୍ରମାଣ ଦେଇଅଛନ୍ତି । 'ଓଡ଼ିଶା ଜମିଦାର ସଭା' ଗତ ଫେବୃୟାରି ମାସରେ ବଙ୍ଗୀୟ ଗବର୍ଣ୍ଣମେଣ୍ଟଙ୍କ ସମୀପକୁ ଚିରସ୍ଥାୟୀ ବନ୍ଦୋବସ୍ତ ସକାଶେ ଯେଉଁ ଆବେଦନ ପତ୍ର ପଠାଇଥିଲେ ଏବଂ ତାହାକୁ ଅବଲମ୍ବନ କରି ବିଲାତର

ଟାଇମ୍ସ ସମ୍ବାଦପତ୍ରର ଗତ ଅପ୍ରେଲ ମାସ ୨୨ ତାରିଖ ସଂଖ୍ୟାରେ ଯେଉଁ ପ୍ରବନ୍ଧ ବାହାରିଥିଲା, ଉକ୍ତ ପୁସ୍ତିକାରେ ସେହି ଦୁଇବର୍ଷ ମଧ୍ୟବାବୁ ପ୍ରକାଶ କରି ତହିଁ ସଙ୍ଗେ ଆପଣାର ଗୋଟିଏ ଅତି ସୁନ୍ଦର ଏବଂ ଯୁକ୍ତିପୂର୍ଣ୍ଣ ମନ୍ତବ୍ୟ ଯୋଗ କରିଅଛନ୍ତି । ଏହି ମନ୍ତବ୍ୟଟି ଅତ୍ୟନ୍ତ ମୂଲ୍ୟବାନ୍ ବିବେଚନାରେ ଅତିରିକ୍ତସ୍ୱରୂପ ପାଠକମାନଙ୍କ ଅବଗତି ନିମନ୍ତେ ପ୍ରକାଶ କଲୁ । ଇଂରେଜୀ ନ ଜାଣିବା ପାଠକମାନଙ୍କର ତୃପ୍ତି ନିମନ୍ତେ ତହିଁର ସଂକ୍ଷେପ ମର୍ମ ନିମ୍ନେ ପ୍ରକାଶିତ ହେଲା । ଯଥା—

'ଓଡ଼ିଶାବାସୀମାନଙ୍କର ଇଂରେଜଙ୍କ ସୁବିଚାର ଏବଂ ମର୍ଯ୍ୟାଦାରେ ଅସୀମ ବିଶ୍ୱାସ ହେବାରୁ ସନ ୧୮୦୩ ସାଲରେ ଶ୍ରୀଜଗନ୍ନାଥ ମନ୍ଦିରର ପଣ୍ଡା ପଢ଼ିଆରୀମାନେ ଏ ଦେଶ ଅଧିକାର ଏବଂ ଶ୍ରୀମନ୍ଦିରର ଭାର ନେବା କାରଣ ଇଂରେଜମାନଙ୍କୁ ଆମନ୍ତ୍ରଣ କରିଥିଲେ ଏବଂ ତଦନୁସାରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ କେତେକାଳ ମନ୍ଦିରର କାର୍ଯ୍ୟ ନିର୍ବାହ କରି କେବଳ ଖ୍ରୀଷ୍ଟିଆନମାନଙ୍କ ଆପତ୍ତିରେ ତାହା ପରିତ୍ୟାଗ କଲେ । ମାତ୍ର ଶ୍ରୀଯୁକ୍ତ ଟଏନ୍ ବି ସାହେବଙ୍କ ପ୍ରକାଶିତ ଇତିହାସ ଦେଖିଲେ ସ୍ପଷ୍ଟ ଜଣାଯିବ ଯେ ଓଡ଼ିଶାର ଅବସ୍ଥା ମରହଟ୍ଟା ଅମଳରେ ଯାହା ଥିଲା, ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ରାଜସ୍ୱ ବନ୍ଦୋବସ୍ତ ହେତୁ ତହିଁରୁ ମନ୍ଦ ହେଲା । ଓଡ଼ିଶା ବିଶେଷରେ ଧୋଇ ମରୁଡ଼ିର ଅଧୀନ । ଧୋଇ ପ୍ରାୟ ପ୍ରତିବର୍ଷ କୌଣସି ଅଂଶରେ ଘଟିଥାଏ । ଏଥିପାଇଁ ଅନେକ ବନ୍ଧ ରଖିବାର ଆବଶ୍ୟକ । ପୂର୍ବ ବନ୍ଦୋବସ୍ତର ଜମାବନ୍ଦି ବନ୍ଧ ରକ୍ଷା ଦୃଷ୍ଟିରେ ସ୍ଥିର ହୋଇଥିଲା ଏବଂ ସରକାର ବନ୍ଧମାନ ରକ୍ଷା କରିଆସୁଥିଲେ । ଧୋଇ ନିମନ୍ତେ ରାଜସ୍ୱ ଛାଡ଼ି ଦେଉଥିଲେ । ଇଦାନୀ ସରକାର୍ ବନ୍ଧମାନ ଛାଡ଼ିଦେଲେ ଏବଂ ରାଜସ୍ୱ ଛାଡ଼ିଦେବା ରହିତ କଲେ । ସୁତରାଂ ଜମିଦାର ଏବଂ ପ୍ରଜା ଉଭୟଙ୍କର କଷ୍ଟ ବଢ଼ିଲା । ଏଥିର ଏକମାତ୍ର ପ୍ରତିକାର ଚିରସ୍ଥାୟୀ ବନ୍ଦୋବସ୍ତ ଅଟେ । ତାହା ହେଲେ ଜମିଦାରଙ୍କ ସମ୍ପତ୍ତି ପ୍ରତି ମମତା ଏବଂ ବନ୍ଧ ଆଦି ଉନ୍ନତି କାର୍ଯ୍ୟରେ ଅର୍ଥ-ବ୍ୟୟ କରିବାର ପ୍ରବୃତ୍ତି ଜନ୍ମିବ । ଚିରସ୍ଥାୟୀ ବନ୍ଦୋବସ୍ତ ଓଡ଼ିଶାକୁ ପ୍ରଦାନ କରିବେ ବୋଲି ସରକାର ପୁନଃ ପୁନଃ ପ୍ରତିଜ୍ଞା କରି ଆସୁଛନ୍ତି ଏବଂ ସେ ପ୍ରତିଜ୍ଞା ଆଇନରେ ମଧ୍ୟ ସ୍ପଷ୍ଟାକ୍ଷରରେ ଲେଖାଅଛି । ପ୍ରତିଜ୍ଞା ରକ୍ଷା ପ୍ରତି ଶ୍ରୀମତୀ ଭାରତେଶ୍ୱରୀଙ୍କ ପ୍ରଗାଢ଼ ମନୋଯୋଗ ସନ ୧୮୫୮ ସାଲର ଘୋଷଣାପତ୍ର ଲେଖା ସମ୍ବନ୍ଧରେ ଲର୍ଡ ଡର୍‌ବିଙ୍କ ପ୍ରତି ତାହାଙ୍କ ଆଦେଶରୁ ବି ଲକ୍ଷଣ ଜଣାଯାଉଅଛି । କଥିତ ହୁଅଇ ଯେ ଲର୍ଡ କମ୍ବର୍‌ଅଲ ଭାରତୀୟ ଷ୍ଟେଟ୍ ସେକ୍ରେଟାରୀ ଥିବା କାଳରେ ସନ ୧୮୬୭ ସାଲ ୨୭ ତାରିଖ ନଭେମ୍ବର ଲିଖିତ ନ ୧୪୭ମ୍ବର ପତ୍ରରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରସଙ୍ଗ ଉତ୍ଥାପନ କରନ୍ତେ ଇଣ୍ଡିଆ ଗଭର୍ଣ୍ଣମେଣ୍ଟ ଉତ୍ତର ଦେଇଥିଲେ କି ଏପରି କିଛି ନାହିଁ କି ଯହିଁରୁ ଜମିଦାରମାନେ ଯୁକ୍ତିସଙ୍ଗତରୂପେ ଚିରସ୍ଥାୟୀ ବନ୍ଦୋବସ୍ତ ପାଇବାର ଆଶା କରିପାରିବେ । ମାତ୍ର ଯେବେ ସେହି ପତ୍ର ଏବଂ ତହିଁର ଉତ୍ତର ପ୍ରକାଶିତ ହେବ, ତେବେ ସମ୍ଭବତଃ ଗଭର୍ଣ୍ଣମେଣ୍ଟଙ୍କ କଥା ଥାଇ ପାରିବ ନାହିଁ । ଶ୍ରୀମତୀ ଭାରତେଶ୍ୱରୀ ଓଡ଼ିଶା ପ୍ରତି ଇଂଲଣ୍ଡର ପ୍ରତିଜ୍ଞା ରକ୍ଷାକରି ଓଡ଼ିଶାର ବର୍ତ୍ତମାନ

ରାଜସ୍ୱ ବନ୍ଦୋବସ୍ତକୁ ଚିରସ୍ଥାୟୀ କରିଦେଲେ ଭାରତ ପ୍ରତି ତାଙ୍କର ପ୍ରଗାଢ଼ ମନୋଯୋଗ ଏବଂ ଏହି ଶାସକ କୁତୁଲ ବର୍ଷରେ ସମୁଚିତ ଉପଯୋଗୀ ହେବ । ମାତ୍ର ଯେବେ ଗଭର୍ଣ୍ଣମେଣ୍ଟ ତାହା ପ୍ରଦାନ ନକରିବେ, ତେବେ ଧୋଇଦ୍ୱାରା ଗଢିଥିବା ଅନାବଶ୍ୟ ସକାଶେ ରାଜସ୍ୱ ଗ୍ରହଣ ଛାଡ଼ିଦେବା ଉଚିତ ।” ( ଉତ୍କଳଦୀପିକା— ୨୦।୧୧।୧୮୯୭ )

୧୮୯୮ ଜାନୁଆରୀ ମାସରେ କଟକର ରେଭେନ୍‌ସା କଲେଜରେ ଛାତ୍ରମାନଙ୍କର ଏକ ସଭାରେ ମଧୁବାବୁ ତାଙ୍କର ବିଲାତ ଅନୁଭୂତି ବର୍ଣ୍ଣନା କରିଥିଲେ । ଜାତିପ୍ରୀତି ଓ ଚରିତ୍ର ଇଂରେଜ ସଭ୍ୟତାର ପ୍ରଧାନ ଅଙ୍ଗ ଥିବା ସେ ବ୍ୟକ୍ତ କରିଥିଲେ ଏବଂ ଭାରତୀୟ ଛାତ୍ରମାନେ ଇଂରେଜମାନଙ୍କର ଜାତିପ୍ରୀତି ଓ ଚରିତ୍ରବତ୍ତା ଶିକ୍ଷା କରିବା ଉଚିତ ବୋଲି ଉପଦେଶ ଦେଇଥିଲେ ।

ମାନ୍ଦ୍ରାଜର ଅଧ୍ୟାପକ ଭେଂକଟ ଘୋଷଙ୍କୁ କଟକର କନକା ରାଜବାଟୀରେ ଅଭ୍ୟର୍ଥନା କରିବା ପାଇଁ ଏକ ସଭା ଅହୂତ ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । “ବ୍ରିଟିଶ ସରକାରଙ୍କର ଭାରତ ପ୍ରତି ଦାୟିତ୍ୱ” ସମ୍ବନ୍ଧରେ ମଧୁବାବୁ ଆଲୋଚନା କରିଥିଲେ ।

ବିଖ୍ୟାତ ନେତା ବିପିନଚନ୍ଦ୍ର ପାଲଙ୍କ ଆଗମନରେ କଟକରେ ଅନୁଷ୍ଠିତ ସମ୍ବର୍ଦ୍ଧନା ସଭାରେ ମଧୁବାବୁ ସଭାପତି ହୋଇଥିଲେ ।

୨୮।୨।୧୮୯୮ରେ ଏକ ଯୌଥଭଣ୍ଡାରର ପ୍ରସ୍ତାବ କରାଇଥିଲେ । ଏକ ଶିଳ୍ପ ପ୍ରଦର୍ଶନୀର ଆୟୋଜନ କରିଥିଲେ ।

ମାଡ୍ରାକ୍‌ସ ସେଟେଲ୍‌ମେଣ୍ଟର ସୁପାରିସ୍‌ଗୁଡ଼ିକୁ ସମାଲୋଚନା କରି ଲ୍ରେଟଲାଟଙ୍କୁ ଏକ ସ୍ମାରକପତ୍ର ‘ପ୍ରଜାସଭା’ ପକ୍ଷରୁ ଦେଇଥିଲେ ।

ଶିଳ୍ପ ଜାଗରଣ ଉଦ୍ଦେଶ୍ୟରେ ଅକ୍ଟୋବର ୧ ତାରିଖରେ ଏକ ସଭା କଟକରେ ଡକାଇଥିଲେ ଏବଂ ବିଭିନ୍ନ ଶିଳ୍ପ ସଂସ୍ଥା ସ୍ଥାପନ ପାଇଁ ଉଦ୍ୟମ କରିଥିଲେ ।

**ନୂଆ ନୂଆ ପ୍ରଣାଳୀ ଉଦ୍‌ଭାବନ** ( ୧୮୯୭ ) : ଆମ ଦେଶରେ ବାଘ୍ୱାଚଢ଼େଇ ବସାରେ ଅତି ବିଚିତ୍ର ଶିଳ୍ପନୈପୁଣ୍ୟ ଥିବା ଦେଖାଯାଏ । ଯେତେ ବତାସ ଓ ପ୍ରବଳ ବର୍ଷା ହେଲେ ମଧ୍ୟ ବସାର କିଛି କ୍ଷତି ହୁଏନାହିଁ । ବାଘ୍ୱାଚଢ଼େଇ ମଧ୍ୟ ଆରାମରେ ରହିଥାଏ । ଏ ବସା ତିଆରିରେ ବୁଣାର କୌଶଳ ଲକ୍ଷ୍ୟ କରିବା କଥା । ଏହି ବସା ଅନୁକରଣରେ ମୁଣି ତିଆରି କଲେ ଲୋକଙ୍କର ଆଦର ଲଭିକରିବା ଆଶା କରି ମଧୁବାବୁ ଏଥିରୁ କେତୋଟି ନେଇ ବିଲାତରେ କାରିଗରମାନଙ୍କୁ ଦେଖାଇଥିଲେ ।

କେତେ ସ୍ଥାନରେ ପୂର୍ବେ ଗୁଡ଼ିଆମାନେ ରଙ୍ଗର ବ୍ୟବହାର କରୁ ନ ଥିଲେ । ମଧୁବାବୁ ଉଖୁଡ଼ା, ମୁଢ଼ି ପ୍ରଭୃତିରେ ଟିକିଏ ରଙ୍ଗ ପକାଇବା ପାଇଁ ସେମାନଙ୍କୁ କହୁଥିଲେ । ଚୂଡ଼ାଭଜା ଚୂନାରେ ନଡ଼ିଆକୋରା କରିବାକୁ ପ୍ରବର୍ତ୍ତାଉ ଥିଲେ । କାକୁଡ଼ିରେ

ନୂଆ ନୂଆ ଖାଦ୍ୟ ପ୍ରସ୍ତୁତ କରିବା ପାଇଁ କହୁଥିଲେ ଏବଂ କିପରି ତିଆରି କରିବାକୁ ହେବ, ତାହା ମଧ୍ୟ ବତାଇ ଦେଉଥିଲେ । ଥରେ ଏକ ଗୃହାଭୋଜରେ ଏ ନୂତନ ପଦାର୍ଥରୁ କେତୋଟି ପରିବେଷଣ କରିଥିଲେ । ମଧୁବାବୁଙ୍କ ନୂତନ ଆବିଷ୍କାର ଦେଖି ବନ୍ଧୁମାନେ ବହୁତ ଖୁସି ହୋଇଥିଲେ ।

## ୧୧ । ଓଡ଼ିଶା ଅଳଙ୍କାର କାରଖାନା

ଖ୍ରୀ: ୧୮୯୭ରେ ମଧୁବାବୁ ଓଡ଼ିଶା ଅଳଙ୍କାର କାରଖାନା ( Orissa Art-wares ) ସ୍ଥାପନ କରିଥିଲେ । ଏଠାରେ ଏକ ଶିଳ୍ପ ବିଦ୍ୟାଳୟ ( Art School ) ମଧ୍ୟ ସଂଲଗ୍ନ ଥିଲା । ଓଡ଼ିଶା ବହୁ ପ୍ରାଚୀନ କାଳରୁ ସୂକ୍ଷ୍ମ ଅଳଙ୍କାର ନିର୍ମାଣରେ ଖ୍ୟାତି ଲାଭ କରିଥିଲା । କାଳକ୍ରମେ ଏହା ଲୁପ୍ତ ହୋଇଯାଉଥିବା ଦେଖି ପୁନରୁଦ୍ଧାର ନିମନ୍ତେ ମଧୁବାବୁ ଚେଷ୍ଟା କରିଥିଲେ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଭଲ ଭଲ ଶିଳ୍ପୀଙ୍କୁ ଆଣି ସୂକ୍ଷ୍ମ ତାରକସୀ କାମର ରୁପା ସୁନାର ଗହଣା ପ୍ରସ୍ତୁତ କରାଇ ବିକ୍ରୀର ବ୍ୟବସ୍ଥା କରିଥିଲେ । ପ୍ରାୟ ୧୦୦ ( ଶହେ ) ଜଣ କାରିଗର ଏଠାରେ ଶିକ୍ଷାଲାଭ କରିବା ସଙ୍ଗେ ସଙ୍ଗେ ଅଳଙ୍କାର ମଧ୍ୟ ଗଢ଼ୁଥିଲେ । ଅଖଣ୍ଡ ଉଦ୍ୟମ ବଳରେ ଏହି ଲୁପ୍ତପ୍ରାୟ ସୂକ୍ଷ୍ମ କଳାଟିର ପୁନରୁଦ୍ଧାର ହେବା ସଙ୍ଗେ ସଙ୍ଗେ ବହୁଲୋକଙ୍କର ଅନ୍ନ ସଂସ୍ଥାନର ବ୍ୟବସ୍ଥା ହୋଇପାରିବ ଏବଂ ବର୍ତ୍ତମାନ ମଧ୍ୟ ସମଷ୍ଟିଗତ ଉପଯୁକ୍ତ ଯତ୍ନ ଓ ପୃଷ୍ଠପୋଷକତା ଲାଭକଲେ ଏହି ଶିଳ୍ପଟି ନୂତନ ଜୀବନ ଲାଭ କରିବ, ଏହି ଆଶା ତାଙ୍କର ଥିଲା । ଏ ବିଶ୍ୱାସ ଯୋଗୁଁ ମଧୁବାବୁ ଏହି ଉଦ୍ୟମରେ ନିଜ ହସ୍ତରୁ ବହୁ ଅର୍ଥ ବ୍ୟୟ କରିଥିଲେ । ବଙ୍ଗର ବିଖ୍ୟାତ ବୈଜ୍ଞାନିକ ଓ ନେତା ଆଚାର୍ଯ୍ୟ ( ଡାକ୍ତର ସାର୍ ) ପ୍ରଫୁଲ୍ଲଚନ୍ଦ୍ର ରାୟ ପରବର୍ତ୍ତୀ ସମୟରେ ଦୁଇଥର ଉତ୍କଳ ଟେନେରି ଓ ଶିଳ୍ପ କାରଖାନା ଦେଖି ଅତି ଆନନ୍ଦ ଲାଭ କରିଥିଲେ ।

ପ୍ରଥମ ଥର କଟକରେ ଅନୁଷ୍ଠିତ ଶିକ୍ଷକମାନଙ୍କର ଏକ ସଭାରେ ବକ୍ତୃତା ଦେବାକୁ ଆସିବାବେଳେ ପ୍ରଫୁଲ୍ଲବାବୁ ଶିଳ୍ପ ବିଦ୍ୟାଳୟଟି ଦେଖିଥିଲେ । ଶିକ୍ଷକମାନଙ୍କୁ ସଭାରେ ଉପଦେଶମୂଳକ ବକ୍ତୃତା ଦେବାପାଇଁ ବଙ୍ଗର ଶିକ୍ଷାବିଭାଗର ଡିରେକ୍ଟର (Mr. Archadale Earle, ପରେ Sir )ଙ୍କ ଅନୁରୋଧ-କ୍ରମେ ପ୍ରଫୁଲ୍ଲବାବୁ ( ଖ୍ରୀ: ୧୯୦୪ କିମ୍ବା ୧୯୦୫ରେ ) କଟକ ଆସିଥିଲେ । ଦ୍ୱିତୀୟଥର ଖ୍ରୀ: ୧୯୧୭-୧୮ ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ସଭାପତିତ୍ୱ କରିବାକୁ ସେ ଆସିଥିଲେ । ମଧୁବାବୁଙ୍କ ଆମନ୍ତ୍ରଣକ୍ରମେ ପ୍ରଫୁଲ୍ଲ-ବାବୁ ଏ ଦୁଇଟି ଅନୁଷ୍ଠାନ ପରିଦର୍ଶନ କରି ସନ୍ତୋଷ ଲାଭ କରିଥିଲେ ଏବଂ ଏହାକୁ ସର୍ବସାଧାରଣ ଓ ସରକାର ଯଥେଷ୍ଟ ପରିମାଣରେ ଆର୍ଥିକ ସାହାଯ୍ୟ ଦାନ କରି ବଞ୍ଚାଇ ରଖିବେ, ଏହି ଆଶା ମଧ୍ୟ ପ୍ରକାଶ କରିଥିଲେ ।

ଏହି ପ୍ରସଙ୍ଗରେ ପ୍ରଫୁଲ୍ଲବାବୁ କହିଥିଲେ ଯେ, "ଇଂଲଣ୍ଡ ଓ ଆମେରିକାରେ ଯେଉଁମାନେ ଶିଳ୍ପ ବାଣିଜ୍ୟରେ ଉନ୍ନତି ଲାଭ କରିଛନ୍ତି, ସେମାନଙ୍କ ଭିତରୁ ଅଧିକାଂଶ ଅଳ୍ପଶିକ୍ଷିତ ଓ ସାଧାରଣ ସ୍ତରର ଲୋକ, ବିଶ୍ୱବିଦ୍ୟାଳୟର ଶିକ୍ଷା ତ ଦୂରର କଥା । ଏଣ୍ଡ୍ରୁ କାରନେଗି (Andrew Carnegie), ହେନ୍ରି ଫୋର୍ଡ଼ (Henry Ford), ଇଷ୍ଟମ୍ୟାନ୍ (Eastman of Kodak) ମାଧ୍ୟମିକ ଶିକ୍ଷା ଲାଭ କରିଥିଲେ କି ନାହିଁ ସନ୍ଦେହ । ଇଂଲଣ୍ଡରେ ଉଇଲିୟମ୍ ହାସ୍‌କୋଟ ଲିଭର୍ (Wiliam Hascott Lever), ସାର୍ ଥୋମାସ୍ ଲିପ୍‌ଟନ୍ (Sir Thomas Lipton) ଓ ସେଠାରେ ପ୍ରାୟ ସବୁ ବଡ଼ ବଡ଼ ପ୍ରତିଷ୍ଠାନର ପ୍ରତିଷ୍ଠାତାମାନେ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ଯାଇ ନ ଥିଲେ; କିନ୍ତୁ ଆମ ଦେଶରେ ଯେଉଁମାନଙ୍କର ଆଦର୍ଶ ଓ ଉଦ୍ୟମ ଅଛି, ସେମାନେ ସମସ୍ତେ ସାଧାରଣତଃ ଉଚ୍ଚଶିକ୍ଷିତ ଓ ଉଚ୍ଚ ସଂସ୍କୃତି ସମ୍ପନ୍ନ । ଆଦର୍ଶ ଓ ଉଦ୍ୟମକୁ ବାସ୍ତବ ରୂପ ଦାନ କରିବାରେ ସେମାନଙ୍କୁ ବହୁ ଅସୁବିଧା ଓ କଷ୍ଟ ଭୋଗ କରିବାକୁ ପଡ଼ୁଛି ଏବଂ ବହୁତଥର ଆମ୍ଭମାନଙ୍କୁ ଦୁଃଖମୟ ଘଟଣା ଦେଖିବାକୁ ପଡ଼ୁଛି । ଏଠାରେ ଏହିପରି ଭାବରେ ଆରମ୍ଭ ହୋଇଥିବା ଶିଳ୍ପର ଦୁର୍ଦ୍ଦଶାର କାହାଣୀ ବର୍ଣ୍ଣନା କରିବା ଅନାବଶ୍ୟକ; କିନ୍ତୁ ଏପରି ବିଫଳତା ଘଟୁଛି ବୋଲି କେହି ହାତ ବାନ୍ଧି ନିଶ୍ଚିନ୍ତ ହୋଇ ବସି ରହିବା ଉଚିତ ନୁହେଁ । ବର୍ତ୍ତମାନର ବିଫଳତା ପରବର୍ତ୍ତିଯୁଗର ସଫଳତାର ସଙ୍କେତ ମାତ୍ର ।" ପ୍ରଫୁଲ୍ଲବାବୁ ପୁଣି କହିଥିଲେ, ମୁଁ ନିଜେ ଗୋଟାଏ ଦୁଇଟି ପ୍ରତିଷ୍ଠାନରେ ବିଫଳ ହୋଇଛି; କିନ୍ତୁ ମୁଁ କେବେ ହତୋତ୍ସାହ ହୋଇନାହିଁ ବରଂ ଏହି ସବୁ ଅସ୍ଥାୟୀ ବିଫଳତା ମୋତେ ବିଶେଷଭାବରେ ଉତ୍ସାହିତ କରିଛି ।"

ଯେତେବେଳେ ଦେଶରେ ଶିଳ୍ପୋନ୍ନତି ସମ୍ବନ୍ଧରେ ଚେତନା ଜାଗ୍ରତ ହୋଇ ନ ଥିଲା, ସେତେବେଳେ ମଧୁବାବୁ ଉଦ୍ୟମ ଆରମ୍ଭ କରିଥିଲେ । ସେ ଏ କ୍ଷେତ୍ରରେ ସମଗ୍ର ଭାରତବର୍ଷରେ ଜଣେ ଅଗ୍ରଣୀ ଥିଲେ କହିଲେ ଚଳେ । ସେତେବେଳେ ଦେଶର ପ୍ରାଚୀନ ଶିଳ୍ପର ପୁନରୁଦ୍ଧାର ଓ ନୂତନ ଶିଳ୍ପର ପ୍ରଚଳନ ନ କଲେ, ଦେଶର ଜନସାଧାରଣଙ୍କ ଅଚଳ ଅବସ୍ଥାର ଉନ୍ନତି ହେବନାହିଁ ବୋଲି ଚିନ୍ତା କରୁଥିବା ଲୋକଙ୍କ ସଂଖ୍ୟା ଅତି ଅଳ୍ପ ଥିଲା । ଆକାଶ ଉପରେ ନିର୍ଭରକରି କେବଳ କୃଷିଦ୍ୱାରା ଉନ୍ନତି ସମ୍ଭବ ହେବ ବୋଲି ଭାବିବା ଠିକ୍ ନୁହେଁ ।

ପ୍ରଫୁଲ୍ଲ ବାବୁଙ୍କ ମତରେ, "Mr. Das died a martyr to the cause of INDUSTRY and to the uplift to his countrymen." —ମଧୁବାବୁ ଶିଳ୍ପର ଉନ୍ନତିପାଇଁ ଓ ନିଜ ଦେଶର ଜନସାଧାରଣଙ୍କ ଉତ୍‌ଥାନପାଇଁ ନିଜକୁ ବଳିଦାନ କଲେ ।

("Brief Notes on Madhusudan" By Acharya P. C. Ray —Life of M.S. Das as seen by many eyes : P 3-5)

ମଧୁବାବୁ ଖ୍ରୀ: ୧୮୯୭ରେ କଲିକତାରୁ ଫେରିବା ପରେ ଓଡ଼ିଶାରେ ଶିଳ୍ପର ଉନ୍ନତିପାଇଁ ମନଧ୍ୟାନ ଦେଲେ । ସେ ଏକାକୀ ଏ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ବ୍ୟବସାୟରେ ବ୍ୟକ୍ତିଗତ ଲାଭ ଅପେକ୍ଷା ବହୁ ଲୋକଙ୍କ ଅନ୍ନ ସଂସ୍ଥାନ, ଦେଶର ସାଧାରଣ ଆର୍ଥିକ ଅବସ୍ଥାର ଉନ୍ନତି ତାଙ୍କର ଉଦ୍ୟମର ଲକ୍ଷ୍ୟ ଥିଲା । ଏହି ହେତୁ ସେ ବ୍ୟବସାୟରେ ଆୟ ବ୍ୟୟ ସଂରକ୍ଷଣ ପାଇଁ ଆଦୌ ଧ୍ୟାନ ଦେଉନଥିଲେ । ସେ ଉପାର୍ଜନକ୍ଷମ ହେବା ପରେ ବେପରୋୟା ଭାବରେ ଅର୍ଥ ବ୍ୟୟ କରୁଥିଲେ । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ସେ ଯେତେ ଦୃଷ୍ଟି ରଖି ନ ଥିଲେ, ଦେଶର ଗୌରବ ବୃଦ୍ଧି ଓ ପରୋପକାର ପ୍ରତି ସେତିକି ବା ତତୋଽଧିକ ଦୃଷ୍ଟି ରଖିଥିଲେ । ଭଗବାନଙ୍କ ଉପରେ ଭରସା ରଖି ନିରଳସ ଭାବରେ ସବୁ କାର୍ଯ୍ୟ କରୁଥିବାରୁ ସେ ଆତ୍ମିକ ବଳରେ ବଳୀୟାନ୍ ହୋଇଥିଲେ । ଅତି ଦୁର୍ଦ୍ଦିନକୁ ସେ ଭଗବାନଙ୍କର ଇଚ୍ଛା ବୋଲି ଧରିନେଉଥିଲେ ଏବଂ ଏହି କାରଣରୁ ସେ ନିର୍ବିକାର ଚିତ୍ତରେ ଦୁଃଖକୁ ସହ୍ୟ କରି ଯାଉଥିଲେ ।

ଉଦ୍ୟୋଗର ଆରମ୍ଭବେଳୁଁ ସେ ନିଜେ ବିଶେଷଭାବରେ କାର୍ଯ୍ୟ କରୁଥିଲେ । ସଂସ୍ଥାକୁ ସ୍ଥାପନ କରିବାଠାରୁ କାର୍ଯ୍ୟକାରୀ କରିବା ପର୍ଯ୍ୟନ୍ତ ସେ ପ୍ରତି କ୍ଷେତ୍ରର ଅତି ସୂକ୍ଷ୍ମ ବିଷୟକୁ ମଧ୍ୟ ଅନୁଧ୍ୟାନ କରିଥିଲେ । ସେ ସଂସ୍ଥା ସହିତ ମନପ୍ରାଣରେ ଏତେଦୂର ଜଡ଼ିତ ହୋଇଯାଉଥିଲେ ଯେ କାର୍ଯ୍ୟତଃ ସେ ସଂସ୍ଥାର ହର୍ତ୍ତାକର୍ତ୍ତା ଓ ବିଧିବିଧାତା ହୋଇ ପଡ଼ୁଥିଲେ ।

ମଧୁବାବୁ ପ୍ରଥମେ ତାରକସୀ କାମ ପ୍ରତି ମନ ଦେଇଥିଲେ । ସେତେବେଳେ କଟକରେ ବହୁ ବଣିଆ ଏହି ବ୍ୟବସ୍ଥାୟରେ ଜୀବିକା ଅର୍ଜନ କରୁଥିଲେ ମଧ୍ୟ ସେମାନେ ଉନ୍ନତ ବୈଜ୍ଞାନିକ ପ୍ରଣାଳୀରେ ଶିଳ୍ପର ଉନ୍ନତି ପ୍ରତି ଧ୍ୟାନ ଦେଉ ନଥିଲେ । ପ୍ରଥମେ ସେ ନିଜ ଘରେ ତିନି ଚାରିଜଣ ବଣିଆଙ୍କୁ ବସାଇ ତାରକସୀ କାମ ଆରମ୍ଭ କରାଇଥିଲେ । କିପରି ଅତି ସୂକ୍ଷ୍ମ ତାର ନିର୍ମିତ ହୋଇପାରିବ ଏବଂ ଏଥିରୁ କିପରି ଅତି ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଅଲଙ୍କାର ନିର୍ମିତ ହୋଇପାରିବ, ସେ କ୍ଷେତ୍ରରେ ମଧୁବାବୁ ନିଜେ କାରିଗରମାନଙ୍କୁ ପରିକଳ୍ପନା ଦେଉଥିଲେ ଏବଂ ନୂତନ ନୂତନ ଭାବ ମଧ୍ୟ ଦେଉଥିଲେ । କାରିଗରମାନଙ୍କୁ ଉନ୍ନତ ଧରଣର ଶିକ୍ଷା ଦେଇ ସେମାନଙ୍କର ଦକ୍ଷତା ବୃଦ୍ଧି କରିବା ହିଁ ତାଙ୍କର ଲକ୍ଷ୍ୟ ଥିଲା ।

କିଛିଦିନ ସୂକ୍ଷ୍ମ ତାରର କେତେକ ଅଲଙ୍କାର ତିଆରି କରିବାପରେ ଏହାର ଉନ୍ନତିପାଇଁ ସେ ବିଶେଷ ଧ୍ୟାନ ଦେଲେ । କାରିଗରମାନଙ୍କୁ ଅତି ସୂକ୍ଷ୍ମ ତାର ନିର୍ମାଣ କରିବା କୌଶଳ ଶିକ୍ଷାଦେବା ନିମନ୍ତେ ଦିଲ୍ଲୀରୁ ଜଣେ ଦକ୍ଷ କାରିଗରଙ୍କୁ ମଧ୍ୟ ଆଣିଥିଲେ । ନୂତନ ଶିଳ୍ପୀଙ୍କଠାରୁ ଅନ୍ୟମାନେ ସୂକ୍ଷ୍ମ ତାର ପ୍ରସ୍ତୁତ କରିବା ଓ ଏଥିରେ ସୁନ୍ଦର ସୁନ୍ଦର ଅଲଙ୍କାର ପ୍ରସ୍ତୁତ କରିବା ଶିକ୍ଷାକରି ନିଜର ଦକ୍ଷତା ବୃଦ୍ଧି କରୁଥିଲେ ।

ମଧୁବାବୁଙ୍କ କାରଖାନାର ପଦାର୍ଥ ସୁନ୍ଦର ଓ କଳାପୂର୍ଣ୍ଣ ହୋଇଥିବାରୁ ଲୋକଙ୍କ ଭିତରେ ଏହାର ଆଦର କ୍ରମେ ବୃଦ୍ଧି ପାଇଥିଲା । ମଧୁବାବୁ ଏହାକୁ ଲକ୍ଷ୍ୟକରି କ୍ରମଶଃ କାରଖାନାକୁ ବୃଦ୍ଧି କରିବାରେ ଲାଗିଲେ । ଅଳ୍ପକାଳ ମଧ୍ୟରେ ତିନି ଚାରିଜଣଙ୍କୁ ନେଇ ଆରମ୍ଭ ହୋଇଥିବା କାରଖାନାରେ ୧୭୦ କାରିଗର କାମ କରୁଥିଲେ ।

ମଧୁବାବୁ ଏହି ଶିଳ୍ପାନୁଷ୍ଠାନର ଉନ୍ନତି ଦେଖି ଏହାକୁ "ଉତ୍କଳ ଆର୍ଟ ଓ୍ୱାର୍କସ" ନାମ ଦେଲେ । ମଧୁବାବୁଙ୍କ ଘର ହତା ମଧ୍ୟରେ ଶିଳ୍ପାନୁଷ୍ଠାନଟି ଅବସ୍ଥାପିତ ହୋଇଥିଲା (ବର୍ତ୍ତମାନ ଏହି ସ୍ଥାନରେ ଶୈଳବାଳା ମହିଳା କଲେଜ ସଂଲଗ୍ନ ମହିଳା ଛାତ୍ରୀନିବାସ ଅବସ୍ଥିତ) ।

ଶିଳ୍ପାନୁଷ୍ଠାନଟିକୁ ଆଧୁନିକ ଧରଣରେ ଗଢ଼ି ଓ ପରିଚାଳନା କରି ଦେଶବିଦେଶରେ ଏହାର ଆଦର ବୃଦ୍ଧି କରିବା ଆଶାରେ ମଧୁବାବୁ ଜଣେ ଇଂରେଜଙ୍କୁ ମ୍ୟାନେଜରରୂପେ ନିଯୁକ୍ତ କରିଥିଲେ । ଏହି ସଂଗଠନର ଦକ୍ଷତା ଓ ଦେଶବିଦେଶରେ ଏହାର ଉତ୍ପନ୍ନ ଦ୍ରବ୍ୟର ଆଦର ବୃଦ୍ଧିପାଇବାକୁ ଆରମ୍ଭ କଲା । ତାରକସୀ କାମ ସହିତ କାରଖାନାରେ ସୁନା, ରୁପା, ହାତୀଦାନ୍ତ, ଶିଙ୍ଗ, ପିତ୍ତଳ, କାଠ, ଶଙ୍ଖ ପ୍ରଭୃତିରେ କାରୁକାର୍ଯ୍ୟପୂର୍ଣ୍ଣ ସୌଖୀନ୍ ଦ୍ରବ୍ୟ ଏଠାରେ ନିର୍ମିତ ହେଉଥିଲା । ଦେଶବିଦେଶର ବ୍ୟବସାୟୀମାନେ ଦ୍ରବ୍ୟ କିଣିନେଉଥିଲେ ।

ଏହା ସତ୍ତ୍ୱେ କାରଖାନାଟି କ୍ରମେ ଆର୍ଥିକ ଦୁର୍ଗତି ଭିତରେ ଗତି କରିବାକୁ ବାଧ୍ୟ ହେଲା । ମଧୁବାବୁ ମୂଳରୁ ପ୍ରତିଷ୍ଠାନଟିକୁ ବ୍ୟବସାୟ ସୂତ୍ରରେ ପରିଚାଳନା କରିବା ପ୍ରତି ଧ୍ୟାନ ଦେଉ ନଥିଲେ । ଆୟ-ବ୍ୟୟର ହିସାବ ପ୍ରତି ତାଙ୍କର ଆଦୌ ନଜର ନଥିଲା, କିଛି ହିସାବ ନଥିଲା କହିଲେ ଚଳେ । ଲାଭ ହେଲା କି କ୍ଷତି ହେଲା, କେଉଁ ବାବଦରେ କେତେ ଖର୍ଚ୍ଚ ହେଲା, ଅପବ୍ୟୟ ଓ ଚୋରିଚପାଟିର ପରିମାଣ କେତେ ତାହା ମଧୁବାବୁ ଜାଣିବାକୁ ଚେଷ୍ଟା କରୁନଥିଲେ । ପ୍ରତିଷ୍ଠାନ ସହିତ ତାଙ୍କର ନିଜର ନାମ ଓ ମାନ ମର୍ଯ୍ୟାଦାକୁ ଜଡ଼ିତ କରିଦେଇଥିବାରୁ ମଧୁବାବୁ ଏହାକୁ ବ୍ୟବସାୟ ପ୍ରତିଷ୍ଠାନର ସୂତ୍ରନୀତି ଉପରେ ପ୍ରତିଷ୍ଠା କରିବାକୁ ଚେଷ୍ଟା କରି ନଥିଲେ । ଯଦି ନିଜର ନାମକୁ ଓ ମର୍ଯ୍ୟାଦାକୁ ମଧୁବାବୁ ଏହି ପ୍ରତିଷ୍ଠାନ ସହିତ ଜଡ଼ିତ କରାଇ ନଥାନ୍ତେ, ତାହାହେଲେ ହୁଏତ ପ୍ରତିଷ୍ଠାନଟି ବଞ୍ଚିରହି ଥାଆନ୍ତା । ମଧୁବାବୁଙ୍କର ବ୍ୟକ୍ତିଗତ ଜୀବନରେ ଆର୍ଥିକ କ୍ଷେତ୍ରରେ ଯେଉଁ ଦୋଷ ଦୁର୍ବଳତା ଥିଲା, ତାହା ପ୍ରତିଷ୍ଠାନରେ ପ୍ରତିଫଳିତ ହେବାରୁ ଏହାର ପତନ ଘଟିଲା । ମଧୁବାବୁଙ୍କ ଚମଡ଼ା ପ୍ରତିଷ୍ଠାନର ପତନର ଏକ ପ୍ରଧାନ କାରଣ ମଧ୍ୟ ଏହା ।

ମଧୁବାବୁ ସାଧାରଣରେ କୌଣସି ଲୋକକୁ ଅସତ୍ ବୋଲି ଭାବୁ ନଥିଲେ । ସତ୍ ପ୍ରକୃତି ଉପରେ ତାଙ୍କର ଅଟଳ ବିଶ୍ୱାସ ଥିଲା । କୌଣସି କର୍ମଚାରୀ ଅସତ୍ ଉପାୟ ଅବଲମ୍ବନ କରିବ, ଟଙ୍କା କଉଡ଼ି ଅପହରଣ କରିବ, ଏହା ସେ ଭାବୁ ନଥିଲେ । ସେହି ହେତୁ ହିସାବ କିତାବ ଯାଞ୍ଚ କରି ଆୟ ବ୍ୟୟ ଠିକ୍ ଅଛି କି ନାହିଁ ତାହା ଦେଖିବା ପ୍ରତି

ସେ ବିଶେଷ ଧ୍ୟାନ ଦେଉ ନଥିଲେ । ତାଙ୍କର ଏହି ଉଦାରତାର ସୁଯୋଗ ନେଇ କେହି କେହି ଅସତ୍ କର୍ମଚାରୀ ତାଙ୍କ ସର୍ବସ୍ୱାନ୍ତ କରିଥିବା ମଧ୍ୟ ଜଣାଯାଏ ।

**ତାଳପତ୍ରରେ ମାନପତ୍ର ପ୍ରଦାନ** ଖ୍ରୀ: ୧୯୦୨ରେ ବଙ୍ଗ ଲାଟ ସାର୍ ଜନ୍ ଉଡ୍‌ବାର୍ଣ୍ଣ କଟକ ଆସିଥିଲେ । ମଧୁବାବୁ ତାଙ୍କୁ ନିମନ୍ତ୍ରଣ କରି ଆଣି କାରଖାନା ଦେଖାଇଥିଲେ । କାରିଗରମାନେ ତାଙ୍କୁ ଏକ ମାନପତ୍ର ତାଳପତ୍ରରେ ଗ୍ରନ୍ଥି ପ୍ରଦାନ କରିଥିଲେ । ମଧୁବାବୁଙ୍କ ହତା ଭିତରେ ଟେନିସ୍ କୋର୍ଟର ଚାରିପଟେ କାରିଗରମାନେ ବସି ନିର୍ମାଣ କାର୍ଯ୍ୟରେ ଲାଗିଥିଲେ । ନିକଟରେ ମଞ୍ଚ ତିଆରି ହୋଇଥିଲା । ସାହେବ ଏହି ମଞ୍ଚ ଉପରେ ବସି କାରିଗରମାନଙ୍କର ସୂକ୍ଷ୍ମ କାରୁକାର୍ଯ୍ୟ ଦେଖୁଥିଲେ । ମଧୁବାବୁଙ୍କ ଏ ପ୍ରତିଷ୍ଠାନକୁ ଦେଖି ଉଡ୍‌ବର୍ଣ୍ଣ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ମଧୁବାବୁ ଓ କାରିଗରମାନଙ୍କ ମାନପତ୍ରର ଉତ୍ତରରେ ବହୁ ପ୍ରଶଂସା କରିଥିଲେ । ସଭା ମଞ୍ଚ ଉପରେ ବସି ସାହେବ ପ୍ରତ୍ୟେକ କାରିଗରଙ୍କ କରମର୍ଦ୍ଦନ କରି ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ ।

ମାନପତ୍ରଟିରେ କାରିଗରମାନେ ସେମାନଙ୍କର ସୁବିଧା ଅସୁବିଧା ପ୍ରଭୃତି ଜଣାଇଥିଲେ । ଗୋଟିଏ କାରୁକାର୍ଯ୍ୟଖଚିତ ରୁପା ତାରକସି ନିର୍ମିତ ବାକ୍ସ ଭିତରେ ମାନପତ୍ରଟିକୁ ରଖି ସାହେବଙ୍କୁ ଉପହାର ଦିଆଯାଇଥିଲା । ବାକ୍ସ ଭିତରେ ବିଖ୍ୟାତ ପୁରୀ, କୋଣାର୍କ ଓ ଭୁବନେଶ୍ୱର ମନ୍ଦିରର ଶ୍ରେଷ୍ଠ ପ୍ରତିମୂର୍ତ୍ତି ମଧ୍ୟ ଥିଲା ।

ଏହି ଉତ୍ସବରେ ମଧୁବାବୁ ଉଡ୍‌ବର୍ଣ୍ଣଙ୍କୁ କହିଥିଲେ—ଏହି କଳାପୂର୍ଣ୍ଣ ତାରକସିର କାସ୍କେଟ୍ ନିର୍ମାଣ କରିଥିବା କାରିଗରମାନେ କୌଣସିଠାରେ ପ୍ରଶଂସିତ ହୋଇ ନଥାନ୍ତି । କେବଳ ଯେ ଦେଇଥାଏ, ସେ ଧନ୍ୟବାଦ ପାଇଥାଏ; ଉପାଧି ମଧ୍ୟ ପାଇଥାଏ । ଶିଳ୍ପୀ ବଣିଆମାନଙ୍କୁ ସରକାର ଉପାଧି ଦେଲେ, ଏମାନେ ବିଶେଷ ଉତ୍ସାହିତ ହୁଅନ୍ତେ ଏବଂ ଶିଳ୍ପର ବିଶେଷ ଉନ୍ନତି ମଧ୍ୟ ହୁଅନ୍ତା । ଉଡ୍‌ବର୍ଣ୍ଣ ବଡ଼ଲାଟ ଲର୍ଡ୍ କର୍ଜନଙ୍କୁ ଏହା ଜଣାଇବେ ବୋଲି ମଧୁବାବୁଙ୍କୁ କହିଥିଲେ । ସାହେବ ମାନପତ୍ରର ଉତ୍ତରରେ ମଧୁବାବୁ ଓ କାରିଗରମାନଙ୍କୁ ଉଚ୍ଚ ପ୍ରଶଂସା କରିଥିଲେ ।

ଏହାର କେତେଦିନ ପରେ ସାର୍ ଉଡ୍‌ବର୍ଣ୍ଣ ଅବସର ନେଇ ବିଲାତ ଚାଲିଗଲେ । ଭାରତର କାରୁକାର୍ଯ୍ୟ ସମ୍ବନ୍ଧରେ ଲିଖିତ ଏକ ପୁସ୍ତକ ସ୍ୱହସ୍ତ ଲିଖିତ ନାମ ସହ ଉପହାର ସ୍ୱରୂପ ମଧୁବାବୁଙ୍କଠାକୁ ବିଲାତରୁ ପଠାଇଥିଲେ ଓ ଏଥିସହ ଏକ ପତ୍ର ମଧ୍ୟ ଲେଖିଥିଲେ ।

ପ୍ରାୟ ଏକଲକ୍ଷ ଟଙ୍କା ମଧୁବାବୁଙ୍କ ଉତ୍କଳ ତାରକସି କାରଖାନାରେ କ୍ଷତି ହୋଇଥିବାର ଜଣାଯାଏ । ଦେଶରେ ଏଭଳି ଉଚ୍ଚ ଶିଳ୍ପର ଆଦର ଥିଲେ ମଧ୍ୟ ଗ୍ରାହକ ସଂଖ୍ୟା ଯଥେଷ୍ଟ ନଥିଲା । ମଧୁବାବୁ ବ୍ୟବସାୟ ପ୍ରତିଷ୍ଠାନ ପ୍ରତି ବିଶେଷ ନଜର ଦେବାପାଇଁ ଯଥେଷ୍ଟ ସମୟ ମଧ୍ୟ ପାଇପାରିଲେ ନାହିଁ । କ୍ଷତି ବେଶି ହେବାରୁ ମଧୁବାବୁ ବାଧ୍ୟ ହୋଇ କାରଖାନା ବନ୍ଦ କରିଦେଲେ ।

ଏହି ବିଖ୍ୟାତ ତାରକସୀ କାମ ସମ୍ବନ୍ଧରେ କେତେକ ଜ୍ଞାତବ୍ୟ ତଥ୍ୟ ଏଠାରେ ଦିଆଗଲା— "ବର୍ତ୍ତମାନ ଓଡ଼ିଶାରେ ଯେତେ ଯେତେ ପ୍ରକାର ହସ୍ତଶିଳ୍ପ ଦେଖାଯାଏ, ସେମାନଙ୍କ ମଧ୍ୟରେ କଟକ ତାରକସି କାମର ସ୍ଥାନ ଶୀର୍ଷରେ । ଏହି କାମର ଶିଳ୍ପୀମାନେ ବିଦେଶୀ ପରିଦର୍ଶକଙ୍କୁ ମୁଗ୍ଧ କରିବା ସଙ୍ଗେ ସଙ୍ଗେ ବୈଦେଶିକ ମୁଦ୍ରା ଅର୍ଜନରେ ସମର୍ଥ ହୋଇପାରିଛନ୍ତି । ଏହା ଏକ ଅତି ସୂକ୍ଷ୍ମ ଧରଣର ତାର କାମ । ଏପ୍ରକାର କାମ ପୃଥିବୀର ବିଭିନ୍ନ ଦେଶରେ ଦେଖାଗଲେ ମଧ୍ୟ ଏହା କଟକ କାମପରି ଉତ୍କୃଷ୍ଟ ଧରଣର ନୁହେଁ । କଟକ ତାରକସୀ କାମର ବିଶେଷତ୍ୱ ଅଛି । ତାରକସୀ କାମ ଚୀନ, ରୁଷିଆ, ଇଟାଲୀ, ଆରବ, ଜେନେଭା ଓ ଢାକା ବ୍ୟତୀତ ଆମ ଦେଶର ମୁର୍ଶିଦାବାଦ, ତ୍ରିଚନାପଲ୍ଲୀ, କରିମ୍‌ନଗର ପ୍ରଭୃତିରେ ମଧ୍ୟ ଦେଖାଯାଏ; କିନ୍ତୁ କଟକ ଯେ ଏଥିପାଇଁ ପୃଥିବୀ ପ୍ରସିଦ୍ଧ ଏ କଥା କେହି ଅସ୍ୱୀକାର କରିବେ ନାହିଁ । ଏହି ଶିଳ୍ପ ଓଡ଼ିଶାରେ କେବଳ କଟକରେ ଦେଖାଯାଏ । ତାହା ମଧ୍ୟ କେତୋଟି ପରିବାର ମଧ୍ୟରେ ସୀମାବଦ୍ଧ । ଓଡ଼ିଶାର ରଜା ମହାରଜାଙ୍କର ପୃଷ୍ଠପୋଷକତାରେ ଏ ଶିଳ୍ପର ଅଗ୍ରଗତି ଘଟିଥିଲା ।

"କଟକରେ ସାଧାରଣତଃ ଶିକଖଞ୍ଜା କାମ, ଗୋଲପଫୁଲ କାମ, ନକ୍‌ସା କାମ ଏବଂ ରୁଆକାମ କରାଯାଏ । ମାନସିଂହପାଟଣା ଓ ରାମଗଡ଼ର ଶିକଖଞ୍ଜା କାମ, ମହମ୍ମଦିଆ ବଜାର ଓ ଅଲସା ବଜାରର ଗୋଲପଫୁଲ କାମ, ବଣିଆ ସାହିର ନକ୍‌ସା କାମ ଏବଂ ବିଦ୍ୟାଧରପୁରର ରୁଆ କାମ ସର୍ବୋତ୍କୃଷ୍ଟ । ସହରର ପ୍ରାୟ ୩୦୦ ପରିବାର ଏହି ଶିଳ୍ପ ଉପରେ ଜୀବନ ଧାରଣ ପାଇଁ ନିର୍ଭର କରନ୍ତି । ଏ କାମରେ ପୁରୁଷ କାରିଗରଙ୍କ ବ୍ୟତୀତ ପରିବାରର ସ୍ତ୍ରୀ ଓ ପିଲାମାନେ ମଧ୍ୟ ସହଯୋଗ କରିଛନ୍ତି । ଏ ଶ୍ରେଣୀର କାରିଗର ଗୋଟିଏ ଜାତିର ଲୋକଙ୍କ ଭିତରେ ସୀମାବଦ୍ଧ ନୁହେଁ । ବିଭିନ୍ନ ଜାତିର ଲୋକ ଏ ଶ୍ରେଣୀ କାରିଗରଙ୍କ ଅନ୍ତର୍ଭୁକ୍ତ । ଏମାନେ ଏହାକୁ ବଂଶପରମ୍ପରା ଭାବରେ କରି ଆସୁଅଛନ୍ତି । ଏ ଶିଳ୍ପର ବିଶେଷତ୍ୱ ହେଉଛି, ଏହି କାରିଗରଙ୍କ ବ୍ୟତୀତ ଅନ୍ୟ କୌଣସି ସ୍ୱର୍ଣ୍ଣ ଓ ରୌପ୍ୟ ଶିଳ୍ପୀମାନେ ତାରକସୀ କାମ କରିପାରିବେ ନାହିଁ । ବିଭିନ୍ନ ପ୍ରକାର ଅଳଙ୍କାର ବ୍ୟତୀତ ନାନାପ୍ରକାର ଉପହାରୋପଯୋଗୀ ଜିନିଷ; ଯଥା—ରଥ, ବୋଇତ, ଖେଳନା, ଅତରଦାନ, ଥାଳିଆ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ ।

"ରୁପା ବ୍ୟତୀତ ସୁନା ବା ତମ୍ବାରେ ମଧ୍ୟ ଏ କାମ କରାଯାଇପାରେ । ଏପ୍ରକାର କାମ ବିଭିନ୍ନ ଧରଣର ସୂକ୍ଷ୍ମ ତାର ଓ ରୁପାପତରଦ୍ୱାରା କରାଯାଏ । ପ୍ରଥମେ କାମର ଫରମା ବା ଗ୍ରନ୍ଥ ତାର ସାହାଯ୍ୟରେ କରାଯାଏ । କାମର ନମୁନା ଅନୁଯାୟୀ ସେଥିରେ ନାନା ପ୍ରକାର ଗ୍ରେଟ ଗ୍ରେଟ ଫୁଲ ବା ଚକି ସାହାଯ୍ୟରେ ଭରିଦିଆଯାଏ । ଏହାକୁ ସାଧାରଣତଃ ଜୁଇ, ଟାଙ୍କେଇ, ମାଳଦା, ଫେରଫୁରା, ଫେର, ମାଇପୋଷ ପ୍ରଭୃତି କହନ୍ତି । କାମ ଖଞ୍ଜା ସରିବାପରେ ଏହାକୁ ଅଭ୍ରକ ପଟି କମ୍ବା ଲୁହା ଜାଲି ଉପରେ ରଖି ଝଳାଯାଏ । କେତେକ ସୂକ୍ଷ୍ମକାମ ଅଭ୍ରକରେ ବସାଇବା ପାଇଁ କାଇଁଚ ଅଠା ବ୍ୟବହାର

କରଥାନ୍ତି । ଝାଳିବା ସମୟରେ କାରିଗରମାନେ ସାଧାରଣତଃ ସୁହାଗା, ଗୁନ୍ଧଗୁଣ୍ଡ, ବିଭିନ୍ନ କିସମର ଗନ୍ଧ ପାଉଡ଼ର ବ୍ୟବହାର କରଥାନ୍ତି । କାମ ଝାଳିବାପାଇଁ ସେମାନେ ବାଙ୍କନଳୀ ସାହାଯ୍ୟରେ ଫୁଙ୍କି ଦିଅନ୍ତି ଏବଂ କେତେକ ସମୟରେ କୋଇଲା ମଧ୍ୟ ବ୍ୟବହାର କରଥାନ୍ତି । ଏସବୁ କାମ କରିବାପାଇଁ ଦେଶୀ ହାତହତିଆର ବ୍ୟବହାର କରାଯାଏ ।

"ଏହି କାମପାଇଁ ସାଧାରଣତଃ କରୁଣି, ଚିମୁଟା, ବାଙ୍କନଳୀ, ବ୍ରସ, ଘଡ଼ିଆ, ହାତୁଡ଼ି, କମ୍ପାସ, ପ୍ଲେଟ କରତ, ଲେନ୍ସ, କାଉଁମିଲ, ଫିଆଡ଼ି, ପ୍ଲେଟ ଡାଇସ୍, ତାରମୋଡ଼ା ଓ ତାରକଟା ହାତଯନ୍ତ୍ର, ଗୋବା, ସମକୁଳ, ଧାତୁକଟିବା ଯନ୍ତ୍ର, ହାତଭଅର, ଯନ୍ତା, କଞ୍ଚିକିରି, ଚୁମ୍ବକ, ଲୁହା, ଡଲା, ତାରମାପ ଯନ୍ତ୍ର, ଲୁହାପ୍ଲାସ, ପିନ ୱାଇସ୍, ସୁଆର ପ୍ରଭୃତି ବ୍ୟବହାର କରାଯାଏ । ଆଜିକାଲି ବ୍ୟବସାୟଗତ ପ୍ରତିଯୋଗିତା ଦୃଷ୍ଟିରୁ ବିଭିନ୍ନ କିସମର ତାର ଯନ୍ତ୍ର ସାହାଯ୍ୟରେ କରାଯାଉଅଛି । କାମ ସଫା କରିବାପାଇଁ ତେଜାପ ପାଣି ଏବଂ ରିଠାଫଳ ବ୍ୟବହାର କରାଯାଇଥାଏ । କାମର ଆବଶ୍ୟକତା ଦୃଷ୍ଟିରୁ ଜିନିଷକୁ ଦୁଇ ତିନିଥର ସୁହାଗ ପୋଚ୍ ମଧ୍ୟ ଦିଆହୁଏ । କାମଟିକୁ ବେଶିଦିନ ସଫା କରିବାପାଇଁ ଏକ ପ୍ରକାର ରଙ୍ଗହୀନ ଲାଖର ଆବରଣ ଦିଆହୁଏ ।

"ଅନେକେ କହନ୍ତି, 'ତାରକସି' ହେଉଛି ପର୍ସିଆନ ଶବ୍ଦ ; କିନ୍ତୁ ଏହି କାମ କରିବାପାଇଁ ବିଭିନ୍ନ ପ୍ରକାର ତାର, ପତର ବ୍ୟବହାର ହୋଇଥାଏ । ବିଭିନ୍ନ ପଦ୍ଧତିଦ୍ୱାରା ତାରକୁ 'କଷ' ଦେଇ କାମ କରାଯାଉଥିବାରୁ ଏହାର ଏପରି ନାମକରଣ କରାଯାଇଅଛି ।

"ଇତିହାସ କହେ, ୧୬ଶ ଶତାବ୍ଦୀରେ ଏହି ଶିଳ୍ପର ବିଶେଷ ଅଗ୍ରଗତି ହୋଇଥିଲା । ଏହା ଦିନେ ପର୍ତ୍ତୁଗୀଜ୍ ବ୍ୟବସାୟୀମାନଙ୍କୁ ଆକୃଷ୍ଟ କରିପାରିଥିଲା ଏବଂ ଓଡ଼ିଶାର ବିଭିନ୍ନ ବନ୍ଦରରୁ ଅନ୍ୟ ଜିନିଷ ସହିତ ଏହି ତାରକସୀ କାମ ବିଦେଶକୁ ରପ୍ତାନି କରାଯାଉଥିଲା । ୧୯ଶ ଶତାବ୍ଦୀରେ କଟକର ଏହି କାମ ପୃଥିବୀର ବିଭିନ୍ନ ଆନ୍ତର୍ଜାତିକ ପ୍ରଦର୍ଶନୀରେ ଦର୍ଶାଯାଇ ବିଶେଷ ଆଦୃତ ହୋଇଥିଲା । ଲଣ୍ଡନଠାରେ ହୋଇଥିବା ପ୍ରଦର୍ଶନୀକୁ ନନ୍ଦ କେଠି ନାମକ ଜଣେ କାରିଗର କେତେକ ତାରକସୀକାମ ପଠାଇ ଉଚ୍ଚ ପ୍ରଶଂସାର ପାତ୍ର ହୋଇଥିବାର ଜଣାଯାଏ ।

"କିନ୍ତୁ କ୍ରମେ ଜଣେ ସୁଦକ୍ଷ ସୁପରିଚାଳକ ଅଭାବରୁ ଏହି ଶିଳ୍ପର କ୍ରମ ଅବନତି ଘଟିଲା । ମନେହୁଏ ଉତ୍କଳଗୌରବ ମନସ୍ୱୀ ମଧୁବାବୁ ଏହି ବିଲୁପ୍ତ ପ୍ରାୟ ତାରକସୀ ଶିଳ୍ପର ପୁନରୁଦ୍ଧାରପାଇଁ ଲଗାମ ଧରି ନ ଥିଲେ ହୁଏତ ଏହି କଟକ ତାରକସୀକାମ ଆଜି ଦେଖିବାକୁ ମିଳୁନଥାନ୍ତା । ଏହାର ବିଶେଷ ଆଦର ବିଦେଶରେ ଅଛି ବୋଲି ସେ ଜାଣି-ପାରିଥିଲେ । ଏ ରାଜ୍ୟର ଶିଳ୍ପୀ କାରିଗରମାନଙ୍କୁ କର୍ମକ୍ଷେତ୍ରରେ ପ୍ରତିଷ୍ଠିତ କରିବାପାଇଁ ସେ ଆପ୍ରାଣ ଚେଷ୍ଟା କରିଥିଲେ । ୧୮୯୮-୯୯ ମସିହାରେ ବହୁ ଅର୍ଥ ବ୍ୟୟକରି ସେ ଏହି ଶିଳ୍ପକୁ ପୁନରୁଦ୍ଧାର କରିବାପାଇଁ "ଓଡ଼ିଶା ଆର୍ଟୱାର" ନାମକ ଏକ କାରଖାନା

କଟକରେ ପ୍ରତିଷ୍ଠା କରିଥିଲେ । କେତେକ କୁଶଳୀ କାରିଗରଙ୍କୁ ନେଇ ସେ ଏହି କାମ ଆରମ୍ଭ କରିଥିଲେ । ଏହି ଶିଳ୍ପର ବିକାଶ କରିବା ସଙ୍ଗେ ସଙ୍ଗେ କାରିଗରମାନଙ୍କର ସୁନାମ ଅର୍ଜନ କରିବା ଏହାର ପ୍ରଧାନ ଲକ୍ଷ୍ୟ ଥିଲା । ମାତ୍ର ସେ ଯେତେବେଳେ ବିହାର ଓଡ଼ିଶା ମନ୍ତ୍ରିମଣ୍ଡଳରେ ଯୋଗଦେବାପାଇଁ ୧୯୨୧ ମସିହାରେ କଟକ ଛାଡ଼ିଲେ ସେତେବେଳେ ସୁପରିଚାଳକ ଅଭାବରୁ କାରଖାନାଟି କ୍ରମେ ଭାଙ୍ଗିବାକୁ ଲାଗିଲା । କାରିଗରମାନଙ୍କ ମଧ୍ୟରେ ବିଶୃଙ୍ଖଳା, ମନୋମାଳିନ୍ୟ ଦେଖାଗଲା । ଏହାର ସୁବିଧା ଓ ସୁଯୋଗ ନେଇ ଓଡ଼ିଶା ବାହାରର ବ୍ୟବସାୟୀମାନେ କ୍ରମେ ଏହି କାମରେ ବ୍ୟବସାୟକରି ପ୍ରଚୁର ଅର୍ଥୋପାର୍ଜନ କଲେ ମଧ୍ୟ କାରିଗରମାନଙ୍କ ଆର୍ଥିକ ପରିସ୍ଥିତି ପ୍ରତି ଦୃଷ୍ଟି ଦେଲେନାହିଁ । ବରଂ ଏହି ଗୋଷ୍ଠୀକୁ ଶୋଷଣ କରି ଅଧିକ ଅର୍ଥୋପାର୍ଜନ କରିବା ଏବଂ କାରିଗରମାନଙ୍କ ମଧ୍ୟରେ ଅନୈକ୍ୟ ଓ ମନୋମାଳିନ୍ୟ ସୃଷ୍ଟି କରି ଫାଇଦା ଉଠାଇବା ଏମାନଙ୍କର କାର୍ଯ୍ୟ ହେଲା ।''

(''ଓଡ଼ିଆ ଟାଇମ୍ସ'' ସାପ୍ତାହିକ କାଗଜ । କଟକ । ୧୯୬୯ ଜୁନ୍‌ରୁ ଉଦ୍ଧୃତ)

ଏ ଯୁଗରେ ଏସବୁ ବ୍ୟବସାୟ କ୍ରମେ ଲୋପ ପାଇଯାଉଛି । ବର୍ତ୍ତମାନ ଏହାର ଅଭ୍ୟୁତ୍ଥାନ ପାଇଁ ଉଦ୍ୟମ ହୋଇ ଏ ଦିଗରେ କିଛି ଅଗ୍ରଗତି ହୋଇଛି, କିନ୍ତୁ ପୂର୍ବର ଗୌରବ ଫେରି ଆସିନାହିଁ ।

**କଟକରେ ଯୌଥ ଭଣ୍ଡାର ସ୍ଥାପନ ଓ ଶିଳ୍ପ ପ୍ରଦର୍ଶନୀପାଇଁ ଉଦ୍ୟମ :** ଖ୍ରୀ: ୧୮୯୮ ଫେବୃଆରୀ ମାସ ୨୬ ତାରିଖରେ ମଧୁବାବୁ 'ହିତକର ମିଳନ' କାର୍ଯ୍ୟକ୍ରମରେ ସହଯୋଗସୂତ୍ରରେ ସମବାୟ ଯୌଥ ଭଣ୍ଡାର ସ୍ଥାପନ ପାଇଁ କଟକରେ ଏକ ସାଧାରଣ ସଭା ଡକାଇଥିଲେ । ଏହି ସମୟରେ ସେ ଏକ ପ୍ରଦର୍ଶନୀ ଆୟୋଜନ କରି ଓଡ଼ିଶା କମିଶନର ମି: କୁକ୍‌ଙ୍କଦ୍ୱାରା ଉଦ୍‌ଘାଟିତ କରାଇଥିଲେ ।

**ମାଡ଼ାକସ ସେଟଲ୍‌ମେଣ୍ଟର ସମାଲୋଚନା (୧୮୯୮) :** 'ଉତ୍କଳ ସଭା' ପକ୍ଷରୁ ମାଡ଼ାକ୍‌ସ ସେଟଲ୍‌ମେଣ୍ଟର ସୁପାରିଶଗୁଡ଼ିକୁ ଆଲୋଚନା କରି ଯେଉଁ ସବୁ ବ୍ୟବସ୍ଥା ପ୍ରଜାଙ୍କ ପକ୍ଷେ କ୍ଷତିକାରକ, ସେଗୁଡ଼ିକର ସଂଶୋଧନ ପାଇଁ ଦାବୀ କରି ଏକ ସ୍ମାରକପତ୍ର ବଙ୍ଗର ଲେଫ୍‌ଟେନାଣ୍ଟ ଆଲେକ୍‌ଜାଣ୍ଡର ମ୍ୟାକେନ୍‌ଜୀଙ୍କୁ ମଧୁବାବୁ ଦେଇଥିଲେ ।

**ବଙ୍ଗ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ (୧୮୯୮) :** ମଧୁବାବୁ ବଙ୍ଗ ବ୍ୟବସ୍ଥାପକ ସଭାକୁ ପୁନର୍ବାର ନିର୍ବାଚିତ ହୋଇଥିଲେ ।

**ପ୍ଲେଗ ଓ ମହାମାରୀର ପ୍ରତିକାର ବ୍ୟବସ୍ଥା :** ଓଡ଼ିଶାରେ ପ୍ଲେଗ୍ ଓ ମହାମାରୀ ଯେପରି ବ୍ୟାପି ନ ପାରିବ ସେ ଦିଗରେ ପ୍ରତିକାର ବ୍ୟବସ୍ଥା ଅବଲମ୍ବନ କରିବାପାଇଁ ଏକ ସାଧାରଣ ସଭା କଟକରେ କରାଇଥିଲେ । ଏଥିରେ ଏକ ପ୍ରତିକାର କମିଟି ଗଠିତ ହୋଇଥିଲା । ଓଡ଼ିଆ, ବଙ୍ଗାଳୀ, ମୁସଲମାନ, ଖ୍ରୀଷ୍ଟିଆନ୍, ମାରୱାଡ଼ୀ ପ୍ରଭୃତି ସବୁ ସଂପ୍ରଦାୟର ପ୍ରତିନିଧି ଏଥିରେ ସ୍ଥାନ ପାଇଥିଲେ ।

**ଶିଳ୍ପ ଉଦ୍ୟମପାଇଁ ଉଦ୍‌ବୋଧନ (୧୮୯୮) :** ଏହି ବର୍ଷର ଜାନୁଆରୀ ୧ ତାରିଖ ଦିନ କଟକରେ ବିଭିନ୍ନ ଶିଳ୍ପ ଓ ବ୍ୟବସାୟ ସଂସ୍ଥାମାନଙ୍କର ପ୍ରତିନିଧିମାନଙ୍କୁ ଡକାଇ ମଧୁବାବୁ ଏକ ସଭା କରାଇଥିଲେ ଏବଂ ଶିଳ୍ପ ଓ ବାଣିଜ୍ୟର ଅଭ୍ୟୁତ୍‌ଥାନ ସମ୍ବନ୍ଧରେ ଉଦ୍‌ବୋଧନ ଦେଇଥିଲେ । ଦେଶର ବିଭିନ୍ନ ସ୍ଥାନରେ ଶିଳ୍ପ ଓ ବାଣିଜ୍ୟର ବିକାଶ ପ୍ରତି ଲୋକେ ଆଉ ଉଦାସୀନ ରହିବା ଉଚିତ ନୁହେଁ ବୋଲି ସେ କହିଥିଲେ । ନିଜେ ମଧ୍ୟ ସେ ଦିଗରେ ନେତୃତ୍ୱ ନେଇ ଆଦର୍ଶ ପ୍ରଦର୍ଶନ କରିବା ନିମନ୍ତେ କେତୋଟି ଶିଳ୍ପାନୁଷ୍ଠାନ ସ୍ଥାପନ କରିଥିଲେ ।

## ୧୬ । ପ୍ରଥମ ଦେଶମିଶ୍ରଣ

ଓଡ଼ିଆ ଜାତିର ଇତିହାସରେ ଅପ୍ରେଲ ପହିଲଟି ବିଶେଷ ସ୍ମରଣୀୟ ଦିବସ । ଖ୍ରୀ: ୧୫୬୭ ପରେ ଓଡ଼ିଆମାନଙ୍କର ମାତୃଭୂମି ଖଣ୍ଡବିଖଣ୍ଡିତ ହୋଇ ଯାଇଥିବାରୁ ଓଡ଼ିଆ ଓଡ଼ିଆକୁ ଚିହ୍ନି ପାରୁ ନଥିଲେ, ଭାଇ ଭାଇଠାରୁ ଅଲଗା ରହି ସବୁଠାରେ ନିର୍ଯାତନା ସହ୍ୟ କରୁଥିଲେ । ଓଡ଼ିଆଭୂମିର ସାମୂହିକ କଲ୍ୟାଣସାଧନ ସମ୍ଭବ ହୋଇ ପାରୁନଥିଲା ଏବଂ ଓଡ଼ିଆ ଏକ ଜାତି ବୋଲି ପରିଚୟ ଦେବାର ଅବକାଶ ଆଦୌ ମିଳୁ ନ ଥିଲା । ଖ୍ରୀ: ୧୮୦୩ରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କରିବା ପରେ ମଧ୍ୟ ପୂର୍ବର ଅବସ୍ଥା ହିଁ ରହିଥିଲା । ପ୍ରାୟ ୧୩୦ ବର୍ଷକାଳ ଓଡ଼ିଆମାନେ ଇଂରେଜ ରାଜତ୍ୱରେ ବିଭିନ୍ନ ପ୍ରଦେଶରେ ସଂଖ୍ୟାଲଘୁ ଭାଷାଭାଷୀ ସମ୍ପ୍ରଦାୟ ହୋଇ ରହିଥିଲେ ଏବଂ ଓଡ଼ିଆଜାତିତ୍ୱ କ୍ରମଶଃ ଲୋପ ପାଇବାକୁ ବସିଥିଲା । ଖ୍ରୀ: ୧୯୦୩ରେ ଉତ୍କଳ ସମ୍ମିଳନୀର ଜନ୍ମ ପରେ ଓଡ଼ିଆମାନେ ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶର ଦାବୀ ଦୃଢ଼କଣ୍ଠରେ ସମବେତ ଭାବରେ କରି ଆସୁଥିଲେ । ସେହି ଆନ୍ଦୋଳନର ଫଳ ସ୍ୱରୂପ ଖ୍ରୀ: ୧୯୩୬ରେ ଓଡ଼ିଆମାନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଲେ । ପ୍ରଦେଶଟି ବର୍ତ୍ତମାନ ସୁଦ୍ଧା ପୂର୍ଣ୍ଣାଙ୍ଗ ହୋଇନାହିଁ ।

ଦେଶ ମିଶ୍ରଣ ଆନ୍ଦୋଳନ ହିଁ ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନର ପ୍ରଥମ ବଳିଷ୍ଠ ପଦକ୍ଷେପ । ଖ୍ରୀ: ୧୮୦୩ରେ ଉପକୂଳବର୍ତ୍ତୀ ପୁରୀ, କଟକ, ବାଲେଶ୍ୱର ଓ କେତେକ ଗଡ଼ଜାତ ଅଞ୍ଚଳ 'ଓଡ଼ିଶା' ନାମରେ ହିଁ ପରିଚିତ ହେଉଥିଲା । ସମ୍ବଲପୁର ଇଂରେଜ ଅଧିକାରର ପ୍ରାୟ ଶହେ ବର୍ଷ ପରେ ଖ୍ରୀ: ୧୯୦୫ରେ 'ଓଡ଼ିଶା ଡିଭିଜନର' ଅନ୍ତର୍ଭୁକ୍ତ ହେଲା । ଏହା ହିଁ ପ୍ରଥମ ଦେଶମିଶ୍ରଣ କହିବାକୁ ହେବ ।

**ସମ୍ବଲପୁର ଜିଲାରୁ ଓଡ଼ିଆ ଉଠାଇଦେବା ପ୍ରସ୍ତାବର ବିରୋଧ (୧୮୯୭-୧୯୦୩):** ଗତ ଶତାବ୍ଦୀର ଶେଷ ଭାଗରେ ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥିବାବେଳେ ସାର୍ ଜନ୍ ଉଡ୍‌ବର୍ଣ୍ଣ (Sir John Woodburn) ମଧ୍ୟ-ପ୍ରଦେଶର ଚିଫ୍ କମିଶନର ଥିଲେ । ଉଡ୍‌ବର୍ଣ୍ଣ ସାହେବ ଖ୍ରୀ: ୧୮୯୫ରେ ସମ୍ବଲପୁର

ଜିଲ୍ଲାରୁ ଓଡ଼ିଆ ଭାଷା ଉଠାଇଦେଇ ତାହା ସ୍ଥାନରେ ହିନ୍ଦି ଭାଷା ପ୍ରବର୍ତ୍ତନ କରିବା ପାଇଁ ଆଦେଶ ଦେଇଥିଲେ । ଖ୍ରୀ: ୧୮୯୫ରେ ଚିଫ୍ କମିଶନର ସମ୍ବଲପୁର ଜିଲ୍ଲାର କୋର୍ଟ-କଚେରୀରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦିକୁ ସରକାରୀ ଭାଷାରୂପେ ପ୍ରଚଳନ କରିବା ପାଇଁ ମଧ୍ୟ ଏକ ପ୍ରସ୍ତାବ ଲିପିବଦ୍ଧ କରିଥିଲେ । ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାପାଇଁ ସେ ଆଦେଶ ଦେଇଥିଲେ ଯେ ପୋଲିସଙ୍କୁ ହିନ୍ଦି ଶିକ୍ଷା ଦେବାପାଇଁ ହିନ୍ଦି ଶିକ୍ଷକ ନିଯୁକ୍ତ ହେବେ । ଲୋକଙ୍କ ଭିତରେ ହିନ୍ଦି ଶିକ୍ଷାର ପ୍ରଚାର ଉଦ୍ଦେଶ୍ୟରେ ପୁରସ୍କାର ବିତରଣ କରିବା ପାଇଁ ସେ କିଛି ଟଙ୍କାର ବ୍ୟବସ୍ଥା ମଧ୍ୟ କରିଥିଲେ ।

ଏହା ବିରୁଦ୍ଧରେ ସମ୍ବଲପୁର ଓ ଓଡ଼ିଶାରେ ଘୋର ଅସନ୍ତୋଷ ଦେଖାଯାଇଥିଲା । ସରକାରୀ ଆଦେଶର ଅସାରତା ପ୍ରତିପାଦନ କରି ମଧୁସୂଦନ ଦାସ, ବିଲାତର ଭାରତ ସଚିବଙ୍କଠାକୁ ଏକ ପତ୍ର ଲେଖିଥିଲେ । ମଧୁବାବୁ ଜଣାଇଥିଲେ—ବର୍ତ୍ତମାନ ମଧ୍ୟପ୍ରଦେଶର ଶାସନ ଦପ୍ତରରେ ମରହଟ୍ଟା ବ୍ରାହ୍ମଣମାନଙ୍କ ସଂଖ୍ୟା ବହୁତ, ସେମାନେ ହିଁ ସଂଖ୍ୟାଗରିଷ୍ଠ । ପ୍ରତ୍ୟେକ ମରହଟ୍ଟା ବ୍ରାହ୍ମଣ ହିନ୍ଦି ଜାଣନ୍ତି ଓ ଏହା ସେମାନଙ୍କର ପ୍ରାୟ ମାତୃଭାଷା ହୋଇଗଲାଣି । ମଧ୍ୟପ୍ରଦେଶର ସମ୍ବଲପୁର ଜିଲା ଚିଫ୍ କମିଶନରଙ୍କ ଶାସନାଧୀନ । ଏହାର ଅଧିବାସୀ ଓଡ଼ିଆ ଏବଂ ଏମାନେ ଓଡ଼ିଆଭାଷା କହନ୍ତି । ଏହି ଜିଲା ଅନ୍ତର୍ଗତ ଗଡ଼ଜାତର ଅଧିବାସୀମାନଙ୍କର ମାତୃଭାଷା ମଧ୍ୟ ଓଡ଼ିଆ ।

ମଧୁବାବୁ ଏହି ଆବେଦନର ଏକ ନକଲ ବିଲାତ ପାର୍ଲିଆମେଣ୍ଟର ଜଣେ ସଭ୍ୟ ସାର୍ ଚାର୍ଲସ୍ ଡିଲ୍‌କ୍ (Sir Charles Dilke)ଙ୍କ ପାଖକୁ ମଧ୍ୟ ପଠାଇଥିଲେ । ଓଡ଼ିଆଙ୍କ ଦାବୀ ଯଥାର୍ଥ ବୋଲି ହୃଦବୋଧ ହେଲେ ତାଙ୍କ ପ୍ରତିପତ୍ତିକୁ ଏ ବିଷୟରେ ବ୍ୟବହାର କରିବାପାଇଁ ମଧ୍ୟ ମଧୁବାବୁ ତାଙ୍କୁ ନିବେଦନ କରିଥିଲେ । ସେତେବେଳେ ଡିଲ୍‌କ୍ ସାହେବ ବିଲାତରେ ଜଣେ ବିଶିଷ୍ଟ ନେତା ରୂପେ ସମ୍ମାନିତ ହେଉଥିଲେ ।

ଡିଲ୍‌କ୍ ସାହେବ ମଧୁବାବୁଙ୍କୁ ୧୮୯୭ ସେପ୍‌ଟେମ୍ବର ମାସ ୮ ତାରିଖରେ ଏକ ଚିଠି ଲେଖି ଜଣାଇଲେ ଯେ, "ମୁଁ ଓଡ଼ିଆମାନଙ୍କ ପ୍ରତି ପୂର୍ଣ୍ଣ ସହାନୁଭୂତି ପ୍ରକାଶ କରୁଛି । ଲର୍ଡ ଜର୍ଜ ହେମିଲ୍‌ଟନ୍ (Lord George Hamilton)ଙ୍କ ସହିତ ଏ ସମ୍ବନ୍ଧରେ ସୁବିଧା ହେଲାକ୍ଷଣି ଆଲୋଚନା କରିବି ।"

ଏହି ଭାଷା ବିଭ୍ରାଟ ନେଇ ଓଡ଼ିଶାରେ ଚହଳ ପଡ଼ିଯାଇଥିଲା । 'ଭାଷା ବିଭ୍ରାଟ'ର କରାଳ ଚିତ୍ରର ଏକ ପ୍ରତିଛବି 'ଉତ୍କଳ ଦୀପିକା'ରେ ଖ୍ରୀ: ୧୮୯୬ରେ ପ୍ରକାଶିତ ହୋଇଥିଲା ।

"'ସମ୍ବଲପୁର ହିତୈଷୀ'ରୁ ଦୁଃଖର ସହିତ ଅବଗତ ହେଲୁ ଯେ ଗତବର୍ଷ ସମ୍ବଲପୁରର ସରକାରୀ କାର୍ଯ୍ୟାଳୟମାନଙ୍କରୁ ଓଡ଼ିଆଭାଷା ଉଠାଇ ଦେଇ ପ୍ରଧାନ ରାଜକର୍ମଚାରୀମାନେ ନିଶ୍ଚିନ୍ତ ହୋଇ ବସିନାହାନ୍ତି । ଏକ ବର୍ଷ ଗତହେବା ମାତ୍ରକେ ଗତ ଫେବୃଆରୀ ମାସ ୧୫ ତାରିଖରେ ସରକାରୀ ଆଦେଶ ପ୍ରଚାର ହୋଇଅଛି ଯେ ଓଡ଼ିଆ ଭାଷାରେ ଲିଖିତ

ଦସ୍ତାବିଜ୍ ଏଣିକି ରେଜେଷ୍ଟ୍ରି କରାଯିବନାହିଁ । ଏପରି ଆଦେଶର ତୁଳନା ଅଛି କି ? ସହଯୋଗୀ ଯଥାର୍ଥ କହିଅଛନ୍ତି ଯେ, ଓଡ଼ିଆମାନଙ୍କର ଦଲିଲ ଦସ୍ତାବିଜ ସେମାନେ ଜାଣୁଥିବା, ବୁଝୁଥିବା ଭାଷାରେ ଲିଖିତ ନ ହୋଇ ସେମାନଙ୍କର ଅବୋଧ ଭାଷାରେ ହେବା କେମନ୍ତ ଅନିଷ୍ଟକର ତାହା କହିବାକୁ ହେବନାହିଁ । ଆମ୍ଭେମାନେ ପୂର୍ବେ ଏ ସମ୍ବନ୍ଧରେ ଯାହା କହିଅଛୁ ତହିଁରୁ ଅଧିକ କିଛି ବୋଲିବାର ନାହିଁ । ସମ୍ବଲପୁରିଆ ହାକିମଙ୍କ କାଣ୍ଡ ଦେଖି ମନେହେଉଛି, ଯେମନ୍ତ ସେ ଭୂମିଖଣ୍ଡ ନ୍ୟାୟବାନ୍ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ଶାସନର ବହିର୍ଭୂତ । ଧର୍ମ ଓ ଜାତିପରି ମାତୃଭାଷା ପ୍ରତି ପ୍ରତ୍ୟେକ ଲୋକର ପ୍ରଗାଢ଼ ମମତା ଅଛି ଓ ମାତୃଭାଷା ଜାତିର ପ୍ରଧାନ ଅଙ୍ଗ । ଗଭର୍ଣ୍ଣମେଣ୍ଟ ଧର୍ମ ଓ ଜାତିଉପରେ ହସ୍ତକ୍ଷେପ କରିବେ ନାହିଁ, ପୁନଃ ପୁନଃ ଅଭୟ ପ୍ରଦାନକରିବା ପ୍ରତ୍ୟେକେ କେଉଁ ବିଚାରରେ ସମ୍ବଲପୁର ଓଡ଼ିଆଙ୍କର ମାତୃଭାଷାର ଲୋପ ସାଧନ କରିବା ବିଷୟରେ ସେ ପ୍ରଦେଶର ବିକୃତମନା ରାଜକର୍ମଚାରୀମାନଙ୍କର ଅନ୍ୟାୟ ଅବିଚାରର ସହାୟତା କରୁଅଛନ୍ତି ଆମ୍ଭମାନଙ୍କ ବୁଦ୍ଧିର ଅଗୋଚର । ଆଜି ଓଡ଼ିଆ ଭାଷାର ଦସ୍ତାବିଜ ଗୋଟିଏ ଆଦେଶଦ୍ୱାରା ଉଠାଇ ଦିଆଗଲା । କାଲି ସେହି ନ୍ୟାୟରେ ଆଦେଶ ବାହାରିବ ଯେ ଓଡ଼ିଆଭାଷାରେ ଜମିଦାରୀ ଓ ମହାଜନୀ ହିସାବ ଖାତାପତ୍ର ଇତ୍ୟାଦି କେହି ଲେଖି ପାରିବେ ନାହିଁ, ଅଥବା ସେ ସବୁ ପ୍ରମାଣ ସ୍ୱରୂପ ଅଦାଲତ ବା ଅପର ସରକାରୀ କଚେରିରେ ଗ୍ରହଣୀୟ ହେବନାହିଁ ଏବଂ ଆଉ ଏକଦିନ ଏମନ୍ତ ସୁଦ୍ଧା ଆଦେଶ ହେବା ଅସମ୍ଭବ ନୁହେଁ ଯେ କେହି ଓଡ଼ିଆ ଭାଷାରେ ସାକ୍ଷୀ ଦେଇ ପାରିବେ ନାହିଁ । ଜ୍ଞାନାନ୍ଧତାର ସୀମା ଏଥିରୁ ବଳିଯାଇ ପାରେ କି ? ପୃଥିବୀରେ ସର୍ବଶ୍ରେଷ୍ଠ ବିଚକ୍ଷଣ ଏବଂ ଉଦାର ଇଂରେଜୀ ରାଜତ୍ୱରେ ଏହା ଦେଖାଗଲା । ଏ ଦୁଃଖ କାହାକୁ କହିବା ? ସମ୍ବଲପୁରର ଓଡ଼ିଆମାନେ ଯେବେ ନିତାନ୍ତ ବିଶୃଙ୍ଖଳ ହୋଇଅଛନ୍ତି, ତେବେ ସେମାନଙ୍କୁ ବିଚାର ଓ କାର୍ଯ୍ୟାଳୟ ମନାକରିବା ଅପେକ୍ଷା ସେ ରାଜ୍ୟରୁ ବାହାରି ଯିବାପାଇଁ ସ୍ପଷ୍ଟ କହିଦେବା ଭଲ । ଆମ୍ଭେମାନେ ସମ୍ବଲପୁରବାସୀଙ୍କୁ ଏହି ପରାମର୍ଶ ଦେଉଅଛୁ ଯେ ଏହି ଘୋର ଅବିଚାରର ପ୍ରତିକାର ନିମନ୍ତେ ଗଭର୍ଣ୍ଣମେଣ୍ଟରେ ଆବେଦନ କରନ୍ତୁ । ସ୍ଥାନୀୟ ହାକିମଙ୍କ ଜିଦ୍ ଭାଙ୍ଗିବା ବଡ଼ କଠିନ ବ୍ୟାପାର ସନ୍ଦେହ ନୁହେଁ । ତଥାପି ଅବିଚାରର ପ୍ରତିବାଦ ପୁନଃ ପୁନଃ କରିବାରେ ଦୋଷ ନାହିଁ ଏବଂ ପରିଶେଷରେ ଧର୍ମର ଜୟ ଅବଶ୍ୟ ହେବ ।" (ଉତ୍କଳ ଦୀପିକା, ୩ ତାରିଖ, ଅପ୍ରେଲ, ସନ ୧୮୯୭ ମସିହା)

ଓଡ଼ିଆମାନଙ୍କ ହୃଦୟର ବେଦନା ଏହି ପତ୍ରିକାରେ ପ୍ରକାଶିତ କ୍ଷୁଦ୍ର କବିତାଟିରୁ ସ୍ପଷ୍ଟ ହେବ ।

ରାଗ ଭୈରବୀ । ଆଦିତାଳ ।
('ମନାକରୁଥିଲି ରାଧେ' ବୃତ୍ତରେ)

ରହିନା ରହିନା ଆଉ ଅଚଳାରେ ମନ
(ଅଚଳାରେ ଆଉ ମନ ଅଚଳାରେ ମନ)

ଦେଖୁ ଦେଖୁ ମାତୃଭୂଷା ଅଙ୍ଗର ଛେଦନ । (ଘୋଷା)
ସ୍ୱର୍ଗରୁ ବଳି ଜନନୀ ସଂସାରରେ ସୁଖମଣି
ତାର ଦୁରଦଶା ଶୁଣି ସହେ କି ଜୀବନ (ଭାଇ ସହେ କି ଜୀବନ) । ୧ ।
ସମ୍ବଲପୁରୁ ଜନନୀ ହୁଏ ଆଜି ନର୍ବାସିନୀ
କାଲି କି ହେବ ଭବନେ ନକର ଭାବନା ? (କିଛି ନକର ଭାବନା ?) । ୨ ।
ଯାଉ ଏ ଜୀବନ ଧନ ହେଉ ଏକ ପ୍ରାଣ ମନ
ହେଉ ଶରୀର ପତନ ରଖ ଏବେ ପଣ (ସବେଁ ରଖ ଏବେ ପଣ) ! ୩ ।
ଜନନୀ ଚେତନା ହୃଦ କାଟଇ ଜାତକ ନଦ
ଉଠରେ ଉତ୍କଳ ଭାଇ ଘେନ ନବେଦନ (ଭାଇ ସହେ କି ଜୀବନ) । ୪ ।
(ତା ୩ । ୪ । ୧୮୯୭ ଉତ୍କଳ ଦୀପିକା)

ପୁଣି, ଏହି ପ୍ରସଙ୍ଗ ସମ୍ବଲପୁର ଭାଇମାନେ ଚଫ୍ କମିଶନରଙ୍କଠାରେ ୧୯୦୧ରେ ଉତ୍ଥାପନ କରିଥିଲେ । ଚଫ୍ କମିଶନର ସିମଳା ଯାଉଥିବା ସମ୍ବାଦ ମଧୁବାବୁ ଶେଷ ମୁହୂର୍ତ୍ତରେ ଜାଣିପାରିଥିଲେ । କାରଣ ତାଙ୍କଠାକୁ ଯେଉଁ ଚିଠି ଲେଖାଯାଇଥିଲା, ତାହା ଭୁଲକ୍ରମେ ସ୍କୁଲ ଇନ୍‌ସପେକ୍ଟର ମଧୁସୂଦନ ରାଓଙ୍କ ନିକଟକୁ ଚାଲିଯାଇଥିଲା ଏବଂ ରାଓ ସେତେବେଳେ ମଫସଲ ଗସ୍ତରେ ଥିଲେ । ରାଓ ଫେରିବା ପରେ ମଧୁବାବୁ ସେ ଚିଠି ପାଇଲେ ଓ ପ୍ରାୟ ଟ ୬୦.୦୦ ଖର୍ଚ୍ଚ କରି ସିମଳାକୁ ଭାଇସ୍ ରାୟଙ୍କଠାକୁ ଏକ ତାର କରିଥିଲେ । ଏହା ପରେ ପରେ ଆବେଦନଟି ମଧ୍ୟ ପଠାଇଥିଲେ । ଖ୍ରୀ: ୧୯୦୧ ସେପ୍‌ଟେମ୍ବର ୧୨ ତାରିଖରେ ମଧୁବାବୁଙ୍କ ପାଖକୁ ଭାଇସ୍‌ରାୟଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଯେଉଁ ଚିଠି ଦେଇଥିଲେ, ସେଥିରେ ଲେଖାଥିଲା, "ଆପଣଙ୍କ ଚିଠି ଓ ଆବେଦନ ଭାଇସ୍‌ରାୟଙ୍କୁ ଦେଖାଇଥିଲି । ତା' ସହିତ ଆପଣଙ୍କ ଟେଲିଗ୍ରାମ୍‌ଗୁଡ଼ିକ ମଧ୍ୟ ଦେଖାଇଥିଲି । ମିଷ୍ଟର୍ ଫ୍ରେଜର୍‌ଙ୍କ ରିପୋର୍ଟ ଭାରତ ସରକାରଙ୍କ ହସ୍ତଗତ ହେବାପରେ ମହାମାନ୍ୟ ଭାଇସ୍‌ରାୟ ଏହି ବିଷୟରେ ବିବେଚନା କରିବେ । ଲର୍ଡ କର୍ଜନଙ୍କ ପ୍ରାଇଭେଟ ସେକ୍ରେଟାରୀ ସାର୍ ଉଆଲ୍‌ଟେର ଲରେନ୍ସ ମଧୁସୂଦନଙ୍କ ପାଖକୁ ଏକ ଚିଠି ଲେଖି ସେଥିରେ ଜଣାଇଥିଲେ, "ଓଡ଼ିଶା ଓ ଓଡ଼ିଆମାନଙ୍କ ସମ୍ବନ୍ଧରେ ଆପଣଙ୍କର ସ୍ୱଦେଶପ୍ରେମ ପୂର୍ଣ୍ଣ ଆଶା ସହିତ ମୁଁ ସମ୍ପୂର୍ଣ୍ଣ ସହାନୁଭୂତି ପ୍ରକାଶ କରୁଛି । ଏହା ମଧ୍ୟ କହିପାରେ ଯେ, ଆପଣଙ୍କ ଭଳି ଜଣେ ସୁଯୋଗ୍ୟ ଓ ସଂସ୍କୃତିସମ୍ପନ୍ନ ନେତା ପାଇଥିବାରୁ ଓଡ଼ିଆମାନଙ୍କୁ ମୁଁ ଅଭିନନ୍ଦନ ଜଣାଉଛି ।"

ଖ୍ରୀ: ୧୯୦୧ରେ ଚଫ୍ କମିଶନର ସରକାରଙ୍କୁ ବିରକ୍ତ ହୋଇ ଲେଖିଲେ ଯେ, ମଧ୍ୟପ୍ରଦେଶର ଜିଲ୍ଲା ଜିଲ୍ଲା ଭିତରେ ଥିବା ଭାଷାଗତ ଓ ଜାତିଗତ ଭେଦଭାବ ଯୋଗୁ ସେଠାରେ ଶାସନକାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିବା ସମ୍ଭବପର ହେଉନାହିଁ । ଏହି

କାରଣରୁ ସେ ସମ୍ବଲପୁର ଦାୟିତ୍ୱରୁ ମୁକ୍ତ ହେବାକୁ ଚାହାନ୍ତି; କିନ୍ତୁ ସରକାର ଚିଫ୍ କମିଶନରଙ୍କ ଇଚ୍ଛାକୁ ପୂରଣ କରି ନଥିଲେ ।

ସମ୍ବଲପୁରରେ ଓଡ଼ିଆଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନପାଇଁ ସରକାର ଯେଉଁ ଆଦେଶ ଦେଇଥିଲେ ତାହା କାର୍ଯ୍ୟକାରୀ ହେବାରେ ଅସୁବିଧା ହେବାରୁ ସେ ଆଦେଶକୁ ରଦ୍ଦ କରି ଓଡ଼ିଆଭାଷାକୁ ପୁନର୍ବାର ସମ୍ବଲପୁରର କୋର୍ଟ କଚେରିମାନଙ୍କରେ ବ୍ୟବହୃତ ହେବାପାଇଁ ଆଦେଶ ଦେଲେ ।

ସମ୍ବଲପୁରବାସୀ ଓ ଓଡ଼ିଶାବାସୀ ବରାବର ଦାବୀ କରି ଆସୁଥିଲେ ଯେ ସମ୍ବଲପୁରକୁ ଓଡ଼ିଶା ଡିଭିଜନ ସହିତ ମିଶାଇ ଦିଆଯାଉ । ଖ୍ରୀ: ୧୯୦୪ରେ ବଙ୍ଗର ଲେଫ୍‌ଟେଲାଣ୍ଟ ସାର୍ ଏଣ୍ଡ୍ରୁ ଫ୍ରେଜର୍ ସମ୍ବଲପୁରବାସୀଙ୍କ ଦାବୀକୁ ଗ୍ରହଣ କରିବାପାଇଁ ଭାରତ ସରକାରଙ୍କୁ ଅନୁରୋଧ କରିଥିଲେ । ସେ ଜଣାଇଥିଲେ ଯେ "ମଧ୍ୟପ୍ରଦେଶର କୌଣସିଠାରେ ଓଡ଼ିଆ କଥିତ ଭାଷା ନଥିବାରୁ ଶାସନକାର୍ଯ୍ୟରେ ଘୋର ଅସୁବିଧା ଭୋଗ କରିବାକୁ ପଡ଼ୁଛି । ଯେଉଁ ଅଫିସରମାନେ ସମ୍ବଲପୁରର ଶାସନପାଇଁ ଆସୁଛନ୍ତି, ସେମାନେ ଓଡ଼ିଆ ଭାଷା ଜାଣିଥିବା ଆବଶ୍ୟକ । କେବଳ ଏହି ଗୋଟିଏ ଜିଲ୍ଲାପାଇଁ ଅଫିସରମାନେ ସମସ୍ତେ ଏହି ଓଡ଼ିଆଭାଷା ଶିକ୍ଷା କରିବାପାଇଁ ବାଧ୍ୟ ହେଉଛନ୍ତି । ଏହି ଏକମାତ୍ର ଜିଲ୍ଲାରେ ଓଡ଼ିଆଭାଷା ପ୍ରଚଳିତ ଥିବାରୁ ଅଳ୍ପ ସମୟ ପାଇଁ ସେମାନେ ଏ ଜିଲ୍ଲାକୁ ଆସିବାକୁ ରାଜି ହେଉ ନାହାନ୍ତି । କାରଣ ସେମାନଙ୍କର ଅବସ୍ଥିତି ଅଳ୍ପ ସମୟ ହେଲେ ମଧ୍ୟ ସେମାନଙ୍କୁ ଏହି ନୂତନ ଭାଷା ଶିକ୍ଷା କରିବାକୁ ପଡ଼ୁଛି । ସମଗ୍ର ମଧ୍ୟପ୍ରଦେଶର ସମ୍ବଲପୁର ଜିଲ୍ଲା ଅପରାଧୀ ଅଫିସରମାନଙ୍କ ପାଇଁ ଏକ ନିର୍ବାସନ ଜିଲ୍ଲାରୂପେ ବିବେଚିତ ହେଉଛି । ପୁଣି ଅଧସ୍ତନ କର୍ମଚାରୀମାନେ ମଧ୍ୟ ଓଡ଼ିଆ ଭାଷାଭାଷୀ ହେବା ଆବଶ୍ୟକ ହେଉଛି । ଏହାର ଅର୍ଥ ହେଉଛି ଯେ ସମ୍ବଲପୁରର କୌଣସି ଅଫିସରଙ୍କୁ ସ୍ୱେଚ୍ଛାରେ ପ୍ରଦେଶର ଅନ୍ୟ କୌଣସି ଜିଲ୍ଲାକୁ କିମ୍ବା ଅନ୍ୟ କୌଣସି ଜିଲ୍ଲାରୁ ସମ୍ବଲପୁରକୁ ବଦଳି କରାଯାଇ ପାରୁନାହିଁ ।

ଏହାର ଫଳ ହେଉଛି, ସମ୍ବଲପୁର ଜିଲ୍ଲାର ଶାସନରେ, ବିଶେଷତଃ ଅଧସ୍ତନ କର୍ମଚାରୀଙ୍କ ମଧ୍ୟରେ, ବିଶେଷ ଭାବରେ ଦକ୍ଷତାର ଅଭାବ ଦେଖାଯାଉଛି ଏବଂ ପ୍ରଦେଶର ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଅପେକ୍ଷା ଏଠାରେ ବେଶି ଦୁର୍ନୀତି ପ୍ରଚଳିତ ଅଛି । ଏହି ମହାନ୍ ଶାସନଗତ ଅସୁବିଧାକୁ ଦୂରକରିବାପାଇଁ ପୂର୍ବେ ଓଡ଼ିଆଭାଷାକୁ ସମ୍ବଲପୁରର କୋର୍ଟଭାଷା ନ କରି ହିନ୍ଦୀଭାଷା ପ୍ରଚଳନ କରିବା ଆଦେଶ ଜଣେ ଚିଫ୍ କମିଶନର୍ କରିଥିଲେ । ଏହାର ଅବ୍ୟବହିତ ପରେ ଅଭିଜ୍ଞତାରୁ ଜଣାପଡ଼ିଲା ଯେ ଏପରି ବ୍ୟବସ୍ଥା ସମର୍ଥନୀୟ ନୁହେଁ । ଗ୍ରାମାଞ୍ଚଳର ଲୋକେ ହିନ୍ଦୀ ଜାଣନ୍ତି ନାହିଁ । ସେମାନେ ନିଜର ମାତୃଭାଷା ଛଡ଼ା ଅନ୍ୟ ଭାଷା ଶିକ୍ଷା କରିବାପାଇଁ ପ୍ରସ୍ତୁତ ନୁହନ୍ତି । ହିନ୍ଦୀ ଭାଷାକୁ ଗ୍ରହଣ କରିବାପାଇଁ ସେମାନଙ୍କ ଉପରେ ଯେଉଁ ପ୍ରଭାବ ପକାଯାଉଛି, ତାହାକୁ ସେମାନେ ବିରାଟ ଦୁଃଖ ଓ ଅତ୍ୟାଚାର ରୂପେ ଭାବୁଛନ୍ତି । ଲୋକେ ହିନ୍ଦୀଭାଷା ବୁଝି ନଥିବାରୁ କୋର୍ଟ କଚେରିରେ ହିନ୍ଦୀଭାଷା ମାଧ୍ୟମରେ

କରାଯାଉଥିବା କାର୍ଯ୍ୟାବଳୀ ସେମାନେ ବୁଝିପାରୁ ନାହାନ୍ତି । ରାଜସ୍ୱ, ପୋଲିସ ଓ ଦେବାନୀ ଶାସନକ୍ଷେତ୍ରରେ ବିଶେଷ ଅସୁବିଧା ସୃଷ୍ଟି ହୋଇ କ୍ଷତି ହୋଇଛି ।

ଶାସନର ସବୁ କ୍ଷେତ୍ରରେ ଅସୁବିଧାହେତୁ ଅବନତି ଦେଖାଦେଉଥିବାରୁ ଫ୍ରେଜର୍ ସାହେବ ଚିଫ୍ କମିଶନର୍ ଥିବାବେଳେ ତାଙ୍କ ପରାମର୍ଶକୁ ଗ୍ରହଣକରି ଭାରତ ସରକାର ହିନ୍ଦୀ ପ୍ରଚଳନ ଆଦେଶକୁ ରଦ୍ଦ କରିଦେଇଥିଲେ । ଏହି କାରଣରୁ ମଧ୍ୟ ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ କରି ଓଡ଼ିଶା ବିଭାଗ ସହିତ ଖ୍ରୀ: ୧୯୦୫ରେ ମିଶାଇ ଦେଇଥିଲେ ।" (ସମ୍ବଲପୁର ଜିଲ୍ଲା ଗେଜେଟିଅର-ପୃ: ୪୨-୪୩)

## ୧୩ । ମଧୁବାବୁଙ୍କ ବିରୁଦ୍ଧରେ ପୋଲିସ (୧୯୦୨-୧୯୦୪)

**ମାନସିଂହପାଟଣା ଅଳଙ୍କାର ଡକାଏତି ମକଦ୍ଦମା --୧୯୦୨ :** ମଧୁବାବୁ ସ୍ୱାଧୀନଚେତା ଥିଲେ ଏବଂ ସରକାରୀ ହାକିମହୁକୁମାଙ୍କ ଭ୍ରୂକୁଟି କୁଞ୍ଚନକୁ ଆଦୌ ଭୟ କରୁନଥିଲେ । ସେତେବେଳେ କଲିକତାରେ ରାଜଧାନୀ ଥିବାରୁ ଓଡ଼ିଶା ଅଞ୍ଚଳର ହାଲଚାଲ ସରକାରୀ ଉଚ୍ଚ କର୍ମକର୍ତ୍ତାମାନଙ୍କର ଦୃଷ୍ଟିକୁ ପୂର୍ଣ୍ଣଭାବରେ ଯାଉନଥିଲା । ଓଡ଼ିଶାରେ ଅବସ୍ଥାପିତ ହାକିମମାନେ ହିଁ ସର୍ବେସର୍ବା ଥିଲେ କହିଲେ ଚଳେ । ସେମାନଙ୍କ ଭିତରେ ଦୋଷଦୁର୍ବଳତା ଦେଖାଦେଲେ ମଧୁବାବୁ ନିର୍ଭୀକ ଭାବରେ ସମାଲୋଚନା କରୁଥିଲେ ଏବଂ କଲିକତାରୁ ଘନ ଘନ ଯିବାର ସୁବିଧା ତାଙ୍କର ଥିବାରୁ ସେ ଉଚ୍ଚ ରାଜକର୍ମଚାରୀମାନଙ୍କ ଦୃଷ୍ଟିକୁ ତଳିଆ କର୍ମଚାରୀଙ୍କ ଦୋଷଦୁର୍ବଳତା, ଦୁର୍ବ୍ୟବହାର ପ୍ରଭୃତି ଆଣୁଥିଲେ । ଏହି କାରଣରୁ ସ୍ଥାନୀୟ କେହି କେହି ଉଚ୍ଚ ହାକିମ ମଧୁବାବୁଙ୍କ ପ୍ରତି ସନ୍ତୁଷ୍ଟ ନ ଥିଲେ । ସମସ୍ତ ସୁଯୋଗ ପାଇଲେ ତାଙ୍କର ପ୍ରଭାବକୁ ହ୍ରାସ କରିଦେବାପାଇଁ ଉଦ୍ୟମ କରୁଥିଲେ । ଥରେ ଏପରି ଏକ ଉଦ୍ୟମ କେତେଜଣ ଉଚ୍ଚ ହାକିମ କରି ମଧୁବାବୁଙ୍କୁ ଅଳଙ୍କାର ଡକାଏତି ଅଭିଯୋଗରେ ଲିପ୍ତ କରିଦେଇଥିଲେ ।

କଟକ ସହରସ୍ଥ ମାନସିଂହପାଟଣାରେ ବହୁ ବଣିଆଙ୍କ ଘରଥିଲା—ଏବେ ମଧ୍ୟ ଅଛି । ସେମାନେ ପ୍ରାଚୀନ କାଳରୁ ସୂକ୍ଷ୍ମ ତାରକସି କାମ ଓ ସୁନାରୁପା ଅଳଙ୍କାର ତିଆରି କରୁଥିଲେ । ଏମାନଙ୍କ ବ୍ୟବସାୟ ମଧ୍ୟ ଖ୍ୟାତି ଲାଭ କରିଥିଲା । ମାନସିଂହପାଟଣାରେ ୧୯୦୨ ଫେବୃଆରୀ ମାସ ୬ ତାରିଖ ଗୁରୁବାର ରାତି ତିନି ପହର ସମୟରେ ଏକ ଭୀଷଣ ଡକାଏତି ହୋଇଯାଇଥିଲା । ଏହି ପଡ଼ାନିବାସୀ ପ୍ରସିଦ୍ଧ ଅଳଙ୍କାର ବ୍ୟବସାୟୀ ଓ ମହାଜନ ଶ୍ରୀ କାଶୀ ଜେଠୀଙ୍କ ଘରେ ଦଶ ଜଣ ଡକାଏତି ବନ୍ଧୁକ ଓ ପିସ୍ତଲ ଧରି ଛଟାକାନ୍ଥ ଡେଇଁ ପଶିଗଲେ । ଜେଠୀଙ୍କୁ, ତାଙ୍କ ଘରର ସ୍ତ୍ରୀ ବ୍ୟକ୍ତିମାନଙ୍କୁ ଓ ପିଲାମାନଙ୍କୁ ଡକାଏତମାନେ ମାଡ଼ଧର କରିବାରୁ ସେମାନେ କାନ୍ଦିଲେ । କାନ୍ଦ ଓ କୋଲାହଳ ଶୁଣି ପଡ଼ୋଶୀ ଲୋକେ

ଦୌଡ଼ିଆସିଲେ । ଦୁଇଜଣ ଚୌକିଦାର ମଧ୍ୟ ପହଞ୍ଚିଗଲେ । ଏମାନଙ୍କୁ ଦେଖି ଡକାଏତମାନେ ପିସ୍ତଲ ଦାଗିଲେ । ଏଥିରେ ଦୁଇଜଣ ଯାକ ଚୌକିଦାର ଓ ପଡ଼ୋଶୀ ଦୁଇଜଣ ବିଶେଷଭାବରେ ଆଘାତ ପାଇବାରୁ ଅନ୍ୟାନ୍ୟ ଲୋକେ ଭୟରେ କିଏ କୁଆଡ଼େ ପଳାଇଲେ । ଆଉ କେହି ସେଠାକୁ ଯିବାକୁ ସାହାସ କଲେନାହିଁ । ଏହି ଅବସରରେ ଚୋରମାନେ ପ୍ରାୟ ଦୁଇହଜାର ଟଙ୍କାର ଗହଣା ଓ ଅନ୍ୟାନ୍ୟ ଦ୍ରବ୍ୟ ଧରି ପଳାଇଲେ । ଡକାଏତମାନେ ତରବରରେ ପଳାଇଗଲାବେଳେ ଗୋଟିଏ ୬ ଗୋଳିର ପିସ୍ତଲ ଓ ୨ଟା ସିନ୍ଧିକାଠି ଛାଡ଼ିଯାଇଥିଲେ । ଆହତ ହୋଇଥିବା ବ୍ୟକ୍ତିମାନଙ୍କୁ ଡାକ୍ତରଖାନାକୁ ଚିକିତ୍ସା ନିମନ୍ତେ ନିଆଯାଇଥିଲା । ପୋଲିସ୍ ଖବର ପାଇ ତଦନ୍ତ କରିଥିଲେ । ଡକାୟତମାନେ ଛାଡ଼ି ଯାଇଥିବା ପିସ୍ତଲଟି ପୋଲିସ୍ ଜବତ କରିଥିବା ପୋଲିସ୍ ରିପୋର୍ଟରେ ଥିଲା ।

ପୁଲିସ୍ ଅନୁସନ୍ଧାନ କରି କେତେ ଜଣ ଓଡ଼ିଆଙ୍କୁ ଗିରଫ କଲେ । ସେସନ୍‌ସ ଜଜ୍ ଏହି ମକଦ୍ଦମା ବିଚାର କରିଥିଲେ । ଏହି ମକଦ୍ଦମା ସହରରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ପୋଲିସ୍ ତରଫରୁ ବଳ ପ୍ରୟୋଗ କରାଯାଇ କୁଆଡ଼େ ସାକ୍ଷ୍ୟ ଓ ସ୍ୱୀକାରୋକ୍ତି ସଂଗ୍ରହ କରାଯାଇଥିଲା । ଯେଉଁ ପିସ୍ତଲଟି ପୋଲିସ ଜବତ କରିଥିଲେ, କଟକର ଦର୍ପଣୀ ଜମିଦାର ସ୍ୱର୍ଗୀୟ ରାଜାବାହାଦୂର ବୈଦ୍ୟନାଥ ପଣ୍ଡିତଙ୍କର । ରାଜାଙ୍କ ଜଣେ ଚାକର ଏହି ଡକାଏତିରେ ସମ୍ପୃକ୍ତ ଥିବା ଅଭିଯୋଗ ପୋଲିସ କରିଥିଲେ । ଖ୍ରୀ: ୧୯୦୬ର ପ୍ରଥମାର୍ଦ୍ଧରେ ଏହି ମକଦ୍ଦମାର ବିଚାର ହୋଇଥିଲା । କେତେଜଣଙ୍କୁ ସଶ୍ରମ କାରାବାସ ଓ କେତେଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ହୋଇଥିଲା । ଦଣ୍ଡିତ ଆସାମୀମାନେ ଦଣ୍ଡଭୋଗ କଲେ, କେତେଜଣ ଜେଲ୍‌ରେ ରହିଲେ, କେତେଜଣ ଆଜୀବନ କାରାଦଣ୍ଡ ପାଇଲେ । ଦ୍ୱୀପାନ୍ତର ଦଣ୍ଡ ପାଇଥିବା ବ୍ୟକ୍ତିମାନଙ୍କୁ ଆଣ୍ଡାମାନ ଦ୍ୱୀପକୁ ପଠାଇ ଦିଆଗଲା ।

ଏହି ଡକାଏତିର ସୁବିଧା ନେଇ ମଧୁବାବୁଙ୍କ ଉପରେ ଅସନ୍ତୁଷ୍ଟ ଥିବା ପୋଲିସ୍ ହାକିମମାନେ ତାଙ୍କୁ ଏଥିରେ ଜଡ଼ିତ କରି ତାଙ୍କର ଦୁର୍ନାମ କରିବାପାଇଁ ଏକ ଚକ୍ରାନ୍ତ କଲେ । ଜିଲ୍ଲା ପୋଲିସ ସାହେବ ଓ ଜିଲ୍ଲା କଲେକ୍ଟର ଉଭୟେ ୟୁରୋପୀୟ ଓ ବନ୍ଧୁତାସୂତ୍ରରେ ଆବଦ୍ଧ ଥିଲେ । ଇନ୍‌ସପେକ୍ଟର ସାହେବଙ୍କ ସହିତ ପୂର୍ବରୁ ମଧୁବାବୁଙ୍କର ମନୋମାଳିନ୍ୟ ଥିଲା । ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟ କୁଆଡ଼େ ଇନ୍‌ସପେକ୍ଟର ଉପରେ ବିଶେଷ ନିର୍ଭର କରୁଥିଲେ ଏବଂ ବହୁ ଦାୟିତ୍ୱ ତାଙ୍କ ଉପରେ ଦେଇଥିଲେ । ପୋଲିସ ସାହେବ (ସୁପରିଣ୍ଟେଣ୍ଡେଣ୍ଟ)ଙ୍କ ସହିତ ଜିଲ୍ଲା ହାକିମ (ଜିଲ୍ଲା ମାଜିଷ୍ଟ୍ରେଟ)ଙ୍କର ପ୍ରଗାଢ଼ ବନ୍ଧୁତା ଥିବାରୁ ଜିଲ୍ଲା ହାକିମ ପୋଲିସ୍ ହାକିମଙ୍କର ପ୍ରାୟ ସବୁ କଥାରେ ସମ୍ମତ ହେଉଥିଲେ । ଫଳରେ କଟକରେ ପୋଲିସ୍ ଇନ୍‌ସପେକ୍ଟରହିଁ ସର୍ବେସର୍ବା ଥିଲେ କହିଲେ ଚଳେ । ଏହି ପରିସ୍ଥିତିର ସୁବିଧା ନେଇ ଇନ୍‌ସପେକ୍ଟର ଗୁପ୍ତରେ ରିପୋର୍ଟ କଲେ ଯେ ମାନସିଂହପାଟଣା ଅଳଙ୍କାର ଡକାଏତିରେ ମଧୁବାବୁଙ୍କ ହାତ ଅଛି ଏବଂ ଚୋରିଯାଇଥିବା ସୁନା ରୁପା ଅଳଙ୍କାର ସବୁ ମଧୁବାବୁଙ୍କର ଅଳଙ୍କାର କାରଖାନାରେ ଆଉଟା ହୋଇ ନୂଆ

ଅଳଙ୍କାର ଚୋରି ହୋଇଥିବାରୁ ଗ୍ରେଫ୍ତାରର ପନ୍ଥା ମିଳୁନାହିଁ । ଇନ୍‌ସପେକ୍ଟରଙ୍କ ରିପୋର୍ଟ ସରକାରଙ୍କଠାରେ ପହଞ୍ଚିବା ସହିତ ଧ୍ୱଂସ ହୋଇଯାଇଥିଲା । ଏହା ଚକ୍ରାନ୍ତର ଫଳ ବୋଲି ସମସ୍ତେ ଅନୁମାନ କରିଥିଲେ ।

ଏହାର କେତେ ଦିନ ପରେ ଉତ୍ତର ଭାରତର ଅନ୍ୟ ଏକ ଡକାଏତିରେ କଟକରେ ଡକାଏତି କରିଥିବା ଦଳ ଧରାହୋଇଥିଲେ । ସେମାନେ କଟକରେ ମଧ୍ୟ ଡକାଏତି କରିଥିବା ସେହି ମକଦ୍ଦମାରେ ଜଣାପଡ଼ିଲା । କଟକ ଡକାଏତି ମକଦ୍ଦମାରେ ବିନା କାରଣରେ କେତେଜଣ ନିରୀହ ଓଡ଼ିଆଙ୍କୁ ଦଣ୍ଡ ଭୋଗ କରିବାକୁ ପଡ଼ିଥିବାରୁ ମଧୁବାବୁ ସେମାନଙ୍କୁ ଖଲାସ କରିବାପାଇଁ ସରକାରଙ୍କଠାରେ ଦାବୀ କରିଥିଲେ । ସେଥିପାଇଁ ତାଙ୍କୁ କଲିକତା ଯିବାକୁ ପଡ଼ିଥିଲା । ସେ ଏହି ସମ୍ପର୍କରେ ପୋଲିସର ଅପାରଗତା ଓ ପ୍ରତିଶୋଧମୂଳକ ଗର୍ହିତ କାର୍ଯ୍ୟକଳାପ ଲାଟ ଓ ଉଚ୍ଚ ସରକାରୀ ହାକିମଙ୍କ ଦୃଷ୍ଟିକୁ ଆଣିଥିଲେ । ଲାଟଙ୍କ ଆଦେଶକ୍ରମେ ଜଣେ ଉଚ୍ଚ ପୋଲିସ୍ ଅଫିସର କଟକ ଆସି ତଦନ୍ତ କରି ମଧୁବାବୁ ନିର୍ଦ୍ଦୋଷ ଥିବା ରିପୋର୍ଟ ଦେଇଥିଲେ । ଫଳରେ ଦଣ୍ଡଭୋଗ କରୁଥିବା ଓଡ଼ିଆ ବନ୍ଦୀମାନେ ଖଲାସ ପାଇଲେ ଏବଂ ସମ୍ପୃକ୍ତ ପୋଲିସ ଅଫିସରଙ୍କୁ କାର୍ଯ୍ୟରୁ ସସ୍‌ପେଣ୍ଡ କରାଗଲା । ମଧୁବାବୁଙ୍କୁ ବିନା କାରଣରେ ଈର୍ଷ୍ୟାବଶତଃ ପୋଲିସ୍ ଡକାଏତି ସମ୍ପର୍କରେ ଲିପ୍ତ କରିଦେଇଥିବାରୁ ଓଡ଼ିଶା ଦେଶବାସୀ ସରକାର ଉପରେ ବିରକ୍ତି ପ୍ରକାଶ କରିଥିଲେହେଁ ମଧୁବାବୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହେବାରୁ ଓଡ଼ିଶା ଓ ଓଡ଼ିଶା ବାହାରେ ତାଙ୍କର ସମ୍ମାନ ବୃଦ୍ଧି ପାଇଥିଲା । ସରକାରଙ୍କ ତରଫରୁ ମଧୁବାବୁଙ୍କୁ କ୍ଷମାପ୍ରାର୍ଥନା କରାଯାଇଥିଲା ଏବଂ ତାଙ୍କଠାରେ ସରକାରଙ୍କର ପୂର୍ଣ୍ଣ ଆସ୍ଥା ଥିବା ପ୍ରତିଶ୍ରୁତି ଦିଆଯାଇଥିଲା ।

ଏ ବିଷୟଟି ଭାରତରେ ବିଭିନ୍ନ ପ୍ରଦେଶର ପତ୍ରପତ୍ରିକାରେ ମଧ୍ୟ ଆଲୋଚିତ ହୋଇଥିଲା ଏବଂ ସରକାରୀ ପୋଲିସ ଇନ୍‌ସପେକ୍ଟରଙ୍କ କାର୍ଯ୍ୟକୁ ନିନ୍ଦା କରାଯାଇଥିଲା । ଏହାର ଅଳ୍ପ କିଛି ଦିନ ପରେ ସରକାର ମଧୁବାବୁଙ୍କୁ ସମ୍ମାନସୂଚକ ସି. ଆଇ. ଇ.—କମ୍ପାନିୟନ୍ ଅଫ୍ ଦି ଅର୍ଡ଼ର୍ ଅଫ୍ ଦି ଇଣ୍ଡିଆନ ଏମ୍ପାୟାର୍—C. I E (Companion of the Order of the Indian Empire) ପଦବୀ ପ୍ରଦାନ କରିଥିଲେ ।

ଏହି ଘଟନା ସେତେବେଳେ ଓଡ଼ିଶା ଓ ଓଡ଼ିଶା ବାହାରେ ଚହଲ ପକାଇଦେଇଥିଲା । ବିନା କାରଣରେ କେତେଜଣ ନିରୀହ ଲୋକ ଦଣ୍ଡ ଓ ଅପମାନ ଭୋଗ କରିଥିବାରୁ ସରକାରଙ୍କ ପୋଲିସ୍ ବିଭାଗକୁ ସର୍ବସାଧାରଣ ତୀବ୍ର ନିନ୍ଦା କରିଥିଲେ । ଭାରତର ବିଭିନ୍ନ ଅଞ୍ଚଳର ବହୁ ବିଶିଷ୍ଟ ବ୍ୟକ୍ତି ମଧ୍ୟ ଏହାର ତୀବ୍ର ସମାଲୋଚନା କରି ସରକାରଙ୍କ ଅପାରଗତା ଓ 'ଚକ୍ରାନ୍ତ ପ୍ରବୃତ୍ତି'ର ନିନ୍ଦା କରିଥିଲେ ।

ଏହି ଘଟଣାର ପ୍ରତିବାଦ ଓଡ଼ିଶାରେ ଏକ ଆନ୍ଦୋଳନର ଆକାର ଧାରଣ କରିଥିଲା । 'ଉତ୍କଳ ଦୀପିକା' ଲେଖିଥିଲେ—"ବାବୁ ମଧୁସୂଦନ ଦାସଙ୍କ ପରି ଖ୍ୟାତିବନ୍ତ

ଭଦ୍ରଲୋକଙ୍କ ନାମରେ ଯେବେ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଗୋପନରେ ଏତେ ବଡ଼ ଅଭିଯୋଗ ଲେଖି ପଠାଇଲେ ଏବଂ ଜିଲ୍ଲା ମାଜିଷ୍ଟ୍ରେଟ ତାହା ଅନାୟାସରେ ସମର୍ଥନ କଲେ, ତେବେ ଭଦ୍ରଲୋକର ରକ୍ଷା କେଉଁଠାରେ ? ଏଠା ପୁଲିସ୍ ଓ ଜିଲ୍ଲାର କର୍ତ୍ତାମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ଘଟିବାର ଆମ୍ଭେମାନେ ଗତ ସପ୍ତାହରେ ଜଣାଇଅଛୁ । ଉଦ୍ଦେଶ୍ୟରେ ସେମାନଙ୍କୁ ଏକ ଜିଲ୍ଲାରେ ରଖିବା ଉଚିତ ନୁହେଁ । ଆଶା କରୁଁ ଶ୍ରୀଯୁକ୍ତ ଗୁପ୍ତ (କେ. ଜି ଗୁପ୍ତ) ସାହେବ କମିଶନର୍ ଛୁଟିରୁ ଫେରିଆସି ଏଥିର ପ୍ରତିକାର କରିବେ । × × ”

କେ. ଜି. ଗୁପ୍ତ ସାହେବଙ୍କୁ ମଧୁବାବୁଙ୍କ ଗୁହାରି ଅନୁସନ୍ଧାନ କରିବା ନିମନ୍ତେ ସରକାର ଆଦେଶ ଦେଇଥିଲେ । ମାତ୍ର ସେ ଆଦେଶ ପାଇବା ବେଳକୁ ସେ ପୂର୍ବରୁ କରିଥିବା ଛୁଟି ଦରଖାସ୍ତ ସରକାର ମଞ୍ଜୁର କରିସାରିଥିଲେ । ଏହି କାରଣରୁ ଗୁପ୍ତ ସାହେବ ସେତେବେଳେ ଆଉ ଅନୁସନ୍ଧାନ କଲେ ନାହିଁ ଓ ଛୁଟିରୁ ଫେରିଆସିଲେ ଅନୁସନ୍ଧାନ କରିବେ ବୋଲି ସରକାରଙ୍କୁ ଜଣାଇଥିଲେ; କିନ୍ତୁ କେତେକ ଲୋକ ଭାବିଥିଲେ ଯେ ଦୁଇଜଣ ୟୁରୋପୀୟ ଜିଲ୍ଲାରେ ଉଚ୍ଚ ହାକିମ ହୋଇଥିବାରୁ ମକଦ୍ଦମା ସମ୍ପର୍କୀୟ ସେମାନଙ୍କର କାର୍ଯ୍ୟକଳାପର ଅନୁସନ୍ଧାନ କରି ସେମାନଙ୍କୁ ଅସନ୍ତୁଷ୍ଟ କରିବା ଗୁପ୍ତ ସାହେବଙ୍କର ଇଚ୍ଛା ନଥିଲା । ଗୁପ୍ତ ସାହେବ ଛୁଟିରେ ଯିବା ଅଳ୍ପଦିନ ପୂର୍ବରୁ ଭଦ୍ରକଠାରେ ମଧୁବାବୁଙ୍କୁ ଦେଖା କରିଥିଲେ ଏବଂ ଛୁଟିର ବନ୍ଦୋବସ୍ତ ପୂର୍ବରୁ ହୋଇସାରିଥିବା ଦୃଷ୍ଟିରୁ ଅନୁସନ୍ଧାନ କରିପାରୁ ନ ଥିବା କଥା ବ୍ୟକ୍ତ କରିଥିଲେ । ଏହା ପରେ ସରକାର କଲିକତାରୁ ପୋଲିସ୍ ବିଭାଗର ସର୍ବୋଚ୍ଚ କର୍ତ୍ତା 'କାରଲ୍‌ଇଲ୍ ସାହେବ'ଙ୍କ ଅନୁସନ୍ଧାନ କରିବା ସକାଶେ ଆଦେଶ ଦେଲେ । ସେତେବେଳକୁ କଟକକୁ ନୂତନ କଲେକ୍ଟର ମଧ୍ୟ ଆସି ଯାଇଥିଲେ । ପୋଲିସ୍ ଇନ୍‌ସପେକ୍ଟର ଜେନେରାଲ୍ କାରଲ୍‌ଇଲ୍ ସାହେବ କଟକରେ ଦୁଇ ଘଣ୍ଟା ମଧ୍ୟରେ ଅନୁସନ୍ଧାନ ଶେଷ କରିଥିବା ଜଣାଯାଏ ।

ସେତେବେଳକୁ ନୂତନ ହୋଇ ସାର୍ ଆଣ୍ଡ୍ରୁ ଫ୍ରେଜର୍ ବଙ୍ଗର ଲାଟ୍ ହୋଇ ଆସିଥିଲେ । ଏହା ପୂର୍ବରୁ ସେ ନାଗପୁରରେ ଚିଫ୍ କମିଶନର୍ ଥିଲେ । ସମ୍ବଲପୁର ତାଙ୍କ ଶାସନାଧୀନ ଥିଲା ଓ ସେ ସମ୍ବଲପୁରର 'ଓଡ଼ିଆ ଭାଷା' ଆନ୍ଦୋଳନବେଳେ ଓଡ଼ିଆଙ୍କ ସପକ୍ଷରେ ସୁପାରିସ୍ କରିଥିଲେ । ମଧୁବାବୁ ଏହି ଆନ୍ଦୋଳନ ସହିତ ସମ୍ପୃକ୍ତ ଥିବା ଓ ସେ ଏଥିରେ ନେତୃତ୍ୱ ନେଇଥିବା ଫ୍ରେଜର୍ ଜାଣିଥିଲେ ଓ ବର୍ତ୍ତମାନ ମଧୁବାବୁଙ୍କ ପ୍ରତି ଏହି ଗୁରୁତର ଦୋଷାରୋପ ଶୁଣି ସେ ବିଚଳିତ ହୋଇଯାଇଥିଲେ । ପୋଲିସଙ୍କର ଏପରି କାର୍ଯ୍ୟକଳାପ ସମ୍ବନ୍ଧରେ ମଧ୍ୟ ସେ ସମ୍ୟକ୍‌ରୂପେ ଅବଗତ ଥିଲେ । ସେ 'ପୁଲିସ୍ କମିଶନର୍'ର ସଭାପତି ହିସାବରେ ଏପରି ବହୁ କ୍ଷମତା ଅପବ୍ୟବହାର ଦୃଷ୍ଟାନ୍ତର କାହାଣୀ ଶୁଣିଥିଲେ ଓ ତାଙ୍କ ରିପୋର୍ଟରେ ମଧ୍ୟ ସେ ପୋଲିସ୍‌କୁ ଏଥିପାଇଁ ତୀବ୍ର ସମାଲୋଚନା କରିଥିଲେ । ମଧୁବାବୁଙ୍କଠାରୁ ଆପତ୍ତି ପତ୍ର ପାଇବା ସଙ୍ଗେ ସଙ୍ଗେ ଲାଟ ସାହେବ ଅନୁସନ୍ଧାନର ଆଦେଶ

ଦେଇଥିଲେ । ଅନୁସନ୍ଧାନରେ ମଧୁବାବୁ ନିର୍ଦ୍ଦୋଷ ଥିବା ପ୍ରମାଣିତ ହେବାରୁ ସରକାର ତାଙ୍କଠାରେ କ୍ଷମାଭିକ୍ଷା କରିବା ଉଚିତ ବୋଲି ସିଦ୍ଧାନ୍ତ କରି ସେ ଅନୁସାରେ କାର୍ଯ୍ୟକାରୀ ହୋଇଥିଲା । ସାର୍ ଫ୍ରେଜର୍ ଲାଟ ନ ହୋଇ ଅନ୍ୟ କେହି ହୋଇଥିଲେ ଏହି ଅନୁସନ୍ଧାନର ଗତି କୁଆଡ଼କୁ ହୋଇଥାଆନ୍ତା ତାହା ଅନୁସନ୍ଧାନ କରାଯାଇ ପାରୁନାହିଁ । ୟୁରୋପୀୟ ଉଚ୍ଚ ହାକିମମାନେ ଯେଉଁଠାରେ ସଂପୃକ୍ତ ସେମାନଙ୍କୁ ଅସନ୍ତୁଷ୍ଟ କରିବାପାଇଁ ଅନ୍ୟ କେହି ଉଚ୍ଚ ୟୁରୋପୀୟ ହାକିମ ସାହସ କରିଥାଆନ୍ତେ କି ନାହିଁ କହିହେଉନାହିଁ ।

ମଧୁବାବୁ ନ୍ୟାଯ୍ୟ ବିଚାର ପାଇବାରୁ କଟକର ସମସ୍ତେ ଆଶ୍ୱସ୍ତ ହେଲେ । ଏହି ଭିତ୍ତିହୀନ ଓ ସମ୍ପୂର୍ଣ୍ଣରୂପେ ଅମୂଳକ ଅଭିଯୋଗରେ ସତ୍ୟରୂପ ପ୍ରକାଶ କରିବାପାଇଁ ସରକାର ଅତି ଚଞ୍ଚଳ ଓ ନିରପେକ୍ଷ ଭାବରେ ଅନୁସନ୍ଧାନ କରିଥିବାରୁ କଟକର ବିଭିନ୍ନ ସ୍ଥାନରେ ସଭା ସମିତି ହୋଇଥିଲା । କଟକର ୟୁରୋପୀୟ ପାଦ୍ରି ଓ ଖ୍ରୀଷ୍ଟିୟାନ୍ ମଣ୍ଡଳୀ ୧୯୦୩ ଜୁନ୍ ମାସ ୯ ତାରିଖରେ ଏକ ସଭା କରି ସରକାରଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

ଏହି ମକଦ୍ଦମାରେ ପୋଲିସ୍ ନାନା ଚକ୍ରାନ୍ତ କରିଥିବା, ମିଥ୍ୟା ସାକ୍ଷ୍ୟ ଯୋଗାଡ଼ କରିଥିବା ପ୍ରଭୃତି ଅଭିଯୋଗ ସାଧାରଣରେ ଶୁଣାଯାଉଥିଲା । ଏହି ମକଦ୍ଦମାର ରାୟ ପ୍ରକାଶ ପାଇବା ପରେ ମଧ୍ୟ ସଂପୃକ୍ତ ପୋଲିସ୍ ଅଫିସରମାନଙ୍କ ପଦୋନ୍ନତି ହୋଇଥିବାରୁ ଲୋକେ ଅସନ୍ତୋଷ ପ୍ରକାଶ କଲେ । ଉତ୍ତର-ଭାରତର ଡକାଏତି ମକଦ୍ଦମାର ରାୟପରେ ମାନସିଂହପାଟଣାର ଡକାୟତିର ପ୍ରକୃତ ସ୍ୱରୂପ ଜଣା ପଡ଼ିବା ପରେ ଓଡ଼ିଶାରେ ଚହଳ ପଡ଼ିଯାଇଥିଲା । ନିର୍ଦ୍ଦୋଷମାନେ ଦଣ୍ଡ ଭୋଗ କରୁଥିବାରୁ ଜନ ସାଧାରଣ ଏହାର ପୁନର୍ବିଚାରପାଇଁ ସରକାରଙ୍କଠାରେ ଦାବୀକରିଥିଲେ ଓ ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତି ମଧ୍ୟ ଦାବୀକୁ ସମର୍ଥନ କରିଥିଲେ । ବଙ୍ଗ ଲାଟ ସାର୍ ଫ୍ରେଜର୍ ଏହି ଆପତ୍ତି ପତ୍ରଗୁଡ଼ିକ ପାଇବା ମାତ୍ରେ ମକଦ୍ଦମାରେ ପୋଲିସ୍‌ଙ୍କ କାର୍ଯ୍ୟକଳାପର ଅନୁସନ୍ଧାନ ମି. ସି. ଭି. ନିଭେଟ୍ (Mr. C. V. Nyvett) C. I. E. ଙ୍କ ଦ୍ୱାରା କରାଇଥିଲେ । ଏହି ଉଚ୍ଚ ଅଫିସରଙ୍କ ଅନୁସନ୍ଧାନରେ ଦଣ୍ଡ ଭୋଗୁଥିବା ଆସାମୀମାନେ ନିର୍ଦ୍ଦୋଷ ଥିବା ଜଣାପଡ଼ିବାରୁ ସରକାର ଏମାନଙ୍କ ଦଣ୍ଡ ରଦ୍ଦ କରିଦେଇଥିଲେ । ଏହି 'ଦୋଷୀମାନେ' ନିର୍ଦ୍ଦୋଷି ବୋଲି ପ୍ରମାଣିତ ହୋଇ କାରାଗାରରୁ ଫେରିଆସି ପ୍ରକୃତ ଘଟନା ସାଧାରଣ ସଭାରେ ପ୍ରକାଶ କରିଥିଲେ । ପୋଲିସଙ୍କ ମିଥ୍ୟା ସାକ୍ଷ୍ୟ ଯୋଗାଡ଼, ବଳପୂର୍ବକ ସ୍ୱୀକାରୋକ୍ତି ଆଦାୟ ପ୍ରଭୃତି ବିଷୟର ଚମକପ୍ରଦ କାହାଣୀ ରାଙ୍ଗରାୟା, ବନମାଳୀ ଓ ଠାକୁର ବର୍ଣ୍ଣନା କରିଥିଲେ । ଏ ତିନିହେଁ ନିର୍ଦ୍ଦୋଷରେ ଖଲାସ ହୋଇଥିଲେ । କଟକରେ 'ଉତ୍କଳ ସଭା' (Orissa Association)ର ଏକ ସଭାରେ ଏ ତିନିହେଁ ଭାଷଣ ଦେଇଥିଲେ ।

ଏହି ମକଦ୍ଦମା, ମିଥ୍ୟା ଦୋଷାରୋପ ପ୍ରଭୃତି ବିଷୟରେ ନ୍ୟାୟବିଚାରର ନିମନ୍ତେ ମଧୁବାବୁ ପ୍ରଗାଢ଼ ଯତ୍ନ ଓ ଅକ୍ଳାନ୍ତ ଚେଷ୍ଟା କରିଥିଲେ । ଏହାର ସୁଫଳ ମିଳିବା ପରେ ଦେଶର ନେତୃସ୍ଥାନୀୟ ବ୍ୟକ୍ତିଙ୍କର ମନରେ ଏହିପରି 'ଅନ୍ୟାୟ' କାର୍ଯ୍ୟର ପ୍ରତିରୋଧ ହେବା ଅତ୍ୟନ୍ତ ଆବଶ୍ୟକ ବୋଲି ଭାବ ଜାତ ହୋଇଥିଲା । ସହରରେ ଏତେ ବିଶିଷ୍ଟ ଶିକ୍ଷିତ ଲୋକଙ୍କ ସମକ୍ଷରେ ଯେତେବେଳେ ଏପରି ଭୟାବହ କାଣ୍ଡ ପୋଲିସ ସୃଷ୍ଟି କରିପାରୁଛି, ସେତେବେଳେ ମଫସଲର ନିରୀହ ଜନସାଧାରଣଙ୍କର ବା କି ରକ୍ଷା ଅଛି ? ଲୋକଙ୍କୁ ଏ 'ବିପଦ'ରୁ ରକ୍ଷା କରିବା ପାଇଁ କଟକର ଓକିଲମଣ୍ଡଳୀ ଅଗ୍ରସର ହୋଇଥିଲେ । ଅନ୍ୟାୟ କ୍ଷମତାର ଅପବ୍ୟବହାର ଓ ପୋଲିସ୍ ଜୁଲମ୍‌ରୁ ନିରୀହ ଲୋକଙ୍କୁ ରକ୍ଷାକରିବା ପାଇଁ କି କି ଉପାୟ ଅବଲମ୍ବନ କରାଯାଇପାରେ ସେ ସମ୍ବନ୍ଧରେ 'ଉତ୍କଳ ସଭା'ର ସାଧାରଣ ସଭା (ତା ୯।୭।୧୯୦୪)ରେ କେତେଗୋଟି ପନ୍ଥା ଉଦ୍‌ଭାବନ କରାଯାଇଥିଲା । ଏଠାରେ ଗୃହୀତ ହୋଇଥିବା ନିର୍ଦ୍ଧାରଣରୁ ବିଷୟର ଗୁରୁତ୍ୱ ଉପଲବ୍ଧି କରିହେଉଛି ।

(କ) କୌଣସି ମକଦ୍ଦମାରେ ତଦନ୍ତକାରୀ ପୁଲିସ ପ୍ରକୃତ ଅପରାଧୀମାନଙ୍କୁ ଧରି ନପାରି ସେମାନଙ୍କ ବଦଳରେ ନିର୍ଦ୍ଦୋଷ ବ୍ୟକ୍ତିଙ୍କୁ ଚାଲାନ୍ ଦେଲେ ତାହା ହାକିମମାନଙ୍କ ଗୋଚରରେ ଆଣିବା ।

(ଖ) ଫୌଜଦାରି କାର୍ଯ୍ୟବିଧି ଆଇନର ୧୬୨ ଧାରା ପ୍ରଚଳନ କରିବା ସମ୍ବନ୍ଧରେ ଆଇନକର୍ତ୍ତାମାନଙ୍କର ଅଭିପ୍ରାୟ ଓଡ଼ିଶାରେ ସାଧନ କରିବା କାରଣ ନିମ୍ନଲିଖିତ ଭଦ୍ରଲୋକମାନଙ୍କୁ ନେଇ ଗୋଟିଏ କମିଟି ଗଠିତ ହେଉ । ଯଥା—(୧) ଶ୍ରୀଯୁକ୍ତ ମଧୁସୂଦନ ଦାସ ସି. ଆଇ. ଇ., (୨) ବାବୁ ଗୌରୀଶଙ୍କର ରାୟ, (୩) ବାବୁ ଗୋକୁଳାନନ୍ଦ ଚୌଧୁରୀ, (୪) ବାବୁ ନିମାଇଁଚରଣ ମିତ୍ର, (୫) ବାବୁ ଦୁର୍ଗାପ୍ରସନ୍ନ ଦାସ, (୬) ବାବୁ ଈଶ୍ୱରଲାଲ ଓ (୭) ମୁନ୍‌ସି ନୁରୁଲ୍ ହକ୍ ।

ଏହି ବିଷୟଟି ଅତ୍ୟନ୍ତ ଗୁରୁତର ଓ ଦାୟିତ୍ୱପୂର୍ଣ୍ଣ ଥିବାରୁ ସର୍ବସାଧାରଣଙ୍କ ଏକାନ୍ତ ସାହାଯ୍ୟ ଓ ସହାନୁଭୂତି ବିନା ଏହା ସମୁଚିତଭାବରେ ସାଧିତ ହେବା ସମ୍ଭବ ନୁହେଁ ବୋଲି ସଭାରେ ବକ୍ତାମାନେ ମତ ବ୍ୟକ୍ତ କରିଥିଲେ ।

କମିଟିର କାର୍ଯ୍ୟର ପରିସର ସମ୍ବନ୍ଧରେ ନିମ୍ନଲିଖିତ ତାଙ୍କର ସ୍ପଷ୍ଟୀକରଣଟି ବଡ଼ ଉପାଦେୟ । ଦେଶର ସାମାଜିକ ଓ ପ୍ରଶାସନିକ ଅବସ୍ଥାର ଚିତ୍ର ଏଥିରେ ଫୁଟି ଉଠୁଛି ।

"ପୁଲିସ କୌଣସି ଅଭିପ୍ରାୟରେ ପ୍ରକୃତ ଦୋଷୀକୁ ନ ଧରି ନିର୍ଦ୍ଦୋଷୀକୁ ଧରି ପଠାଇବାର ଜଣାଗଲେ କେବଳ ସେହି ମାମଲାରେ କମିଟି ହସ୍ତକ୍ଷେପ କରିବେ । ନିର୍ଦ୍ଦୋଷୀକୁ ରକ୍ଷା କରିବାର ଏକମାତ୍ର କମିଟିର କାର୍ଯ୍ୟ ହେବ । ଦୋଷୀକୁ ଖୋଜି ବାହାର କରିବାର ପୁଲିସର କାର୍ଯ୍ୟ ଅଟେ, ତହିଁ ସଙ୍ଗେ କମିଟିର କିଛି ସମ୍ପର୍କ ନାହିଁ । କୌଣସି ଗ୍ରାମରେ କୌଣସି ଅପରାଧ ଘଟଣା ହେଲେ ପୁଲିସ ତଦନ୍ତକରି ଅଜ୍ଞତା ବା ଦୁଷ୍ଟଶଠତା-

ବଶତଃ ଯେତେବେଳେ ଦୋଷୀକୁ ଛାଡ଼ି ନିର୍ଦ୍ଦୋଷ ଉପରେ ସେ ଅପରାଧଟି ଖଞ୍ଜି ଦିଅନ୍ତି, ସେତେବେଳେ ଏହି ଘଟନା ହେବା ଗ୍ରାମବାସୀ ବା ପଡ଼ିଶା ଗ୍ରାମବାସୀମାନଙ୍କୁ ଅଧିକାଂଶ ସ୍ଥଳେ ତାହା ଜଣାପଡ଼େ । ମାତ୍ର ପୁଲିସ୍‌ର ଭୟ ଅଥବା ଭବିଷ୍ୟତ ଅନିଷ୍ଟ ଆଶଙ୍କାରେ କେହି ସେ କଥା ପୁଲିସ୍ ସାହେବ ଅଥବା ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଜଣାଇବାକୁ ସାହସ କରନ୍ତି ନାହିଁ ଏବଂ ଭୟର କାରଣ ମଧ୍ୟ ନିତାନ୍ତ ଅମୂଳକ ନୁହେଁ । ପୁଲିସ କର୍ମଚାରୀଙ୍କ ବିରୁଦ୍ଧରେ କିଛି କହିଲେ ସେ ଅଦାଲତ ରଖି ହରକତ କରିପାରନ୍ତି ଏବଂ ପୁଲିସ ସାହେବ ଅଥବା ମାଜିଷ୍ଟ୍ରେଟଙ୍କୁ ଜଣାଇଲେ ସେମାନେ ମିଥ୍ୟା ସମ୍ବାଦ ଦେବା ଅଭିଯୋଗରେ ଫୌଜଦାରୀ ମୋକଦ୍ଦମା ଚଳାଇ ପାରନ୍ତି । ଅନୁଭବଦ୍ୱାରା ଲୋକେ ଏ ସମସ୍ତ ବୁଝିଅଛନ୍ତି, ସୁତରାଂ ପୁଲିସର ଅପକାର୍ଯ୍ୟ ଦେଖିଲେ ସୁଦ୍ଧା କିଛି ନ କହି ଚୁପ୍‌ହୋଇ ରହିବା ହିତକର ବିବେଚନା କରନ୍ତି ଏବଂ ସତକଥା ଗ୍ରାମବାସୀଙ୍କ ମଧ୍ୟରେ କୁହାକୁହି ହେଉଥିଲେ ସୁଦ୍ଧା ହାକିମମାନଙ୍କ କାନ ପର୍ଯ୍ୟନ୍ତ ପହଞ୍ଚି ପାରେନାହିଁ । ଏହି ଭୟ ଓ ବିପଦ ନିବାରଣ ଆଶାରେ କମିଟି ଗଠିତ ହୋଇଛି । କମିଟି ଯାହାଠାରୁ ସେ ପ୍ରକାର ସମ୍ବାଦ ପାଇବେ, ତାହାର ନାମ କୌଣସିମତେ ପ୍ରକାଶ କରିବେ ନାହିଁ ଏବଂ କମିଟି ନିଜର ଦାୟିତ୍ୱରେ କାମ କରିବେ, ମାତ୍ର ସମ୍ବାଦଦାତା ସମ୍ବାଦର ସଙ୍କେତ, ପ୍ରମାଣ ବିଷୟରେ କମିଟିର ସମ୍ପୂର୍ଣ୍ଣ ସାହାଯ୍ୟ କରିବ । ଗ୍ରାମବାସୀଙ୍କର ସାହାଯ୍ୟ ଓ ସହଯୋଗ ବିନା କମିଟି କିଛି କାର୍ଯ୍ୟ କରିପାରିବା ସମ୍ଭବ ନୁହେଁ । ଅତଏବ ସର୍ବାଗ୍ରେ ସମ୍ବାଦଦାତାଙ୍କର ସରଳ ବିଶ୍ୱାସମତେ ସତ୍ୟକଥା କମିଟି ଏବଂ କମିଟିର କୌଣସି ଏକ ସଭ୍ୟଙ୍କୁ ଜଣାଇବା ଆବଶ୍ୟକ । ବେନାମି ପତ୍ରଦ୍ୱାରା ସମ୍ବାଦ ଦେଲେ, ତହିଁରେ କିଛି ଫଳ ହେବନାହିଁ ସତ୍ୟ ଏବଂ ବିଶ୍ୱାସଯୋଗ୍ୟ ସମ୍ବାଦ କମିଟିକୁ ଦେଲେ ସମ୍ବାଦଦାତା ସାହାଯ୍ୟରେ କମିଟି ତହିଁର ତଦନ୍ତ କରିବେ । ଯେବେ ନିଶ୍ଚୟ ଜାଣିପାରିବେ ଯେ ପୁଲିସ ଅନ୍ୟାୟ କରିଅଛି, ତେବେ ତାହାର ପ୍ରତିକାର କରିବାର ଉଚିତ ଉପାୟ କରିବେ । ଅନ୍ୟ ଦିଗରେ ଯେବେ ପାଇଥିବା ସମ୍ବାଦ ପ୍ରତି କମିଟିର ବିଶ୍ୱାସ ନ ହେବ, ତେବେ କମିଟି ନିରସ୍ତ ରହିବ; ମାତ୍ର ସମ୍ବାଦ ପ୍ରତି କମିଟିର ବିଶ୍ୱାସ ହେଉ ବା ନ ହେଉ ସମ୍ବାଦ ଦାତାର ନାମ କୌଣସି ପ୍ରକାରେ ପ୍ରକାଶ କରିବେ ନାହିଁ । ଏହି ଭାବରେ କମିଟି କାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି ଏବଂ ଏଥିରୁ ପାଠକମାନେ ସହଜରେ ବୁଝିପାରିବେ ଯେ କାହାରି ନାମରେ ମିଥ୍ୟା ଫୌଜଦାରୀ ମୋକଦ୍ଦମା ହେବାର କମିଟି ଜାଣି ପାରିଲେ ତହିଁର ଯଥାସାଧ୍ୟ ପ୍ରତିକାର କରିବାକୁ ଯତ୍ନବାନ ହେବେ; ଅଥଚ ଯେ ବ୍ୟକ୍ତି ସେ ପ୍ରକାର ଘଟଣାର ସମ୍ବାଦ ଦେବ, ତାହାର କୌଣସି ପ୍ରକାର କ୍ଷତି ବା ଅନିଷ୍ଟ ହେବନାହିଁ । କହିବା ବାହୁଲ୍ୟ ଯେ, ମୋକଦ୍ଦମା ଚାଲୁଥିବା ସମୟରେ ସମ୍ବାଦ ଦେବା ଆବଶ୍ୟକ । ମୋକଦ୍ଦମା ଶେଷ ହେଲାଉତ୍ତାରୁ ସମ୍ବାଦ ଦେଲେ କିଛି ଫଳ ହେବନାହିଁ । ମିଥ୍ୟା ମାମଲା ମଧ୍ୟ ନାନା ପ୍ରକାର ଅଛି । ସାମାନ୍ୟ ମାମଲା ଛାଡ଼ି କେବଳ ଯେ ସାମାନ୍ୟ ଦଣ୍ଡଯୋଗ୍ୟ ଗୁରୁତର ମାମଲାରେ ଅନର୍ଥକ କାହାରି ସର୍ବନାଶ ଘଟିବାର ସମ୍ଭବ, କେବଳ

ସେହି ପ୍ରକାର ମାମଲାରେ ହସ୍ତକ୍ଷେପ କରିବା କମିଟିର ଅଭିପ୍ରାୟ । ଆମ୍ଭମାନଙ୍କ ବିବେଚନାରେ କମିଟିର ପ୍ରସ୍ତାବ ଉତ୍ତମ ଅଟେ ଏବଂ ଯେମନ୍ତ ସାଧାରଣ ହିତ ସାଧନରେ କମିଟି ଗଠିତ ହୋଇଅଛି, ତେମନ୍ତ ଅଭିପ୍ରାୟରେ ଜନ ସାଧାରଣ ମିଳିତ ହୋଇ କମିଟିକୁ ସାହାଯ୍ୟ କଲେ ସୁଫଳ ଫଳିବାର ଆଶା ହେଉଅଛି । ଲୋକେ ନିଃସ୍ୱାର୍ଥଭାବରେ କାର୍ଯ୍ୟ କରିବାକୁ ଅଗ୍ରସର ହେଲେ କମିଟିଦ୍ୱାରା ଯଥେଷ୍ଟ ସାହାଯ୍ୟ ପାଇବେ । ଅତଏବ ଜନସାଧାରଣଙ୍କୁ ନିର୍ଭୟରେ କମିଟି ସଙ୍ଗେ କାର୍ଯ୍ୟ କରିବାକୁ ଆମ୍ଭେମାନେ ପରାମର୍ଶ ଦେଉଅଛୁ ।"

ନିଃସ୍ୱାର୍ଥ ସହଯୋଗ ଅଭାବରୁ କମିଟି ଉଲ୍ଲେଖଯୋଗ୍ୟ ଅଗ୍ରଗତି କରିପାରି ନ ଥିଲେ । ହେଲେହେଁ ଶାସନ କ୍ଷେତ୍ରରେ ଏହାର ସୁପ୍ରଭାବ ପଡ଼ିଥିଲା ।

## ୧୪ । ବିବିଧ କାର୍ଯ୍ୟାବଳୀ (୩) (୧୯୦୦–୧୯୦୩)

**ବଡ଼ଲାଟ୍ କର୍ଜନଙ୍କ ସହ ସାକ୍ଷାତ (୧୯୦୦) :** ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ଶାସନାଧୀନରେ ରଖିବା ପାଇଁ ଭାରତର ବଡ଼ଲାଟ୍ ଲର୍ଡ଼ କର୍ଜନଙ୍କଠାକୁ ଏକ ଦୀର୍ଘ ଆବେଦନ ପତ୍ର ମଧୁବାବୁ ଖ୍ରୀ: ୧୯୦୦ରେ ଲେଖିଥିଲେ । ଏହି ପତ୍ରରେ ପ୍ରସ୍ତାବ ସପକ୍ଷରେ ମଧୁବାବୁ ବଳିଷ୍ଠ ଯୁକ୍ତି ଦେଇଥିଲେ । ସେତେବେଳେ ଗ୍ରୀଷ୍ମଋତୁ ଯୋଗୁଁ ଲର୍ଡ଼ କର୍ଜନ ସିମଲାରେ ଅବସ୍ଥାନ କରୁଥିଲେ । ମଧୁବାବୁ ସିମଲା ଯାଇ ସେଠାରେ ବଡ଼ଲାଟଙ୍କୁ ଦେଖାକଲେ । ବଡ଼ଲାଟ କହିଲେ, ସେ ଓଡ଼ିଶା ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ବଡ଼ଲାଟ ତାଙ୍କ ଶାସିତ ଏକ ଭୂଖଣ୍ଡ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ ବୋଲି କହିବାରୁ ମଧୁବାବୁ କାନ୍ଦି କାନ୍ଦି ହୋଇଗଲେ ଏବଂ ସ୍ୱ ମାତୃଭୂମି ଓଡ଼ିଶା ଓ ଅବହେଳିତ ଓଡ଼ିଆ ଜାତି ନାମରେ ଆବେଗମୟୀ ଭାଷାରେ ବଡ଼ଲାଟଙ୍କୁ ବୁଝାଇଲେ । 'ମାତା ଓଡ଼ିଶା' କିପରି ନିଜ 'ଦୁହିତା'ମାନଙ୍କଠାରୁ ବିଚ୍ଛିନ୍ନ ହୋଇ କ୍ରନ୍ଦନ କରୁଛନ୍ତି, ତାହା ବର୍ଣ୍ଣନା କରି କହିଲେ, "ଶାସନ କଳ ସମୁଦ୍ରରୂପକ ମାତାଠାରୁ ଦୁହିତାମାନଙ୍କୁ ପୃଥକ୍ କରିଦେଇ-ଥିବାରୁ ଓଡ଼ିଆ ଜାତି ଅକଥନୀୟ ଦୁଃଖ ଭୋଗ କରୁଛନ୍ତି ଓ ଅନୁନ୍ନତ ଅବସ୍ଥାରେ ପଡ଼ି ରହିଛନ୍ତି ।" ମଧୁବାବୁଙ୍କ ଆବେଗପୂର୍ଣ୍ଣ ଯୁକ୍ତିରେ ବଡ଼ଲାଟ ମୁଗ୍ଧ ହୋଇଯାଇଥିଲେ ଏବଂ ଏ ସମ୍ବନ୍ଧରେ ଯାହା ସେ କରିପାରିବେ, ତାହା କରିବେ ବୋଲି ମଧୁବାବୁଙ୍କୁ କହିଲେ ।

ମହାମାନ୍ୟ କର୍ଜନ ସଙ୍ଗେ ସଙ୍ଗେ ଓଡ଼ିଶା ଓ ଚତୁଃପାର୍ଶ୍ୱସ୍ଥ ଅଞ୍ଚଳର ଏକ ମାନଚିତ୍ର ଧରି ଆସିବାପାଇଁ ସେକ୍ରେଟାରୀଙ୍କୁ ଆଦେଶ ଦେଲେ । ମାନଚିତ୍ର ଆସିବା କ୍ଷଣି ବଡ଼ଲାଟ ନିଜେ ସେଥିରେ ଓଡ଼ିଆ ଅଞ୍ଚଳକୁ ଚିହ୍ନିତ କଲେ ଏବଂ ଓଡ଼ିଶାକୁ ଗସ୍ତରେ ଯିବାକୁ ସ୍ଥିର କଲେ । ତାଙ୍କର ଓଡ଼ିଶା ଗସ୍ତର ଆବଶ୍ୟକ ଆୟୋଜନ କରିବା ପାଇଁ ସେ ବଙ୍ଗ ସରକାରଙ୍କୁ ଆଦେଶ ମଧ୍ୟ ଦେଲେ ।

ସବୁ ଓଡ଼ିଆଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କଲେ କେତେ ବର୍ଗ ମାଇଲ କ୍ଷେତ୍ରଫଳ ସ୍ଥାନ ଓ କେତେ ଜନସଂଖ୍ୟା ବଙ୍ଗରେ ମିଶିବ ବୋଲି ବଡ଼ଲାଟ ପ୍ରଶ୍ନ କରିବାରୁ, ମଧୁବାବୁ କହିଲେ ଯେ ୫୦ (ପଚାଶ) ଲକ୍ଷ ଲୋକ ଓ ୪୦-୫୦ ହଜାର ବର୍ଗମାଇଲ ଅଞ୍ଚଳ ମିଶିବ । କର୍ଜନ କହିଥିଲେ, "ବର୍ତ୍ତମାନ ବଙ୍ଗର ଆୟତନ ଅତି ବିସ୍ତୃତ ଓ ବିରାଟ ହୋଇଛି, ଯଦି ଏତେଗୁଡ଼ିଏ ନୂଆ ଅଞ୍ଚଳ ଓ ଏତେ ଲୋକ ମିଶନ୍ତି, ତାହାହେଲେ ବଙ୍ଗପ୍ରଦେଶ ଅସମ୍ଭବ ରୂପେ ବୃଦ୍ଧି ପାଇବ । ଜଣେ ଲାଟଙ୍କ ପକ୍ଷେ ଏଡ଼େ ବିଶାଳ ଅଞ୍ଚଳ ଶାସନ କରିବା କଷ୍ଟକର ହେବ । ଏହାହେଲେ ମୋତେ ବଙ୍ଗକୁ ଦ୍ୱିଖଣ୍ଡ କରିବାକୁ ପଡ଼ିବ ।" ଏହି ମତରେ ବଙ୍ଗଭଙ୍ଗର ବୀଜ ଥିବା ଜଣାଯାଉଥିଲା । ବଡ଼ଲାଟଙ୍କ ଉତ୍ତର ନିରୁତ୍ସାହଜନକ ହେଲେ ମଧ୍ୟ ଓଡ଼ିଶାର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ସେ ଉତ୍ତମରୂପେ ଜ୍ଞାନ ଲାଭ କରିଥିବା ଓ ସହାନୁଭୂତିପୂର୍ଣ୍ଣ ହୃଦୟରେ ଶୁଣିଥିବା ମଧୁବାବୁ ବୁଝିପାରିଥିଲେ । ମଧୁବାବୁ ଓଡ଼ିଶାର ପ୍ରାଚୀନ ଗୌରବ, ଇତିହାସ, ମନ୍ଦିର, କୀର୍ତ୍ତିମାଳା, ଜଗନ୍ନାଥ ଧର୍ମ ପ୍ରଭୃତି ବର୍ଣ୍ଣନା କଲାବେଳେ ବଡ଼ଲାଟ ତନ୍ମୟ ହୋଇ ଶୁଣିଥିଲେ ।

ମଧୁବାବୁ ବଡ଼ଲାଟଙ୍କୁ ପୁଣି କହିଲେ, "ଓଡ଼ିଶା ପାଇଁ ବ୍ରିଟିଶ୍ ରାଜତ୍ୱ ଏକ ଶତାବ୍ଦୀ ଭିତରେ କିଛି କରିନାହିଁ । ବ୍ରିଟିଶ ସରକାରଙ୍କ ଅବହେଳା ହିଁ ଏହି ଉଚ୍ଚ ସଂସ୍କୃତିସମ୍ପନ୍ନ ପ୍ରାଚୀନ ଭୂଖଣ୍ଡର ଦୁରବସ୍ଥା ପାଇଁ ଦାୟୀ ।" କର୍ଜନ ହସି ହସି ଉତ୍ସାହପୂର୍ଣ୍ଣ ସ୍ୱରରେ କହିଲେ, "ବ୍ରିଟିଶ ରାଜତ୍ୱ ତ ମଧୁବାବୁଙ୍କ ଭଳି ଜଣେ ଉଚ୍ଚକୋଟୀର ଜନସେବକ, ପ୍ରତିଭାବାନ୍ ନେତା ତିଆରି କରି ପାରିଛି ? ତେବେ ଆପଣ କିପରି କହୁଛନ୍ତି ଯେ ବ୍ରିଟିଶ ସରକାର ଓଡ଼ିଶା ପାଇଁ କିଛି କରିନାହିଁ ?" ସଙ୍ଗେ ସଙ୍ଗେ ବଡ଼ଲାଟ ମାନଚିତ୍ର ଦେଖି ଓଡ଼ିଶା ଅଞ୍ଚଳକୁ ନାଲି ଗାରରେ ମୁଣ୍ଡଳା କାଟି ବଙ୍ଗ ଲାଟଙ୍କଠାକୁ ପଠାଇଦେଲେ ଏବଂ ଟେଲିଗ୍ରାମ୍‌ଦ୍ୱାରା ନିର୍ଦ୍ଦେଶ ଦେଲେ ଯେ ସେ ଅତି ଶୀଘ୍ର ଗସ୍ତରେ ଯିବାକୁ ସ୍ଥିର କରିଛନ୍ତି । ବଙ୍ଗ ସରକାର ବଡ଼ଲାଟଙ୍କ ଓଡ଼ିଶା ଗସ୍ତର ସମସ୍ତ ଆୟୋଜନ କଲେ । ବଡ଼ଲାଟ ଏକ ସ୍ପେଶାଲ୍ ରେଲରେ ମାନ୍ଦ୍ରାଜ ଗଲେ ଓ ସେଠାରୁ ଫେରିବାବେଳେ ବାଟରେ ଓଡ଼ିଶାରେ ଅଟକିଲେ ।

କର୍ଜନ ପୁରୀ, ଭୁବନେଶ୍ୱର ଓ କଟକ ପରିଦର୍ଶନ କରିଥିଲେ । ପୁରୀରେ ବଡ଼ଲାଟଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ଏକ ସଭା ସରକାରଙ୍କ ତରଫରୁ ଆହୂତ ହୋଇଥିଲା । ମାତ୍ର ସେହି ସଭାକୁ ମଧୁବାବୁଙ୍କୁ ନିମନ୍ତ୍ରଣ କରାଯାଇନଥିଲା । ମଧୁବାବୁଙ୍କୁ ସେଠାରେ ନ ଦେଖି ବଡ଼ଲାଟ ଦୁଃଖିତ ହେଲେ ଏବଂ ସଙ୍ଗେ ସଙ୍ଗେ ଆଦେଶ ଦେଲେ, "ମୁଁ ମଧୁବାବୁଙ୍କୁ ଦେଖିବାକୁ ଚାହେଁ ।"

ପୁରୀ ଓ ଭୁବନେଶ୍ୱରରେ ବଡ଼ଲାଟଙ୍କୁ ଲୋକଙ୍କ ପକ୍ଷରୁ ବିପୁଳ ସମ୍ବର୍ଦ୍ଧନା କରାଯାଇଥିଲା । ମଧୁବାବୁ ଏଥିରେ ପ୍ରଧାନ ଅଂଶ ଗ୍ରହଣ କରିଥିଲେ । ଫେରିଲାବେଳେ ବଡ଼ଲାଟ କଟକ ରେଲ ଷ୍ଟେସନ୍‌ରେ ମାତ୍ର ତିନିଘଣ୍ଟା ଅବସ୍ଥାନ କରିଥିଲେ ।

**ଭୁବନେଶ୍ବରରେ ଲର୍ଡ଼ କର୍ଜନ :** ଲର୍ଡ଼ କର୍ଜନ ଭୁବନେଶ୍ବରରେ କାରୁକାର୍ଯ୍ୟପୂର୍ଣ୍ଣ ରାଜରାଣୀ, ମୁକ୍ତେଶ୍ବର ପ୍ରଭୃତି ମନ୍ଦିର ଦେଖି ମୁଗ୍ଧ ହୋଇଯାଇଥିଲେ । ଲିଙ୍ଗରାଜ ମନ୍ଦିର ପରିଚାଳନା ବୋର୍ଡ଼ଙ୍କ ପକ୍ଷରୁ ମେଘନାଦ ପାଚେଶିର ଉତ୍ତର ଦ୍ୱାର ନିକଟରେ ଏକ ମଣ୍ଡପ (ମଞ୍ଚ) ନିର୍ମାଣ କରାଯାଇଥିଲା । ବଡ଼ଲାଟ ସେହି ମଣ୍ଡପରୁ ଲିଙ୍ଗରାଜ ମନ୍ଦିରର ସୌନ୍ଦର୍ଯ୍ୟ ଦେଖିଥିଲେ । ମଧୁବାବୁ ବଡ଼ଲାଟଙ୍କୁ ମନ୍ଦିରର ବିଭିନ୍ନ ଅଂଶରେ ଥିବା ସୁନ୍ଦର କାରୁକାର୍ଯ୍ୟ ଦେଖାଇ ତାହାର ତାତ୍ପର୍ଯ୍ୟ ବୁଝାଇଥିଲେ ।

ଏହି ମନ୍ଦିର ଦର୍ଶନ ଫଳରେ ବଡ଼ଲାଟ କର୍ଜନଙ୍କର ଓଡ଼ିଶା ପ୍ରୀତି ବୃଦ୍ଧି ପାଇଥିଲା । ପ୍ରାଚୀନ କୀର୍ତ୍ତି ଆଇନ ବଳରେ ଏହି ଇତିହାସ ପ୍ରସିଦ୍ଧ କାରୁକାର୍ଯ୍ୟପୂର୍ଣ୍ଣ ପ୍ରାଚୀନ ମନ୍ଦିରଗୁଡ଼ିକର ରକ୍ଷଣାବେକ୍ଷଣ ସରକାରଙ୍କ ପକ୍ଷରୁ କରାଯିବା ପାଇଁ ବଡ଼ଲାଟ ଆଦେଶ ଦେଇଥିଲେ ।

ଖ୍ରୀ: ୧୯୦୧ ମାର୍ଚ୍ଚ ମାସ ୧୨ ତାରିଖରେ ମଧୁବାବୁ ବଙ୍ଗ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ । ଏହି ବର୍ଷ ବଜେଟ ଅଧିବେଶନରେ କଟକ ଜିଲ୍ଲାବୋର୍ଡ଼କୁ ସାହାଯ୍ୟ, ଶିକ୍ଷାବିଭାଗର ଉନ୍ନତି, ବିଚାର ବିଭାଗ ଓ ଶାସନ ବିଭାଗର କର୍ମୀମାନଙ୍କୁ କେତେକ ସୁବିଧା ଦେବା ପ୍ରଭୃତି ବିଷୟରେ ସରକାରଙ୍କଠାରେ ଦାବୀ ହୋଇଥିଲା ଓ ଓଡ଼ିଆମାନଙ୍କୁ ବିଭିନ୍ନ ସରକାରୀ ଦପ୍ତରରେ ନିଯୁକ୍ତ କରିବା ସମ୍ବନ୍ଧରେ ଦୃଢ଼ ଦାବୀ ଉପସ୍ଥାପିତ ହୋଇଥିଲା ।

କଟକରେ ୧୯୦୧ ଜୁନ୍‌ମାସ ୨୬ ତାରିଖରେ ମାରବାଡ଼ିମାନଙ୍କର ଏକ ସଭାରେ ମଧୁବାବୁ ସଭାପତିତ୍ୱ କରିଥିଲେ । ଓଡ଼ିଶାର ସ୍ୱାର୍ଥ ସଙ୍ଗେ ମାରବାଡ଼ିଙ୍କ ସ୍ୱାର୍ଥ ଜଡ଼ିତଥିବାରୁ ମାରବାଡ଼ିମାନେ ଏ ଦେଶର ଅଧିବାସୀ ସ୍ୱରୂପ ଦେଶର ଉନ୍ନତିମୂଳକ ପ୍ରତ୍ୟେକ କାର୍ଯ୍ୟରେ ସହଯୋଗ କରିବା ଉଚିତ ବୋଲି ସେ ଉପଦେଶ ଦେଇଥିଲେ । ଏକ ଜାତୀୟ ଭାବରେ ଅନୁପ୍ରାଣିତ ହେବାପାଇଁ ସେମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

**ରମ୍ଭାରେ ଦେଶମିଶ୍ରଣ ସଭା :** ଗଞ୍ଜାମ ଜିଲ୍ଲାର ରମ୍ଭାଠାରେ ଖଲିକୋଟ ଜମିଦାରୀର ରାଜା ହରିହର ମର୍ଦ୍ଦରାଜ ଦେବ ଓଡ଼ିଶା ଦେଶମିଶ୍ରଣ ସମ୍ପର୍କରେ ଆଲୋଚନା କରିବାପାଇଁ ଏକ ସଭା ଜୁଲାଇମାସ (୧୯୦୧)ରେ ଆହ୍ୱାନ କରିଥିଲେ । ମଧୁବାବୁ ସେ ସଭାରେ ସଭାପତି ହୋଇଥିଲେ । ଗଞ୍ଜାମ ଜାତୀୟ ସମ୍ମିଳନୀର କଳ୍ପନା ଏହିଠାରେ ଜନ୍ମ ଲାଭ କରିଥିଲା । ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଓଡ଼ିଆଭାଷାଭାଷୀ ଅଞ୍ଚଳଗୁଡ଼ିକ ଓଡ଼ିଶା ସହିତ ମିଶ୍ରଣ ଭିତ୍ତିହୀନ, ଏହି ସ୍ପଷ୍ଟ ଜନମତ ଏଠାରେ ପ୍ରକାଶ ପାଇଲା ଏବଂ ଭାରତ ସରକାର, ମାନ୍ଦ୍ରାଜ ସରକାର ଓ ବଙ୍ଗ ସରକାରଙ୍କ ଦୃଷ୍ଟି ଏଥି ପ୍ରତି ଆକର୍ଷଣ କରାଗଲା ।

ସମ୍ବଲପୁରରେ ଓଡ଼ିଆ ଭାଷାକୁ ସରକାରୀ ଭାଷାରୂପେ ପ୍ରଚଳନ ଓ ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ଅଲଗାକରି ଓଡ଼ିଶା ଡିଭିଜନ ସଙ୍ଗେ ମିଶ୍ରଣ ନିମନ୍ତେ ଦାବୀ କରି ମଧୁବାବୁ ତା ୩।୯।୧୯୦୧ରେ ବଡ଼ଲାଟଙ୍କଠାକୁ ଏକ ଦାବୀପତ୍ର ପଠାଇଥିଲେ ।

ରାମମୋହନ ରାୟଙ୍କ ମୃତ୍ୟୁବାର୍ଷିକ ସଭାରେ ସଭାପତିତ୍ୱ କରି ମଧୁବାବୁ 'ଭାରତବର୍ଷର ଏକତା' ଉପରେ ଗୁରୁତ୍ୱ ଦେଇଥିଲେ ।

ନଭେମ୍ବର ମାସରେ କେଉଁଝର ରାଜାଙ୍କ ସହିତ ମଧୁବାବୁ ସିଂହଳ ଭ୍ରମଣରେ ଯାଇଥିଲେ ।

୧୯୦୧ ଡିସେମ୍ବରରେ କଂଗ୍ରେସର କଲକତା ଅଧିବେଶନରେ ମଧୁବାବୁ ଉତ୍କଳ ସଭାର ପ୍ରତିନିଧିରୂପେ ଯୋଗ ଦେଇଥିଲେ । କଂଗ୍ରେସ ପ୍ରଦର୍ଶନୀରେ ତାଙ୍କର ଶିଳ୍ପପ୍ରତିଷ୍ଠାନ-ମାନଙ୍କର ପଦାର୍ଥ ପ୍ରଦର୍ଶିତ ହୋଇଥିଲା ।

୧୯୦୨ ମାର୍ଚ୍ଚ ମାସରେ ବଙ୍ଗ ବ୍ୟବସ୍ଥାପକ ସଭାର ବଜେଟ ଅଧିବେଶନରେ ଯୋଗଦେଇ ସେ ବିଭିନ୍ନ ସମସ୍ୟାର ଆଲୋଚନା କରିଥିଲେ ।

ମଇମାସ ୩ ତାରିଖରେ କଟକ ମ୍ୟୁନିସିପାଲିଟି କରଦାତାମାନଙ୍କର ଏକ ବିରାଟ ସଭାରେ ସଭାପତିତ୍ୱକରି ମଧୁବାବୁ ଜନସାଧାରଣଙ୍କ ଅଭାବ ଅସୁବିଧା ପ୍ରତି ଦୃଷ୍ଟି ଦେବାପାଇଁ ସେ ସରକାରଙ୍କଠାରେ ଦାବୀ କରିଥିଲେ ଓ ନାଗରିକମାନଙ୍କ ଦାୟିତ୍ୱ ଓ ଅଧିକାର ସମ୍ବନ୍ଧରେ ମଧ୍ୟ କହିଥିଲେ ।

୧୯୦୨ ଜୁଲାଇ ମାସରେ ସରକାରୀ ଆଦେଶ ହେଲା ଯେ ୧।୧।୧୯୦୩ ଠାରୁ ସମ୍ବଲପୁରରେ ସରକାରୀ ଅଫିସମାନଙ୍କରେ ଓଡ଼ିଆଭାଷା ପ୍ରଚଳିତ ହେବ । ଏହି ଉପଲକ୍ଷରେ କଟକରେ ଏକ ସାଧାରଣ ସଭା ହୋଇଥିଲା । ମଧୁବାବୁ ତାଙ୍କ ବକ୍ତୃତାରେ ସରକାରଙ୍କୁ ଧନ୍ୟବାଦ ଜଣାଇଥିଲେ ।

ଅଗଷ୍ଟ ୨୩ ତାରିଖରେ ବଙ୍ଗଳାର ଲାଟ୍ ସାର୍ ଉଡ୍‌ବର୍ଣ୍ଣ କଟକ ଆସିଥିଲେ ଓ ମଧୁବାବୁଙ୍କ ଶିଳ୍ପାଗାର ପରିଦର୍ଶନ କରିଥିଲେ । ଏହି ଅବସରରେ ଓଡ଼ିଶା ଦେଶମିଶ୍ରଣ ସମ୍ବନ୍ଧରେ ମଧୁବାବୁ ଲାଟଙ୍କୁ ବୁଝାଇଥିଲେ ।

୧୯୦୨ ସେପ୍ଟେମ୍ବର ୨୪ ତାରିଖରେ ରେଭେନ୍‌ସା କଲେଜର ପୁରସ୍କାର ବିତରଣୀ ସଭାରେ ବକ୍ତୃତା ଦେଇ ମଧୁବାବୁ ବଙ୍ଗାଳୀ ଓ ଓଡ଼ିଆଙ୍କ ସୁସମ୍ପର୍କ କାମନା କରିଥିଲେ ।

ଅକ୍ଟୋବର ମାସ ୨୫ ତାରିଖରେ ବିଖ୍ୟାତ ନେତା ବିପିନଚନ୍ଦ୍ର ପାଲ କଟକ ଆସିଥିଲେ । ଏହି ଉପଲକ୍ଷେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ ଏବଂ ରାଜନୀତି ଓ ସମାଜ ସଂସ୍କାର ସମ୍ବନ୍ଧରେ ବକ୍ତୃତା ଦେଇଥିଲେ ।

**ଜଗନ୍ନାଥ ମନ୍ଦିରରେ ଶୈଳବାଳାଙ୍କ ପ୍ରବେଶ (୧୯୦୨)** : ପୁରୀରାଜାଙ୍କ ଜଗନ୍ନାଥ ମନ୍ଦିରର ସ୍ୱତ୍ୱାସ୍ୱତ୍ୱ ମକଦ୍ଦମା ପରେ ପୁରୀର ରାଜା ଓ ମନ୍ଦିର ସେବକ-ମାନଙ୍କ ମଧ୍ୟରେ ମଧୁବାବୁଙ୍କ ସମ୍ମାନ ବୃଦ୍ଧି ପାଇଥିଲା । ମଧୁବାବୁ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ମଧ୍ୟ ମଝିରେ ମଝିରେ ପୁରୀ ଯାଉଥିଲେ । ସେଠାରେ କିଛିଦିନ ରହିବାକୁ ପଡ଼ୁଥିବାରୁ ଷ୍ଟେସନ ନିକଟରେ (ଷ୍ଟେସନ ମନ୍ଦିର ରାସ୍ତାରେ) ଏକ ଘର ଭଡ଼ାକୁ ନେଇ ସେଠାରେ ସେ ରହୁଥିଲେ । ଶୈଳବାଳା ମଧ୍ୟ ସାଙ୍ଗସାଥିଙ୍କ ସହ ବେଳେ ବେଳେ ସେଠାରେ ଯାଇ ରହୁଥିଲେ ।

ଖ୍ରୀ: ୧୯୦୨ରେ ଥରେ ଶୈଳବାଳା ରଥଯାତ୍ରା ସମୟରେ ପୁରୀ ଯାଇ ସେଠି ଭଡ଼ାଘରେ ରହିଥିଲେ । ରଥଯାତ୍ରାର ଦୁଇଦିନ ପୂର୍ବରୁ ନେତ୍ରୋତ୍ସବ ଦିନ ହିନ୍ଦୁ ବନ୍ଧୁମାନଙ୍କ ଅନୁରୋଧରେ ଶୈଳବାଳା ଜଗନ୍ନାଥ ମନ୍ଦିର ଭିତରକୁ ଯିବାକୁ ଇଚ୍ଛାକଲେ । ସେ ମଧୁବାବୁଙ୍କ ପାଳିତାକନ୍ୟା ଥିବାରୁ ସେବକମାନେ ତାଙ୍କୁ ସମ୍ମାନ କରୁଥିଲେ । ଶୈଳବାଳା ଖ୍ରୀଷ୍ଟିଆନ୍ ଥିଲେ ମଧ୍ୟ ସେ ହିନ୍ଦୁଙ୍କପରି ଆଚରଣ କରୁଥିବାରୁ ସେବକମାନେ ତାଙ୍କୁ ମନ୍ଦିର ଭିତରକୁ ପ୍ରବେଶ କରିବା ପାଇଁ ବାରଣ କଲେନାହିଁ । ମଧୁବାବୁଙ୍କ ମନରେ କାଳେ କଷ୍ଟ ହେବ, ଏହି କାରଣ ମଧ୍ୟ ଥିଲା । ଶୈଳବାଳା ମନ୍ଦିର ଭିତରକୁ ଯାଇ ଠାକୁରମାନଙ୍କୁ ଦେଖିଲେ ଓ ମନ୍ଦିର ବେଢ଼ା ଭିତରେ ବୁଲି ସବୁ ଦେଉଳ ଦେଖିଲେ । ପଣ୍ଡାମାନେ ତାଙ୍କୁ ଠାକୁରଙ୍କର ପାଦୁକ ପ୍ରସାଦ ଦେବାରୁ ସେ ଗ୍ରହଣ କଲେନାହିଁ । ମନ୍ଦିର ଭିତରେ ଏକ ମଣ୍ଡପ ଉପରେ ବସି ଶୈଳବାଳା ଭକ୍ତମାନଙ୍କର ଗାନ ବାଜଣା ଶୁଣୁଥିଲେ । ଏତିକବେଳେ କଟକର ଜଣେ ବାବାଜୀ ତାଙ୍କୁ ଦେଖି ଚିହ୍ନିଲେ ଏବଂ ପାଟିକଲେ, "ମନ୍ଦିର ଅପବିତ୍ର ହୋଇଗଲା, ଖ୍ରୀଷ୍ଟିଆନ୍ ମଧୁବାବୁଙ୍କ ଝିଅ ମନ୍ଦିର ଭିତରେ ପଶି ମନ୍ଦିରକୁ ଅପବିତ୍ର କଲେ ।" ପାଟିଗୋଳ ହେଲା, ବହୁଲୋକ ସେଠାରେ ଜମିଗଲେ । ଯାତ୍ରୀମାନେ ଉତ୍ତ୍ୟକ୍ତ ହୋଇ କେତେକ ପଣ୍ଡାଙ୍କୁ ମଧ୍ୟ ମାରଧର କଲେ । ପଣ୍ଡାମାନେ ନିରୁପାୟ ହୋଇ ଶୈଳବାଳାଙ୍କୁ କହିଲେ, "ଆପଣ ମଧୁବାବୁଙ୍କ ଝିଅ ବୋଲି ନ କହି ଜଣେ ଡାକ୍ତରଙ୍କ ଝିଅ ବୋଲି କହନ୍ତୁ । ଶୈଳବାଳା ଏଥିରେ ସମ୍ମତ ହେଲେନାହିଁ । ଗଣ୍ଡଗୋଳ ବୃଦ୍ଧି ପାଇଲା । ପୋଲିସ ଏ ଖବରପାଇ ମନ୍ଦିରଭିତରେ ପଶିଲେ ଏବଂ ଜଣେ ସବଇନ୍‌ସପେକ୍ଟରର ଛଅ ସାତଜଣ ପୋଲିସଙ୍କ ଘେର ଭିତରେ ଶୈଳବାଳାଙ୍କୁ ମନ୍ଦିର ଭିତରୁ ବାହାରକୁ ନେଇ ଆସିଲେ ।

ଜିଲ୍ଲା ମାଜିଷ୍ଟ୍ରେଟ ଓ ପୋଲିସ ସାହେବ ଏ ଖବର ପାଇ, ଗଣ୍ଡଗୋଳ ହେବା ଆଶଙ୍କା କରି ମନ୍ଦିରର ଅରୁଣ ସ୍ତମ୍ଭ ନିକଟରେ ଆସି ପହଞ୍ଚିଲେ । ସେମାନେ କେହି ଶୈଳବାଳାଙ୍କ କାର୍ଯ୍ୟକୁ ପସନ୍ଦ କଲେନାହିଁ । ଏହାର ଫଳ କଣ ହେବ ତାହା ମଧ୍ୟ ସେମାନେ କଳ୍ପନା କରିପାରିଲେ ନାହିଁ ।

ଶୈଳବାଳା ମଧୁବାବୁଙ୍କୁ ଟେଲିଗ୍ରାମ୍‌ଦ୍ୱାରା ଘଟଣା ଜଣାଇବାରୁ ମଧୁବାବୁ ତହିଁ ପର ଦିନ ପୁରୀରେ ପହଞ୍ଚିଗଲେ । ସେତେବେଳେକୁ କଲିକତା ପର୍ଯ୍ୟନ୍ତ ଖବର ପହଞ୍ଚିଯାଇଥିଲା । ଖବରକାଗଜମାନଙ୍କରେ ଜଣେ ଖ୍ରୀଷ୍ଟିଆନ୍‌ଦ୍ୱାରା ହିନ୍ଦୁମନ୍ଦିର ଅପବିତ୍ର ହୋଇଥିବା ଏବଂ ଏହା ଫଳରେ ଶାନ୍ତି ଭଙ୍ଗର ଆଶଙ୍କା ଥିବା ମତ ପ୍ରକାଶ ପାଇଥିଲା । ଏଥିରେ ବଙ୍ଗ ସରକାର ସାମ୍ପ୍ରଦାୟିକ ଶାନ୍ତିଭଙ୍ଗର ଆଶଙ୍କା କରି ଅଧିକ ସଶସ୍ତ୍ର ପୋଲିସ ମୁତୟନ କରିବା ନିମନ୍ତେ ଆଦେଶ ଦେଲେ । କଟକରେ ସ୍ଥାନୀୟ ଖବର କାଗଜରେ ସମାଲୋଚନା ପ୍ରକାଶ ପାଇଲା । ଲର୍ଡ଼ କର୍ଜନ ଓଡ଼ିଶା ଯାଇଥିବାବେଳେ ମନ୍ଦିର ଭିତରେ ପ୍ରବେଶ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ଏବଂ ମନ୍ଦିର ମରାମତି ପାଇଁ ଯେଉଁ ଟଙ୍କା ଆବଶ୍ୟକ

ହେବ, ତାହା ଦେବାପାଇଁ କହୁଥିଲେ; କିନ୍ତୁ ଏହା ସମ୍ଭବ ହୋଇ ପାରି ନଥିଲା । ବଡ଼ଲାଟଙ୍କୁ ଅନୁମତି ଦିଆଯାଇ ନଥିଲେ ମଧ୍ୟ ଜଣେ ଖ୍ରୀଷ୍ଟିଆନ୍ ବାଳିକାକୁ ଅନୁମତି ଦିଆଯାଇଥିଲା—ଏହି ସମାଲୋଚନା ପରେ ପ୍ରକାଶ ପାଇଥିଲା ।

ମଧୁବାବୁ ପୁରୀରେ ପହଞ୍ଚି ରାଜାଙ୍କ ସହିତ ଦେଖା କରିଥିଲେ । ରାଜା କହିଲେ, "ଆପଣଙ୍କ କନ୍ୟା ମନ୍ଦିର ଭିତରକୁ ଯିବାପାଇଁ ଆସିଛନ୍ତି ବୋଲି ଖବର ପାଇଥିଲି । ପଣ୍ଡା ଆସି ମୋତେ ଅନୁମତି ମାଗିଥିଲେ । ମନ୍ଦିର ଭିତରକୁ କେତେ ଲୋକ ଯାଉଛନ୍ତି, କିଏ କାହାକୁ ଜାଣିଛି ବା ଚିହ୍ନୁଛି ? ସେମିତି ଆପଣଙ୍କେ ଝିଅ ଯିବେ, କିଏ କାହିଁକି ଜାଣିବେ—ଏହି ଧାରଣାରେ ମୁଁ ଅନୁମତି ଦେଇଥିଲି । ବିଶେଷତଃ ଆପଣଙ୍କ କନ୍ୟା ଯେତେବେଳେ ମନ୍ଦିର ଭିତରକୁ ଯିବାପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି, ମୁଁ ବା କିପରି ମନା କରନ୍ତି ? ଆପଣ ଜଗନ୍ନାଥ ମନ୍ଦିରକୁ ରକ୍ଷା କରିଦେଇଛନ୍ତି; ନ ହେଲେ ଏତେବେଳକୁ ବିଧର୍ମୀ ସରକାରଙ୍କ ହାତରେ ପଡ଼ିସାରି ଥାଆନ୍ତାଣି ।"

ଏ ଘଟଣାଯୋଗୁଁ ମଧୁବାବୁଙ୍କ ମନରେ କଷ୍ଟ ହେଲା । ତାଙ୍କର ପ୍ରତିପତ୍ତି ଉପରେ ନିର୍ଭର କରି ଶୈଳବାଳା ଏପରି କରିବା ଉଚିତ ହୋଇ ନ ଥିଲା ବୋଲି ସେ ଶୈଳବାଳାଙ୍କୁ କହିଥିଲେ । ମଧୁବାବୁ ପୁରୀରେ ପହଞ୍ଚିଯିବା ପରେ ଅବସ୍ଥା ଥଣ୍ଡା ପଡ଼ିଯାଇଥିଲା । ହାକିମ-ମାନେ ଶାନ୍ତିଭଙ୍ଗ ଆଶଙ୍କା ନଥିବା ଖବର ସରକାରଙ୍କୁ ଜଣାଇଲେ ।

ସେଦିନର ଠାକୁର ଭୋଗପାଇଁ ରନ୍ଧା ହୋଇଥିବା ଯାବତୀୟ ସାମଗ୍ରୀ ଅପବିତ୍ର ହୋଇଯାଇଥିବା ଘୋଷିତ ହୋଇ ପୋତା ହୋଇଗଲା ଏବଂ ମନ୍ଦିରକୁ ପବିତ୍ର କରିବାପାଇଁ ମହାସ୍ନାନାଦି ବିଧିବିଧାନ ଅନୁଷ୍ଠିତ ହୋଇଥିଲା । ଏଥିରେ ସହସ୍ରାଧିକ ଟଙ୍କାର ଭୋଗଦ୍ରବ୍ୟ ପୋତି ନଷ୍ଟ କରାଯାଇଥିଲା ।

ଶୈଳବାଳା ମଧୁବାବୁଙ୍କ ପୋଷ୍ୟକନ୍ୟାରୂପେ ପିତାଙ୍କ ପ୍ରତିପତ୍ତିକୁ ଅଯଥା ଭାବରେ ବ୍ୟବହାର କରୁଥିବା କେତେକ ଘଟଣାରୁ ଜଣାପଡ଼େ । ସମୟ ସମୟରେ କାର୍ଯ୍ୟକଳାପ ସୀମାତିରିକ୍ତ ହୋଇଥିଲେ ମଧ୍ୟ 'ମଧୁବାବୁଙ୍କ ଦୁହିତା' ଥିବାରୁ କ୍ଷମଣୀୟ ହୋଇଥିଲେ । ମଧୁବାବୁ ବେଳେବେଳେ ଏଥିପାଇଁ ବିରକ୍ତ ହେଉଥିବା ମଧ୍ୟ ଜଣାଯାଉଥିଲା । ସେ ଅତି ଉଦାରମନା ଥିବାରୁ ପାଳିତା କନ୍ୟା ପ୍ରତି କଠୋର ବ୍ୟବସ୍ଥା ଅବଲମ୍ବନ କରିପାରୁ ନ ଥିଲେ ।

ଥରେ କଲିକତାରୁ ଶୈଳବାଳା କଟକ ଆସୁଥିଲେ । ସେତେବେଳେ କଲିକତାର ଚାନ୍ଦବାଲି ଘାଟଠାରୁ କୋଲଘାଟ ପର୍ଯ୍ୟନ୍ତ ଜାହାଜରେ ଓ କୋଲଘାଟଠାରୁ କଟକ ପର୍ଯ୍ୟନ୍ତ ଟ୍ରେନରେ ଆସିବାକୁ ହେଉଥିଲା । ଶୈଳବାଳା ଯେଉଁ ଷ୍ଟିମରରେ ଆସୁଥିଲେ, ସେଥିରେ କଟକ ମାଜିଷ୍ଟ୍ରେଟ୍, ଜିଲ୍ଲା ଜଜ୍ ଓ ସେମାନଙ୍କ ସ୍ତ୍ରୀମାନେ ମଧ୍ୟ ଆସୁଥିଲେ । ଏମାନଙ୍କ ସଙ୍ଗେ ଦୁଇଜଣ ଇଂରେଜ ଓ ଆଉ ଜଣେ ମହିଳା ମଧ୍ୟ ଥିଲେ । ଶୈଳବାଳାଙ୍କ ସଙ୍ଗେ ତାଙ୍କର ଖାନସାମା (ମୁସଲମାନ ବେହେରାଆ) ଓ ଚାକରାଣୀ ମଧ୍ୟ ଥିଲେ । ମଇ ମାସ ଖରା ଯୋଗୁଁ ବଡ଼ ଗରମ ହେଉଥିବାରୁ ଶୈଳବାଳା ସାଧାରଣ ପତଳାଶାଢ଼ି ପିନ୍ଧିଥିଲେ ।

କୋଲଘାଟରେ ଷ୍ଟିମର୍‌ର ଖାନ୍‌ସାମା ଆସି ଶୈଳବାଳାଙ୍କୁ ପଚାରିଲା, "ଆପଣ ସାହେବମାନେ ଖାଇବା ପୂର୍ବରୁ ନା ପରେ ଖାଇବେ ? ସାହେବମାନେ ଆପଣମାନଙ୍କ ସାଙ୍ଗରେ ଖାଇବସିବାକୁ ଆପତ୍ତି କରିବେ ।"

ଶୈଳବାଳା ଏହା ଶୁଣି ରାଗିଗଲେ ଏବଂ ସାହେବମାନଙ୍କୁ ଉଚିତ ଶିକ୍ଷା ଦେବା ପାଇଁ ଉପାୟ ପାଞ୍ଚିଲେ । ସେ ଆଗରୁ ଷ୍ଟେଲେଷ୍ଟେସନକୁ ଚାକରକୁ ପଠାଇ କଟକକୁ ତିନୋଟି ପ୍ରଥମଶ୍ରେଣୀର ଟିକେଟ୍ କିଣି ଅଣାଇଲେ ଏବଂ ଆଗରୁ ଯାଇ ପ୍ରଥମଶ୍ରେଣୀ ଡବାରେ ଆସ୍ଥାନ ଜମାଇବାକୁ ଚାକରକୁ କହିଲେ । ମହିଳା ଡବାରେ ନିଜ ଚାକରାଣୀପାଇଁ ସ୍ଥାନ ରଖିବାକୁ ବେଞ୍ଚ ଉପରେ ବିଛଣା ବିଛାଇ ଦେବାକୁ ମଧ୍ୟ କହିଲେ । ଚାକର ସେହିପରି କଲା । ସାହେବ, ତାଙ୍କ ସ୍ତ୍ରୀ ଓ ଅନ୍ୟ ସାହେବ ଯାତ୍ରୀମାନେ ଡବା ପାଖକୁ ଆସିଲେ । ସାହେବଙ୍କ ଚାକର ଡବାଭିତରେ ପଶି ଶୈଳବାଳା ଓ ତାଙ୍କ ଚାକରାଣୀ ଆସ୍ଥାନ ଜମାଇଥିବା ଦେଖିଲେ । ସାହେବଙ୍କ ଚପରାସୀ କହିଲା, "ମେମ୍ ସାହେବା ଦେଶୀ ଲୋକଥିବା ଡବାରେ ଯିବେନାହିଁ ।" ଶୈଳବାଳା ଏହା ଶୁଣି ନ ଶୁଣିଲା ପରି ରହିଲେ । ସାହେବ ଏଥିରେ ଭୀଷଣ ରାଗିଯାଇ ଗାର୍ଡ଼କୁ ଡକାଇଲେ । ଗାର୍ଡ଼ ଶୈଳବାଳାଙ୍କୁ ଟିକେଟ୍ ମାଗିଲେ ଓ ଟିକେଟ୍ ଦେଖି ଆଉ କିଛି ନ କହି ଫେରିଯାଇ ସାହେବଙ୍କୁ କହିଲେ, "ତାଙ୍କର ଟିକେଟ୍ ଅଛି । ତାଙ୍କୁ ମୁଁ ବାହାର କରି ପାରିବି ନାହିଁ । ସେ କ୍ଷମତା ମୋର ନାହିଁ ।" ଶୈଳାବାଳାଙ୍କ ଚାକରର ମଧ୍ୟ ପ୍ରଥମଶ୍ରେଣୀ ଟିକେଟ୍ ଥିଲା । ୟୁରୋପୀୟମାନେ ବସିବା ଡବାର ଉପର ବେଞ୍ଚରେ ସେ ବିଛଣା ପାରି ଶୋଇଲା ଓ ତଳକୁ ଗୋଡ଼ ଲମ୍ବେଇଦେଲା । ଏ ଦୃଶ୍ୟ ଦେଖି ସାହେବମାନେ ବେଶି ରାଗିଗଲେ । କଟକକୁ ଯାଉଥିବା ବହୁ ଭାରତୀୟ ଯାତ୍ରୀ ଏ ଦୃଶ୍ୟ ଦେଖି କୌତୁକ ଅନୁଭବ କରୁଥିଲେ । ଶେଷରେ ରେଲ ଛାଡ଼ିଲା । ଶୈଳବାଳା ସାହେବମାନଙ୍କୁ ଏହିପରିଭାବେ ଉପଯୁକ୍ତ ଶିକ୍ଷା ଦେଲେ ।

କଟକରେ ସମସ୍ତେ ପହଞ୍ଚିବା ପରେ ଦିନେ କଟକ କ୍ଲବ୍‌ରେ ଶୈଳବାଳାଙ୍କ ସହିତ ସେହି ସାହେବ ଓ ମେମ୍‌ମାନଙ୍କର ଦେଖାହେଲା । କ୍ଲବ୍‌ର ସଭ୍ୟମାନେ ଏ ଘଟଣାର ଖବର ପାଇ ପରସ୍ପରରେ ଆଲୋଚନା କରିବାକୁ ଲାଗିଲେ । ଶୈଳବାଳା ମଧୁବାବୁଙ୍କ କନ୍ୟା ଥିବା ଜାଣିପାରି ସାହେବମାନେ ମଧୁବାବୁଙ୍କ ପାଖକୁ ଯାଇ କ୍ଷମା ମାଗିଥିଲେ ।

ମଧୁବାବୁ ଶୈଳବାଳାଙ୍କ ମନୋଭାବ ଓ କାର୍ଯ୍ୟକୁ ନୀତିଦିଗରୁ ସମର୍ଥନ କରି ତାଙ୍କୁ ପ୍ରଶଂସା କରିଥିଲେ; କିନ୍ତୁ ଏହି କାର୍ଯ୍ୟଟି ଭଦ୍ରତା ସହକାରେ କରାଯାଇଥିଲେ, ସୁନ୍ଦର ହୋଇଥାନ୍ତା ଏବଂ ଏତେ ଖର୍ଚ୍ଚାନ୍ତ ହେବାକୁ ପଡ଼ି ନଥାନ୍ତା ବୋଲି କହିଥିଲେ ।

**୧୯୦୩ : ଏହି ବର୍ଷର କେତୋଟି ମୁଖ୍ୟ ଘଟଣା ଓ ସେଥିରେ ମଧୁବାବୁଙ୍କ ସମ୍ପର୍କ** ଜାନୁଆରି ୨ ତାରିଖରେ କଟକରେ ସରକାରଙ୍କ ପକ୍ଷରୁ ଏକ ଦରବାର ବସିଥିଲା । ଏଥିରେ ଯୋଗଦେବା ପାଇଁ ଆସିଥିବା ଗଡ଼଼ଜାତର ରଜା, ମହାରଜା ଓ ମୋଗଲବନ୍ଦୀର ଜମିଦାରମାନଙ୍କୁ ମଧୁବାବୁ ନିଜ କୋଠିକୁ ନିମନ୍ତ୍ରଣ କରିଥିଲେ ।

ଓଡ଼ିଶାର ବିଭିନ୍ନ ସମସ୍ୟା, ବିଶେଷତଃ ଦେଶମିଶ୍ରଣ ସମସ୍ୟା ସେହି ବୈଠକରେ ଆଲୋଚିତ ହୋଇଥିଲି ଏବଂ ପ୍ରତିବର୍ଷ ଏପରି ଏକ ଜାତୀୟ ମେଳା କରିବା ସଂକଳ୍ପ ମଧ୍ୟ ଗୃହୀତ ହୋଇଥିଲା ।

ଫେବୃଆରୀ ୧୪ ତାରିଖରେ ମଧୁବାବୁ ବିଶ୍ୱବିଦ୍ୟାଳୟ ଆଇନ ପ୍ରଣୟନ କମିଶନକୁ ନିଜ ମତ ଜଣାଇଥିଲେ ।

ମାର୍ଚ୍ଚ ୧ ତାରିଖରେ କଟକର ନର୍ମାଲ ସ୍କୁଲର ଉତ୍କଳ ସାହିତ୍ୟ ଆଲୋଚନା ସଭାରେ ମୟୂରଭଞ୍ଜ ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କୁ ମଧୁବାବୁ ଅଭ୍ୟର୍ଥନା ଜଣାଇ ଓଡ଼ିଶା ଦେଶର ହିତ କାର୍ଯ୍ୟରେ ନିଜକୁ ବ୍ରତୀ କରିବାପାଇଁ ଅନୁରୋଧ କରିଥିଲେ ।

ମାର୍ଚ୍ଚ ୧୪ ତାରିଖରେ ମଧୁବାବୁ କଲିକତାରେ ଭାରତୀୟ ଭାଷାତତ୍ତ୍ୱବିତ୍ ଗ୍ରିୟରସନ୍ ଓ ସେନସସ୍ କମିଶନର ରିଜ୍‌ଲିଙ୍କ ସହିତ ଦେଖାକରି ସବୁ ଓଡ଼ିଆଭାଷାଭାଷୀ ଲୋକଙ୍କୁ ଏକ ଶାସନାଧୀନରେ ରଖିବା ସମ୍ପର୍କରେ ଆଲୋଚନା କରିଥିଲେ ଏବଂ ଉଭୟଙ୍କ ସହଯୋଗ କାମନା କରିଥିଲେ ।

ମାର୍ଚ୍ଚ ୧୪ ତାରିଖରେ ନୂତନ ଲାଟ ଜେମ୍‌ସ ବୋର୍ଡ଼ିଲନ୍‌ଙ୍କ ଆଗମନ ଉପଲକ୍ଷେ ମୟୂରଭଞ୍ଜର ମହାରାଜ ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ, କେଉଁଝର ରାଜା, କନିକାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜ, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ପ୍ରଭୃତି ଆସିଥିଲେ । ମଧୁବାବୁ ଏମାନଙ୍କୁ ନିଜ କୋଠିକୁ ନିମନ୍ତ୍ରଣ କରିଥିଲେ । ଦେଶମିଶ୍ରଣ ସମ୍ବନ୍ଧରେ ଏକ ଜାତୀୟ ସଭା ଗଞ୍ଜାମ ଜିଲ୍ଲାରେ ଆହ୍ୱାନ କରିବାପାଇଁ ମଧୁବାବୁ ଖଲ୍ଲିକୋଟ ରାଜାଙ୍କୁ ଅନୁରୋଧ କରିଥିଲେ । ଏହା ପୂର୍ବରୁ ଖ୍ରୀ: ୧୯୦୧ ମସିହାରେ ରମ୍ଭାଠାରେ ଏପରି ଏକ ପ୍ରାରମ୍ଭିକ ସଭା ବସିଥିଲା ଏବଂ ମଧୁବାବୁ ମଧ୍ୟ ସେ ସଭାକୁ ଯାଇଥିଲେ ।

ଅପ୍ରେଲ ମାସ ୧୧ ତାରିଖରେ ବ୍ରହ୍ମପୁରଠାରେ 'ଗଞ୍ଜାମ ଜାତୀୟ ସମିତି'ର ପ୍ରଥମ ଅଧିବେଶନ ବସିଥିଲା ଓ ମଧୁବାବୁ ସଭାପତି ହୋଇଥିଲେ । ଓଡ଼ିଆମାନଙ୍କର ବିଭିନ୍ନ ସମସ୍ୟା ଓ ବିଶେଷକରି ଦେଶମିଶ୍ରଣ ସମ୍ପର୍କରେ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ଏହି ଅଧିବେଶନରେ ମାନ୍ଦ୍ରାଜ ପ୍ରଦେଶ ଅଧୀନରେ ଥିବା ଓଡ଼ିଆଭାଷାଭାଷୀ ଅଞ୍ଚଳ ଓଡ଼ିଶା ସଙ୍ଗେ ମିଶ୍ରଣ ଚାହୁଁଥିବା ପ୍ରକାଶ ପାଇଥିଲା ।

ଅପ୍ରେଲ ୨୫ ତାରିଖରେ କଟକରେ ମଧୁବାବୁଙ୍କ ସଭାପତିତ୍ୱରେ 'ଉତ୍କଳ ସଭା'ର ଏକ ବୈଠକରେ ବ୍ରହ୍ମପୁରରେ ଅନୁଷ୍ଠିତ ହୋଇଥିବା ଗଞ୍ଜାମ ଜାତୀୟ ସମିତିର ପ୍ରସ୍ତାବ-ଗୁଡ଼ିକୁ ସମର୍ଥନ କରାଯାଇଥିଲା । ସମସ୍ତ ଓଡ଼ିଆଭାଷାଭାଷୀ ଅଞ୍ଚଳର ପ୍ରତିନିଧିମାନଙ୍କୁ ନେଇ ଏକ ଜାତୀୟ ସମ୍ମିଳନୀ କଟକରେ ଆହ୍ୱାନ କରିବା ନିମନ୍ତେ ମଧୁବାବୁଙ୍କ ଉପରେ ଭାର ଅର୍ପଣ କରାଗଲା ।

ଓଡ଼ିଶା ବିଭାଜନକୁ ବଙ୍ଗ ପ୍ରଦେଶରୁ ବାହାର କରିଦେଇ ମଧ୍ୟପ୍ରଦେଶ ସଙ୍ଗେ ଯୋଗ କରିଦେବା ନିମନ୍ତେ ସରକାର ଏକ ପ୍ରସ୍ତାବ ବିଚାର କରୁଥିଲେ । ଏହାର ବିରୋଧ କରି

କଟକର ଏକ ପ୍ରତିନିଧି ଦଳର ମୁଖ୍ୟରୂପେ ମଧୁବାବୁ ଓଡ଼ିଶା କମିଶନର କେ. ଜି. ଗୁପ୍ତଙ୍କୁ ଦେଖା କରିଥିଲେ ଓ ଓଡ଼ିଶାର ଲୋକମାନେ ଏହି ପ୍ରସ୍ତାବର ବିରୋଧ କରୁଥିବା ଜଣାଇଥିଲେ । ସ୍ୱତନ୍ତ୍ର ପ୍ରଦେଶ ହେବା ପର୍ଯ୍ୟନ୍ତ ଓଡ଼ିଶାକୁ ବଙ୍ଗପ୍ରଦେଶରୁ ବିଚ୍ଛିନ୍ନ କରା ନ ଯାଉ ବୋଲି ମଧ୍ୟ ସେ ଦାବୀ କରିଥିଲେ ।

ଅକ୍ଟୋବର ୩୧ ତାରିଖରେ କଟକର କନିକା ରାଜବାଟୀରେ ମଧୁବାବୁଙ୍କ ଆହ୍ୱାନକ୍ରମେ ଏକ ସଭା ହୋଇଥିଲା । ଆସନ୍ତା ବଡ଼ଦିନ ( ଡିସେମ୍ବର ଶେଷ ସପ୍ତାହ ) ଛୁଟିରେ ଉତ୍କଳ ଜାତୀୟ ସମ୍ମିଳନୀର ପ୍ରଥମ ଅଧିବେଶନ କରିବାପାଇଁ ସେଠାରେ ସ୍ଥିର ହୋଇଥିଲା ।

ନଭେମ୍ବର ୧ ତାରିଖରେ ବଙ୍ଗ ବ୍ୟବସ୍ଥାପକ ସଭାରେ ଗ୍ରେଟଲାଟ୍ ବୋଡ଼ଲାନ୍ ମଧୁବାବୁଙ୍କୁ ବଙ୍ଗ ବ୍ୟବସ୍ଥାପକ ସଭାର 'କେଟୋ' (Cato) ଆଖ୍ୟା ଦେଇଥିଲେ ।

ଡିସେମ୍ବରରେ ଉତ୍କଳ ସମ୍ମିଳନୀରେ ପ୍ରଥମ ଅଧିବେଶନ କଟକରେ ବସିଥିଲା ଓ ମଧୁବାବୁ ଏଥିରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

## ୧୪ । ଉତ୍କଳ ସମ୍ମିଳନୀର ପୂର୍ବାଭାସ ଓ ମଧୁବାବୁ

ଓଡ଼ିଶାର ସ୍ୱାଧୀନତା ଲୋପ ପରେ ପରେ ପ୍ରାଚୀନ ଉତ୍କଳଭାଷାଭାଷୀ ଭୂମିଖଣ୍ଡର ଗୌରବ କ୍ରମେ ଲୋପ ପାଇଗଲା । ବିଦେଶୀୟ ବା ମୁସଲମାନ ଓ ମରହଟ୍ଟା ରାଜତ୍ୱରେ ଏହାର ଅବସ୍ଥା ଅତ୍ୟନ୍ତ ଦୟନୀୟ ହୋଇଯାଇଥିଲା । ଇଂରେଜ ରାଜତ୍ୱରେ ମଧ୍ୟ ଏହି ଅବସ୍ଥାର କୌଣସି ପରିବର୍ତ୍ତନ ଦେଖା ଯାଇନଥିଲା । ସମଗ୍ର ଉତ୍କଳ ରାଜ୍ୟଟି ଖଣ୍ଡ ବିଖଣ୍ଡିତ ହୋଇ ବିଭିନ୍ନ ଶାସନାଧୀନରେ ରହିବାରୁ ଲୋକଙ୍କ ଦୁର୍ଦ୍ଦଶା ବିଶେଷ ଭାବରେ ବୃଦ୍ଧି ପାଇଲା । ଓଡ଼ିଆମାନେ ସର୍ବତ୍ର ଲାଞ୍ଛିତ ଓ ଅବହେଳିତ ହୋଇ ରହିବାକୁ ବାଧ୍ୟ ହେଉଥିଲେ ।

ଖ୍ରୀ: ୧୮୦୩ରେ ଇଂରେଜମାନେ କଟକ, ପୁରୀ, ବାଲେଶ୍ୱର ଅଧିକାର କଲେ । ତାହାର ପ୍ରାୟ ୩୦ ବର୍ଷ ପୂର୍ବରୁ ଗଞ୍ଜାମ ଓ ଜୟପୁର ସେମାନେ ଅଧିକାର କରିନେଇଥିଲେ ଏବଂ ଏହି ଭୂଖଣ୍ଡକୁ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ରଖିସାରିଥିଲେ । ଇଂରେଜ ରାଜତ୍ୱର ପ୍ରଥମାବସ୍ଥାରେ ଦକ୍ଷିଣ ଓଡ଼ିଶା ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଉତ୍ତର ଓଡ଼ିଶାର ଉପକୂଳ ଅଞ୍ଚଳ ବଙ୍ଗ ସରକାର ଅଧୀନରେ ଓ ସମ୍ବଲପୁରାଦି ରାଜ୍ୟଖଣ୍ଡ ମଧ୍ୟପ୍ରଦେଶ ଅଧୀନରେ ଶାସିତ ହେଉଥିଲା ।

ଅନ୍ୟାନ୍ୟ ପ୍ରଦେଶଗୁଡ଼ିକ ଯେପରି ପରିମାଣରେ ଉନ୍ନତି ଲାଭ କରୁଥିଲେ, ଉତ୍କଳ ଖଣ୍ଡ ସେହିପରି ଉନ୍ନତି କରିପାରୁ ନଥିଲା । ଏକ ସ୍ଥାନୀୟ ସରକାରଙ୍କ ଅଧୀନରେ ସମଗ୍ର ଉତ୍କଳଖଣ୍ଡ ଶାସିତ ହେଉ ନ ଥିବାରୁ ଏ ଦୁର୍ଦ୍ଦଶା ଉପସ୍ଥିତ ହୋଇଥିଲା । ମାନ୍ଦ୍ରାଜ, ବଙ୍ଗ,

ମଧ୍ୟପ୍ରଦେଶ ଏହି ତିନି ପ୍ରଦେଶ ଅଧୀନରେ ଖଣ୍ଡ ଖଣ୍ଡ ହୋଇ ଉତ୍କଳଭୂମି ଶାସିତ ହେଉଥିଲା ଏବଂ ସବୁଠାରେ ଏହି ଖଣ୍ଡଗୁଡ଼ିକ ପ୍ରତ୍ୟେକ ପ୍ରଦେଶର ପ୍ରାନ୍ତରେ କ୍ଷୁଦ୍ର ଅଂଶ ସ୍ୱରୂପ ରହୁଥିବାରୁ ଏହି ଓଡ଼ିଶା ଅଞ୍ଚଳ ପ୍ରତି ଶାସକମାନଙ୍କର ଉପଯୁକ୍ତ ଦୃଷ୍ଟି ପଡ଼ୁ ନ ଥିଲା । ଗଞ୍ଜାମ ଜିଲ୍ଲା ଓ କୋରାପୁଟ ଜିଲ୍ଲା ( ପୂର୍ବର ଭିଶାଖାପାଟଣା ଜିଲ୍ଲାର ଅଂଶବିଶେଷ ) ମାନ୍ଦ୍ରାଜର ଲାଞ୍ଜ, ଓଡ଼ିଶା ( ପୁରୀ, କଟକ, ବାଲେଶ୍ୱର ଜିଲ୍ଲାମାନ ) ବଙ୍ଗର ଲାଞ୍ଜ, ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ଅଧୀନରେ ମଧ୍ୟପ୍ରଦେଶର ଲାଞ୍ଜ ସ୍ୱରୂପ ରହି ଚାଲୁ ଥିବାରୁ ଶାସନ କଳରେ କୌଣସି ପ୍ରକାର ପ୍ରଭାବ ପକାଇ ପାରୁନଥିଲା । ଇଂରେଜ ଶାସନ ପ୍ରଣାଳୀର କଲ୍ୟାଣକର ଫଳ ଅନ୍ୟମାନଙ୍କ ସହ ସମାନ ଭାବରେ ଭୋଗ କରିବାରୁ ସେ ଜାତି ବଞ୍ଚିତ ହୋଇଥିଲା । ଅନ୍ୟମାନେ ପ୍ରଦେଶର ଯାବତୀୟ ଉନ୍ନତିରେ ବିଶେଷ ଭାଗୀଦାର ହେଉଥିଲେ । ସେମାନେ ପ୍ରଦେଶର ରାଜଧାନୀ କଟକରେ ଥିବାରୁ ସେମାନଙ୍କର ପ୍ରଭାବ ସରକାରଙ୍କ ଉପରେ ପଡ଼ୁଥିଲା । ଓଡ଼ିଆ ଅଞ୍ଚଳ ଶାସନକେନ୍ଦ୍ରର ବହୁ ଦୂରରେ ରହୁଥିବାରୁ ଉଚ୍ଚ ହାକିମମାନଙ୍କର ଦୃଷ୍ଟି ଏଥି ପ୍ରତି ଉଚିତ ଭାବରେ ପଡ଼ୁ ନ ଥିଲା । ଅନ୍ୟମାନେ ଶାସନକେନ୍ଦ୍ରର ନିକଟରେ ରହୁଥିବାରୁ ସେମାନେ ପ୍ରଥମରୁ ଉଚ୍ଚ ପଦରେ ରହିବା ସୁବିଧା ପାଇଥିଲେ ଏବଂ ନିଜର ସ୍ୱାର୍ଥପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ପୁଣି, ଅନ୍ୟମାନେ ଓଡ଼ିଆମାନଙ୍କୁ 'ମୁଣ୍ଡଟେକିବାକୁ' ସୁବିଧା ମଧ୍ୟ ଦେଉନଥିଲେ ।

ଓଡ଼ିଆମାନଙ୍କର ଏପରି ଦୁର୍ଦ୍ଦଶାର ମୋଚନ କେବଳ ଏକ-ଶାସନାଧୀନରେ ଶାସିତ ହେବାଦ୍ୱାରା ସମ୍ଭବ ହୋଇପାରିବ ବୋଲି କ୍ରମେ ଇଂରେଜ ଶାସକମାନେ ହୃଦୟଙ୍ଗମ କରୁଥିବାର ଲକ୍ଷ୍ୟ କରାଯାଉଥିଲା । ଏ ଦିଗରେ କେହି କେହି ଉଦାରମନା ଉଚ୍ଚ ଇଂରେଜ ଶାସକ ପ୍ରସ୍ତାବ ମଧ୍ୟ କରୁଥିଲେ ।

ଓଡ଼ିଆ ଜାତିର ଏ ଅସହାୟ ଅବସ୍ଥା ପ୍ରତ୍ୟେକ ଓଡ଼ିଆ ଅନୁଭବ କରୁଥିଲେ; କିନ୍ତୁ ସଂଗଠନ ନ ଥିବାରୁ ଏହାର ପ୍ରତିକାର ଦିଗରେ ଉଦ୍ୟମ ହୋଇପାରୁ ନ ଥିଲା । 'ଉତ୍କଳ ସମ୍ମିଳନୀ'ର ପ୍ରତିଷ୍ଠା ଜାତୀୟ ଆକାଙ୍କ୍ଷାର ପୂରଣ ଦିଗରେ ଏକମାତ୍ର ସମ୍ବଳରୂପେ ଦେଖା-ଦେଇଥିଲା । ସମ୍ମିଳନୀ ମୃତକଳ୍ପ ଓଡ଼ିଆ ଜାତିର ପିଣ୍ଡରେ ନବଜାଗରଣ ଆଣି ଦେଇଛି, ଜାତିକୁ ପୁନର୍ଜୀବିତ କରିଛି ।

'ଉତ୍କଳ ସମ୍ମିଳନୀ'ର ଆବିର୍ଭାବ ପୂର୍ବରୁ ଯେଉଁ କେତେକ ଉଦ୍ୟମ ହୋଇଥିଲା, ସେଗୁଡ଼ିକୁ ଏ ଦିଗରେ ବିଶେଷ ପଦକ୍ଷେପରୂପେ ଗ୍ରହଣ କରିବା ଉଚିତ ।

**କେତେକ ପଦକ୍ଷେପ** : (୧) ୧୭।୮।୧୮୮୨—କଟକରେ 'ଓଡ଼ିଶା ଆସୋସିଏସନ୍' ବା 'ଉତ୍କଳ ସଭା' ସ୍ଥାପିତ ହୋଇଥିଲା । ମଧୁବାବୁ ଏହାର ଜଣେ ଆବାହକ ଥିଲେ । ସଭା ଗଠିତ ହେବାପରେ ସେ ଏହାର ପ୍ରଥମ ଉପସଭାପତି ହୋଇଥିଲେ । ଓଡ଼ିଆ-ମାନଙ୍କର ସର୍ବବିଧ ହିତକର କାର୍ଯ୍ୟ ଏହି ସଭାର ଉଦ୍ଦେଶ୍ୟ ଥିଲା ।

(୨) ୧୮।୧୧।୧୮୮୫—ତତ୍କାଳୀନ ବଙ୍ଗପ୍ରଦେଶ (ବିହାର, ଓଡ଼ିଶା, ବଙ୍ଗ, ଆସାମ)ର ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର (ଛୋଟଲାଟ୍) ସାର୍ ରିଭର୍ଜିସ ଟମସନ୍ କଟକ ପରିଦର୍ଶନରେ ଆସିଥିଲେ । ସେହି ଅବସରରେ ଓଡ଼ିଆ ଅଞ୍ଚଳଗୁଡ଼ିକୁ ଏକତ୍ରିତ କରିବାପାଇଁ ଏକ ସ୍ମାରକପତ୍ର ଉତ୍କଳସଭା ତରଫରୁ ଲାଟଙ୍କୁ ଦିଆଯାଇଥିଲା । ଏଥିରେ ମଧୁବାବୁ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସ୍ମାରକପତ୍ରଟି ଲାଟଙ୍କ ଦରବାର ସଭାରେ ମଧୁବାବୁ ପାଠ କରିଥିଲେ ।

(୩) ୨୪।୧୧।୧୮୮୮—ତତ୍କାଳୀନ ବଙ୍ଗ ଲାଟ ସାର୍ ଷ୍ଟୁଆର୍ଟ ବେଲି (Bailey) କଟକ ପରିଦର୍ଶନରେ ଆସିଥିଲେ । ଦରବାର ସଭାରେ ଉତ୍କଳସଭା ତରଫରୁ ଦେଶ-ମିଶ୍ରଣ ଦାବୀକରି ସ୍ମାରକପତ୍ର ଦିଆଯାଇଥିଲା ।

(୪) ଖ୍ରୀ: ୧୮୯୫—ସମ୍ବଲପୁର ଜିଲ୍ଲାର କୋର୍ଟ କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ ହିନ୍ଦୀ ପ୍ରଚଳନ କରିବାପାଇଁ ମଧ୍ୟପ୍ରଦେଶର ଚିଫ୍ କମିଶନର୍ ସାର୍ ଜନ ଉଡ୍‌ବର୍ଣ୍ଣ ପ୍ରସ୍ତାବ ଦେଇଥିଲେ । ସମଗ୍ର ଦେଶରେ ଏହାର ପ୍ରତିବାଦ ହୋଇଥିଲା । ବିଭିନ୍ନ ଓଡ଼ିଆ ପତ୍ରପତ୍ରିକା ଓ ସଭାସମିତିମାନଙ୍କରେ ଓଡ଼ିଆମାନେ ଏହାର ବିରୋଧ କରିଥିଲେ ।

କଟକରେ ଏହାର ତୀବ୍ର ପ୍ରତିବାଦ ହୋଇଥିଲା । ଏହିବର୍ଷ ଜୁନ୍‌ମାସ ୨୦ ତାରିଖରେ ଉତ୍କଳସଭା ତରଫରୁ ଏକ ପ୍ରତିବାଦ ସଭା ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ ଏବଂ ସେହି ସଭାର ନିର୍ଦ୍ଦେଶ ଅନୁସାରେ ବଡ଼ଲାଟ ଲର୍ଡ ଏଲ୍‌ଗିନ୍‌ଙ୍କଠାକୁ ଏକ ସ୍ମାରକପତ୍ର ପ୍ରେରିତ ହୋଇଥିଲା । ସେହି ସ୍ମାରକପତ୍ରରେ ସମ୍ବଲପୁରରେ ଓଡ଼ିଆ ଭାଷା ଲୋପ ଓ ହିନ୍ଦୀଭାଷା ପ୍ରଚଳନ ପ୍ରସ୍ତାବର ଘୋର ପ୍ରତିବାଦ କରାଯାଇଥିଲା ଏବଂ ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ଅଲଗା କରିଦେଇ ଓଡ଼ିଶା ଡିଭିଜନ୍ ସହିତ ମିଶାଇଦେବାପାଇଁ ମଧ୍ୟ ଦୃଢ଼ ଦାବୀ ହୋଇଥିଲା । ଏହି ପ୍ରସଙ୍ଗରେ ଓଡ଼ିଶା ଡିଭିଜନ୍‌ର କମିଶନର କୁକ୍ ସାହେବଙ୍କ ସହିତ ମଧୁବାବୁ ଦେଖାକରି ସବୁ ଉପାନ୍ତ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରି ଓଡ଼ିଶା ସହିତ ମିଶାଇ ଦେବାପାଇଁ ନିବେଦନ କରିଥିଲେ । କୁକ୍ ସାହେବ ଏହି ପ୍ରସ୍ତାବକୁ ସମର୍ଥନ କରି ଏକ ରିପୋର୍ଟ ବଙ୍ଗ ସରକାରଙ୍କୁ ଦେଇଥିଲେ ।

(୫) ଖ୍ରୀ: ୧୮୯୭—ମଧୁବାବୁ ପ୍ରଥମ ଥର ବିଲାତ ଯାତ୍ରାରେ ସେପ୍‌ଟେମ୍ବର ୨୦ ତାରିଖ ଦିନ ଭାରତ ସଚିବ (Secretary of State for India) ଲର୍ଡ ଜର୍ଜ ହାମିଲ୍‌ଟନ୍ (Lord George Hamilton) ଙ୍କ ସହିତ ଦେଖାକରି ଓଡ଼ିଶା ଦେଶ-ମିଶ୍ରଣ ସମ୍ପର୍କରେ ତାଙ୍କ ରଚିତ ଏକ ମୁଦ୍ରିତ ପୁସ୍ତିକା ଉପହାର ଦେଇଥିଲେ । ପୁସ୍ତିକାଟି ଭାରତ ସଚିବଙ୍କ ନାମରେ ଉତ୍ସର୍ଗ କରାଯାଇଥିଲା ।

ମଧୁବାବୁ ବିଲାତରୁ ଫେରିଆସି ଓଡ଼ିଶା ଦେଶ-ମିଶ୍ରଣ ଆନ୍ଦୋଳନ ନିମନ୍ତେ ଉତ୍କଳ ସଭାର ସଂପ୍ରସାରଣ ଦିଗରେ ଉଦ୍ୟମ କରିଥିଲେ ।

(୬) ଖ୍ରୀ: ୧୯୦୦—ମଧୁବାବୁ ସିମଲା ଯାଇ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସହିତ ସାକ୍ଷାତକରି ଓଡ଼ିଶାର ବିଚ୍ଛିନ୍ନ ସମସ୍ୟା ସମ୍ବନ୍ଧରେ ଜଣାଇଥିଲେ ଏବଂ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ଦାବୀ ଜଣାଇଥିଲେ ।

(୭) ଖ୍ରୀ: ୧୯୦୦—ଡିସେମ୍ବର ୧୬ ତାରିଖରେ ବଡ଼ଲାଟ ଲର୍ଡ଼ କର୍ଜନ ଓଡ଼ିଶାକୁ ଆସିଥିଲେ । ଆଗରୁ ବଙ୍ଗ ସରକାର ବଡ଼ଲାଟ ଓଡ଼ିଶାକୁ ଆସିବା ମନସ୍ଥ କରିଥିବା ବିଷୟ ଜାଣି ନଥିଲେ । ମଧୁବାବୁଙ୍କ ସାକ୍ଷାତ୍ ପରେ ବଡ଼ଲାଟ ସାଙ୍ଗେ ସାଙ୍ଗେ ତାଙ୍କର ଓଡ଼ିଶା ଗସ୍ତପାଇଁ ସମସ୍ତ ଆୟୋଜନ କରିବା ନିମନ୍ତେ ବଙ୍ଗ ସରକାରଙ୍କୁ ଆଦେଶ ଦେଇଥିଲେ । ବଡ଼ଲାଟ ମଧୁବାବୁଙ୍କ ବିରାଟ ପ୍ରତିଭାରେ ମୁଗ୍ଧ ହୋଇ ଯାଇଥିଲେ । ସାକ୍ଷାତ୍ ପରେ ଲର୍ଡ଼ କର୍ଜନ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ଡାକି କହିଲେ, "ତୁମେ ମଧୁବାବୁଙ୍କୁ କହ, ମୁଁ ତାଙ୍କୁ କେବଳ ଜଣେ ଓଡ଼ିଆରୂପେ ନୁହେଁ, ଜଣେ ମନୁଷ୍ୟରୂପେ ଦେଖିବାକୁ ଚାହେଁ ।"

(୮) ଖ୍ରୀ: ୧୯୦୧—ଅପ୍ରେଲ ମାସରେ ଗଞ୍ଜାମଜିଲ୍ଲା ଅନ୍ତର୍ଗତ ଖଲିକୋଟର ଜମିଦାର ରାଜା ଶ୍ରୀ ହରିହର ମର୍ଦ୍ଦରାଜଙ୍କ ସହିତ ମଧୁବାବୁ ଚିଠିପତ୍ର ଲେଖାଲେଖି କରି ତାଙ୍କର ଦେଶମିଶ୍ରଣ ସମ୍ପର୍କରେ ମତାମତ ଜାଣିବାକୁ ଚାହିଁଥିଲେ । ଏହା ପୂର୍ବରୁ କେନ୍ଦ୍ର ଓ ପ୍ରାଦେଶିକ ସରକାରଙ୍କର କେହି କେହି ଉଚ୍ଚ କର୍ମଚାରୀ ମଧୁବାବୁଙ୍କୁ କହିଥିଲେ, ଆପଣମାନେ ତ ଓଡ଼ିଶାର ଲୋକ, ଆପଣମାନେ ଅନ୍ୟ ସବୁ ଉପାନ୍ତ ଓଡ଼ିଆ ଅଞ୍ଚଳ ଓଡ଼ିଶା ସଙ୍ଗେ ମିଶୁ ବୋଲି କହିବା ସ୍ୱାଭାବିକ; କିନ୍ତୁ ଉପାନ୍ତ ଅଞ୍ଚଳର ଓଡ଼ିଆମାନେ ଓଡ଼ିଶା ସହିତ ମିଶିବାକୁ ଚାହାନ୍ତି କି ନାହିଁ ତାହା ଜାଣିବା ଆବଶ୍ୟକ ନୁହେଁ କି ?" ମଧୁବାବୁ ଏ ସୂଚନା ପାଇ ଉପାନ୍ତ ଅଞ୍ଚଳର ବିଶିଷ୍ଟ ଲୋକଙ୍କ ସହିତ ମତାମତ ବିନିମୟ କରିବାକୁ ଆରମ୍ଭ କଲେ । ନିକଟରେ ହରିହର ମର୍ଦ୍ଦରାଜ, ମୟୂରଭଞ୍ଜର ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଭଗିନୀଙ୍କୁ ବିବାହ କରିଥିଲେ । ମଧୁବାବୁଙ୍କ ସହିତ ମୟୂରଭଞ୍ଜ ମହାରାଜାଙ୍କର ସଦ୍‌ଭାବ ଥିଲା । ସେହି ସୂତ୍ରରେ ଖଲ୍ଲିକୋଟ ରାଜାଙ୍କଠାରୁ ମଧୁବାବୁ ଚିଠିପତ୍ର ଆଦାନ-ପ୍ରଦାନ ଆରମ୍ଭ କଲେ । ଏ ସମ୍ପର୍କରେ. ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଏକତ୍ରିତ କରି ସମୂହ ଆଲୋଚନାର କ୍ଷେତ୍ର ହରିହର ମର୍ଦ୍ଦରାଜ ପ୍ରସ୍ତୁତ କରିଦେଲେ । ତାଙ୍କର ଚିଲିକାକୂଳସ୍ଥ ନବନିର୍ମିତ ବିରାଟ ବଙ୍ଗଳାରେ ଏକ ଆଲୋଚନା ସଭା ଆହ୍ୱାନ କଲେ । ଗଞ୍ଜାମ ଜିଲ୍ଲାର ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତି ଓ ଜମିଦାର ଏଥିରେ ଯୋଗ ଦେଇଥିଲେ । ମଧୁବାବୁ ମଧ୍ୟ ଏହି ସଭାରେ ଯୋଗଦାନ କରିଥିଲେ ।

(୯) ସମ୍ବଲପୁରରେ କଚେରୀଭାଷାରୂପେ ଓଡ଼ିଆ ଭାଷା ଚାଲୁଥିଲା । ମଧ୍ୟପ୍ରଦେଶ ସରକାର ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ଓଡ଼ିଆ ଭାଷାକୁ କଚେରୀ ଭାଷା ନ କରି ହିନ୍ଦୀ ପ୍ରଚଳନ କରିବାପାଇଁ ଆଦେଶ ଜାରୀ କରିଥିଲେ । ସମ୍ବଲପୁର ଓ ଅନ୍ୟାନ୍ୟ ଅଞ୍ଚଳର ଓଡ଼ିଆମାନେ ଏହାର ଘୋର ପ୍ରତିବାଦ କରିଥିଲେ, ଫଳରେ ଓଡ଼ିଆମାନଙ୍କର ବିଜୟ ହେଲା । ଓଡ଼ିଆ ଭାଷା ପୁଣି କଚେରୀ ଭାଷାରୂପେ ଚାଲିଲା ।

ଏହି ଘଟଣା ଓଡ଼ିଆମାନଙ୍କ ମନରେ ଅପୂର୍ବ ଉତ୍ସାହ ଜାତ କରିଥିଲା । ସମ୍ମିଳିତ ଉଦ୍ୟମର ଫଳ କଣ ତାହା ଓଡ଼ିଆମାନେ ଅନୁଭବ କଲେ । ସମ୍ମିଳନୀର ପ୍ରତିଷ୍ଠା ପୂର୍ବରୁ ଓଡ଼ିଆ ଜାତିର ପ୍ରାଣର ଆବେଗ 'ଉତ୍କଳ ସମ୍ମିଳନୀ'ର ସୃଷ୍ଟିକର୍ତ୍ତାମାନେ ବ୍ୟକ୍ତ କରିଥିଲେ । "ସମସ୍ତ ଉତ୍କଳ-ଭାଷୀ ପ୍ରଦେଶର ଲୋକମାନେ ଆଜି ପର୍ଯ୍ୟନ୍ତ ନାନାଦି କାରଣରୁ ଭିନ୍ନ ଭିନ୍ନ ହୋଇ ନିଜେ ନିଜକୁ ନଚିହ୍ନି ଯେ ଯେଉଁଠାରେ ପଡ଼ିରହିଥିଲେ । ସବୁ ଭାଇଯାକ କପରି ଥରେହେଲେ ଏକାଠେଇଁ ହୋଇପାରିବା—ଏହି ଭାବ କ୍ରମଶଃ ସମସ୍ତଙ୍କ ମନରେ ଉଦିସ୍ତ ହୋଇଥିବାର ଢେର ପ୍ରମାଣ ମିଳିଅଛି । ଭାଷାସୂତ୍ରରେ ଏ ଭାବ ପ୍ରଥମେ ଉଦିତ ହେଲା । × × ଯେତେବେଳେ ମୃତ ଓଡ଼ିଆ ଭାଷା ସମ୍ବଲପୁରରେ ପୁନର୍ବାର ଜୀଇଁ ଉଠିଲା, ସେତେବେଳେ ଉତ୍କଳ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଆନନ୍ଦରେ ମାତିଉଠିଲା । ସେହିଦିନ ଉତ୍କଳବାସୀ ଅଞ୍ଚଳର ଏକ ସୀମାରେ ବାସକରୁଥିବା ଓଡ଼ିଆଙ୍କ ମଧ୍ୟରେ ଅନ୍ୟ ସୀମାରେ ବାସ କରୁଥିବା ଓଡ଼ିଆଙ୍କ ମଧ୍ୟରେ ଭାଇଭାବ ଥିବାର ପୂର୍ଣ୍ଣ ପ୍ରମାଣ ମିଳିଲା । ଆମ୍ଭେମାନେ ବିଗ୍ଭରୁ, ସେହି ଦିନଠାରୁ ଉତ୍କଳୀୟମାନଙ୍କର ଗୋଟିଏ ନବଯୁଗ ଆରମ୍ଭ ହେଲା ।" ( ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନର ବିବରଣୀ, ୧୯୦୩ )

ଏହି 'ଭାଇ-ଭାବ'ର ସୂଚନା ମିଳିବାରୁ ଏହାର ସୁଯୋଗ ନେଇ କଟକର ବିଶିଷ୍ଟ ଓଡ଼ିଆମାନେ ମଧୁସୂଦନ ଦାସଙ୍କ ନେତୃତ୍ୱରେ କାର୍ଯ୍ୟ ଆରମ୍ଭ କରିଦେଲେ । ସମଗ୍ର ଓଡ଼ିଆଜାତି ପାଇଁ ଏକ ପ୍ରତିନିଧିମୂଳକ ମହାସମିତି ଗଠନ କରିବା ହିଁ ଲକ୍ଷ୍ୟ ହେଲା ।

କଟକରେ ଖ୍ରୀ: ୧୯୦୩ ଜାନୁଆରୀ ମାସର ୨ ତାରିଖରେ ଯେଉଁ ଦରବାର ହୋଇଥିଲା, ସେଥିରେ ଯୋଗଦେବାପାଇଁ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତର ବହୁ ରାଜା ଓ ଜମିଦାର, ନେତୃସ୍ଥାନୀୟ ବ୍ୟକ୍ତି ନିମନ୍ତ୍ରିତ ହୋଇଥିଲେ । ଏ ଭାଇମାନଙ୍କର ଉପସ୍ଥିତିର ସୁଯୋଗ ନେବାପାଇଁ ମଧୁବାବୁ ପ୍ରମୁଖ ନେତାମାନେ ଉଦ୍ୟମ କଲେ । କଟକ ବାହାରୁ ନିମନ୍ତ୍ରିତ ରାଜା ମହାରାଜା ଓ ଭଦ୍ରବ୍ୟକ୍ତିମାନେ ଯୋବ୍ରାଘାଟରେ ମହାନଦୀରେ ପହଞ୍ଚିବା ପରେ ମଧୁବାବୁଙ୍କ ଘୋଡ଼ାଗାଡ଼ିରେ ସେମାନେ ସହରକୁ ଆସି ନିଜ ନିଜ ବସାରେ ରହିଥିଲେ । କଟକ ସହରରେ ଏତେ ଓଡ଼ିଆ ରାଜା ଓ ଜମିଦାରଙ୍କ ଉପସ୍ଥିତିର ସୁବିଧା ନେବା ଓଡ଼ିଆ ଆନ୍ଦୋଳନ ପକ୍ଷରେ ନିତାନ୍ତ କର୍ତ୍ତବ୍ୟ ମନେକରି ମଧୁବାବୁ ଏମାନଙ୍କୁ ନିଜ କୋଠିକୁ ନିମନ୍ତ୍ରଣ କରିଥିଲେ । ସମସ୍ତଙ୍କ ଉପସ୍ଥିତିରେ ଦେଶମିଶ୍ରଣ ସକାଶେ ସମ୍ମିଳିତ ଚେଷ୍ଟା ଆବଶ୍ୟକ ଥିବା ଉପଲବ୍ଧି କରାଗଲା ।

'ଉତ୍କଳ ସମ୍ମିଳନୀ'ର ଜନ୍ମର ଇତିହାସ 'ଉତ୍କଳ ଦୀପିକା'ରେ ଏପରିଭାବରେ ପ୍ରକାଶ ପାଇଥିଲା—

"କଟକ ଦରବାର ଉପଲକ୍ଷେ ବିବିଧ ଉତ୍ସବ ୨ । ୧ । ୧୯୦୩ ତାରିଖରେ କମିଶନରଙ୍କ କୋଠି ହତା ମଧ୍ୟରେ ନୃତ୍ୟ, ଗୀତ, ରୋସନାଇ ହୋଇଥିଲା । ଅଧିକାଂଶ ଗଡ଼ଜାତର ରାଜା ଓ ଜମିଦାର କଟକ ଆସିଥିଲେ ଓ ତହିଁରେ ଯୋଗଦେଇଥିଲେ ।

୬ । ୧ । ୧୯୦୩ ତାରିଖ ଦିନ ମାନ୍ୟବର ମଧୁସୂଦନ ଦାସଙ୍କ କୋଠିରେ ଉତ୍କଳୀୟ ଭଦ୍ରମଣ୍ଡଳୀଙ୍କ ସମ୍ମିଳନୀ ହୋଇଥିଲା । ରାଜା ଓ ଜମିଦାରମାନେ ସେଠାରେ ଉପସ୍ଥିତ ଥିଲେ । ତାଙ୍କ ହତାର ମଣ୍ଡପ ଉତ୍ତମରୂପେ ସଜାସଜ ହୋଇଥିଲା । ପ୍ରଥମେ ଜାତୀୟ ସଙ୍ଗୀତ ବୋଲାଯାଇଥିଲା । ଉପସ୍ଥିତ ରାଜା, ଜମିଦାର ଓ ଭଦ୍ରମଣ୍ଡଳୀଙ୍କୁ ଆହ୍ୱାନ କରି ମଧୁବାବୁ ଏକତାର ଅଭାବ ବିଷୟରେ ଏକ ବକ୍ତୃତା ପ୍ରଦାନ କରିଥିଲେ । ଏକଯୋଗ ଦେଇ ଜନ୍ମଭୂମିର ସେବା କରିବାକୁ ସେ ସମସ୍ତଙ୍କୁ ଅନୁରୋଧ କରିଥିଲେ । ତାହାକୁ ଅନ୍ୟ ବକ୍ତାମାନେ ସମର୍ଥନ କରିଥିଲେ ଓ ସମସ୍ତେ ଦଣ୍ଡାୟମାନହୋଇ ସଭାକାର୍ଯ୍ୟରେ ସନ୍ତୋଷ ପ୍ରକାଶ କରିଥିଲେ । ପରିଶେଷରେ ଆଠଗଡ଼ ରାଜା ଶ୍ରୀ ବିଶ୍ୱନାଥ ବେବର୍ତ୍ତା ପଟ୍ଟନାୟକ ପ୍ରସ୍ତାବ କଲେ କି ପ୍ରତିବର୍ଷ ଓଡ଼ିଶାର ମହାନଗରୀ କଟକରେ ଏହିପରି ଏକ ସମ୍ମିଳନୀର ଗୋଟିଏ ଦିବସ ଧାର୍ଯ୍ୟ କରାଯାଉ । ସମସ୍ତ ରାଜନ୍ୟବର୍ଗ ଓ ଉପସ୍ଥିତ ଭଦ୍ରମଣ୍ଡଳୀଙ୍କ ମତ ପଚାରିସିବାରେ ସମସ୍ତଙ୍କର ମୁଖସ୍ୱରୂପ କେନ୍ଦୁଝରର ମହାରାଜା ଶ୍ରୀ ଧନୁର୍ଜ୍ଜୟ ନାରାୟଣ ଭଞ୍ଜଦେବ ଏପରି ସମ୍ମିଳନୀର ଭାର ମଧୁସୂଦନ ଦାସଙ୍କ ଉପରେ ନ୍ୟସ୍ତ କଲେ ଭଲହେବ ବୋଲି ପ୍ରସ୍ତାବ କଲେ । କରତାଳି ମଧ୍ୟରେ ଓ ବିପୁଳ ଉଲ୍ଲାସରେ ତାହା ଧାର୍ଯ୍ୟ ହେଲା ।”

(ଉତ୍କଳ ଦୀପିକା, ୧୦ । ୧ । ୧୯୦୩ )

(୧୦) ୭ । ୩ । ୧୯୦୩—ବଙ୍ଗପ୍ରଦେଶର ଲେଫ୍ଟେନାଣ୍ଟ ସାର୍ ଜେମ୍ସ ବୋର୍ଡିଲନ୍ କଟକ ପରିଦର୍ଶନରେ ଆସିଥିଲେ । ଓଡ଼ିଶା ଓ ଓଡ଼ିଶା ଗଡ଼ଜାତର ବହୁ ରାଜା, ମହାରାଜା ଓ ଜମିଦାର ମଧ୍ୟ ଏହି ଉପଲକ୍ଷେ କଟକ ଆସିଥିଲେ । ମୟୂରଭଞ୍ଜ ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ଦେବ, ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ପ୍ରଭୃତି ଆସିଥିଲେ । ଏମାନଙ୍କୁ ମଧୁବାବୁ ନିଜ କୋଠିକୁ ନିମନ୍ତ୍ରଣ କରିଥିଲେ । ଦେଶ-ମିଶ୍ରଣ ସମ୍ବନ୍ଧରେ ମଧୁବାବୁ ଏକ ଉତ୍ତେଜନା-ପୂର୍ଣ୍ଣ ବକ୍ତୃତା ଦେଇଥିଲେ । ଉପସ୍ଥିତ ରାଜା ଜମିଦାରମାନେ ବିଶେଷ ଉତ୍ସାହ ଦେଖାଇଥିଲେ । ଗଡ଼ଜାତର ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ (କମିଶନର ସାହେବ ସୁପରି-ଣ୍ଟେଣ୍ଡେଣ୍ଟ ଥିଲେ) ଡେପୁଟି-କଲେକ୍ଟର ଶ୍ରୀ ସୁଦାମ ଚରଣ ନାୟକ ରାଜାମହାରାଜାମାନଙ୍କୁ ଏ ଦିଗରେ ଆକୃଷ୍ଟ କରିବାପାଇଁ ବହୁ ଉଦ୍ୟମ କରିଥିଲେ । ତାଙ୍କ ଚେଷ୍ଟାରେ ଗଡ଼ଜାତର ରାଜାମାନେ ଉତ୍କଳ ସମ୍ମିଳନୀରେ ଯୋଗ ଦେଇଥିଲେ କହିଲେ ଚଳେ । ମଧୁବାବୁଙ୍କ ଜୁନିଅର୍‌ମାନେ ମଧ୍ୟ ମଧୁବାବୁଙ୍କୁ ଏ କ୍ଷେତ୍ରରେ ବହୁତ ସାହାଯ୍ୟ କରୁଥିଲେ । ମୟୂରଭଞ୍ଜ ମହାରାଜା ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ଗଞ୍ଜାମରେ ଏକ ଜାତୀୟ ସଭା କରାଇବାପାଇଁ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ଆଗ୍ରହ ପ୍ରକାଶ କରି ନିଜେ ସମସ୍ତ ଦାୟିତ୍ୱ ବହନ କରିବା ନିମନ୍ତେ ପ୍ରସ୍ତୁତଥିବା ପ୍ରକାଶ କରିଥିଲେ ।

(୧୧) ଖ୍ରୀ: ୧୯୦୩ ଏପ୍ରିଲ୍ ୧୧ ଓ ୧୨ ତାରିଖରେ ଗଞ୍ଜାମର ବ୍ରହ୍ମପୁରଠାରେ ଦେଶ-ମିଶ୍ରଣ ସମ୍ବନ୍ଧରେ ଗଞ୍ଜାମର ମତାମତ ଦୃଢ଼ଭାବରେ ପ୍ରକାଶକରି ଜାତୀୟଭାବରେ

ସମସ୍ତଙ୍କୁ ଏକତ୍ରିତ କରିବା ଉଦ୍ଦେଶ୍ୟରେ ଏକ ବିରାଟ ସମ୍ମିଳନୀ ହୋଇଥିଲା । ଏହାର ନାମ ହେଲା 'ଗଞ୍ଜାମ ଜାତୀୟ ସମିତି' । ମଧୁବାବୁ ଏ ସମ୍ମିଳନରେ ଯୋଗ ଦେଇଥିଲେ । ରାଜା ହରିହର ମର୍ଦ୍ଦରାଜ ମୁଖ୍ୟ ଆବାହକ ଓ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ମୁଖ୍ୟ ସଂଗଠକ ଥିଲେ । ଏହି 'ଗଞ୍ଜାମ ସମ୍ମିଳନୀ' ବା 'ଗଞ୍ଜାମ ଜାତୀୟ ସମିତି'ର ତରଫରୁ ଦେଶ-ମିଶ୍ରଣ ଦାବୀକରି ବଡ଼ଲାଟଙ୍କୁ ଏକ ସ୍ମାରକପତ୍ର ପଠାଯାଇଥିଲା । ଗଞ୍ଜାମ ଜିଲ୍ଲାବାସୀ ଓଡ଼ିଶା ସହିତ ମିଶିବାକୁ ଚାହୁଁଛନ୍ତି ଏହା ଏହି ସ୍ମାରକପତ୍ରର ମୁଖ୍ୟ ଉଦ୍ଦେଶ୍ୟ ଥିଲା । କେନ୍ଦ୍ର-ସରକାରଙ୍କ ଉଚ୍ଚ କର୍ମଚାରୀ, ବଙ୍ଗ ଓ ମାନ୍ଦ୍ରାଜର ମୁଖ୍ୟ ଉଚ୍ଚ କର୍ମଚାରୀମାନେ ଗଞ୍ଜାମବାସୀଙ୍କ ଦେଶ-ମିଶ୍ରଣ ସପକ୍ଷରେ ଆକାଙ୍କ୍ଷା ଥିବା ଜାଣିପାରିଲେ । ଏ ପ୍ରଥମ ପଦକ୍ଷେପ ହେଲା ।

'ଗଞ୍ଜାମ ଜାତୀୟ ସମିତି'ର ଅଧିବେଶନରେ ନିମ୍ନଲିଖିତ ପ୍ରସ୍ତାବମାନ ଧାର୍ଯ୍ୟ ହୋଇଥିଲା ।

(କ) ଗଞ୍ଜାମର ଓଡ଼ିଆମାନଙ୍କୁ ଇଂରେଜୀ ଓ ଓଡ଼ିଆ ଭାଷାରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା କରିବା ନିମନ୍ତେ ଶ୍ରୀ ଶ୍ରୀବତ୍ସ ପଣ୍ଡା, ନରସିଂହ ଦାସ, ଭଗବାନ ରଥ, ହରିହର ତ୍ରିପାଠୀ, ବଳଭଦ୍ର ମହାପାତ୍ର, ରଙ୍ଗାଭଟ୍ଟ, ଗୁନ୍ନାୟା ଶାସ୍ତ୍ରୀ, ଶ୍ୟାମସୁନ୍ଦର ରାଜଗୁରୁ, ନୀଳମଣି ବିଦ୍ୟାରତ୍ନ ଓ ମଥୁରି ସାହୁଙ୍କୁ ନେଇ ଏକ କମିଟି ଗଠିତ ହେଉ ।

(ଖ) ଓଡ଼ିଆ ସାହିତ୍ୟର ଉନ୍ନତି, (ଗ) ଲାଇବ୍ରେରି ସ୍ଥାପନ, (ଘ) ଓଡ଼ିଆ ପାଠ୍ୟ-ପୁସ୍ତକ ରଚନା, (ଙ) ଜାତୀୟ ସମିତିର ବାର୍ଷିକ ଅଧିବେଶନ ଜିଲ୍ଲାର ବିଭିନ୍ନ ସ୍ଥାନରେ ପ୍ରତିବର୍ଷ ଆୟୋଜନ ହେଉ, (ଚ) ପ୍ରାଚୀନ ଓ ଆଧୁନିକ ଲେଖକମାନଙ୍କୁ ସମାଦର କରାଯାଉ, (ଛ) ଶୁଭାଶୁଭ କାର୍ଯ୍ୟରେ ବ୍ୟୟ ସଂକୋଚନ ହେଉ ।

ଖ୍ରୀ: ୧୯୦୩ ଏପ୍ରିଲ୍ ତା ୧୧ ଓ ତା ୧୨ରେ ଏହି ସମ୍ମିଳନୀ ବସିଥିଲା । ଏହି 'ଗଞ୍ଜାମ ଜାତୀୟ ସମିତି' ଅଧିବେଶନରେ ପାରଳାଖେମୁଣ୍ଡିର ସାହିତ୍ୟିକ, ଦେଶଭକ୍ତ ଓ ଗଞ୍ଜାମର ପ୍ରଥମ ବି.ଏ. ଡିଗ୍ରୀଧାରୀ ବାବୁ ଶ୍ୟାମସୁନ୍ଦର ରାଜଗୁରୁ ସଭାପତି ହୋଇଥିଲେ । ଗଞ୍ଜାମର ବହୁ ଓଡ଼ିଆ ଜମିଦାର, ମହାଜନ, ସମ୍ଭ୍ରାନ୍ତ ଲୋକ ଓ ଅନ୍ୟ ଭାଷାଭାଷୀ ଅଧିବାସୀ ବହୁସଂଖ୍ୟାରେ ଯୋଗଦେଇଥିଲେ । କଟକରୁ ଶ୍ରୀ ମଧୁସୂଦନ ଦାସ, ନନ୍ଦକିଶୋର ବଳ, କୃଷ୍ଣପ୍ରସାଦ ଚୌଧୁରୀ, ଗୋପାଳଚନ୍ଦ୍ର ପ୍ରହରାଜ, ବାଲେଶ୍ୱରରୁ ଫକୀରମୋହନ ସେନାପତି, ପୁରୀରୁ ଶ୍ରୀ ରାମଚନ୍ଦ୍ର ଦାସ, ଗୋପବନ୍ଧୁ ଦାସ, ବକ୍ସି ଲୋକନାଥ ବିଦ୍ୟାଧର ମହାପାତ୍ର, ପଣ୍ଡିତ ବାସୁଦେବ କାବ୍ୟତୀର୍ଥ, ରଘୁନାଥ ରାଓ ଯୋଗ ଦେଇଥିବାରୁ ଗଞ୍ଜାମର ଲୋକେ ଖୁବ୍ ଉତ୍ସାହିତ ହୋଇଥିଲେ । ମଧୁବାବୁ ଏ ସମ୍ମିଳନୀକୁ ଆସିଛନ୍ତି, ଏହା ଶୁଣିବାକ୍ଷଣି ସହରରେ ଅତ୍ୟନ୍ତ ଉତ୍ସାହ ପ୍ରକାଶ ପାଇଥିଲା । ତାଙ୍କୁ ସମ୍ବର୍ଦ୍ଧନା କରିବାପାଇଁ ରେଳ-ଷ୍ଟେସନରେ ପ୍ରବଳ ଜନଗହଳି ହୋଇଥିଲା । ତାଙ୍କୁ ବସାକୁ ନେବାପାଇଁ ଘୋଡ଼ାଗାଡ଼ିର ବ୍ୟବସ୍ଥା ହୋଇଥିଲା; କିନ୍ତୁ ଲୋକେ ଗାଡ଼ିରୁ ଘୋଡ଼ାକୁ କାଢ଼ିନେଇ ନିଜେ ଗାଡ଼ି ଟାଣିବାକୁ

ଉଦ୍ୟମ କଲେ । ମଧୁବାବୁ ଏ ଉତ୍ସାହକୁ ପ୍ରଶଂସା କରିଥିଲେ; କିନ୍ତୁ ଲୋକଟଣା ଗାଡ଼ିରେ ଯିବାକୁ ପସନ୍ଦ କରିନଥିଲେ । ସେ ଗାଡ଼ିରୁ ଓହ୍ଲାଇପଡ଼ି ପଦବ୍ରଜରେ କିଛିଦୂର ଶୀଘ୍ର ଶୀଘ୍ର ଚାଲିଲେ । ଲୋକେ ତାଙ୍କ ସଙ୍ଗରେ କିଛି ବାଟ ଚାଲିବା ପରେ ତାଙ୍କୁ ଅଟକାଇଲେ ଏବଂ ପୁନର୍ବାର ଗାଡିରେ ବସାଇ ଘୋଡ଼ାକୁ ଯୋଚିଲେ । ମଧୁବାବୁ ଘୋଡ଼ାଗାଡ଼ିରେ ବସି ବସାକୁ ଗଲେ ।

(୧୨) ଖ୍ରୀ: ୧୯୦୨ ଜାନୁଆରୀ ୨ ତାରିଖରେ ଲାହୋରର 'ପାଓନିୟର' (pioneer) କାଗଜରେ ଏକ ସମ୍ବାଦ ପ୍ରକାଶ ପାଇଲା ଯେ, ମାନ୍ଦ୍ରାଜ, ବଙ୍ଗ ଓ ମଧ୍ୟପ୍ରଦେଶରେ ଥିବା ସମସ୍ତ ଓଡିଆ ଅଞ୍ଚଳକୁ ଏକତ୍ରିତ କରି ମଧ୍ୟପ୍ରଦେଶ ଅଧୀନରେ ରଖିବାପାଇଁ ଏକ ପ୍ରସ୍ତାବ ସରକାରଙ୍କ ବିବେଚନାଧୀନ ଅଛି । ଏହି ସମ୍ବାଦରେ ଓଡିଆଙ୍କ ଭିତରେ ବାଦବିବାଦ ଆରମ୍ଭ ହୋଇଯାଇଥିଲା । ନେତାମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇଯାଇ ବିଭିନ୍ନ ମତ ପ୍ରକାଶ କରିବାକୁ ଆରମ୍ଭ କଲେ । କ୍ରମେ ଅବସ୍ଥା ଗୁରୁତର ଆକାର ଧାରଣ କରିବାକୁ ଯାଉଥିଲା । ପୂର୍ବର ବିଶ୍ୱାସ କ୍ରମେ ଉଭେଇ ଯାଉଥିଲା । ଫଳରେ ଏକତା ମଧ୍ୟ ବିପନ୍ନ ହେବା ଅବସ୍ଥାରେ ଥିଲା । ଭାଗ୍ୟକୁ ସରକାର ଘୋଷଣା କଲେ ଯେ, "ପାଓନିୟର୍" କାଗଜରେ ଯେଉଁ ସମ୍ବାଦ ପ୍ରକାଶ ପାଇଛି, ତାହା ସତ୍ୟ ନୁହେଁ, ଏପରି କୌଣସି ପ୍ରସ୍ତାବ ସରକାରଙ୍କ ବିବେଚନାଧୀନ ନାହିଁ । ଏହି ପ୍ରତିବାଦଟି "ଅମୂଳକ ଗୁଜବ"ର ଯାବତୀୟ କୁଫଳକୁ କେତେକାଂଶରେ ମାତ୍ର ଧ୍ୱଂସ କରି ପାରିଥିଲା; କିନ୍ତୁ 'ଉତ୍କଳ ସମ୍ମିଳନୀ'ର ପ୍ରତିଷ୍ଠା ସମ୍ପର୍କୀୟ କାର୍ଯ୍ୟାବଳୀରେ ନେତାମାନଙ୍କ ଭିତରେ ଅଭିନବ ଏକତା ଦେଖାଦେଇଥିଲା । ସମସ୍ତେ ପୂର୍ବକଥା ଭୁଲିଯାଇ "ଭାଇ ଭାଇ" ଧ୍ୱନିରେ ଉତ୍କଳ ଗଗନକୁ ମୁଖରିତ କରି ଦେଇଥିଲେ ।

ବାଦବିବାଦର ବିବରଣ ସଂକ୍ଷେପରେ ଏହିପରି—

'ପାଓନିୟର୍' କାଗଜରେ ସରକାରଙ୍କ ତଥାକଥିତ ପ୍ରସ୍ତାବର ସୂଚନା ପ୍ରକାଶ ପାଇବାପରେ ମଧୁବାବୁ ଓ ତାଙ୍କ ମତାବଲମ୍ବୀମାନେ ଏକତ୍ରିତ ହୋଇ ସମଗ୍ର ଓଡିଆ ଅଞ୍ଚଳ ବଙ୍ଗପ୍ରଦେଶ ଅଧୀନରେ ରହୁ ବୋଲି ଦାବୀ କଲେ । ଗଞ୍ଜାମର କେହି କେହି ନେତା ମାନ୍ଦ୍ରାଜ ଅଧୀନରେ ଯେପରି ଅଛନ୍ତି, ସେହିପରି ରହିବାକୁ ପସନ୍ଦକଲେ । ସମ୍ବଲପୁରବାସୀଙ୍କ ମଧ୍ୟରୁ କେହି କେହି ଅପେକ୍ଷାକୃତ ନୀରବ ରହିଲେ । ତେବେ ବର୍ତ୍ତମାନ ସବୁ ଅଞ୍ଚଳ ବଙ୍ଗ-ଶାସନାଧୀନରେ ରହିବାପାଇଁ ଅଧିକାଂଶ ଲୋକ ମତଦେଇଥିଲେ । ଏହାପରେ ହିଁ ସ୍ୱତନ୍ତ୍ର ପ୍ରଦେଶ ଦାବୀ ସ୍ପଷ୍ଟ ଓ ପ୍ରବଳ ହୋଇଥିଲା ।

ବଙ୍ଗ ପ୍ରଦେଶ ସହିତ ରହିବାର ପକ୍ଷପାତୀମାନେ ଖଣ୍ଡବିଖଣ୍ଡିତ ଓଡିଆଜାତିର ଦୁଃଖଦୁର୍ଦ୍ଦଶାର କାରଣ ଏକ ଶାସନର ଅଭାବ ବୋଲି ଯୁକ୍ତି କରିଥିଲେ । × "ଏହି କାରଣରୁ ଓଡ଼ିଆମାନଙ୍କର ମନରେ ବହୁକାଳରୁ ଏପରି ଭାବ ଉଦୟ ହୋଇଅଛି କି ସମସ୍ତ ଉତ୍କଳଖଣ୍ଡ ଏକ ଶାସନାଧୀନ ନ ହେଲେ ଓଡ଼ିଆମାନଙ୍କର ସମୁଚିତ ଉନ୍ନତି ହେବନାହିଁ ।

ସୁଖର ବିଷୟ ଯେ, ଏହି ଭାବ କେତେକ ବର୍ଷ ପୂର୍ବେ ଯେମନ୍ତ ପ୍ରବଳ ଥିଲା, ବର୍ତ୍ତମାନ ତେମନ୍ତ ନାହିଁ । ବଙ୍ଗୀୟ ଗଭର୍ଣ୍ଣମେଣ୍ଟ ଉତ୍କଳର ଉନ୍ନତି ପ୍ରତି କେତେକ ବର୍ଷ ହେଲା ବିଶେଷ ମନୋଯୋଗୀ ହୋଇ ଓଡ଼ିଶାର ନାନା ଅଭାବ ଦୂର କରୁଅଛନ୍ତି ଏବଂ ଓଡ଼ିଆମାନଙ୍କୁ ଶିକ୍ଷା ଓ ସଭ୍ୟତାରେ ଅଗ୍ରସର ହେବା କାରଣ ଉଚିତ ସାହାଯ୍ୟ କରୁଅଛନ୍ତି । ଏଥିରେ ଏମନ୍ତ ସୁଫଳ ଫଳିଅଛି ଯେ ବଙ୍ଗୀୟ ଶାସନାଧୀନ ଓଡ଼ିଆମାନେ ଭିନ୍ନଜାତି ବୋଲି ଗଭର୍ଣ୍ଣମେଣ୍ଟଙ୍କ ଦୟାରୁ ବଞ୍ଚିତ ହେବାର ପୂର୍ବେ ଯେପରି ମନେକରୁଥିଲେ, ବର୍ତ୍ତମାନ ତାହା କରୁନାହାନ୍ତି । ବରଂ ଗଭର୍ଣ୍ଣମେଣ୍ଟଙ୍କର ଦୟା ଓ ସୁବିଚାର ଲାଭଦ୍ୱାରା କ୍ରମଶଃ ଉନ୍ନତି ଅବସ୍ଥାକୁ ପ୍ରାପ୍ତ ହେବାର ଦେଖି ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜର ଓଡ଼ିଆମାନେ ବଙ୍ଗ ଗଭର୍ଣ୍ଣମେଣ୍ଟର ଅଧୀନରେ ଆସିବା କାରଣ ଗଭର୍ଣ୍ଣମେଣ୍ଟରେ ପ୍ରାର୍ଥନା କରୁ ଅଛନ୍ତି ।"

ପୁଣି, ବଙ୍ଗ ଶାସନାଧୀନରେ ଉତ୍କଳଖଣ୍ଡ ବୃହତ୍ ଏବଂ ଉନ୍ନତ ମାର୍ଗରେ ଅଗ୍ରସର ହେଉଛି । ଏହି କାରଣରୁ ଅନୁମାନ କରୁ, ସମ୍ବଲପୁରର ଓଡ଼ିଆମାନେ ବଙ୍ଗର ଶାସନରେ ଆସିବାର ଇଚ୍ଛା ପୁନଃ ପ୍ରକାଶ କରିଅଛନ୍ତି ଏବଂ ଗଞ୍ଜାମର ଓଡ଼ିଆମାନଙ୍କର ଆବେଦନ ପତ୍ରର ପ୍ରାର୍ଥନାରେ ଅବାନ୍ତରରୂପେ ଅନ୍ୟ କୌଣସି ପ୍ରଦେଶ ବା ବିଶ୍ୱବିଦ୍ୟାଳୟର ଉଲ୍ଲେଖ ହୋଇଥିଲେହେଁ ବଙ୍ଗ ପ୍ରଦେଶ ସଙ୍ଗେ ଯୋଗଦେବାର ସ୍ପଷ୍ଟ ଲେଖାଅଛି ।

"ବାସ୍ତବରେ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡମାନ ବୃହତ୍ ଖଣ୍ଡ ସଙ୍ଗେ ଯୋଗଦେବା ସ୍ୱାଭାବିକ ଏବଂ ଗଞ୍ଜାମ ଓ ସମ୍ବଲପୁରର ଉତ୍କଳଖଣ୍ଡମାନ ମୂଳ ଓଡ଼ିଶା ସଙ୍ଗେ ମିଶି ବଙ୍ଗୀୟ ଗଭର୍ଣ୍ଣମେଣ୍ଟଙ୍କ ଶାସନାଧୀନ ହେଲେ ସର୍ବାପେକ୍ଷା ଉତ୍ତମ ଏବଂ ସମସ୍ତ ଓଡ଼ିଆଙ୍କର ସନ୍ତୋଷଜନକ ହେବ, ଏହା ହିଁ ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ । ×" ( ଉତ୍କଳ ଦୀପିକା ୧୯୦୩ ଜାନୁଆରି ତା ୨୪ ଓ ୩୧ ସଂଖ୍ୟା )

ପାଓନିୟର ଇଂରାଜୀ ସମ୍ବାଦପତ୍ରରେ ଲେଖାଥିଲା ଯେ, "ବଙ୍ଗୀୟ ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟ ଅତ୍ୟନ୍ତ ଅଧିକ ହେବାରୁ ବଙ୍ଗ ପ୍ରଦେଶରୁ ଏକ ଦିଗରେ ଚଟ୍ଟଗ୍ରାମକୁ ଆସାମଭୁକ୍ତ ଏବଂ ଅନ୍ୟ ଦିଗରେ ଓଡ଼ିଶାକୁ ମଧ୍ୟପ୍ରଦେଶଭୁକ୍ତ କରିବାକୁ ପ୍ରସ୍ତାବ କେତେଦିନରୁ ଇଣ୍ଡିଆ ଗଭର୍ଣ୍ଣମେଣ୍ଟ ବିଚାର କରିଅଛନ୍ତି ଏବଂ ସେହି ପ୍ରସ୍ତାବ ସଫଳକରିବା ଅଭିପ୍ରାୟରେ ମାନ୍ୟବର ଫ୍ରେଜର ସାହେବ ବଙ୍ଗଳାର ଶାସନକର୍ତ୍ତା ହୋଇଅଛନ୍ତି ।"

ଏହି ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ସମଗ୍ର ଓଡ଼ିଶାର କ୍ଷତି ହେବ, ଏହା ମଧୁବାବୁ ପ୍ରଭୃତିଙ୍କର ଯୁକ୍ତି ଥିଲା । "ସେମାନେ କହୁଥିଲେ, ( ୧ ) ବଙ୍ଗପ୍ରଦେଶ ବହୁକାଳରୁ ଆଇନ ପ୍ରଚଳିତ ରାଜ୍ୟ; କିନ୍ତୁ ମଧ୍ୟପ୍ରଦେଶ ସୃଷ୍ଟି ହେବା ଅର୍ଦ୍ଧଶତାବ୍ଦୀ ସୁଦ୍ଧା ହୋଇନାହିଁ । ଏହି ପ୍ରଦେଶଟି ବର୍ତ୍ତମାନ ସୁଦ୍ଧା ଅର୍ଦ୍ଧଆଇନ ପ୍ରଚଳିତ ରାଜ୍ୟ ହୋଇ ରହିଛି । ( ୨ ) ପ୍ରଜାବର୍ଗଙ୍କ ସୁରକ୍ଷା, ସୁବିଚାର ଏବଂ ଉନ୍ନତି ନିମନ୍ତେ ବଙ୍ଗ ପ୍ରଦେଶର ଶାସନଯନ୍ତ୍ର ସର୍ବାଙ୍ଗୀନ କିନ୍ତୁ ମଧ୍ୟପ୍ରଦେଶ ସେପରି ନୁହେଁ । ( ୩ ) ବଙ୍ଗ ପ୍ରଦେଶରେ ରେଭିନ୍ୟୁବୋର୍ଡ୍, ହାଇକୋର୍ଟ

ବ୍ୟବସ୍ଥାପକ ସଭା, ବିଶ୍ୱବିଦ୍ୟାଳୟ ଅଛି; ମଧ୍ୟପ୍ରଦେଶରେ ନାହିଁ । ( ୪ ) ବଙ୍ଗରେ ଉଚ୍ଚ କର୍ମଚାରୀଙ୍କ ସଂଖ୍ୟା ବେଶୀ ଏବଂ ଏକାଧିକ ରାଜକର୍ମଚାରୀ ଏକାଠି ବସି ଯାହା କରୁଛନ୍ତି, ମଧ୍ୟପ୍ରଦେଶରେ ଜଣେ ଜଣେ ରାଜକର୍ମଚାରୀ ତାହା କରୁଛନ୍ତି । ( ୫ ) କର୍ମଚାରୀମାନଙ୍କର ଅବିଚାର ଓ ଅତ୍ୟାଚାରର ହାଇକୋର୍ଟଙ୍କଦ୍ୱାରା ଯେତେ ପରିମାଣରେ ପ୍ରତିକାର ହେଉଛି, ସେତିକି ଚିଫ୍ କମିଶନରଙ୍କ ଦ୍ୱାରା ହେବା ସମ୍ଭବ ନୁହେଁ । ମଧ୍ୟପ୍ରଦେଶରେ ଚିଫ୍ କମିଶନର ହାଇକୋର୍ଟ ପରି କାମ କରନ୍ତି । ( ୬ ) ମାନ୍ଦ୍ରାଜର ଶାସନ ପ୍ରଣାଳୀ ବଙ୍ଗ ପ୍ରଦେଶ ତୁଲ୍ୟ ହେଲେ ମଧ୍ୟ ଭାଷାଗତ ସାମ୍ୟର ଅଭାବ ଓ ଦୂରତା ଓଡ଼ିଶା ମାନ୍ଦ୍ରାଜର ଶାସନାଧୀନ ହେବା ବିରୋଧରେ ଏକ ପ୍ରଧାନ ଯୁକ୍ତି । ପୁଣି, ଓଡ଼ିଶାର କଲିକତା ସଙ୍ଗେ ଯେତେ ସମ୍ବନ୍ଧ ଅଛି, ମାନ୍ଦ୍ରାଜ ସଙ୍ଗେ ତହିଁରୁ କିଛି ନାହିଁ । ( ୭ ) ମଧ୍ୟପ୍ରଦେଶ ସହିତ ସମଗ୍ର ଓଡ଼ିଆ ଅଞ୍ଚଳ ଯୋଗହେଲେ ସମସ୍ତ ପ୍ରଦେଶର ରାଜଧାନୀ ବଦଳିବ ନାହିଁ । କଟକଠାରୁ ନାଗପୁର ୮୦୦ ମାଇଲ, ମାନ୍ଦ୍ରାଜ ୭୭୭ ମାଇଲ ଏବଂ କଲିକତା ୨୫୩ ମାଇଲ ଦୂର, ଅର୍ଥାତ୍ କଟକଠାରୁ କଲିକତା ଯେତେ ଦୂର, ତାହାଠାରୁ ନାଗପୁର ଓ ମାନ୍ଦ୍ରାଜ ତିନିଗୁଣ ଦୂର ହେବ । ପୁଣି "ଦୂରତା ବିବେଚନାରେ ଦେଖାଯିବ ଯେ ସମସ୍ତ ଓଡ଼ିଶା ମାନ୍ଦ୍ରାଜ ବା ମଧ୍ୟପ୍ରଦେଶର ଅଧୀନ ହେଲେ ସେହି ପ୍ରଦେଶାନ୍ତର୍ଗତ ଉତ୍କଳଖଣ୍ଡର କିଛି ଲାଭ ନାହିଁ । ସେମାନେ ଯେମନ୍ତ ଏକ ପ୍ରାନ୍ତରେ ପଡ଼ିଅଛନ୍ତି, ତେମନ୍ତ ରହିବେ ଏବଂ ତେଲଙ୍ଗୀ ବା ମରହଟ୍ଟାଙ୍କର ଆଧିପତ୍ୟ ଯେମନ୍ତ ସହୁଅଛନ୍ତି, ତେମନ୍ତ ସହିବେ । ମାତ୍ର ବଙ୍ଗ ଅନ୍ତର୍ଗତ ଓଡ଼ିଶା, ଯାହାକି ଉତ୍କଳ ଦେଶର ବୃହତ୍ ଓ ପ୍ରଧାନ ଅଂଶ ହୋଇଅଛି, ତହିଁର ବିଶେଷ କ୍ଷତି ହେବ । କାରଣ, ତାହା ମାନ୍ଦ୍ରାଜ ଓ ନାଗପୁରଠାରୁ ସେହି ସେହି ପ୍ରଦେଶର ଓଡ଼ିଆଙ୍କ ଅପେକ୍ଷା ଦୂରତର ପ୍ରାନ୍ତସୀମାରେ ପଡ଼ିବ ଓ ବଙ୍ଗାଳୀଙ୍କଠାରୁ ଅଧିକତର ଅପରିଚିତ ତେଲଙ୍ଗୀ ବା ମରହଟ୍ଟାଙ୍କ ସହିତ ପ୍ରତିଯୋଗିତା କରିବାକୁ ବାଧ୍ୟ ହେବ ।"

ଖ୍ରୀ: ୧୯୦୨ ଡିସେମ୍ବରରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ସରକାରଙ୍କଠାରେ ଏକ ପ୍ରଦେଶ ଦାବୀକରି ଆବେଦନ ପତ୍ର ଦେଇଥିଲେ । କଟକର କେହି କେହି ଏହାର ବିରୋଧ କରୁଥିଲେ । "ଉତ୍କଳ ଖଣ୍ଡର ଆୟତନ ଯେତେ ବିସ୍ତୃତ ହେଉ ପଛକେ ତାହା ଯେ ଗୋଟିଏ ପୃଥକ୍ ଶାସନ ସ୍ଥାପନ ନିମନ୍ତେ ପ୍ରଚୁର, ଏ କଥା କୌଣସିମତେ ବୋଲିଯାଇ ନପାରେ । ଏହି ସମସ୍ତ ରାଜ୍ୟଖଣ୍ଡର ଯେତେ ଲୋକସଂଖ୍ୟା ରାଜାବାହାଦୂର ଆପଣା ଆବେଦନପତ୍ରରେ ଲେଖି ଅଛନ୍ତି, ତାହା ଠିକ୍ ଥିବାର ସ୍ୱୀକାର କଲେ ମଧ୍ୟ ବଙ୍ଗଳାର ଗୋଟିଏ ବିଭାଗକୁ ସରି ନୁହେଁ ଏବଂ ଆୟତନ କୌଣସି କୌଣସି ଏକ ବିଭାଗରୁ ଅଧିକ ହେଲେହେଁ ତହିଁର ଅଧିକାଂଶ ଗଡ଼ଜାତ ବା ଜଙ୍ଗଲ ପର୍ବତମୟ । ସୁତରାଂ ତହିଁର ଆୟରୁ ଗୋଟିଏ ଶାସନର ବ୍ୟୟ ନିର୍ବାହ ହେବା ଅସମ୍ଭବ । ଅତଏବ, ଓଡ଼ିଶା ସକାଶେ ଗୋଟିଏ ପୃଥକ ଶାସନର ପ୍ରାର୍ଥନା ଆଦୌ ଅସଙ୍ଗତ ।" "ଉତ୍କଳ ଦୀପିକା" ୧୯୦୩ ଫେବୃଆରୀ ୨୨ ତାରିଖ ସଂଖ୍ୟାରେ ଏହି ମତ ପ୍ରକାଶ ପାଇଥିଲା ।

ବାଲେଶ୍ୱରର ରାଜାବାହାଦୂର ବୈକୁଣ୍ଠନାଥ ଦେ ନିଜ ସ୍ମାରକପତ୍ରରେ ଦାବୀ କରିଥିଲେ—"ଉତ୍କଳଖଣ୍ଡ ନିମନ୍ତେ ଗୋଟିଏ ନୂତନ ପ୍ରାଦେଶିକ ଶାସନ ଗଠିତ ହେଉ ଅଥବା ବଙ୍ଗ, ମାନ୍ଦ୍ରାଜ ବା ମଧ୍ୟପ୍ରଦେଶ ମଧ୍ୟରୁ ଯେ କୌଣସି ଏକ ଶାସନାଧୀନରେ ଗଡ଼ଜାତ ସମୂହସହ ସମସ୍ତ ଉତ୍କଳ ଖଣ୍ଡକୁ ରଖାଯାଉ ।" ରାଜାବାହାଦୂରଙ୍କ ଦାବୀ ଉପରେ ମନ୍ତବ୍ୟ ପ୍ରକାଶ କରି 'ଉତ୍କଳ ଦୀପିକା' ସ୍ୱତନ୍ତ୍ର ପ୍ରଦେଶ ବିରୁଦ୍ଧରେ ଏପରି ଲେଖିଥିଲେ । କିନ୍ତୁ ସେହି ବର୍ଷ ଆରମ୍ଭରୁ 'ଓଡ଼ିଆ ଜାଗରଣ' ବିଶେଷଭାବରେ ଉନ୍ମାଦନା ସୃଷ୍ଟି କରିବାରୁ 'ସ୍ୱତନ୍ତ୍ର ପ୍ରଦେଶ'ର ଦାବୀକୁ ପ୍ରଧାନ ଦାବୀ ରୂପେ ନେତାମାନେ ଗ୍ରହଣ କରିଥିଲେ ଏବଂ ଏହି ଦିଗରେ କାର୍ଯ୍ୟକାରୀ ମଧ୍ୟ ହୋଇଥିଲେ । "ଉତ୍କଳ ଦୀପିକା" ମଧ୍ୟ ସ୍ୱତନ୍ତ୍ର ପ୍ରଦେଶ ବିରୋଧରେ ନିଜ ମତକୁ ତ୍ୟାଗକରି ଏହା ସପକ୍ଷରେ ପ୍ରଚାର ଚଳାଇଲେ । ରାଜା ବୈକୁଣ୍ଠନାଥ ଗଡ଼ଜାତ ଅଞ୍ଚଳ ସହ ସମଗ୍ର ଓଡ଼ିଆଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ଶାସନ ଅନ୍ତର୍ଗତ କରିବାପାଇଁ ଦାବୀ କରିଥିଲେ । ଏହା ସ୍ୱତନ୍ତ୍ର ପ୍ରଦେଶର ସୂଚକ ଥିଲା ।

ଗଞ୍ଜାମର ଅଧିକାଂଶ ଓଡ଼ିଆ ନେତା ସମଗ୍ର ଉତ୍କଳଭୂମିକୁ ବଙ୍ଗୀୟ ଅଥବା ଅନ୍ୟ କୌଣସି ଏକ ପ୍ରାଦେଶିକ ଶାସନ ଏବଂ ବିଶ୍ୱବିଦ୍ୟାଳୟ ଅନ୍ତର୍ଭୁକ୍ତ କରିବା ନିମନ୍ତେ ଦାବୀକରି ଏକ ସ୍ମାରକପତ୍ର କେନ୍ଦ୍ର ସରକାରଙ୍କଠାକୁ ପଠାଇଥିଲେ । ବାଲେଶ୍ୱରର ବୈକୁଣ୍ଠନାଥ ଦେ ପ୍ରଭୃତି ନେତାମାନେ ମଧ୍ୟ ଓଡ଼ିଆମାନଙ୍କୁ ଏକତ୍ର କରି ଏକ ଶାସନାଧୀନରେ ରଖିବା ପାଇଁ ସ୍ମାରକପତ୍ର ଦେଇଥିଲେ । ମାନ୍ଦ୍ରାଜ, ବଙ୍ଗ, ମଧ୍ୟପ୍ରଦେଶ-ଏହି ତିନି ପ୍ରଦେଶରୁ ଯେ କୌଣସି ପ୍ରଦେଶ ହେଉ, ତାହା ଅଧୀନରେ ସମଗ୍ର ଓଡ଼ିଆ-ଭାଷାଭାଷୀ ଅଞ୍ଚଳକୁ ଏକତ୍ରକରି ରଖିବାପାଇଁ ସରକାରଙ୍କୁ ଜଣାଇଥିଲେ । କଟକର ପାଦ୍ରି ହୋବେଲ ସାହେବ ମଧୁବାବୁ ଓ ତାଙ୍କର ମତାବଲମ୍ବୀମାନଙ୍କ ପ୍ରସ୍ତାବକୁ ପ୍ରତ୍ୟକ୍ଷ ଭାବରେ ବିରୋଧ ନ କରି ମଧ୍ୟପ୍ରଦେଶ ଅଧୀନରେ ରହିଲେ ମଙ୍ଗଳ ହେବ ବୋଲି ଦାବୀ କରି ଏକ ସ୍ମାରକପତ୍ର ସରକାରଙ୍କୁ ଦେଇଥିଲେ ।

ହୋବେଲ ଓ ମଧୁବାବୁଙ୍କ ଭିତରେ ଏ ସମ୍ବନ୍ଧରେ ବହୁ ଯୁକ୍ତି ତର୍କ ହୋଇଥିଲା ଏବଂ ଉଭୟେ ନିଜ ନିଜ ମତ ସପକ୍ଷରେ ପ୍ରଚୁର ପତ୍ର ଓ ବିବୃତିମାନ ପ୍ରକାଶ କରିଥିଲେ ।

**ସ୍ୱତନ୍ତ୍ର ପ୍ରଦେଶ ଦାବୀର ସୂତ୍ରପାତ : ମଧୁବାବୁଙ୍କର ସୂଚନା**

ଗଞ୍ଜାମବାସୀଙ୍କର ମହାମାନ୍ୟ ଗଭର୍ଣ୍ଣର ଜେନେରାଲ ବାହାଦୂରଙ୍କଠାକୁ ପ୍ରେରିତ ହୋଇ-ଥିବା ଆବେଦନପତ୍ର ସମ୍ବନ୍ଧରେ କଟକରେ "ଉତ୍କଳ ସଭା" ଯେଉଁ ପଦକ୍ଷେପ ନେଇଥିଲେ, ତାହା ଓଡ଼ିଶାର ଭାଗ୍ୟ ନିୟନ୍ତ୍ରଣ ଇତିହାସରେ ଏକ ବିଶିଷ୍ଟ ଘଟଣା । 'ଉତ୍କଳ ସଭା' ୧୯୦୩ ଅପ୍ରେଲ ୨୨ ତାରିଖ ବୁଧବାର ଦିନ ଗଞ୍ଜାମବାସୀଙ୍କର ଆବେଦନପତ୍ରର ବିଚାର କରିବା ପାଇଁ କଟକରେ ଏକ ସାଧାରଣ ସଭା ଆହ୍ୱାନ କରିଥିଲେ । ଏହି ସଭାରେ ମଧୁବାବୁ ସଭାପତିତ୍ୱ କରିଥିଲେ । ହିନ୍ଦୁ, ଖ୍ରୀଷ୍ଟିଆନ, ମୁସଲମାନ, ଓଡ଼ିଆ, ବଙ୍ଗାଳୀ ସବୁ ଶ୍ରେଣୀର ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ଏଥିରେ ଯୋଗ ଦେଇଥିଲେ ।

ସଭାର ଉଦ୍ଦେଶ୍ୟ ବୁଝାଇବାକୁ ଯାଇ ମଧୁବାବୁ କହିଥିଲେ, "ଉତ୍କଳରେ 'ଭାଇ' ଶବ୍ଦଟି ବିଶେଷତଃ ବଡ଼ଭାଇଙ୍କଠାରେ ପ୍ରୟୋଗ ହୁଏ । ସେ ଏହି ସଭାସ୍ଥ ଲୋକଙ୍କୁ 'ଭାଇ' ବୋଲି ସମ୍ବୋଧନ କରି ସେମାନଙ୍କୁ ବଡ଼ ଓ ନିଜକୁ ଶ୍ରେଷ୍ଠ ମନେ କରୁଅଛନ୍ତି । ଆଉ ଯେପରି ଏକମାତାର ସ୍ତନପାନରେ ପ୍ରତିପାଳିତ ପୁତ୍ରମାନଙ୍କୁ ଭାଇ କହନ୍ତି, ସେପରି ଯେଉଁମାନେ ଉତ୍କଳମାତାର ସ୍ତନପାନଦ୍ୱାରା ଦୀର୍ଘକାଳ ବା ଅଳ୍ପକାଳ ଶରୀର ପୋଷଣ କରୁଅଛନ୍ତି, ସେମାନେ ଭାଇ ଅଟନ୍ତି ଏବଂ ଉତ୍କଳ ମାତାର ସେବା କରିବା ଏବଂ ଶୁଭ ମନାସିବା ସେମାନଙ୍କର କର୍ତ୍ତବ୍ୟ ଅଟେ ।"

ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକ ଏକତ୍ରିତ କରି ଏକ ଶାସନାଧୀନରେ ରଖିବା ଦାବୀ ସମ୍ପର୍କରେ ସେ କହିଲେ, "ସମସ୍ତ ଉତ୍କଳକୁ ଏକ ଶାସନାଧୀନ କରିବା କଥା ନୂତନ ନୁହେଁ କିମ୍ବା ଗଞ୍ଜାମବାସୀଙ୍କ ଆବେଦନପତ୍ରରୁ ବର୍ତ୍ତମାନ ଉଦ୍‌ଭବ ହୋଇନାହିଁ ।" ଏହି ଦାବୀର ଏକ ସଂକ୍ଷିପ୍ତ ଇତିହାସ ଦେବାକୁ ଯାଇ ସେ କହିଲେ—"ସନ ୧୮୪୧ ସାଲରୁ ସମୟ ସମୟରେ ଏଥିର ଚର୍ଚ୍ଚା ହୋଇଅଛି । ତହିଁ ପୂର୍ବେ ଗଞ୍ଜାମ ଓଡ଼ିଶାର ଅନ୍ତର୍ଗତ ଥିଲା ଏବଂ ସନ ୧୮୬୧ ସାଲ ପର୍ଯ୍ୟନ୍ତ ସମ୍ବଲପୁର ଓଡ଼ିଶା କମିଶନରଙ୍କ ଅଧୀନରେ ଥିଲା । ସନ ୧୮୮୮ ସାଲରେ "ଉତ୍କଳ ସଭା" ସମସ୍ତ ଓଡ଼ିଆଭାଷୀଙ୍କୁ ଏକ ଶାସନାଧୀନ କରିବାର ପ୍ରସ୍ତାବ କରିଥିଲେ ଏବଂ ସନ ୧୮୯୫ ସାଲରେ ଓଡ଼ିଶାର କମିଶନର ଶ୍ରୀଯୁକ୍ତ କୁକ ସାହେବ ସମ୍ବଲପୁରକୁ ଓଡ଼ିଶାଭୁକ୍ତ କରିବା କାରଣ ଗଭର୍ଣ୍ଣମେଣ୍ଟଙ୍କୁ ଲେଖିଥିଲେ । ଏ ଶତାବ୍ଦୀର ଆରମ୍ଭରେ ସମ୍ବଲପୁରବାସୀମାନେ ସେହିପରି ପ୍ରାର୍ଥନା କରିଥିଲେ ।"

ବର୍ତ୍ତମାନ ଓଡ଼ିଶା ମଧ୍ୟପ୍ରଦେଶକୁ ବାହାରିଯିବା ପ୍ରସ୍ତାବ "ପାଓନୟର କାଗଜରେ ପ୍ରକାଶ ପାଇଥିବା ଉଲ୍ଲେଖ କରି ସେ କହିଥିଲେ ଯେ ବିଷୟଟି ଅତ୍ୟନ୍ତ ଗୁରୁତର ଏବଂ ଓଡ଼ିଶାର ଭବିଷ୍ୟତ ଶାସନ ଏଥିଉପରେ ନିର୍ଭର କରୁଥିବାରୁ ଅତ୍ୟନ୍ତ ଧୀରତା ଓ ବିଚକ୍ଷଣତା ସହିତ ବିଚାର କରି ତହିଁର ମୀମାଂସା କରିବା ସଭାର କର୍ତ୍ତବ୍ୟ ।

ସଭାରେ ନିମ୍ନଲିଖିତ ପ୍ରସ୍ତାବଗୁଡ଼ିକ ଗୃହୀତ ହୋଇଥିଲା—

(୧) ଗଞ୍ଜାମ ଜିଲ୍ଲାର ଓଡ଼ିଆଭାଷୀମାନେ ମହାମାନ୍ୟ ଗଭର୍ଣ୍ଣର ଜେନେରାଲଙ୍କ ସମୀପକୁ ସେମାନଙ୍କର ଦୁଃଖ ଜଣାଇ ଯେଉଁ ଆବେଦନ ପତ୍ର ପଠାଇଛନ୍ତି, ତହିଁରେ ଏ ସଭାର ସମ୍ପୂର୍ଣ୍ଣ ଓ ଗଭୀର ସହାନୁଭୂତି ଥିବା ବିଷୟ ଲିପିବଦ୍ଧ କରିବା ଏ ସଭାର କର୍ତ୍ତବ୍ୟ ଏବଂ ମହାମାନ୍ୟ ଗଭର୍ଣ୍ଣର ଜେନେରାଲ ସମ୍ବଲପୁରନିବାସୀ ଓଡ଼ିଆମାନଙ୍କୁ ସେମାନଙ୍କ ଭାଷାର ପୁନଃ ପ୍ରଚଳନଦ୍ୱାରା ଯେରୂପ ଅବିଳମ୍ବେ ଅନୁଗୃହୀତ କରିଅଛନ୍ତି, ତହିଁରେ ଗଞ୍ଜାମବାସୀ ଓଡ଼ିଆମାନଙ୍କର ଗୁରୁତର ଗୁହାରି ସମ୍ବଳିତ ଆବେଦନପତ୍ର ମହାମାନ୍ୟ ଗଭର୍ଣ୍ଣରଙ୍କର ଦିବ୍ୟ ଅବଧାନକୁ ଆସିବାର ଆଶା ଏ ସଭା ସମ୍ପୂର୍ଣ୍ଣ ପୋଷଣ କରନ୍ତି ।

ପ୍ରସ୍ତାବକ—ଶ୍ରୀ ଜି. ଏଚ୍ ହ୍ୱାଇଟ୍ ସାହେବ । ଅନୁମୋଦକ ଶ୍ରୀ ପାଦ୍ରୀ ସେମ୍

ସାହୁ । ସମର୍ଥକ—ବାବୁ ଶରତଚନ୍ଦ୍ର ମୁଖାର୍ଜି ବି.ଏ., ବି. ଏଲ୍. ଏବଂ ମୁନ୍‌ସି ସୈୟଦ୍ ନୁରୁଲ୍ ହକ୍ ।

(୨) ଓଡ଼ିଆଭାଷୀ ଲୋକେ ଭିନ୍ନ ଭିନ୍ନ ଶାସନାଧୀନରେ ରହିବାରୁ ଉଚିତ ପ୍ରଭାବରେ ସନ୍ତୋଷଜନକ କିମ୍ବା କ୍ରମିକ ଉନ୍ନତି କରିପାରୁନଥିବା ହେତୁ ବିବେଚନା କରି ଓଡ଼ିଆ-ଭାଷୀ ଲୋକମାନଙ୍କୁ ଗୋଟିଏ ଶାସନ ଓ ଶିକ୍ଷାପ୍ରଣାଳୀର ଅଧୀନରେ ରଖିବାର ଏକାନ୍ତ ଆବଶ୍ୟକତା ଏହି ସଭା ପୂର୍ଣ୍ଣରୂପେ ହୃଦୟଙ୍ଗମ କରୁଅଛନ୍ତି—ଏକଥା ଲିପିବଦ୍ଧ କରାଯାଉ । କାରଣ ଏ ସଭାର ବିବେଚନାରେ ଏହା ହିଁ ଉତ୍କଳ ଜାତିର ଉନ୍ନତିର ବଳବତ୍ତର ଉପାୟ ଅଟେ ।

ପ୍ରସ୍ତାବକ—ଶ୍ରୀଯୁକ୍ତ ପାଦ୍ରୀ ଜି. ଏଚ୍. ହ୍ୱାଉଏଲ୍ ସାହେବ ବି. ଏ., ଡି. ଡି. । ଅନୁମୋଦକ—ଶ୍ରୀଯୁକ୍ତ ବିଶ୍ୱନାଥ କର । ସମର୍ଥକ—ବାବୁ ଅଭିରାମ ଭକ୍ତ ଏମ୍. ଏ. ବି. ଏଲ.; ବାବୁ ହରିଶରଣ ବାନାର୍ଜି ବି. ଏଲ. ।

(୩) ଏ ସଭା ମାନ୍ୟବର ଶ୍ରୀଯୁକ୍ତ ଗଭର୍ଣ୍ଣର ଜେନେରାଲଙ୍କ ନିକଟକୁ ଖଣ୍ଡିଏ ଆବେଦନପତ୍ର ପଠାନ୍ତୁ ଏବଂ ଆବେଦନ ପତ୍ରରେ କୁହାଯାଉ—

[କ] ସମ୍ବଲପୁର, ଛୋଟନାଗପୁର, ବିଶାଖାପାଟଣା, ଗଞ୍ଜାମ ଏବଂ ମେଦିନୀପୁର ଜିଲ୍ଲାମାନଙ୍କର ଓଡ଼ିଆଭାଷୀ ବିଭାଗମାନଙ୍କୁ ଓଡ଼ିଶା ପ୍ରଦେଶ ସଙ୍ଗେ ମିଳିତ କରାଯାଉ ।

[ଖ] ଆସାମ ପରି ଓଡ଼ିଶାକୁ ଗୋଟିଏ ବିଭିନ୍ନ ଚିଫ୍ କମିଶନରସିପ୍ ଗଠିତ କରାଯାଉ ଏବଂ ତାହା କଲିକତା ହାଇକୋର୍ଟର ବିଚାରାଧୀନ ଓ କଲିକତା ବିଶ୍ୱବିଦ୍ୟାଳୟର ଶିକ୍ଷାଧୀନ ରଖାଯାଉ । ଗଭର୍ଣ୍ଣମେଣ୍ଟଙ୍କ ବିଚାରରେ ଏ ଦୁଇଟି ମଧ୍ୟରୁ ଯେଉଁଟି ଜାତୀୟ ଉନ୍ନତିର ଅନୁକୂଳ ହେବ, ସେହି ଗୋଟିକ ଗ୍ରାହ୍ୟ ହେଉ ।

ପ୍ରସ୍ତାବକ—ବାବୁ ଗୋକୁଳାନନ୍ଦ ଚୌଧୁରୀ, ବି ଏ., ବି. ଏଲ୍ । ଅନୁମୋଦକ—ବାବୁ ରାମଶଙ୍କର ରାୟ । ସମର୍ଥକ—ବାବୁ ମାୟାଧର ଦାସ, ବି.ଏ.ବି. ଏଲ୍. ।

ଚତୁର୍ଥ ପ୍ରସ୍ତାବରେ ଆବେଦନ ପ୍ରସ୍ତୁତ କରିବା ନିମନ୍ତେ ଏକ ଶାଖା ସମିତି ଗଠିତ ହେଲା ଏବଂ ଏଥିରେ ବାବୁ ମଧୁସୂଦନ ଦାସ, ବାବୁ ରାମଶଙ୍କର ରାୟ, ଶ୍ରୀଯୁକ୍ତ ପାଦ୍ରୀ ଜି. ଏଚ୍. ହ୍ୱାଉଏଲ୍‌ସ ସାହେବ, ଶ୍ରୀଯୁକ୍ତ ଜି. ଏଚ୍. ହ୍ୱାଇଟ୍ ସାହେବ, ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ରହିଲେ ।

ପ୍ରସ୍ତାବକ - ବାବୁ ଗୋପାଳଚନ୍ଦ୍ର ପ୍ରହରାଜ, ବି. ଏ., ବି. ଏଲ । ଅନୁମୋଦକ—ଚୌଧୁରୀ ବ୍ରଜସୁନ୍ଦର ଦାସ, ବି.ଏ. । ସମର୍ଥକ—ମୌଲବୀ ରଫିଉଦ୍ଦୀନ ମହମ୍ମଦ ।

ତୃତୀୟ ପ୍ରସ୍ତାବରେ ଅଳ୍ପ ମତାନୈକ୍ୟ ଦେଖାଗଲା । ବାବୁ ଜାନକୀନାଥ ବୋଷ ବିରୋଧ କରି କହିଲେ, "ଉତ୍କଳଖଣ୍ଡ ବଙ୍ଗଦେଶରୁ ବିଚ୍ୟୁତ ହୋଇ ଯେ ମଧ୍ୟପ୍ରଦେଶର

ଅନ୍ତର୍ଗତ ହେବ, ଏ ସମ୍ବନ୍ଧରେ ସେ କୌଣସି ବିଶ୍ୱାସଯୋଗ୍ୟ ପ୍ରମାଣ ପାଇନାହାନ୍ତି; ବରଂ ମାନ୍ୟବର ଲେଫ୍ଟେନାଣ୍ଟ ମହୋଦୟଙ୍କ ବ୍ୟବସ୍ଥାପକ ସଭାରେ ଏହି ପ୍ରଶ୍ନ ଉତ୍ଥାପିତ ହେଲାରୁ ଗଭର୍ଣ୍ଣମେଣ୍ଟ ଯେଉଁ ଉତ୍ତର ପ୍ରଦାନ କଲେ, ସେଥିରେ ଆମ୍ଭମାନଙ୍କର ଆଶଙ୍କିତ ହେବାର କୌଣସି କାରଣ ନାହିଁ। ପାଓନିଅର ସମ୍ବାଦପତ୍ରରେ ଏ ସମ୍ବନ୍ଧରେ ଯାହା ବାହାରିଛି ତାହା କେବଳ କଳ୍ପନା। ସୁତରାଂ ତାହାର କଳ୍ପନା 'ବର୍ତ୍ତମାନ ନିଷ୍ପ୍ରୟୋଜନ। ଜଣେ ଲେଫ୍ଟେନାଣ୍ଟ ବଙ୍ଗଦେଶ ପରି ଏଡ଼େ ବଡ଼ ରାଜ୍ୟର ଶାସନଭାର ଗ୍ରହଣ କରିପାରିବେ ନାହିଁ। ଏହା କୌଣସି କାର୍ଯ୍ୟର କଥା ନୁହେଁ। କାରଣ ଆମ୍ଭେମାନେ ସମସ୍ତେ ଜାଣୁ ଯେ ସାର ଚାର୍ଲସ ଇଲିୟଟଙ୍କ ପରି ଆଉ ଜଣେ କେହି ଲେଫ୍ଟେନାଣ୍ଟ ହେଲେ ଓଡ଼ିଶାର ଦୁଇ ଏକଟି ଜିଲ୍ଲା ଯେତେବେଳେ ସାମିଲ ହେଲେ ସୁଦ୍ଧା ସେ ଉକ୍ତ ରାଜ୍ୟର ଶାସନଭାର ଗ୍ରହଣ କରିବାକୁ ପଶ୍ଚାତ୍ପଦ ହେବେନାହିଁ। ବକ୍ତା ମହାଶୟ ସ୍ଥାନୀୟ କର୍ମଚାରୀଙ୍କ ମତ ଯେତେଦୂର ଜାଣି-ପାରିଛନ୍ତି, ସେଥିରୁ ତାଙ୍କର ଏହି ବିଶ୍ୱାସ ଯେ ଗଞ୍ଜାମ ଓ ସମ୍ବଲପୁର ଓଡ଼ିଶାଭୁକ୍ତ ହେଲେ ଓଡ଼ିଶା ଶାସନ ସେପରି କିଛି ଦୁରୁହ ବ୍ୟାପାର ହେବନାହିଁ। ଏପରି ସ୍ଥଳରେ ପ୍ରାୟ ଏକଶତ ବର୍ଷ ହେଲା ଓଡ଼ିଶା ନିର୍ବିବାଦରେ ବଙ୍ଗଦେଶର ଅନ୍ତର୍ଗତ ହୋଇ ଆସିଥିବା ସ୍ଥଳେ ବର୍ତ୍ତମାନ ତାହାର ପୃଥକ୍ ଶାସନ ବିଷୟକ ପ୍ରାର୍ଥନା ଆଦୌ ଯୁକ୍ତିସଙ୍ଗତ ନୁହେଁ; ବରଂ ଗଭର୍ଣ୍ଣମେଣ୍ଟଙ୍କୁ ଏପରି ପ୍ରାର୍ଥନା କଲେ ସେ ବୁଝିବେ ଯେ ଓଡ଼ିଶାବାସୀ ଏ ପ୍ରକୃତରେ ବଙ୍ଗଦେଶରୁ ପୃଥକ୍ ହେବାକୁ ଚାହାନ୍ତି।"

ଜାନକୀବାବୁଙ୍କ ଯୁକ୍ତି ବିରୁଦ୍ଧରେ ଶ୍ରୀଯୁକ୍ତ ବାବୁ ମଧୁସୂଦନ ଦାସ ତାଙ୍କ ବକ୍ତୃତାରେ କହିଲେ ଯେ, "ଆସାମ ସମୟରେ ବଙ୍ଗଳା ପ୍ରଦେଶର ଅନ୍ତର୍ଗତ ଥିଲା। ବର୍ତ୍ତମାନ ଆସାମ ତାହାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ। ଚିଟଗାଁ ଆଜିଯାଏ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ ଅଛି; କିନ୍ତୁ ବର୍ତ୍ତମାନ ତାହାକୁ ସୁଦ୍ଧା ବଙ୍ଗରୁ ବିଚ୍ଛିନ୍ନ କରିବାର ସୂଚନା ଦେଖାଯାଉଛି। ଏପରି ସ୍ଥଳେ ପାଓନିୟରରେ ପ୍ରଚାରିତ 'ଓଡିଶା ମଧ୍ୟପ୍ରଦେଶରେ ଅନ୍ତର୍ଗତ ହେବା' କଥା ନିତାନ୍ତ ଅମୂଳକ ନୁହେଁ। ଆମ୍ଭମାନଙ୍କର ଏ ବିଷୟରେ ନିତାନ୍ତ ଆଶଙ୍କା ହେବାରୁ ବର୍ତ୍ତମାନ ଆମ୍ଭମାନଙ୍କର ଏପରି ପ୍ରାର୍ଥନା କୌଣସିମତେ ଅସଙ୍ଗତ ନୁହେଁ ଯେ ନିତାନ୍ତପକ୍ଷେ ଓଡିଶା ଯେବେ ବଙ୍ଗଦେଶରୁ ବିଚ୍ଛିନ୍ନ ହୁଏ, ତେବେ ଏହାର ଏକ ପୃଥକ୍ ଶାସନ କରାଯାଉ। ଲେଫ୍ଟେନାଣ୍ଟ ନିଯୋଗ କ୍ଷମତା ଆମ୍ଭର କିମ୍ବା ଅନ୍ୟ କାହାର ନାହିଁ। ଏହା ବ୍ରିଟିଶ ସରକାରଙ୍କ ହାତରେ। ଜାନକୀ ବାବୁଙ୍କର ଆପତ୍ତି ଶ୍ରୀଯୁକ୍ତ ବାବୁ ସୁରେଶ ଚନ୍ଦ୍ର ଚକ୍ରବର୍ତ୍ତୀଙ୍କଦ୍ୱାରା ସମର୍ଥିତ ହେଲାରୁ ସଭାପତିଙ୍କ ଆଦେଶକ୍ରମେ ଏଥି ସମ୍ବନ୍ଧରେ ସଭାର ମତାମତ ନିଆଗଲା। ପାଞ୍ଚ ସାତଜଣ ମାତ୍ର ଜାନକୀ-ବାବୁଙ୍କର ଆପତ୍ତି ସପକ୍ଷରେ ମତ ପ୍ରଦାନ କରିଥିଲେ; ତଦ୍‌ଭିନ୍ନ ପ୍ରାୟ ସମସ୍ତେ ଏହା ବିରୁଦ୍ଧରେ ମତ ପ୍ରଦାନ କଲାରୁ ତାହା ଅଗ୍ରାହ୍ୟ ହୋଇ ଉତ୍ଥାପିତ ପ୍ରସ୍ତାବ ସଭାକର୍ତ୍ତୃକ ଗୃହୀତ ହେଲା। ( ଉ: ଦୀ: ତା ୨୫।୪।୧୯୦୩)

'ସ୍ୱତନ୍ତ୍ର ପ୍ରଦେଶ'ର ବଳିଷ୍ଠ ସୂଚନା ମଧୁବାବୁ ଏହି ସଭାରେ ଯେପରି ଭାବରେ ବ୍ୟକ୍ତ କଲେ, ତାହା 'ଉତ୍କଳ ଦୀପିକା'ଙ୍କ ମତକୁ ଖଣ୍ଡନ କରିଥିଲା । ଏହା ପରେ "ସ୍ୱତନ୍ତ୍ର ପ୍ରଦେଶ" ବାୟୁମଣ୍ଡଳ ସୃଷ୍ଟି ହୋଇଯାଇଥିଲା ।

**ଓଡ଼ିଶା କାହା ସଙ୍ଗେ ରହିବ ? :** ଦେଶମିଶ୍ରଣ ପ୍ରସଙ୍ଗରେ ଓଡ଼ିଶା ଓ ଓଡ଼ିଶା-ବାହାରେ ଓଡ଼ିଆ ଅଞ୍ଚଳମାନଙ୍କରେ ଯେଉଁ ବାଦାନୁବାଦ ଚାଲିଥିଲା, ସେଥିରେ ମଧୁବାବୁ ଓ କଟକର ପାଦ୍ରି ହବେଲ ସାହେବଙ୍କ ବାଦାନୁବାଦ ସମସ୍ତଙ୍କୁ ଟପି ଯାଇଥିଲା । ଉଭୟେ ଉତ୍ତର-ପ୍ରତ୍ୟୁତ୍ତରମାନ ଇଂରାଜୀରେ ଲେଖି ପତ୍ରିକାରେ ବିତରଣ କରିଥିଲେ । ପାଦ୍ରୀ ସାହେବ ଚିଠିଗୁଡ଼ିକ ପ୍ରକାଶ କରି ବିତରଣ କରିଥିଲେ । ପାଦ୍ରୀ ସାହେବ ଓ ମଧୁବାବୁଙ୍କ ଭିତରେ ଦେଶମିଶ୍ରଣ ସମ୍ପର୍କରେ କିଛି କଥାବାର୍ତ୍ତା ହୋଇଥିଲା । ପାଦ୍ରୀ ସାହେବ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ର କରି ମଧ୍ୟପ୍ରଦେଶ ଅଧୀନରେ ହେବା ଉଚିତ ବୋଲି କୁଆଡ଼େ ମତ ବ୍ୟକ୍ତ କରିଥିଲେ । ସରକାରଙ୍କଠାରେ ପାଦ୍ରି ସାହେବ ଓ ଆଉ କେତେଜଣ ଭଦ୍ର ବ୍ୟକ୍ତି ଏକ ଆବେଦନ ପତ୍ର ମଧ୍ୟ ଦାଖଲ କରିଥିଲେ । ମଧୁବାବୁ ଓ ସାହେବଙ୍କ ଘରୋଇ କଥାବାର୍ତ୍ତାର ମର୍ମ "ଉତ୍କଳ ଦୀପିକା"ରେ ପ୍ରକାଶ ପାଇବାରୁ ସାହେବ ଅସନ୍ତୁଷ୍ଟ ହୋଇ ଏହାର ପ୍ରତିବାଦ କରିଥିଲେ । ମଧୁବାବୁଙ୍କ ମତ ସହିତ ପାଦ୍ରୀଙ୍କ ମତ ଅମେଳ ହେବାରୁ ଉଭୟଙ୍କ ମଧ୍ୟରେ ଯୁକ୍ତିତର୍କ ହୋଇଥିଲା । ପାଦ୍ରୀ କୁଆଡ଼େ କହିଲେ ଯେ କଟକରେ ସାଧାରଣ ସଭା କରି ମତାମତ ଜାଣିବା ସହଜ ନୁହେଁ, ବିଶେଷତଃ ମଧୁବାବୁଙ୍କ ବିରୁଦ୍ଧମତ ସପକ୍ଷରେ ସଭା କରିବା ସହଜ ନୁହେଁ । ଏହି କାରଣରୁ ସେ କେତେଜଣ ବନ୍ଧୁଙ୍କ ସହିତ ଆଲୋଚନା କରି ସେମାନଙ୍କର ମତ ଅନୁକୂଳ ଥିବା ଜାଣିବା ପରେ ଏପରି ଆବେଦନ ପତ୍ର ପଠାଇଥିଲେ । ସେ କୁଆଡ଼େ କହିଥିଲେ—"କଟକର ଅନେକ ଲୋକ, କେତେକ ଶିକ୍ଷିତ ଓ ଅନେକ ଅଶିକ୍ଷିତ ଅଛନ୍ତି ଯେଉଁମାନେ ବ୍ୟବସାୟ ଉପଲକ୍ଷରେ ଏବଂ ଅନ୍ୟ ପ୍ରକାରେ ଦାସ ମହାଶୟଙ୍କଠାରେ ଏପରି ବାଧ୍ୟ ଅଥବା ଅନୁଗତ ଯେ ପ୍ରକାଶ୍ୟ ସଭାରେ ତାହାଙ୍କ ବିରୁଦ୍ଧରେ ସେମାନଙ୍କର ପ୍ରକୃତ ମତ ପ୍ରକାଶ କରିବାର ସାହସ ହେବନାହିଁ ।" ଏହି କଥାକୁ ଲକ୍ଷ୍ୟ କରି ଉତ୍କଳ ଦୀପିକା ଲେଖିଥିଲେ—"ସଭା ସମ୍ବନ୍ଧରେ ସାହେବଙ୍କ ମତ ଶୁଣି ଆମ୍ଭେମାନେ ଆଶ୍ଚର୍ଯ୍ୟ ହୋଇଛୁ । ଯେବେ ଏ ନଗରରେ ଏତେ ଲୋକ ଦାସ ମହାଶୟଙ୍କର କିଣା ଖରିଦା ବା ପଛଗୋଡ଼ାଣିଆ ହେଲେ, ତେବେ ସାହେବ ମହୋଦୟ ସପକ୍ଷରେ ଅନ୍ତତଃ ୨୦ ଜଣ ପାଇଲେ କିପରି ? ପୁଣି ସେ ୨୦ ଜଣ ଏକ ଦଳର ପ୍ରତିନିଧି । ସୁତରାଂ ନିତାନ୍ତ ପକ୍ଷରେ ୨୦୦ ଲୋକର ସମଷ୍ଟି ହୋଇପାରନ୍ତି । ଆଉ ଯେବେ ତାହା ହିଁ ହୋଇଥାଏ, ତେବେ ତାହାଙ୍କର ବନ୍ଧୁମାନଙ୍କୁ ଯେତିକ ମନ୍ତ୍ରଣା କରିବାକୁ କାହିଁକି ବସିଥିଲେ । ଦାସ ମହାଶୟ ନିଜର ଉତ୍କୃଷ୍ଟ ଗୁଣରେ ଏଠା ଲୋକଙ୍କର ସ୍ନେହ ଓ ଆଦର ଆକର୍ଷଣ କରିଅଛନ୍ତି ଏବଂ ସାଧାରଣ ହିତ କାର୍ଯ୍ୟରେ ତାଙ୍କର ଅସୀମ ଯତ୍ନ ଓ ଚେଷ୍ଟା ଦେଖି ଲୋକେ ତାହାଙ୍କଠାରେ ଅନୁରକ୍ତ ହୋଇଅଛନ୍ତି । ଏଥିପାଇଁ ଯେ

ପ୍ରକାଶ୍ୟ ସଭରେ ତାହାଙ୍କର ମତର ବିପରୀତ କହିବା ନ୍ୟାୟସଙ୍ଗତ ହେଲେ ତାହା କେହି କହିବେ ନାହିଁ, ଏପରି ମନେ କରିବା ଏବଂ ଏ ନଗରରେ ଖୋସାମତିଆ ଭରତି ହୋଇଥିବା କହିବା ସମାନ ଅଟେ । X X"

ମଧୁବାବୁଙ୍କ ପ୍ରତି ଦେଶବାସୀଙ୍କର ଶ୍ରଦ୍ଧାର ନିଦର୍ଶନ ଏହି ମନ୍ତବ୍ୟରୁ ସ୍ପଷ୍ଟ ହେଉଛି । ଏ ସମୟରେ ମଧୁବାବୁ ଓଡ଼ିଶାର ମୁକୁଟବିହୀନ ରାଜାଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ ।

୧୯୦୪ରେ ପାଦ୍ରୀ ହୋଓ୍ୱେଲ (Howell) ବଙ୍ଗର ଲେଫ୍ଟନାଣ୍ଟଙ୍କଠାରୁ ଏକ ସ୍ମାରକ ପତ୍ର ପଠାଇ ଦାବୀ କରିଥିଲେ ଯେ ସବୁ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରି ମଧ୍ୟପ୍ରଦେଶ ଶାସନାଧୀନରେ ରଖାଯାଉ । ମଧୁବାବୁ ପାଦ୍ରୀ ସାହେବଙ୍କ ଦାବୀକୁ ବିରୋଧ କରିଥିଲେ । ମାନ୍ଦ୍ରାଜର ଓଡ଼ିଆ ଅଞ୍ଚଳ ଓ ଓଡ଼ିଆ ଭିତ୍ତିକ ସମ୍ବଲପୁର ସହିତ ମଧ୍ୟପ୍ରଦେଶ ଅଧୀନ ହେବା ଅପେକ୍ଷା ବଙ୍ଗପ୍ରଦେଶ ଅନ୍ତର୍ଗତ ହେବା ସବାଙ୍ଗରେ ଶ୍ରେୟସ୍କର ।

ମଧୁବାବୁ ପାଦ୍ରୀ ସାହେବଙ୍କଠାକୁ ଯେଉଁ ପତ୍ର ଦେଇଥିଲେ ତାହାର ମର୍ମ ହେଲା ଭାରତପରି ଏକ ଅଣ-ଖ୍ରୀଷ୍ଟିଆନ ରାଜ୍ୟରେ ଜଣେ ଖ୍ରୀଷ୍ଟିଆନ ପାଦ୍ରୀଙ୍କର ସ୍ଥାନ ଅତି ବିଶିଷ୍ଟ । ଆପଣ ଜଣେ ବିଦେଶୀୟ ହେଲେ ମଧ୍ୟ ସେବାଦ୍ୱାରା ଲୋକଙ୍କ ମନକୁ ଆକୃଷ୍ଟ କରି ପାରିଛନ୍ତି । ଏହାକୁ ପ୍ରଶଂସା କରିବାରେ ମୁଁ କାହାରଠାରୁ ନ୍ୟୂନ ନୁହେଁ; କିନ୍ତୁ ଯଦି ଏପରି ପରୋପକାରୀ ସମ୍ମାନାସ୍ପଦ ବ୍ୟକ୍ତି ତାଙ୍କ କାର୍ଯ୍ୟଦ୍ୱାରା ଦେଶର ଅପକାର କରନ୍ତି, ତାହାହେଲେ ଏହାକୁ କେହି ପସନ୍ଦ କରିବେ ନାହିଁ । ଦେଶର ଉନ୍ନତି କରିବା ଲକ୍ଷ୍ୟରେ ଯେ ଅନ୍ୟ ବିପଥକୁ ଆଶ୍ରୟ କରନ୍ତି, ତାହା ନିଶ୍ଚୟ ନିନ୍ଦାର ବିଷୟ । ମିସନାରିମାନଙ୍କର ଏହିପରି କେତେକ କାର୍ଯ୍ୟ ଯୋଗୁଁ ସେମାନେ ପୂର୍ବେ ନିନ୍ଦନୀୟ ହୋଇଥିବା ଇତିହାସରୁ ଜଣାଯାଏ । ଏହାଦ୍ୱାରା ପରୋକ୍ଷ ଭାବରେ ଭାରତୀୟ ଓ ଖ୍ରୀଷ୍ଟିଆନ୍ ପାଦ୍ରୀଙ୍କ ମଧ୍ୟରେ ଥିବା ସମ୍ପର୍କ ଉପରେ ପ୍ରଭାବ ପଡ଼ି ତିକ୍ତ କରିଦେଉଛି ।

ଦେଶର ସ୍ୱାର୍ଥ କହିଲେ କେବଳ କେତେକ ମୁଷ୍ଟିମେୟ ଶିକ୍ଷିତ ଲୋକ, ଆଇନଜୀବୀ କର୍ମୀମାନଙ୍କର ସ୍ୱାର୍ଥ ନୁହେଁ । ଆପଣ ଏପ୍ରକାର ମୁଷ୍ଟିମେୟ ଲୋକଙ୍କ ମନ ଜାଣିବାରେ ଯେଉଁ ସୁବିଧା ପାଇଛନ୍ତି, ସେଥିରୁ ଅପଣ କହିଛନ୍ତି ଯେ ଆପଣ ଯେଉଁ ଦାବୀ ସରକାରଙ୍କଠାରେ କରିଛନ୍ତି ତାହା ଏମାନଙ୍କର ମତ ଅନୁସାରେ ହୋଇଛି । ଏହି ଶ୍ରେଣୀର କେତେକଙ୍କ ସଙ୍ଗେ ଆଳାପ କରି ମୁଁ ବୁଝିଛି ଯେ ମଧ୍ୟପ୍ରଦେଶ ସହିତ ରହିଲେ ଓଡ଼ିଶାର ବିଶେଷ ସୁବିଧା ହେବ, ବେଶି ସମ୍ମାନ ମିଳିବ, ସରକାରୀ ବଡ଼ ଚାକିରିରେ ବେଶି ସୁବିଧା ମିଳିବ, ବେଶି ଚାକିରି ମିଳିବ, ଚାକିରି ପ୍ରତିଦ୍ୱନ୍ଦ୍ୱିତାରେ ଓଡ଼ିଆମାନେ କୃତକାର୍ଯ୍ୟ ହେବା ବେଶି ସମ୍ଭାବନା ରହିବ । ଏହି ସବୁ ସୁବିଧା ସୁଯୋଗ ବାସ୍ତବ ନୁହେଁ । ମଧ୍ୟପ୍ରଦେଶରେ ମଧ୍ୟ ବହୁ ବଙ୍ଗାଳୀ ଆଇନଜୀବୀ, କର୍ମଚାରୀ ଅଛନ୍ତି । ଏମାନଙ୍କୁ କେବେ ଦୂରକରି ହେବନାହିଁ । ଓଡ଼ିଶାରୁ ଏମାନଙ୍କୁ ଦୂରରେ ରଖିବା ମଧ୍ୟ ଆଇନଦ୍ୱାରା କରି ହେବ ନାହିଁ; ଏହି କାରଣରୁ ବଙ୍ଗାଳୀ-ମାନେ ନିଶ୍ଚୟ ରହିବେ । ମରହଟ୍ଟାଙ୍କପରି ଚତୁର ଶାସକ କର୍ମଚାରୀମାନେ ମଧ୍ୟ ରହିବେ ।

ସମ୍ମାନ ବା ପଦବୀ ସମ୍ବନ୍ଧରେ ସେ କହିଥିଲେ ଯେ ଏହା ଲୋକର ବିଶିଷ୍ଟ କାର୍ଯ୍ୟ ଓ ଗୁଣ ଉପରେ ନିର୍ଭର କରେ । କୌଣସି ଜାତି ଭିତ୍ତିରେ ଏହା ବଣ୍ଟନ କରାଯାଏ ନାହିଁ । ଏପରି ସ୍ଥଳେ ଅଧିକ ପଦବୀ ମିଳିବା ଯୁକ୍ତି ମଧ୍ୟ ଅନ୍ତଃସାରଶୂନ୍ୟ ।

ଓଡ଼ିଆମାନେ ସରକାରୀ ଚାକିରୀ ପାଇବା ସମ୍ବନ୍ଧରେ ସରକାର ଆସାମବାସୀଙ୍କୁ ସୁବିଧା ଦେଇ ଯେଉଁ ଆଦେଶନାମା ପ୍ରଚାର କରିଛନ୍ତି, ସେପରି ଓଡ଼ିଶାବାସୀଙ୍କୁ ସୁବିଧାଦେବା ଆବଶ୍ୟକ । ଆସାମ ସମ୍ବନ୍ଧୀୟ ଏ ସରକାରୀ ନିୟମକୁ ବଙ୍ଗାଳୀମାନେ ଗ୍ରହଣ କରିନେଇ ଥିବାରୁ ଓଡ଼ିଆଙ୍କ ସମ୍ବନ୍ଧରେ ସେମାନେ ଆପତ୍ତି କରିବା ଆଶଙ୍କା କରାଯାଇ ନ ପାରେ । ସୁବିଧାରେ ଏପରି ଆଦେଶ ସରକାରଙ୍କଠାରୁ ଆଦାୟ କରିବା ସହଜ ହୋଇପାରେ । ଏଥି ପାଇଁ ଯୁକ୍ତି ମଧ୍ୟ ଅଛି । ବଙ୍ଗଳା ଅପେକ୍ଷା ଓଡ଼ିଶା ଅନୁନ୍ନତ, ବହୁ ପଛରେ ପଡ଼ିଛି । କିନ୍ତୁ ମଧ୍ୟପ୍ରଦେଶରେ ଏ ଦାବୀ ସମ୍ଭବ ହେବନାହିଁ, କାରଣ ଉଭୟେ ଏ ବିଷୟରେ ସମାନ ସ୍ତରରେ ରହିଛନ୍ତି ।

ପୁଣି ମଧ୍ୟପ୍ରଦେଶରେ ଜମିଜମା ବନ୍ଦୋବସ୍ତରେ ଖଜଣା ଅତି ଉଚ୍ଚ ଥିବାରୁ ପ୍ରଜାକୁଳ ବେଶି ଉତ୍ପୀଡ଼ିତ । ଓଡ଼ିଶା ତ ଏକ ଗରିବ ପ୍ରଦେଶ । ବଙ୍ଗ ପରି ଏକ ଧନୀ ପ୍ରଦେଶ ସହିତ ମିଶି ରହିଲେ ଏହାର ନିଶ୍ଚୟ ମଙ୍ଗଳ ହେବ, ବ୍ୟବସାୟ ବାଣିଜ୍ୟ ବୃଦ୍ଧି ପାଇବ । ପୁଣି ଏକା କଲିକତାରେ ପ୍ରାୟ ୪୦ ହଜାର ଓଡ଼ିଆ ମଜୁରିଆ କାମ କରୁଛନ୍ତି, ଆଖ ପାଖ ମିଲ୍‌ମାନଙ୍କରେ କାମ କରୁଥିବା ଲୋକଙ୍କୁ ମିଶାଇଲେ ମୋଟରେ କେତେ ଲକ୍ଷ ହେବ । ଓଡ଼ିଶା ଓ ମଧ୍ୟପ୍ରଦେଶ ଭିତରେ ଯାତାୟାତ ଓ ବ୍ୟବସାୟ ବାଣିଜ୍ୟର ସୁବିଧା ନାହିଁ । ଏ କ୍ଷେତ୍ରରେ ବଙ୍ଗଦେଶ ସହିତ ଓଡ଼ିଶାର ବେଶି ସୁବିଧା ଅଛି । ବଙ୍ଗ ଓ ଓଡ଼ିଶା ଭିତରେ ବିଶେଷ ସାମ୍ୟ ରହିଥିବାରୁ ପ୍ରଶାସନ କ୍ଷେତ୍ରରେ ବିଶେଷ ଅସୁବିଧା ନାହିଁ । ବଙ୍ଗରେ ପ୍ରଚଳିତ ଆଇନ ସବୁ ଓଡ଼ିଶାରେ ଚଳିବାରେ ଅସୁବିଧା ନାହିଁ । ଲୋକେ ମଧ୍ୟ ମିଳିମିଶି ଚଳି ପାରୁଛନ୍ତି । ବହୁକାଳରୁ ଏପରି ଚଳି ଆସୁଛନ୍ତି । ବଙ୍ଗାଳୀମାନେ ଓଡ଼ିଆଙ୍କ ଅପେକ୍ଷା ବେଶି ଉନ୍ନତ । ଏମାନଙ୍କ ସହିତ ରହିଲେ କାଳକ୍ରମେ ଓଡ଼ିଆମାନେ ମଧ୍ୟ ଉନ୍ନତ ହେବା ସମ୍ଭାବନା ରହିଛି ।

ଗଡ଼ଜାତମାନଙ୍କ କଥା ମଧ୍ୟ ଦେଖ । ଓଡ଼ିଶା ସହିତ ଓଡ଼ିଶା ଗଡ଼ଜାତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଗଡ଼ଜାତମାନଙ୍କର ସମୂହ ଉନ୍ନତି ହେଲେ, ଓଡ଼ିଆଜାତି ଉନ୍ନତ ହେବ । ବଙ୍ଗଦେଶ ସହିତ ଯେଉଁ ଓଡ଼ିଆ ଗଡ଼ଜାତ ମିଶି ରହିଛି, ସେମାନଙ୍କ ପେସକସ୍ ସ୍ଥାୟୀ । ମଧ୍ୟପ୍ରଦେଶରେ ଥିବା ଓଡ଼ିଆ ଗଡ଼ଜାତମାନଙ୍କର ସେପରି ନୁହେଁ, ରାଜସ୍ୱ ବୃଦ୍ଧି ସଙ୍ଗେ ସେମାନଙ୍କର ପେସକେସ୍ ବୃଦ୍ଧି ପାଉଛି । ମଧ୍ୟପ୍ରଦେଶ ସହିତ ମିଶିଲେ ବଙ୍ଗଦେଶ ଅଧୀନରେ ଥିବା ଗଡଜାତମାନଙ୍କର କ୍ଷତି ହେବ । ସେମାନଙ୍କୁ କ୍ଷତିରେ ପକାଇବା ଅନୁଚିତ ହେବ ।

ପ୍ରଜାମାନେ ହେଲେ ଜାତିର ମେରୁଦଣ୍ଡ । ବଙ୍ଗପ୍ରଦେଶରେ ସେମାନଙ୍କର ଯେଉଁ ସୁବିଧା ରହିଛି, ମଧ୍ୟପ୍ରଦେଶରେ ସେହିପରି ସୁବିଧା ରହିବ ନାହିଁ । ଚିରସ୍ଥାୟୀ ବନ୍ଦୋବସ୍ତ

ପ୍ରଜାକୂଳ ପକ୍ଷରେ ମଙ୍ଗଳକର । ମଧ୍ୟପ୍ରଦେଶକୁ ଗଲେ ଚିରସ୍ଥାୟୀ ବନ୍ଦୋବସ୍ତର ଆଶା ତ୍ୟାଗ କରିବାକୁ ହେବ ।

ଓଡ଼ିଶା ଏକ ଗରିବ ରାଜ୍ୟ । ପ୍ରତିବର୍ଷ କେନାଲ ବାବଦରେ ଯେତେ କ୍ଷତି ହେଉଛି ତାହା ବଙ୍ଗପରି ଏକ ସମୃଦ୍ଧ ପ୍ରଦେଶ କେବଳ ବହନ କରିପାରେ । ମଧ୍ୟପ୍ରଦେଶ ପକ୍ଷେ ଏ କ୍ଷତି ବହନ କରିବା ସମ୍ଭବ ନୁହେଁ, ଫଳରେ ପ୍ରଜାମାନଙ୍କ ଉପରେ ଅଧିକ କର ବସିବା ଅବଶ୍ୟମ୍ଭାବୀ । ପାଦ୍ରି ସାହେବ କହିଥିଲେ ଯେ—କେନାଲ ବାବଦରେ କ୍ଷତି କେନ୍ଦ୍ର ସରକାର ବହନ କରିବା ଉଚିତ । କେନ୍ଦ୍ର ସରକାର ଏ ଦାବୀକୁ ଗ୍ରହଣ କରିବେ ବୋଲି ମଧୁବାବୁ ବିଶ୍ୱାସ କରି ନ ଥିଲେ । ସେ ଏକ ଉଦାହରଣ ଦେଇ କହିଲେ, "ଜେଜେବାପ ବହୁ ପରିଶ୍ରମ କରି ତାଙ୍କର ଜୀବନ ଭିତରେ ଯେଉଁ ଅର୍ଥ ସଞ୍ଚୟ କରି ଯାଇଥିଲେ, ତାହା ତାଙ୍କ ପୁଅ ଓ ନାତିମାନଙ୍କ ବେପରବା ଖର୍ଚ୍ଚ ତୁଲାଇବା ପାଇଁ ଦେବାକୁ କେବେ ସୁଖ ପାଇବ ନାହିଁ ।" ସେ କେନ୍ଦ୍ର ସରକାରଙ୍କୁ ଜେଜେବାପଙ୍କ ସହିତ ତୁଳନା କରିଥିଲେ । ସେ ପୁଣି କହିଥିଲେ, କେନ୍ଦ୍ର ସରକାର ପ୍ରଦେଶମାନଙ୍କଠାରୁ ପ୍ରତିବର୍ଷ ଅର୍ଥ ନେଉଛନ୍ତି ।

ମଧୁବାବୁଙ୍କୁ ବ୍ୟକ୍ତିଗତ ଭାବରେ ପାଦ୍ରି ଯେଉଁ କଠୋର ସମାଲୋଚନା କରିଛନ୍ତି, ତାହାର ସମୁଚିତ ଉତ୍ତର ତାଙ୍କର ସ୍ୱଭାବସୁଲଭ ଢଙ୍ଗରେ ଦେଇଥିଲେ । ପାଦ୍ରିଙ୍କୁ ସେ କହିଥିଲେ ଯେ—ନିଜର ବ୍ୟକ୍ତିଗତ ଲାଭ ନିମିତ୍ତ ସେ ଦେଶର କାର୍ଯ୍ୟ କରିବାପାଇଁ ଅଗ୍ରସର ହୋଇନାହାନ୍ତି । ସେ ଯାହା କରୁଛନ୍ତି ତାହା ଦେଶର ଭବିଷ୍ୟତ ଉନ୍ନତି ନିମନ୍ତେ କରୁଛନ୍ତି । ଦଶ ପନ୍ଦର କି କୋଡ଼ିଏ ବର୍ଷରେ ଦେଶର କୌଣସି ଉପକାର ହେଲେ ସେ ବ୍ୟକ୍ତିଗତ ଭାବରେ କିଛି ଲାଭବାନ୍ ହେବେନାହିଁ । ବର୍ତ୍ତମାନ ତାଙ୍କୁ ୫୬ ବର୍ଷ ବୟସ ହେଲଣି । ଏ ବୃଦ୍ଧ ବୟସରେ ଭବିଷ୍ୟତର ସୁଖ ଆଶା ରଖି କାର୍ଯ୍ୟ କରିବା ବୃଥା । ପୁଣି, ତାଙ୍କର କୁଟୁମ୍ବ କେହି ନାହାନ୍ତି, ସନ୍ତାନସନ୍ତତି କେହି ନାହିଁ ଯେ ଭବିଷ୍ୟତରେ ସେମାନେ ଲାଭବାନ୍ ହେବେ ବୋଲି ସେ ଉଦ୍ଦେଶ୍ୟରେ କିଛି କାର୍ଯ୍ୟ କରିବେ ।

ପାଦ୍ରି କହିଥିଲେ ଯେ—ମଧୁବାବୁ ପ୍ରଥମେ ସବୁ ଓଡ଼ିଆଭାଷୀ ଅଞ୍ଚଳକୁ ଏକ ଚିଫ କମିଶନରଙ୍କ ଅଧୀନରେ ରଖାଯିବା ପାଇଁ ଦାବୀ କରିଥିଲେ, କିନ୍ତୁ ପରେ ଏ ମତ ପରିବର୍ତ୍ତନ କଲେ । ମଧୁବାବୁ ଏହା ସ୍ୱୀକାର କରି କହିଥିଲେ—କୌଣସି ଏକ ନିର୍ଦ୍ଦିଷ୍ଟ ମତ ପ୍ରତି ଚିରଦିନ ଅନୁରକ୍ତ ରହିବା ନୀତିକୁ ସେ ସମର୍ଥନ କରନ୍ତି ନାହିଁ । ମୁଁ ସବୁବେଳେ ଯୁକ୍ତିକୁ ଗ୍ରହଣ କରିବାପାଇଁ ପ୍ରସ୍ତୁତ । ଏହି ହେତୁ ଧାର୍ମିକ ପ୍ରାଧାନ୍ୟ ଥିବା ବିଷୟ ଉପରେ ମଧ୍ୟ ମୁଁ ମୋ ମତ ପରିବର୍ତ୍ତନ କରିଛି, କିନ୍ତୁ ପ୍ରତ୍ୟେକ ଦେଶକର୍ମୀ ନିଜକୁ ଲୋକଙ୍କର ସେବକ ବୋଲି ଭାବିବାକୁ ହେବ । ତାହାର ନିଜର ନୈତିକ ବିଶ୍ୱାସ, ଧାର୍ମିକ ବିଶ୍ୱାସ ବା ତାହାର ବିବେକ ସହିତ ବିରୋଧ କରୁ ନ ଥିଲେ ଲୋକଙ୍କର ଯୁକ୍ତିଯୁକ୍ତ ମତକୁ ସେ ଗ୍ରହଣ କରି କାର୍ଯ୍ୟ କରିବାକୁ ହେବ ।

ଏହି ଚିଠିରେ ମଧୁବାବୁ ଲେଖିଥିଲେ ଯେ ଗତବର୍ଷ (୧୯୦୩) ଅପ୍ରେଲ ମାସରେ କଟକରେ ସଭା ହୋଇ ଯେଉଁ ଦାବୀ ସବୁ ହୋଇଥିଲା, ସେଥିରେ ସବୁ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରି ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ଅଧୀନରେ ରଖାଯାଉ ବୋଲି ଦାବୀ ହୋଇଥିଲା । ମଧୁବାବୁ ସେହି ସମୟରେ ସେହି ପ୍ରସ୍ତାବକୁ ସମର୍ଥନ କରିଥିଲେ । ବର୍ତ୍ତମାନ ପାଦ୍ରି ସାହେବ ସରକାରଙ୍କଠାରେ ସେହି ଦାବୀ କରିବାରୁ ମଧୁବାବୁ ତାଙ୍କ ଉପରେ ବିରକ୍ତ ହେବାର କିଛି କାରଣ ନାହିଁ ବୋଲି ପାଦ୍ରି ସାହେବ ନିଜ କାର୍ଯ୍ୟକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ମଧୁବାବୁ ଅନ୍ୟ କୌଣସି ପ୍ରଭାବ ଦ୍ୱାରା ପ୍ରଭାବିତ ହୋଇ ଏହା କରିଥିବା ସମ୍ଭବ ବୋଲି ସ୍ପଷ୍ଟ ଭାବେ କହିଥିଲେ । ମଧୁବାବୁ ଏହାକୁ ଅସ୍ୱୀକାର କରିଥିଲେ ମଧ୍ୟ କେତେକଙ୍କ ମନରେ ଅସନ୍ତୋଷ ରହିଥିଲା । ସେ ନିଜ କାର୍ଯ୍ୟକୁ ସମର୍ଥନ କରି କହିଥିଲେ ଯେ ସେହି ସମୟବେଳକୁ ସେ ଉତ୍କଳ ସଭା (Orissa Association)ର ଜଣେ କର୍ମକର୍ତ୍ତା ଥିବାରୁ ସେହି ହିସାବରେ ସଭାର ମତକୁ କାର୍ଯ୍ୟକାରୀ କରିବାପାଇଁ ବାଧ୍ୟ, ତାହା ନ କଲେ କୌଣସି ଫଳ ମିଳି ପାରିବ ନାହିଁ । ଯେତେବେଳେ ସେ (ମଧୁବାବୁ) ଏ ମତ ସହିତ ଏକମତ ହେଉନାହାନ୍ତି, ସେତେବେଳେ ତାହା ସର୍ବସାଧାରଣଙ୍କୁ ଜଣାଇ-ଦେବା ଉଚିତ ମନେ କରିଛନ୍ତି । ପୁଣି, ସେ ସମୟରେ ବାବୁ ଗୋକୁଳାନନ୍ଦ ଚୌଧୁରୀ ମଧ୍ୟ ପାଦ୍ରି ସାହେବଙ୍କ ମତକୁ ସମର୍ଥନ କରୁଥିଲେ । ତାଙ୍କ ସହିତ ଅନେକ ବନ୍ଧୁ ମଧ୍ୟ ଏହିପରି ମତ ପୋଷଣ କରିଥିଲେ; କିନ୍ତୁ ତାଙ୍କ (ମଧୁବାବୁଙ୍କ) ସହିତ ଆଳାପ-ଆଲୋଚନା ପରେ ସେମାନେ ମତ ପରିବର୍ତ୍ତନ କରିଛନ୍ତି ଏବଂ ବଙ୍ଗ ସହିତ ମିଶି ରହିବା ପାଇଁ ଦାବୀ କରିଛନ୍ତି । ଏଥିରେ ନିଜର କିଛି ବ୍ୟକ୍ତିଗତ ସ୍ୱାର୍ଥ ନ ଥିବା ମଧୁବାବୁ ଜଣାଇଥିଲେ ।

( ୧୨ ) ୨୩।୪।୧୯୦୩—ବ୍ରହ୍ମପୁର ଗଞ୍ଜାମ ଜାତୀୟ ସମିତିରେ ଯୋଗଦେବା ପରେ ମଧୁବାବୁ କଟକ ଫେରିଆସି ଗଞ୍ଜାମ ଜିଲ୍ଲାର ଜନସାଧାରଣଙ୍କ ଆକାଙ୍‌କ୍ଷା ସ୍ପଷ୍ଟଭାବରେ ଦେଶମିଶ୍ରଣର ଅନୁକୂଳ ଥିବାର ବୁଝିପାରିଲେ । ଏ ସମ୍ପର୍କରେ ଆଲୋଚନା କରି ଭବିଷ୍ୟତ କାର୍ଯ୍ୟାନୁଷ୍ଠାନ କରିବା ନିମନ୍ତେ ସେ ଉତ୍କଳ ସଭା ବା ଓଡ଼ିଶା ଆସୋସିଏସନ୍ (Orissa Association ) ଆନୁକୂଲ୍ୟରେ କଟକରେ ଏକ ସଭା ଆହ୍ୱାନ କଲେ । ଏହି ସଭାରେ ସମସ୍ତେ ଓଡ଼ିଆ ଅଞ୍ଚଳ ନିମନ୍ତେ ଏକ ଶକ୍ତିଶାଳୀ କେନ୍ଦ୍ର ଅନୁଷ୍ଠାନ ଗଠନ କରିବା ଆବଶ୍ୟକତା ଉପଲବ୍ଧି କରିଯାଇଥିଲା । ଗଞ୍ଜାମ ସମ୍ମିଳନୀ ସାଫଲ୍ୟମଣ୍ଡିତ ହୋଇଥିବାରୁ ସମସ୍ତ ଓଡ଼ିଆ ଅଞ୍ଚଳ ସ୍ତରରେ ଏକ ବହୁମୁଖୀ ସମ୍ମିଳନୀ ବା ଜାତୀୟ ପୀଠ ଗଠନ କରିବା ନିମନ୍ତେ ଏହି ସଭାରେ ମୁଖିଆମାନେ ତତ୍ପର ହୋଇ ପଡ଼ିଲେ । ଏହି ମର୍ମରେ ଏକ ପ୍ରସ୍ତାବ ମଧ୍ୟ ଏ ସଭାରେ ଗୃହୀତ ହୋଇଥିଲା । ଆଗାମୀ ଖ୍ରୀଷ୍ଟମାସ ବା ବଡ଼ଦିନ (ଡିସେମ୍ବର ଶେଷ ସପ୍ତାହ) ଛୁଟି ଭିତରେ କଟକରେ ଏକ ସମ୍ମିଳନୀ ଆହ୍ୱାନ କରିବା ସ୍ଥିର ହୋଇଥିଲା । ଉପାନ୍ତ ଅଞ୍ଚଳଗୁଡ଼ିକୁ ଓଡ଼ିଶା ସହିତ ମିଶାଇଦେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଯାଉ ନଚେତ୍ ଓଡ଼ିଶା ଡିଭିଜନ ସହ ମିଶାଇଦେଇ ବଙ୍ଗପ୍ରଦେଶ ଅଧୀନରେ ରହୁ—ଏହି ପ୍ରସଙ୍ଗରେ ଆଲୋଚନା ମଧ୍ୟ ହୋଇଥିଲା ।

୧୯୦୩ ଅକ୍ଟୋବର ୨୫ ତାରଖରେ କନକା ରାଜବାଟୀରେ ଗୋଟିଏ ସାଧାରଣ ସଭା ହୋଇଥିଲା । ସେଥିରେ ଉତ୍କଳ ସମ୍ମିଳନୀ ଡିସେମ୍ବର ୩୦ ତାରଖ ଓ ୩୧ ତାରଖରେ ହେବା ସ୍ଥିର ହେଲା ଏବଂ ଆୟୋଜନପାଇଁ ଏକ କାର୍ଯ୍ୟକାରୀ କମିଟି ଗଠିତ ହୋଇଥିଲା । ଏହି ସମ୍ମିଳନୀର ପ୍ରଥମ ଅଧିବେଶନରେ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ସଭାପତି ହୋଇଥିଲେ । ଉତ୍କଳ ସମ୍ମିଳନୀ ବିଂଶ ଶତାବ୍ଦୀର ଓଡ଼ଶା ଇତିହାସରେ ସର୍ବୋତ୍କୃଷ୍ଟ ସ୍ଥାନ ଅଧିକାର କରିଛି । ପ୍ରାୟ ତିରିଶ ବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଜାତିର ଆଶା ଓ ଆକାଙ୍କ୍ଷାର ବାଣୀ ଏହି ମିଳନପୀଠରେ ରୂପ ଲାଭ କରିଛି ।

ଖ୍ରୀ: ୧୯୦୩ର 'ଖଲ୍ଲିକୋଟ ସମ୍ମିଳନୀ' ଓ 'ଗଞ୍ଜାମ ସମ୍ମିଳନୀ' ଉତ୍କଳ ସମ୍ମିଳନୀର ଅଗ୍ରଦୂତ । ଦେଶପ୍ରାଣ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀର ଜନ୍ମଦାତା । ୧୯୦୩ ଡିସେମ୍ବର ମାସର ଶେଷ ସପ୍ତାହରେ କଟକରେ ମଧୁବାବୁ ଓ ଅନ୍ୟାନ୍ୟ ନେତା ଓ କର୍ମୀମାନଙ୍କ ଅଦମ୍ୟ ଉତ୍ସାହ ଓ ପ୍ରଗାଢ଼ ଦେଶାତ୍ମବୋଧର ଫଳସ୍ୱରୂପ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ମହାସମାରୋହ ଓ ଜାତୀୟ ଉନ୍ମାଦନା ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ଜାତୀୟ ଏକତା ଉତ୍କଳ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ହେଲେ ମଧ୍ୟ ଜାତିର ସମୃଦ୍ଧି କଲ୍ୟାଣ ଓ ଅଗ୍ରଗତି ଏହାର ଲକ୍ଷ୍ୟ ଭିତରୁ ବହିର୍ଭୂତ ନ ଥିଲା ।

୧୯୩୬ରେ ନବ ଉତ୍କଳ ପ୍ରଦେଶ ଗଠିତ ହେବାପରେ ଉତ୍କଳୀୟମାନଙ୍କର ଜାତୀୟତା ପୁନର୍ବାର ଜୀବନ ଲାଭ କରିଛି । ଊନବିଂଶ ଶତାବ୍ଦୀ ଓ ତାହାର ବହୁ ପୂର୍ବରୁ ଉତ୍କଳୀୟମାନଙ୍କର ଏକତା ଧ୍ୱଂସ ହୋଇଯାଇଥିଲା ଏବଂ ସେମାନେ ଭାରତରେ ଅବହେଳିତ ହୋଇ ମୃତବତ୍ ରହିଥିଲେ । ପୂର୍ଣ୍ଣାଙ୍ଗ ନ ହେଲେ ମଧ୍ୟ ସ୍ୱତନ୍ତ୍ର ପ୍ରଦେଶ ଯେ ମୃତକଳ୍ପ ଓଡ଼ିଆଜାତିର ପିଣ୍ଡରେ ପ୍ରାଣ ସଞ୍ଚାର କରିଛି, ଏଥିରେ ସନ୍ଦେହ ନାହିଁ । ଖଣ୍ଡିତ ପ୍ରଦେଶକୁ ପୂର୍ଣ୍ଣାଙ୍ଗ କରିବା ଲକ୍ଷ୍ୟ ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ବାରମ୍ବାର ଘୋଷିତ ହୋଇଛି ଏବଂ ଲକ୍ଷ୍ୟ ସାଧନ ଦିଗରେ ସ୍ପଷ୍ଟ ଦୃଢ଼ପନ୍ଥା ଅବଲମ୍ବନ କରାଯିବାକୁ ସିଦ୍ଧାନ୍ତ ହୋଇଛି ।

ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ସମ୍ପର୍କରେ ପ୍ରଥମ ଅଧିବେଶନରେ ଏହିପରି ସୂଚନା ଦିଆଯାଇଥିଲା—"ଏ ସମ୍ମିଳନୀର ନାମ ଉତ୍କଳ ସମ୍ମିଳନୀ । ଏଥିରେ ସମସ୍ତ ଉତ୍କଳଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ପ୍ରସ୍ତାବିତ ହୋଇ କାର୍ଯ୍ୟରେ ପରିଣତ ହେବ । ବର୍ତ୍ତମାନ ସରକାର ବାହାଦୂରଙ୍କ ରାଜତ୍ୱରେ ଓଡ଼ଶାର ସୀମା ଢେର୍ କମିଯାଇଛି । ଫଳରେ ମଧ୍ୟ ଦେଖାଯାଉଅଛି ଯେ ସମ୍ବଲପୁର, ଛୋଟନାଗପୁର, ମେଦିନୀପୁର, ଗଞ୍ଜାମ ଇତ୍ୟାଦି ସ୍ଥାନମାନ ଓଡ଼ଶା ବାହାରେ ଥାଇ ସୁଦ୍ଧା ସେ ଅଞ୍ଚଳରେ ଓଡ଼ିଆଙ୍କ ସଂଖ୍ୟା ବହୁତ । ସେଥିପାଇଁ ସମସ୍ତ ଉତ୍କଳଭାଷୀ ଅଞ୍ଚଳକୁ 'ଉତ୍କଳ' ବୋଲି ନାମ ଦିଆ ହୋଇଅଛି ଏବଂ ସମ୍ମିଳନୀର ନାମ ଉତ୍କଳ-ସମ୍ମିଳନୀ ହୋଇଅଛି । ବର୍ତ୍ତମାନ ଉତ୍କଳ-ସମ୍ମିଳନୀ ଉତ୍କଳୀୟମାନଙ୍କ ମଙ୍ଗଳ ସାଧନ ଅଭିପ୍ରାୟରେ ସ୍ଥାପିତ ହୋଇଅଛି ।

"ଯେଉଁମାନେ ଉତ୍କଳର ସ୍ଥାୟୀ ଅଧିବାସୀ ହୋଇଅଛନ୍ତି; ଅର୍ଥାତ୍ ଯେଉଁମାନେ ଉତ୍କଳକୁ ସେମାନଙ୍କ ଗୃହ ସ୍ୱରୂପ ମଣିଅଛନ୍ତି, ସେମାନେ ଭିନ୍ନ ଜାତୀୟ ହେଲେ ସୁଦ୍ଧା ସେମାନଙ୍କୁ ଉତ୍କଳୀୟ ବୋଲି ଗଣନା କରାଯିବ । ଯେଉଁମାନେ ଅନେକ ଦିନ ହେଲା ଏଠାକୁ ଆସି ଓଡ଼ିଶାକୁ ଆପଣାର ମାତୃଭୂମିସ୍ୱରୂପ ଗ୍ରହଣ ଏବଂ ସ୍ୱୀକାର କରିଅଛନ୍ତି ଓ ଓଡ଼ିଆମାନଙ୍କ ସହିତ ସାଧନକୁ ସ୍ୱଜାତି ପ୍ରତି କର୍ତ୍ତବ୍ୟ ବୋଲି ମନେ କରୁଅଛନ୍ତି, ସେମାନଙ୍କୁ ଆମ୍ଭେମାନେ ଉତ୍କଳୀୟ ବୋଲି ଡାକୁଅଛୁ ।"

ସମ୍ମିଳନୀର କାର୍ଯ୍ୟକୁ ଜାତୀୟ କାର୍ଯ୍ୟରୂପେ ଗ୍ରହଣ କରାଯାଇଅଛି ଏବଂ ଏ ସମ୍ବନ୍ଧରେ ସ୍ପଷ୍ଟଭାବରେ କୁହାଯାଇଛି, "ଏପରି ଗୋଟିଏ ଜାତୀୟ କାର୍ଯ୍ୟ ଆରମ୍ଭ କରିବାକୁ ହେଲେ, ଆମ୍ଭମାନଙ୍କର କାର୍ଯ୍ୟର ସୀମା କେତେଦୂର ଓ ଆମ୍ଭମାନଙ୍କର ସାମର୍ଥ୍ୟ କଣ ଅଛି, ଏହା ପ୍ରଥମେ ଉତ୍ତମରୂପେ ବୁଝିବାକୁ ହେବ । ଏହି ସମ୍ମିଳନୀର ସୀମାମଧ୍ୟରେ ରାଜନୈତିକ ଆନ୍ଦୋଳନ ଓ ଧର୍ମସମ୍ବନ୍ଧୀୟ ତର୍କ ଏ ଦୁହେଁ ସ୍ଥାନ ପାଇନାହାନ୍ତି ।

ଏ ନୀତିଟି ତତ୍କାଳୀନ ଉତ୍କଳୀୟମାନଙ୍କର ଅବସ୍ଥା ବିବେଚନାରେ ଗ୍ରହଣ କରାଯାଇଥିବା ଜଣାଯାଏ । "ଉତ୍କଳୀୟମାନଙ୍କର ବର୍ତ୍ତମାନ ଅବସ୍ଥାକୁ ବିଚାର କରିବାକୁ ଗଲେ ଦେଖାଯିବ ଯେ ଆଜି ପର୍ଯ୍ୟନ୍ତ ଉତ୍କଳୀୟମାନେ ଭାରତବର୍ଷର ଅନ୍ୟାନ୍ୟ ଜାତିମାନଙ୍କ ଠାରୁ ଅନେକ ପଛରେ ପଡ଼ିଅଛନ୍ତି । ରାଜନୈତିକ ଆନ୍ଦୋଳନ ପ୍ରତି ମନଦେବା ପୂର୍ବରୁ ପ୍ରଥମେ ଦେଖିବା ଉଚିତ ଯେ ଉତ୍କଳୀୟମାନେ ରାଜନୈତିକ ଚର୍ଚ୍ଚା କରିବାକୁ ଉପଯୁକ୍ତ ହୋଇ ଅଛନ୍ତି କି ନାହିଁ ? ରାଜନୈତିକ ଚର୍ଚ୍ଚା କରିବାକୁ ହେଲେ ଅନ୍ୟର ବା ସର୍କାର ବାହାଦୂରଙ୍କର କାର୍ଯ୍ୟକଳାପର ଦୋଷାଦୋଷ ବିବେଚନା କରିବାକୁ ହେବ; କିନ୍ତୁ ଧୀରଭାବରେ ଉତ୍କଳର ବର୍ତ୍ତମାନ ଅବସ୍ଥା ଭାବିଲେ ସ୍ଥିର ହେବ ଯେ ଅନ୍ୟର ଦୋଷ ଧରିବାପାଇଁ ପଦାକୁ ବାହାରିବା ପୂର୍ବରୁ ଆପଣାର ଦୋଷ ସଂଶୋଧନ କରି ଆପଣା ଉପରେ ନିର୍ଭର କରି ଉନ୍ନତି କରିବା ଉଚିତ । ଲୋକେ କହନ୍ତି, 'ଆପଣା ସୁନା ତ ଭେଣ୍ଡି, ପର ସଙ୍ଗେ କିଆଁ ଧରାଧରି ।' ଆପଣାର ଦୋଷ ସଂଶୋଧନ କରି ଘରେ ଉତ୍ତମରୂପେ ବାଡ଼ ବୁଜି, ବାହାରକୁ ଅଣ୍ଟାଭିଡ଼ି ବାହାରିବା ଉଚିତ । ଏଥିଯୋଗୁଁ କୌଣସି ରାଜନୈତିକ ତର୍କ ବା ସମାଲୋଚନାକୁ ସମ୍ମିଳନୀର ବର୍ତ୍ତମାନ ସୀମାମଧ୍ୟରୁ ବାହାର କରିଦେବାକୁ ହୋଇଅଛି ।"

ସେତେବେଳେ ଓଡ଼ିଆମାନଙ୍କର ସ୍ଥାନ କୌଣସିଠାରେ ନ ଥିଲା । ସବୁଠାରେ ସେମାନେ ଅବହେଳିତ ଓ ଲାଞ୍ଛିତ ହେଉଥିଲେ । ଚାରିଟି ପ୍ରଦେଶ ଭିତରେ ବାଣ୍ଟିହୋଇ ପ୍ରତ୍ୟେକଠାରେ ସଂଖ୍ୟାଲଘିଷ୍ଠ ସମ୍ପ୍ରଦାୟରୂପେ ରହିଥିବାରୁ ସେମାନଙ୍କର ସ୍ୱର କେହି ଶୁଣିପାରୁ ନ ଥିଲେ । କୌଣସି ପ୍ରକାର ସମ୍ମିଳିତ ଚେଷ୍ଟା ମଧ୍ୟ ହୋଇପାରୁ ନ ଥିଲା । ଯେନକେନ ପ୍ରକାରେଣ ସ୍ୱତନ୍ତ୍ର ଅବସ୍ଥିତି ବା ଏକତ୍ରାବସ୍ଥାନ ଯେ ପ୍ରଥମ କାର୍ଯ୍ୟ, ଏହା ସମସ୍ତେ ଉପଲବ୍ଧି କରିଥିଲେ । ଉତ୍କଳ ସମ୍ମିଳନୀର ଜନ୍ମବେଳକୁ ଭାରତବର୍ଷରେ ମଧ୍ୟ

ରାଜନୈତିକ ଆନ୍ଦୋଳନ ବଳିଷ୍ଠ ନ ଥିଲା । ଅଣରାଜନୈତିକ ଲୋକ ଓ ସେମାନଙ୍କର ସଂଖ୍ୟାର ସଂଖ୍ୟା ହିଁ ବେଶି ଥିଲା । ଏପରିସ୍ଥଳେ ସମ୍ମିଳନୀକୁ ଅଣରାଜନୈତିକ ସଂସ୍ଥାରୂପେ ଗଠନ କରି ସମ୍ମିଳନୀର ପିତାମାନେ ଯଥାର୍ଥ ପନ୍ଥା ଗ୍ରହଣ କରିଥିଲେ ।

ଉତ୍କଳୀୟମାନେ ବିଦ୍ୟା, ଧନ, ଶିଳ୍ପ ଓ ସମାଜ ଇତ୍ୟାଦି ବିଷୟରେ କିପରି ଉନ୍ନତି କରିବେ, ଏହା ହିଁ ସମ୍ମିଳନୀର କଳ୍ପନା ଥିଲା । ଏହି ଜାତୀୟ ପୀଠର ଜନ୍ମର ଇତିହାସ ସମ୍ମିଳନୀ ବିବରଣୀରେ ଅତି ମର୍ମସ୍ପର୍ଶୀ ଭାଷାରେ ବ୍ୟକ୍ତ ହୋଇ ଇତିହାସର ଗୌରବ ଲାଭ କରିଛି ।

"ସମସ୍ତ ଉତ୍କଳଭାଷୀ ପ୍ରଦେଶର ଲୋକମାନେ ଆଜିପର୍ଯ୍ୟନ୍ତ ନାନାଦି କାରଣରୁ ଭିନ୍ନ ଭିନ୍ନ ହୋଇ ନିଜ ନିଜକୁ ନ ଚିହ୍ନି ଯେ ଯେଉଁଠାରେ ପଡ଼ି ରହିଥିଲେ । ସବୁ ଭାଇଯାକ କିପରି ଥରେହେଲେ ଏକାଠେଇଁ ହୋଇପାରିବା, ଏ ଭାବ କ୍ରମଶଃ ସମସ୍ତଙ୍କ ମନରେ ଉଦୟ ହୋଇଥିବାର ତେର ପ୍ରମାଣ ମିଳିଅଛି । ଭାଷାସୂତ୍ରରେ ଏ ଭାବ ପ୍ରଥମେ ଉଦିତ ହେଲା । ସମ୍ବଲପୁରରୁ କେତେକ ଦିନ ପୂର୍ବରେ ଯେତେବେଳେ କଚେରିମାନଙ୍କରୁ ଓଡ଼ିଆଭାଷା ଉଠିଗଲା, ସେତେବେଳେ ସମ୍ବଲପୁରର ଓଡ଼ିଆମାନେ କାନ୍ଦି ଉଠିଲେ ଓ ସେତେବେଳେ ଉତ୍କଳବ୍ୟାପୀ ହାହାକାର ପଡ଼ିଗଲା । ପରିଶେଷରେ ସମ୍ବଲପୁରର ଭାଇମାନଙ୍କର ଦୃଢ଼ଚେଷ୍ଟା, ଏଠାର ଓଡ଼ିଶାର ଭାଇମାନଙ୍କ ମନରେ ଦୁଃଖ ଓ ସହାନୁଭୂତି ଓ ଭଗବାନଙ୍କ ଅନୁଗ୍ରହରୁ ବଙ୍ଗଳାର ବର୍ତ୍ତମାନ ଲେଫ୍ଟେନାଣ୍ଟ୍ ଶ୍ରୀଯୁକ୍ତ ଆଣ୍ଡ୍ରୁ ଫ୍ରେଜର୍, ଯେକି ସେ ସମୟରେ ମଧ୍ୟପ୍ରଦେଶର ଭାଗ୍ୟବିଧାତା ରୂପେ ଠିଆ ହୋଇଥିଲେ, ସେ ସମ୍ବଲପୁରର ଓଡ଼ିଆମାନଙ୍କୁ ଅଭୟବର ଦେଇ ଓଡ଼ିଆଭାଷାକୁ ସମ୍ବଲପୁରର କଚେରି-ମାନଙ୍କରେ ପୁନର୍ବାର ଚଳାଇଲେ । ଯେତେବେଳେ ମୃତ ଓଡ଼ିଆ ଭାଷା ପୁନର୍ବାର ଜୀଇଁ ଉଠିଲା, ସେତେବେଳେ ଉତ୍କଳ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଆନନ୍ଦରେ ମାତି ଉଠିଲା । ସେହିଦିନ ଉତ୍କଳବାସୀ ଅଞ୍ଚଳର ଏକ ସୀମାରେ ବାସ କରୁଥିବା ଓଡ଼ିଆଙ୍କ ମଧ୍ୟରେ ଓ ଅନ୍ୟ ସୀମାରେ ବାସ କରୁଥିବା ଓଡ଼ିଆଙ୍କ ମଧ୍ୟରେ ଭାଇଭାବ ଥିବାର ପୂର୍ଣ୍ଣ ପ୍ରମାଣ ମିଳିଲା । ଆମ୍ଭେ-ମାନେ ବିଚାରୁଛୁ, ସେହିଦିନଠାରୁ ଉତ୍କଳୀୟମାନଙ୍କର ଗୋଟିଏ ନବଯୁଗ ଆରମ୍ଭ ହେଲା ।

"କେତେ ଦିନପରେ ଗଞ୍ଜାମର ଭାଇମାନେ ବ୍ରହ୍ମପୁରଠାରେ ଶୁଭକ୍ଷଣରେ ଗୋଟିଏ ଜାତୀୟ ମେଳାର ସୂତ୍ରପାତ କଲେ । ପ୍ରଥମ ଉଦ୍ୟମରେ ଏହା ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହେବା ଅସମ୍ଭବ; କିନ୍ତୁ ସେଥିରେ ରାଜନୈତିକ ଓଡ଼ିଶାର କେତେକ ଭ୍ରାତା ଆମନ୍ତ୍ରିତ ହୋଇ ପୂର୍ଣ୍ଣହୃଦୟରେ ଯୋଗ ଦେଇଥିଲେ । ଯଦିଚ ପୂର୍ବ ଘଟଣାରେ ଜାତୀୟ ଯୁଗ-ପ୍ରବର୍ତ୍ତନର ଆଗାମୀ ସୂଚନା ଦେଖା ଯାଇଥିଲା, ବ୍ରହ୍ମପୁରର ଜାତୀୟ ସମ୍ମିଳନୀ ସତକୁ-ସତ ସେହି ଯୁଗର ପ୍ରଭାତ ଉତ୍କଳୀୟମାନଙ୍କୁ ଦେଖାଇଲା । ଯଦିଚ ସମଗ୍ର ଉତ୍କଳୀୟମାନଙ୍କ ମନରେ ପୂର୍ବରୁ ଗୁପ୍ତଭାବରେ ଜାତୀୟ ଭାବ ବଢ଼ିଥିଲା, ସେହିଦିନ ସେହି ଜାତୀୟ ଭାବଟି ବାହାରକୁ ଫୁଟି ଉଠିଲା ଓ ଗଞ୍ଜାମ ଜାତୀୟ ସମିତିର ଗ୍ରୁପରେ କଟକରେ ଗୋଟିଏ ପ୍ରକାଣ୍ଡ

ଉତ୍କଳ ସମ୍ମିଳନୀ ସଭା ସ୍ଥାପନର କଳ୍ପନା ହେଲା । କେତେଦିନ ପୂର୍ବରୁ ସମଗ୍ର ଉତ୍କଳରେ ଏପରି ଗୋଟିଏ ଜାତୀୟ ଅନୁଷ୍ଠାନ ଆବଶ୍ୟକ ବୋଲି କେହି କେହି କଳ୍ପନା-ଚକ୍ଷୁରେ ଦେଖୁଥିଲେ । ରମ୍ଭାରେ ଜାତୀୟ ସମ୍ମିଳନୀରେ ସେହି କଳ୍ପନା ପିଲୁଲାଟି ସତକୁ ସତ ନାଚିବାର ଆଶା ଉଦି ଉଠିଲା । × ×"

କଟକରେ ଉତ୍କଳ ସମ୍ମିଳନୀ ଜନ୍ମଲାଭ କରି ସମଗ୍ର ଓଡ଼ିଆ ଜାତିର, ଦେଶମାତୃକାର ଏକମାତ୍ର ପୂଜାପୀଠରୂପେ ପ୍ରତିଷ୍ଠାଲାଭ କରିଥିଲା ।

ଉତ୍କଳ ସମ୍ମିଳନୀକୁ ଉତ୍କଳର ପ୍ରଧାନ ପ୍ରତିନିଧିମୂଳକ ଜାତୀୟ ପୀଠରେ ପରିଣତ କରିବାପାଇଁ ସ୍ୱର୍ଗତ ଦେଶପ୍ରାଣ ମଧୁସୂଦନ ଦାସ ପ୍ରଗାଢ଼ ପରିଶ୍ରମ କରିଛନ୍ତି । ମଧୁବାବୁ କହିଥିଲେ—"ଉତ୍କଳ ସମ୍ମିଳନୀ ଉତ୍କଳବାସୀଙ୍କ ସମ୍ମିଳନୀ, ଜନନୀ ଜନ୍ମଭୂମିଙ୍କ ପୂଜା-ମଣ୍ଡପ" (୧୯୧୮ର ଅଧିବେଶନ) । ୧୯୧୬ ରେ ସେ ଉତ୍କଳ ସମ୍ମିଳନୀର ରୂପରେଖକୁ ସୁନ୍ଦର ଭାବରେ ବୁଝାଇ ଥିଲେ—"ସମ୍ମିଳନୀର ଅର୍ଥ ମୁଁ ବୁଝିପାରିନାହିଁ ଏବଂ ଅନେକ ବୁଝିନାହାନ୍ତି । ଇନସ୍ୟୁରେନ୍ସ କମ୍ପାନୀ, କରଣସଭା, ବ୍ରାହ୍ମଣସଭା ଭଳି ଏ ଗୋଟିଏ ସଭା ନୁହେଁ । କେତେକ ମହାଜନ ତାଙ୍କର ସ୍ୱାର୍ଥରକ୍ଷାପାଇଁ ଗୋଟିଏ ସଭା ଗଠନ କଲେ । କରଣ ଓ ବ୍ରାହ୍ମଣମାନେ ସଭା କଲେ । ସମ୍ମିଳନୀର ସଂଖ୍ୟା ବା ସୀମା ନାହିଁ । ଅନ୍ୟ ସଭାର ସଭ୍ୟତାଲିକା ଅଛି, ମାତ୍ର ଉତ୍କଳ ସମ୍ମିଳନୀର ସଭ୍ୟମାନଙ୍କର ସଂଖ୍ୟା ନାହିଁ କି ତାଲିକା ନାହିଁ । ସମସ୍ତ ଓଡ଼ିଆ ଜାତି ଏହାର ସଭ୍ୟ । ପ୍ରଥମେ ଏହା ଭୁଲିଯିବା ଉଚିତ ନୁହେଁ ଯେ ଏ ସଭା ନୁହେଁ କିମ୍ବା କମ୍ପାନୀ ନୁହେଁ; ଏହା ଜାତିର ମିଳନପୀଠ ଅଟେ । ଯାହା ହୋଇଅଛି ସେଥିରେ ଜାତିର ଦାବୀ ଅଛି; ପୁଣି ଯାହା ହେବ ସେଥିରେ ସୁଦ୍ଧା ଜାତିର ଦାବୀ ହେବ । ଏହି ପ୍ରଭେଦ ମନେ ରଖିଲେ ଅନେକ ଗୋଳମାଳ ତୁଟିଯିବ ।"

ବିଭିନ୍ନ ଅଧିବେଶନର ସଭାପତିମାନେ ଏହି ପ୍ରସଙ୍ଗ ଉତ୍ଥାପନ କରି ସମ୍ମିଳନୀର ଗୌରବ ବ୍ୟାଖ୍ୟାନ କରିଛନ୍ତି ଏବଂ ଦେଶବାସୀଙ୍କୁ ଲକ୍ଷ୍ୟ ସାଧନ ଦିଗରେ ସର୍ବପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ନିବେଦନ କରିଛନ୍ତି ।

ଏହି ମହାତ୍ମାମାନଙ୍କର ବାଣୀ ଉତ୍କଳୀୟଙ୍କ ମନରେ ନବ ଚେତନା ଜାଗ୍ରତ କରି ସମ୍ମିଳନୀର ଲକ୍ଷ୍ୟ ସାଧନ, ଅର୍ଥାତ୍—ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଦିଗରେ ଏକ ମନରେ ଏକ ପ୍ରାଣରେ ଗତି କରାଇଛି ।

୧୮୬୬ ନଅଙ୍କ ଦୁର୍ଭିକ୍ଷର କରାଳ ଛାୟା ସରକାରୀ କଳ ଉପରେ ପଡ଼ିଥିଲା । ସାର୍ ନର୍ଥକୋଟ ଶାସନଗତ ତ୍ରୁଟିଯୋଗୁଁ ଏ ଭୟାବହ ମୃତ୍ୟୁର ତାଣ୍ଡବଲୀଳା ଘଟିଥିବା ଉପଲବ୍ଧି କରିଥିଲେ ଏବଂ ସରକାରଙ୍କୁ ଜଣାଇଥିଲେ ଯେ ଏଭଳି ପରିସ୍ଥିତିର ପୁନରା-ଭିନୟ ନ ହେବାପାଇଁ ସରକାର ସବୁବେଳେ ସଜାଗ ରହିବା ଆବଶ୍ୟକ ଓ ଓଡ଼ିଶାକୁ ବଙ୍ଗ ପ୍ରଦେଶରୁ ଅଲଗା କରିଦେବା ଦରକାର । ଏହି ବର୍ଷ ଭାରତର ଏକାଉଣ୍ଟାଣ୍ଟ

ଜେନେରାଲ୍ ଜର୍ଜ ଶଫ୍ଟନ ଓଡ଼ିଶାକୁ ବଙ୍ଗଳାରୁ ଅଲଗା କରିଦେଇ ବଙ୍ଗଳାର ମେଦିନୀପୁର, ମଧ୍ୟପ୍ରଦେଶ ଓ ଉତ୍ତର ମାନ୍ଦ୍ରାଜର ଓଡ଼ିଆ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରସ୍ତାବ ସରକାରଙ୍କୁ ଦେଇଥିଲେ ।

**କେତେକ ମୁଖ୍ୟ ଘଟଣାବଳୀ:——**

୧୮୯୭—ସମ୍ବଲପୁରର କଚେରିମାନଙ୍କରୁ ଓଡ଼ିଆ ଭାଷା ଉଠାଇଦେଇ ତାହା ପରିବର୍ତ୍ତେ ହିନ୍ଦୀ ପ୍ରଚଳନ କରିବାପାଇଁ ତତ୍କାଳୀନ ବିହାରର ଚିଫ୍ କମିଶନର ପ୍ରସ୍ତାବ ଦେଲେ । ଓଡ଼ିଶାରେ ପ୍ରବଳ ବିରୋଧ ହେବାରୁ ଫ୍ରେଜର୍ ସାହେବ ଓଡ଼ିଆ ଭାଷାକୁ ପୂର୍ବଭଳି ପ୍ରଚଳନ କରିବାକୁ ଆଦେଶ ଦେଲେ ।

୧୯୦୩—ଅନ୍ୟ ପ୍ରଦେଶରେ ଥିବା ଓଡ଼ିଆମାନେ ଓଡ଼ିଶା ସହିତ ମିଶିବାକୁ ଚାହୁଁଛନ୍ତି କି ନାହିଁ, ତାହା ସ୍ପଷ୍ଟଭାବରେ ଜଣା ନ ଗଲେ ଦେଶ ମିଶ୍ରଣ ପ୍ରଶ୍ନ ଉଠିବା ପ୍ରୟୋଜନ ନ ଥିବା ଉଚ୍ଚ ସରକାରୀ କର୍ମକର୍ତ୍ତାମାନେ ମତ ବ୍ୟକ୍ତ କରିବାରୁ ଗଞ୍ଜାମବାସୀ ସଭାସମିତି କରି ଦେଶମିଶ୍ରଣ ସପକ୍ଷରେ ମତ ବ୍ୟକ୍ତ କରିଥିଲେ । ଏହାର ଫଳ—ଖଲ୍ଲିକୋଟର ରମ୍ଭା ସମ୍ମିଳନୀ ଓ ବ୍ରହ୍ମପୁରର ଗଞ୍ଜାମ ସମିତି ।

୧୯୦୩—କଟକରେ ଉତ୍କଳ ସମ୍ମିଳନୀର ଜନ୍ମ । ପ୍ରଥମ ଅଧିବେଶନର ସଭାପତି—ମୟୂରଭଞ୍ଜ ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ।

୧୯୦୪—କଟକରେ ଦ୍ୱିତୀୟ ଅଧିବେଶନ । ସଭାପତି—ଧରାକୋଟର ରାଜା ମଦନମୋହନ ସିଂହ ଦେବ ।

୧୯୦୬—ବାଲେଶ୍ୱରରେ ୩ୟ ଅଧିବେଶନ । ସଭାପତି—ତାଳଚେରର ରାଜା ।

୧୯୦୭—ବ୍ରହ୍ମପୁରରେ ୪ର୍ଥ ଅଧିବେଶନ । ସଭାପତି—କନିକାରାଜା ରାଜେନ୍ଦ୍ର-ନାରାୟଣ ଭଞ୍ଜଦେବ ।

୧୯୦୮ ଅପ୍ରେଲ—ପୁରୀରେ ୫ମ ଅଧିବେଶନ । ସଭାପତି—ସୁରଙ୍ଗୀର ରାଜା ।

୧୯୦୯ ଡିସେମ୍ବର—୬ଷ୍ଠ ଅଧିବେଶନ, କଟକ । ସଭାପତି—ଆଠଗଡ଼ର ରାଜା ।

୧୯୧୦ ଡିସେମ୍ବର—୭ମ ଅଧିବେଶନ, କଟକ । ସଭାପତି—ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେଓ ।

୧୯୧୨ ଡିସେମ୍ବର—୮ମ ଅଧିବେଶନ, ବ୍ରହ୍ମପୁର । ସଭାପତି—ସୁରଙ୍ଗୀର ରାଜା ।

୧୯୧୩ ଡିସେମ୍ବର—୯ମ ଅଧିବେଶନ, ପୁରୀ । ସଭାପତି—ମଧୁସୂଦନ ଦାସ ।

୧୯୧୪ ଡିସେମ୍ବର ମାସ—ପାରଳାଖେମୁଣ୍ଡି ଠାରେ, ୧୦ମ ଅଧିବେଶନ । ସଭାପତି—ବିକ୍ରମଦେବ ବର୍ମା ।

୧୯୧୫ ଡିସେମ୍ବର—୧୧ଶ ଅଧିବେଶନ, ସମ୍ବଲପୁର । ସଭାପତି—କେଉଁଝର ରାଜା ।

୧୯୧୬ ଡିସେମ୍ବର—୧୨ଶ ଅଧିବେଶନ, ବାଲେଶ୍ୱର । ସଭାପତି—ମୟୂରଭଞ୍ଜ ରାଜା ।

୧୯୧୮ ମାର୍ଚ୍ଚ—୧୩ଶ ଅଧିବେଶନ । ସଭାପତି—ଫକୀରମୋହନ ସେନାପତି ।

ଏହାପରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ନିୟମିତ ଭାବେ ହୋଇପାରି ନ ଥିଲା । ଆବଶ୍ୟକତା ଅନୁଯାୟୀ ବୈଠକ ବସୁଥିଲା ।

୧୯୧୯ ଅପ୍ରେଲ ମାସରେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ସମ୍ମିଳନୀର ୧୪ଶ ଅଧିବେଶନ ବସିଥିଲା । ପଣ୍ଡିତ ଗୋପବନ୍ଧୁ ଦାସ ସଭାପତି ହୋଇଥିଲେ ।

୧୫ଶ ଅଧିବେଶନ ପୁରୀଠାରେ ଡିସେମ୍ବର ମାସରେ ବସିଥିଲା । ସମ୍ବଲପୁରର ଶ୍ରୀ ଚନ୍ଦ୍ରଶେଖର ବେହେରା ସଭାପତି ହୋଇଥିଲେ ।

ଅସହଯୋଗ ଆନ୍ଦୋଳନ ପରେ ଦେଶରେ କଂଗ୍ରେସର ପ୍ରତିପତ୍ତି ବହୁତ ବୃଦ୍ଧି ପାଇଲା ଏବଂ ଭାରତର ଶାସନ ସଂସ୍କାର ସମ୍ବନ୍ଧରେ କଂଗ୍ରେସର ମତ ହିଁ ଲୋକମତ ବୋଲି ବହୁ ଲୋକ ଚିନ୍ତାକଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଓ ଦେଶମିଶ୍ରଣ ଦାବୀ ଏକ ମାତ୍ର କଂଗ୍ରେସ ଦ୍ୱାରା ହିଁ ସମ୍ଭବ ହେବ ବୋଲି କଂଗ୍ରେସ ନେତାମାନେ ପ୍ରଚାର କଲେ । ଫଳରେ ଚକ୍ରଧରପୁର ଅଧିବେଶନରେ ଉତ୍କଳ ସମ୍ମିଳନୀ ଉତ୍କଳ ପ୍ରାଦେଶିକ କଂଗ୍ରେସ ଅନୁଷ୍ଠାନର ଅନ୍ତର୍ଭୁକ୍ତ ହେଲା ଏବଂ ସମ୍ମିଳନୀର ସତ୍ତା ଲୋପ ପାଇଲା; କିନ୍ତୁ ଉତ୍କଳ କଂଗ୍ରେସ ଦେଶ-ମିଶ୍ରଣ ଓ ସ୍ୱତନ୍ତ୍ରପ୍ରଦେଶ ବିଷୟରେ ବିଶେଷ ଅଗ୍ରସର ହୋଇ ପାରିଲା ନାହିଁ । ଦଳେ କଂଗ୍ରେସ ନେତାଙ୍କ ମତ ହେଲା—ଆଗେ ସ୍ୱରାଜ୍ୟ, ପରେ ସ୍ୱତନ୍ତ୍ର ପ୍ରଦେଶ । ଅବଶ୍ୟ ନିଖିଳ ଭାରତ କଂଗ୍ରେସ ଅନୁଷ୍ଠାନ ଭିତରେ ଉତ୍କଳ ପାଇଁ ଏକ ସ୍ୱତନ୍ତ୍ର ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହୋଇ କାର୍ଯ୍ୟକାରୀ ହେଲା, କିନ୍ତୁ ଶାସନ କ୍ଷେତ୍ରରେ ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନ ଆଶାନୁରୂପ ଅଗ୍ରସର ହୋଇ ପାରିଲାନାହିଁ । ବିହାର, ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର କଂଗ୍ରେସ ନେତାମାନେ ସେମାନଙ୍କ ପ୍ରଦେଶରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଛାଡ଼ିବାପାଇଁ ଆଦୌ ସମ୍ମତ ହେଲେନାହିଁ । କଂଗ୍ରେସରେ ଏମାନଙ୍କର ପ୍ରଭାବ ଓ ପ୍ରତିପତ୍ତି ବେଶିଥିବାରୁ ଓଡ଼ିଶାର କଂଗ୍ରେସ ନେତାମାନେ ଉଲ୍ଲେଖଯୋଗ୍ୟ କୌଣସି କାର୍ଯ୍ୟ ଏ ଦିଗରେ କରି ପାରିଲେ ନାହିଁ ।

କଂଗ୍ରେସର ଅସହଯୋଗ ନୀତି ଉତ୍କଳ ସମ୍ମିଳନୀର ନୀତି ବୋଲି ଚକ୍ରଧରପୁରରେ ଘୋଷିତ ହୋଇଥିଲା । ଏହାର ବିରୋଧ କରୁଥିବା ନେତାଙ୍କ ସଂଖ୍ୟା ମଧ୍ୟ ଊଣା ନ ଥିଲା । କଂଗ୍ରେସ ସହିତ ସମ୍ମିଳନୀ ମିଶିଯିବାପରେ ଓଡ଼ିଶାରେ ସର୍ବଦଳର ମିଳନପୀଠ ଲୋପପାଇ-ଯିବାରୁ ନିଶ୍ଚେଷ୍ଟତା ଦେଶରେ ଖେଳିଗଲା । ଏ ଅବସ୍ଥା ଦେଖି ୧୯୨୪-୨୫ରେ ସ୍ୱର୍ଗତ ଶଶିଭୂଷଣ ରଥ ପ୍ରଭୃତିଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀକୁ ପୁଣି ଜୀବନ ଦାନ କରାଗଲା ।

କଟକର କଲ୍ପତରୁ ଦାସଙ୍କ ସଭାପତିତ୍ୱରେ ବ୍ରହ୍ମପୁରରେ ସମ୍ମିଳନୀର ଅଧିବେଶନ ବସିଥିଲା ।

ଏହାପରେ ବିଭିନ୍ନ ଶାସନ ସଂସ୍କାର କମିଟି ଆଗରେ ସମ୍ମିଳନୀ ତରଫରୁ ସ୍ମାରକ ପତ୍ର ଓ ଆବେଦନ ପତ୍ର ଦିଆଯାଇଥିଲା । ବିଭିନ୍ନ ସୀମା କମିଟି ଆଗରେ ସମ୍ମିଳନୀ ଦାବୀପତ୍ର ମଧ୍ୟ ଦେଇଥିଲା । ୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପର୍ଯ୍ୟନ୍ତ ପୂର୍ବ ତେଜରେ ନ ହେଲେ ମଧ୍ୟ ସମ୍ମିଳନୀ ଯଥାସାଧ୍ୟ ଏ ଆନ୍ଦୋଳନକୁ ଚଳାଇଥିଲା ।

ପ୍ରାଥମିକ ଅବସ୍ଥାରେ ସମ୍ମିଳନୀ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନ ସହ ଉତ୍କଳୀୟମାନଙ୍କ ସାମାଜିକ ଓ ଆର୍ଥିକ ଉନ୍ନତି ପାଇଁ ବିଭିନ୍ନ ଯୋଜନା ପ୍ରସ୍ତୁତ କରି ଦେଶରେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର, ଶିଳ୍ପୋନ୍ନତି, ସ୍ତ୍ରୀଶିକ୍ଷା ଓ ଉଚ୍ଚଶିକ୍ଷା ପ୍ରଭୃତି ବିଷୟରେ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିଥିଲା । ପ୍ରତିବର୍ଷ କେତେକ ଛାତ୍ରଙ୍କୁ ଉଚ୍ଚଶିକ୍ଷା ପାଇଁ ବୃତ୍ତି ଦିଆଯାଉଥିଲା । ଶାସନ କ୍ଷେତ୍ରରେ ଓଡ଼ିଆଙ୍କ ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ସରକାରଙ୍କ ଠାରେ ବରାବର ଦାବୀ ହୋଇ ଆସୁଥିଲା । ପ୍ରଚାରକମାନେ ନିଯୁକ୍ତ ହେଉଥିଲେ । ଏମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସମ୍ମିଳନୀର ବାର୍ତ୍ତା ପ୍ରଚାର କରୁଥିଲେ । ମଧୁବାବୁ ହିଁ ସମ୍ମିଳନୀର ପ୍ରାଣ ଥିଲେ । ସବୁ ଉଦ୍ୟମର ଉତ୍ସ ତାଙ୍କଠାରେ କେନ୍ଦ୍ରୀଭୂତ ଥିଲା । ସେ ଅକ୍ଳାନ୍ତ ପରିଶ୍ରମ କରି, ଅଜସ୍ର ଧନ ସ୍ୱହସ୍ତରୁ ବ୍ୟୟ କରି ସମ୍ମିଳନୀକୁ ବଞ୍ଚାଇ ରଖିଥିଲେ ଏବଂ ତାର ଗୌରବକୁ ରକ୍ଷା ଓ ବୃଦ୍ଧି କରିଥିଲେ ।

ଉତ୍କଳ ସମ୍ମିଳନୀର ଜନ୍ମବୃତ୍ତାନ୍ତ ସମ୍ବନ୍ଧରେ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ଏଠାରେ ବ୍ୟକ୍ତ କରିବା ଆବଶ୍ୟକ ମନେହୁଏ ।

"ଅସ୍ୟମାରମ୍ଭାସ୍ତୁ ଶୁଭସ୍ତୁ ଭବତୁ" । ମଧୁବାବୁଙ୍କ ମନରେ ଉତ୍କଳ ଦେଶମିଶ୍ରଣ ଆନ୍ଦୋଳନର ବୀଜ ବପନ କଟକ ଜିଲ୍ଲା ଅନ୍ତର୍ଗତ ପଟିଆ ଜମିଦାରଙ୍କ ସହିତ ଆଳାପରୁ ହେଲା ବୋଲି କେହି କେହି କହନ୍ତି ।

ମଧୁବାବୁଙ୍କ ଯୌବନାବସ୍ଥା ସମୟରେ ଦକ୍ଷିଣ ଓଡ଼ିଶା ଓ ଉତ୍ତର ଓଡ଼ିଶା ଭିତରେ ଲୋକଙ୍କର ମିଳାମିଶାର ବେଶି ସୁବିଧା ବା ଆବଶ୍ୟକତା ନ ଥିଲା । ଦକ୍ଷିଣ ଓଡ଼ିଶା ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଭୁକ୍ତ ହୋଇଥିବାରୁ ରାଜନୈତିକ କାରଣଜନିତ ମିଳାମିଶାର ସେତେ ସୁବିଧା ନଥିଲା । କେବଳ ସାମାଜିକ ଓ ଆର୍ଥିକ କ୍ଷେତ୍ରରେ କିଛି କିଛି ମିଳାମିଶା ସମ୍ଭବ ହେଉଥିଲା । ଗଞ୍ଜାମ ଉତ୍ତର ସୀମାକୁ ଲାଗି ଓ ନିକଟରେ ନୟାଗଡ଼, ଦଶପଲ୍ଲା, ବଉଦ, ବାଣପୁର, ପାରିକୁଦ ଅଞ୍ଚଳ ଥିବାରୁ ଘୁମୁସର, ଆଠଗଡ଼, ଖଲ୍ଲିକୋଟ, ହୁମା, ପାଲୁର ପ୍ରଭୃତି ଜମିଦାରୀର ଜମିଦାର ଓ ଲୋକଙ୍କ ସହ ଏମାନଙ୍କର ବୈବାହିକ ଓ ବୈଷୟିକ ସମ୍ପର୍କ ରହିଥିଲା । ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ସାମୟିକ ଉଭୟପଟକୁ ଲୋକେ ଯିବା ଆସିବା କରୁଥିଲେ । ରାଜ ପରିବାରର ବୈବାହିକ ସମ୍ପର୍କ ଏ ମିଳନକୁ ବିଶେଷ ଭାବରେ ବ୍ୟାପକ ଓ

ଦୃଢ଼ କରି ରଖିଥିଲି । ପରିଆ ଜମିଦାର ବଂଶ ସହିତ ଦୁମା ଜମିଦାର, ପାରଲା ଜମିଦାର ପ୍ରଭୃତିଙ୍କର ଘନିଷ୍ଠ ସମ୍ପର୍କ ଥିଲା ।

ଥରେ ପରିଆ ରାଜା ମଧୁବାବୁଙ୍କ ପାଖକୁ କୌଣସି ମକଦ୍ଦମା ସମ୍ପର୍କରେ ପରାମର୍ଶ କରିବାପାଇଁ କଟକ ଆସିଥିଲେ । କଥା ପ୍ରସଙ୍ଗରେ ପରିଆ ରାଜପରିବାର ସହିତ ଗଞ୍ଜାମଜିଲ୍ଲାର ସମ୍ପର୍କଥିବା କଥା ପରିଆ ରାଜା କହିଥିଲେ । ଗଞ୍ଜାମର ବହୁ ରାଜାଙ୍କ ସହିତ ଉତ୍ତର ଓଡ଼ିଶା ଓ ଗଡ଼ଜାତର ବହୁ ରାଜାଙ୍କର ବୈବାହିକ ସମ୍ପର୍କ ଥିବା ଜାଣିପାରି ଯୁବକ ମଧୁବାବୁ ବଡ଼ ଖୁସି ହୋଇଥିଲେ ଏବଂ ଏମାନଙ୍କୁ ଏକାଠି କରି ସଂଗଠିତ କଲେ ଜାତିର ସମୂହ କଲ୍ୟାଣ ସାଧିତ ହୋଇପାରିବ ବୋଲି ସେ ଭାବିବାକୁ ଲାଗିଲେ । ସେହି ସମୟରୁ ଦେଶ ମିଶ୍ରଣ ଆନ୍ଦୋଳନ ପ୍ରତି ଜାଗ୍ରତ ହୋଇଥିବା ତାଙ୍କର ଉତ୍ସାହ ପ୍ରବଳ ହୋଇଉଠିଲା । ମଧୁବାବୁ ପରିଆ ରାଜାଙ୍କୁ କହିଥିଲେ—ଗଞ୍ଜାମରେ ଏତେ ରାଜା ଅଛନ୍ତି । ଆହା, ଆମେ ପରସ୍ପର ପରିଚୟରୁ ବଞ୍ଚିତ ହୋଇଥାଉଁ । ଉପେନ୍ଦ୍ର, ଗୋପାଳକୃଷ୍ଣ, କୃଷ୍ଣ ସିଂହ, କବିସୂର୍ଯ୍ୟ ନ ଥିଲେ ଆମ ଭାଇଙ୍କୁ ମଧ୍ୟ ଆମେ ଚହ୍ନିବାର ସୁଯୋଗ ପାଇ ନ ଥାନ୍ତେ । ଯଦି ସମସ୍ତେ ଏକାଠି ହୋଇ ପରସ୍ପର ଦୁଃଖ ସୁଖ ବୁଝନ୍ତେ, ତେବେ ମିଳନ ନିଶ୍ଚୟ ମଙ୍ଗଳପ୍ରଦ ହୁଅନ୍ତା । ଓଡ଼ିଆଜାତି ଯେ କେଡ଼େ ବିଶାଳ ଗୌରବର ଅଧିକାରୀ, ତାହା ଜଗତକୁ ଦେଖାଇ ଦିଅନ୍ତେ । "ଅସ୍ୟମାରମ୍ଭାସ୍ୟ ଶୁଭାସ୍ୟ ଭବତୁ ।"

**ପ୍ରଥମ ଅଧିବେଶନ :** କଟକ ସହରର ପଶ୍ଚିମ ପ୍ରାନ୍ତରେ ଅବସ୍ଥିତ ବିରାଟ ଇଦଗା ପଡ଼ିଆରେ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଅଧିବେଶନର ସମସ୍ତ ଆୟୋଜନ ଅତି ଉତ୍ସାହର ସହିତ ଚାଲିଥିଲାବେଳେ ହଠାତ୍ କଟକ ଆକାଶରେ ଅନ୍ଧକାର-ମେଘ ଦେଖାଦେଲା । ଉତ୍କଳ ସମ୍ମିଳନୀର ବିରାଟ ଆୟୋଜନ ଦେଖି କମିଶନର ଶ୍ରୀ କେ. ଜି. ଗୁପ୍ତଙ୍କ ମନରେ ରାଜନୈତିକ-ଆନ୍ଦୋଳନର ଆଶଙ୍କା ଜାଗ୍ରତ ହୋଇଥିଲା । ବହୁ ସରକାରୀ କର୍ମଚାରୀ ଆୟୋଜନରେ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ସାହାଯ୍ୟ କରୁଥିଲେ । କାରଣ, ସେମାନେ ଜାଣିଥିଲେ ଯେ ଏଥିରେ ରାଜନୀତି କିମ୍ବା ସରକାର ବିରୋଧର ଗନ୍ଧ ନାହିଁ । ଏଭଳି ସମ୍ମିଳନୀ ପୂର୍ବରୁ କେବେ କଟକରେ ବା ଓଡ଼ିଶାର କୌଣସି ସ୍ଥାନରେ ଏତେ ବିରାଟ ଆୟୋଜନ ସହକାରେ ହୋଇ ନ ଥିଲା । ସରକାରୀ ଉଚ୍ଚ ହାକିମ ଭବିଷ୍ୟତରେ ସଙ୍କଟ ଘଟିବାର ଆଶଙ୍କା କରି ଏକ ଗୁପ୍ତ ନିର୍ଦ୍ଦେଶ-ନାମା (circular) ଜାରିକରି ସରକାରୀ କର୍ମଚାରୀମାନଙ୍କୁ ସମ୍ମିଳନୀରେ ଯୋଗ ନ ଦେବାକୁ ନିର୍ଦ୍ଦେଶ ଦେଲେ ।

ସେତେବେଳକୁ ସମ୍ମିଳନୀ ବସିବାର ସବୁ ଆୟୋଜନ ହୋଇ ସାରିଥିଲା । ଆଉ ପ୍ରାୟ ଏକସପ୍ତାହ ମାତ୍ର ସମୟ ଥିଲା । କମିଶନରଙ୍କ ଏ ଗୁପ୍ତ ନିର୍ଦ୍ଦେଶନାମା ବିନା ମେଘରେ ବଜ୍ରପାତ ପରି ହେଲା । ଉଦ୍ୟୋକ୍ତାମାନେ ଚକିତ ହୋଇ ପଡ଼ିଲେ । ସମ୍ମିଳନୀରେ

ଯୋଗ ଦେବାପାଇଁ ଓଡ଼ିଶା ଓ ଉପାନ୍ତ ଅଞ୍ଚଳର ବହୁ ସରକାରୀ, ବେସରକାରୀ ଭଦ୍ରବ୍ୟକ୍ତି, ଜମିଦାର, ଗଡ଼ଜାତର ରାଜା ମହାରାଜାମାନେ ଯୋଗ ଦେବାପାଇଁ ସ୍ୱୀକୃତ ଜଣାଇଥିଲେ । ସେମାନଙ୍କର ରହଣିପାଇଁ ବିରାଟ ଆୟୋଜନ ହୋଇ ସେ ସମ୍ପର୍କରେ ବହୁ ଅର୍ଥ ଅଭ୍ୟର୍ଥନା ସମିତି ଖର୍ଚ୍ଚ କରି ସାରିଥିଲେ । କମିଶନରଙ୍କ ନିର୍ଦ୍ଦେଶନାମା ଫଳରେ ଜମିଦାର ଓ ଗଡ଼ଜାତର ରାଜାମାନେ ଭୟଭୀତ ହେବାର କାରଣ ଥିଲା, କାରଣ କମିଶନର ସାହେବ ଗଡ଼ଜାତର ସର୍ବୋଚ୍ଚ ଅଧିକାରୀ ସୁପରିଣ୍ଟେଣ୍ଡେଣ୍ଟ ମଧ୍ଯ ଥିଲେ । ଯଦି ରାଜା, ମହାରାଜା, ଜମିଦାରମାନେ ଭୟ କରି ସମ୍ମିଳନୀରେ ଯୋଗ ନ ଦିଅନ୍ତି, ତାହାହେଲେ ସମ୍ମିଳନୀ ସଫଳ ହେବା ସମ୍ଭାବନା ଅତି ଅଳ୍ପ ଥିଲା ।

ଉତ୍କଳ ସମ୍ମିଳନୀର ପ୍ରଧାନ ଉଦ୍‌ଯୋକ୍ତା ଓ ପ୍ରାଣ ମଧୁସୂଦନ ପୂର୍ବରୁ ଏହି ଆଶଙ୍କା କରିଥିଲେ । ଏହାର ନିରାକରଣ ପାଇଁ ସେ ମଧ୍ଯ ପନ୍ଥା ଅବଲମ୍ବନ କରିଥିଲେ । ସମ୍ମିଳନୀର ଉଦ୍ଦେଶ୍ୟ ରାଜନୈତିକ ହୋଇ ନ ଥିବା ଜଣାଇ ସମ୍ମିଳନୀର ଅଭ୍ୟର୍ଥନା ସମିତିରେ ଗଠିତ ହୋଇ ଗୃହୀତ ହୋଇଥିବା ପ୍ରସ୍ତାବଗୁଡ଼ିକର ନକଲ ପୂର୍ବରୁ କମିଶନର ଓ କଲେକ୍ଟରଙ୍କ ଅବଗତି ନିମନ୍ତେ ମଧୁବାବୁ ପଠାଇ ଦେଇଥିଲେ । କମିଶନର କେ.ଜି. ଗୁପ୍ତଙ୍କ ନିର୍ଦ୍ଦେଶନାମା ଜାରି ହୋଇଥିବା ଖବର ପାଇବାମାତ୍ରେ କେତେ ଜଣ ସରକାରୀ କର୍ମଚାରୀ ସମ୍ମିଳନୀର ଅଭ୍ୟର୍ଥନା ସମିତି ସଭ୍ୟ ପଦରୁ ଇସ୍ତଫା ଦେଇଥିଲେ ।

ତା ୨୪ । ୧୨ । ୧୯୦୩ରେ ଅଭ୍ୟର୍ଥନା ସମିତିର କାର୍ଯ୍ୟ ନିର୍ବାହକ ସମିତିର ସମ୍ପାଦକରୂପେ ମଧୁସୂଦନ ସମିତିର ଅନୁମତିମତେ ଏକ ଲମ୍ବା ତାରବାର୍ତ୍ତା ବଙ୍ଗ-ସରକାରଙ୍କଠାକୁ କଲିକତା ପଠାଇଲେ । ଏହି ବାର୍ତ୍ତାର ଅନୁବାଦ ଏହିପରି— "ଏଠାରେ ଜନରବ ଉଠିଛି ଯେ କିରାଣୀ ପର୍ଯ୍ୟନ୍ତ ସମସ୍ତ ସରକାରୀ କର୍ମଚାରୀଙ୍କୁ ସମ୍ମିଳନୀ ଏବଂ ପ୍ରଦର୍ଶନୀରେ ଉପସ୍ଥିତ ହେବାକୁ ଗଭର୍ଣ୍ଣମେଣ୍ଟ ନିଷେଧ କରିଛନ୍ତି । ଗତକାଲିଠାରୁ କେତେକ ସରକାରୀ କର୍ମଚାରୀ ସଭାରେ ଉପସ୍ଥିତ ହୋଇ ପାରିବେ ନାହିଁ ବୋଲି ଦୁଃଖ ପ୍ରକାଶ କରି ଆମ୍ଭ ନିକଟକୁ ପତ୍ର ଲେଖି ଅଛନ୍ତି । ଆହୁରି ମଧ୍ଯ ଜନରବ ଉଠିଛି ଯେ ରାଜାମାନଙ୍କୁ ଏ ସଭାରେ ଯୋଗଦେବା ନିମନ୍ତେ ଗଭର୍ଣ୍ଣମେଣ୍ଟ ନିଷେଧ କରିଅଛନ୍ତି । ଏହି ଜନରବଦ୍ୱାରା ସାଧାରଣଙ୍କ ମନ ଉତ୍ତେଜିତ ଏବଂ ନୈରାଶ୍ୟ-ଜଡ଼ିତ ହୋଇଅଛି । ଏ ପ୍ରକାର ଜାତୀୟ ଆନ୍ଦୋଳନରେ ଗଭର୍ଣ୍ଣମେଣ୍ଟ ହସ୍ତକ୍ଷେପ କରିବେ ନାହିଁ; ଏହି ଆଶାରେ ଆଗନ୍ତୁକମାନଙ୍କ ଚର୍ଚ୍ଚା ନିମନ୍ତେ ବ୍ୟୟସାଧ୍ୟ ବନ୍ଦୋବସ୍ତମାନ କରାଯାଇଅଛି । ଓଡ଼ିଆମାନେ ଅନୁନ୍ନତ ଜାତି; ସେମାନଙ୍କ ମଧ୍ଯରୁ ଅଧିକାଂଶ ସରକାରୀ ଚାକର । ଯଦିଚ ସାମାନ୍ୟ କିରାନି ଓ ସ୍କୁଲଶିକ୍ଷକ ଆତ୍ମନିର୍ଭରଶୀଳ ପ୍ରଣାଳୀରେ ଆପଣାର ଉନ୍ନତି କରିବା ପାଇଁ ସମ୍ମିଳନୀରେ ଯୋଗଦେବାକୁ ନିଷିଦ୍ଧ ହୁଅନ୍ତି, ତାହାହେଲେ ଆତ୍ମ-ନିର୍ଭର ପ୍ରଣାଳୀ ଉପରେ କୁଠାରାଘାତ ହେବ ଏବଂ ଆପଣାର ଅବସ୍ଥା ଉନ୍ନତି କରିବା ବିଷୟରେ ଗଭର୍ଣ୍ଣମେଣ୍ଟ ବାଧା ଅଛନ୍ତି ବୋଲି ମଣି ଓଡ଼ିଆମାନେ ଅସନ୍ତୁଷ୍ଟ ଓ ବିରକ୍ତ

ହେବେ । ଗଭର୍ଣ୍ଣମେଣ୍ଟଙ୍କର ଏପରି ନିଷେଧକୁ ସାଧାରଣ ଲୋକେ ମନ୍ଦ ଅଭିପ୍ରାୟ ପ୍ରକାଶକ ବୋଲି ଅର୍ଥ କରୁଅଛନ୍ତି । ଏ ବିଷୟରେ ପୁନର୍ବିଚାର କରିବା ନିମନ୍ତେ ଲେଫ୍ଟେନାଣ୍ଟ ବାହାଦୂରଙ୍କୁ ପ୍ରାର୍ଥନା କରୁଅଛୁ । ରାଜନୈତିକ କଂଗ୍ରେସ ସଂଲଗ୍ନ ପ୍ରଦର୍ଶନୀକୁ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ସାହାଯ୍ୟ କରୁଅଛନ୍ତି । ଯେଉଁ ସମ୍ମିଳନୀ ସଙ୍ଗେ ରାଜନୀତିର ସମ୍ପର୍କ ନାହିଁ, ଏପରି ସମ୍ମିଳନୀରେ ବୋମ୍ବେଇଠାରେ ହାଇକୋର୍ଟ ଜଜ୍ ଏବଂ ଗଭର୍ଣ୍ଣମେଣ୍ଟଙ୍କ ସେକ୍ରେଟେରୀ ସଭାପତି ହୋଇ ଅଛନ୍ତି । ଓଡ଼ିଆମାନେ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଅବିଶ୍ୱାସଜନକ ଏପରି କିଛି କାର୍ଯ୍ୟ କରି ନାହାନ୍ତି କି ଯହିଁରେ ଗଭର୍ଣ୍ଣମେଣ୍ଟଙ୍କର ଓଡ଼ିଆଙ୍କ ପ୍ରତି ବିଶ୍ୱାସ ଉଠିଯାଇଛି ।

"ସମ୍ମିଳନୀର ପ୍ରସ୍ତାବମାନ ଏହି— (୧) ଉତ୍କଳଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନାଧୀନରେ ରଖିବା ଯୋଗୁଁ ବଡ଼ଲାଟଙ୍କୁ ଧନ୍ୟବାଦ । (୨) ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ କରାଇବା ଯୋଗୁଁ ଲେଫ୍ଟେନାଣ୍ଟଙ୍କୁ ଧନ୍ୟବାଦ । (୩) ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗେ ଉତ୍କଳୀୟମାନଙ୍କର ଭ୍ରାତୃତ୍ୱ ଗଠନ । (୪) ଆବଶ୍ୟକୀୟ ସାମାଜିକ ସଂସ୍କାର ସ୍ଥାୟୀ କମିଟି ଗଠନ । (୫) ଓଡ଼ିଆ ସାହିତ୍ୟର ଉନ୍ନତି ନିମନ୍ତେ କମିଟି ଗଠନ । (୬) ଦେଶୀୟ ଶିଳ୍ପର ଉନ୍ନତି ଏବଂ ବାର୍ଷିକ ପ୍ରଦର୍ଶନୀର ବ୍ୟବସ୍ଥା । (୭) ବାଳକମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ସୁଶୃଙ୍ଖଳିତ ଉପାୟ ନିର୍ଦ୍ଧାରଣ । ଯେଉଁମାନଙ୍କ ଯୋଗୁଁ ସମ୍ମିଳନୀ ସଫଳ ହେବ, ଅନ୍ୟାନ୍ୟ ପ୍ରସ୍ତାବମାନଙ୍କରେ ସେହିମାନଙ୍କୁ ଧନ୍ୟବାଦ ଦିଆଯାଇଅଛି ।" ( ଉତ୍କଳ ସମ୍ମିଳନୀ ସଭାର ବିବରଣ-୧୯୦୩ )

ଏହାପରେ, ପୁଣି ମଧୁବାବୁ ସରକାରଙ୍କଠାକୁ ତାର କଲେ ଯେ ଏହି ସମ୍ମିଳନୀରେ ରାଜନୈତିକ ଆନ୍ଦୋଳନର ଗନ୍ଧ ନଥିବାରୁ ଏବଂ ସାମାଜିକ ବିଷୟରେ ଚର୍ଚ୍ଚା ହେବାର ଥିବାରୁ ଜଣେ ସରକାରୀ କର୍ମଚାରୀଙ୍କୁ ସରକାର ସମ୍ମିଳନୀର ସଭାପତିରୂପେ ନିରୂପଣ କରନ୍ତୁ ।

ମଧୁବାବୁଙ୍କ ଏ ତାର କଲିକତାରେ ପହଞ୍ଚିବାରୁ ଲେଫ୍ଟେନାଣ୍ଟ ସବୁ ବିଷୟ ଜାଣି-ପାରିଲେ ଏବଂ ସରକାରୀ ନିର୍ଦ୍ଦେଶନାମାକୁ ତୁରନ୍ତ ପ୍ରତ୍ୟାହାର କରି ନେବାକୁ ଆଦେଶ ଦେଲେ ଏବଂ ସମ୍ମିଳନୀ ସହିତ ସବୁ ପ୍ରକାର ସହଯୋଗ କରିବାକୁ ମଧ୍ୟ କମିଶନରଙ୍କୁ ନିର୍ଦ୍ଦେଶ ଦେଲେ ।

ତହିଁ ପରଦିନ (୨୫।୧୨।୧୯୦୩) କମିଶନର କାର୍ଯ୍ୟ-ନିର୍ବାହକ କମିଟିର କେତେକ ସଭ୍ୟଙ୍କୁ ଡାକି ସରକାରୀ ଆଦେଶ ଶୁଣାଇଦେଲେ । କମିଶନର ଗୁପ୍ତ ଏ ଚକ୍ରାନ୍ତରେ ଜଡ଼ିତ ହୋଇ ପଡ଼ିଥିବା ଧାରଣା ହେବାରୁ ମଧୁବାବୁ ତାଙ୍କ ଉପରେ ବିରକ୍ତ ହୋଇଥିଲେ ମଧ୍ୟ ଦେଶର ସମୂହ ସ୍ୱାର୍ଥ ଦୃଷ୍ଟିରୁ କମିଶନରଙ୍କ ସହଯୋଗ କାମନା କରିଥିଲେ । ସଭ୍ୟ-ମାନଙ୍କ ଅନୁରୋଧକ୍ରମେ କମିଶନର ସମ୍ମିଳନୀ ସଂଲଗ୍ନ ପ୍ରଦର୍ଶନୀକୁ ଉଦ୍‌ଘାଟନ କରିବା

ପାଇଁ ସମ୍ମତ ହୋଇଥିଲେ । ସମ୍ମିଳନୀର ସଭାରେ ଉପସ୍ଥିତ ରହିବାକୁ ମଧ୍ୟ ସେ ପ୍ରତିଶ୍ରୁତି ଦେଇଥିଲେ ।

ପ୍ରଥମ ଅଧିବେଶନ ପାଇଁ ଅଭ୍ୟର୍ଥନା ସମିତି ୧୬୬୧ ଟଙ୍କା ଚାନ୍ଦା ଉଠାଇ ପାରିଥିଲେ । ଏହା ବ୍ୟତୀତ ଚାଉଳ ପ୍ରଭୃତି ଆକାରରେ ମଧ୍ୟ କିଛି ମିଳିଥିଲା । ସର୍ବଶ୍ରୀ ପାରେଶ୍ୱର ମହାନ୍ତି ୫ ଟଙ୍କା, ମଧୁପୁର ରାଜା ୩୦ ଟଙ୍କା, ରାମଶଙ୍କର ରାୟ ୫୦ ଟଙ୍କା, ଗୌରିଶଙ୍କର ରାୟ ୧୦୦ ଟଙ୍କା, ମଧୁସୂଦନ ରାଓ ୧୦ ଟଙ୍କା, ବାଳକୃଷ୍ଣ ଅପା ୨୦ ଟଙ୍କା, ରାଧାପ୍ରସାଦ ଭଗତ ୪୦ ଟଙ୍କା, କୃଷ୍ଣଚନ୍ଦ୍ର ପାଲିତ ୨୦ ଟଙ୍କା, କନିକା ରାଜା ୫୦୦ ଟଙ୍କା, ବଲାଙ୍ଗୀରର ଶ୍ରୀ କୃଷ୍ଣପ୍ରସାଦ ମହାନ୍ତି ୧୦ ଟଙ୍କା, ଆଠଗଡ଼ ରାଜା (ଗଡ଼ଜାତ) ୨୦୦ ଟଙ୍କା, ସୟଦ୍ ରଯାଇ ଟ୍ରେଜିଲ ୧୦ ଟଙ୍କା, ବାବୁ ନରସିଂହ ପ୍ରହରାଜ ୨୦ ଟଙ୍କା, ରଘୁନାଥ ପୁରୀ ଗୋସାଇଁ ୨୫ ଟଙ୍କା, ନିତ୍ୟାନନ୍ଦ ଜେନା ୫ ଟଙ୍କା, ପାରିକୁଦ ରାଜବାହାଦୁର ୭୦ ଟଙ୍କା, ସିଦ୍ଧେଶ୍ୱରପୁର (କଟକଜିଲ୍ଲା) ସଭା ୫ ଟଙ୍କା, ଖଣ୍ଡପଡ଼ା ରାଜା ୫୦୦ ଟଙ୍କା, ସିଦ୍ଧେଶ୍ୱର ମିଶ୍ର (ବୀରପ୍ରତାପପୁର, ପୁରୀ) ତାହାଙ୍କ ପୁତ୍ରର ବିବାହ ଉପଲକ୍ଷେ ବାବୁ ବାଳକୃଷ୍ଣ ମହାନ୍ତିଙ୍କ ଦ୍ୱାରା ପ୍ରେରିତ ୧୦ ଟଙ୍କା, ବାଳକୃଷ୍ଣ ମହାନ୍ତି ୧ ଟଙ୍କା, ବାହାରର ବନ୍ଧୁମାନଙ୍କଠାରୁ ବିଶ୍ୱନାଥ କରଙ୍କଦ୍ୱାରା ସଂଗୃହୀତ ୩୦ ଟଙ୍କା—ଏପରି ମୋଟ ୧୬୬୧ ଟଙ୍କା ଚାନ୍ଦା ସଂଗ୍ରହ କରାଯାଇଥିଲା ।

ଏହି ସମ୍ମିଳନୀର ବିଶେଷତ୍ୱ ହେଲା, "ସମ୍ମିଳନୀର ବ୍ୟୟ କାର୍ଯ୍ୟ ନିର୍ବାହକ ସମିତି ବହନ କରିଅଛନ୍ତି । ଏଥି ନିମନ୍ତେ କାହାକୁ ଯାଚଞ୍ଚା କରି ନାହାନ୍ତି । ତେବେ ପୂର୍ବୋ ଉପରେ ଲିଖିତ ବନ୍ଧୁମାନେ ଅଯାଚିତ ଭାବରେ ଯାହା ଦାନ କରିଥିଲେ, ତାହା ଏଠାରେ କୁହାଗଲା ।" କେତେକ କାରଣବଶତଃ କମିଟି ଆୟ ବ୍ୟୟର ହିସାବ ସାଧାରଣରେ ପ୍ରକାଶ କରିବାରୁ ବର୍ତ୍ତମାନ କ୍ଷାନ୍ତ ରହିଲେ ।" (ପ୍ରଥମ ସମ୍ମିଳନୀ ବିବରଣୀ—ପୃ: ୨୦)

ସମ୍ମିଳନୀ ନିମନ୍ତେ ମଧୁବାବୁ ନିଜ ହାତରୁ ବହୁ ଅର୍ଥ ବ୍ୟୟ କରିଥିଲେ । ସମ୍ମିଳନୀର ପ୍ରତ୍ୟେକ ବିଭାଗ, ପ୍ରସ୍ତାବ ରଚନା ପ୍ରଭୃତିରେ ସେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ, ଆଉ ମଧ୍ୟ ନିଜେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଅନ୍ୟମାନଙ୍କୁ ଦେଶକାର୍ଯ୍ୟ କରିବା-ପାଇଁ ପ୍ରେରଣା ଦେଇ କାର୍ଯ୍ୟ କରାଇ ନେଉଥିଲେ । ତାଙ୍କର ଆଦର୍ଶ ଆଚରଣରେ ଅନୁପ୍ରାଣିତ ହୋଇ ବହୁ ଖ୍ୟାତନାମା ଭଦ୍ରବ୍ୟକ୍ତି ସ୍ୱେଚ୍ଛାସେବକରୂପେ ମଧ୍ୟ କାର୍ଯ୍ୟ କରି ନିଜକୁ ଧନ୍ୟ ମନେକରୁଥିଲେ ।

ଉତ୍କଳ ସମ୍ମିଳନୀ ହିଁ ବିଶାଳ-ଉତ୍କଳ-ଜାତୀୟ-ଭାବ ଉଦ୍ରେକର ପ୍ରଥମ ଓ ସର୍ବଶ୍ରେଷ୍ଠ ପୀଠ ଥିଲା । ମଧୁବାବୁଙ୍କ ପ୍ରେରଣା ଓ ଅକ୍ଳାନ୍ତ ପରିଶ୍ରମ ବଳରେ ପ୍ରଥମ ସମ୍ମିଳନୀ ଯେଉଁ ସାଫଲ୍ୟମଣ୍ଡିତ ହୋଇଥିଲା, ତାହା ସମ୍ମିଳନୀର ଦୃଢ଼ ଭିତ୍ତି ସ୍ଥାପନ କରି ଦେଇଗଲା । ଓଡ଼ିଆ ଜାତୀୟ ଜୀବନର ସୁଖ ଦୁଃଖ ସଙ୍ଗେ ଉତ୍କଳ ସମ୍ମିଳନୀ ଓତପ୍ରୋତ

ଭାବରେ ଜଡ଼ିତ ହୋଇଗଲା । "ଯେ ଓଡ଼ିଶା ସେ ସମ୍ମିଳନୀ, ଯେ ସମ୍ମିଳନୀ ସେ ଓଡ଼ିଶା" ହୋଇଗଲା । ସମ୍ମିଳନୀର ଯୌବନାବସ୍ଥାରେ "ସମ୍ମିଳନୀହିଁ ମଧୁବାବୁ ଓ ମଧୁବାବୁହିଁ ସମ୍ମିଳନୀ" ରୂପେ ପରିଚିତ ହେଉଥିଲେ । ଫଳରେ 'ମଧୁବାବୁ ହିଁ ଓଡ଼ିଶା ଓ ଓଡ଼ିଶା ହିଁ ମଧୁବାବୁ' ରୂପେ ଜଗତରେ ଲୋକେ ଜାଣୁଥିଲେ । ଏ ପ୍ରକାର ଉଚ୍ଚକୋଟୀର ଗୌରବ ପୃଥିବୀ ଇତିହାସରେ ଅତି ଅଳ୍ପ ଜାତୀୟନେତାଙ୍କ ଭାଗ୍ୟରେ ଘଟିଥାଏ । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ପରେ ମଧୁବାବୁ ସମଗ୍ର ପ୍ରାକୃତିକ ଓଡ଼ିଶାର ମୁକୁଟବିହୀନ ଚକ୍ରବର୍ତ୍ତୀ ରୂପେ ପ୍ରତିଭାତ ହୋଇଥିଲେ ଓ ସ୍ୱଦେଶପାଇଁ ନିଜର ଜୀବନକୁ ଉତ୍ସର୍ଗ କରି ଦେଇଥିଲେ ।

ଉତ୍କଳ ସମ୍ମିଳନୀର ବୈଷୟିକ, କୃଷି ଓ ଶିଳ୍ପାଦି ସମ୍ବନ୍ଧୀୟ ପ୍ରସ୍ତାବକୁ ତାଳଚେର ମହାରାଜା ଆଗତ କରିଥିଲେ ଏବଂ ଅନୁମୋଦନ କରିଥିଲେ ବାବୁ ମଧୁସୂଦନ ଦାସ । ଏହି ପ୍ରସ୍ତାବରେ ଏଗୁଡ଼ିକର 'ଉନ୍ନତିସାଧନାର୍ଥେ' ଏକ ସ୍ଥାୟୀ କମିଟି ଗଠିତ ହେବା ମଧ୍ୟ କୁହାଯାଇଥିଲା । ଏହି କମିଟିରେ ରାଜା, ମହାରାଜା, ଜମିଦାର ଓ ଭଦ୍ରବ୍ୟକ୍ତି ମୋଟରେ ୭୩ ଜଣ ସଭ୍ୟ ରହିଥିଲେ । ୩୦ଟି ଗଡ଼ଜାତର ରାଜା ସଭ୍ୟ ରହିଥିଲେ ।

ଏହି କ୍ଷେତ୍ରରେ ରାଜା, ମହାରାଜା ଓ ଧନିକ ସମ୍ପ୍ରଦାୟର ସକ୍ରିୟ ସମର୍ଥନ ନିତାନ୍ତ ଆବଶ୍ୟକ ଥିବାରୁ ଏମାନଙ୍କ ହୃଦୟରେ ଶିଳ୍ପୋନ୍ନତି ପ୍ରତି ଫଳପ୍ରଦ ଆଗ୍ରହ ଜାତ କରାଇବା ଏହି କମିଟିର ଏପରି ଗଠନକାର୍ଯ୍ୟର ମୁଖ୍ୟ ଉଦ୍ଦେଶ୍ୟ । ମଧୁବାବୁ ଶିଳ୍ପୋନ୍ନତି ପାଇଁ ବରାବର ପ୍ରଚୁର ଆଡ଼ମ୍ବର କରି ଆସିଥିଲେ ଏବଂ ଏ କ୍ଷେତ୍ରରେ ପ୍ରାରମ୍ଭିକ ପଦକ୍ଷେପ ଏଠାରେ ନେଲେ ମାତ୍ର । ସେ ନିଜେ ଏ କମିଟିର ଜଣେ ସଭ୍ୟ ମଧ୍ୟ ଥିଲେ ।

କମିଟିର ଗଠନ ପ୍ରଣାଳୀରୁ ଲକ୍ଷ୍ୟ ସ୍ପଷ୍ଟ ହେଉଛି । ଏଥିରେ ରାଜା, ମହାରାଜା, ଜମିଦାର ଓ ପ୍ରଜା ସମସ୍ତଙ୍କର ସମାନ ସ୍ଥାନ ଥିଲା । ନିମ୍ନଲିଖିତ ରାଜା ଓ ଜମିଦାରମାନେ କମିଟିରେ ସ୍ଥାନ ପାଇଥିଲେ । ଗଡ଼ଜାତ ରାଜା—ମୟୂରଭଞ୍ଜ, କେନ୍ଦୁଝର, ଆଠଗଡ଼, ଖଣ୍ଡପଡ଼ା, ଆଠମଲ୍ଲିକ, ବାମଣ୍ଡା, ସୋନପୁର, ଗାଙ୍ଗପୁର, ତାଳଚେର, ତିଗିରିଆ, ନରସିଂହପୁର, ବଡ଼ମ୍ବା, ରଣପୁର, ବୌଦ୍ଧ, ଦଶପଲ୍ଲା, ଢେଙ୍କାନାଳ, ପାଲଲହଡ଼ା, ହିନ୍ଦୋଳ, ନୟାଗଡ଼, ପାଟଣା, ଜମିଦାର—ଜୟପୁର, ଖଲିକୋଟ, ପାରିକୁଦ, କନିକା, ମଧୁପୁର, ବଡ଼ଖେମୁଣ୍ଡି, ମଞ୍ଜୁଷା, ଧରାକୋଟ, ଖଡ଼ିଆଳ, ପାରଳାଖେମୁଣ୍ଡିର ସେକେଣ୍ଡ ପ୍ରିନ୍ସ (ପଦ୍ମନାଭ ଦେବ), ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ, ଜୟପୁରର ରାଜା ବିକ୍ରମଦେବ ବର୍ମା ।

**ଦେଶ ମିଶ୍ରଣ ସମ୍ବନ୍ଧରେ ରିଜଲିଙ୍କ ଅନୁକୂଳ ମତ (ଖ୍ରୀ: ୧୯୦୩):** ୧୯୦୩ ଡିସେମ୍ବର ୩ ତାରିଖରେ ଭାରତ ସରକାରଙ୍କ 'ଇଣ୍ଡିଆ ଗେଜେଟ୍'ରେ ଭାରତ ସରକାରଙ୍କ ସେକ୍ରେଟେରୀ ( ପୂର୍ବତନ ସେନସସ୍ କମିଶନର ) ମି. ହରବର୍ଟ ରିଜ୍‌ଲିଙ୍କ ଏକ ପତ୍ର

ପ୍ରକାଶ ପାଇଥିଲା । ସେଥିରେ ସେ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ, ଅର୍ଥାତ୍ ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ଥିବା ଓଡ଼ିଆ ଅଞ୍ଚଳଗୁଡ଼ିକୁ ଏକତ୍ରକରି ବଙ୍ଗ ଦେଶ ସଙ୍ଗେ ଯୁକ୍ତ କରାଯିବା ପ୍ରସ୍ତାବ କରିଥିଲେ । ମଧୁବାବୁ ଏହାକୁ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ଏକ ଅନୁକୂଳ ପଦକ୍ଷେପ ବୋଲି କହୁଥିଲେ । ଏହି ପତ୍ରଟି 'ରିଜ୍‌ଲି ସର୍କୁଲର' ନାମରେ ଖ୍ୟାତି ଲଭିଛି ।

**ସଂଗୀତ ପ୍ରଚାର (୧୯୦୩) :** 'ଉତ୍କଳ ସମ୍ମିଳନୀ'ର ଅଧିବେଶନମାନଙ୍କରେ ଜାତୀୟ ସଙ୍ଗୀତ ଗାନ ଉପରେ ମଧୁବାବୁ ବିଶେଷ ଦୃଷ୍ଟି ରଖୁଥିଲେ । ଏହି କାରଣରୁ ସେ ସମ୍ମିଳନୀ ବୈଠକର ବହୁଦିନ ପୂର୍ବରୁ ଜାତୀୟ ସଙ୍ଗୀତ ସମବେତ କଣ୍ଠରେ ଗାନ କରାଇବା-ପାଇଁ ବ୍ୟବସ୍ଥା କରୁଥିଲେ । କଟକର ବିଖ୍ୟାତ ଗାୟକ ଖାନୁମିଆଁ ଓ କଟକ ଜିଲ୍ଲା କେନ୍ଦ୍ରାପଡ଼ାର ପ୍ରସିଦ୍ଧ ରାଧାଶ୍ୟାମ ନରେନ୍ଦ୍ରଙ୍କ ବଂଶଧର, ବିଖ୍ୟାତ ସଙ୍ଗୀତଜ୍ଞ ଓ ଗାୟକ ଶ୍ରୀ ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନଙ୍କୁ ଜାତୀୟ ସଙ୍ଗୀତ ଗାନର ଭାର ଦେଉଥିଲେ । କଟକ ବାହାରେ ହେଉଥିବା ଅଧିବେଶନମାନଙ୍କରେ ମଧୁବାବୁ ଏମାନଙ୍କଦ୍ୱାରା ମଧ୍ୟ ଗୀତ ବୋଲାଉଥିଲେ । ମଧୁବାବୁ ନିଜ ସାଙ୍ଗରେ ଏମାନଙ୍କୁ ନେଇ ଯାଉଥିଲେ ।

ଜାତୀୟ ସଙ୍ଗୀତ କିପରି ଉତ୍ତମରୂପେ ବୋଲାହେବ, ଭକ୍ତିରେ ଲୋକେ ଶୁଣିବେ ଓ ଉଦ୍‌ବୁଦ୍ଧ ହେବେ ଏଥି ପ୍ରତି ମଧୁବାବୁ ଲକ୍ଷ୍ୟ ରଖିଥିଲେ । ତାଙ୍କର ଅନୁରୋଧରେ କବିବର ରାଧାନାଥ ରାୟ ସଂସ୍କୃତରେ "ସର୍ବେଷାଂନୋ ଜନନୀ ଭାରତ ଧରଣୀ କଲ୍ପଲତେୟଂ" ଗୀତଟି ରଚନା କରିଥିଲେ । ଉତ୍କଳ ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ ଏହି ଗୀତଟି ଜାତୀୟ ଗୀତରୂପେ ବୋଲା ହେଉଥିଲା ଏବଂ ସମସ୍ତେ ଦଣ୍ଡାୟମାନ ହୋଇ ସମ୍ମାନ ପ୍ରଦର୍ଶନପୂର୍ବକ ନିଃଶବ୍ଦରେ ଶୁଣୁଥିଲେ ।

ମଧୁବାବୁଙ୍କ ଅନୁରୋଧରେ ଭକ୍ତ କବି ମଧୁସୂଦନ ରାଓ କେତେଗୁଡ଼ିଏ ଜାତୀୟ ଭାବଗର୍ଭକ କବିତା ଲେଖି "ଉତ୍କଳ ଗାଥା" ନାମରେ ପ୍ରକାଶ କରିଥିଲେ ଓ ଏହି ଗ୍ରନ୍ଥଟି ମଧୁବାବୁଙ୍କ ନାମରେ ଉତ୍ସର୍ଗ କରିଥିଲେ । ଏହି କବିତାଗୁଚ୍ଛଟି ପ୍ରଥମ ସମ୍ମିଳନୀର ଦଶ ବାର ଦିନ ପୂର୍ବରୁ ପ୍ରକାଶିତ ହୋଇଥିଲା । କବି କୃଷ୍ଣମୋହନ ପଟ୍ଟନାୟକ ମଧ୍ୟ ମଧୁବାବୁଙ୍କ ପ୍ରେରଣାରେ ସୁଲଳିତ ଜାତୀୟ ଉଦ୍‌ବୋଧନମୂଳକ ସଙ୍ଗୀତ ରଚନା କରିଥିଲେ । କୃଷ୍ଣମୋହନଙ୍କ ବହୁ ସଙ୍ଗୀତ ଉତ୍କଳ ସମ୍ମିଳନୀ, ଅଧିବେଶନମାନଙ୍କରେ ବୋଲା ହେଉଥିଲା ।

**ବ୍ୟାୟାମ ଶିକ୍ଷାର ମୂଳଦୁଆ ସ୍ଥାପନ (୧୯୦୩-୪):** ଓଡ଼ିଶାରେ ନୂତନ ମାର୍ଜିତ ପଦ୍ଧତି ଅନୁସାରେ ବ୍ୟାୟାମ ଶିକ୍ଷାର ଅଭାବ ଥିବାର ଉପଲବ୍ଧି କରି ମଧୁବାବୁ ଏହାର ପ୍ରବର୍ତ୍ତନ ପାଇଁ ଉଦ୍ୟମ କରିଥିଲେ । ଏଥିପାଇଁ ସେ ଖ୍ରୀ: ୧୯୦୩ କିମ୍ବା ୧୯୦୪ରେ Orissa Sports Association ବା 'ଉତ୍କଳ ବ୍ୟାୟାମ ସମିତି' ନାମରେ ଏକ

ସଂସ୍ଥା ସ୍ଥାପନ କରିଥିଲେ ଓ ଏହି ସଂସ୍ଥାକୁ କେତୋଟି ସିଲ୍ଡ଼ ଓ କପ୍ ମଧ୍ୟ ଦାନ କରିଥିଲେ । ଓଡ଼ିଶାର ତତ୍କାଳୀନ କମିଶନର କେ: ଜି: ଗୁପ୍ତ (କୃଷ୍ଣଗୋବିନ୍ଦ ଗୁପ୍ତ—ଏ ପରେ (India Council)ର ସଭ୍ୟ ହୋଇଥିଲେ)ଙ୍କ ନାମରେ ଅର୍ପିତ ହୋଇଥିଲା । ମଧୁବାବୁ ଆଉ ଗୋଟିଏ ସିଲ୍ଡ ନିଜ ପ୍ରତିଷ୍ଠିତ (Orissa Art Wares) ପ୍ରତିଷ୍ଠାନ ନାମରେ ଦାନ କରିଥିଲେ । ଓଡ଼ିଶାରେ ଏହିଠାରୁ ଆଧୁନିକ ପଦ୍ଧତିରେ ବ୍ୟାୟାମ ଶିକ୍ଷାର ବ୍ୟାପକ ପ୍ରଚାର ଓ ପ୍ରସାରର ଅଗ୍ରମାରମ୍ଭ ହୋଇଥିଲା ।

**ମଧୁବାବୁ ବଙ୍ଗ ବ୍ୟବସ୍ଥା-ସଭାର "କେଟୋ"** ମଧୁସୂଦନ ବଙ୍ଗ କାଉନ୍‌ସିଲରେ ସରକାରଙ୍କୁ କଟୁ ସମାଲୋଚନା କରୁଥିବାରୁ ତାଙ୍କୁ ଖ୍ରୀ: ୧୯୦୩ରେ ତତ୍କାଳୀନ ଗ୍ରେଟଲାଟ ମାନ୍ୟବର ବୋର୍ଡ଼ିଲନ୍ (Hon. Sir John Bourdillon) ପ୍ରାଚୀନ କାଳର ରୋମର ସ୍ୱନାମ ଧନ୍ୟ ସମାଲୋଚକ କେଟୋ (Marcus Porcious Cato)—ମାର୍କସ ପୋରସିଅସ୍ କେଟୋ —ଖ୍ରୀ: ପୂ: ୨୩୪-୧୪୯) ସହିତ ତୁଳନା କରି ତାଙ୍କୁ ବଙ୍ଗ କାଉନ୍‌ସିଲର କେଟୋ (Cato of Bengal Council) ବୋଲି କହିଥିଲେ । କେଟୋ ଜଣେ ସଚ୍ଚରିତ୍ର, ସରଳ, ବୁଦ୍ଧିମାନ ବକ୍ତାଥିଲେ । ସେ ମଧ୍ୟ ଜଣେ ଯୋଦ୍ଧା ଓ ଲେଖକ ଥିଲେ । କେଟୋ ତାଙ୍କର ବକ୍ତୃତାରେ ବହୁ ସୁଭାଷିତ ସୂକ୍ତି, ପ୍ରବାଦ, ହାସ୍ୟୋଦ୍ଦୀପକ ଗଳ୍ପ ଓ ଶବ୍ଦପୁଞ୍ଜ ବ୍ୟବହାର କରି ସମାଲୋଚନାମୂଳକ ମନ୍ତବ୍ୟକୁ ଶକ୍ତିଶାଳୀ କରିପାରୁଥିଲେ ଏବଂ ଲୋକଙ୍କ ଉପରେ ପ୍ରଭାବ ପକାଇ ପାରୁଥିଲେ । ତତ୍କାଳୀନ ସମାଜରେ ପ୍ରଚଳିତ ଭୋଗବିଳାସକୁ ସେ ଅତି କଠୋର ଭାବରେ ସମାଲୋଚନା କରୁଥିଲେ । 'ସେନ୍‌ସର' (Censor—ଅବେକ୍ଷକ, ଗୁଣଦୋଷ ବିଚାରକ) ନାମରେ ମଧ୍ୟ ଲୋକଙ୍କ ଭିତରେ ସେ ପରିଚିତ ଥିଲେ । କେଟୋ ଭବ୍ୟଭାଷା ବ୍ୟବହାର କରୁ ନଥିଲେ; କିନ୍ତୁ ମଧୁବାବୁ କେବେ ଅଭବ୍ୟ ଭାଷା ବ୍ୟବହାର କରିବାର ଦେଖା ଯାଇନାହିଁ । କେଟୋ ଭୋଗବିଳାସ ଓ ବଡ଼ଲୋକୀ ବିରୋଧରେ ଅତି କଟୁ ସମାଲୋଚନା କରୁଥିଲେ, କିନ୍ତୁ ମଧୁବାବୁ ଏହି ଜୀବନଯାପନ ପନ୍ଥାର ବିରୋଧ କରିଥିବା ଜଣାଯାଇନାହିଁ । ଉଭୟେ ବୁଦ୍ଧିମାନ, ଦେଶପ୍ରେମୀ, ଜନସେବକ, ସୁବକ୍ତା । ଉଭୟେ ଉଦ୍ଦୀପନାମୟ ଭାଷଣ ଦେଇପାରୁଥିଲେ ଓ ବକ୍ତୃତା ହୃଦ୍ୟ ହେଉଥିଲା । ମଧୁବାବୁ ବକ୍ତୃତାରେ ବହୁ ପ୍ରବଚନ, ଗଳ୍ପ, ଉପମା ପ୍ରଭୃତି ବ୍ୟବହାର କରି କଥନକୁ ରମଣୀୟ କରି ପାରୁଥିଲେ । ମଧୁବାବୁ ଯେ କେବଳ ଦୋଷଦର୍ଶୀ ଥିଲେ, ତାହା ନୁହେଁ; କାର୍ଯ୍ୟକାରୀ ଓ ସମ୍ଭାବ୍ୟ ପରାମର୍ଶ ମଧ୍ୟ ଦେଉଥିଲେ । ବହୁ କ୍ଷେତ୍ରରେ ସେ ସ୍ୱକାର୍ଯ୍ୟ ଓ ଅଭିଜ୍ଞତାରୁ ବହୁ ଯୁକ୍ତି ଉପସ୍ଥାପିତ କରୁଥିଲେ । କେବଳ ସମାଲୋଚନାଦ୍ୱାରା କୌଣସି ଲକ୍ଷ୍ୟ ସାଧନ ତାଙ୍କର ଉପାୟର ଏକ କୌଶଳ ହେଲେ ମଧ୍ୟ ତାହା ଏକମାତ୍ର ପନ୍ଥା ନ ଥିଲା । ସମାଲୋଚନା କରିବା ସଙ୍ଗେ ସଙ୍ଗେ ବାସ୍ତବ କାର୍ଯ୍ୟଦ୍ୱାରା ଲକ୍ଷ୍ୟ ସାଧନ କରିବାପାଇଁ ମଧୁବାବୁ ଚେଷ୍ଟା କରୁଥିଲେ । ସେ ଜଣେ ବାସ୍ତବବାଦୀରୂପେ ହିଁ କାର୍ଯ୍ୟ କରୁଥିଲେ ଏବଂ

ସମାଲୋଚନା କରୁଥିଲେ । ଗଠନମୂଳକ ସମାଲୋଚନାକୁ ସେ ବିଶେଷ ସମ୍ମାନ ଦେଉଥିଲେ । ସର୍ବତୋଭାବେ କେଟୋ ଓ ମଧୁବାବୁ ସମାନ ନ ହେଲେ ମଧ ଗ୍ଲେଟଲାଟ ମଧୁବାବୁଙ୍କୁ କୌତୁକରେ 'କେଟୋ' ବୋଲି ଅଭିହିତ କରିଥିଲେ । ମଧୁବାବୁଙ୍କର ପ୍ରାୟ ସବୁ ବାସ୍ତବ ସମାଲୋଚନାକୁ ସରକାର ଗ୍ରହଣ କରି ନେଉଥିଲେ ।

## ୧୭ । ସି. ଆଇ. ଇ. ପଦବୀ ଲାଭ

ଦେଶପ୍ରାଣ ମଧୁସୂଦନ ଦାସ ୧୯୦୪ର ପ୍ରଥମ ଦିବସରେ ମହାମାନ୍ୟ ସମ୍ରାଟଙ୍କଠାରୁ ସି. ଆଇ ଇ. Companion of the Indian Empire) ବା 'ଭାରତ ସାମ୍ରାଜ୍ୟର ସଖା' ଉପାଧି ପାଇଥିବା ସରକାରୀ ଗେଜେଟ୍‌ରେ ଘୋଷିତ ହୋଇଥିଲା । ଏହି ଘୋଷଣା ପ୍ରଚାରିତ ହେବାମାତ୍ରେ ବଡ଼ଲାଟ ଲର୍ଡ କର୍ଜନ ଓ ବଙ୍ଗ ପ୍ରଦେଶର ଲାଟ୍ ସାର୍ ଫ୍ରେଜର୍ ମଧୁବାବୁଙ୍କୁ ଅଭିବାଦନ ଜଣାଇ ତାରବାର୍ତ୍ତା ପଠାଇଥିଲେ । ଏ ଘୋଷଣାରେ ଓଡ଼ିଶାବାସୀ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ଜଣେ ସାଧାରଣ ଓଡ଼ିଆ ପୁଅକୁ ସମ୍ରାଟ ଉଚ୍ଚ ଉପାଧି ପ୍ରଦାନ କରିଥିବାରୁ ଲୋକଙ୍କ ମନରେ ବିଶେଷ ଉତ୍ସାହ ଖେଳି ଯାଇଥିଲା ଏବଂ ଅନେକାଂଶରେ ନିଶ୍ଚେଷ୍ଟତା ଓ ଗୌଣ ମନୋଭାବ ଦୂର ହୋଇ ଯାଇଥିଲା ।

ଓଡ଼ିଶାରେ ଏହି ଉଚ୍ଚ ପଦବୀ ଲାଭ କରିଥିବା ସାଧାରଣ ବ୍ୟକ୍ତିଙ୍କ ଭିତରେ ମଧୁବାବୁ ପ୍ରଥମ । ଓଡ଼ିଶାର ବିଭିନ୍ନ ସ୍ଥାନରେ ସଭାସମିତି ଅନୁଷ୍ଠିତ ହୋଇ ମଧୁବାବୁଙ୍କର ଏ ସମ୍ମାନ ଲାଭରେ ଓଡ଼ିଶାବାସୀ ଗୌରବ ଅନୁଭବ କରିଥିବା ଏବଂ ନିସ୍ୱାର୍ଥ ଦେଶସେବା ସ୍ୱୀକୃତ ହୋଇଥିବାରୁ ଦେଶସେବାର ମୂଲ୍ୟ ଅନୁଭବ କରୁଥିବା ବ୍ୟକ୍ତ କରିଥିଲେ । କଟକ, ରମ୍ଭା, ପୁରୀ ପ୍ରଭୃତି ବିଭିନ୍ନ ସ୍ଥାନରେ ଅଭିବାଦନ ସଭା ଅନୁଷ୍ଠିତ ହୋଇଥିଲା ।

କଟକରେ ତାଙ୍କୁ ସମ୍ବର୍ଦ୍ଧନା କରିବା ନିମନ୍ତେ ଏକ ସଭାର ଆୟୋଜନ ହୋଇଥିଲା । ମଧୁବାବୁ ପ୍ରଥମେ ଏଥିରେ ନିଜର ଅସମ୍ମତି ପ୍ରକାଶ କରିଥିଲେ ଏବଂ ସଭାକୁ ଯିବେନାହିଁ ବୋଲି କହିଥିଲେ । କାରଣ ସେ କୌଣସି ଆଡ଼ମ୍ବରର ପକ୍ଷପାତୀ ନ ଥିଲେ । ତେଣୁ କେତେ ଜଣ ଭଦ୍ରବ୍ୟକ୍ତି ମନୋନୀତ ହୋଇ ମଧୁବାବୁଙ୍କର ସମ୍ମତି ଆଣିବା ନିମନ୍ତେ ତାଙ୍କ ପାଖକୁ ଯାଇଥିଲେ ଓ ସେମାନେ ତାଙ୍କୁ ବୁଝାଇ ଏଥିରେ ସମ୍ମତ କରାଇ ପାରିଥିଲେ । ମଧୁବାବୁ ସମ୍ମତିପ୍ରଦାନ କରି ନ ଥିଲେ ସର୍ବସାଧାରଣ ଯେ ବିଶେଷ ଦୁଃଖିତ ହୋଇଥାଆନ୍ତେ ଏଥିରେ ସନ୍ଦେହ ନାହିଁ । ତାଙ୍କର ନିଜ ମତ ଯାହାହେଉ ପଛକେ ସର୍ବସାଧାରଣଙ୍କ ମତ ପ୍ରତି ତାଙ୍କର ଚିରକାଳ ଆସ୍ଥା ଥିବା ଏଥିରୁ ପ୍ରମାଣିତ ହୋଇଛି ।

ଅଭ୍ୟର୍ଥନା ସଭା ପାଇଁ ଏକ କମିଟି ଗଠିତ ହୋଇଥିଲା ଏବଂ ରାମଶଙ୍କର ରାୟ ଏଥିରେ ସମ୍ପାଦକ ଓ ନମାଇଁଚରଣ ମିତ୍ର କୋଷାଧ୍ୟକ୍ଷ ନିଯୁକ୍ତ ହୋଇଥିଲେ ।

ସି. ଆଇ. ଇ ଗୋଟିଏ ଉଚ୍ଚ ଗୌରବର ଉପାଧି । ଖ୍ରୀ: ୧୮୭୭ରେ ମହାରାଣୀ ଭିକ୍ଟୋରିୟା ଭାରତ ସାମ୍ରାଜ୍ଞୀ ପଦ ଗ୍ରହଣ ସମୟରେ ଏହି ପଦ ସୃଷ୍ଟି ହୋଇଥିଲା । ଯେଉଁମାନେ ଭାରତ ସାମ୍ରାଜ୍ୟର ରାଜକାର୍ଯ୍ୟରେ ଓ ସାଧାରଣ ହିତକାର୍ଯ୍ୟରେ ବିଶେଷ ପ୍ରତିଷ୍ଠା ଲାଭ କରିଥିଲେ, ସ୍ୱୟଂ ସମ୍ରାଟ ସେମାନଙ୍କୁ ଏହି ଶ୍ରେଣୀର ଉପାଧି ଦାନ କରୁଥିଲେ । ଓଡ଼ିଶାର କୌଣସି ସାଧାରଣ ବ୍ୟକ୍ତି ଏପର୍ଯ୍ୟନ୍ତ ଏ ପଦ ପାଇ ନ ଥିଲେ । ଉପାଧି ବିତରଣ ତାଲିକାରେ ଶ୍ରୀଯୁକ୍ତ ମଧୁସୂଦନ ଦାସ ବଙ୍ଗୀୟ ବ୍ୟବସ୍ଥାପକ ସଭାର ଜଣେ ପୂର୍ବତନ ସଭ୍ୟ ବୋଲି ଲେଖା ହୋଇଥିଲା ।

କିନ୍ତୁ କେବଳ ଏଥିପାଇଁ ସେ ପଦବୀ ପାଇଥିଲେ ବୋଲି କୁହାଯାଇ ନ ପାରେ । ସେ ବ୍ୟବସ୍ଥାପକ ସଭାରେ ଦେଶ ହିତକର ବହୁ ସମସ୍ୟା ସମ୍ବନ୍ଧରେ ବରାବର ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଶାସନରେ ସହାୟକ ହୋଇଛନ୍ତି । ପୁଣି ନିଜେ ଦେଶର ବହୁକ୍ଷେତ୍ରରେ ନିଃସ୍ୱାର୍ଥ ଭାବରେ କାର୍ଯ୍ୟ କରିଛନ୍ତି ।

"ଓଡ଼ିଶାର ଶ୍ରମଜୀବୀଙ୍କ ହିତ ନିମନ୍ତେ ସେ ଗତ କେତେକ ବର୍ଷ ବହୁବ୍ୟୟ ଓ ଶ୍ରମ ସ୍ୱୀକାର କରି 'ଓଡ଼ିଶା ଶିଳ୍ପଶାଳା' (Orissa Art Wares) ନାମରେ ଯେଉଁ କାରଖାନା ଫିଟାଇ ଅଛନ୍ତି ଏବଂ ଶ୍ରମ ଲାଘବ ନିମନ୍ତେ କଳ ଇତ୍ୟାଦି ବସାଇ ଅଛନ୍ତି, ତାହା କାହାରିକି ଅବିଦିତ ନାହିଁ । ଭୂତପୂର୍ବ ଛୋଟଲାଟ ସ୍ୱର୍ଗୀୟ ଉଡ୍‌ବର୍ଣ୍ଣ ବାହାଦୂର ସେହି କାରଖାନା ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ବଡ଼ଲାଟଙ୍କୁ ଜଣାଇବେ ବୋଲି କହିଥିଲେ । ଗରିବ ଶ୍ରମଜୀବୀଙ୍କ ହିତ ସାଧନ ଏବଂ ଓଡ଼ିଶାର ଉନ୍ନତି କାରଣ ଦାସ ମହାଶୟଙ୍କର ଏ ପ୍ରକାର ଅନୁରାଗ ଓ ଯତ୍ନ ଦେଖି ଗଭର୍ଣ୍ଣମେଣ୍ଟ ତାହାଙ୍କୁ ଏ ଉଚ୍ଚ ସମ୍ମାନ ପ୍ରଦାନ କରିଅଛନ୍ତି । ସାମାନ୍ୟ ଶ୍ରେଣୀର ଶ୍ରମଜୀବୀଙ୍କ ଦୁଃଖରେ ସହାନୁଭୂତି ଦେଖାଇ ସେମାନଙ୍କର ମଙ୍ଗଳ କାର୍ଯ୍ୟରେ ଯେଉଁମାନେ ରତ ହୁଅନ୍ତି, ସେମାନେ ଗଭର୍ଣ୍ଣମେଣ୍ଟଙ୍କର କେଡ଼େ ପ୍ରିୟପାତ୍ର, ତାହା ଦେଖାଇ ଅଛନ୍ତି । ମଧୁବାବୁଙ୍କର ଏହି ଉଚ୍ଚ ସମ୍ମାନ ଲାଭରେ ଉତ୍କଳ ଜନନୀ ଧନ୍ୟା ହୋଇଅଛନ୍ତି ମାତୃଭକ୍ତ ପ୍ରତ୍ୟେକ ଉତ୍କଳବାସୀ ଅପାର ଆନନ୍ଦ ଅନୁଭବ କରୁଅଛନ୍ତି, ସନ୍ଦେହ ନାହିଁ । ଆମ୍ଭମାନଙ୍କର ଏକାନ୍ତ ଆଶା ଯେ ଜନସାଧାରଣ ସେହି ସୁପୁତ୍ରଙ୍କର ବିହିତ ସମ୍ମାନ କରିବାଦ୍ୱାରା ମାତୃଭକ୍ତିର ପରିଚୟ ପ୍ରଦାନ କରିବେ ।"

(ଉତ୍କଳ ଦୀପିକା—୧୯୦୪ ଜାନୁଆରୀ ୯ ତାରିଖ)

ଯେଉଁସବୁ କାରଣରୁ ମଧୁବାବୁ ଉପାଧି ପାଇଥିଲେ, ତାହା ଉତ୍କଳ-ଦୀପିକାର ଏହି ଟିପ୍‌ପଣୀରୁ ସ୍ପଷ୍ଟ ହେଉଅଛି । "କଟକରେ ୩୦ ତାରିଖ ଜାନୁଆରୀ (୧୯୦୪) ଶନିବାର ଦିନ ସନ୍ଧ୍ୟା ସମୟରେ ଗୋଟିଏ ସାଧାରଣ ସଭା ମଧୁବାବୁ ସି. ଆଇ. ଇ. ଉପାଧି ଲାଭ

କରିଥିବାରୁ ତାଙ୍କୁ ଅଭିବାଦନ କରିବା ଉଦ୍ଦେଶ୍ୟରେ ଜୁବିଲି ପାର୍କରେ ଅତ୍ୟନ୍ତ ସମାରୋହ ସହିତ ସଭା ହୋଇଥିଲା । ତହିଁର ସମସ୍ତ ବ୍ୟାପାର ଅତି ସୁନ୍ଦର ରୂପେ ନିର୍ବାହ ହୋଇଥିଲା । ଏ ସଭାର ଉଦ୍ଦେଶ୍ୟ ଯେମନ୍ତ ମହତ୍, ରଚନା ତେମନ୍ତ ସୁରଞ୍ଜିତ ଏବଂ କାର୍ଯ୍ୟାବଳୀ ତେମନ୍ତ ଆନନ୍ଦପ୍ରଦ ହୋଇଥିଲା । ଏ ସମସ୍ତ ଅଂଶରେ ଏ ସାଧାରଣ ସଭା ସମସ୍ତଙ୍କୁ ବଳିଯିବାର ବୋଲି ଯାଇପାରେ । ଜୁବିଲି ଉଦ୍ୟାନର ଏକ ପ୍ରଶସ୍ତ ଦେଶରେ ବୃହତ୍ ବୃହତ୍ ଚନ୍ଦ୍ରାତପମାନଙ୍କଦ୍ୱାରା ଆଚ୍ଛାଦିତ ଏବଂ ପୁଷ୍ପ ପତାକାଦିଦ୍ୱାରା ସୁମଣ୍ଡିତ ମଣ୍ଡପ ରଚନା ହୋଇଥିଲା ଏବଂ ବହୁତର କାଚର ଝାଡ଼ ଲଣ୍ଠନାଦିଦ୍ୱାରା ଆଲୋକିତ ହୋଇଥିଲା । ଚୌଧୁରୀ ବଜାର ଛକଠାରୁ ମଣ୍ଡପ ପର୍ଯ୍ୟନ୍ତ ସଡ଼କ ବାଟ ଅବିରଖ ଗ୍ଲାସଦ୍ୱାରା ଆଲୋକିତ ଏବଂ ପତାକା ପୁଷ୍ପଦ୍ୱାରା ସୁସଜ୍ଜିତ ହୋଇଥିଲା । ବସିବା କାରଣ ସତରଞ୍ଜି ଗାଲିଚା ବିଛା ହୋଇଥିଲା ଏବଂ ଇଉରୋପୀୟ ଫିରିଙ୍ଗି ଓ ଅନ୍ୟାନ୍ୟ ଭଦ୍ରମହିଳା, ପୁରୁଷ ଏବଂ ପିଲାଙ୍କ ନିମନ୍ତେ ମଜଲିସ୍‌ର ଏକ ପାର୍ଶ୍ୱରେ ଚୌକିମାନ ସଜା ହୋଇଥିଲା । ସକଳ ସମ୍ପ୍ରଦାୟର ଲୋକ ଏତେ ଉପସ୍ଥିତ ହୋଇଥିଲେ ଯେ ସ୍ଥାନଟି ପୂର୍ଣ୍ଣ ହୋଇ ଯାଇଥିଲା ଏବଂ ଅନେକ ଲୋକ ଚତୁର୍ଦ୍ଦିଗରେ ଛିଡ଼ା ହୋଇ ଦେଖିବାକୁ ବାଧ୍ୟ ହୋଇଥିଲେ । ସଭାଟି ସର୍ବାଂଶରେ ଅବାରିତ ଥିଲା; ଅର୍ଥାତ୍ ନାମଧେୟ ଆମନ୍ତ୍ରଣପତ୍ର ନ ହୋଇ ବିଜ୍ଞାପନ ଦ୍ୱାରା ସମସ୍ତଙ୍କୁ ଆହ୍ୱାନ କରି ଯାଇଥିଲା । ତେଣୁ ଏତେ ଲୋକ ଜୁଣ୍ଡ ହୋଇଥିଲେ । ପ୍ରାୟ ପାଞ୍ଚ ହଜାର ଲୋକ ଏକତ୍ରିତ ହୋଇଥିବାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

"ସନ୍ଧ୍ୟା ୬ଘଣ୍ଟାର କିଞ୍ଚିତ୍ ପରେ ଶ୍ରୀଯୁକ୍ତ ମଧୁସୂଦନ ଦାସ ଦେଶୀୟ ପରିଚ୍ଛେଦରେ ଉପସ୍ଥିତ ହୁଅନ୍ତେ, ସାମସନ୍ ବାବୁଙ୍କର ଇଂରେଜୀ ବାଜା ବାଜି ଉଠିଲା । କାର୍ଯ୍ୟ ନିର୍ବାହକ କମିଟିର ସଭ୍ୟମାନେ ତାହାଙ୍କୁ ସମାଦର ପୂର୍ବକ ସଭା ମଧ୍ୟରେ ନିର୍ଦ୍ଦିଷ୍ଟ ଆସନକୁ ଘେନିଆସି ବସାଇ ତାହାଙ୍କୁ ଗଳାରେ ପୁଷ୍ପହାର ଲମ୍ବାଇଦେଲେ । ପୁରୀ ପଣ୍ଡିତ ହରିହର ଶର୍ମା ଗୋଟିଏ ଆଶୀର୍ବାଦ ଶ୍ଳୋକ ପାଠକରଣାନନ୍ତର ହାରମୋନିୟା ଯନ୍ତ୍ର ଯୋଗରେ କେତେ ଜଣ ମିଶି ଗୋଟିଏ ଓଡ଼ିଆ ସଙ୍ଗୀତ ଗାନ କଲେ ।

"ପ୍ରଥମ ବକ୍ତା ଶ୍ରୀ ରାମଶଙ୍କର ରାୟ କହିଲେ—ଆମ୍ଭମାନଙ୍କର ପ୍ରବଳ ପ୍ରତାପ ସମ୍ରାଟ ବାବୁ ମଧୁସୂଦନ ଦାସଙ୍କୁ ଯେ ଉପାଧି ପ୍ରଦାନ କରିଅଛନ୍ତି, ତାହା ସି. ଆଇ. ଇ. ଅର୍ଥାତ୍ ଭାରତ ସାମ୍ରାଜ୍ୟର ସଖା । ମଧୁବାବୁ ସାମ୍ରାଜ୍ୟର ସଖା ହେବାର ଉପଯୁକ୍ତ ପାତ୍ର । ସେ ପିଲାଙ୍କ ସାଙ୍ଗରେ ମିଳିବାକୁ ଅଶ୍ରଦ୍ଧା କରନ୍ତି ନାହିଁ । ବାଟରେ ଚାଲି ଯାଉଥିଲେ ବାୟା ସଙ୍ଗରେ ସୁଦ୍ଧା କଥାବାର୍ତ୍ତା କରନ୍ତି । ରାମ ସାହୁ ବା ଶ୍ୟାମ ଭୋଇ କଥା କହିଲେ ଅବହେଳା ନ କରି ଶୁଣନ୍ତି । କଚେରୀରେ ଅମଲା ପ୍ରଭୃତିଙ୍କ ସଙ୍ଗରେ ମିଶି ସର୍ବଦା ସତ୍ ପରାମର୍ଶ ଦିଅନ୍ତି । ଗ୍ରେଟ ହାକିମଠାରୁ ବଡ଼ ହାକିମ ତଥା ଗ୍ରେଟ ଓ ବଡ଼ଲାଟ ସାହେବ ପର୍ଯ୍ୟନ୍ତ ସମସ୍ତଙ୍କ ସଙ୍ଗେ ମିଳିଅଛନ୍ତି । ଅବଶିଷ୍ଟ ଯାହା ଥିଲା, ତାହା ସମ୍ରାଟ ସ୍ୱୟଂ ତାଙ୍କୁ ବନ୍ଧୁପଣରେ ବରଣ କରିବାରୁ ପୂର୍ଣ୍ଣ ହୋଇଗଲା । ସେ ଖ୍ରୀଷ୍ଟିଆନ୍ ଧର୍ମ ଆଶ୍ରୟ କରିଅଛନ୍ତି

ବୋଲି ତାଙ୍କଠାରେ ସାମ୍ପ୍ରଦାୟିକ ଭାବ ନାହିଁ ଏବଂ ଆପଣାର ପିତାମାତା, ପୂର୍ବ ଜାତିଭାଇ ହିନ୍ଦୁ କିମ୍ବା ମୁସଲମାନ ସମସ୍ତଙ୍କ ସଙ୍ଗରେ ସମାନ ଭାବରେ ମିଶନ୍ତି ଏବଂ ସମସ୍ତେ 'ଆମ୍ଭର ଭାଇ ମଧୁବାବୁ' ବୋଲି ତାଙ୍କୁ କହନ୍ତି ।"

"ହିନ୍ଦୁମାନଙ୍କର ପ୍ରଧାନ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ଦେବଙ୍କ ମନ୍ଦିର ଯେବେ ସେତେବେଳେ ଗଭର୍ଣ୍ଣମେଣ୍ଟ ମନ୍ଦିରର ପରିଚାଳନା ଭାର ପୁରୀ ରାଜାଙ୍କ ହାତରୁ କାଢିନେବା ପାଇଁ ଉଦ୍ୟମ କଲେ, ମଧୁବାବୁ ତାହାର ଘୋର ବିରୋଧ କରିଥିଲେ ଏବଂ ସରକାରଙ୍କ କଳ୍ପନା କାର୍ଯ୍ୟରେ ପରିଣତ ହୋଇ ପାରି ନ ଥିଲା । ସେ ଖ୍ରୀଷ୍ଟିଆନ୍ ଥିଲେ ମଧ୍ୟ ହିନ୍ଦୁଙ୍କ ପାଇଁ ପ୍ରବଳ ଭାବରେ ଲଢେଇ କରିଥିଲେ । ଜଗନ୍ନାଥ ମନ୍ଦିର ସମଗ୍ର ଓଡ଼ିଆ ଜାତିର ଓ ଭାରତ ବର୍ଷର ଏକ ଗୌରବ ଥିବାରୁ ତାହାର ଗୌରବ ରକ୍ଷା କରିବା ପ୍ରତ୍ୟେକ ଓଡ଼ିଆର କର୍ତ୍ତବ୍ୟ ବୋଲି ସେ ଭାବି ଏ ସରକାରୀ କଳ୍ପନାର ବିରୋଧ କରିଥିଲେ ।"

ରାୟ ହରିବଲ୍ଲଭ ବସୁ ବାହାଦୂର, ବାବୁ ସୁଦାମଚରଣ ନାୟକ, ପାଦ୍ରି ୟଙ୍ଗ୍ ସାହେବ, ମୁନ୍‌ସି ମହମ୍ମଦ ଅଲି, ଫିରିଙ୍ଗି ସମ୍ପ୍ରଦାୟରୁ ଶ୍ରୀଯୁକ୍ତ ହ୍ୱାଇଟ୍ ସାହେବ, ବାବୁ ଜନ୍ ସାମସେନ୍ ରାଉତ, ବାବୁ କୃଷ୍ଣଚନ୍ଦ୍ର ପାଲିତ ବକ୍ତୃତା ଦେଇ ମଧୁବାବୁଙ୍କୁ ସାଧାରଣଙ୍କ ତରଫରୁ ଅଭିବାଦନ ଜଣାଇଥିଲେ ।

ଅଭିବାଦନର ଉତ୍ତରରେ ମଧୁବାବୁ କହିଲେ—"ଆପଣମାନଙ୍କର ଏତେ ସ୍ନେହ ଓ ପ୍ରେମ ସକାଶେ ମୁଁ ଅନ୍ତରର ସହିତ ଧନ୍ୟବାଦ ଦେଉଅଛି । ପ୍ରୀତି ସୁଖକର ବୋଲି ମୁଁ ବୁଝି ଥିଲି । ଆଜ ଅନୁଭବ କରୁଅଛି, ତାହା ଅତି ଦୁର୍ବହ । ଏ ଭାର ବୋହିବାକୁ ମୋର ସାମର୍ଥ୍ୟ ନାହିଁ । ଚନ୍ଦ୍ରର ଲାବଣ୍ୟରୂପ ଦେଖି ସମୁଦ୍ର ଜଳ ଆନନ୍ଦରେ ଉପରକୁ ଉଠି ଯହୁଁ ଦେଖେ ଯେ ଚନ୍ଦ୍ରରେ କଳଙ୍କ ରହିଅଛି, ତହୁଁ ଫେରି ଆସି ମୁକ୍ତାପ୍ରବାଳାଦି କୂଳ ପାଖରେ ଥୋଇଦେଇ ଚାଲିଯାଏ । ମୋହର ଅନେକ ଦୋଷ ଅଛି । ମୁଁ ଏତେ ସ୍ନେହର ଯୋଗ୍ୟ ନୁହେଁ । ଏହା କେବଳ ଆପଣଙ୍କର ଉଦାରତା । ଏହି ଯେ ଫୁଲମାଳ ମୋତେ ପିନ୍ଧାଇ ଦେଇଅଛ, ଏଥିର ପ୍ରତ୍ୟେକ ଫୁଲ ଏବଂ ପ୍ରତ୍ୟେକ ପାଖୁଡ଼ା ଆପଣଙ୍କର ସ୍ନେହରେ ଗଠିତ ହୋଇଛି । ମୁଁ ଏହା ଉତ୍କଳ ଜନନୀଙ୍କୁ ଅର୍ପଣ କରୁଅଛି । ଏକ ସମୟରେ ଜନନୀଙ୍କର ଏକ ପଦ ଗଙ୍ଗା ଓ ଅନ୍ୟ ପଦ ଗୋଦାବରୀରେ ରହିଥିଲା ଏବଂ ତାହାଙ୍କର କୀର୍ତ୍ତି ପଥରରେ ଖୋଦିତ ହୋଇ ବିଶ୍ୱଲୋକଙ୍କର ଆଶ୍ଚର୍ଯ୍ୟ ବଢ଼ାଉଥିଲା । ବର୍ତ୍ତମାନ ତାହାର ଦୁର୍ଦ୍ଦଶା ଦେଖି ମୁଁ କେତେ କାନ୍ଦୁଛି ଓ କାନ୍ଦିବି । ଜନ୍ମବେଳେ କାନ୍ଦିଥିଲି, ବୋଧହୁଏ ଶେଷ ପର୍ଯ୍ୟନ୍ତ କାନ୍ଦିବାକୁ ହେବ । ଆପଣମାନେ ସମସ୍ତେ ଏକ ମନରେ ଯତ୍ନ କଲେ ଉତ୍କଳ ଜନନୀଙ୍କର ସୁଦିନ ଆସିପାରେ । ମୋହର ଏହି ପ୍ରାର୍ଥନା ।" (ଉ. ଦୀ ୭ । ୨ । ୧୯୦୪)

ଏହାପରେ ପାନ ଅତର ବଣ୍ଟାଯାଇଥିଲା । ସମସ୍ତେ ଆତସବାଜି ଦେଖିବାକୁ ଯାଇଥିଲେ । ଆତସବାଜି ପ୍ରଚୁର ପରିମାଣରେ ହୋଇଥିଲା । ସୁନ୍ଦର ଇଂରେଜୀ ବାଜା ବାଜିଥିଲା ।

ମଧୁବାବୁଙ୍କ ଉତ୍ତର ଜଣେ ନିଃସ୍ୱାର୍ଥ ଦେଶସେବାପକ୍ଷରେ ଆଦର୍ଶ ହୋଇ ରହିଥିବ । ସେ ଯାହା, ତାହା ତାଙ୍କର ଭୃଷାରେ ପ୍ରକାଶ ପାଇଛି । ଗୌରୀଶଙ୍କର ବାବୁ ମଧୁବାବୁଙ୍କ ବାଲ୍ୟଗୁରୁ ଥିଲେ, ଶିଷ୍ୟଙ୍କୁ ବେଶି ଶ୍ରଦ୍ଧା କରୁଥିଲେ । ସେ ମଧୁବାବୁଙ୍କ ପ୍ରତ୍ୟେକ ଦେଶସେବା କାର୍ଯ୍ୟରେ ସହଯୋଗ କରୁଥିଲେ । ତାଙ୍କର ଓ ତାଙ୍କ ଭ୍ରାତାଙ୍କର ଏହି ଚରିତ୍ର ଚିତ୍ରଣଟି ଯଥାର୍ଥ ହୋଇଛି ବୋଲିବାକୁ ହେବ ।

**ରମ୍ଭାରେ ଅଭ୍ୟର୍ଥନା :** ୧୯୦୪ ଫେବୃୟାରି ୨୫ ତାରିଖ ଦିନ ଗଞ୍ଜାମ ଜିଲ୍ଲା ରମ୍ଭାରେ ଥିବା ଖଲ୍ଲିକୋଟ ରାଜାଙ୍କ ପ୍ରାସାଦରେ ଏକ ସଭା ହୋଇଥିଲା । ଏଥିରେ ମଧୁବାବୁଙ୍କ ସମେତ ଗଞ୍ଜାମ ଜିଲ୍ଲାର ବିଭିନ୍ନ ସ୍ଥାନର ପ୍ରାୟ ପାଞ୍ଚଶତ ଜଣ ଭଦ୍ରବ୍ୟକ୍ତି ଯୋଗ ଦେଇଥିଲେ । ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ ସଭାପତି ହୋଇଥିଲେ । ଗଞ୍ଜାମକୁ ଓଡ଼ିଶା ସଙ୍ଗେ ମିଶାଇବା ପାଇଁ ସରକାର ପ୍ରସ୍ତାବ କରିଥିବା ସମ୍ବାଦକୁ ସ୍ୱାଗତ କରି ସରକାରଙ୍କୁ ଧନ୍ୟବାଦ ଅର୍ପଣ କରାଯାଇଥିଲା । ମଧୁବାବୁ ସି. ଆଇ. ଇ. ପଦବୀ ପାଇଥିବାରୁ ତାଙ୍କୁ ଅଭିନନ୍ଦନ କରାଯାଇଥିଲା । ଗୋଟିଏ ଲିଖିତ ଅଭିନନ୍ଦନ ପତ୍ର ଦାସ ମହାଶୟଙ୍କୁ ଉପହାର ଦିଆଯାଇଥିଲା । ଅନ୍ୟାନ୍ୟ ପ୍ରସଙ୍ଗ ଭିତରେ ଲେଖାଥିଲା, "ଆପଣମାନେ ଆମ୍ଭମାନଙ୍କର ସହାୟକ ଅଛନ୍ତି ଜାଣି ଆମ୍ଭେମାନେ ନିଶ୍ଚିନ୍ତ ଅଛୁ ।" ମଧୁବାବୁ ସମୟୋଚିତ ସୁନ୍ଦର ଉତ୍ତର ଦେଇଥିଲେ । ସେ କହିଥିଲେ ଯେ ନିକଟରେ ଦେଶମିଶ୍ରଣ ହୋଇଯିବାର ସେ ଆଶା କରୁଛନ୍ତି । ଯେଉଁମାନେ ଓଡ଼ିଶା ସହିତ ଗଞ୍ଜାମର ମିଶ୍ରଣକୁ ବିରୋଧ କରୁଛନ୍ତି, ସେମାନଙ୍କ ଯୁକ୍ତିକୁ ସେ ଖଣ୍ଡନ କରିଥିଲେ ଏବଂ ଦେଶମିଶ୍ରଣର ଉପକାରିତା ପ୍ରତିପନ୍ନ କରିଥିଲେ ।

## (୬) ୧୯୦୪ର ଅନ୍ୟାନ୍ୟ ଘଟଣାବଳୀ

ମଇ ମାସ ୧୪ ତାରିଖରେ ମଧୁବାବୁ ବାଲେଶ୍ୱର ଯାଇଥିଲେ ଏବଂ ରାଜା ବୈକୁଣ୍ଠନାଥ ଦେଙ୍କ ଅତିଥି ହୋଇଥିଲେ । ଏଠାରେ ମଧୁବାବୁଙ୍କ ଉପସ୍ଥିତିରେ ଉତ୍କଳ ସମ୍ମିଳନୀର ଏକ ଶାଖା ଗଠନ କରାଯାଇଥିଲା ।

ମଇ ମାସ ୩୦ ତାରିଖରେ ମଧୁବାବୁ ନିଜର 'ଓଡ଼ିଶା ଆର୍ଟ ଓ୍ୱାର୍କସ' କାରଖାନାର ଉନ୍ନତି ନିମନ୍ତେ ଶିଳ୍ପୀ ଓ କାରିଗରମାନଙ୍କର ଏକ ସଭା କଟକରେ ଆହ୍ୱାନ କରି ସେଠାରେ ସେମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ମଧୁବାବୁ କଲିକତା ବିଶ୍ୱବିଦ୍ୟାଳୟ ସିନେଟ୍‌ର ସଭ୍ୟରୂପେ ମନୋନୀତ ହେଲେ ।

ଡିସେମ୍ବର ୨୮ ତାରିଖରେ କଟକରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ମଧୁବାବୁ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

**ଉତ୍କଳ ସମ୍ମିଳନୀର ପ୍ରଚାର :** ୧୯୦୪ରେ ମଧୁବାବୁ ଉତ୍କଳ ସମ୍ମିଳନୀର ଶାଖା ସ୍ଥାପନ ଓ କାର୍ଯ୍ୟକ୍ରମର ପ୍ରଚାର ଦିଗରେ ବିଶେଷ ଧ୍ୟାନ ଦେଇଥିଲେ । ସେ ବିଭିନ୍ନ ସ୍ଥାନରେ ପ୍ରଚାରକ ନିଯୁକ୍ତ କରିଥିଲେ । ଏ କ୍ଷେତ୍ରରେ ସେ ସମସ୍ତ ବ୍ୟୟ ନିଜେ ବହନ କରିଥିଲେ । ସେ ନିଜର ବୃଦ୍ଧାବସ୍ଥା ଓ ରୁଗ୍ଣ ଶରୀର ପ୍ରତି ଦୃଷ୍ଟି ନ ରଖି ସହର ଓ ଗ୍ରାମମାନଙ୍କୁ ଯାଇ ସମ୍ମିଳନୀର ଶିକ୍ଷା, ଶିଳ୍ପ, ବାଣିଜ୍ୟ ବିଷୟକ କାର୍ଯ୍ୟକ୍ରମ ଏବଂ ଧାନ, ଗୁଡ଼ର କାରବାର, ଖୋଳ, ଚମଡ଼ା, କପା ପ୍ରଭୃତି ପଦାର୍ଥର ଦେଶରେ ବ୍ୟବହାର ଓ ବିଦେଶକୁ ରପ୍ତାନୀ ସମ୍ବନ୍ଧରେ ଲୋକଙ୍କୁ ବୁଝାଉଥିଲେ । ଅରଟରେ ସୂତାକଟା, ତନ୍ତରେ ଲୁଗାବୁଣା, କୋଚା ତିଆରି ପ୍ରଭୃତିର ପ୍ରଚାର ଓ ପ୍ରସାର ପାଇଁ ସେ ଉଦ୍‌ବୋଧନ ଦେଉଥିଲେ ଏବଂ ସ୍ୱଦେଶୀ ଶିଳ୍ପ ପ୍ରତି ଆଦର ବୃଦ୍ଧି ପାଇବା ଉଚିତ ବୋଲି ମତ ବ୍ୟକ୍ତ କରୁଥିଲେ । ମଧୁବାବୁଙ୍କ ନିର୍ଦ୍ଦେଶ ଅନୁସାରେ ଉତ୍କଳ ସମ୍ମିଳନୀର କର୍ମୀମାନେ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୋଇ ବହୁ ଶ୍ରମ ସ୍ୱୀକାର କରି, ନାମମାତ୍ର ବେତନ ନେଇ ଗ୍ରାମାଞ୍ଚଳମାନଙ୍କରେ ସମ୍ମିଳନୀର ପ୍ରଚାର କରୁଥିଲେ । ମଧୁବାବୁ କଟକ ଜିଲ୍ଲାର କୁଜଙ୍ଗ, ସାଲେପୁର ପ୍ରଭୃତି ଅଞ୍ଚଳରେ ସଭା କରି ଉତ୍କଳ ସମ୍ମିଳନୀର ଶାଖାମାନ ସ୍ଥାପନ କରିଥିଲେ ।

ଖ୍ରୀ: ୧୯୦୫ରେ ସମ୍ମିଳନୀର ପ୍ରଚାର ପାଇଁ ଏକ ପତ୍ରିକା ପ୍ରକାଶ କରିବା ନିମନ୍ତେ ସମ୍ମିଳନୀର କାର୍ଯ୍ୟନିର୍ବାହକ ସମିତି ସ୍ଥିର କରିଥିଲେ । ମଧୁବାବୁ ଏହାର ସମସ୍ତ ବ୍ୟୟଭାର ବହନ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ ।

**କଲିକତା ଶିଳ୍ପ ଓ ବିଜ୍ଞାନ ସମିତି ଏବଂ ଉତ୍କଳ ସମ୍ମିଳନୀ (୧୯୦୪) :** ବଙ୍ଗ ପ୍ରଦେଶର ରାଜଧାନୀ କଲିକତା ସହରରେ ୧୯୦୪ରେ 'କଲିକତା ଶିଳ୍ପ ଓ ବିଜ୍ଞାନ ସମିତି' (Calcutta Industrial and Science Association) ଗଠିତ ହୋଇଥିଲା । ପ୍ରାରମ୍ଭିକ ଅବସ୍ଥାରେ ଏହାର ଶାଖା ପ୍ରଦେଶର ବିଭିନ୍ନ ଭାଷାଭାଷୀ ଅଞ୍ଚଳରେ ଗଠିତ ହେବାର ସ୍ଥିର କରାଯାଇଥିଲା । ସମିତି ସ୍ଥାପିତ ହେବା ପୂର୍ବରୁ ଏହି ଅଞ୍ଚଳମାନଙ୍କର ବିଶିଷ୍ଟ ନେତାମାନଙ୍କ ସହାନୁଭୂତି ଆକର୍ଷଣ କରିବାପାଇଁ ଏହାର ଉଦ୍‌ଯୋଗୀମାନେ ତତ୍ପର ହୋଇଥିଲେ । ଏହି ଅଞ୍ଚଳମାନଙ୍କରୁ କେତେଜଣଙ୍କୁ ଉଦ୍‌ଯୋକ୍ତା ଶ୍ରେଣୀଭୁକ୍ତ କରିବାପାଇଁ ମଧ୍ୟ ଉଦ୍ୟମ ହୋଇଥିଲା । ଓଡ଼ିଶାରେ ଏହି ଲକ୍ଷ୍ୟରେ ପ୍ରଚାର ଆରମ୍ଭ ହୋଇଯାଇଥିଲା । ଓଡ଼ିଶା ପାଇଁ ଏକ ଶାଖା ଗଠନ କରିବା ଉଦ୍ଦେଶ୍ୟ ନେଇ ମଧୁବାବୁ ଓ କଲିକତାର ଉଦ୍‌ଯୋକ୍ତାମାନଙ୍କ ଭିତରେ ଟିକିଏ ମତଭେଦ ଓ ମନୋମାଳିନ୍ୟ ଦେଖାଦେଇଥିଲା ।

୧୯୦୪ ଜାନୁଆରୀ ମାସରେ ମଧୁବାବୁ ହାଇକୋର୍ଟ କାମରେ କଲିକତା ଯାଇଥିଲାବେଳେ କଲିକତାର ବାବୁ ଯୋଗେନ୍ଦ୍ର ଚନ୍ଦ୍ର ଘୋଷଙ୍କ ସହ ହାଇକୋର୍ଟରେ ହଠାତ୍ ଦେଖା ହୋଇଥିଲା । ଘୋଷ ମହାଶୟ ଏହି 'ସମିତି ପ୍ରତିଷ୍ଠାର ଆବଶ୍ୟକତା' ସୂଚନାପତ୍ରରେ ସ୍ୱାକ୍ଷର

କରିବାକୁ ମଧୁବାବୁଙ୍କୁ କହିଥିଲେ ଓ ଖଣ୍ଡିଏ ସୂଚନାପତ୍ର ମଧ୍ୟ ଦେଇଥିଲେ । ମଧୁବାବୁ କହିଥିଲେ ଯେ ସମିତି ପ୍ରତିଷ୍ଠା କରିବାର ଆବଶ୍ୟକତା ସମ୍ବନ୍ଧରେ ସେ ବେଶି କିଛି ଜାଣନ୍ତି ନାହିଁ । ସେ ସମ୍ବନ୍ଧରେ ତଥ୍ୟ ଯୋଗାଇ ଦେଲେ ସେ ଏହାର ବିଚାର କରି ଦେଖିବେ । ଓଡ଼ିଶାରେ ଶାଖା ପ୍ରତିଷ୍ଠା କରିବା ଆବଶ୍ୟକ କି ନୁହେଁ, ତାହା ମଧ୍ୟ ବିଚାର କରିବେ । ଯୋଗେନ୍ଦ୍ରବାବୁ ମଧୁବାବୁଙ୍କୁ ଏ ସମ୍ବନ୍ଧରେ ଆଉ କିଛି ତଥ୍ୟ କଲିକତାରେ ଦେଇ ନ ଥିଲେ, କି କଟକ ଠିକଣାରେ ତାଙ୍କଠାକୁ ପଠାଇ ନ ଥିଲେ । ଉପଯୁକ୍ତ ତଥ୍ୟ ନ ମିଳିଲେ ନିବେଦନ ପତ୍ରରେ ସ୍ୱାକ୍ଷର କରିବେ ନାହିଁ ବୋଲି ମଧୁବାବୁ କଲିକତାରେ ଘୋଷବାବୁଙ୍କୁ ଜଣାଇ ଦେଇଥିଲେ । ମଧୁବାବୁ ତା' ପରେ ଏ ସମ୍ପର୍କରେ ଆଉ କୌଣସି ଚିଠିପତ୍ର ପାଇନାହାନ୍ତି ।

ଏହାର ଦୁଇମାସ ପରେ ଏପ୍ରିଲ ମାସରେ ଶ୍ରୀ ଜେ: ଏନ୍: ରାୟ କଟକ ଆସି ସମିତିର ଏକ ଶାଖା ଗଠନ ପାଇଁ ଉଦ୍ୟମ କଲେ । ମଧୁବାବୁଙ୍କ ସହିତ ଦେଖାକରି ଶାଖା ସ୍ଥାପନ ସମ୍ବନ୍ଧରେ କହିବାରୁ ସେ ଏହାର ଆବଶ୍ୟକତା ନ ଥିବା ବୁଝାଇଥିଲେ । ସେ କହିଥିଲେ ଯେ—ଗଲ ବର୍ଷ(୧୯୦୩ ଡ଼ିସେମ୍ବରରେ)'ଶିଳ୍ପ ଓ ବିଜ୍ଞାନ ସମିତି'ର ଗଠନ ଉଦ୍ୟମ ହେବା ଆଗରୁ ଉତ୍କଳ ସମ୍ମିଳନୀ ସ୍ଥାପିତ ହୋଇଛି ଏବଂ ଉତ୍କଳରେ ଶିଳ୍ପ ଓ ବିଜ୍ଞାନର ଉନ୍ନତି ପାଇଁ ବିଭିନ୍ନ ପନ୍ଥା ଗ୍ରହଣ କରିବା ଲକ୍ଷ୍ୟ ମଧ୍ୟ ସମ୍ମିଳନୀରେ ରହିଛି । ଏ ଦିଗରେ ମଧ୍ୟ କାର୍ଯ୍ୟ ଆରମ୍ଭ ହୋଇସାରିଛି । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଉତ୍କଳର ବହୁ ରାଜା, ମହାରାଜା, ମହାଜନ, ଭଦ୍ରବ୍ୟକ୍ତି ଓ ସାଧାରଣ ନାଗରିକ ଯୋଗଦେଇଥିଲେ । ସମସ୍ତେ ଉତ୍କଳର ଶିଳ୍ପୋନ୍ନତି ପାଇଁ ଉଦ୍ୟମ କରିବା ବିଷୟରେ ଏକମତ ହୋଇଛନ୍ତି । କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇସାରିଛି । ଜଣେ ଉତ୍ସାହୀ ଯୁବକଙ୍କୁ ବୟନ ଶିଳ୍ପର ଉନ୍ନତ ପ୍ରଣାଳୀ ଶିକ୍ଷା କରିବା ଉଦ୍ଦେଶ୍ୟରେ ମାନ୍ଦ୍ରାଜକୁ ପଠାହୋଇଛି ଏବଂ ଅନ୍ୟାନ୍ୟ ଶିଳ୍ପ ବିଷୟରେ ଶିକ୍ଷା ଲାଭ କରିବାପାଇଁ କେତେଜଣଙ୍କୁ ସାହାଯ୍ୟ ଦିଆହୋଇଛି । ସମଗ୍ର ଉତ୍କଳର ପ୍ରତିନିଧିସ୍ଥାନୀୟ ଉତ୍କଳ ସମ୍ମିଳନୀ ଉତ୍କଳରେ ଶିକ୍ଷା, ଶିଳ୍ପ ଓ ବିଜ୍ଞାନର ପ୍ରସାର ପାଇଁ ଲକ୍ଷ୍ୟ ରଖି କାର୍ଯ୍ୟ କରୁଥିବାବେଳେ ଓଡ଼ିଶାରେ କଲିକତା ସମିତିର ଏକ ଶାଖା ଗଠନର ଆବଶ୍ୟକତା ନାହିଁ; ବରଂ କଲିକତା ସମିତି ଉତ୍କଳ ସମ୍ମିଳନୀ ସହିତ ଏ କ୍ଷେତ୍ରରେ ସହଯୋଗ କରିବା ଉଚିତ । ମି: ରାୟ ମଧୁବାବୁଙ୍କଠାରୁ ଏହା ଶୁଣିବା ପରେ ଅନ୍ୟ ଉଦ୍ୟମ କଲେ ଓ କଟକରେ ଏକ ସଭା କରି ଶାଖା ସ୍ଥାପନ ପାଇଁ ନିବେଦନ କଲେ । ମଧୁବାବୁ ଯାହା କହିଥିଲେ, ସଭାରେ ମଧ୍ୟ ସେହି କଥା ସମସ୍ତେ କହିଲେ ଏବଂ ଉତ୍କଳ ସମ୍ମିଳନୀ ସହ ସହଯୋଗ କରିବାକୁ ରାୟଙ୍କୁ ଅନୁରୋଧ କଲେ । ଏହାପରେ କଟକରେ ଶାଖା ସ୍ଥାପନ ନ କରି ରାୟ କଲିକତା ଫେରିଗଲେ ।

ଏହାର ତିନି ମାସ ପରେ କଟକ ଓଡ଼ିଆ ସଙ୍ଘର ସମ୍ପାଦକଙ୍କ (ମଧୁବାବୁ ସମ୍ପାଦକ ଥିଲେ) ଠିକଣାରେ ବଙ୍ଗର ପ୍ରାଦେଶିକ ସମ୍ପାଦକ ଶ୍ରୀ ଯୋଗେନ୍ଦ୍ର ଘୋଷ କଲିକତାରୁ ଏକ

ଚିଠିଲେଖି ଜଣାଇଲେ ଯେ, ଆଗାମୀ ସେପ୍‌ଟେମ୍ବର ୩ ତାରଖରେ ଶିଳ୍ପ ଓ ବିଜ୍ଞାନ ସମିତିର କେନ୍ଦ୍ର ସଭାର ପ୍ରଥମ ଅଧିବେଶନ ବସିବା ସ୍ଥିର ହୋଇଥିବା ଦୃଷ୍ଟେ କଟକ ଶାଖା (ଜିଲ୍ଲା ଶାଖା) ତରଫରୁ ପ୍ରତିନିଧି ପଠାଇବା ଉଦ୍ୟମ କରନ୍ତୁ ଏବଂ ସେମାନଙ୍କ ନାମ ଆଗରୁ ପଠାନ୍ତୁ । କଟକରେ ଏ ସମ୍ପର୍କରେ କେତେ ଟଙ୍କା ଚାନ୍ଦା ଆଦାୟ ହୋଇଛି, ତାହା ଜଣାଇବାକୁ ମଧ୍ୟ ଲେଖାଥିଲା । କଟକ ଶାଖା ସମିତିର ସମ୍ପାଦକଙ୍କ ନାମ ଜଣା ନ ଥିବାରୁ ବାର ଆସୋସିଏସନ୍ (ଓଡ଼କଲ ସଙ୍ଘ) ଠିକଣାରେ ଚିଠି ପଠାଯାଇଥିବା କୁହାଯାଇଥିଲା ।

ମଧୁବାବୁଙ୍କ ପାଖକୁ ବଙ୍ଗ ପ୍ରାଦେଶିକ ଅଫିସରୁ ଏହା ହେଉଛି ସର୍ବ ପ୍ରଥମ ଚିଠି । ଏହି ଚିଠି ପାଇବାପରେ ଯୋଗେନ୍ଦ୍ରବାବୁଙ୍କ ପାଖକୁ ଚିଠି ଲେଖି ମଧୁବାବୁ ଜଣାଇଲେ ଯେ ସେ ଓଡ଼ିଶା ଶାଖାର କିଏ ସମ୍ପାଦକ ଓ କେବେ ଶାଖା ଗଠିତ ହେଲା ଜାଣନ୍ତି ନାହିଁ । ଅତଏବ ଏ ଚିଠି ସେ କାହାକୁ ଦେବେ ? ଅଗଷ୍ଟ ୧୩ ତାରଖରେ ଯୋଗେନ୍ଦ୍ର ବାବୁ ଉତ୍ତର ଦେଲେ, "କଟକରେ ଆମର କୌଣସି କମିଟି ବା ସଙ୍ଗଠନ ନାହିଁ । ଆପଣ ଦୟାପୂର୍ବକ ଏକ ସଭା ଡକାଇ ଜିଲ୍ଲା ଶାଖା ସମିତି ଗଠନ କରନ୍ତୁ । ଆପଣ ନିଜେ ପ୍ରତିନିଧିସ୍ୱରୂପ ଆସିଲେ ଆମ୍ଭେମାନେ ଆନନ୍ଦିତ ହୁଅନ୍ତୁ । ଏଥିରୁ ମଧୁବାବୁ ବୁଝିଲେ ଯେ ଏକ ଓଡ଼ିଆ ଅନୁଷ୍ଠାନ ସହିତ ସହଯୋଗ କରିବାପାଇଁ ବଙ୍ଗର ନେତାମାନେ କେବେ ଗୌରବ ମନେ କରିବେ ନାହିଁ । ତେବେ, ମଧୁବାବୁ ନିଜେ ନିଜକୁ ପ୍ରତିନିଧି ନିର୍ବାଚିତ କଲେ ସେମାନେ ଖୁସି ହେବେ । ଚିଠିର ଏହି ଅର୍ଥ କରି ସେ ମନରେ ବିଶେଷ କଷ୍ଟ ଅନୁଭବ କରିଥିଲେ । ସେତେବେଳର ଅବସ୍ଥାରେ କେତେକ ବଙ୍ଗୀୟ ନେତାଙ୍କ ମନୋଭାବ ଏହିପରି ହିଁ ଥିଲା । ଉତ୍କଳବାସୀ ଜଣେ ମୁଖିଆ ସଭ୍ୟଙ୍କଠାରୁ ଯୋଗେନ୍ଦ୍ରବାବୁ ମଧ୍ୟ ଲେଖିଥିଲେ, "କଟକର କେତେକ ମୁଖ୍ୟ ବ୍ୟକ୍ତି ମୋତେ ଉତ୍କଳ ସମ୍ମିଳନୀର ଆନୁଷ୍ଠାନିକ ସହଯୋଗ କାମନା କରି ପତ୍ର ଦେବାକୁ କହିବାରୁ ମୁଁ ଏ ଚିଠି ଲେଖିଲି । ମଧୁବାବୁ ମୋ ପତ୍ରର ଉତ୍ତର ଦେଇ ନାହାନ୍ତି ।

ଏ ସମ୍ବନ୍ଧରେ ଅନ୍ୟ ଏକ ବିଚିତ୍ର ଘଟଣା ମଧ୍ୟ ଘଟିଥିଲା । ସେପ୍‌ଟେମ୍ବର ମାସରେ ଶ୍ରୀ ବିପିନଚନ୍ଦ୍ର ପାଲ୍ କଟକ ଆସିଥିଲେ ଏବଂ ମଧୁବାବୁଙ୍କ ଅତିଥି ହୋଇଥିଲେ । ଓଡ଼ିଶାରେ କଲିକତା ଶିଳ୍ପ ଓ ବିଜ୍ଞାନ ସମିତିର ଶାଖା ଗଠନ କରିବା ଉଦ୍ଦେଶ୍ୟରେ ସେ କୁଆଡ଼େ ଆସିଥିଲେ । ଉଭୟଙ୍କ ଭିତରେ ବହୁ ସମସ୍ୟା ସମ୍ବନ୍ଧରେ ବହୁବାର ଆଲୋଚନା ହୋଇଛି । ଏକ ସାଧାରଣ ସଭାରେ ବିପିନବାବୁ ବକ୍ତୃତା ଦେଇଛନ୍ତି ଏବଂ ମଧୁବାବୁ ସଭାପତିତ୍ୱ କରିଛନ୍ତି, କିନ୍ତୁ ସେ କଟକରେ ଏକ ଶାଖା କମିଟି ଗଠନ କରିବା ନିମନ୍ତେ ଆସିଥିବା କଥା କେବେହେଲେ ମଧୁବାବୁଙ୍କୁ କହି ନାହାନ୍ତି କିମ୍ବା ଇଙ୍ଗିତରେ ମଧ୍ୟ ଏହା ଜଣାଇ ନାହାନ୍ତି ବୋଲି ମଧୁବାବୁ ବ୍ୟକ୍ତ କରିଥିଲେ । ଏହି ସଭାରେ ଜିଲ୍ଲା ସମିତି ଗଠନର ଏକ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ମଧୁବାବୁଙ୍କ ନାମ ସଭ୍ୟରୂପେ ପ୍ରସ୍ତାବିତ ହୋଇଥିଲା; କିନ୍ତୁ ସେ ମନା କରିଦେଲେ । ବାବୁ କ୍ଷୀରୋଦଚନ୍ଦ୍ର ମିତ୍ର ଓ ଜେ. ଏସ୍. ରାଉତଙ୍କ ନାମ ପ୍ରସ୍ତାବ

ହେବାରୁ ସେମାନେ ମଧ୍ୟ ମନା କରିଦେଲେ । ଏହା ସତ୍ତ୍ୱେ କଲିକତାର ଖବରକାଗଜ-ମାନଙ୍କରେ ଏମାନଙ୍କ ନାମ ସଭ୍ୟ ତାଲିକାରେ ପ୍ରକାଶ ପାଇଲା ।

ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ ସମିତିର ଏକ ବୈଠକ ବସି ଏହାର ବିଚାର ହୋଇଥିଲା । କେତେକ ବଙ୍ଗୀୟ ନେତାଙ୍କର ଉତ୍କଳ ସମ୍ମିଳନୀପ୍ରତି ତାଚ୍ଛଲ୍ୟ ମନୋଭାବକୁ ଘୃଣା କରିବା ସଙ୍ଗେ ସଙ୍ଗେ ମଧୁବାବୁଙ୍କ କାର୍ଯ୍ୟକୁ ସମିତି ସମର୍ଥନ କରିଥିଲେ । ଉତ୍କଳ ସମ୍ମିଳନୀର କୌଣସି ସଭ୍ୟ କଲିକତାର ଶିଳ୍ପ ଓ ବିଜ୍ଞାନ ସମିତିର କଟକ ଜିଲ୍ଲା ଶାଖା କମିଟି ସହିତ କୌଣସି ପ୍ରକାର ସମ୍ପର୍କ ରଖିବା ଉଚିତ ନୁହେଁ ବୋଲି ମଧ୍ୟ ପ୍ରସ୍ତାବ ଧାର୍ଯ୍ୟ ହେଲା ।

ଏହି ଶାଖା କମିଟି ଗଠନରେ ଓଡ଼ିଶାକୁ ନବାଗତ କେତେ ଜଣ ବଙ୍ଗୀୟ ଭଦ୍ରବ୍ୟକ୍ତି ଉଦ୍ୟମଶୀଳ ହୋଇଥିବାରୁ ଏମାନଙ୍କ କାର୍ଯ୍ୟକୁ ପସନ୍ଦ କରାଯାଇ ନ ଥିଲା ଏବଂ ଏମାନେ ଉତ୍କଳର ସ୍ୱାର୍ଥ ପ୍ରତି ଦୃଷ୍ଟି ନ ଦେଇ ସଙ୍କୀର୍ଣ୍ଣ ଜାତୀୟ ଭାବଦ୍ୱାରା ପ୍ରଭାବିତ ହୋଇଥିବା ଗ୍ରହଣୀୟ ନୁହେଁ, ଏହି ମତ ବ୍ୟକ୍ତ ହୋଇଥିଲା ।

**ଉତ୍କଳ ଯୁବକ ସଂଘ :** ଏହି ନାମରେ ଏକ ସଙ୍ଘ ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ ୧୯୦୪ ଜୁଲାଇ ୧୬ ତାରିଖରେ କଟକରେ ଗଠିତ ହୋଇଥିଲା । ସେହି ବର୍ଷ ଜୁଲାଇ ଶେଷକୁ ସଙ୍ଘର ଉଦ୍ଦେଶ୍ୟ ଓ ସଂକ୍ଷିପ୍ତ ନିୟମାବଳୀ ପ୍ରକାଶିତ ହୋଇଥିଲା ଏବଂ ସଙ୍ଘର ସଭ୍ୟ-ଶ୍ରେଣୀଭୁକ୍ତ ହେବାପାଇଁ ନିବେଦନ କରାଯାଇଥିଲା ।

୧୯୦୩ ଡିସେମ୍ବର ଶେଷ ସପ୍ତାହରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନଯୋଗୁଁ କଟକର ଜନସାଧାରଣ, ଯୁବକ ଓ ଛାତ୍ରମାନଙ୍କ ଭିତରେ ଅଭୂତପୂର୍ବ ଜାଗରଣ ଦେଖାଦେଇଥିଲା । ଯୁବକମାନେ ଦେଶପାଇଁ ସର୍ବପ୍ରକାର ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ଥିବା ସେମାନଙ୍କ ଉଦ୍ୟମ ଉତ୍ସାହ ଓ କର୍ମକ୍ଷେତ୍ରରେ ଉନ୍ମାଦନାରୁ ସୂଚନା ମିଳୁଥିଲା । ଉତ୍କଳପାଇଁ ଆବଶ୍ୟକ ହେଲେ ଜୀବନ ବଳିଦେବାକୁ ମଧ୍ୟ କୁଣ୍ଠାବୋଧ କରିବେ ନାହିଁ ବୋଲି କେହି କେହି ଶପଥ ନେଇଥିଲେ । ଯୁବକଶ୍ରେଣୀ ଓ କଲେଜର ଛାତ୍ରମାନେ ଦେଶସେବା କାର୍ଯ୍ୟରେ ଯେଉଁ ଉଚ୍ଚକୋଟୀର ତ୍ୟାଗ, ପରିଶ୍ରମ ଓ କାର୍ଯ୍ୟଦକ୍ଷତା ଦେଖାଇ-ଥିଲେ, ସେଥିରେ ସମଗ୍ର ଉତ୍କଳବାସୀ ମୁଗ୍ଧ ହୋଇ ଯାଇଥିଲେ । ଉତ୍କଳର ଯୁବକମାନଙ୍କର ଏହି ଉତ୍ସାହକୁ ସଂଗଠିତ କରି ଉଚିତ ମାର୍ଗରେ ଗତି କରାଇଲେ ଉତ୍କଳର ମୁଖ ଉଜ୍ଜ୍ୱଳ ହେବ, ମଧୁବାବୁ ପ୍ରଭୃତି କେତେକଜଣ ନେତା ଏହି ଆଶା ପୋଷଣ କରିଥିଲେ । ଏହି ହେତୁ ଉତ୍କଳ ସମ୍ମିଳନୀର ନାମକୁ ଯୁକ୍ତ କରି ଏକ ଯୁବକ ସଙ୍ଘ ଗଠନ କରିବାର ଆବଶ୍ୟକତା ସମ୍ବନ୍ଧରେ ପୂର୍ବରୁ ଆଲୋଚନା ମଧ୍ୟ ହୋଇଥିଲା । ଏହା ଫଳରେ 'ଉତ୍କଳ ଯୁବକ ସଙ୍ଘ' (Utkal Youngmans' Association) ଗଠିତ ହୋଇଥିଲା ।

ଉତ୍କଳ ଯୁବକ ସଂଘର ଲକ୍ଷ୍ୟ ଥିଲା—(୧) ଆମ ଦେଶର ଯୁବକମାନେ ଯେପରି ସମାଜର ଅତି ପ୍ରୟୋଜନୀୟ ସଭ୍ୟ ହୋଇପାରିବେ, ସେହି ଲକ୍ଷ୍ୟରେ ସେମାନଙ୍କ ଶକ୍ତିକୁ ସଂଗଠିତ କରିବା । (୨) ସେମାନେ ଯେପରି ନିଜ ଉଚ୍ଚ ଭାଗ୍ୟର ନିଜେ ନିର୍ମାତା ହେବେ, ସେହି ଦିଗରେ ସେମାନଙ୍କ କାର୍ଯ୍ୟାବଳୀକୁ ନିୟନ୍ତ୍ରଣ କରିବା । (୩) ସେମାନେ ଯେପରି ସ୍ୱଦେଶର ସୁଯୋଗ୍ୟ ସନ୍ତାନ ହେବେ, ସେହି ଦିଗରେ ସେମାନଙ୍କୁ ପରିଚାଳନା କରିବା । (୪) ବିଭିନ୍ନ ସମ୍ପ୍ରଦାୟ ଓ ଜାତି ମଧ୍ୟରେ ଯେପରି ସଦ୍ଭାବ ପ୍ରତିଷ୍ଠା ହେବ, ସେହି ଦିଗରେ କାର୍ଯ୍ୟ କରିବାକୁ ଉତ୍ସାହିତ କରିବା । (୫) ଜାତିପାଇଁ ନିଜ ସ୍ୱାର୍ଥକୁ ବଳିଦେବା ନିମନ୍ତେ ସେମାନଙ୍କୁ ପ୍ରସ୍ତୁତ କରିବା । (୬) ଛାତ୍ରମାନେ ଶିକ୍ଷାନୁଷ୍ଠାନମାନଙ୍କରେ ଯେଉଁ ଶିକ୍ଷା ଲାଭ କରୁଛନ୍ତି, ତାହାର ବିକାଶ ସଙ୍ଗେ ସଙ୍ଗେ ମନ, ଶରୀର ଓ ଆତ୍ମାର ବିକାଶ ପାଇଁ ବିଭିନ୍ନ ପନ୍ଥା ଅବଲମ୍ବନ କରିବା ଲକ୍ଷ୍ୟରେ ବିଭିନ୍ନ ସମୟରେ ବିଶିଷ୍ଟ ବ୍ୟକ୍ତିଙ୍କ ବକ୍ତୃତା ଶୁଣିବାକୁ ସୁବିଧା କରାଇଦେବା । (୭) ଗରିବ ଛାତ୍ରମାନେ ଅର୍ଥାଭାବରୁ ଉଚ୍ଚଶିକ୍ଷା ପାଇ ପାରୁନାହାନ୍ତି । ସେମାନଙ୍କୁ ଉପଯୁକ୍ତ ସାହାଯ୍ୟ ଦାନ କରି ଉଚ୍ଚଶିକ୍ଷାର ବ୍ୟବସ୍ଥା କରିବା । (୮) ଯୁବକମାନଙ୍କୁ ବିଭିନ୍ନ ଶିଳ୍ପ ଓ କଳାକୌଶଳରେ ଶିକ୍ଷାଦାନ କରିବା ବ୍ୟବସ୍ଥା କରିବା । (୯) ସାଧାରଣ ପାଠାଗାର ସ୍ଥାପନ କରି ସେମାନଙ୍କ ଭିତରେ ଭାବର ଆଦାନ ପ୍ରଦାନ, ଭ୍ରାତୃଭାବର ଉଦ୍ରେକ ପ୍ରଭୃତି ପାଇଁ ସୁବିଧା ଦେବା । (୧୦) ପ୍ରବୀଣ ଦେଶସେବକ, ଶିକ୍ଷକ, ସମାଜସେବୀ ଓ ରାଜନୀତିଜ୍ଞମାନଙ୍କ ସଂସ୍ପର୍ଶରେ ଆସି ଯୁବକମାନଙ୍କ ଚିନ୍ତାଧାରାକୁ ଉଜ୍ଜ୍ୱଳ ଓ ଉନ୍ନତ କରିବା ଲକ୍ଷ୍ୟରେ ସଭାସମିତି ଓ ବୈଠକର ଆୟୋଜନ କରିବା । ସ୍ୱଦେଶୀ ଓ ବିଦେଶୀ ବିଭିନ୍ନ କ୍ରୀଡ଼ା କୌତୁକର ବ୍ୟବସ୍ଥା କରିବାପାଇଁ ବିଭିନ୍ନ ପନ୍ଥା ଅବଲମ୍ବନ କରିବା ଲକ୍ଷ୍ୟ ମଧ୍ୟ ରହିଥିଲା । ଏହି ସବୁ ଲକ୍ଷ୍ୟ ଓ ଅବଲମ୍ବିତ ଉପାୟଯୋଗୁଁ ସଂଘଟି କ୍ରମେ ଶକ୍ତିଶାଳୀ ହୋଇଉଠିଲା ।

ମ୍ୟାଟ୍ରିକ ଓ ତଦୂର୍ଦ୍ଧ୍ୱ ଯୋଗ୍ୟତା ଥିବା ଛାତ୍ରମାନେ ଏହି ସଂଘର ସଭ୍ୟ ହୋଇପାରିବେ ବୋଲି ସ୍ଥିର ହୋଇଥିଲା । ଛାତ୍ରମାନେ ନିଜ ନିଜର ଅଭିଭାବକମାନଙ୍କ ଅନୁମତି ନେଇ ସଂଘର ସଭ୍ୟ ହେବାପାଇଁ ନିୟମ କରାଯାଇଥିଲା ।

ଏହି ଉତ୍କଳ ଯୁବକ ସଂଘର ବହୁ ବିଶେଷ ବୈଠକ ପରବର୍ତ୍ତୀକାଳରେ ଅନୁଷ୍ଠିତ ହୋଇଥିଲା । ସଂଘ ଆନୁକୂଲ୍ୟରେ ବିଭିନ୍ନ ସମୟରେ ବହୁ ପ୍ରବୀଣ ବ୍ୟକ୍ତି ବିଭିନ୍ନ ଉପାଦେୟ ବିଷୟରେ ବକ୍ତୃତା ଦେଇ ସଭ୍ୟମାନଙ୍କର ମାନସିକ, ନୈତିକ ଓ ଶାରୀରିକ ଉନ୍ନତିରେ ସାହାଯ୍ୟ କରିଥିଲେ ।

ମଧୁବାବୁ ଏହି ସଂଘର ମୁଖ୍ୟ ପ୍ରେରଣାଦାତା ଓ ପୃଷ୍ଠପୋଷକ ଥିଲେ ଏବଂ ତାଙ୍କରି ପ୍ରେରଣାରେ ସଂଘଟି ଗଠିତ ହୋଇଥିଲା । ୧୯୦୪ ଜୁଲାଇ ମାସର ଦ୍ୱିତୀୟ ସପ୍ତାହରେ ଉତ୍କଳ ଯୁବକ ସଂଘ ବିଧିବଦ୍ଧଭାବରେ ଗଠିତ ହେଲା । ପ୍ରଥମେ ୧୦୦ ଜଣ ଯୁବକ ଛାତ୍ର ଏହାର ସଭ୍ୟ ହୋଇଥିଲେ । ସଂଘର ଲକ୍ଷ୍ୟ ଉଦାର ଓ ଉଚ୍ଚ ଥିବାରୁ ଓଡ଼ିଶାର କମିଶନର

ମି. ଗ୍ରାଉସ୍ (Grouse) ସାହେବ ମାସିକ ସାହାଯ୍ୟ ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ । ଏହାଦ୍ୱାରା ସଂଘର କର୍ମକର୍ତ୍ତାମାନେ ବିଶେଷଭାବରେ ଉତ୍ସାହିତ ହୋଇଥିଲେ । ଓଡ଼ିଶା ଭଳି ଅପେକ୍ଷାକୃତ ଏକ ଅନୁନ୍ନତ ଅଞ୍ଚଳରେ ଯୁବଗୋଷ୍ଠୀକୁ ଉଚ୍ଚ ଆଦର୍ଶରେ ସଂଗଠିତ କରିବାପାଇଁ ଏହି ଯେଉଁ ଉଦ୍ୟମ ହୋଇଥିଲା, ତାହାକୁ କମିଶନର ସାହେବ ସମର୍ଥନ କରିଥିଲେ ଏବଂ ପ୍ରାରମ୍ଭରୁ ସରକାରଙ୍କ ଶୁଭଦୃଷ୍ଟି ପଡ଼ିଥିବାରୁ ସଂଘ ଉତ୍ସାହିତ ହୋଇଥିଲା ।

କନିକାର ରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେବ ପ୍ରତିଯୋଗିତା ନିମନ୍ତେ ଏକ ସ୍ୱର୍ଣ୍ଣପଦକ ଓ ଦୁଇଟି ବୃତ୍ତି ଦାନ କରିଥିଲେ । ପ୍ରାଥମିକ ଅବସ୍ଥାରେ ଏ ଅନୁକୂଳ ସୂଚନା ସଂଘରେ କର୍ମ ଉନ୍ମାଦନା ସୃଷ୍ଟି କରିଥିଲା । କେତେଜଣ ଗ୍ରୁପ ସଂଘର ଉତ୍ସାହ ପାଇ ଆଲୁମିନିୟମ କାରଖାନା, ବଢ଼େଇ କାରଖାନା ଓ ଚର୍ମଶିଳ୍ପରେ ଶିକ୍ଷାଲାଭ କରିଥିଲେ । ଗୋପବନ୍ଧୁ ଦାସ ଏହାର ସମ୍ପାଦକ ଥିଲେ । ବହୁ କଲେଜ ଛାତ୍ର ଏହି ଯୁବକସଂଘର ସଭ୍ୟ ଥିଲେ । ଏମାନଙ୍କ ନେତୃତ୍ୱରେ ବିଭିନ୍ନ ସେବାକାର୍ଯ୍ୟ ଓ ଉତ୍କଳ ସମ୍ମିଳନୀର କାର୍ଯ୍ୟ ସମାହିତ ହେଉଥିଲା ।

ଉତ୍କଳ ଯୁବକ ସଂଘର ସଭ୍ୟମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ମଧୁବାବୁ ଜୁଲାଇ ମାସ ୩୦ ତାରିଖରେ, ଅର୍ଥାତ୍ ସଂଘ ଗଠିତ ହେବାର ପନ୍ଦରଦିନ ଭିତରେ ସଂଘର ଏକ ସଭାରେ 'ଈଶ୍ୱରଭକ୍ତି ଓ ଦେଶପ୍ରେମ' ସମ୍ବନ୍ଧେ ଇଂରାଜୀରେ ଏକ ବକ୍ତୃତା ପ୍ରଦାନ କରିଥିଲେ ।

## ୧୭ (କ) : ଉତ୍କଳ ସମ୍ମିଳନୀର ସମ୍ପାଦକ ପଦ ତ୍ୟାଗ ପତ୍ର

ମଧୁବାବୁ ଉତ୍କଳ ସମ୍ମିଳନୀର ସୃଷ୍ଟିକର୍ତ୍ତା ଓ ପ୍ରାଣ ଥିଲେ । ସେ ନିଜେ ସ୍ୱହସ୍ତରୁ ପ୍ରଚୁର ଅର୍ଥ ବ୍ୟୟକରି ଓ ଅକ୍ଲାନ୍ତ ପରିଶ୍ରମ କରି ସମ୍ମିଳନୀକୁ ବଳିଷ୍ଠ ଓ ଏକମାତ୍ର ଜାତୀୟ ମିଳନପୀଠ ଓ ଜାତୀୟ ସ୍ୱାର୍ଥରକ୍ଷାର ଏକମାତ୍ର ପ୍ରଧାନ ସଂସ୍ଥାରୂପେ ଗଠିତ କରି ପାରିଥିଲେ । ଏହି କାରଣରୁ ସମଗ୍ର ଉତ୍କଳ ଓ ଉତ୍କଳ ବାହାରେ ମଧୁବାବୁଙ୍କର ଖ୍ୟାତି ଓ ପ୍ରଭାବ ବୃଦ୍ଧି ପାଇଥିଲା । ତାଙ୍କର କେହି ସମାଲୋଚକ ଯେ ନଥିଲେ ଏକଥା ନୁହେଁ । କେହି କେହି ଈର୍ଷାଭାବ ପୋଷଣ କରି ତାଙ୍କ ପ୍ରତି ଅଯଥା କଟୂକ୍ତି କରିବାକୁ ମଧ୍ୟ ପଶ୍ଚାତ୍ପଦ ହେଉନଥିଲେ ।

ସମ୍ମିଳନୀର ପ୍ରଥମ ଅଧିବେଶନ ୧୯୦୩ ଡ଼ିସେମ୍ବର ମାସ ଶେଷରେ ଅନୁଷ୍ଠିତ ହୋଇଥିଲା । ୧୯୦୪ର ପ୍ରାରମ୍ଭରୁ ବିଧିବଦ୍ଧ କାର୍ଯ୍ୟ ଆରମ୍ଭ ହୋଇଥିଲା ଓ ୧୯୦୪ରେ ଦ୍ୱିତୀୟ ଅଧିବେଶନ ହୋଇଥିଲା । ୧୯୦୩ ଓ ୧୯୦୪ର ଏହି ଦୁଇଟି ଅଧିବେଶନରେ

ସମ୍ମିଳନୀରେ ଦେଶହିତକର ସଂଗଠନମୂଳକ ବହୁ ପ୍ରସ୍ତାବ ଗୃହୀତ ହୋଇଥିଲା । ଓଡ଼ିଶାର ଓ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ବିଭିନ୍ନ ସ୍ଥାନରେ ସମ୍ମିଳନୀର ଜିଲ୍ଲା ଶାଖା ଓ ଆଞ୍ଚଳିକ ଶାଖା ଗଠନ ନିମନ୍ତେ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ସମ୍ମିଳନୀର ଉଦ୍ଦେଶ୍ୟ ଓ କାର୍ଯ୍ୟପ୍ରଣାଳୀର ପ୍ରଚାରପାଇଁ ପ୍ରଚାରକ ନିଯୁକ୍ତ ସିଦ୍ଧାନ୍ତ ହୋଇଥିଲା । କେତେ ଜଣ ପ୍ରଚାରକ ମଧ୍ୟ ନିଯୁକ୍ତ ହୋଇ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ମଧୁବାବୁ ଆରମ୍ଭରୁ ସମ୍ମିଳନୀର ସମ୍ପାଦକ ଥିଲେ । ତାଙ୍କର ପ୍ରେରଣାରେ ସବୁ କାର୍ଯ୍ୟ ପରିଚାଳିତ ହେଉଥିଲା, କିନ୍ତୁ ଉପଯୁକ୍ତ ସଂଖ୍ୟକ କର୍ମୀ ଓ ସଂଗଠକ ସୃଷ୍ଟି କରିବା ଓଡ଼ିଶାପରି ଏକ ଅନୁନ୍ନତ ଓ ବିଖଣ୍ଡିତ ଦେଶପକ୍ଷରେ ସହଜ ନଥିଲା । ସର୍ବସାଧାରଣଙ୍କଠାରୁ ସାହାଯ୍ୟ ଅର୍ଥ ସଂଗ୍ରହ ମଧ୍ୟ ଯଥେଷ୍ଟ ହେଉନଥିଲା । ଫଳରେ କେବଳ ସମ୍ମିଳନୀ ଅଧିବେଶନ ବସିବା ଅଳ୍ପ କେତେକ ଦିନ ପୂର୍ବରୁ କର୍ମତତ୍ପରତା ପ୍ରକାଶ ପାଉଥିଲା ଏବଂ ସମ୍ମିଳନୀପରେ ନିଶ୍ଚେଷ୍ଟତା ଦେଖା ଦେଉଥିଲା । ଏହି ଅବସ୍ଥା ଦେଖି କେହି କେହି ଦେଶ ହିତାକାଂକ୍ଷୀ ବ୍ୟଥିତ ହେଉଥିଲେ ଏବଂ ମଧୁବାବୁ ଏକାକୀ ପରିଶ୍ରମ କରୁଥିବାରୁ ଏବଂ ତାଙ୍କର କାର୍ଯ୍ୟଭାରକୁ ଲାଘବ କରିବାପାଇଁ ଉପଯୁକ୍ତ କର୍ମୀ ଓ ନେତା ବାହାରି ପାରୁନଥିବାରୁ ଭବିଷ୍ୟତ ଅନ୍ଧକାର ଥିବା କଳ୍ପନା କରୁଥିଲେ । ଏହି ଶ୍ରେଣୀର ହିତାକାଂକ୍ଷୀମାନେ ମଧୁବାବୁଙ୍କୁ ସର୍ବପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ ହେଉଥିଲେ । ଏହିମାନଙ୍କର ଉଦ୍ୟମରେ ବିଭିନ୍ନ ସ୍ଥାନରେ ସମ୍ମିଳନୀର ଅଧିବେଶନ ଅତି ସୁନ୍ଦର ଓ ଆଡ଼ମ୍ବରପୂର୍ଣ୍ଣ ଭାବରେ ସମାହିତ ହେଉଥିଲା । ଏସବୁ ସାମୟିକ କାର୍ଯ୍ୟରେ ବେଶି ତତ୍ପରତା ଦେଖା ଯାଉଥିଲେହେଁ ସ୍ଥାୟୀ କାର୍ଯ୍ୟପାଇଁ ଉପଯୁକ୍ତ ସ୍ୱାର୍ଥତ୍ୟାଗୀ କର୍ମୀର ଅଭାବ ଥିଲା । ଯେଉଁ କେତେଜଣ ବା ବାହାରୁଥିଲେ, ସେମାନେ ସମଗ୍ର ଓଡ଼ିଆ ଅଞ୍ଚଳ ଭ୍ରମଣ କରି କାର୍ଯ୍ୟ କରିବା ସମ୍ଭବ ହେଉ ନଥିଲା । ଫଳରେ ସମ୍ମିଳନୀରେ ଗୃହୀତ ବହୁ ପ୍ରସ୍ତାବ ପ୍ରସ୍ତାବରେ ହିଁ ରହିଯାଉଥିଲା । ନିଜେ ମଧୁବାବୁ ମଧ୍ୟ ଏହା ଅନୁଭବ କରୁଥିଲେ ଏବଂ ଦୁଃଖ ପ୍ରକାଶ କରୁଥିଲେ । ବେଳେ ବେଳେ ବିରକ୍ତ ହୋଇ ସେ ସମ୍ପାଦକତ୍ୱରୁ ଇସ୍ତଫା ମଧ୍ୟ ଦେଉଥିଲେ । କେହି କେହି 'ପରୋକ୍ଷେ କାର୍ଯ୍ୟ ହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦୀନଂ' ହୋଇ ତାଙ୍କର ଅମଙ୍ଗଳ ବାଞ୍ଛା ମଧ୍ୟ କରୁଥିଲେ । ସବୁ ବିଷୟ ଜାଣି ଜାଣି ଯେଉଁମାନେ ଈର୍ଷା ଦ୍ୱେଷ ପ୍ରଣୋଦିତ ହୋଇ ତାଙ୍କ ପ୍ରତି ସମାଲୋଚନା ବାଣ ନିକ୍ଷେପ କରୁଥିଲେ, ସେମାନଙ୍କ ଆଚରଣ ଦେଖି ମଧୁବାବୁ କ୍ଷୁବ୍ଧ ହୋଇ ପଡ଼ୁଥିଲେ । ଏପରି କେତେକ ଘଟନା ସମ୍ମିଳନୀ ପ୍ରତିଷ୍ଠାର ଦୁଇବର୍ଷ ଭିତରେ ଦେଖାଦେଇଥିଲା ।

ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ସମ୍ପାଦିତ ଗଞ୍ଜାମର 'ପ୍ରଜାବନ୍ଧୁ' ନାମକ ସାପ୍ତାହିକ ପତ୍ରିକାରେ କଟକରୁ କେହି ଜଣେ ଭଦ୍ରବ୍ୟକ୍ତି ଏକ ଦୀର୍ଘପତ୍ର ୧୯୦୫ (ଜାନୁଆରୀ ?) ମାସରେ ପ୍ରକାଶ କରିଥିଲେ । ଏଥିରେ ସମ୍ମିଳନୀର ସମ୍ପାଦକ ମଧୁବାବୁଙ୍କୁ ଆକ୍ରମଣ କରି ତାଙ୍କୁ ଓ ତାଙ୍କର କାର୍ଯ୍ୟାବଳୀର ନିନ୍ଦା ରଟନା କରାଯାଇଥିଲା । 'ଜଣେ ହିତାଭିଳାଷୀ'

'ଉତ୍କଳଦୀପିକା' ( ୨୫।୨।୧୯୦୫ )ରେ ଯେଉଁ ଉତ୍ତର ଦେଇଥିଲେ, ସେଥିରୁ ଶତ୍ରୁତାର କାରଣ ଓ ମଧୁବାବୁଙ୍କ ସପକ୍ଷରେ ଯୁକ୍ତିର ସୂଚନା ମିଳୁଛି ।

"ମହାଶୟ, ଉତ୍କଳ ସମ୍ମିଳନୀ ସମ୍ବନ୍ଧୀୟ କାର୍ଯ୍ୟାବଳୀ ସମ୍ବନ୍ଧେ ମାନ୍ୟବର ମଧୁସୂଦନ ଦାସ ମହୋଦୟଙ୍କ ବିରୁଦ୍ଧରେ 'ପ୍ରଜାବନ୍ଧୁ' ନାମକ ସମ୍ବାଦପତ୍ରରେ କଟକ ନଗର ନିବାସୀ ଜନୈକ ଭଦ୍ରବ୍ୟକ୍ତିଙ୍କର ଖଣ୍ଡିଏ ସୁଦୀର୍ଘ ପତ୍ର ପ୍ରକାଶିତ ହୋଇଅଛି । ପତ୍ର ଖଣ୍ଡିକ ଧୃଷ୍ଟତା ପରିପୂର୍ଣ୍ଣ । ଯେଉଁ ବିବରଣମାନ ତହିଁରେ ବିବୃତ ହୋଇଅଛି, ସମସ୍ତ ନ ହେଲେହେଁ ତହିଁର ଅଧିକାଂଶ ସମ୍ବାଦପତ୍ରକୁ ପ୍ରେରଣ କରିବାର ଯୋଗ୍ୟ କି ନା ଏବଂ ସମ୍ବାଦପତ୍ରରେ ପ୍ରକାଶଯୋଗ୍ୟ କି ନା, ସୁରୁଚିସମ୍ପନ୍ନ ପାଠକବର୍ଗ ତହିଁର ମୀମାଂସା କରିବେ । ତେବେ ପତ୍ର ଖଣ୍ଡି ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିବାରୁ କି ଉଦ୍ଦେଶ୍ୟରେ ତାହା ଲିଖିତ, ସର୍ବସାଧାରଣଙ୍କର ତାହା ଜାଣିବାରେ କୌତୂହଳ ଜାତ ହୋଇପାରେ । ଜିଜ୍ଞାସା କରେ, ଖ୍ୟାତିସମ୍ପନ୍ନ ବ୍ୟକ୍ତିଙ୍କୁ ଆକ୍ରମଣ କଲେ ନିଜର ନାମ ପ୍ରଖ୍ୟାତ ହେବ, ଏହି ଆଶାରେ କିଁା କୌଣସି ଚତୁର ଲୋକର କୁହୁକରେ ପଡ଼ି ଦେଶର କୌଣସି ମାନ୍ୟଗଣ୍ୟ ବ୍ୟକ୍ତି ଓ ତାଙ୍କର ଅନୁଷ୍ଠିତ କାର୍ଯ୍ୟର ନିନ୍ଦା ରଟନା କରିବା ଉଦ୍ଦେଶ୍ୟରେ ପତ୍ରପ୍ରେରକ ସେହି ପତ୍ର ଲେଖିଅଛନ୍ତି ? ଯଦି ଶେଷୋକ୍ତ କାରଣରୁ ହୁଏ, ତେବେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା — 'Father forgive him for he knoweth not what he sayeth' ଆଜିକାଲି ଅନେକ ଲୋକଙ୍କ ମୁହଁରୁ ଶୁଣାଯାଏ, 'ଯତ ନଷ୍ଟେର ଗୋଡ଼ା ଏଇ ମିଃ ଦାସ ।' କୌଣସି କୌଣସି ବିଦେଶୀ ବଙ୍ଗାଳୀମାନେ କହିପାରନ୍ତି, ମଧୁବାବୁ ଗୋଟାଏ ସମ୍ମିଳନୀ କଲେ କାହିଁକି ? ସେ ଆମ୍ଭମାନଙ୍କର ଶତ୍ରୁ । ଅନ୍ୟ ଏକ ସମ୍ପ୍ରଦାୟ କହିପାରନ୍ତି, "ଓଡ଼ିଶାଟା ମଧ୍ୟପ୍ରଦେଶକୁ ନଯାଇ ବଙ୍ଗଳା ସଙ୍ଗେ ରହିବା ନିମନ୍ତେ ମଧୁବାବୁ ମତ ଦେଲେ କାହିଁକି ? ସେ ଓଡ଼ିଶାର ଶତ୍ରୁ ।' ସ୍ଥୂଳତଃ, ଅନୁମାନ ହୁଏ, ପ୍ରଥମ ସମ୍ପ୍ରଦାୟର ବିଶ୍ୱାସ ଯେ ମଧୁବାବୁ ନଥିଲେ ସେମାନେ ଓଡ଼ିଶାଟାକୁ ଗନ୍ଧମାର୍ଦ୍ଦନ ପରି ଉତ୍ପାଟନକରି ଘେନି ପଳାନ୍ତେ, ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ଲୋପ ହୁଅନ୍ତା । ଦ୍ୱିତୀୟ ଓ ତୃତୀୟ ସମ୍ପ୍ରଦାୟମାନଙ୍କ ବିଶ୍ୱାସ ଯେ ମଧୁବାବୁ ନଥିଲେ ଓଡ଼ିଆମାନେ ଓଡ଼ିଶାରୁ ବଙ୍ଗାଳୀମାନଙ୍କୁ ବାହାରକରିଦିଅନ୍ତେ; ମଧୁବାବୁଙ୍କ ଯୋଗେ ସେ ଆଶା ଭରସା ବନ୍ୟା ଜଳରେ ଭାସିଗଲା ।

" ଦ୍ୱିତୀୟ ଓ ତୃତୀୟ ପକ୍ଷର କଥା ଆମେ କହିବା । ଓଡ଼ିଶାର ସ୍ଥାୟୀ ବଙ୍ଗାଳୀ-ମାନଙ୍କୁ ଓଡ଼ିଶାବାସୀ ବୋଲି ନ ଗଣିବା ଏକପକ୍ଷରେ ଯେମନ୍ତ ଅନ୍ୟାୟ, ଅପରପକ୍ଷରେ ତେମନ୍ତ ଅହିତକର । ଏହା ଅନେକ ଉଚ୍ଚପଦସ୍ଥ ରାଜକର୍ମଚାରୀ ହୃଦୟଙ୍ଗମ କରିଅଛନ୍ତି । ଅନ୍ୟାୟ କାରଣ ସେମାନେ ପ୍ରାୟ ତିନି ଶତାବ୍ଦୀ ହେବ ଓଡ଼ିଶାରେ ବାସକରି ଓଡ଼ିଶାର ଉନ୍ନତି ନିମନ୍ତେ ପ୍ରଚୁର କାମ କରିଅଛନ୍ତି । ଅହିତକର, କାରଣ ଐରୂପ ପାର୍ଥକ୍ୟ ରହିଲେ, ଅନ୍ତର୍ବିବାଦ ଉତ୍ପାଦିତ ଓ ପରିବର୍ଦ୍ଧିତ ହୋଇ ଦେଶର ଆଭ୍ୟନ୍ତରିକ ଉନ୍ନତିର ପ୍ରତିବନ୍ଧକ ହେବ । ମୋର ବିଶ୍ୱାସ ଯେ, ସେ ପ୍ରତିବନ୍ଧକ ଦୂରହେବାର ସମୟ ଆସନ୍ନପ୍ରାୟ । ଓଡ଼ିଶା

ମଧ୍ୟପ୍ରଦେଶକୁ ଯାଇଥିଲେ ଗଭର୍ଣ୍ଣମେଣ୍ଟ ଓଡ଼ିଶା ଖଣ୍ଡିକ ଓଡ଼ିଆମାନଙ୍କ ନାମରେ ରେଜିଷ୍ଟର କବଲା କରିଦେଇ ନଥାନ୍ତେ, କିମ୍ବା ବଙ୍ଗାଳୀମାନଙ୍କ କୋଠାବାଡ଼ି ଓ ଜମିଦାରି ଓଡ଼ିଆମାନଙ୍କୁ ଖଏରାତ କରିଦେଇ ନଥାନ୍ତେ । Orissa for the Oriyas—ଏହା ଶାସନ ନୀତିର ବିରୁଦ୍ଧ ବୋଲି କର୍ତ୍ତୃପକ୍ଷମାନେ ବାରମ୍ବାର ଘୋଷଣା କରିଅଛନ୍ତି । ସେ ନୀତି ଗଭର୍ଣ୍ଣମେଣ୍ଟ ପରିହାର କରିବା ସମ୍ଭବ ନୁହେଁ । ତେବେ ଉତ୍କଳୀୟମାନେ ଯୋଗ୍ୟତା ଲାଭକଲେ ସେ ନୀତିର ସ୍ୱତଃ ପରିବର୍ତ୍ତନ ଅପରିହାର୍ଯ୍ୟ ହେବ । ତାହା ସମସ୍ତ ଓ ଉଦ୍ୟମ-ସାପେକ୍ଷ । ପ୍ରଥମ ପକ୍ଷର କଥା ଟିକିଏ ସ୍ପଷ୍ଟରୂପେ କହିବା ଆବଶ୍ୟକ । ଶସ୍ୟକର୍ତ୍ତା ଯଦି ଶସ୍ୟକ୍ଷେତ୍ରରୁ ନିଜର ଶସ୍ୟ ସଂଗ୍ରହ କରି ଗୋଲାଘରେ ସଞ୍ଚୟ କରେ ଓ କ୍ଷେତ୍ରର ମୂଷିକ-ମାନେ କହନ୍ତି—'ଏ ଲୋକଟା ଆମ୍ଭମାନଙ୍କ ସହିତ ଶତ୍ରୁତା କରି ଆମ୍ଭମାନଙ୍କ ଆହାରରେ ବ୍ୟାଘାତ ଜନ୍ମାଇବା ନିମନ୍ତେ ଗୋଲାଘର ନିର୍ମାଣ କରିଅଛି, ଏ ପ୍ରାଣିହତ୍ୟା ଅପରାଧରେ ଅପରାଧୀ, ଏହାର ଦଣ୍ଡବିଧାନ ହେଉ, ତେବେ ପ୍ରତିପକ୍ଷର କି ପ୍ରତିକାର ପ୍ରାପ୍ୟ ଏବଂ କି ଉପାୟ ଅବଲମ୍ବନୀୟ ତାହା ଅନୁମାନ କରନ୍ତୁ । ବୈଦେଶିକ ସଂପ୍ରଦାୟବିଶେଷ ମଧୁବାବୁଙ୍କର ପ୍ରତିକୂଳ ହେବା ଅସଙ୍ଗତ ହେଲେହେଁ ଅସ୍ୱାଭାବିକ ନୁହେଁ; କିନ୍ତୁ 'ପ୍ରଜାବନ୍ଧୁ'ର ପତ୍ରଲେଖକଙ୍କ ଶ୍ରେଣୀର ଲୋକ ମଧୁବାବୁଙ୍କ ସହିତ ବିରୋଧ କରିବାର ଉଦ୍ଦେଶ୍ୟ କି ? ବଡ଼ ଆକ୍ଷେପର କଥା, ଲୋକେ ମଧୁବାବୁ ଏବଂ ସମ୍ମିଳନୀ ଏ ଉଭୟର ପାର୍ଥକ୍ୟ ନ ଦେଖି ମଧୁବାବୁଙ୍କ ସହିତ ଶତ୍ରୁତା କଲେ ସମ୍ମିଳନୀ ସହିତ ମଧ୍ୟ ଶତ୍ରୁତା କରନ୍ତି, ଯେପରି କି ସମ୍ମିଳନୀ ମଧୁବାବୁଙ୍କର ଏବଂ ତାହିଁର ଉପସ୍ଥିତିରୁ ମଧୁବାବୁଙ୍କର ସପ୍ତପୁତ୍ର ଓ ସପ୍ତଦଶ ପ୍ରପୌତ୍ର ପ୍ରତିପାଳିତ ହେବେ । ଯେଉଁ ଦେଶରେ ଏରୂପ ସ୍ୱଦେଶ-ବିରୋଧୀ, ସ୍ୱଜାତି ଦ୍ରୋହୀ ଲୋକମାନଙ୍କର ପ୍ରାଧାନ୍ୟପାଇଁ ଚେଷ୍ଟା ସେ ଦେଶର ଏ ଦୁର୍ଦ୍ଦଶା କାହିଁକି ଏହା କି ବୁଝାଇବାକୁ ହେବ ? ମଧୁବାବୁ ଦେଶର କି ଉପକାର କରିଅଛନ୍ତି ବା ଅପକାର କରିଅଛନ୍ତି, ଯେଉଁମାନେ ଦେଶର ଆଭ୍ୟନ୍ତରିକ ଅବସ୍ଥା ଜାଣନ୍ତି, ସେମାନେ ତାହା ଜାଣନ୍ତେ । କୌଣସି ପକ୍ଷର ପ୍ରଶଂସା ବା ପକ୍ଷାନ୍ତର ନିନ୍ଦା ଏହି ପତ୍ରର ଉଦ୍ଦେଶ୍ୟ ନୁହେଁ । ମଧୁବାବୁ ନିଜର ପ୍ରଶଂସା ଶୁଣିବାକୁ ଯେପରି ଅନିଚ୍ଛୁକ କିଏ, ତାଙ୍କର କି ଗ୍ଲାନିକଲି ତାହା ଶୁଣିବାକୁ ତଦପେକ୍ଷା ଅଧିକ ଅନିଚ୍ଛୁକ । ଯେ ତାଙ୍କୁ ଜାଣେ, ସେ ଏହା ବେଶ୍ ଜାଣେ । ଆସ୍ତୁ, ସ୍ୱୀକାର କରନ୍ତୁ, ମଧୁବାବୁ ଦେଶର କିଛି କରିନାହାନ୍ତି, ଯାହା କରିଅଛନ୍ତି ତାହା କିଛି ନୁହେଁ । ଯଦି ଭଗବାନଙ୍କ କୃପାରୁ ଆଜି ପାଞ୍ଚଜଣ ଲୋକ ଅର୍ଥ ଓ ଶ୍ରମ ବ୍ୟୟକରି ତଦପେକ୍ଷା ଭଲକାର୍ଯ୍ୟ କରିବେ ଏବଂ ଦେଶର ମଙ୍ଗଳ ସାଧନ କରିବେ, ତେବେ 'ପ୍ରଜାବନ୍ଧୁ'ର ଉଦାରସ୍ୱଭାବ ଏବଂ ସ୍ୱଦେଶପ୍ରେମିକ ପତ୍ରପ୍ରେରକଙ୍କ ଅପେକ୍ଷା ମଧୁବାବୁ ସହସ୍ରଗୁଣ ଆନନ୍ଦିତ ହେବେ । ବୃଥା ବାକ୍ୟାଡ଼ମ୍ବର ନିଷ୍ପ୍ରୟୋଜନ, କାର୍ଯ୍ୟ ବାଞ୍ଛନୀୟ । ସେଦିନ ରାଜପ୍ରତିନିଧି ଲର୍ଡ କର୍ଜନ କହିଛନ୍ତି "The man who in his village or in his town devotes himself to the

interest of his fellow countrymen, and by example and by effort improves their lot, is a greater benefactor than the hero of a hundred platforms." ଏହାର ମର୍ମ ହେଲା— "ଯେଉଁ ଲୋକ ନିଜ ଗ୍ରାମରେ କିମ୍ବା ନିଜ ସହରରେ ଲୋକଙ୍କ ସ୍ୱାର୍ଥହିତରେ ନିଜକୁ ନିୟୋଜିତ କରେ ଏବଂ ଆଦର୍ଶ ଓ ଉଦ୍ୟମଦ୍ୱାରା ସେମାନଙ୍କର ଅବସ୍ଥାର ଉନ୍ନତି ସାଧନ କରେ, ସେ ଶତ ସଭାର ବକ୍ତା ଅପେକ୍ଷା ବେଶି ମଙ୍ଗଳକାରୀ ।" (ଜଣେ ହିତାଭିଳାଷୀ)

ଏହିପରି ଅଯଥା ସମାଲୋଚନାରେ ବ୍ୟଥିତ ହୋଇ ମଧୁବାବୁ ଉତ୍କଳ ସମ୍ମିଳନୀର ସମ୍ପାଦକ ପଦରୁ ଇସ୍ତଫା ପ୍ରଦାନ କରିଥିଲେ । ଏହି ଇସ୍ତଫାର ବିଚାର ପାଇଁ ସମ୍ମିଳନୀର କାର୍ଯ୍ୟକାରୀ କମିଟିର ଏକ ଅଧିବେଶନ ୧୯୦୫ ମଇ ମାସ ୨୧ ତାରିଖ ରବିବାର ଦିନ କଟକରେ ବସିଥିଲା । ମଧୁବାବୁ ଇସ୍ତଫା ପତ୍ରରେ ଲେଖିଥିଲେ ଯେ କେତେକ ସଭ୍ୟ ପରୋକ୍ଷରେ ତାଙ୍କର ନିନ୍ଦା ରଚନା କରିବାର ଶୁଣି ଦୁଃଖିତ ହୋଇ ସମ୍ପାଦକ ପଦ ତ୍ୟାଗ କରିବା ସ୍ଥିର କରିଥିଲେ ।

ଉତ୍କଳ ସମ୍ମିଳନୀ କାର୍ଯ୍ୟନିର୍ବାହକ କମିଟିର ଏହି ଅଧିବେଶନକୁ ଗଞ୍ଜାମରୁ 'ପ୍ରଜାବନ୍ଧୁ'ର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଓ ଗଞ୍ଜାମର ବିଶିଷ୍ଟ ଓକିଲ ପରଶୁରାମ ପାତ୍ର (ଆନେପୁ ପରଶୁରାମ ପାତ୍ର, ବ୍ରହ୍ମପୁର । ପରେ 'ସାର୍' ପଦବୀ ପାଇଥିଲେ ଓ ମାନ୍ଦ୍ରାଜର ମନ୍ତ୍ରୀ ହୋଇଥିଲେ) ଆସିଥିଲେ । ପ୍ରାୟ ୨୫ ଜଣ ସଭ୍ୟ ଉପସ୍ଥିତ ଥିଲେ । ମଧୁବାବୁଙ୍କ ସମ୍ପାଦକପଦରୁ ଇସ୍ତଫା ପ୍ରଦାନ ବିଚାର୍ଯ୍ୟ ବିଷୟ ଥିଲା । ନୀଳମଣି ବିଦ୍ୟାରତ୍ନ କହିଲେ ଯେ ସେ ସମ୍ପାଦକର କର୍ତ୍ତବ୍ୟାନୁରୋଧରେ 'ପ୍ରଜାବନ୍ଧୁ'ରେ କଟକର ଜଣେ ପତ୍ରପ୍ରେରକଙ୍କ ପତ୍ର ପ୍ରକାଶ କରିଛନ୍ତି ସିନା ମଧୁବାବୁଙ୍କ ପ୍ରତି ତାଙ୍କର ଅବିଶ୍ୱାସ କିମ୍ବା ଘୃଣା ଭଳି ହେଲେ ନାହିଁ ; ବରଂ ଯେତେଗୁଡ଼ିଏ ପତ୍ର ତାଙ୍କଠାକୁ ଆସିଥିଲା, ସେ ସବୁ ମଧୁବାବୁଙ୍କୁ ଦେଖାଇଛନ୍ତି । କମିଟି ଏକ ମତରେ ଇସ୍ତଫା ପତ୍ରକୁ ଫେରାଇ ନେଇ ପୂର୍ବବତ୍ ସମ୍ପାଦକ ହିସାବରେ କାର୍ଯ୍ୟ କରିବାପାଇଁ ମଧୁବାବୁଙ୍କୁ ଏକସ୍ୱରରେ ଅନୁରୋଧ କରି ପ୍ରସ୍ତାବ ଧାର୍ଯ୍ୟ କଲେ ।

ପ୍ରସ୍ତାବଟି ଏହିପରି—"ମଧୁବାବୁ ସମ୍ମିଳନୀର ପ୍ରାଣସ୍ୱରୂପ । ତାଙ୍କର ଅହରହ ପ୍ରଗାଢ଼ ଯତ୍ନ, ଅଧ୍ୟବସାୟ ଓ ପରିଶ୍ରମରେ ସମ୍ମିଳନୀର କାର୍ଯ୍ୟ ଅଗ୍ରସର ହେଉଅଛି ଏବଂ କମିଟି ମଧ୍ୟରେ ଆଉ ଜଣେ ଏମନ୍ତ କେହି ନାହିଁ ଯେ ବର୍ତ୍ତମାନ ସେହି ଗୁରୁଭାର ଗ୍ରହଣ କରିପାରେ । କେହି କେହି ସଭ୍ୟ ତାଙ୍କର ନିନ୍ଦା କରିବାର ଶୁଣି କମିଟି ଅତ୍ୟନ୍ତ ଦୁଃଖିତ ହେଉଛନ୍ତି ; ମାତ୍ର ଯେ ସ୍ଥଳେ କମିଟିର ତାହାଙ୍କ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ ଓ ସନ୍ତୋଷ ଅଛି ଏବଂ ସେ ଯେପରି କାର୍ଯ୍ୟ ଚଳାଉଅଛନ୍ତି ଅନ୍ୟ ଲୋକଙ୍କୁ ତହିଁ ପାଇଁ ଯୋଗ୍ୟ କରିବାକୁ ସେ ନିଜେ ଚେଷ୍ଟା କରୁଅଛନ୍ତି, ମାତ୍ର ଏପର୍ଯ୍ୟନ୍ତ ସଫଳ ହୋଇନାହାନ୍ତି, ସେ ସ୍ଥଳେ

କମିଟି ତାହାଙ୍କୁ ଗୁଣ୍ଡ଼ ନପାରନ୍ତି । ଅତଏବ ପଦତ୍ୟାଗପତ୍ର ପ୍ରତ୍ୟାହାର କରିବାକୁ କମିଟି ଅନୁରୋଧ କରୁଅଛନ୍ତି ।"

ସର୍ବସମ୍ମତିକ୍ରମେ ଗୃହୀତ ପ୍ରସ୍ତାବ ଓ ପ୍ରାୟ ସମସ୍ତଙ୍କର ସଦିଚ୍ଛା ଓ ବିଶ୍ୱାସ ପ୍ରକାଶ ଦେଖି ମଧୁବାବୁ ପଦତ୍ୟାଗପତ୍ର ପ୍ରତ୍ୟାହାର କରିନେଲେ । ଏଥିରେ ସମସ୍ତେ ଆଶ୍ୱସ୍ତ ହେଲେ । ଏହି ସମ୍ବନ୍ଧରେ ମଧୁବାବୁ ସଭ୍ୟମାନଙ୍କର କର୍ତ୍ତବ୍ୟ ଓ ଅଧିକାର ସମ୍ବନ୍ଧରେ କେତେକ ସୂଚନା ଦେଇଥିଲେ । ସେ କହିଥିଲେ—"କମିଟିର ସମସ୍ତେ ବୁଦ୍ଧିମାନ । କମିଟିର କେହି କର୍ମକର୍ତ୍ତାଙ୍କର ବିରୁଦ୍ଧରେ କିଛି ଆପତ୍ତି ଉଠିଲେ ସଭାରେ ତାହା ପ୍ରକାଶ କରିବା ଉଚିତ । ଏହା ସମସ୍ତଙ୍କୁ ଗୋଚର କରାଇବା ଉଚିତ । ଅଧିକାଂଶ ମତରେ ଯାହା ଧାର୍ଯ୍ୟ ହେବ, ତାହା ନିଜମତରେ ବିରୁଦ୍ଧ ହେଲେ ମଧ୍ୟ ଭକ୍ତି ଭାବରେ ତାହାକୁ ଗ୍ରହଣ କରିବା ଏକାନ୍ତ କର୍ତ୍ତବ୍ୟ । ତହିଁର ଅନ୍ୟଥା ହେଲେ, କୌଣସି ସଭାଦ୍ୱାରା କିଛି ଉପକାର ହୋଇ ନପାରେ । ସଭାସମ୍ବନ୍ଧୀୟ କୌଣସି ବିଷୟ ଜାଣିବାକୁ ହେଲେ, ସମ୍ପାଦକଙ୍କଠାରୁ ବୁଝିବାର ସଭ୍ୟମାନଙ୍କର ସମ୍ପୂର୍ଣ୍ଣ ଅଧିକାର ଅଛି ଏବଂ କେହି କିଛି ଅନୁସନ୍ଧାନ କରି ଅକୃତକାର୍ଯ୍ୟ ହେବାର ସଭାରେ କେବେ ପ୍ରକାଶ ପାଇନାହିଁ ।" ଜଣେ ସଭ୍ୟ କହିଲେ, "ଏହି ସଦୁପାୟ ଗୁଣ୍ଡ଼ ଯେଉଁମାନେ ଦାଣ୍ଡରେ ନିନ୍ଦା ଗାଇ ବୁଲନ୍ତି କିମ୍ବା ସମ୍ବାଦପତ୍ରଯୋଗେ ତାହା ରଚନା କରନ୍ତି, ସେମାନେ ସଭ୍ୟତା ଶିଖି ନାହାନ୍ତି ବୋଲିବାକୁ ହେବ । କେହି କେବେ 'ପ୍ରଜାବନ୍ଧୁ' ଅତର୍କିତଭାବେ ସେମାନଙ୍କର କଥାକୁ ସମ୍ପାଦକୀୟ ସ୍ତମ୍ଭରେ ସ୍ଥାନ ଦେବା ଦ୍ୱାରା ଅଯଥା ପ୍ରଶ୍ରୟ ଦେଇଛନ୍ତି ।"

ଏହି ବିଷୟର ଏପରି ଅବସାନ ହେବାପରେ ସେହି ବର୍ଷ (୧୯୦୫) ଅଗଷ୍ଟ ମାସରେ ପୁରୀ ଶାଖା ସମିତିର ତୃତୀୟ ଅଧିବେଶନ ବସିଥିଲା । 'ଓଡ଼ିଆ ଓ ନବସମ୍ବାଦ' ପତ୍ରିକାରେ ଏହି ଅଧିବେଶନ ସମ୍ବନ୍ଧରେ ଆଲୋଚିତ ହୋଇଥିଲା । ଏହି ପ୍ରସଙ୍ଗରେ 'ସମିତି' ଓ 'ସମ୍ମିଳନୀର' ସୃଷ୍ଟିକର୍ତ୍ତା ମଧୁସୂଦନ ଦାସଙ୍କ ବିରୁଦ୍ଧରେ କେତେକ କଟୁ ମନ୍ତବ୍ୟ ପ୍ରକାଶ ପାଇଥିଲା । ଏଥିରେ ବ୍ୟଥିତ ହୋଇ 'ଉତ୍କଳ ଦୀପିକା'ରେ 'ଶ୍ରୀ ଜ୍ଞାନାଞ୍ଜନ ଶଳାକା' ଗାଙ୍ଗପୁରଠାରୁ ୧୩।୮।୧୯୦୦ରେ ଯେଉଁ ପତ୍ର ପଠାଇଥିଲେ, ତାହା ଅଗଷ୍ଟ ୧୯ ତାରିଖରେ ପ୍ରକାଶିତ ହୋଇଥିଲା ।

ପତ୍ରଟି ଏହିପରି—"ମହାଶୟ, ଗତ — ତାରିଖ ଅଗଷ୍ଟ ସଂଖ୍ୟା ୩୧ରେ 'ଓଡ଼ିଆ ଓ ନବ ସମ୍ବାଦରେ ପୁରୀର ସମ୍ବାଦଦାତାଙ୍କ ପତ୍ର ପୁରୀ ଶାଖା ସମିତିର ତୃତୀୟ ଅଧିବେଶନ ସମ୍ବନ୍ଧରେ ଆଲୋଚନା କରୁ କରୁ ସମିତିର ସୃଷ୍ଟିକର୍ତ୍ତା ମଧୁସୂଦନଙ୍କୁ ବେଶ୍ ଖଣ୍ଡେ ସାର୍ଟି-ଫିକେଟ ଦେଇ ଲେଖି ଅଛନ୍ତି—ସମିତି ସୃଷ୍ଟିକର୍ତ୍ତା ମଧୁସୂଦନ ସମିତିର କାର୍ଯ୍ୟ ମଧ୍ୟରେ ଭଣ୍ଡାରିର କାର୍ଯ୍ୟଭାର—ଲଣ୍ଠନ ଦେଖାଇବା—ଗ୍ରହଣ କରିଥିଲେ । ବର୍ତ୍ତମାନ ଯେପରି ଅନୁମାନ କରାଯାଏ, ସେଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ତାଙ୍କ ଲଣ୍ଠନରୁ ତେଲ ଓ

ବଢ ଶେଷ ପ୍ରାୟ ହେଲଣି, କନ୍ତୁ ଏ ପର୍ଯ୍ୟନ୍ତ ବାଟ କେହ୍ନ ଚହ୍ଳି ଲେ ନାହିଁ । ଲଣ୍ଠନର କଛ ଦୋଷ ନାହିଁ ତ ? ଇତ୍ୟାଦ ଇତ୍ୟାଦ ।

"ଉପରୋକ୍ତ ଶମାର୍କରୁ ଦେଖାଯାଏ ସମ୍ପାଦଦାତା ମହାଶୟ ଗୁଳ ନ ଜାଣି ବାଟର ଦୋଷ ଦେଉଅଛନ୍ତ । ସମିତ ଏକା ମଧୁବାବୁଙ୍କର ନୁହେଁ, ଏହା ସମସ୍ତ ଜାତର ଅଟେ । ମଧୁବାବୁ ଲଣ୍ଠନ ଦେଖାଇ ଅଛନ୍ତ ସତ, ତେବେ ଯଦ ସମ୍ପାଦଦାତା ମହାଶୟଙ୍କ ପର ସଦସ୍ୟମାନଙ୍କୁ ଅନ୍ଧାରକଣା ହୋଇଥାଏ, ସେ ହେତୁ ବାଟ ଦେଖି ଚହ୍ଳି ନ ପାରନ୍ତ, ତା' ହେଲେ କ ପଥ ପ୍ରଦର୍ଶକର ବା ଲଣ୍ଠନର ଦୋଷ ହେଲ ? ବ୍ୟକ୍ତ ସମଷ୍ଟିର ଉଦ୍‌ଯୋଗରେ ସମିତର ଉଦ୍ଦେଶ୍ୟ ଫଳବତୀ ବା ଅନ୍ୟଥା ହେବା ନର୍ଭର କରେ । ଯଦତ 'ଭଣ୍ଡାର'ର ପ୍ରଦର୍ଶିତ ଆଲୋକର ଅନୁଗମନ ନକର ସ୍ୱଇଚ୍ଛାରେ ଅନ୍ଧାରରେ ବାଟ ଅଣ୍ଡାଳ ହେବାକୁ ଇଚ୍ଛା କରନ୍ତ, ତେବେ କ ବାଟ ଜଣାହେବ ? ଆମ୍ଭମାନଙ୍କର ଯେତେଦୂର ବଶ୍ୱାସ 'ଲଣ୍ଠନରୁ' ବଢ ବା ତେଲ ସରବାର ନୁହେଁ ଓ ତାହା ଈଶ୍ୱରଙ୍କ କୃପାରୁ 'ଅନ୍ଧାରଆ-ମାନଙ୍କୁ ବାଟ ଦେଖାଇବା' ପାଇଁ ପ୍ରଚୁର ଅଟେ । ସମିତର କାର୍ଯ୍ୟ ଅନାସ୍ଥାସରେ ସାଧାରଣ ଆଲୋଚନା କରପାରନ୍ତ; କନ୍ତୁ ବ୍ୟକ୍ତଗତ ନନ୍ଦା କରବା କେବଳ କୁରୁଚ ଓ ଈର୍ଷାଭାବ ପରଚ୍ୟୟକ ଅଟେ । ସମ୍ପାଦଦାତା ମହାଶୟଙ୍କ ଗୁରୁତ୍ୱ ତାଙ୍କ ମନ୍ତବ୍ୟରୁ ସ୍ପଷ୍ଟ ପ୍ରକାଶ ପାଉଅଛ ଯେ ସେ ଜଣେ ଦାୟିତ୍ୱଜ୍ଞାନଶୂନ୍ୟ ଦେଖଣାହାରୀ ଅଟନ୍ତ । ମଧୁବାବୁ ସମିତ ନମନ୍ତେ ଯାହା କରଅଛନ୍ତ, ତାହା କାହାରକୁ ଅବଦତ ନାହିଁ; କନ୍ତୁ ସମ୍ପାଦଦାତା ମହାଶୟ ଦୃଢ଼ଭାବରେ କହ୍ନପାରବେ କ, ସେ ଏପର୍ଯ୍ୟନ୍ତ ନୂଖୁର ସଲତାଟିର ସ୍ୱାର୍ଥ ତ୍ୟାଗ କରଅଛନ୍ତ ? କହ ବୁଲବା ଅପେକ୍ଷା କର ଦେଖାଇବା ମାତ ସବଜନ ଅନୁମୋଦତ । ସମିତର ଉଦ୍ଦେଶ୍ୟ ଯେତେବେଳେ 'ଜାତ'ର କାର୍ଯ୍ୟ ଅଟେ ଓ ଯଦ ସମ୍ପାଦଦାତା ମହାଶୟ କମ୍ବା ଅନ୍ୟ କେହ୍ନ ଆଶଙ୍କା କରନ୍ତ ଯେ ମଧୁବାବୁଙ୍କର ଲଣ୍ଠନରୁ ବଢ ବା ତେଲ ଶେଷ ପ୍ରାୟ, ତାହାହେଲେ ଉକ୍ତ ମହାତ୍ମାମାନେ କାହିଁକ କାର୍ଯ୍ୟକ୍ଷେତ୍ରରେ ଉତ୍ତୀର୍ଣ୍ଣ ହୋଇନାହାନ୍ତ ? କଲଯୁଗରେ ସ୍ୱାର୍ଥତ୍ୟାଗର ପୁରସ୍କାର କ ତରସ୍କାର ଅଟେ !! ସମ୍ପାଦଦାତା ମହାଶୟ ପାରଦ୍ଧା ପୋକତୁଲ୍ୟ ଜାତୀୟ ସଂସାର ନନ୍ଦନକାନନରେ ସୁଷମାପୂର୍ଣ୍ଣ କୁସୁମକୁଞ୍ଜରେ ଗୁଞ୍ଜର ନଃସ୍ୱନରେ ମଧୁ ସଂଗ୍ରହ କରବା ପାଇଁ ଅହରହ ଉଡ଼ି ବୁଲୁଥିବାରେ ବ୍ୟସ୍ତ । ଜଣେ ଦେଶହତୈଷୀ ନଃସ୍ୱାର୍ଥପର ଭଦ୍ରବ୍ୟକ୍ତଙ୍କର ଗ୍ଲାନ ରଟନାରେ ମନରେ କଷ୍ଟ ହେବାରୁ ଅଦ୍ୟ ଉପରୋକ୍ତ କେତୋଟି କଥା ଲେଖିବାକୁ ବାଧ୍ୟ ହେଲ । ଆଶାକରେ 'ସମ୍ପାଦଦାତା' ମହାଶୟ ଓ ପାଠକବର୍ଗ ମୋର ଧୃଷ୍ଟତା କ୍ଷମା କରବେ । ବାଟବଣା ହୋଇ ସମ୍ପାଦଦାତା ମହାଶୟ ଆଉ ବଲବଲେଇବେ ନାହିଁ । ଇତ । ବଶମ୍ବଦ । ଶ୍ରୀ ଜ୍ଞାନାଞ୍ଜନ ଶଳାକା, ଗାଙ୍ଗାପୁର, ୧୩।୮।୧୯୦୫ ।

ପ୍ରକୃତରେ କହବାକୁ ଗଲେ, ପ୍ରାରମ୍ଭିକ ଅବସ୍ଥାରେ ମଧୁବାବୁଙ୍କୁ ସମ୍ମିଳନୀର ପ୍ରତଷ୍ଠା ଓ ସମ୍ପାଦକ ହସାବରେ ବେଶି ପରଶ୍ରମ କରବାକୁ ପଡ଼ୁଥିଲ । ଉପଯୁକ୍ତ କର୍ମୀଙ୍କ ସଂଖ୍ୟା

ଯଥେଷ୍ଟ ନଥିବାରୁ ସମ୍ମିଳନୀର ବିବିଧ ଲକ୍ଷ୍ୟ ସନ୍ତୋଷଜନକ ଭାବେ କାର୍ଯ୍ୟରେ ପରିଣତ ହୋଇ ପାରୁନଥିଲା । ଅର୍ଥର ଅଭାବ ଅନ୍ୟ ଏକ ପ୍ରଧାନ କାରଣ ଥିଲା । ମଧୁବାବୁ ସ୍ୱହସ୍ତରୁ ପ୍ରଚୁର ଅର୍ଥ ବ୍ୟୟ କରୁଥିଲେ । ସମ୍ମିଳନୀର ପାଣ୍ଠି ବୃଦ୍ଧି ପାଇଁ ଚାନ୍ଦା ଆଦାୟର ବ୍ୟବସ୍ଥା ଥିଲେ ମଧ୍ୟ ଉପଯୁକ୍ତ ପରିମାଣରେ ଚାନ୍ଦା ଆଦାୟ ହୋଇପାରୁନଥିଲା । ଏହି କାରଣରୁ ଉପଯୁକ୍ତ ସଂଖ୍ୟାରେ ପ୍ରଚାରକ ମଧ୍ୟ ନିଯୁକ୍ତ ହୋଇପାରୁନଥିଲେ । ଏଗୁଡ଼ିକ ସମ୍ମିଳନୀର କାର୍ଯ୍ୟର ମନ୍ଥର ଗତିର କେତେକ ପ୍ରଧାନ କାରଣ । 'କହି ବୁଲିବା ଅପେକ୍ଷା କରି ଦେଖାଇବା ନୀତି ଯଦି ସମାଲୋଚକମାନେ ଧରି ଥାଆନ୍ତେ, ତାହାହେଲେ ଏ ସମାଲୋଚନାର ଅବକାଶ ରହି ନଥାନ୍ତା । ସମାଲୋଚକମାନେ ଅନ୍ଧାରରେ ରହି ଢେଲା ଫୋପାଡ଼ୁଥିଲେ ସିନା, ସମ୍ମୁଖକୁ ଆସି କାର୍ଯ୍ୟଭାର ଗ୍ରହଣ କରୁ ନଥିଲେ । ଏହା ମଧ୍ୟ ମଧୁବାବୁଙ୍କ ବିରକ୍ତିର ଏକ କାରଣ । 'ସବୁ ମଧୁବାବୁ କରିବେ'—ସମାଲୋଚକମାନଙ୍କର ଏହି ମନୋଭାବ ସମ୍ମିଳନୀର କାର୍ଯ୍ୟରେ ବହୁତ ବ୍ୟାଘାତ ଘଟାଉଥିଲା । ବ୍ୟକ୍ତିଗତ କୁତ୍ସା ରଟନା ଏଥିରୁ ହିଁ ଉଦ୍‌ଭବ ହୋଇଥିଲା ।

## (ଖ) ବିବିଧ କାର୍ଯ୍ୟାବଳୀ

**ନାରୀଶିକ୍ଷାର ପ୍ରସାର ସମ୍ବନ୍ଧେ ବକ୍ତୃତା :** ୧୯୦୫ ଜାନୁଆରି ୭ ତାରିଖରେ ଉତ୍କଳ ଯୁବ ସମିତି ଆନୁକୂଲ୍ୟରେ ଅନୁଷ୍ଠିତ ଏକ ସଭାରେ ମଧୁବାବୁ 'ଉତ୍କଳରେ ନାରୀଶିକ୍ଷାର ପ୍ରସାର' ସମ୍ବନ୍ଧରେ ଏକ ବକ୍ତୃତା ଦେଇଥିଲେ । ଏହି ବର୍ଷ ସ୍କୁଲ ଇନ୍‌ସପେକ୍ଟରଙ୍କୁ ନାରୀଶିକ୍ଷା ସମ୍ବନ୍ଧରେ ଏକ ଯୋଜନା ମଧ୍ୟ ଦେଇଥିଲେ ।

**ଉତ୍କଳ ଯୁବକ ସମିତି ଛାତ୍ରାବାସ :** ସେହି ବର୍ଷ ଉତ୍କଳ ଯୁବକ ସମିତିର ଛାତ୍ରସଭ୍ୟମାନଙ୍କର ସୁବିଧା ନିମନ୍ତେ ମଧୁବାବୁ ନିଜ ବ୍ୟୟରେ ନିଜ ବାସଭବନ ହତା ଭିତରେ ଏକ ଛାତ୍ରାବାସ ସ୍ଥାପନ କରିଥିଲେ । କେତେକ ଛାତ୍ରଙ୍କର ସମସ୍ତ ଖର୍ଚ୍ଚ ମଧୁବାବୁ ନିଜେ ବହନ କରିଥିଲେ ।

**ସାଂସ୍କୃତିକ ବ୍ୟାପାର ଚର୍ଚ୍ଚା :** ବର୍ଷର ପ୍ରଥମ ପାଦରେ କଟକ ଭିକ୍ଟୋରିଆ ସ୍କୁଲରେ ସ୍ଥାପିତ ସାରସ୍ୱତ ସମିତିରେ ରାଧାନାଥ ରାୟ, ମଧୁସୂଦନ ରାଓଙ୍କ ସହ ମଧୁବାବୁ ସାଂସ୍କୃତିକ ବ୍ୟାପାର ଚର୍ଚ୍ଚା କରୁଥିଲେ ।

**ତାଳଗୁଡ଼ ସଂସ୍ଥା :** ମଧୁବାବୁ କଟକ ଜିଲ୍ଲାର ସାଲେପୁରରେ କାରିଗରମାନଙ୍କୁ ସଂଗଠିତ କରି ଏକ ତାଳଗୁଡ଼ ସଂସ୍ଥା ପ୍ରତିଷ୍ଠା କରିଥିଲେ ।

**କଟକରେ ଇଞ୍ଜିନିୟରିଂ ସ୍କୁଲର ସ୍ଥାନ ନିରୂପଣ :** ଖ୍ରୀ: ୧୯୦୫ରେ ବଙ୍ଗ ପ୍ରଦେଶର ଶିକ୍ଷାବିଭାଗର ଡିରେକ୍ଟର ସାର୍ ଆଲେକ୍‌ଜାଣ୍ଡର୍ ପେଡ଼ଲର୍

(**Sir Alexander Peddler**) ଓଡ଼ିଶା ପରିଦର୍ଶନରେ ଆସିଥିଲେ । ମଧୁବାବୁ ତାଙ୍କ ସହିତ ଯାଇ କଟକରେ ଇଞ୍ଜିନିୟରିଂ ସ୍କୁଲର ସ୍ଥାନ ନିରୂପଣ କରିବାରେ ସାହାଯ୍ୟ କରିଥିଲେ ।

**'ଷ୍ଟାର୍ ଅଫ୍ ଉତ୍କଳ'ର ପ୍ରତିଷ୍ଠା** : ଏହି ବର୍ଷ ମଧୁବାବୁଙ୍କ ପୃଷ୍ଠ-ପୋଷକତାରେ ଓ ଶ୍ରୀ କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀଙ୍କ ସମ୍ପାଦନାରେ କଟକରୁ ଏକ ଇଂରେଜୀ ସାପ୍ତାହିକ 'ଦି ଷ୍ଟାର୍ ଅଫ୍ ଉତ୍କଳ' (The Star of Utkal) ପ୍ରକାଶ ପାଇଥିଲା ।

**ନିଜ ଶିଳ୍ପାଗାରରେ ଲୁଗାବୁଣା ବ୍ୟବସ୍ଥା** : ଖ୍ରୀ: ୧୯୦୫ ଡିସେମ୍ବର ମାସରେ ମଧୁବାବୁ କଟକସ୍ଥ ନିଜ ବାସଭବନରେ ସ୍ଥାପିତ 'ଓଡ଼ିଶା ଶିଳ୍ପାଗାର ଓ ଓଡ଼ିଶା ଆର୍ଟ ଓ୍ୱାର୍କ୍ସ'ରେ ଲୁଗାବୁଣା ବ୍ୟବସ୍ଥା କରିଥିଲେ । ଏଥିନିମନ୍ତେ ତନ୍ତ୍ର ଯନ୍ତ୍ର (ଫଟଲୁ) ଅଣାଇଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳର ତନ୍ତୀମାନେ ଏଠାକୁ ଆସି ଶିକ୍ଷା ପାଉଥିଲେ ।

**ଭାରତୀୟ ଖ୍ରୀଷ୍ଟିଆନ ବିବାହ ଆଇନ୍ ସମ୍ପର୍କରେ ମଧୁବାବୁ** : ଖ୍ରୀ: ୧୯୦୫ରେ ଭାରତୀୟ ଖ୍ରୀଷ୍ଟିଆନ୍ ବିବାହ ଆଇନ୍ ସମ୍ବନ୍ଧରେ ମଧୁସୂଦନ ଭାଇସ୍‌ରାୟଙ୍କ ପାଖକୁ ଏକ ଆବେଦନ ପତ୍ର ପଠାଇଥିଲେ । ଭାଇସ୍‌ରାୟଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ମଧୁବାବୁଙ୍କୁ ଉତ୍ତର ଦେଇ ଲେଖିଥିଲେ, "ଭାରତୀୟ ଖ୍ରୀଷ୍ଟିଆନ୍ ବିବାହ ଆଇନ୍ ସଂଶୋଧନ ବିଷୟରେ ଅନୁସନ୍ଧାନ କରିବ ।" କଲିକତାର ଭାରତୀୟ ଖ୍ରୀଷ୍ଟିଆନ୍ ସଂଘ (The Indian Christian Association, Calcutta) ସମ୍ବନ୍ଧରେ ମଧୁବାବୁଙ୍କୁ ପୁଣି ଲେଖିଥିଲେ, "ବର୍ତ୍ତମାନ ସଂଘର ସଭ୍ୟସଂଖ୍ୟା, ସଂଘର ଲକ୍ଷ୍ୟ, ନିୟମାବଳୀ ପ୍ରଭୃତି ମୋ'ଠାକୁ ପଠାଇଲେ ମୁଁ ଯାହା ପାରିବ ତାହା କରିବ ।"

ପରେ ବଙ୍ଗର ଲେଫ୍ଟେନାଣ୍ଟ ସାର୍ ଜେମ୍‌ସ ବୋର୍ଡିଲନ୍ (Sir Bourdillon) କଟକ ଆସୁଥିବା ଘୋଷିତ ହେବାରୁ କଟକର ଦେଶୀୟ ଖ୍ରୀଷ୍ଟିଆନ୍‌ମାନେ ତାଙ୍କୁ ଏକ ମାନପତ୍ର ଦେବାପାଇଁ ସ୍ଥିର କରି ସମୟର ବ୍ୟବସ୍ଥା କରିବାକୁ ଓଡ଼ିଶା କମିଶନରଙ୍କୁ ଅନୁରୋଧ କରିଥିଲେ । ସମୟର ସ୍ୱଳ୍ପତାଦୃଷ୍ଟିରେ ଏଥିପାଇଁ ଆଉ ସମୟର ବ୍ୟବସ୍ଥା କରିବା ସମ୍ଭବ ନୁହେଁ ବୋଲି କମିଶନର ଜଣାଇଦେଲେ । ମଧୁବାବୁ ଏହା ଶୁଣିବାମାତ୍ରେ ଲାଟଙ୍କଠାକୁ ଚିଠି ଲେଖି ସମୟର ବ୍ୟବସ୍ଥା କରିବାକୁ ଜଣାଇଲେ । ଲେଫ୍ଟେନାଣ୍ଟ ସାହେବ ଏଥିରେ ରାଜି ହୋଇଗଲେ । ମାନପତ୍ର ଲେଖାରେ ମଧୁବାବୁ ଯଥେଷ୍ଟ ସାହାଯ୍ୟ କରିଥିଲେ ।

**ପ୍ଲେଗ୍ ପ୍ରତିଷେଧ ବ୍ୟବସ୍ଥା** କଲିକତାଠାରୁ ଓଡ଼ିଶାକୁ ଆସୁଥିବା ରେଳରେ ସ୍ଥାନେ ସ୍ଥାନେ ସରକାରୀ ଡାକ୍ତରମାନେ ଯାତ୍ରୀମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା

କରୁଥିଲେ । ସେତେବେଳେ ବଙ୍ଗ ଅଞ୍ଚଳରେ ପ୍ଲେଗ୍‌ର ଆଶଙ୍କା ଥିଲା । ଓଡ଼ିଶାକୁ ଏଥିରୁ ମୁକ୍ତ ରଖିବା ପାଇଁ ଏହି ଡାକ୍ତରୀ ପରୀକ୍ଷାର ବ୍ୟବସ୍ଥା ହୋଇଥିଲା । କିଛି ଦିନ ପରେ ଏ ବ୍ୟବସ୍ଥା ସରକାର ଉଠାଇ ଦେଲେ । ମଧୁସୂଦନ ଏଥିରେ ଆପତ୍ତି କରିବାରୁ ବଙ୍ଗ ସରକାର ଏହି ବର୍ଷ (୧୯୦୫) ଖଡ଼ଗପୁରରେ ଯାତ୍ରୀମାନଙ୍କୁ ପରୀକ୍ଷା କରିବା ପାଇଁ ଦୁଇ ଜଣ ଡାକ୍ତରଙ୍କୁ ନିଯୁକ୍ତ କରିଥିଲେ ।

**ପୋଲିସ ବିଭାଗର ସଂସ୍କାର ଓ ଉନ୍ନତି ପାଇଁ ଦାବୀ (୧୯୦୪):** ପୋଲିସ୍ ବିଭାଗରେ କାମ କରୁଥିବା ସବୁ ଶ୍ରେଣୀର ଲୋକଙ୍କ ସର୍ବବିଧ ଉନ୍ନତି ପାଇଁ ମଧୁସୂଦନ ବଙ୍ଗ କାଉନ୍‌ସିଲ୍‌ରେ ଦାବୀ କରିଥିଲେ । ମଧୁସୂଦନ ଯେଉଁ ସବୁ ମନ୍ତବ୍ୟ ଦେଇଥିଲେ, ତାହାର ଉତ୍ତର ଦେଇ ଲଟ ସାହେବଙ୍କ କାଉନ୍‌ସିଲ୍‌ର ମେମ୍ବର ମେକ୍‌ଫରସନ୍ ସାହେବ କହିଥିଲେ— "ପୋଲିସ୍ ବିଭାଗରେ କାର୍ଯ୍ୟ କରୁଥିବାରୁ କର୍ମଚାରୀ ମାନଙ୍କର ଉନ୍ନତି ପାଇଁ ୪(ଚାରି)ଲକ୍ଷ ଟଙ୍କାର ବ୍ୟୟ ଅଟକଳ ହୋଇଥିବା ଏହି ଚାରି ଲକ୍ଷ ଟଙ୍କା ଭିତରୁ ବିଶେଷ ଭାଗ ସବ୍‌ଇନ୍‌ସପେକ୍‌ଟରମାନଙ୍କ ଉନ୍ନତି ପାଇଁ ରଖା-ଯାଉ ବୋଲି ଦାବୀ କରିଛନ୍ତି । ସବ୍‌ଇନ୍‌ସପେକ୍‌ଟର ଓ ଆସିଷ୍ଟାଣ୍ଟ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ମଧ୍ୟରେ ଥିବା ସମ୍ପର୍କର ଏକ କରୁଣ ଚିତ୍ର ସେ ଉପସ୍ଥାପିତ କରିଛନ୍ତି । ସେ ସ୍ୱ ଅଭିଜ୍ଞତାରୁ ଏହା କହୁଛନ୍ତି ବୋଲି ଦାବୀ କରୁଥିବାରୁ ମୁଁ ଏ ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରିପାରୁନାହିଁ; ନହେଲେ ବିଷୟଗୁଡ଼ିକ ସତ୍ୟ ବୋଲି ମୁଁ କେବେ ବିଶ୍ୱାସ କରି ପାରି ନଥାଆନ୍ତି ଓ ଏହା ତାଙ୍କର କପୋଳକଳ୍ପିତ ବୋଲି କହିଥାନ୍ତି । ସେ ଶୁଣି ଖୁସି ହେବେ ଯେ, ସରକାରଙ୍କ ଆଗରେ ବର୍ତ୍ତମାନ ଯେଉଁ ଉନ୍ନୟନ ଯୋଜନା ଉପସ୍ଥାପିତ ହୋଇଛି, ସେଥିର ଏକ ବିଶେଷତ୍ୱ ହେଉଛି ଯେ ସବ୍‌ଇନସପେକ୍‌ଟରମାନେ ବେଶି ଦରମା ପାଇବେ ଏବଂ ଯୌବନାବସ୍ଥାରେ ସେମାନେ ଅପେକ୍ଷାକୃତ ଭଲ ଶିକ୍ଷା ପାଇବେ । ମୁଁ ଏ ପ୍ରସଙ୍ଗରେ ଏତିକି ସୂଚନା ଦେଉଛି ଯେ ସେମାନେ ବର୍ତ୍ତମାନ ୫ ମାସ ଟ୍ରେନିଂ ପାଉଛନ୍ତି; ତାହା ଦଶ ମାସକୁ ବୃଦ୍ଧି କରାଯିବ । ଯଥାସମ୍ଭବ ସେମାନଙ୍କୁ ଉତ୍ତମ ଶିକ୍ଷା ଦିଆଯିବ ଏବଂ ଏହି ବର୍ଦ୍ଧିତ ସମୟ ଭିତରେ ସେମାନଙ୍କୁ ଉପଯୁକ୍ତ ବ୍ୟାବହାରିକ ଶିକ୍ଷା ( Practical Training ) ଦିଆଯିବ ।" ଏପରି ଶିକ୍ଷା ଦିଆଯାଉନଥିବା ମାନ୍ୟବର ସଭ୍ୟ (ମଧୁସୂଦନ) ଅଭିଯୋଗ କରି ଦୁଃଖ ପ୍ରକାଶ କରିଛନ୍ତି ।

ସବ୍‌ଇନ୍‌ସପେକ୍‌ଟରମାନଙ୍କୁ ଏକ୍‌ସାଇଜ୍ (ଅବକାରୀ) ବିଭାଗର ସବ୍‌ଇନ୍‌ସପେକ୍‌-ଟରମାନଙ୍କ ପରି ପୁରସ୍କାର ଦିଆଯିବା ଉଚିତ ବୋଲି ମଧୁସୂଦନ ଦାବୀ କରିଥିଲେ । ସରକାର ଏହାର ଯଥାର୍ଥତା ସମ୍ବନ୍ଧରେ ଏକମତ ହୋଇ ପ୍ରକାଶ କରିଥିଲେ ଯେ ୧୮୮୭-୮୮ରେ ୨୨୯୨ ଜଣ ଅଫିସର ଓ ପୋଲିସ୍ ପୁରସ୍କାର ପାଇଛନ୍ତି । ଏହି ସଂଖ୍ୟା କ୍ରମାଗତ ଭାବେ ବୃଦ୍ଧି ପାଇ ବର୍ତ୍ତମାନ ୨୭୪୨ ରେ ପହଞ୍ଚିଛି ଏବଂ ବର୍ଷକୁ ହାରାହାରି ପ୍ରାୟ ୨୦,୦୦୦ ଟଙ୍କା ଏ ବାବଦରେ ଖର୍ଚ୍ଚ ହେଉଛି ।

**ଓଡ଼ିଶା ଶିକ୍ଷାବିଭାଗରେ ଅଧିକ ବ୍ୟୟ ନିମନ୍ତେ ଦାବୀ :** ବଙ୍ଗ କାଉନସିଲ୍‌ରେ ବିଭିନ୍ନ ସମୟରେ ମଧୁସୂଦନ ଓଡ଼ିଶାରେ ଶିକ୍ଷା ବିଭାଗରେ ଯେତେ ଅର୍ଥ ବ୍ୟୟ ହେଉଛି, ତାହା ଅପେକ୍ଷା ଅଧିକ ବ୍ୟୟ କରିବା ନିମନ୍ତେ ସରକାରଙ୍କୁ ବାରମ୍ବାର ଅନୁରୋଧ କରିଥିଲେ । ଶିକ୍ଷାପାଣ୍ଠିରୁ ଓଡ଼ିଶା ତାର ନ୍ୟାଯ୍ୟ ଅଂଶ ପାଇବା ଉଚିତ ବୋଲି ।ସେ ଦାବୀ କରିଥିଲେ । ବିଶେଷତଃ କଟକର ରେଭେନ୍‌ସା କଲେଜ, ମୁସଲମାନ ଛାତ୍ରନିବାସ ଓ ଅନ୍ୟାନ୍ୟ ଶିକ୍ଷା ଅନୁଷ୍ଠାନ ନିମନ୍ତେ ଅଧିକ ଅର୍ଥ ଦାବୀ କରିଥିଲେ ସରକାରଙ୍କ ତରଫରୁ ମିଷ୍ଟର ମେକ୍‌ଫର୍‌ସନ ( Hon Hugh Macpherson ) ଏ ସମ୍ବନ୍ଧରେ ସରକାରଙ୍କ ମତ ବ୍ୟକ୍ତ କରିଥିଲେ । ସେତେବେଳେ ସେ ଲାଟ ସାହେବଙ୍କ ଶାସନ କାଉନ୍‌ସିଲ୍‌ର ସଭ୍ୟ ଥିଲେ । ଶିକ୍ଷାଫଣ୍ଡରୁ ଓଡ଼ିଶାର ଶିକ୍ଷା ଅନୁଷ୍ଠାନ ପାଇଁ ଅଧିକ ଅର୍ଥ ବ୍ୟବସ୍ଥା କରିବେ ବୋଲି ଲାଟ ପ୍ରତିଶ୍ରୁତି ଦେଇଥିଲେ । ମଧୁସୂଦନ କୃଷିର ଉନ୍ନତି ନିମନ୍ତେ ପାଠଶାଳା ସହିତ କୃଷିକ୍ଷେତ୍ର ରହିବା ଓ କୃଷିପାଠ୍ୟପୁସ୍ତକ ରଚିତ ହେବା ଉଚିତ ବୋଲି ଦାବୀ କରିଥିଲେ । ଶିଳ୍ପ ଶିକ୍ଷା ମଧ୍ୟ ତାଙ୍କ ଦୃଷ୍ଟିରୁ ବାଦ୍ ଯାଇନଥିଲା । ମଧୁବାବୁ କହିଥିଲେ ଯେ ବର୍ତ୍ତମାନ ଯେଉଁ ପ୍ରାଥମିକ ଶିକ୍ଷା ଦିଆଯାଉଛି, ତାହାଦ୍ୱାରା ପିଲାମାନଙ୍କ ମନରେ ସେମାନଙ୍କର ପୂର୍ବପୁରୁଷମାନଙ୍କର ଧନ୍ଦା ପ୍ରତି ଶ୍ରଦ୍ଧା ଜାତ ହେଉ ନାହିଁ । ସରକାରଙ୍କ ତରଫରୁ ମେକ୍‌ଫରସନ୍ ସାହେବ ଏହି ଦାବୀ ସମ୍ବନ୍ଧରେ କହିଥିଲେ ଯେ, "ସଂକ୍ଷେପରେ ପ୍ରାଥମିକ ଶିକ୍ଷାର ତତ୍ତ୍ୱ ଉପରେ ଆଲୋଚନା କରିବା ସମ୍ଭବ ନୁହେଁ । ମନେରଖିବା ଉଚିତ, ଆମର ଏ ପ୍ରଦେଶରେ ବର୍ତ୍ତମାନ ୫୦,୬୦ ଲକ୍ଷ ପିଲାଙ୍କର ସ୍କୁଲ ଯିବା ବୟସ ହୋଇଛି । ଏଥିରୁ ଆମେ କେବଳ ସାଢ଼େ ବାରଲକ୍ଷ ପିଲାଙ୍କୁ ଅର୍ଥାତ୍ ମୋଟ ସଂଖ୍ୟାର ଏକ ଚତୁର୍ଥାଂଶକୁ ସ୍କୁଲରେ ଶିକ୍ଷା ଦେଇପାରୁଛୁ । ଏଥିନିମନ୍ତେ ୫୦ ହଜାର ପ୍ରାଇମେରୀ ସ୍କୁଲ ଅଛି । ପ୍ରାଇମେରୀ ସ୍କୁଲର ପ୍ରତ୍ୟେକ ଗୁରୁଙ୍କୁ ମାସକୁ ଦୁଇଟଙ୍କା କରି ଦରମା ଦେଲେ, ବାର୍ଷିକ ପ୍ରାୟ ୧୨ ଲକ୍ଷ ଟଙ୍କା ଦରକାର ହେବ । ସେମାନଙ୍କୁ ୪ ଟଙ୍କା ବେତନ ଦେଲେ ତାହା ୨୪ ଲକ୍ଷ ଟଙ୍କା ହେବ । ବର୍ତ୍ତମାନ ସରକାର ବର୍ଷକୁ ୯, ୧୦ ଲକ୍ଷ ଟଙ୍କା ପ୍ରାଥମିକ ସ୍କୁଲ ବିଭାଗରେ ଖର୍ଚ୍ଚ କରୁଛନ୍ତି । ଯଦି ବର୍ତ୍ତମାନ ପ୍ରାଇମେରୀ ଶିକ୍ଷକମାନଙ୍କର ଦରମା ବଢ଼ାଇ ଦିଆଯାଏ, ତାହାହେଲେ ଏହାଦ୍ୱାରା ପ୍ରାଥମିକ ଶିକ୍ଷାପାଣ୍ଠି ଶେଷ ହୋଇଯିବ ।"

ବର୍ତ୍ତମାନ ଯେଉଁ ପ୍ରାଥମିକ ଶିକ୍ଷା ଦିଆଯାଉଛି, ତାହାଦ୍ୱାରା ଛାତ୍ରମାନଙ୍କର ପୂର୍ବ-ପୁରୁଷମାନଙ୍କର ଧନ୍ଦା ପ୍ରତି ଆଗ୍ରହ ପ୍ରକାଶ ପାଉନାହିଁ ବୋଲି ମଧୁସୂଦନ ଆପତ୍ତି କରି-ଥିଲେ । ସରକାରଙ୍କ ସଭ୍ୟ ଏହାର ଉତ୍ତର ଦେଇ କହିଥିଲେ, "ଏକଥା ଠିକ୍ ନୁହେ । ଶିକ୍ଷାବିଭାଗ ଡିରେକ୍‌ଟର କହିଛନ୍ତି, ଯେଉଁ ସାଢ଼େ ବାରଲକ୍ଷ ($12\frac{1}{2}$ ଲକ୍ଷ) ପିଲା ବର୍ତ୍ତମାନ ପ୍ରାଇମେରୀ ସ୍କୁଲମାନଙ୍କରେ ପଢ଼ୁଛନ୍ତି, ସେମାନଙ୍କ ଭିତରୁ ୫୦ ହଜାର ମଧ୍ୟ ନିମ୍ନ-ପ୍ରାଇମେରୀ ବୃତ୍ତି ପରୀକ୍ଷା ପର୍ଯ୍ୟନ୍ତ ଯାଇ ପାରୁନାହାନ୍ତି । ନିମ୍ନ ପ୍ରାଇମେରୀ ସ୍କୁଲ କେବଳ

ପଠନ, ଲିଖନ ଓ ଗଣିତ ଶିକ୍ଷାରେ ଆବଦ୍ଧ ରହୁଛି । ବର୍ତ୍ତମାନ ଯେଉଁ ଶିକ୍ଷା ଦିଆଯାଉଛି, ତାହାଦ୍ୱାରା କୃଷୀଘରର ପିଲା ମନରେ କପରି ବା ତାର ପୂର୍ବପୁରୁଷମାନଙ୍କର ଧନ୍ଦା ପ୍ରତି ଅଶ୍ରଦ୍ଧା ଜାଗ୍ରତ କରିବ ? ପ୍ରାଇମେରୀ ଶିକ୍ଷାର ପ୍ରସାରଦ୍ୱାରା ଏହାର ଉନ୍ନତି ହେବ ନା ଅବନତି ହେବ ? ଯେଉଁ ପନ୍ଥାରେ ପ୍ରାଥମିକ ଶିକ୍ଷାର ଉନ୍ନତି ଦାବୀ କରାଯାଉଛି, ତାହାଦ୍ୱାରା ଅସୁବିଧା ବଢ଼ିବ କି କମିବ ? ପାଠଶାଳାର ଗୁରୁଙ୍କ ଶିକ୍ଷାର ପରିସର ବର୍ଦ୍ଧିତ କରାଯିବା ଅତି କାମ୍ୟ; କିନ୍ତୁ ଏଥିପାଇଁ ପନ୍ଥା ଓ ଅର୍ଥ ପ୍ରତି ଦୃଷ୍ଟି ଦେବାକୁ ହେବ । ପାଠଶାଳା ସହିତ କୃଷିକ୍ଷେତ୍ର ବା ବଗିଚା ସଂଲଗ୍ନ କରିବା ପୂର୍ବରୁ ଯେଉଁ ଗୁରୁ ଶିକ୍ଷା ଦେବେ, ତାହାଙ୍କର ଦରମା ବୃଦ୍ଧି ନିମନ୍ତେ ଅର୍ଥର ବ୍ୟବସ୍ଥା କରିବାକୁ ହେବ ।

କୃଷି ପାଠ୍ୟପୁସ୍ତକ ରଚନା ସମ୍ବନ୍ଧରେ ସେ କହିଲେ ଯେ, "ଏ ବିଷୟଟି ୪।୫ ବର୍ଷ ପୂର୍ବେ ଆଲୋଚିତ ହୋଇଥିଲା । ପ୍ରାଥମିକ ଓ ମଧ୍ୟଇଂରାଜୀ ସ୍କୁଲମାନଙ୍କରେ କି ଧରଣର ପାଠ୍ୟପୁସ୍ତକ ପ୍ରଚଳନ କରାଯିବ, ସେ ସମ୍ବନ୍ଧରେ ସୁପାରିସ୍ କରିବାପାଇଁ ଗୋଟିଏ କମିଟି ନିଯୁକ୍ତ ହୋଇଥିଲା । ଏହି କମିଟି ଗମ୍ଭୀର ଆଲୋଚନା କରି କୃଷି ସମ୍ବନ୍ଧରେ କେତେକ ପରାମର୍ଶ ଦେଇଥିଲେ ଏବଂ ସେହି ଅନୁସାରେ ନିମ୍ନ-ପ୍ରାଥମିକ ପାଠ୍ୟପୁସ୍ତକମାନଙ୍କରେ କୃଷିତତ୍ତ୍ୱ ସମ୍ବନ୍ଧରେ କେତେକ ବିଷୟ ରହିଲା । ଉଚ୍ଚପ୍ରାଥମିକ ଓ ମଧ୍ୟଇଂରାଜୀ ସ୍କୁଲ-ମାନଙ୍କରେ କୃଷି ବିଷୟରେ କେତେକ ପରିଚ୍ଛେଦ ମଧ୍ୟ ଦିଆଯାଇଛି ।" ଶିଳ୍ପ ଓ କାରିଗରି ଶିକ୍ଷା ସମ୍ବନ୍ଧରେ ସେ କହିଲେ, "ଏ ସମ୍ବନ୍ଧରେ ଏକ କମିଟି ନିଯୁକ୍ତ କରାଯାଇଛି ଏବଂ ଏହି କମିଟିର ରିପୋର୍ଟକୁ ସରକାର ଅପେକ୍ଷା କରୁଛନ୍ତି ।"

**ଦେଶମିଶ୍ରଣ ଓ ମାନ୍ଦ୍ରାଜ ସରକାରଙ୍କ ଅଦ୍‌ଭୁତ ଯୁକ୍ତି ( ୧୯୦୪ ) :** ଗଞ୍ଜାମ ଜିଲ୍ଲା ଓ ବିଶାଖାପାଟଣା ଜିଲ୍ଲାର ଓଡ଼ିଆ ଅଞ୍ଚଳକୁ ଓଡ଼ିଶା ଡିଭିଜନ ସହିତ ମିଶାଇଦେଇ ବଙ୍ଗପ୍ରଦେଶ ଅଧୀନରେ ରଖିବା ପାଇଁ ଗଞ୍ଜାମର ଓଡ଼ିଆମାନେ ଯେଉଁ ଆନ୍ଦୋଳନ କରୁଥିଲେ, ସେ ସମ୍ବନ୍ଧରେ ମାନ୍ଦ୍ରାଜ ସରକାରଙ୍କ ଚିଫ୍ ସେକ୍ରେଟେରୀ ସାର୍ ମରେ ହାମିକ୍ ପ୍ରତିକୂଳ ମତ ବ୍ୟକ୍ତ କରିଥିଲେ । ତାଙ୍କ ମତର ମର୍ମ ହେଲା—ଏ ଆନ୍ଦୋଳନର ନେତା ଓଡ଼ିଶାର ଶ୍ରୀ ମଧୁସୂଦନ ଦାସ ଜଣେ ବାପ୍ଟିଷ୍ଟ ମିଶନ୍‌ର ଖ୍ରୀଷ୍ଟିଆନ୍ । ଗଞ୍ଜାମର ବ୍ରହ୍ମପୁରରେ ଏହି ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଏକ ଗିର୍ଜା ଅଛି ଏବଂ ପ୍ରଚାରକମାନେ ମଧ୍ୟ ଅଛନ୍ତି । ଏହି ଦୁଇଟି ଚର୍ଚ୍ଚର ସମ୍ମିଶ୍ରଣ ଲକ୍ଷ୍ୟରେ ମିଃ ଦାସ୍ ଏ ଆନ୍ଦୋଳନ ଚଳେଇଛନ୍ତି ମାତ୍ର ।

ମାନ୍ଦ୍ରାଜର ଲାଟ ଲର୍ଡ଼ ଆମ୍ପ୍‌ଥିଲ୍ (Lord Ampthil) ଖ୍ରୀ: ୧୯୦୫ ଫେବୃଆରୀ ମାସରେ ଗଞ୍ଜାମ ପରିଦର୍ଶନରେ ଆସି ଅଭ୍ୟର୍ଥନାର ଉତ୍ତରରେ ମାନ୍ଦ୍ରାଜ ପ୍ରଦେଶରୁ ଓଡ଼ିଆ ଅଞ୍ଚଳକୁ ଅଲଗା କରିବା ବିରୋଧରେ ମତ ବ୍ୟକ୍ତ କରିଥିଲେ ।

ମାନ୍ଦ୍ରାଜ ସରକାରଙ୍କର ଏ ପ୍ରତିକୂଳ ମତର ବିରୋଧ କରି କଟକରେ ଏକ ସାଧାରଣ ସଭା ଫେବୃଆରୀରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁ ଏ ମତର ପ୍ରତିବାଦ କରିଥିଲେ

ଏବଂ ଦେଶମିଶ୍ରଣ ଆନ୍ଦୋଳନକୁ ଶକ୍ତିଶାଳୀ କରିବା ନିମନ୍ତେ ଲୋକଙ୍କୁ ନିବେଦନ କରିଥିଲେ ।

**ସାମନ୍ତ ଚନ୍ଦ୍ରଶେଖର ସ୍ମୃତି ବୃତ୍ତି ( ୧୯୦୫ )** : ଓଡ଼ିଶା ତଥା ଭାରତବର୍ଷର ବିଖ୍ୟାତ ଜ୍ୟୋତିର୍ବିଦ୍ ପଣ୍ଡିତ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ସ୍ମୃତିରକ୍ଷାର୍ଥ ମଧୁବାବୁ ନିଜ ବ୍ୟୟରେ ମାସିକ ୫୦ ଟଙ୍କାର ଏକ ବୃତ୍ତି ସ୍ଥାପନ କଲେ । କଲିକତାରେ ବି. ଏସ୍‌ସି. ପଢ଼ିବା ପାଇଁ ଓଡ଼ିଶାରୁ ଯାଉଥିବା ଛାତ୍ରମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ଥିଲା ।

ମଧୁବାବୁ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କୁ ଅତି ସମ୍ମାନ କରୁଥିଲେ ଏବଂ ତାଙ୍କ ଗୁଣରେ ମୁଗ୍‌ଧ ଥିଲେ । ମଧୁବାବୁଙ୍କ ମତରେ, ସାମନ୍ତ ପୃଥିବୀର ଜଣେ ଅଦ୍ୱିତୀୟ ଜ୍ୟୋତିର୍ବିଦ୍ ଥିଲେ ଏବଂ ଯେଉଁ କେତେକ ମହାପୁରୁଷଙ୍କଦ୍ୱାରା ଓଡ଼ିଶାର ଗୌରବ ସମଗ୍ର ପୃଥିବୀରେ ପ୍ରସାରିତ ହୋଇଛି, ସେମାନଙ୍କ ମଧ୍ୟରେ ସାମନ୍ତ ଜଣେ ।

## ୫୮ । ଉତ୍କଳ ଟାନେରୀ

"ଉତ୍କଳ ଟାନେରି" (ଉତ୍କଳ ଜୋତା କାରଖାନା) ଖ୍ରୀ: ୧୯୦୫ରେ ମଧୁବାବୁ ସ୍ଥାପନ କରିଥିଲେ । ଟାନେରିରେ ପ୍ରସ୍ତୁତ ହେଉଥିବା ଜୋତା ଖୁବ୍ ଉଚ୍ଚ ଧରଣର ଥିଲା । ଆକାରପ୍ରକାରାଦି ଦିଗରୁ ଭାରତ ଓ ବିଦେଶରେ ମଧ୍ୟ ଏହା ଆଦର ଲାଭ କରିଥିଲା । କଲିକତା ବଜାରରେ ଏହି ଜୋତାର ଆଦର ଥିବାରୁ ବିକ୍ରୀ ମଧ୍ୟ ଆଶାନୁରୂପ ହେଉଥିଲା । ଟାନେରି ଜୋତାର ଉତ୍କର୍ଷ ସମ୍ବନ୍ଧରେ କେତେକ ଗଳ୍ପ ଶୁଣାଯାଏ । ଏଥିରୁ ଗୋଟିଏ ନିମ୍ନରେ ଦିଆଗଲା ।

ଟାନେରି ଆରମ୍ଭ ହୋଇଥିବା ସମୟ । ଥରେ ମଧୁବାବୁ କଲିକତା ଯାଇଥିଲେ । 'ଅମୃତବଜାର ପତ୍ରିକା'ର ବିଖ୍ୟାତ ସମ୍ପାଦକ ମୋତିଲାଲ ଘୋଷ ମଧୁବାବୁଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ । ମୋତିବାବୁଙ୍କ ସହିତ ଦେଖା କରିବାକୁ ମଧୁବାବୁ ତାଙ୍କ ବସାକୁ ଯାଉଥିଲେ । ଦୁହେଁ ବହୁ ସମୟ ଧରି ନାନା ପ୍ରସଙ୍ଗରେ ଗଳ୍ପ କରନ୍ତି । ଓଡ଼ିଶାର ବିବିଧ ସମସ୍ୟା ମଧ୍ୟ ଏଥିରୁ ବାଦ ପଡ଼େନାହିଁ । ଦିନେ ଦୁହେଁ କଥାବାର୍ତ୍ତା କରୁଛନ୍ତି, ଏପରି ସମୟରେ ମୋତିବାବୁଙ୍କ ନାତି (ଝିଅର ପୁଅ) ଯୁବକ ପରମାନନ୍ଦ ଦତ୍ତ ବାରଣ୍ଡାରେ ଯାଉଥିଲେ । ପରମାନନ୍ଦ ହଲେ ଭଲ ନୂଆ ଜୋତା ପିନ୍ଧିଥିବା ଦେଖି ଅଜା ତାଙ୍କୁ ପାଖକୁ ଡାକି ପଚାରିଲେ, "ତୁମେ ଏ ଜୋତା କେଉଁଠାରୁ କିଣିଲ ? ଦାମ୍ କେତେ ?" ପରମାନନ୍ଦ କହିଲେ, "ନ୍ୟାସନାଲ୍ ଟାନେରି'ରୁ (National Tannery) — ଦାମ୍ ତେର ଟଙ୍କା ।" ଜୋତାର ଦାମ୍ ଖୁବ୍ ବେଶି ହୋଇଥିଲା । ମୋତିବାବୁ ସବୁବେଳେ

କାନଭାସ୍ ଜୋତା ପିନ୍ଧୁଥିଲେ । ସେ କହିଲେ, "ଦେଖ, ମୋର ଏ କାନଭାସ୍ ଜୋତା କେତେ ନରମ ଓ ଆରାମ ଲାଗୁଛି । ତୁମେ ଏପରି ହେଲେ ଜୋତା ନକରି ଦାମିକା ଜୋତା କାହିଁକି ବା କିଣିଲ ? ମୋର ଜୋତାର ଦାମ୍ ମୋଟେ ଟ ୨। (ଦୁଇଟଙ୍କା ଚାରିଅଣା) ।" ପରମାନନ୍ଦ କହିଲେ, "ବୃଦ୍ଧଙ୍କ ନିମନ୍ତେ କାନ୍‌ଭାସ୍ ଜୋତା ଭଲ, ନରମ ଲାଗିବ । ପୁଣି, ଆପଣଙ୍କ ଜୋତା ବେଶି ଦିନ ଯିବ ନାହିଁ, ଦୁଇ ତିନ ମାସରେ ନଷ୍ଟ ହୋଇଯିବ; କିନ୍ତୁ ମୋର ଏ କ୍ରୋମଜୋତା ଦୁଇବର୍ଷରୁ କମ୍ ଟିକିନାହିଁ । କେଉଁଟା ଶସ୍ତା କହିଲେ ?" ମୋତିବାବୁ ଟିକିଏ ଯୁକ୍ତିତର୍କ କରିବାକୁ ଆରମ୍ଭ କରିବାରୁ ମଧୁବାବୁ କହିଲେ, "ରହ, ରହ ମୋତିବାବୁ ! ଆପଣ କାହିଁକି ଭୁଲିଯାଉଛନ୍ତି ଯେ ଆପଣଙ୍କ ବାଳ ଧଳାହୋଇଗଲାଣି ।" ଏହା କହି ପରମାନନ୍ଦଙ୍କ ମୁଣ୍ଡ ଆଡ଼କୁ ଆଙ୍ଗୁଳି ଦେଖାଇ ମଧୁବାବୁ କହିଲେ, "ଏ ଟୋକାର ମୁଣ୍ଡକୁ ଦେଖ ।" ଏତିକିରେ କଥା ବନ୍ଦ ହେଲା ।

ଏହାର କେତେ ମାସ ପରେ ବଙ୍ଗଳାଟ ଲର୍ଡ କାର୍‌ମାଇକେଲଙ୍କର ବିଭିନ୍ନ ପ୍ରକାର ଜୋତା ରଖିବା ସଉକ ଥିବା କଥା ମୋତିବାବୁ ମଧୁବାବୁଙ୍କୁ କହିଲେ । ମୋତିବାବୁ ପୁଣି କହିଲେ, "ମୁଁ ଚମଡ଼ାଜୋତା ପିନ୍ଧି ପାରୁନାହିଁ । ଏହା ବଡ଼ ଟାଣ ।" ମଧୁବାବୁ ଏହା ଶୁଣି କହିଲେ, "ତୁମେ କଣ ଉତ୍କଳ ଟାନେରୀର ଜୋତା କେବେ ବ୍ୟବହାର କରିବାକୁ ଚେଷ୍ଟା କରିଛ ?" ମୋତିବାବୁ ନାହିଁ କରିବାରୁ ମଧୁବାବୁ କହିଲେ, "ତୁମ ପାଦକୁ ହେଲାଭଳି ହଲେ ଜୋତା ଉତ୍କଳ ଟାନେରୀରୁ ପଠାଇଦେବି । ପିନ୍ଧିଲେ ଦେଖିବ ତୁମ କାନଭାସ୍ ଅପେକ୍ଷା କେତେ ନରମ ।" ମୋତିବାବୁଙ୍କ ପାଖକୁ ମଧୁବାବୁ ହଲେ ଜୋତା ପଠାଇଦେଲେ । ସେହିଦିନଠାରୁ ମୋତିବାବୁ ତାଙ୍କ ବ୍ୟବହାର ପାଇଁ ସବୁ ଜୋତା ଓ ଚଟି ଉତ୍କଳ ଟାନେରୀରୁ ହିଁ କିଣୁଥିଲେ । ଘରେ ଓ ବାହାରେ ସବୁବେଳେ ଉତ୍କଳ ଟାନେରୀ ଜୋତା ବ୍ୟତୀତ ଅନ୍ୟ କୌଣସି ଜୋତା ସେ ବ୍ୟବହାର କରୁନଥିଲେ । ମୋତିଲାଲ ବାବୁ ଲାଟଙ୍କ ସହିତ ଦେଖା କରିବାକୁ ଗଲାବେଳେ ମଧ୍ୟ ମଧୁବାବୁଙ୍କ ଟାନେରୀର ଚକଚକିଆ ନରମ ଚମଡ଼ାର ଜୋତା ପିନ୍ଧୁଥିଲେ । ("Mr. M.S. Das. As I saw Him" —Article by Paramananda Dutt, Joint Editor, Amrita Bazar Patrika, Calcutta)

ମୋତିଲାଲ ବାବୁଙ୍କ ମୃତ୍ୟୁ ପରେ ତାଙ୍କ ସାନଭାଇ ଗୋପାଳଲାଲ ଘୋଷ ଅମୃତବଜାର କାଗଜର ସମ୍ପାଦକ ହେଲେ । ଏହାଙ୍କ ସହିତ ମଧ୍ୟ ମଧୁବାବୁଙ୍କର ସମ୍ପର୍କ ଘନିଷ୍ଠ ଥିଲା । କଟକ ରେଳ ଷ୍ଟେସନ ନିକଟରେ ପୂର୍ବକୁ ଗୁଡ଼ଶାଳଆଗଞ୍ଜ ଓ ନୂଆବଜାର ଅଞ୍ଚଳରେ ପ୍ରାୟ ୪୦ (ଚାଳିଶି) ଏକର ଜମି ନେଇ ଉତ୍କଳ ଟାନେରୀ ସ୍ଥାପିତ ହୋଇଥିଲା । 'ଉତ୍କଳ ଟାନେରୀ' ସାଧାରଣତଃ 'ମଧୁବାବୁଙ୍କ ଟାନେରୀ' ନାମରେ ପରିଚିତ ହେଉଥିଲେ ମଧ୍ୟ ଏହା ଏକ ଯୌଥ କାରବାର ବା କମ୍ପାନୀ ଥିଲା । ମଧୁବାବୁ ଏହାର ଉଦ୍‌ଯୋକ୍ତା ଥିବାରୁ ପ୍ରାକ୍ତନ ଓଡ଼ିଶାର ବହୁ ଅଞ୍ଚଳର ଲୋକେ ଏଥିରେ ଅଂଶ କିଣିଥିଲେ । ଅଂଶ

ବର୍ଷିରୁ ଆଦାୟ ବହୁ ସହସ୍ର ଟଙ୍କା ହେବ । ଟାନେରୀ ନାମକୁ ମାତ୍ର କମ୍ପାନୀ ଥିଲା, ମଧୁବାବୁ ସବୁ କ୍ଷେତ୍ରରେ ହର୍ତ୍ତାକର୍ତ୍ତା ବିଧାତା ଥିଲେ । ଉତ୍କଳ ଟାନେରୀରେ ପ୍ରଥମେ ପ୍ରାୟ ୬୫୦ ଲୋକ କାମ କରୁଥିବା ଜଣାଯାଏ ।

ମଧୁବାବୁ ବିଲାତ ଯାଇଥିଲାବେଳେ ବଡ଼ ବଡ଼ ଜୋତା କାରଖାନାକୁ ଯାଇ ସେଠାର କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ବହୁ କଥା ବୁଝିଥିଲେ । ଭାରତର କଞ୍ଚା ଚମଡ଼ା ନେଇ ବିଦେଶରେ ଲୋକେ ତାହାକୁ କଷ କରି ଜୋତା ପ୍ରସ୍ତୁତ କରୁଥିଲେ ଏବଂ ସେ ଜୋତାକୁ ଭାରତକୁ ପଠାଇ ପ୍ରଚୁର ଅର୍ଥ ମଧ୍ୟ ଲାଭ କରୁଥିଲେ । ଭାରତରେ ଉପଯୁକ୍ତ ଭାବରେ ଚମଡ଼ା କଷ ହୋଇ ଜୋତା ତିଆରି ହେଲେ ଦେଶ ବିଦେଶରେ ଏହାର ଆଦର ବଢ଼ିବ, ଏ ବିଶ୍ୱାସର ବଶବର୍ତ୍ତୀ ହୋଇ ମଧୁବାବୁ ଟାନେରୀ ଆରମ୍ଭ କରିଥିଲେ ।

ଗୋଧି ଚମଡ଼ାର ଜୋତାକୁ ଇଉରୋପର ଲୋକେ ବେଶି ଆଦର କରୁଥିଲେ; ମୂଲ୍ୟ ମଧ୍ୟ ଉଚ୍ଚ ଥିଲା । ମଧୁବାବୁ ଏ ବିଭାଗ ପ୍ରତି ଦୃଷ୍ଟି ଦେଲେ । ଓଡ଼ିଶାର ନଈନାଳ, ବଣଜଙ୍ଗଲରେ ଅସଂଖ୍ୟ ଗୋଧି ବାସ କରନ୍ତି । ଏହାର ଚମଡ଼ାରୁ ଭଲ ଜୋତା ତିଆରି କଲେ ଖୁବ୍ ଲାଭ ହେବାର ସମ୍ଭାବନା ଥିବାରୁ ମଧୁବାବୁ ଏଥିରେ ମନ ଦେଲେ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଗୋଧି ଚମଡ଼ା ସଂଗୃହୀତ ହେବାକୁ ଲାଗିଲା । ଚମଡ଼ା ଯୋଗାଇବା ଲୋକେ ମଧ୍ୟ ଲାଭବାନ୍ ହେଉଥିଲେ । ଉତ୍କଳ ଟାନେରୀରେ ପ୍ରସ୍ତୁତ ଗୋଧି ଚମଡ଼ାର ଜୋତା ଜାପାନ, ଫ୍ରାନ୍ସ ପ୍ରଭୃତି ବିଦେଶୀ ବଜାରରେ ମଧ୍ୟ ଆଦୃତ ହୋଇପାରିଥିଲା ।

ଉତ୍କଳ ଟାନେରୀ କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ଦୈନିକ ଏଠାରେ ପ୍ରାୟ ୨୦୦୦ (ଦୁଇହଜାର) ଟଙ୍କା ଖର୍ଚ୍ଚ ଆବଶ୍ୟକ ହେଉଥିଲା । ଏହି ଚମଡ଼ା ବ୍ୟବସାୟକୁ ଲକ୍ଷ୍ୟ କରି ସଭାସମିତିମାନଙ୍କରେ ମଧୁବାବୁ କୌତୁକରେ କହୁଥିଲେ, "ମୁଁ ଜଣେ ମହାପାପୀ, ପ୍ରତିଦିନ ଶହ ଶହ କୁମ୍ଭୀର, ଘୋଡ଼ା, ଗୋଧିଙ୍କୁ ମରାଉଛୁ, ଚମଡ଼ା କାରବାର କରୁଛୁ ।"

ଟାନେରୀ ଆରମ୍ଭ ହେବା ପରେ ଚମଡ଼ା କଷପାଇଁ ବହୁ ପରିମାଣରେ ବବୁର ଗଛର ଛେଲି ଆବଶ୍ୟକ ହେବାରୁ ନିଜେ ମଧୁବାବୁ ଏଥିପାଇଁ ଟେଣ୍ଡର ମଗାଇଥିଲେ । ୧୯୦୬ ଜାନୁଆରୀ ୧୧ ତାରିଖରେ ଏକ ବିଜ୍ଞାପନ ଛପା ହୋଇଥିଲା—"ବବୁର ଗଛର ଛେଲି ବହୁ ପରିମାଣରେ ଆବଶ୍ୟକ । କଟକ ଷ୍ଟେସନଠାରେ ଦେବାକୁ ହେବ । ପ୍ରତିଥର ଗୋଟିଏ ରେଲଡ଼ବା ପୂର୍ଣ୍ଣ ହେବାକୁ ହେବ । ଯେଉଁମାନେ ଉକ୍ତ ଛେଲି ଦେବାକୁ ଇଚ୍ଛା କରନ୍ତି, ସେମାନେ ମଣ ହିସାବରେ କେତେ ମୂଲ୍ୟ ଘେନିବେ ଓ କେଉଁ ସମୟରେ ଦେଇପାରିବେ ଏସବୁ ବିଷୟ ଆମ୍ଭକୁ ଶୀଘ୍ର ଜଣାଇବେ । ୧୧. ୧. ୧୯୦୦, ମିସନ୍‌ରୋଡ଼ କଟକ, M. S. Das (ଏମ୍. ଏସ୍. ଦାସ) ।"

ମଧୁବାବୁ ନିଜେ ପ୍ରସ୍ତୁତ ଜିନିଷମାନଙ୍କର ଭଲ ମନ୍ଦ ମାନ ନିର୍ଦ୍ଧାରଣ ମଧ୍ୟ କରୁଥିଲେ । ୧୯୦୯ ବେଳକୁ କାରଖାନାର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ପଡ଼ି ନଥିଲେ ମଧ୍ୟ ମଧୁବାବୁ ଲକ୍ଷାଧିକ ଟଙ୍କା ନିଜ ହାତରୁ ବ୍ୟୟ କରିଥିଲେ । ନିଜ ବ୍ୟୟରେ କାରଖାନା ଚଲାଇବା ଶ୍ରେୟସ୍କର ମନେ ନକରି ଏହାକୁ ଏକ କମ୍ପାନୀରୂପେ ପରିଣତ କରିବାକୁ ମଧୁବାବୁ ସ୍ଥିର କଲେ । ଏହି ଉଦ୍ଦେଶ୍ୟରେ ଏକ ବିଜ୍ଞାପନ ମଧ୍ୟ ପ୍ରସ୍ତୁତ ହେଲା । କମ୍ପାନୀ ଗଠନର ଆବଶ୍ୟକତା, ଉଦ୍ଦେଶ୍ୟ ଓ କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ଏଥିରେ ବହୁ ତଥ୍ୟ ଲେଖାହୋଇଥିଲା ।

**ଉତ୍କଳ ଟାନେରୀ ଲିମିଟେଡ୍ :** "କେତେକ ବର୍ଷ ହେଲା ଉତ୍କଳ ଟାନେରୀ ୧। ଚମଡ଼ା କାରଖାନା ଫିଟିଅଛି । ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ସି. ଆଇ. ଇ. ଏହି କାରଖାନାକୁ ସ୍ଥାପନ କରିଅଛନ୍ତି । ଇଉରୋପୀୟ ରୀତି ଅନୁସାରେ ଗୋଟିଏ ନୂଆ ବ୍ୟବସାୟ ଆରମ୍ଭ କରି ତାହା ପରିପୁଷ୍ଟ କରିବାକୁ ହେଲେ, ନାନାଦି ଅସୁବିଧା ଭୋଗ କରିବାକୁ ପଡ଼େ । ସେ କଥା ଅନୁଭବୀ ଛଡ଼ା ଆଉ କେହି ବୁଝିପାରିବେ ନାହିଁ । ପ୍ରଥମେ ପ୍ରଥମେ କୌଣସି ବ୍ୟବସାୟ ଆରମ୍ଭ କଲେ, ଲୋକସାନ୍ ସହିବାକୁ ପଡ଼େ । ଜଏଣ୍ଟ ଷ୍ଟକ୍ କମ୍ପାନୀ ଅର୍ଥାତ୍ ଯୌଥ କାରବାର କମ୍ପାନୀ କରି ମୂଳଧନ ଉଠାଇବା ଭାରତବର୍ଷରେ ଅଭିନବ ବ୍ୟାପାର । ଭାରତବର୍ଷରେ ଜଣେ ଜଣେ ଲୋକ ନିଜ ନିଜର ମୂଳଧନ ଖଟାଇ ବ୍ୟବସାୟ ବାଣିଜ୍ୟ କରିଅଛନ୍ତି । ସମୁଦାୟ ଲାଭ ଏକା ସେହିମାନେ ନିଅନ୍ତି ଓ କ୍ଷତି ହେଲେ ଏକା ସେହିମାନେ ସହନ୍ତି । ବର୍ତ୍ତମାନକାଳରେ ଭାରତବର୍ଷକୁ, ୟୁରୋପରୁ ଆମଦାନି ଜିନିଷମାନଙ୍କ ସଙ୍ଗେ ପ୍ରତିଯୋଗିତା କରିବାକୁ ପଡ଼ୁଅଛି । ଏପରିସ୍ଥଳେ କୌଣସି ବ୍ୟବସାୟ ଆରମ୍ଭ କରିବାକୁ ହେଲେ ଗୁଡ଼ାଏ ମୂଳଧନ ଦରକାର । ଯୌଥକମ୍ପାନୀ ପ୍ରତିଷ୍ଠା କରି ଅଂଶ ଖୋଲିଲେ ବେଶି ଟଙ୍କା ଉଠିପାରେ । ୟୁରୋପର ବାଣିଜ୍ୟାଦି ବିଷୟରେ ଉନ୍ନତି କେବଳ ଯୌଥ କମ୍ପାନୀମାନେ ପ୍ରତିଷ୍ଠା କରିବାଦ୍ୱାରା ହୋଇଅଛି, କିନ୍ତୁ ଯୌଥ ମୂଳଧନ ଖଟାଇ କାର୍ଯ୍ୟ କରିବାକୁ ଭାରତବର୍ଷର ଲୋକମାନେ ଶିଖି ନାହାନ୍ତି । ଏଥିଯୋଗୁଁ କୌଣସି ବ୍ୟବସାୟ ଆରମ୍ଭ କରିବା ସମୟରେ, ଅର୍ଥାତ୍ ଯେଉଁ ସମୟରେ ପ୍ରଥମେ ପ୍ରଥମେ ଲୋକସାନ୍ ସହିବାକୁ ପଡ଼େ, ସେହି ଅବସ୍ଥାରେ ଯୌଥ ଫଣ୍ଡଦ୍ୱାରା ଉକ୍ତ ବ୍ୟବସାୟ ଚଲାଇବା ଯୁକ୍ତିଯୁକ୍ତ ନୁହେଁ । କାରଣ ଅଂଶୀଦାରମାନଙ୍କର ପ୍ରଥମ ସଭା ହେବା , ଯଦି ଯେବେ ବ୍ୟବସାୟରେ ଲୋକ୍‌ସାନ୍ ହୋଇଅଛି ବୋଲି ପ୍ରମାଣିତ ହୁଏ ତାହାହେଲେ ଏ ଦେଶର ଲୋକଙ୍କର ଯୌଥ କାରବାର ପ୍ରତି ଆସ୍ଥା କଦାପି ହେବନାହିଁ ।

"ଉତ୍କଳ ଟାନେରୀର ସ୍ୱତ୍ୱାଧିକାରୀ ଏହି କାରଣମାନଙ୍କରୁ ଉକ୍ତ କାରଖାନାପାଇଁ ଅଂଶଦ୍ୱାରା ସାଧାରଣଙ୍କଠାରୁ ମୂଳଧନ ଗ୍ରହଣ କରି ନାହାନ୍ତି ଏବଂ ଉକ୍ତ କାରଖାନାର ପ୍ରଥମ ପରୀକ୍ଷା ଅବସ୍ଥାରେ ଯାହା କ୍ଷତି ଅବଶ୍ୟମ୍ଭାବୀ ତାହା ସେ ନିଜେ ଇଚ୍ଛା କରି ସହିଛନ୍ତି ।

"ବର୍ତ୍ତିମାନ ଏହି କାରଖାନାର ପରୀକ୍ଷା ସମୟ କଟି ଯାଇଅଛି । ବ୍ୟବସାୟ ହିସାବରେ ଧରିବାକୁ ଗଲେ ବର୍ତ୍ତିମାନ ଉକ୍ତ କାରଖାନା ଦୃଢ଼ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଅଛି । ଓଡ଼ିଶା ବିଭାଗର କମିଶନର ଶ୍ରୀଯୁକ୍ତ ଇ. ଭି. ଲେଭେଞ୍ଜ ( Lavenge ) ସାହେବଙ୍କ ମନ୍ତବ୍ୟର କେତେକ ଅଂଶ ନିମ୍ନରେ ପ୍ରଦତ୍ତ ହେଲା—

"ଉତ୍କଳ ଟାନେରି ଦେଖିବା ନିମନ୍ତେ ଆମ୍ଭେ ଅନେକ ସମୟରେ ଅନେକ ବନ୍ଧୁଙ୍କୁ ସଙ୍ଗରେ ନେଇ ଯାଇଅଛୁ । ଏହି ଚମଡ଼ା କାରଖାନାର ସମସ୍ତ କଳ ସରଞ୍ଜାମମାନ ପୂର୍ଣ୍ଣଭାବରେ ଅଛି, ଏହା ସମସ୍ତ ବନ୍ଧୁମାନେ ଆଗ୍ରହ ସହକାରେ ଦେଖିଅଛନ୍ତି । ଆମ୍ଭେ ନିଜେ ଉକ୍ତ କାରଖାନାକୁ ଅନେକ କାମର ଫରମାସ ଦେଇଅଛୁଁ ଓ ଉକ୍ତ କାମମାନ ଯେପରି ବରାଦ ମୁତାବକ ହୋଇଅଛି ତଦ୍ଦ୍ୱାରା ଆମ୍ଭେ ସନ୍ତୁଷ୍ଟ ହୋଇଅଛୁ । ଏ ଚେଷ୍ଟା ପ୍ରକୃତ 'ସ୍ୱଦେଶୀ' ଅଟେ ଏବଂ ଏଥିରେ ଆମ୍ଭର ସମ୍ପୂର୍ଣ୍ଣ ସହାନୁଭୂତି ଓ ସାହାଯ୍ୟ ଅଛି ।"

ମାନ୍ୟବର ଆଇ. ଜି. କମିଙ୍ଗ୍ ( Cumming ) ସାହେବ ବଙ୍ଗଦେଶର ବ୍ୟବସାୟଗତ ଅବସ୍ଥା ଓ ଭବିଷ୍ୟତ ସମ୍ବନ୍ଧରେ ଏକ ସମାଲୋଚନା ପ୍ରବନ୍ଧ 'କଲିକତା ଗେଜେଟ୍'ରେ ପ୍ରକାଶ କରିଥିଲେ ( ୨୬।୮।୧୯୦୮ ) । ସେ କହିଥିଲେ ଯେ ସମଗ୍ର ବଙ୍ଗପ୍ରଦେଶ ମଧ୍ୟରେ କେବଳ ଏହି କାରଖାନା ବ୍ୟବସାୟିକ ନିୟମରେ ପରିଚାଳିତ ହେଉଛି ।

୨୪।୨।୧୯୦୯ରେ ବଙ୍ଗଳାର ଲେଫ୍ଟେନାଣ୍ଟ ବାହାଦୁର ତାଙ୍କର ଚିଫ୍ ସେକ୍ରେଟେରି ମାନ୍ୟବର ଡିଉକ (Duke) ସାହେବ ଓ ଓଡ଼ିଶାର କମିଶନର ସାହେବ ଏ ଦୁହେଁ ଉକ୍ତ ଚମଡ଼ା କାରଖାନାଟି ପରିଦର୍ଶନ କରିଥିଲେ ।

ପ୍ରତିଦିନ ବର୍ତ୍ତିମାନ ଯେତେ ଚମଡ଼ା ଓ ଚମଡ଼ା କଷିବାର ମସଲା ଏ କାରଖାନାକୁ ସରବରାହ ହେଉଅଛି, ସେଥିର ପରିମାଣ ଏଣିକି ନ ବଢ଼ାଇଲେ ଚମଡ଼ା ଓ ଚମଡ଼ାର ଜିନିଷମାନ ଯୋଗାଇବାପାଇଁ ସରକାରରୁ ଓ ସାଧାରଣ ଲୋକଙ୍କଠାରୁ ଯେଉଁ ଫରମାସମାନ ଆସୁ ଅଛି, ତାହା ଯୋଗାଇ ହେବନାହିଁ । ଏଥିପାଇଁ ବେଶି ମୂଳଧନ ଆବଶ୍ୟକ ।

ଅନୁଭବରୁ ଦେଖାଯାଉଅଛି ଯେ କାରଖାନାରେ ଟଙ୍କା ଖଟାଇଲେ ଉକ୍ତ ଟଙ୍କାରେ ଶତକଡ଼ା ବେଶି ଦରରେ ଲାଭ ମିଳିବ । ଭବିଷ୍ୟତରେ ଏ ବ୍ୟବସାୟଟି ଜଣକର ସମ୍ପତ୍ତି ହେବା ବାଞ୍ଛନୀୟ ନୁହେଁ । ଗତବର୍ଷ ମଧ୍ୟରେ ଅନେକ ସରକାରୀ ଓ ବେସରକାରୀ ଭଦ୍ରଲୋକ ଏ କାରଖାନାକୁ ଯୌଥ କମ୍ପାନୀରେ ପରିଣତ କରିବା ଉଚିତ ବୋଲି ପ୍ରକାଶ କରିଅଛନ୍ତି । ତଦନୁସାରେ 'ଉତ୍କଳ ଟାନେରି କମ୍ପାନୀ ଲିମିଟେଡ୍' ନାମରେ ଏହି କାରଖାନାକୁ ରେଜେଷ୍ଟରୀ କରାହୋଇଅଛି ।

"ଏହାର ମୂଳଧନ ବର୍ତ୍ତିମାନ ୨ ( ଦୁଇ ) ଲକ୍ଷ ଟଙ୍କା ହେବ ବୋଲି ସ୍ଥିର ହୋଇଛି, ପ୍ରତ୍ୟେକ ଅଂଶର ମୂଲ୍ୟ ୧୦ ଟଙ୍କା ହେବ । ବର୍ତ୍ତିମାନ କାରଖାନାରେ ଥିବା ସମ୍ପତ୍ତି ଏହି

ଦୁଇଲକ୍ଷ ଟଙ୍କା ମଧ୍ୟରେ ଗଣନା କରାଯିବ ଏବଂ ଉକ୍ତ ସମ୍ପତ୍ତିର ମୂଲ୍ୟ ଅଂଶ ରୂପେ ପ୍ରୋପ୍ରାଇଟର ( ବର୍ତ୍ତମାନର ମାଲିକ )ଙ୍କୁ ଦିଆଯିବ ।

ଯୌଥ କାରବାର ଆଇନ ଅନୁସାରେ ଅଂଶୀଦାରମାନଙ୍କର ଯେଉଁ ପ୍ରଥମ ସଭା ହେବ, ସେ ପର୍ଯ୍ୟନ୍ତ ନିମ୍ନଲିଖିତ ବ୍ୟକ୍ତିମାନେ ଅସ୍ଥାୟୀ ଭାବରେ ବର୍ତ୍ତମାନ ସକାଶେ ଡାଇରେକ୍ଟର ନିଯୁକ୍ତ ହୋଇଅଛନ୍ତି ।

ଡାଇରେକ୍ଟର ଗଣ

ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ( ରାଜା, କନିକା )
ଶ୍ରୀ ବୀରବର ନାରାୟଣଚନ୍ଦ୍ର ଧୀର ନରେନ୍ଦ୍ର ( ରାଜା, ମଧୁପୁର )
ଶ୍ରୀ ରାୟ ନାରାୟଣଚନ୍ଦ୍ର ନାୟକ ବାହାଦୂର ( ଜମିଦାର, ପେନ୍‌ସନ୍ ପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ୍ )
ଶ୍ରୀ ଗୌରୀଶଙ୍କର ରାୟ ( ସମ୍ପାଦକ, କଟକ ପ୍ରିଣ୍ଟିଂ କମ୍ପାନୀ )
ଶ୍ରୀ ଇସୁଫ୍ ଅହେମଦ ମୁଲ୍ଲା, ମହାଜନ
ମାନ୍ୟବର ଶ୍ରୀ ମଧୁସୂଦନ ଦାସ ସି. ଆଇ. ଇ, ପରିଚାଳନା ଡିରେକ୍ଟର ।

ଏ କମ୍ପାନୀର ଟଙ୍କା କଉଡ଼ି କଲିକତାସ୍ଥ ଦିଲ୍ଲୀ ଓ ଲଣ୍ଡନ ବ୍ୟାଙ୍କରେ ଜମା ରହିବ । ଆଇନ ସମ୍ବନ୍ଧରେ ପରାମର୍ଶଦାତା—ଶ୍ରୀ ରାମଶଙ୍କର ରାୟ ।

ଦରଖାସ୍ତ ସହ ଅଧେ ଟଙ୍କା ଓ ଦରଖାସ୍ତ ତାରିଖରୁ ତିନିମାସ ମଧ୍ୟରେ ଆଉ ଅଧିକ ଟଙ୍କା ଅଂଶୀଦାର ପଠାଇବେ ।

ଚାନ୍ଦିନୀଆଗଞ୍ଜରେ ଏ କମ୍ପାନୀର ରେଜିଷ୍ଟରୀ ଅଫିସ୍ ହୋଇଅଛି ।

ଉତ୍କଳ ଟାନେରୀ କମ୍ପାନୀ ଲିମିଟେଡ୍, ସନ ୧୮୮୨ ମସିହା ୬ ଆଇନ ମତେ ରେଜିଷ୍ଟରୀ ହୋଇଅଛି ।"

ଓଡ଼ିଶା ଓ ଓଡ଼ିଶା ବାହାରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କରେ ମଧୁବାବୁଙ୍କ କାରଖାନା'ର ଅଂଶ ବହୁ ଲୋକ କିଣିଥିଲେ । 'ମଧୁବାବୁ'ଙ୍କ ନାମ ହିଁ କମ୍ପାନୀର ସ୍ଥାୟିତ୍ୱ ଓ ମର୍ଯ୍ୟାଦା ସମ୍ବନ୍ଧରେ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇଥିଲା । ସହସ୍ର ସହସ୍ର ଟଙ୍କାର ଅଂଶ ଓଡ଼ିଆଭାଷୀ ଅଞ୍ଚଳମାନଙ୍କରେ ବିକ୍ରୀ ହୋଇଥିବାର ଜଣାଯାଏ ।

କମ୍ପାନୀ ଗଠିତ ହେବାର ୧୬ ବର୍ଷ ପରେ ୧୯୨୧ ସଲକୁ ତାହାର ଆର୍ଥିକ ଓ ଅନ୍ୟାନ୍ୟ ଅବସ୍ଥାରେ ବହୁ ଅବନତି ଘଟିଯାଇଥିଲା । ସେତେବେଳକୁ ମଧୁବାବୁଙ୍କର ବୟସ ତେସ୍ତରି । ଏ ବୃଦ୍ଧ ଅବସ୍ଥାରେ ପରିଚାଳନାରେ ପ୍ରତ୍ୟକ୍ଷ ଅଂଶ ନେବା ତାଙ୍କ ପକ୍ଷେ ଏକାବେଳକେ ଅସମ୍ଭବ ହୋଇପଡ଼ିଥିଲା । ସେ ସମଗ୍ର ଜୀବନ ନିରଳସ ଭାବରେ କାର୍ଯ୍ୟକରି

ଆସିଥିବାରୁ ଅଭ୍ୟାସବଶତଃ କାମ କରିବାପାଇଁ ବ୍ୟଗ୍ର ହେଉଥିଲେ ମଧ୍ୟ ଶରୀରରେ ସେତିକି ବଳ ଆଉ ନଥିଲା । ସେଥିରେ ପୁଣି ସେ ଚିରରୁଗ୍ଣ ଥିବାରୁ ମାନସିକ ଓ ଶାରୀରିକ ଉଭୟ କ୍ଷେତ୍ରରେ କାର୍ଯ୍ୟ କରିବା ତାଙ୍କ ପକ୍ଷେ ସେତେ ସହଜ ନହେବା ସ୍ୱାଭାବିକ । ତେବେ ତାଙ୍କର ଚିନ୍ତାଶକ୍ତି ଓ ସାଧାରଣ କାର୍ଯ୍ୟଶକ୍ତି ପୂର୍ବପରି ସତେଜ ଥିଲା । 'ମନ କହୁଛି, କିନ୍ତୁ ଦେହ ସମ୍ଭାଳି ପଡ଼ୁନାହିଁ' ରୀତିରେ ସେ କାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ ।

୧୯୦୮ରେ ବଙ୍ଗ ପ୍ରଦେଶର ଶିଳ୍ପସମ୍ବନ୍ଧୀୟ ବାର୍ଷିକ ରିପୋର୍ଟରେ ସରକାର ଉତ୍କଳ ଟାନେରୀର ପ୍ରଶଂସା କରିଥିଲେ ।

୧୯୦୯ରେ ଆଶାନୁରୂପ ସଂଖ୍ୟାରେ କମ୍ପାନୀର ଅଂଶ ବିକ୍ରୀ ହୋଇ ନ ପାରିବାରୁ ଏ ଦିଗରେ ବିଶେଷ ଅଗ୍ରଗତି ହୋଇଥିବା ଜଣାଯାଏ ନାହିଁ ।

୧୯୦୯ରେ ବଙ୍ଗର ଲାଟ ସାର୍ ଏଡ୍‌ୱାର୍ଡ୍ ବେକର୍ ( Sir Edward Baker ) କଟକ ଆଗମନବେଳେ ଉତ୍କଳଟାନେରୀ ପରିଦର୍ଶନ କରିଥିଲେ । ସୈନ୍ୟ ବିଭାଗ ପାଇଁ ସରକାର ଏହି କାରଖାନାରୁ ଜୋତା କିଣି ନେଇଥିଲେ । ଏହି ଜୋତା ବ୍ୟବହାର କରି ସୈନ୍ୟ ବିଭାଗ ସନ୍ତୁଷ୍ଟ ହୋଇ ପ୍ରଶଂସାପତ୍ର ଦେଇଥିଲେ । ଏହି ବର୍ଷ ଟାନେରୀକୁ ଏକ କମ୍ପାନୀରେ ପରିଣତ କରିବା ପାଇଁ ବିଜ୍ଞାପନ ପ୍ରଚାରିତ ହୋଇଥିଲା ।

୧୯୧୦ରେ ଡିସେମ୍ବର ୧୨ ତାରିଖରେ ବିହାର-ଓଡ଼ିଶା ପ୍ରଦେଶର ଶିଳ୍ପ ବିଭାଗର ଡିରେକ୍ଟର ଏହି ଜୋତା କାରଖାନା ପରିଦର୍ଶନ କରି ମନ୍ତବ୍ୟ ଦେଇଥିଲେ ଯେ କାରଖାନା ଅଭାବ ଅସୁବିଧା ଭିତରେ ଗତିକରୁଥିବା ଅବସ୍ଥାରେ ମଧ୍ୟ ଯାହା କାମ କରୁଛି, ତାହା ଆଶାଜନକ । ମୂଳଧନ, ବିଶେଷଜ୍ଞ ଶିକ୍ଷାଦାତା ଓ ଦାୟିତ୍ୱପୂର୍ଣ୍ଣ ପରିଚାଳକର ଅଭାବ ଥିବା ସେ ଦର୍ଶାଇଥିଲେ । କଷା ହୋଇଥିବା ଗୋଧି ଓ କୁମ୍ଭୀର ଚମଡ଼ା ଅତି ଉତ୍କୃଷ୍ଟ ଧରଣର ଥିଲା । ଏଠାରେ ତିଆରି ବୁଟ୍ ଜୋତାକୁ ସେ ବିଶେଷ ଭାବରେ ପ୍ରଶଂସା କରିଥିଲେ । ଏହି କାରଣରୁ ସୈନ୍ୟବିଭାଗ ଏଠାରୁ ବହୁ ପରିମାଣରେ ଜୋତା ପ୍ରତିବର୍ଷ କିଣି ନେଉଥିଲା; କିନ୍ତୁ ଉପଯୁକ୍ତ ଅର୍ଥ ଓ ଅନ୍ୟାନ୍ୟ ଅଭାବରୁ ଜୋତା ଯୋଗାଣ ଠିକ୍‌ରୂପେ ହୋଇପାରୁ ନଥିଲା । ଏହି କାରଖାନାପ୍ରସ୍ତୁତ ଜୋତାଗୁଡ଼ିକ ନିଖୁଣ ଥିଲା ଏବଂ ଅନେକ ଛୋଟ ଛୋଟ ଚକଚକିଆ ଜିନିଷ ମଧ୍ୟ ପ୍ରସ୍ତୁତ ହେଉଥିଲା । ବୁଟ୍ ଜୋତା ଅତି ଉତ୍ତମ ଥିବା ଓ ନିଖୁଣ ଭାବରେ ପ୍ରସ୍ତୁତ ହେଉଥିବା ନିର୍ଦ୍ଦେଶକ ( Director ) ମନ୍ତବ୍ୟ ପ୍ରକାଶ କରିଥିଲେ ।

୧୯୧୧ରେ କଲିକତାର ଗବେଷଣା ବିଭାଗର ପରିଚାଳକ (Superintendent, Research Dept. ) ଶ୍ରୀ ବି.ଏମ୍. ଦାସ ଟାନେରୀ ପରିଦର୍ଶନ କରି ଉଚ୍ଚ ମନ୍ତବ୍ୟ ଦେଇଥିଲେ । ବିହାର-ଓଡ଼ିଶା ସରକାର କାରଖାନାର ଆର୍ଥିକ ଓ ଅନ୍ୟାନ୍ୟ ଅବସ୍ଥାର ବିଚାର କରି ଏକ ରିପୋର୍ଟ ଦେବାପାଇଁ ଶ୍ରୀ ଦାସଙ୍କୁ ବିଶେଷଜ୍ଞ ହିସାବରେ ନିଯୁକ୍ତ

କରିଥିଲେ । ସେହି ବର୍ଷ ଶ୍ରୀ ଦାସ ଉତ୍କଳ ଟାନେରି ପରିଦର୍ଶନ କରି ଡିସେମ୍ବରରେ ଏକ ରିପୋର୍ଟ ଦେଇଥିଲେ । ସେଥିରେ କାରଖାନା ସମ୍ବନ୍ଧେ ସେ ବହୁ ତଥ୍ୟ ଲିପିବଦ୍ଧ କରିଥିଲେ । ସେ ଲେଖିଥିଲେ, "କାରଖାନାର ସ୍ଥାନ କଟକ ଷ୍ଟେସନ ନିକଟରେ ଥିବାରୁ କାରଖାନାର ପଦାର୍ଥ ନେବା ଆଣିବା କରିବାରେ ବହୁତ ସୁବିଧା ଅଛି । ଏହା ଷ୍ଟେସନଠାରୁ ପାଞ୍ଚମିନିଟର ବାଟ । କାରଖାନାଟି ତିନି ଏକର ଜମିରେ ଅଛି । ଏହାକୁ ଲାଗି ଆଉ ଛତିଶ ଏକର ଜମି ଅଛି । ଏଠାରେ ବବୁରି, ସୁନାରି, ତିବିଡିବି ପ୍ରଭୃତି ଚମଡ଼ାକଷ ପାଇଁ ଆବଶ୍ୟକ ଥିବା ବହୁ ଗଛ ଅଛି । ଓଡ଼ିଶା ଓ ଓଡ଼ିଶା ଗଡ଼ଜାତରୁ ମୃତପଶୁର ଚମଡ଼ା ସଂଗୃହୀତ ହେଉଛି । ଗଡ଼ଜାତରୁ ମହାନଦୀ ବାଟେ ଡଙ୍ଗାରେ ଏସବୁ ଆସୁଥିବାରୁ ପରିବହନର ଅସୁବିଧା ନାହିଁ । ଅନ୍ୟାନ୍ୟ ଚମଡ଼ା ( ଗୋଧି, କୁମ୍ଭୀର ପ୍ରଭୃତି ) ମଧ୍ୟ ସ୍ଥାନୀୟ ବେପାରୀଙ୍କଠାରୁ କିଣା ହେଉଛି ।

"ଚମଡ଼ା କଷିବା କାମ ବିଭାଗରେ ପ୍ରତି ସପ୍ତାହରେ ପ୍ରାୟ ୩୦୦ ଗୋରୁ ଚମଡ଼ା, ୨୦୦ ମଇଁଷି ଚମଡ଼ା, ୭୦୦ ମେଣ୍ଢା ଚମଡ଼ା କଷା ହୋଇପାରୁଛି । ଗୋଧିଚମଡ଼ା କଷା ହେବା ବିଷୟ ପରୀକ୍ଷା କ୍ଷେତ୍ରରେ ମଧ୍ୟ ଥିବାରୁ ବହୁ ଅର୍ଥ ବ୍ୟୟ କରିଥିଲେ । କାରଖାନାରେ ସପ୍ତାହକୁ ୫୦୦ ବୁଟ୍ ଜୋତା ପ୍ରସ୍ତୁତ ହୋଇ ପାରୁଛି । ଏହା ବ୍ୟତୀତ ବ୍ୟାଗ୍ (ମୁଣି), ସୁଟ୍‌କେଶ୍, ସାଧାରଣ ହାତବ୍ୟାଗ୍ ମଧ୍ୟ ତିଆରି ହେଉଛି ।

"ଏହି ଟାନେରିର ବିଶେଷତ୍ୱ ହେଉଛି, ବୃକ୍ଷାଦି ରସରେ ଗୋରୁ ଚମଡ଼ା କଷା ହୋଇ ସୈନ୍ୟବିଭାଗପାଇଁ ବୁଟ୍‌ଜୋତା ତିଆରିହେଉଛି । ମଇଁଷି ଚମଡ଼ାରେ ଜୋତାର ତଳ ପ୍ରସ୍ତୁତ ହେଉଛି । ମେଣ୍ଢା ଚମଡ଼ାର କ୍ରୋମକଷାପାଇଁ ଟାନେରି ପ୍ରସିଦ୍ଧ । ଏହି ଟାନେରିରେ ଗୋଧି, କୁମ୍ଭୀର ଚମଡ଼ା କଷା ହେବା ପାଇଁ ଯଥେଷ୍ଟ ସୁବିଧା ଅଛି । ବୃକ୍ଷରସ ଓ କ୍ରୋମ ପ୍ରଣାଳୀରେ କଷା ହେଉଛି ଏବଂ ବିଭିନ୍ନ ରଙ୍ଗରେ ରଙ୍ଗେଇ କରାଯାଉଛି ।

ଶ୍ରୀ ଦାସ ପୁଣି ଲେଖିଥିଲେ, "ଗୋଧିଚମଡ଼ା ବହୁ ପରିମାଣରେ ମିଳେନାହିଁ । ମଧ୍ୟ ଥିବାରୁ ବହୁ ଅର୍ଥ ବ୍ୟୟ କରି ଏହି ଚମଡ଼ା ସଂଗ୍ରହ କରୁଛନ୍ତି । ଖଣ୍ଡିକୁ ପ୍ରାୟ ଦୁଇଟଙ୍କା କରି ମୂଲ୍ୟ ଦେଉଥିଲେ । ପାଣ, କଣ୍ଡରା, ଶିଆଳ ପ୍ରଭୃତି ଗୋଧି ମାରି ଚମଡ଼ା ଯୋଗାଉଥିଲେ । ପ୍ରାୟ ଏକଲକ୍ଷ ଚମଡ଼ା ଟାନେରିରେ କଷା ହେଉଥିଲା ।"

ପୃଥିବୀର ବିଭିନ୍ନ ଦେଶରେ ଉତ୍କଳ ଟାନେରି ପ୍ରସ୍ତୁତ ଦ୍ରବ୍ୟର ଆଦର ଥିଲା ଏବଂ ଜର୍ମାନୀ ଓ ଅଷ୍ଟ୍ରିଆରୁ ମଧ୍ୟ ଶିକ୍ଷାର୍ଥୀମାନେ ଆସି ଶିକ୍ଷାଲାଭ କରୁଥିଲେ । ଭାରତର ବିଭିନ୍ନ ସ୍ଥାନରୁ ମଧ୍ୟ ଶିକ୍ଷାର୍ଥୀମାନେ ଆସୁଥିଲେ ।

ଶ୍ରୀ ବି.ଏମ୍. ଦାସ କାରଖାନାର ସମ୍ପତ୍ତିବାଡ଼ି ଓ ଅନ୍ୟାନ୍ୟ ଦ୍ରବ୍ୟର ମୂଲ୍ୟ ନିରୂପଣାତ୍ମକ ହିସାବ ଦେଇଛନ୍ତି । କୋଠାବାଡ଼ି ଟ ୪୭,୭୩୯-୧୯ପ:, ଆସବାବ ପତ୍ର ଟ ୨୯, ୧୭୬-୧୨ପ:, କଳକବ୍‌ଜା ୭୯,୯୩୪ ଟଙ୍କା, ତିରିଶି ଏକର ଜମିର ଦାମ୍ ୫୦,୦୦୦ ଟଙ୍କା, ବ୍ୟବସାୟ ଖ୍ୟାତି ୫୦,୦୦୦ ଟଙ୍କା—ମୋଟ ଟ ୨୫୭୭୭୯-୩୧ ପ: ।

ଶ୍ରୀ ବି: ଏମ୍: ଦାସ ଲେଖିଥିଲେ, "ସେ ( ମଧୁବାବୁ ) ତାଙ୍କ ଜୀବନରେ ସଞ୍ଚିତ ସମସ୍ତ ଧନ ଏଥିରେ ଖର୍ଚ୍ଚ କରିଅଛନ୍ତି । ଏହା ଏହି ଧରଣର ଶିଳ୍ପର ଏକ ଶିଳ୍ପବିଦ୍ୟାଳୟରେ ପରିଣତ ହୋଇପାରିଅଛି । ଶିଳ୍ପ ଶିକ୍ଷା ଦେବାଦ୍ୱାରା ଏହା ସମାଜର ଏକ ଅତି ବଡ଼ ସେବା କରୁଅଛି । ଏହାଦ୍ୱାରା ମଧୁସୂଦନଙ୍କର ଯଥେଷ୍ଟ ଖର୍ଚ୍ଚ ଓ କ୍ଷତି ହୋଇଅଛି ।" ଶିଳ୍ପ କମିଶନ ସମକ୍ଷରେ ମଧୁବାବୁ ସାକ୍ଷ୍ୟ ପ୍ରଦାନ କରି କହିଥିଲେ ଯେ ସେ ଏହି କାରଖାନା ଆରମ୍ଭ କରିବା ଦିନଠାରୁ ଆଠଜଣ ମ୍ୟାନେଜର ପରିବର୍ତ୍ତନ କରିଅଛନ୍ତି ଏବଂ ପ୍ରାୟ ତିନିଲକ୍ଷ ଟଙ୍କା କ୍ଷତି ସହିଛନ୍ତି । ବି. ଏମ୍. ଦାସ ମଧୁବାବୁଙ୍କ କ୍ଷତି ଓ ଅନ୍ୟାନ୍ୟ ପରିଶ୍ରମ ନିମନ୍ତେ ( Goodwill of business ) ବ୍ୟବସାୟ ଖ୍ୟାତିର ମୂଲ୍ୟ ସ୍ୱରୂପ ୫୦,୦୦୦ ଟଙ୍କା ( ପଚାଶ ହଜାର ଟଙ୍କା ) ଦେବାପାଇଁ ସରକାରଙ୍କୁ ସୁପାରିସ୍ କରିଥିଲେ ।

ମଧୁବାବୁ ଟାନେରି ସକାଶେ ବହୁ ଋଣ କରି ସାରିଥିଲେ । କେବଳ କଲିକତାର କକ୍ସ୍ ଏଣ୍ଡ୍ କମ୍ପାନୀ ( Cox & Co, Bankers, Calcutta ) ଙ୍କ ଠାରୁ ଟ ୧,୮୩,୧୦୦-୪୭ ପ: ଋଣ କରିଥିଲେ ।

ଶ୍ରୀ ବି: ଏମ୍: ଦାସ ପୁଣି ଲେଖିଥିଲେ—"ମିଷ୍ଟର ଏମ୍. ଏସ୍. ଦାସ ବର୍ତ୍ତମାନ ବିହାର-ଓଡ଼ିଶା ପ୍ରଦେଶର ସ୍ୱାୟତ୍ତଶାସନ ବିଭାଗରେ ମନ୍ତ୍ରୀ ଅଛନ୍ତି । ବଙ୍ଗ, ବିହାର ଓ ଓଡ଼ିଶା ଏହି ତିନୋଟି ଅଞ୍ଚଳ ମିଶି ଯେଉଁ ପ୍ରଦେଶଟି ଗଠିତ ହୋଇଛି, ସେ ଏଠାରେ ସର୍ବପ୍ରଥମେ ଦେଶର ଚମଡ଼ା, ହାଡ଼, କଞ୍ଚ ପଦାର୍ଥ ପ୍ରଭୃତିର ବ୍ୟବହାର ସମ୍ବନ୍ଧରେ ନୂତନ ଭାବନା ପ୍ରକାଶ କରିଛନ୍ତି । ଏହି ସମ୍ପଦରୁ ଆଧୁନିକ ପନ୍ଥାରେ ଚମଡ଼ା ପ୍ରସ୍ତୁତ କରିବା ପାଇଁ ସେ ଉଦ୍ୟମ କରିଥିଲେ । ସ୍ୱଦେଶୀ ଶିଳ୍ପ ସଂଗଠନ ଆନ୍ଦୋଳନ, ଏପରିକି ବଙ୍ଗର ସ୍ୱଦେଶୀ ଆନ୍ଦୋଳନ ପୂର୍ବରୁ, ସେ ଏହା ଆରମ୍ଭ କରି ଦେଇଥିଲେ । ଏଠାରେ ମନେ-ରଖିବା ଉଚିତ ଯେ ଓଡ଼ିଶା ବଙ୍ଗ ପ୍ରଦେଶର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଶିଳ୍ପ କ୍ଷେତ୍ରରେ ଅନୁନ୍ନତ । ଏହି ଅନୁନ୍ନତ ପ୍ରଦେଶର ଜଣେ ଲୋକ ଏପରି ଗୋଟିଏ ନୂତନ ଶିଳ୍ପ-ସଂଗଠନ-ଭାବନା ଉଦ୍ଭାବନ କରିଥିବା କମ୍ କଥା ନୁହେଁ । ମଧୁବାବୁ ଜଣେ ଉଚ୍ଚଶିକ୍ଷିତ ଲୋକ ଓ ସ୍ଥାନୀୟ ଓକିଲମାନଙ୍କ ଭିତରେ ସେ ଅଗ୍ରଣୀ । ସେ ଯେ ଏହିପରି ଏକ ଦରମରା ଶିଳ୍ପ ପ୍ରତି ଆକୃଷ୍ଟ ହୋଇଥିଲେ ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ବହୁ ପୂର୍ବରୁ ଶହ ଶହ ବର୍ଷ ହେଲା ଏହି ଶିଳ୍ପଟି ଅନୁନ୍ନତ ଚମାରମାନଙ୍କ ହାତରେ ଥିଲା ।

୧୯୨୩ ସେପ୍ଟେମ୍ବର ୨୯ ତାରିଖରେ ଉତ୍କଳ ଟେନେରି କମ୍ପାନୀ ଲିମିଟେଡ୍‌ରେ ଏକ ବିଜ୍ଞାପନ ପ୍ରଚାରିତ ହୋଇଅଛି । "୧୯୧୩ ମସିହାର ୭ ଆଇନ ଅନୁସାରେ ଏହି କମ୍ପାନୀଟି ରେଜିଷ୍ଟ୍ରି ହୋଇଅଛି । ମୂଳଧନ ଆଠଲକ୍ଷ ଟଙ୍କା ଓ ଅଶୀହଜାର ଅଂଶରେ ବିଭକ୍ତ । ପ୍ରତି ଅଂଶର ମୂଲ୍ୟ ଦଶଟଙ୍କା । ମ୍ୟାନେଜର ଓ ଅଡ଼ିଟର୍ ନିଯୁକ୍ତ କରିବାରେ,

ଗଭର୍ଣ୍ଣମେଣ୍ଟଙ୍କୁ ଚମଡ଼ା ଜିନିଷମାନ ଯୋଗାଇବାରେ, ରେଭେନ୍‌ସା କଲେଜର ସାମିଲରେ ଚମଡ଼ା ପ୍ରସ୍ତୁତ ପ୍ରଣାଳୀ ଶିକ୍ଷାଦେବାରେ ବିହାର୍‌-ଓଡ଼ିଶା ଗଭର୍ଣ୍ଣମେଣ୍ଟ କମ୍ପାନୀକୁ କେତେ-ପ୍ରକାର ସାହାଯ୍ୟ କରିବା ପ୍ରତିଶ୍ରୁତ ଦେଇଛନ୍ତି । ଅଂଶୀଦାରମାନଙ୍କୁ ଶତକଡ଼ା ଟ ୨୬.୭୫ ନୂ. ପ. ଲାଭ ଦିଆଯିବ । ଉତ୍କଳ ଟନେରୀ ସୁଖ୍ୟାତି ଦେଶ ବିଦେଶରେ ବ୍ୟାପିଥିବାରୁ ଚମଡ଼ାଜିନିଷ ଯୋଗାଇବା ସକାଶେ ବର୍ତ୍ତମାନ ଇଂଲଣ୍ଡ, ଜାପାନ ପ୍ରଭୃତି ଦେଶମାନଙ୍କରୁ ଅର୍ଡର ଆସୁଅଛି ।'' ଏହିମାନେ କମ୍ପାନୀର ଡିରେକ୍ଟର—(୧) ଶ୍ରୀ ରାଧିକାରମଣ ପ୍ରସାଦ ସିଂହ, ଜମିଦାର, ବିହାର । (୨) ଶ୍ରୀନିବାସ ରାଜମଣି ଦେଓ, ଏମ୍.ଏଲ୍.ସି. ( ମାନ୍ଦ୍ରାଜ ), ମଞ୍ଜୁଷା ରାଜା । (୩) କୁମାର ଶରତ୍‌ଚନ୍ଦ୍ର ଭଞ୍ଜଦେବ ବି.ଏ., ମୟୂରଭଞ୍ଜ । (୪) ବାବୁ ମାର୍କଣ୍ଡ ମିଶ୍ର ବି.ଏ., ଜମିଦାର ଓ ମହାଜନ, ପୁରୀ, । (୫) ବୀରବର ନାରାୟଣ ଧୀର ନରେନ୍ଦ୍ର, ଏମ୍. ଏଲ୍. ସି., ରାଜା । କ ମଧୁପୁର । ଜି । କଟକ । (୬) ବାବୁ କଲ୍ପତରୁ ଦାସ, ଓକିଲ କଟକ, ଉତ୍କଳ ସମ୍ମିଳନୀ ସମ୍ପାଦକ । ୭) ଭୂୟାଁ ଈଶ୍ୱରଚନ୍ଦ୍ର ମହାପାତ୍ର, ଜମିଦାର, ଭଦ୍ରଖ । ଜି । ବାଲେଶ୍ୱର । (୮) ବାବୁ ଶଙ୍କର ପ୍ରସାଦ ମିଶ୍ର, ଏମ୍: ଏଲ୍: ସି:, ସମ୍ବଲପୁର । (୯) ବାବୁ ସତୀଶଚନ୍ଦ୍ର ମୁଖାର୍ଜୀ ଏମ୍: ଏଲ୍: ସି:, ବଙ୍ଗ ବ୍ୟବସ୍ଥାପକ ସଭ୍ୟ । (୧୦) ବାବୁ ଶଶିଭୂଷଣ ରଥ, ଏମ୍:ଏଲ୍:ସି:, ଆଶା ପତ୍ରିକାର ସମ୍ପାଦକ । ବ୍ରହ୍ମପୁର । ଗଞ୍ଜାମ ।

ଧର୍ମଘଟ ନିବାରଣ ଓ ଟାନେରୀର ଉନ୍ନତିରେ ଯତ୍ନଶୀଳ ହେବା ସକାଶେ ପୁରାତନ କାରୀଗରମାନଙ୍କୁ ମଧ୍ୟ ଅଂଶୀଦାର କରାଯିବ ।' କମ୍ପାନୀରେ ଯାହାଙ୍କର ପାଞ୍ଚଶତ ଅଂଶ ରହିବ, ତାହାଙ୍କୁ ତ୍ରୈମାସିକ ଆୟବ୍ୟୟ ହିସାବ ପଠାଯିବ ।' ଏ ପ୍ରକାର ନିୟମ ଅନ୍ୟ କୌଣସି ଯୌଥ କମ୍ପାନୀରେ ନାହିଁ । ଯାହାଙ୍କର କୋଡ଼ିଏଟି ଅଂଶ ରହିବ, ସେ ନିଜର ବ୍ୟବହାର ସକାଶେ ଜୋତା ଫରମାସ୍ ଦେଇ କରାଇ ନେଇ ପାରିବେ ।''

ଏହିସବୁ ସର୍ତ୍ତ ଯେ ପ୍ରଗତିଶୀଳ ଥିଲା, ଏଥିରେ ସନ୍ଦେହ ନାହିଁ, କିନ୍ତୁ ଆଠଲକ୍ଷ ଟଙ୍କାର ଅଂଶ ବିକ୍ରୀ ହେବାପାଇଁ ଉତ୍କଳ ଉପଯୁକ୍ତ କ୍ଷେତ୍ର ନ ଥିଲା । କମ୍ପାନୀ ଗଠିତ ହୋଇ ୧୮ ବର୍ଷ ବିତି ଯାଇଥିଲେ ମଧ୍ୟ ଲାଭର ସଙ୍କେତ ମିଳି ନଥିଲା, କେବଳ ଲାଭର ଆଶା ଥିଲା । ମଧୁବାବୁ, ମଧୁବାବୁଙ୍କ ସୁନାମ ଓ ଟାନେରୀ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇ ଯାଇଥିଲେ । 'ଟାନେରୀ ଯେ, ମଧୁବାବୁ ସେ' ବୋଲି ଲୋକେ ଭାବୁଥିଲେ । ମଧୁବାବୁଙ୍କ ଉପରେ ଉତ୍କଳବାସୀଙ୍କର ଯେ ପ୍ରଗାଢ଼ ବିଶ୍ୱାସ ଥିଲା, ତାହା କେବଳ ଅଂଶ କିଣିବାପାଇଁ ଲୋକଙ୍କୁ ଉତ୍ସାହିତ କରିଥିଲା ସାଧାରଣ ଅବସ୍ଥାର ଲୋକଙ୍କଠାରୁ ଆରମ୍ଭ କରି ରାଜା ମହାରାଜାମାନଙ୍କ ପର୍ଯ୍ୟନ୍ତ ବହୁ ଲୋକ ଏଥିରେ ଅଂଶ କିଣିଥିଲେ ।

ଖ୍ରୀ: ୧୯୨୧ରେ ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ନିଯୁକ୍ତ ହେବାପରେ ଉତ୍କଳ ଟାନେରୀ ସହିତ ବ୍ୟବସାୟଗତ ସମ୍ପର୍କ ତ୍ୟାଗ କରିଥିଲେ । କୌଣସି ମନ୍ତ୍ରୀ

କୌଣସି ବ୍ୟବସାୟ ସହିତ ସମ୍ପର୍କ ରଖିବା ଆଇନ ବରୁଦ୍ଧ ଥିବାରୁ ମଧୁବାବୁ ଏପରି କରିଥିଲେ ।

ଖ୍ରୀ. ୧୯୨୩ ରେ କମ୍ପାନୀ ଠେଲି ହେବା ପରେ ଅଂଶ ବନ୍ଦୀ ହୋଇ ଖ୍ରୀ: ୧୯୨୭ ସଉକ ଟ୧, ୧୩, ୯୪୧ ମିଳିଥିଲା । ଏହି ଟଙ୍କା କଳସ କମ୍ପାନୀର କରଜ ବାବଦକୁ ମଜୁରି ଦିଆଯାଇଥିଲା । ଏହା ବାଦ୍ କଳସ କମ୍ପାନୀର ଋଣ ଟ୧,୧୫,୯୧୪-୩୭ (ଏକଲକ୍ଷ ପନ୍ଦର ହଜାର ନଅଶହ ଚଉଦଟଙ୍କା ସଇଁତିରିଶ ପଇସା) ବାକି ରହିଲା । ଏହି ଟଙ୍କା ସକାଶେ କଳସ କମ୍ପାନୀ କାରଖାନକୁ ନିଲାମରେ ଉଠାଇଲେ । ସୁଖିରଜା ନିଲାମରେ କମ୍ପାନୀକୁ ନେଲେ । ବଙ୍ଗଳାର ବିଶିଷ୍ଟ ନେତା ଓ ମଧୁବାବୁଙ୍କ ଗୁଣ ସାର୍ ଆଶୁତୋଷ ମୁଖର୍ଜୀ କମ୍ପାନୀର ୫୦୦ (ପାଞ୍ଚଶତ) ମୂଳଅଂଶ କିଣିଥିବା ଜଣାଯାଏ ।

ଏହି କମ୍ପାନୀ ସମ୍ବନ୍ଧରେ ସାର୍ ଅଶୁତୋଷ ମଧୁବାବୁଙ୍କଠାକୁ ଥରେ ଲେଖିଥିଲେ —"ଚମଡ଼ା ଶିଳ୍ପ ବ୍ୟବସାୟରେ ଶିକ୍ଷା ଦେବାପାଇଁ ଉତ୍କଳ ଟାନେରୀ ଯେଉଁ ଅନୁଷ୍ଠାନ କରିବାକୁ ଚାହୁଁଛନ୍ତି, ସେପରି ସୁବିଧା କୌଣସି କାରଖାନା ବାହାର ଲୋକଙ୍କୁ ଦିଏନାହିଁ । ମୁଁ ନିଃସନ୍ଦେହରେ କହିପାରେ ଯେ ଆପଣଙ୍କ କମ୍ପାନୀର ଏହି ଶିକ୍ଷାଦାନ ଆମ ଦେଶର ଜାତୀୟ ଭାବକୁ ସ୍ପର୍ଶ କରିପାରିବ ।'

ଉତ୍କଳ ଟାନେରୀରେ ପ୍ରସ୍ତୁତ ଜୋତାର ସ୍ୱଦେଶରେ ଓ ଭାରତର ଅନ୍ୟାନ୍ୟ ପ୍ରଦେଶରେ ବହୁଳ ବିକ୍ରୀ ଲକ୍ଷ୍ୟରେ ମଧୁବାବୁ କଲିକତାର ହାରିସନ୍ ରୋଡ୍‌ରେ ଥିବା ଓ୍ୱାଇ.ଏମ୍. ସି. ଏ. ( Young Mens' Christian Association )'ର କୋଠାପରେ ଏକ ଦୋକାନ ଖୋଲିଥିଲେ । ଦୋକାନଟି ୧୯୨୧-୨୨ ବେଳକୁ ମଧ୍ୟ ଥିବାର ଜଣାଯାଏ । ମଧୁବାବୁ ନିଜେ କଲିକତାର ୨ନମ୍ବର ଉଡ୍ ଷ୍ଟ୍ରିଟ୍‌ରେ ବସା କରିଥିଲେ ।

ଟାନେରୀର ଜୋତା ଭଲ ହେଉଥିବା ଦେଖି କଲିକତାର ଏସ୍‌ପ୍ଲାନେଡ଼ର ବିଖ୍ୟାତ ୟୁରୋପୀୟ ବ୍ୟବସାୟ ପ୍ରତିଷ୍ଠାନ ହ୍ୱାଇଟ୍‌ୱେ ଲେଇଡଲ କମ୍ପାନୀ ( Whiteway Laidlaw Company ) ଏହା ସହିତ ବ୍ୟବସାୟ ସମ୍ପର୍କ ରଖିବାକୁ ଇଚ୍ଛା ପ୍ରକାଶ କରିଥିଲେ । ୟୁରୋପରେ ଆଧୁନିକ ପ୍ରଣାଳୀରେ ପ୍ରସ୍ତୁତ ହୋଇଥିବା ଜୋତା ତୁଳନାରେ ଉତ୍କଳ ଟାନେରୀର ଜୋତା କୌଣସି ଅଂଶରେ ନ୍ୟୂନ ନ ଥିଲା । ଏହି ଜୋତାର ଦାମ୍ ବିଦେଶୀ ଜୋତାର ଦାମ ଅପେକ୍ଷା କମ୍ ମଧ୍ୟ ଥିଲା । ଚମଡ଼ା କଷି ଦେଶୀୟ ପଦ୍ଧତିରେ ହେଉଥିଲେ ମଧ୍ୟ ଏହା ଉଚ୍ଚ ଧରଣର ଥିଲା । ମଇଁଷି ଚମଡ଼ାର ସୋଲ୍ ( Sole ) ଅତି ମଜଭୁତ୍ ହେଉଥିଲା ଓ ଉପର ଚମଡ଼ା ବେଶ୍ ଚକ୍‌ଚକ୍ ଓ କୋମଳ ହେଉଥିଲା । ଜୋତା ମଧ୍ୟ ବେଶି ଦିନ ଯାଉଥିଲା । ପ୍ରସ୍ତୁତ ପ୍ରଣାଳୀ ଉଚ୍ଚକୋଟୀର ହେଉଥିବାରୁ ୟୁରୋପୀୟମାନେ ଏ ଜୋତାକୁ ପସନ୍ଦ କରୁଥିଲେ ।

ହ୍ୱାଇଟ୍‌ୱେ କମ୍ପାନୀର ମ୍ୟାନେଜର ସ୍କଟଲାଣ୍ଡ (Scottland ) ସାହେବ ମଧୁବାବୁଙ୍କ ସହିତ ଦେଖାକରି ଟାନେରୀ ସହିତ ବ୍ୟବସାୟ ସମ୍ପର୍କ ରଖିବାକୁ ତାଙ୍କର କମ୍ପାନୀର ଇଚ୍ଛା ଥିବା କହିଥିଲେ । ପ୍ରଥମେ ସେ କେତେ ଯୋଡ଼ା ଜୋତାର ନମୁନା ଦେଇ ସେପରି ଜୋତା ତିଆରି କରି ତାଙ୍କ କମ୍ପାନୀକୁ ଦେବାପାଇଁ ବରାଦ ଦେଇଥିଲେ । ଏ ନମୁନା ଧରି ମଧୁବାବୁ କଟକ ଆସି ଟାନେରୀରେ ବରାଦ ଦେଲେ ।

ନମୁନା ଜୋତାର ଫରମା ତିଆରି ହେଲା । ସେତେବେଳେ ଶ୍ରୀ ଅଚ୍ୟୁତାନନ୍ଦ ମିଶ୍ର ଟାନେରୀର ମ୍ୟାନେଜର ଥିଲେ । ମଧୁବାବୁଙ୍କ ପରାମର୍ଶମତେ ମ୍ୟାନେଜର ନିର୍ଦ୍ଦିଷ୍ଟ କାଳ ମଧ୍ୟରେ ଜୋତା ପ୍ରସ୍ତୁତ କରିଦେଇଥିଲେ । ମ୍ୟାନେଜର ନିଜେ କଲିକତା ଯାଇ ମଧୁବାବୁଙ୍କୁ ଜୋତାତକ ଦେଲେ । ହ୍ୱାଇଟ୍‌ୱେ କମ୍ପାନୀର ମ୍ୟାନେଜରଙ୍କୁ ମଧୁବାବୁ ଓ ଅଚ୍ୟୁତ ବାବୁ ଜୋତା ଦେଖାଇଲେ । ମ୍ୟାନେଜର ସ୍କଟଲଣ୍ଡ ସାହେବ ଜୋତା ଉଚ୍ଚଧରଣ ହୋଇଥିବା ଦେଖି ଖୁବ୍ ପ୍ରଶଂସା କରିଥିଲେ । ସେ ଜୋତାର ନିର୍ମାଣ କୌଶଳରେ ଏକାବେଳକେ ମୁଗ୍ଧ ହୋଇଯାଇଥିଲେ । ଡାହାଣ ଗୋଡ଼ ଜୋତା ଦେଖି ବାମ ଗୋଡ଼ର ଜୋତା ଓ ବାମଗୋଡ଼ର ଜୋତା ଦେଖି ଡାହାଣଗୋଡ଼ର ଜୋତାର ଭ୍ରମ ହେଉଥିଲା । ଜୋତା ଏପରି ଭାବରେ ତିଆରି ହୋଇଥିଲା ଯେ, ଦୁଇଟିଯାକ ଗୋଟିଏ ହାତର ତିଆରିପରି ଜଣା-ପଡ଼ୁଥିଲା । ସାହେବ ନିଜ ଜୋତା ମଧ୍ୟ ଚିହ୍ନିପାରି ନଥିଲେ ଓ ଓଡ଼ିଆ କାରିଗରର ହସ୍ତପଟୁତାରେ ମୁଗ୍ଧ ହୋଇଯାଇଥିଲେ । ତତ୍ପରେ ସାହେବ ମଧୁବାବୁଙ୍କୁ ପଚିଶ ହଜାର ଟଙ୍କା ଆଗତୁରା ଦେବାକୁ କହି ଦୈନିକ ଏକଶତ ହଳ ଜୋତା ନେବାକୁ ଚୁକ୍ତି କରିବାକୁ ଚାହିଁଲେ; କିନ୍ତୁ ମଧୁବାବୁ କହିଲେ, "ଆପଣ ଆମକୁ କିସ୍ତିଓ୍ୱାରି ( Instalment )ରେ ଏକଲକ୍ଷ ଟଙ୍କା ବର୍ଷକରେ ଦିଅନ୍ତୁ, ମୁଁ ଆପଣଙ୍କୁ ସାପ୍ତାହିକ ଛଅଶହ ହଳ ବିଭିନ୍ନ ପ୍ରକାରର ଜୋତା ଯୋଗାଇଦେବି ।" ଏଥିରେ ସାହେବ ହଁ ଭରିଲେ ଓ ସମସ୍ତ ବିଷୟର ସିଦ୍ଧାନ୍ତ ହୋଇଗଲା; କିନ୍ତୁ ସାହେବ ପୁନର୍ବାର ଅନ୍ୟ ଗୋଟିଏ କଥାର ଅବତାରଣା କଲେ । ସାହେବ କହିଲେ, "ଆମ କମ୍ପାନୀର ଶିଳ୍ପ ମୋହର ( Manufacturing seal ) ଜୋତାରେ ଦିଆଯିବ ।" କ୍ଷଣକାଳ ଚିନ୍ତାକରି ମଧୁବାବୁ କହିଲେ ଯେ, "ନା, ତାହା ହୋଇପାରିବ ନାହିଁ । ମୋ କାରଖାନାରେ ଓଡ଼ିଆ କାରିଗର ହାତରେ ଜୋତା ତିଆରି ହେବ, ଅଥଚ ଆପଣଙ୍କ କମ୍ପାନୀର ମୋହର ରହିବ ?"

ସାହେବ କହିଲେ, "ଆପଣ ଏହିପରି କଲେ ବିଲାତରୁ ପ୍ରତ୍ୟକ୍ଷ ଭାବରେ ବିଭିନ୍ନ ଅନୁଷ୍ଠାନକୁ ଜୋତା ଯୋଗାଇବାକୁ ନିର୍ଦ୍ଦେଶ ( order ) ପାଇବେ ।" ମଧୁବାବୁ ଉତ୍ତର କଲେ, "ଯଦି ବିଲାତରୁ ଅର୍ଡ଼ର ଆସେ, ତେବେ ମୁଁ ଆପଣଙ୍କ ଜରିଆରେ ଜୋତା ପଠାଇ ଦେବି ଏବଂ ଆପଣଙ୍କର କମ୍ପାନୀର ଧାର୍ଯ୍ୟଦର ଅନୁସାରେ ଦାମ୍ ନେବି; କିନ୍ତୁ ମୋ ଟାନେରୀର ମୋହର ରହିବ । ଏପରି କି ମୁଁ ଘୋଷଣା କରିପାରେ ଯେ ହ୍ୱାଇଟ୍‌ୱେ ଲେଇଡ଼ଲ କମ୍ପାନୀ ମୋର ଏକମାତ୍ର ପ୍ରତିନିଧି ( sole agent ) ।"

କିନ୍ତୁ ସାହେବ ଜିଦ୍‌ଧରି କହିଲେ—"ଆପଣ ଆମ ସିଲ୍ ଦିଅନ୍ତୁ; ଆମେ ଆପଣଙ୍କ ସୁନାମ (goodwill) ପାଇଁ ନଗଦ ୫୦ ହଜାର ଟଙ୍କା ପୁରସ୍କାର ଦେବୁ ।" ମଧୁବାବୁ ଏ ପ୍ରସ୍ତାବରେ ରାଜି ନ ହୋଇ ସେ କକ୍ଷ ତ୍ୟାଗକରି ସେହି ମୁହୂର୍ତ୍ତରେ ଚାଲି ଆସିଲେ ।

ବାଟରେ ଅଚ୍ୟୁତ ବାବୁ ପଚାରିଲେ—"ଆପଣ କାହିଁକି ଏଭଳି ଏକ ସୁଯୋଗ ହରାଇଲେ ? ବର୍ତ୍ତମାନ ଉତ୍କଳ ଟାନେରୀର ଅବସ୍ଥା ଯାହା, ସେଥିରେ ଆପଣ ୫୦ ହଜାର ଟଙ୍କା ଆଣିଥିଲେ ଆମର ଯଥେଷ୍ଟ ଉପକାର ହୋଇଥାନ୍ତା । ଆମେ ମଧ୍ୟ କମ୍ପାନୀକୁ ଜୋତା ଯୋଗାଇ ଯଥେଷ୍ଟ ଲାଭ କରିଥାଆନ୍ତେ ଓ କକ୍‌ସ କମ୍ପାନୀ (Cox Co. Ltd. )ର ସମସ୍ତ ଦେଣା ପରିଶୋଧ କରିବାକୁ ସକ୍ଷମ ହୋଇଥାନ୍ତେ ।" କିନ୍ତୁ ମଧୁବାବୁ ଉତ୍ତର ଦେଲେ—"ମଧୁସୂଦନ ଦାସ ଟଙ୍କା ଲୋଭରେ ଓଡ଼ିଆ ଜାତିର ମାନମହତ ଇଂରେଜ କମ୍ପାନୀପାଖରେ ବିକି ଦେବନାହିଁ । ଯଦି ପଚାଶ ବର୍ଷ ପରେ ଓଡ଼ିଶାର ଇତିହାସ ଲେଖାଯାଏ, ତାହାହେଲେ ଓଡ଼ିଆ ଜାତି ମୋତେ ଘୃଣା କରି କହିବ—ମଧୁସୂଦନ ଦାସ ଟଙ୍କାପାଇଁ ତାର ମୁଣ୍ଡକୁ ଇଂରେଜ ପାଖରେ ବିକି ଦେଲା । ମୁଁ ଉତ୍କଳ ଟାନେରୀ କରି ଫକଡ଼ ହୋଇଛୁ ସତ, କିନ୍ତୁ ଏ ଜାତିର ମାନ ବିକି ପାରିବ ନାହିଁ ।" ( ଶ୍ରୀ ଗଦାଧର ମିଶ୍ର 'ସମାଜ'ରେ ୩ । ୨ । ୫୯ରେ ଏହି ପ୍ରସଙ୍ଗଟି ପ୍ରକାଶ କରିଥିଲେ । ଅଚ୍ୟୁତାନନ୍ଦ ମିଶ୍ରଙ୍କ ଘର କଟକ ଜିଲ୍ଲାର ବୋଧପୁର ଗ୍ରାମରେ ଏବଂ ସେ ବହୁ ବର୍ଷ ଉତ୍କଳ ଟାନେରୀର ମ୍ୟାନେଜର ଥିଲେ ।)

ମଧୁବାବୁ ନିଜ ମାନ ମହତ ଓ ଓଡ଼ିଆ ଜାତିର ମାନ ମହତକୁ ରକ୍ଷା କରିବାକୁ ଯାଇ ଲାଭଦାୟକ ବ୍ୟବସାୟ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ପ୍ରତିଷ୍ଠାନର ଶୋଚନୀୟ ଆର୍ଥିକ ଅବସ୍ଥା ଦୃଷ୍ଟିରେ ନିଜ ମ୍ୟାନେଜରଙ୍କ ପରାମର୍ଶକୁ ସେ ଗ୍ରହଣ କରିବା ଉଚିତ ଥିଲା, ଏଥିରେ ସନ୍ଦେହ ନାହିଁ । ହୁଏତ ଟାନେରୀ ଆଜି ପର୍ଯ୍ୟନ୍ତ ଜୀବିତ ରହିଥାଆନ୍ତା ଓ ତାର ନିଜ ଗୌରବର ଆଲୋକରେ ଉଜ୍ଜ୍ୱଳ ଦେଖାଯାଉଥାନ୍ତା । ବ୍ୟବସାୟ ଦୃଷ୍ଟିରେ ମଧୁବାବୁଙ୍କ ଏହି ବ୍ୟବସ୍ଥସାୟ ନୀତିଟି ସମର୍ଥିତ ହେବା କଷ୍ଟକର ।

ତେବେ ମଧୁବାବୁ ଏକବାଗିଆ ଲୋକ, ଯାହା ବୁଝିଥିବେ ତାହା ପରିବର୍ତ୍ତନ କରିବା ବଡ଼ କଷ୍ଟ । ତାଙ୍କର ପ୍ରିୟ ଗୀତ 'ଆଲୋ ସଖୀ, ଆପଣା ମହତ ଆପେ ରଖି'ର ମର୍ମକୁ ସେ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି ଏବଂ ତାଙ୍କ ଦୃଷ୍ଟିରେ ସେ ନିଜର ମହତ, ଜାତିର ମହତ ରକ୍ଷାକରି ପାରିଛନ୍ତି । ଉତ୍କଳ ଟାନେରୀ କରି ସେ ଫକଡ଼ ହୋଇଛନ୍ତି, ସତ, କିନ୍ତୁ ପ୍ରକୃତରେ ଏ ଜାତିର ମାନ ବନ୍ଧକ କରି ନାହାନ୍ତି ।

କ୍ରମେ ଖର୍ଚ୍ଚ ବୃଦ୍ଧି ଓ ଆୟ କମିଯିବାରୁ ଟାନେରୀର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଲା । ଋଣଭାର ମଧ୍ୟ ଅସମ୍ଭବ ଭାବରେ ବୃଦ୍ଧି ପାଇଲା । ଏହି ଆର୍ଥିକ ଦୁର୍ଗତିରୁ

ଅନୁଷ୍ଠାନଟିକୁ ରକ୍ଷାକରିବା ପାଇଁ ମଧୁବାବୁ ବହୁ ଉଦ୍ୟମ କରିଥିଲେ । ବହୁ ବିଶିଷ୍ଟ ହାକିମ ହୁକୁମାମାନଙ୍କ ଦୃଷ୍ଟି ମଧ୍ୟ ଆକର୍ଷଣ କରିଥିଲେ । ସରକାରୀ ଉଚ୍ଚ ହାକିମମାନେ ବିଭିନ୍ନ ସମୟରେ କାରଖାନା ପରିଦର୍ଶନ କରି କମ୍ପାନୀର ପ୍ରସ୍ତୁତ ଜିନିଷ ଉଚ୍ଚକୋଟୀର ଥିବା ବ୍ୟକ୍ତ କରୁଥିଲେହେଁ ସରକାର ଆଶାନୁରୂପ ଆର୍ଥିକ ସାହାଯ୍ୟ ଦେବାକୁ ପ୍ରସ୍ତୁତ ନଥିଲେ ।

୧୯୨୩ରେ ଟାନେରୀକୁ ଏକ ନୂତନ କମ୍ପାନୀରୂପେ ଗଠନ କରିବାପାଇଁ ମଧୁବାବୁ ପୁଣି ଯେଉଁ ଉଦ୍ୟମ କରିଥିଲେ ତାହାର ରୂପରେଖ ଉଲ୍ଲେଖ କରି 'ଉତ୍କଳ ଦୀପିକା' ଏକ ଅଗ୍ରଲେଖ ୨୫।୧।୨୩ରେ ପ୍ରକାଶ କରିଥିଲେ । "ଉତ୍କଳ ଟାନେରୀ ବା ମଧୁବାବୁଙ୍କ ଚମଡ଼ା କାରଖାନା ଓଡ଼ିଶାବାସୀମାନଙ୍କ ନିକଟରେ ସୁପରିଚିତ ଅଟେ । ଏକା ଓଡ଼ିଶାବାସୀ କାହିଁକି ଉତ୍କଳ ଟାନେରୀର ସୁଖ୍ୟାତି ବର୍ତ୍ତମାନ ଭାରତବର୍ଷ, ଇଂଲଣ୍ଡ ଏବଂ ଜାପାନ ପ୍ରଭୃତି ଦେଶରେ ବ୍ୟାପିଅଛି । ସ୍ୱଦେଶୀ ଆନ୍ଦୋଳନ ହେବାର ବହୁକାଳ ପୂର୍ବରୁ ଦେଶୀୟ ଶିଳ୍ପର ଉନ୍ନତି କରିବା ଓ ସ୍ୱଦେଶ ପ୍ରସ୍ତୁତ ପଦାର୍ଥମାନ ବିଦେଶକୁ ପଠାଇ ତଦ୍ଦ୍ୱାରା ଓଡ଼ିଶାବାସୀମାନଙ୍କର ଆର୍ଥିକ ଅବସ୍ଥା ଉନ୍ନତ କରିବା ଉଦ୍ଦେଶ୍ୟରେ ମଧୁବାବୁ ନିଜ ହାତରୁ ଗଣି ଗଣି ଅର୍ଥ ବ୍ୟୟକରି ନାନାପ୍ରକାର ଶିଳ୍ପକାର୍ଯ୍ୟରେ ହାତ ଦେଇଥିଲେ । ତନ୍ମଧ୍ୟରେ ଉତ୍କଳ ଟାନେରୀ ତାହାର ଅଧ୍ୟବସାୟ ସ୍ୱାର୍ଥତ୍ୟାଗର ଉଜ୍ଜ୍ୱଳ ଏବଂ ସ୍ଥାୟୀ ନିଦର୍ଶନ ଅଟେ ।

"ବିନା ଶିଳ୍ପ ବ୍ୟବସାୟରେ କୌଣସି ଦେଶରେ ଆର୍ଥିକ ଉନ୍ନତି ହୋଇ ନପାରେ । ଓଡ଼ିଶା କୃଷି ଓ ଶିଳ୍ପପ୍ରଧାନ ଦେଶ ଥିଲା; ମାତ୍ର ଓଡ଼ିଶାର ଶିଳ୍ପ ଏକାବେଳକେ ଲୋପ ପାଇବାରୁ ଲକ୍ଷ ଲକ୍ଷ ଲୋକ ବିଦେଶକୁ ଯାଇ କଳକାରଖାନାରେ କାର୍ଯ୍ୟ କରୁଅଛନ୍ତି, ଅଥଚ ନିଜ ଦେଶରେ ତାଙ୍କୁ କୌଣସି ବ୍ୟବସାୟ ମିଳୁନାହିଁ । ଏହା ଦେଖି ଓଡ଼ିଶାକୁ ଶିଳ୍ପଜଗତରେ ପରିଚିତ କରାଇବା ପାଇଁ ଓ ଓଡ଼ିଆମାନଙ୍କୁ ନିଜ ଦେଶରେ ଜୀବିକାର ଉପାୟ ଦେବାପାଇଁ ମଧୁବାବୁ ନାନାପ୍ରକାର ଶିଳ୍ପକାର୍ଯ୍ୟରେ ହାତ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଉତ୍କଳ ଟାନେରୀକୁ ସ୍ଥାୟୀ କରିବାରେ ସେ କୃତକାର୍ଯ୍ୟ ହୋଇଅଛନ୍ତି ।

"ଉତ୍କଳ ଟାନେରୀ ପରି ଗୋଟିଏ କାରଖାନା ସ୍ଥାପନ କରିବା ସହଜ କଥା ନୁହେଁ । ଇଉରୋପ ପ୍ରଭୃତି ଦେଶରେ ଯେ ପ୍ରଣାଳୀରେ ଚମଡ଼ା ପ୍ରସ୍ତୁତ ହେଉଅଛି, ତାହା ଏ ଦେଶର ଜଳବାୟୁ ଏବଂ ଏ ଦେଶରେ ମିଳୁଥିବା ଚମଡ଼ା କଷାଇବାର ଦ୍ରବ୍ୟମାନଙ୍କର ଉପଯୋଗୀ ନୁହେଁ । ଏ ଦେଶର ଚମଡ଼ା ଏହି ଦେଶଜାତ ପଦାର୍ଥମାନଙ୍କଦ୍ୱାରା ପ୍ରସ୍ତୁତ କରିବା ମଧୁବାବୁଙ୍କର ଉଦ୍ଦେଶ୍ୟ ଥିବାରୁ ସେ ଅନ୍ୟ କାହାର ସାହାଯ୍ୟ ବ୍ୟତୀତ ନିଜେ ନାନାପ୍ରକାର ପରୀକ୍ଷା କରି ଚମଡ଼ା ପ୍ରସ୍ତୁତ ପ୍ରଣାଳୀ ସ୍ଥିର କରିଅଛନ୍ତି ଏବଂ ସେହି ପ୍ରଣାଳୀରେ ପ୍ରସ୍ତୁତ ହେଉଥିବା ଚମଡ଼ାମାନ ଦେଶ ବିଦେଶରେ ସୁଖ୍ୟାତି ଲାଭ କରିଅଛି । ଏହି ସବୁ ପରୀକ୍ଷାରେ ମଧୁବାବୁଙ୍କୁ ଯେପରି କ୍ଷତିଗ୍ରସ୍ତ ହେବାକୁ ହୋଇଅଛି, ତାହା ବୁଝିବା ସାଧାରଣଙ୍କ ପକ୍ଷରେ ସହଜ ନୁହେଁ ।

ଉତ୍କଳ ଟାନେରୀର ପ୍ରଥମାବସ୍ଥା ଅତୀତ ହୋଇଅଛି । ବର୍ତ୍ତମାନ ଆଉ ପରୀକ୍ଷାର ସମୟ ନୁହେଁ । ସ୍ୱଦେଶଜାତ ଦ୍ରବ୍ୟ ନେଇ ସ୍ୱଦେଶୀ କାରିଗରମାନଙ୍କ ଦ୍ୱାରା କିପରି ଉତ୍କୃଷ୍ଟ ଚମଡ଼ାର ଜିନିଷମାନ ପ୍ରସ୍ତୁତ ହୋଇପାରେ, ତାହା ଉତ୍କଳ ଟାନେରୀ ଭଲରୂପେ ଦେଖାଇଅଛି । ବର୍ତ୍ତମାନ ବହୁତ ପରିମାଣରେ ପଦାର୍ଥ ପ୍ରସ୍ତୁତ ହେଲେ ଉତ୍କଳ ଟାନେରୀ ଗୋଟିଏ ଲାଭଜନକ ବ୍ୟବସାୟ ହୋଇ ଚିରଦିନ ଓଡ଼ିଶାରେ ରହିବ । ଏହି ଉଦ୍ଦେଶ୍ୟରେ ମଧୁବାବୁ ତାହାଙ୍କର ଟାନେରୀକୁ ଗୋଟିଏ ଲିମିଟେଡ୍ କମ୍ପାନୀ ହାତରେ ଦେବାକୁ ପ୍ରସ୍ତୁତ ଏବଂ ଉତ୍କଳ ଟାନେରୀ ୧୯୧୩ ମସିହାର ୭ ଆଇନ ଅନୁସାରେ ଗୋଟିଏ ଲିମିଟେଡ୍ କମ୍ପାନୀ ବୋଲି ରେଜିଷ୍ଟ୍ରୀ ହୋଇଅଛି । ମଧୁବାବୁ ଦେଶର କଲ୍ୟାଣ କାମନା କରି ପ୍ରାୟ ୨୦ ବର୍ଷ କାଳ ନିଜ ହାତରୁ ବହୁ ପରିମାଣରେ ଅର୍ଥ ବ୍ୟୟକରି ଓ ନିଜର ବୁଦ୍ଧି, କୌଶଳ ଏବଂ ଅକାତର ପରିଶ୍ରମଦ୍ୱାରା ଏହି ବୃହତ୍ ଟାନେରୀକୁ ପୂର୍ଣ୍ଣାଙ୍ଗ ଶରୀରରେ ଠିଆ କରାଇ ଦେଶବାସୀଙ୍କ ହାତରେ ଛାଡ଼ିଦେବାକୁ ପ୍ରସ୍ତୁତ । ଓଡ଼ିଶାବାସୀମାନେ ଏ ସୁବିଧାକୁ ନ ଛାଡ଼ି ଯେବେ ସେମାନେ ଅଂଶୀଦାର ହୋଇ କମ୍ପାନୀକୁ ନିଜ ହାତରେ ରଖିପାରନ୍ତି, ତାହାହେଲେ ଏତଦ୍ଦ୍ୱାରା ଶତ ଶତ କାରିଗର ପୋଷାହେବେ । ଏହା ବ୍ୟତୀତ, ଉତ୍କଳ ଟାନେରୀରେ ଯାହା ଲାଭ ହେବ, ତାହା ଓଡ଼ିଶାବାସୀମାନେ ପାଇପାରିବେ ।

"ଜଣେ ଓଡ଼ିଆ ପୁଅ ଗୋଟିଏ ବ୍ୟବସାୟରେ ହାତ ଦେଇ ପୃଥିବୀର ଶିଳ୍ପ ରାଜ୍ୟରେ ଓଡ଼ିଶାର ଯେ ସୁଖ୍ୟାତି ସ୍ଥାପନ କରିଅଛି, ସେଥିସକାଶେ ଆମ୍ଭେମାନେ ଗର୍ବ ଅନୁଭବ କରୁଁ । ଉତ୍କଳ ଟାନେରୀ ପ୍ରସ୍ତୁତ ଚମଡ଼ାର ଦ୍ରବ୍ୟମାନ ଦେଶ ବିଦେଶରେ ଯଦିଚ ସୁଖ୍ୟାତି ଲାଭ କରିଅଛି, ଅର୍ଥାଭାବରୁ ତାହା ବହୁ ପରିମାଣରେ ଯୋଗାଇପାରୁ ନ ଥିବାରୁ ଟାନେରୀ ଲାଭଜନକ ହୋଇପାରିନାହିଁ ।

ବର୍ତ୍ତମାନ ଉତ୍କଳ ଟାନେରୀ କମ୍ପାନୀଙ୍କ ମୂଳଧନ ଆଠଲକ୍ଷ ଟଙ୍କା ହେବ । ତାହାହେଲେ ଟାନେରୀର କାର୍ଯ୍ୟ ବହୁତ ପରିମାଣରେ ବଢ଼ିବ ଏବଂ ପ୍ରଚୁର ପରିମାଣରେ ଚମଡ଼ା ଦ୍ରବ୍ୟମାନ ପ୍ରସ୍ତୁତ ହୋଇ ଦେଶ ବିଦେଶକୁ ପଠାଯିବ । ଏହି ଆଠଲକ୍ଷ ଟଙ୍କା ଅଶୀହଜାର ଅଂଶରେ ବିଭକ୍ତ ହୋଇଅଛି, ସର୍ବସାଧାରଣ ଲୋକେ ସହଜରେ କମ୍ପାନୀରେ ଅଂଶୀଦାର ହୋଇପାରିବେ, ଏଥି ସକାଶେ ପ୍ରତି ଅଂଶର ମୂଲ୍ୟ ଟ ୧୦ ( ଦଶଟଙ୍କା ) କରାଯାଇଛି । ଉତ୍କଳ ଟାନେରୀ ଜଣେ ଓଡ଼ିଆଦ୍ୱାରା ସ୍ଥାପିତ ଏବଂ ଓଡ଼ିଶାର ବୁଦ୍ଧି, ଅଧ୍ୟବସାୟ ଓ ଅର୍ଥଦ୍ୱାରା ପରିପୁଷ୍ଟ ହୋଇ ଦେଶରେ ସୁଖ୍ୟାତି ଲାଭ କରିଅଛି । ସୁତରାଂ ଯେବେ ଏହି କମ୍ପାନୀରେ ଅଧିକାଂଶ ଅଂଶୀଦାର ଓଡ଼ିଶାବାସୀ ହୁଅନ୍ତି, ତାହାହେଲେ ଆମ୍ଭମାନଙ୍କର ପକ୍ଷେ ବଡ଼ ଗୌରବର ବିଷୟ ହେବ । ଆଜି ସଂଖ୍ୟାରେ କମ୍ପାନୀର ଯେ ବିଜ୍ଞାପନ ବାହାରିଅଛି, ତହିଁରୁ ପାଠକମାନେ ବିଶେଷ ବିବରଣ ଜାଣି ପାରିବେ । ଆଶାକରୁ ଓଡ଼ିଶାବାସୀମାନେ ଉତ୍କଳ ଟାନେରୀକୁ ନିଜର ଅନୁଷ୍ଠାନ ବୋଲି ମନେକରି ପ୍ରତ୍ୟେକ ଓଡ଼ିଶାବାସୀ ତହିଁର ଅଂଶ ଯେପରି କିଣିବେ ।

"ଆଜଯାଏ ଓଡ଼ିଆମାନେ ଅନ୍ୟତ୍ର ଯାଇ କଲକାରଖାନାରେ ଯେଉଁ କାମ କରୁଅଛନ୍ତି ତହିଁର ମଜୁରି କେବଳ ଆମ୍ଭ ଦେଶକୁ ଆସୁଛି । ମୂଳଧନର ଲାଭ ଓଡ଼ିଶାବାସୀଙ୍କ ନିକଟକୁ କେବେ ଆସିନାହିଁ । ବର୍ତ୍ତମାନ ଓଡ଼ିଶାବାସୀମାନେ ଯେବେ କମ୍ପାନିର ଅଧିକାଂଶ ଅଂଶ ଗ୍ରହଣ କରନ୍ତି, ତାହାହେଲେ ଉତ୍କଳ ଟାନେରିର ପଦାର୍ଥମାନ ଦେଶ ବିଦେଶରେ ବିକ୍ରୟ ହୋଇ ଯାହା ଲାଭ ହେବ, ତାହାର ଅଧିକାଂଶ ଓଡ଼ିଶାବାସୀଙ୍କଠାରେ ରହିବ । ଏହି ଟାନେରିଟି ପରି ଓଡ଼ିଶାବାସୀମାନେ ମିଳି ଦେଶରେ ଅନ୍ୟ ହିତକର ଓ ଲାଭଜନକ ଅନୁଷ୍ଠାନମାନ ସ୍ଥାପନ କରିପାରିବେ । ଏତଦ୍ଦ୍ୱାରା ଦେଶର ଦରିଦ୍ରତା ଦୂର ହେବାର ଆଶା କରାଯାଏ ।"

କମ୍ପାନିର ଅଂଶ ବହୁ ସଂଖ୍ୟାରେ ବିକ୍ରୀ ହୋଇଥିଲେ ମଧ୍ୟ ଆଶାନୁରୂପ ହୋଇ ନଥିଲା । ଅଂଶ ବିକ୍ରୀରୁ ପ୍ରାୟ ଦେଢ଼ଲକ୍ଷ ଟଙ୍କା ମିଳିଥିଲା ଓ ତାହା ତଗ୍ରୀଦାରର ବାକିଆଡ଼କୁ ମଜୁରି ଗଲା । ସେତେବେଳକୁ କମ୍ପାନିର ଅଚଳ ଅବସ୍ଥା ଆସି ଯାଇଥିଲା । ମହାଜନ ( କକ୍ସ କମ୍ପାନି )ଙ୍କ କରଜ ଧନ ଆଉ ପ୍ରାୟ ଦେଢ଼ଲକ୍ଷ ବାକି ରହିଲା । ଟଙ୍କା ପରିଶୋଧ ହୋଇ ନ ପାରିବାରୁ ଟାନେରି ନିଲାମରେ ଉଠିଲା । ପୁରୀ ରାଜା ଓ ଅନ୍ୟ କେତେଜଣ ମିଶି ଟାନେରିକୁ ନିଲାମରେ କିଣିନେଲେ ।

୧୯୨୪ ରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ଉତ୍କଳ ଟାନେରିର ସଙ୍କଟମୟ ଅବସ୍ଥା ସମ୍ବନ୍ଧରେ ଆଲୋଚନା ହୋଇ ଏହି ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା—"ଓଡ଼ିଶାରେ ପ୍ରତିଷ୍ଠିତ ମଧୁବାବୁଙ୍କ ଉତ୍କଳ ଟାନେରିକୁ ଯୌଥ କାରବାରରେ ପରିଣତ କରି ଏହାକୁ ଉତ୍କଳବାସୀ ବିଦେଶୀଙ୍କ ହାତରୁ ରକ୍ଷାକରି ଦେଶର ଉପକାର କରିପାରିବେ, ଏଥିପାଇଁ ଏ ସମ୍ମିଳନୀ ଉତ୍କଳ ଟାନେରି ଯୌଥକମ୍ପାନି ପ୍ରତି ସହାନୁଭୂତି ପ୍ରକାଶ କରୁଅଛନ୍ତି ଓ ଦେଶବାସୀ ଏଥିରେ ସାହାଯ୍ୟ କରିବେ ବୋଲି ଆଶା କରୁଛନ୍ତି ।" ୧୯୨୪ ଜୁନ୍ ୨୮ ତାରିଖରେ ବଙ୍ଗର ପ୍ରସିଦ୍ଧ ବୈଜ୍ଞାନିକ ଓ ଜାତୀୟତାବାଦୀ ନେତା ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଏ ସମ୍ମିଳନୀ ବସିଥିଲା । ଏହି ସମ୍ମିଳନୀରେ ଏ ନିର୍ଦ୍ଧାରଣ ଗୃହୀତ ହେବା ପରେ ପରେ 'ଉତ୍କଳମଣି' ଗୋପବନ୍ଧୁ ଦାଶ (ଏହି ସମ୍ମିଳନୀରେ ଗୋପବନ୍ଧୁ ଦାଶଙ୍କୁ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ଉତ୍କଳମଣି ଉପାଧି ଦେଇଥିଲେ) ଉତ୍କଳ ଟାନେରିର ଅଂଶ ବିକ୍ରୀ ଓ ସୁପରିଚାଳନା କାମନା କରି ଏ ବିବୃତି ଦେଇଥିଲେ । ତାଙ୍କ ପ୍ରତିଷ୍ଠିତ 'ସମାଜ'ର ସମ୍ପାଦକୀୟ ସ୍ତମ୍ଭରେ ମଧ୍ୟ ଏହି ପ୍ରସଙ୍ଗକୁ ପୁନର୍ବାର ସୂଚାଇ ଦିଆଯାଇଥିଲା; କିନ୍ତୁ କେତେ ଜଣ କଂଗ୍ରେସ ନେତା ଉତ୍କଳ ପ୍ରାଦେଶିକ ସମ୍ମିଳନୀର ପ୍ରସ୍ତାବକୁ ପସନ୍ଦ କରି ନଥିଲେ । ଅବଶ୍ୟ ସେମାନଙ୍କ ସଂଖ୍ୟା ଅତି ନଗଣ୍ୟ ଥିଲା । ବଡ଼ ବଡ଼ କଂଗ୍ରେସ ନେତାମାନେ ଟାନେରିକୁ ବଞ୍ଚାଇ ରଖିବାପାଇଁ ଉଦ୍ୟମ କରିବା ଉଚିତ ବୋଲି ଭାବି ଏ ଦିଗରେ କାର୍ଯ୍ୟ ମଧ୍ୟ ଆରମ୍ଭ କରି ଦେଇଥିଲେ । ନିଜେ ଗୋପବନ୍ଧୁ ପରିଚାଳନା ଓ ପରାମର୍ଶ କ୍ଷେତ୍ରରେ ନିଜକୁ ଘନିଷ୍ଠ ଭାବରେ ସମ୍ପୃକ୍ତ କରିବାପାଇଁ ତାଙ୍କର ଇଚ୍ଛାଥିବା ପ୍ରକାଶ କରିଥିଲେ ।

କଟକ ଜିଲ୍ଲା ଜଗତ୍‌ସିଂହପୁରସ୍ଥ ଅଳକାଶ୍ରମର ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ ମଧୁବାବୁଙ୍କ କଟୁ ଭାବରେ ସମାଲୋଚନା କରି ତାଙ୍କ ପ୍ରତିଷ୍ଠିତ ଟାନେରୀ ସହ କଂଗ୍ରେସ ନେତାମାନେ ଜଡ଼ିତ ହେବା ଅନୁଚିତ ବୋଲି କହିଥିଲେ ଏବଂ ଏ ପ୍ରସଙ୍ଗରେ କେତେକ ଭୁଙ୍ଗ ନେତାଙ୍କ ପ୍ରତି ଆକ୍ଷେପ କରିଥିଲେ; କିନ୍ତୁ ପଣ୍ଡିତ ଗୋପବନ୍ଧୁ ପଣ୍ଡିତ ପ୍ରତିହାରୀଙ୍କ ଆଶଙ୍କାକୁ ଓ ଭ୍ରମ ଧାରଣାକୁ ଦୂର କରିବାପାଇଁ ଚେଷ୍ଟା କରିଥିଲେ । ମଧୁବାବୁଙ୍କ ଟାନେରୀ ଉତ୍କଳର ଏକ ସମ୍ପଦ । ଏହାର ପ୍ରତିଷ୍ଠା ବିଶ୍ୱବ୍ୟାପୀ ଥିବା ଦର୍ଶାଇ, ଏ ଅନୁଷ୍ଠାନକୁ ଓଡ଼ିଶାବାସୀଙ୍କ ହାତରେ ରଖିବା ଉଚିତ ବୋଲି ସେ ଯୁକ୍ତି କରିଥିଲେ ।

ସେତେବେଳକୁ ଉତ୍କଳ ଟାନେରୀ ଏକ ଯୌଥ କାରବାର ବା କମ୍ପାନୀରୂପେ କାର୍ଯ୍ୟ-କରିବା ସ୍ଥିର ହୋଇ ସାରିଥିଲା ଏବଂ ଅଂଶ ବିକ୍ରୀପାଇଁ ବିଜ୍ଞାପନ ମଧ୍ୟ ଦିଆ ସରିଥିଲା । ବିଧିବଦ୍ଧଭାବରେ କମ୍ପାନୀ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଅସ୍ଥାୟୀଭାବେ ଦୈନନ୍ଦିନ କାର୍ଯ୍ୟ ଓ ଅନ୍ୟାନ୍ୟ ଯାବତୀୟ ଅଫିସ ପରିଚାଳନା କରିବାପାଇଁ ଏକ ଅସ୍ଥାୟୀ ଡିରେକ୍ଟରବୋର୍ଡ଼ ମଧ୍ୟ ଗଠିତ ହୋଇଥିଲା ।

ଏହି ଅବସ୍ଥାରେ ସବୁ ଶ୍ରେଣୀର ନେତାମାନଙ୍କ ସହଯୋଗ କାମନା କରିବା ଉଚିତ ବୋଲି ମଧୁବାବୁ ମନେ କରିଥିଲେ । ପ୍ରାଦେଶିକ ସମ୍ମିଳନୀରେ ଟାନେରୀ ସପକ୍ଷରେ ପ୍ରସ୍ତାବ ଗୃହୀତ ହେବା ପରେ କେତେ ଜଣ କଂଗ୍ରେସ ନେତା, ମଧୁବାବୁଙ୍କୁ ଓ ତାଙ୍କ ସମର୍ଥକ କଂଗ୍ରେସ ନେତାମାନଙ୍କୁ ଆକ୍ଷେପ କରି ପ୍ରଚାର କରୁଥିବା ମଧୁବାବୁ ଜାଣି ପାରିଥିଲେ । ଏହାର ନିରାକରଣ ପାଇଁ ସେ ଚେଷ୍ଟା କରିଥିଲେ ଏବଂ ଏକ ବିବୃତି ମଧ୍ୟ ଦେଇଥିଲେ—"ଉତ୍କଳ ଟାନେରୀ ସମ୍ବନ୍ଧେ ଅନେକ ଧର୍ମଲୋକଙ୍କର ମୋ ସହିତ କଥାବାର୍ତ୍ତା ହୋଇଅଛି । ସମସ୍ତଙ୍କର ମତ ଯେ, ଏ କାରଖାନା ଓଡ଼ିଆ ଜାତିର ସମ୍ପତ୍ତି ସ୍ୱରୂପ ରହିବା ଉଚିତ । ଯେଉଁ ବ୍ୟକ୍ତିମାନେ କାରଖାନାକୁ ଯାଇଅଛନ୍ତି, ସେମାନଙ୍କ ମଧ୍ୟରୁ କେହି କେହି କହିଅଛନ୍ତି, ଏ କାରଖାନା ଅନ୍ୟ ଜାତିର ସମ୍ପତ୍ତି ହେଲେ ଓଡ଼ିଶାବାସୀଙ୍କ ପକ୍ଷେ ଅତିଶୟ ନିନ୍ଦାର କଥା ହେବ । କେହି କେହି ମତ ପ୍ରକାଶ କରିଅଛନ୍ତି ଯେ ଜଣେ ନିର୍ଦ୍ଦିଷ୍ଟ ଲୋକ ଉପରେ ଏହାର ପରିଚାଳନା ଭାର ରହିଲେ, ଲୋକେ ଅଂଶ କ୍ରୟ କରିବେ । ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ଉପରେ ଏ କାରଖାନାର କାର୍ଯ୍ୟପ୍ରଣାଳୀ କୌଣସି ପ୍ରକାର ଭାର ରହିବ କି ନାହିଁ, ଏହି ପ୍ରକାର ପ୍ରଶ୍ନ ମୋତେ କେହି କେହି ପଚାରିଥିଲେ । ସେହି ସମ୍ବନ୍ଧେ ମୁଁ ଉକ୍ତ ମହାଶୟଙ୍କ ସହିତ କଥାବାର୍ତ୍ତା କରିଥିଲି । ତାଙ୍କର ଯାହା ଉତ୍ତର ଏଥିସଙ୍ଗେ ପଠାଇଲି । ଏ ପତ୍ର ଏବଂ ପଣ୍ଡିତ ଗୋପବନ୍ଧୁଙ୍କର ମତ ସର୍ବସାଧାରଣଙ୍କ ଜାଣିବା ନିମନ୍ତେ ପ୍ରକାଶ କଲେ ବାଧିତ ହେବି ।

"ଓଡ଼ିଶାରେ କମ୍ପାନୀଦ୍ୱାରା କାରଖାନା ଚଳାଇବାର ଏ ପ୍ରଥମ ଚେଷ୍ଟା । ଯେ ପ୍ରକାର ପ୍ରଶ୍ନମାନ ମୋତେ କରାହୋଇଅଛି, ସେଥିରୁ ସ୍ପଷ୍ଟ ଜଣାହେଉଛି ଯେ, କମ୍ପାନୀଦ୍ୱାରା କାର୍ଯ୍ୟ

ପରିଚାଳନା ନିମନ୍ତେ ଗୋଟିଏ ଆଇନ ଯେ ଅଛି, ତାହା ଲୋକେ ଜାଣନ୍ତି ନାହିଁ । ସେ ଆଇନ ସନ ୧୯୧୩ ମସିହାର ନଂ ୭ର ଆଇନ । ଆଜିକାଲି ଦୁଇ ଚାରିଜଣ ମିଶି ଗୋଟିଏ ଦୋକାନ କିମ୍ବା କାରବାର କରନ୍ତି । ସେମାନଙ୍କୁ ମଧ୍ୟ ସାଧାରଣ ଲୋକମାନେ କମ୍ପାନୀ ବୋଲି କହନ୍ତି । ଏ ପ୍ରକାର ଲୋକମାନେ କୌଣସି ଆଇନର ନିୟମଦ୍ୱାରା ବାଧ୍ୟ ନୁହନ୍ତି, କିମ୍ବା ତାଙ୍କର କାର୍ଯ୍ୟପ୍ରଣାଳୀ ସମ୍ବନ୍ଧେ କୌଣସି ଆଇନରେ କୌଣସି ନିୟମ ନାହିଁ । ଉତ୍କଳ ଟାନେରୀ କମ୍ପାନୀ ସନ ୧୯୧୩ ମସିହାର ନଂ ୭ ଆଇନ ମଧ୍ୟ ରେଜେଷ୍ଟରି ହୋଇଅଛି । ଏକଥା କମ୍ପାନୀର ପ୍ରସ୍ପେକ୍ଟସ୍, ନିୟମାବଳୀ ଓ ବିଜ୍ଞାପନମାନଙ୍କରେ ସ୍ପଷ୍ଟ ପ୍ରକାଶ କରାଯାଇଅଛି । ଅନୁମାନ ହୁଏ, ଏ ବିଷୟ ସାଧାରଣ ଲୋକେ ଲକ୍ଷ୍ୟ କରିନାହାନ୍ତି । ଏ କମ୍ପାନୀର କାର୍ଯ୍ୟ ଉପରୋକ୍ତ ଆଇନମତେ କରିବାକୁ ହେବ । କାର୍ଯ୍ୟ ପରିଚାଳନାର ଭାର କାହା ଉପରେ ରହିବ ତାହା ଅଂଶୀଦାରମାନେ ନିର୍ଣ୍ଣୟ କରିବେ । କମ୍ପାନୀର ପ୍ରଥମ କାର୍ଯ୍ୟ ହେଉଛି, ୪୦ (ଚାଳିଶ) ହଜାର ଅଂଶ ବିକ୍ରୟ କରିବା । ବିକ୍ରୟ କରିବାର ଅର୍ଥ ଏହି ଯେ, ଚାଳିଶ ହଜାର ଅଂଶ ନେବା ନିମନ୍ତେ ଦରଖାସ୍ତ ଓ ପ୍ରତ୍ୟେକ ଅଂଶ ସମ୍ବନ୍ଧେ ଟ ୮ କିମ୍ବା ଚାରିଟଙ୍କା ବ୍ୟାଙ୍କରେ ଦାଖଲ ହେବ । ଯେଉଁମାନେ ଫାଉଣ୍ଡେସନ୍ ସେଆର ନେବେ, ସେମାନେ ପ୍ରତ୍ୟେକ ଅଂଶ ସମ୍ବନ୍ଧେ ଟ ୮ (ଆଠ) ଦାଖଲ କରିବେ ଓ ସାଧାରଣ ଅଂଶ ନେବାର ପ୍ରାର୍ଥୀମାନେ ଟ ୪ ଦାଖଲ କରିବେ । ଯେତେବେଳ ପର୍ଯ୍ୟନ୍ତ ସମସ୍ତ ୪୦ ହଜାର ଅଂଶର ଦରଖାସ୍ତ ଓ ଟଙ୍କା ବ୍ୟାଙ୍କରେ ଦାଖଲ ହୋଇନାହିଁ, ସେତେବେଳ ପର୍ଯ୍ୟନ୍ତ ଦରଖାସ୍ତକାରୀର ଟଙ୍କା ବ୍ୟାଙ୍କରେ ଜମା ରହିବ ଏବଂ କମ୍ପାନୀର ଡାଇରେକ୍ଟରମାନେ ସେ ଟଙ୍କା ନେଇ କୌଣସି କାର୍ଯ୍ୟ କରିପାରିବେ ନାହିଁ ।

"୪୦ ହଜାର ଅଂଶ ସମ୍ବନ୍ଧେ ଉପରୋକ୍ତ ପ୍ରକାର ଗ୍ରାହକ ନିର୍ଣ୍ଣୟ ହେଲେ ବର୍ତ୍ତମାନ ଡାଇରେକ୍ଟରମାନେ ଆଇନ ଅନୁସାରେ ସରକାରଙ୍କୁ ଜଣାଇ ସେଆର ବଣ୍ଟନ କରିବେ । ଅର୍ଥାତ୍ ପ୍ରତ୍ୟେକ ଦରଖାସ୍ତକାରୀଙ୍କୁ ତାଙ୍କ ପ୍ରାର୍ଥନା ମତେ ଅଂଶ ଦେଇ ତାଙ୍କଠାରେ ଥିବା ବ୍ୟାଙ୍କର ରସିଦ୍ ଫେରି ନେବା ଅଂଶ ସାର୍ଟିଫିକେଟ ଦେବେ । ବର୍ତ୍ତମାନ ଯେଉଁମାନେ ଡାଇରେକ୍ଟର ଅଛନ୍ତି, ସେମାନଙ୍କର କାର୍ଯ୍ୟ କେବଳ ଅଂଶ ବିକ୍ରୟ କରିବା ଏବଂ ଦରଖାସ୍ତ-କାରୀମାନଙ୍କୁ ସେମାନଙ୍କର ଅଂଶ ସାର୍ଟିଫିକେଟ ଦେବା । ଏଥିର ମଧ୍ୟ ତାଙ୍କୁ ଅନ୍ୟ କେତେକ କାର୍ଯ୍ୟ କରିବାକୁ ହେବ, କିନ୍ତୁ ପରିଚାଳନାର ଭାର, ଅର୍ଥାତ୍ କିଏ ମ୍ୟାନେଜର ରହିବ, କେତେଜଣ ମ୍ୟାନେଜର ରହିବେ, କାହା ଉପରେ କି ଭାର ଦିଆଯିବ, ଏସବୁ ବିଷୟ ଅଂଶ ନେତାମାନଙ୍କ ମତାନୁସାରେ ସ୍ଥିର କରାଯିବ । ଏଥିରୁ ସ୍ପଷ୍ଟ ପ୍ରକାଶ ହେବ, କାହା ଉପରେ ପରିଚାଳନାର ଭାର ରହିବ, ତାହାର ଅଂଶୀଦାର ଯେଉଁମାନେ ହେଲେ ସେମାନଙ୍କୁ ପଚାରିବାର ଉଚିତ । ପ୍ରକୃତରେ ଯଦ୍ୟପି ଓଡ଼ିଶାବାସୀମାନେ ଏ କାରଖାନାର ଲାଭ ପାଇବାକୁ ଇଚ୍ଛା କରନ୍ତି, ତାହାହେଲେ ସେମାନଙ୍କର ଅନ୍ୟାନ୍ୟ ସ୍ଥଳରେ ଯେ ପ୍ରକାର କାର୍ଯ୍ୟ ହୁଏ, ସେହି ପ୍ରଣାଳୀ ଅବଲମ୍ବନ କରିବା ଉଚିତ ।

"ବର୍ତ୍ତମାନ ୩୦ ହଜାର ସେଆର ବିକ୍ରୀ ନହେବା ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ହୋଇ ପାରେନାହିଁ । ଏ ଅଂଶମାନ ଶୀଘ୍ର ବିକ୍ରୟ ନହେଲେ ବର୍ତ୍ତମାନ ଡାଇରେକ୍ଟରମାନେ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇବେ ଯେ କମ୍ପାନୀ ଆଇନାନୁସାରେ ଗଠିତ ହୋଇପାରିଲା ନାହିଁ, ଅତଏବ ଆମ୍ଭେମାନେ ବ୍ୟାଙ୍କରେ ଅମାନତଥିବା ଟଙ୍କା ଦରଖାସ୍ତକାରୀଙ୍କୁ ଫେରିଦେବା ନିମନ୍ତେ ଆଦେଶ ଦେଲୁ ଏବଂ ଯେଉଁମାନେ ଟଙ୍କା ଜମା ଦେଇଥିଲେ ସେମାନଙ୍କୁ ଟଙ୍କା ଫେରସ୍ତ ନେବା ନିମନ୍ତେ ନୋଟିସ୍ ଦେଲୁ । ଏ କାର୍ଯ୍ୟ ଯେ ପ୍ରକାର ଅଳ୍ପ ସମୟ ମଧ୍ୟରେ ହୋଇପାରେ ତାହା ନିମ୍ନରେ ବ୍ୟାଖ୍ୟା କଲି —

୩୦ ଜଣ ଧନୀ, ଯେ ପ୍ରତ୍ୟେକେ ଆଠହଜାର ଟଙ୍କା ଦେଇପାରନ୍ତି, ସେମାନେ ପ୍ରତ୍ୟେକେ ହଜାର ଅଂଶ କ୍ରୟ କରନ୍ତୁ । ଏ ହଜାର ଅଂଶ ମଧ୍ୟରେ ଯାହା ସେମାନେ ନିଜେ ରଖିବାକୁ ନଚାହାନ୍ତି ତାହା ଆପଣାର ବନ୍ଧୁବାନ୍ଧବମାନଙ୍କୁ ପଶ୍ଚାତ୍ ବିକ୍ରୟ କରି-ପାରନ୍ତି । ଉକ୍ତ ପ୍ରକାର ୩୦ ଜଣ ଏକତ୍ରହୋଇ ପରିଚାଳନାର ସମ୍ବନ୍ଧେ ସମସ୍ତ ବିଷୟ ସ୍ଥିର କରିପାରନ୍ତି । ମୁଁ ବିଶ୍ୱାସ କରେ ଆଠହଜାର ଟଙ୍କା ଦେବାର ଶକ୍ତି ଥିବା ଏ ପ୍ରକାର ୩୦ ଜଣ ଲୋକ ଓଡ଼ିଶାରେ ଅଛନ୍ତି ଏବଂ ସେମାନେ ଇଚ୍ଛାକଲେ ସମସ୍ତ ଅଂଶ ଆଠଦିନ ମଧ୍ୟରେ ବିକ୍ରୟ ହୋଇପାରେ । କେବଳ ଏ ପ୍ରକାର ଲୋକମାନଙ୍କର ସନ୍ଦେହ ଯେ— ଆଠହଜାର ଟଙ୍କା ମୋର ବୁଡ଼ିଯିବ କି ନା ? କିନ୍ତୁ ଏ ସମ୍ବନ୍ଧେ ତାଙ୍କର ସ୍ମରଣ ରଖିବା ଉଚିତ, ସେମାନଙ୍କ ନିଜ ହସ୍ତରେ ପରିଚାଳନାର ଭାର ନ୍ୟସ୍ତ ହେଲା । ସେମାନେ ଆପଣା ମଧ୍ୟରେ ଡାଇରେକ୍ଟର ଇତ୍ୟାଦି ନିଯୁକ୍ତ କରିପାରନ୍ତି କିମ୍ବା ବାହାରର ଲୋକ ନିଯୁକ୍ତ କରିପାରନ୍ତି । ମୁଁ ଜାଣେ ଯେ ମକଦ୍ଦମା ଚଳାଇବା ନିମନ୍ତେ ଲୋକେ ମୁରବିଗିରି କରି ଲକ୍ଷ ଲକ୍ଷ ଟଙ୍କା ଖରଚ କରିଅଛନ୍ତି । ଏପରି ସ୍ଥଳେ କି କାରଣରୁ ଟଙ୍କା ଦିଅନ୍ତି, ତାହା ବୁଝାଯାଏନାହିଁ । ଗୋଟିଏ ସମ୍ପତ୍ତିକୁ ସେ ସମ୍ପତ୍ତିର ମାଲିକ ଏକ ଜଣକୁ ବିକ୍ରୟ କରି, କବଲା ଲେଖିଦେଇ, ପୁନର୍ବାର ସେହି ସମ୍ପତ୍ତି ଅନ୍ୟ ଜଣକୁ ବିକ୍ରୀ କରିବାକୁ ପ୍ରସ୍ତୁତ ହେଲେ, ସେଥିରେ ମଧ୍ୟ ଲୋକେ ଟଙ୍କା ଦେଉଅଛନ୍ତି । ସାଧାରଣତଃ ଲୋକଙ୍କର ବିଶ୍ୱାସ ଯେ, କୋର୍ଟ ଅଫ୍ ୱାର୍ଡ଼ସ୍‌ରେ ସମ୍ପତ୍ତି ରହିଲେ ଉତ୍ତମ ପ୍ରଣାଳୀରେ ପରିଚାଳନା ହୁଏ ଏବଂ ଜମିଦାରୀର ମୁନାଫାରୁ ଟଙ୍କା ଜମାହୁଏ । ମୁଁ ଜାଣେ ଏହି ଓଡ଼ିଶାରେ ଅନେକ ଜମିଦାରୀର ସଞ୍ଚିତ ଧନରେ କୋର୍ଟଅଫ୍ ୱାର୍ଡ଼ସ କମ୍ପାନୀ କାଗଜ କିଣିଥିଲେ । କେହି କେହି ଲକ୍ଷ ଲକ୍ଷ ଟଙ୍କାର କମ୍ପାନୀ କାଗଜ କୋର୍ଟ ଅଫ୍ ୱାର୍ଡ଼ସ୍ ହାତରୁ ପାଇଥିଲେ । ବର୍ତ୍ତମାନ ଲକ୍ଷ ଟଙ୍କାର କାଗଜର ମୂଲ୍ୟ ଷାଠିଏ ହଜାରରୁ ଅଧିକ ନୁହେଁ—ଏକ ସମୟରେ ୫୦ ହଜାର ହୋଇଯାଇଥିଲା । ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ୧୫ କୋଡ଼ି ଟଙ୍କା କରଜ କରିବା ନିମନ୍ତେ ପ୍ରସ୍ତୁତ ହୋଇ ବିଜ୍ଞାପନ ଦେଇଅଛନ୍ତି । ମୁଁ ନିଶ୍ଚୟ ଜାଣେ ଯେ ଏ ଟଙ୍କା ସମସ୍ତ ସାଧାରଣ ଲୋକେ ଦେଇ କମ୍ପାନୀ କାଗଜ କିଣିବେ । ଏ ଟଙ୍କା ଓ ଏଥିର ସୁଧ କିଏ ଦେବ ? ଲୋକମାନଙ୍କଠାରୁ ଗଭର୍ଣ୍ଣମେଣ୍ଟ ଆଦାୟ କରି ସୁଧ ଦେବେ

ଏବଂ ଅବଶେଷରେ ଅସଲ ପରିଶୋଧ କରିବେ । ଏଥିରେ ଲୋକଙ୍କର ବିଶ୍ୱାସ ପାଉଅଛୁ, କିନ୍ତୁ ଆଠହଜାର ଟଙ୍କା ଦେଇ ନିଜ ହାତରେ ସେ ଟଙ୍କାର ବ୍ୟବହାର କରିବାର କ୍ଷମତା ଥିଲେ ମଧ୍ୟ ଅବିଶ୍ୱାସ ହେଉଅଛୁ । ନିଜର ପ୍ରତି ଯାହାର ଅବିଶ୍ୱାସ ତାହାର ଅନ୍ୟ କାହାରି ପ୍ରତି ବିଶ୍ୱାସ ହେବାର ସମ୍ଭବ ନୁହେଁ ।" ବିଶମ୍ଵଦ, ମଧୁସୂଦନ ଦାସ ( ମଧୁବାବୁ )
କଟକ । ୩୦ । ୭ । ୧୯୨୪

ମଧୁବାବୁ ଏହି ବିବୃତିରେ ତତ୍କାଳୀନ ଦେଶର ଧନିକ ସମ୍ପ୍ରଦାୟ ଉପରେ ହିଁ ବିଶେଷ ଆଶା ରଖିଥିଲେ । ସର୍ବସାଧାରଣଙ୍କ ଭିତରୁ ବେଶିଲୋକ ଡିରେକ୍ଟର ହେବା ଭଳି ଯୋଗ୍ୟତା ହାସଲ କରିବାକୁ ଅଂଶ କିଣିବେ ବୋଲି ଆଶା ନଥିଲା । ମଧୁବାବୁଙ୍କ ବିବୃତି ଦୁର୍ବଳ ନଥିଲେ ମଧ୍ୟ ଏଥିରେ ହତାଶାର ଛାୟା ପଡ଼ିଥିବା ସ୍ପଷ୍ଟ ହେଉଛି ।

ମଧୁବାବୁଙ୍କ ବିବୃତିକୁ ସମର୍ଥନକରି ନିଜର ଏକ ବିବୃତି "ଉତ୍କଳ-ଟାନେରୀ" ଶିରୋନାମାରେ ପଣ୍ଡିତ ଗୋପବନ୍ଧୁ ଦାସ ପ୍ରକାଶ କରିଥିଲେ ।

( "ସମାଜ"—୨ । ୮ । ୧୯୨୪ ) ।

## "ଉତ୍କଳ ଟାନେରୀ"

"ଉତ୍କଳ ଟାନେରୀ ଓଡ଼ିଶାରେ ଏକ ବଡ଼ କାର୍ଯ୍ୟ । ଆଜିକାଲି ଅନେକ ଲୋକଙ୍କ ମନ ବ୍ୟବସାୟ ଆଡ଼କୁ ଗଲାଣି ସତ, ମାତ୍ର ଯେ ବ୍ୟବସାୟରେ ଦେଶର ବହୁ ସଂଖ୍ୟକ ଲୋକଙ୍କର ଜୀବିକା ନିର୍ବାହ ହେବ, ଦେଶର ଲୋକେ ଦେଶରେ ରହିବେ ଏବଂ ଦେଶର ଶିଳ୍ପ ଉନ୍ନତ ହେବା ସଙ୍ଗେ ସଙ୍ଗେ ବିଦେଶର ଧନ ଦେଶକୁ ଆସିବ, ସେପରି ବ୍ୟବସାୟରେ ଅତି ଅଳ୍ପ ଲୋକ ଉଦ୍ୟମୀହେବାର ଦେଖାଯାଏ । ଉତ୍କଳ ଟାନେରୀ ଦ୍ୱାରା ଦେଶର ଏହି ସବୁ ଶ୍ରେୟ ସାଧିତ ହେବ । ମଧୁବାବୁ ବହୁ ଅର୍ଥ, ସମୟ ଓ ଶକ୍ତି ବ୍ୟୟକରି ଉତ୍କଳ ଟାନେରୀକି ଦେଶ ବିଦେଶରେ ବିଖ୍ୟାତ କରାଇ ଅଛନ୍ତି । ଏହା ଓଡ଼ିଶା ପକ୍ଷେ ଏକ ଗୌରବ । ଓଡ଼ିଶାର ବୁଝିବା ସୁଝିବା ଲୋକେ ଟାନେରୀ ଓଡ଼ିଶା ଲୋକଙ୍କ ହାତରେ ରହିବାକୁ ଚାହିଁବେ, ସନ୍ଦେହ ନାହିଁ ଏହା ମୋର ଏକାନ୍ତ ଇଚ୍ଛା । ଉତ୍କଳ ଟାନେରୀ ବିଦେଶୀ ବ୍ୟବସାୟୀଙ୍କ ହାତକୁ ଯିବା ଉତ୍କଳବାସୀଙ୍କ ପକ୍ଷେ ବଡ଼ ନିନ୍ଦାର ବିଷୟ ହେବ । ତେଣୁ ପ୍ରସ୍ତାବିତ ଉତ୍କଳ ଟାନେରୀ କମ୍ପାନୀରେ ଅଂଶ ନେବା ଲାଗି ମୁଁ ପ୍ରତ୍ୟେକ ଉତ୍କଳବାସୀଙ୍କି ଅନୁରୋଧ କରୁଅଛି । ଏଥିମଧ୍ୟରେ ଯେଉଁମାନଙ୍କୁ ମୁଁ ଏ ବିଷୟରେ କହିଅଛି, ତାଙ୍କ ମଧ୍ୟରୁ ଅନେକେ ଟାନେରୀର ପରିଚାଳନାରେ ମୋର ସମ୍ପର୍କ ରହିବା ଚାହାନ୍ତି; ମାତ୍ର ବର୍ତ୍ତମାନ ମୁଁ ନାନା କାର୍ଯ୍ୟରେ ବ୍ୟସ୍ତ । ଏଣୁ ଟାନେରୀ ଲାଗି ଯାହା କରିବାର ଇଚ୍ଛା, ତାହା କରିପାରୁନାହିଁ । ନିର୍ଦ୍ଦିଷ୍ଟ ସଂଖ୍ୟକ ଅଂଶ ଉଠିବାପରେ ଟାନେରୀ ପରିଚାଳନାରେ ମୋର ସମ୍ପର୍କ ରହିବା ଯଦି ଅଂଶୀଦାରମାନେ ଚାହାନ୍ତି ତାହାହେଲେ ସେମାନଙ୍କ ଇଚ୍ଛା ଅନୁଯାଇ ସେତେବେଳେ ଯେ କୌଣସି କାର୍ଯ୍ୟଭାର ନେବା ନିମନ୍ତେ ମୁଁ ପ୍ରସ୍ତୁତ ଅଛି ।" ଗୋପବନ୍ଧୁ ଦାସ
କଟକ, ୨୮ । ୭ । ୧୯୨୪

ଏହି ସମ୍ପର୍କରେ 'ସମାଜ'ର ସମ୍ପାଦକୀୟ ସ୍ତମ୍ଭରେ ମଧ୍ୟ ୧।୮।୧୯୨୪ରେ ଏକ ଲେଖା ପ୍ରକାଶ ପାଇଥିଲା । ସମାଲୋଚକଙ୍କ ଏଥିରେ ଉତ୍ତର ଦିଆଯାଇଥିଲା । ଶ୍ରୀ ହରିହର ଦାଶ (ଆଚାର୍ଯ୍ୟ) ସେତେବେଳେ ସମାଜର ସମ୍ପାଦକ ଥିଲେ ।

## "ଉତ୍କଳ ଟାନେରୀ ଓ ମଧୁବାବୁ"

"ଜଗତସିଂହପୁର ଅଲକାଶ୍ରମର ଶ୍ରୀ ପ୍ରାଣକୃଷ୍ଣ ପଢ଼ିଆରୀ, ମଧୁବାବୁ ଓ ଉତ୍କଳ ଟାନେରୀ ବିଷୟରେ ଗୋଟିଏ ବଡ଼ ପ୍ରବନ୍ଧ ଲେଖି ପଠାଇଛନ୍ତି । ସେ ମଧୁବାବୁଙ୍କ ଜୀବନର ବହୁ ଦୋଷର ସମାଲୋଚନା କରି କହିଛନ୍ତି କି—"ମଧୁବାବୁ ଅରଟ କର, ସୂତା କାଟ ପ୍ରଭୃତି କହିଲେ ସୁଦ୍ଧା ଓଡ଼ିଶାର ଲୋକେ ଶୁଣି ନଥିଲେ; କିନ୍ତୁ ମହାତ୍ମା ଗାନ୍ଧି କହିବାରୁ ଲୋକେ ତାହା କରୁଛନ୍ତି ଏବଂ ଏଣିକି ବେଶି କରିବେ । ଏଥିରୁ ଜଣାଯାଉଛି ମଧୁବାବୁଙ୍କ କଥା ପ୍ରତି ଓଡ଼ିଶା ଲୋକଙ୍କର ଆସ୍ଥା ନାହିଁ । ମଧୁବାବୁ ମନ୍ତ୍ରୀ ଗ୍ରହଣ କଲେ; ଏହି ମନ୍ତ୍ରୀ ପଦ ପାଇ ୱିଲସ ଗେଜେଟରେ ମଦତ ପ୍ରଶଂସା ଗାଇଲେ, କନିକା ଗୋଲମାଲ ବେଳେ ସେ କିଛି କହିଲେ ନାହିଁ, ଏବେ କାଉନ୍‌ସିଲ୍ ମେମ୍ବର ଥାଇ କିଛି କରୁନାହାନ୍ତି; ବର୍ତ୍ତମାନର କନିକା ରାଜାଙ୍କୁ ସେ ଗଢ଼ିଛନ୍ତି, ଓଡ଼ିଶାରେ ଦମନନୀତି ଚଳୁଥିଲାବେଳେ ସେ ତାହାର ପ୍ରତିକାର କରିନାହାନ୍ତି; ସରକାରଙ୍କୁ ଏ ଦେଶରେ ଚିରକାଳ ରଖିବାପାଇଁ ସେ ମୂଳଦୁଆରେ ମାଟି ପକାଉଛନ୍ତି ଇତ୍ୟାଦି ।"

"ଏହାଛଡ଼ା ପଣ୍ଡିତ ଗୋପବନ୍ଧୁ ଦାଶ, ନୀଳକଣ୍ଠ ଦାଶ, ବାବୁ ଗୋପବନ୍ଧୁ ଚୌଧୁରୀ, ଭଗୀରଥି ମହାପାତ୍ର, ଯଦୁମଣି ମଙ୍ଗରାଜ, ବାବାଜୀ ରାମ ଦାସ ପ୍ରଭୃତି କଂଗ୍ରେସ କର୍ମୀମାନେ ଟାନେରୀ କାର୍ଯ୍ୟରେ ସାହାଯ୍ୟ କରୁଥିବାରୁ ସେ ଲେଖିଛନ୍ତି, "ମଧୁବାବୁ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀକୁ ଟ ୫ ଚାନ୍ଦା ଦେଇ କଂଗ୍ରେସର ଉଦ୍ଦେଶ୍ୟ ଗ୍ରହଣକରି ଦୁଇଦିନ ଖଦଡ଼ ପିନ୍ଧିଲେ ବୋଲି ଏମାନେ ମଧୁବାବୁଙ୍କର ଭକ୍ତ ହୋଇପଡ଼ି ଉତ୍କଳ ଟାନେରୀ ବିଷୟରେ ଗୋଟିଏ ପ୍ରସ୍ତାବ ସମ୍ମିଳନୀରେ ପାସ୍ କରାଇନେଲେ । ଏହାଦ୍ୱାରା ଆମ ଜାତିର ନୈତିକ ଜୀବନର କିଛି କ୍ଷତି ହେଉନାହିଁ କି ? ଏମାନେ ବର୍ତ୍ତମାନ ଉତ୍କଳ-ଟାନେରୀର ଅଂଶ ବିକ୍ରୟର ଚେଷ୍ଟା କରୁଅଛନ୍ତି । ମୁଁ ସେହିମାନଙ୍କୁ ପଚାରୁଛି, ଉତ୍କଳ ଟାନେରୀ ଉପରେ ବର୍ତ୍ତମାନ ଲୋକଙ୍କର ବିଶ୍ୱାସ ଜନ୍ମିଲାଣି, ନା ଲୋକମାନେ ଆପଣଙ୍କୁ ଗାନ୍ଧିଙ୍କ ପକ୍ଷର ଲୋକ ବୋଲି ବିଶ୍ୱାସ କରୁଥିବାରୁ ଆପଣମାନେ ତାଙ୍କ ଉପରେ ଏହା ଜବରଦସ୍ତି କରୁଅଛନ୍ତି ? ଆଉ ମଧ୍ୟ ଟାନେରୀଦ୍ୱାରା ଓଡ଼ିଆ ଜାତିର ଅର୍ଥ ସମସ୍ୟା ଘୁଞ୍ଚିବାର ବିଶ୍ୱାସ କରି ନା ମଧୁବାବୁଙ୍କ ମୋହନ କଥାରେ ପଡ଼ି ଆପଣମାନେ ଟାନେରୀର ଅଂଶ ବିକ୍ରୟ ନିମିତ୍ତ ଚେଷ୍ଟା କରୁଅଛନ୍ତି ? ଏହାଦ୍ୱାରା କେତେକ ପଇସାବାଲାଙ୍କର ଉପକାର ହେବାଛଡ଼ା ଦେଶର ଦରିଦ୍ର ଜନସାଧାରଣଙ୍କର କିଛି ଉପକାର ହେବ ବୋଲି ଆପଣମାନେ ବିଶ୍ୱାସ କରୁଛନ୍ତି କି ? ଆପଣମାନଙ୍କ ନୀତି (principle) ସହିତ ଏ

ଖାପ ଖାଉଛି କି ? ଯଦି ତା ନ ହୁଏ, ତେବେ ତାହାପାଇଁ କାମଧେନୁ (ଉତ୍କଳର ଦରିଦ୍ର ଓ ମଧ୍ୟବିତ୍ତ ଜନସାଧାରଣ ) କୁ ବୃଦ୍ଧିବାପାଇଁ ଆପଣମାନେ ବ୍ୟସ୍ତ କାହିଁକି ? ଇତ୍ୟାଦି ।"

"ପତ୍ରିଆଙ୍କର ଏ ସମାଲୋଚନା ପତ୍ରିକାରେ ସ୍ଥାନଦେଇ ସେ ବିଷୟରେ ବାରମ୍ବାର ଲେଖାଲେଖି ଚଳିବା ଆମ୍ଭମାନଙ୍କ ମତ ନୁହେଁ । ସେ ମଧୁବାବୁଙ୍କ ବ୍ୟକ୍ତିଗତ ଭାବରେ ଅନେକ ଦୋଷ ଦେଇଛନ୍ତି । ମଧୁବାବୁଙ୍କଠାରେ ଲୋକଙ୍କର ବିଶ୍ୱାସ ଅଛି କି ନାହିଁ, ସେ କାଉନସିଲର ଥାଇ ଲୋକପ୍ରତିନିଧି ଭାବରେ ତାଙ୍କର କର୍ତ୍ତବ୍ୟ କରିଛନ୍ତି କି ନାହିଁ; ଏ ବିଷୟରେ ସମାଲୋଚନା କରିବାର ବର୍ତ୍ତମାନ ସମୟ ନୁହେଁ । ମଧୁବାବୁ ଯେ ଓଡ଼ିଶା ସକାଶେ ଅନେକ କାର୍ଯ୍ୟ କରିଛନ୍ତି, ଏହା ଅସ୍ୱୀକାର କରିଯାଇ ନପାରେ ।

ସେ ଯାହାହେଉ, ଉତ୍କଳ ଟାନେରୀ ସହିତ ମଧୁବାବୁଙ୍କ ଯୋଗ୍ୟ ସେ ସମ୍ପର୍କରେ କଂଗ୍ରେସ ଲୋକଙ୍କୁ ଯେ ସମାଲୋଚନା କରାଯାଉଛି, ତାହା ଯଥାର୍ଥ ନୁହେଁ । ମଧୁବାବୁଙ୍କ ଭକ୍ତ ହୋଇ କଂଗ୍ରେସଲୋକମାନେ ଟାନେରୀ କାର୍ଯ୍ୟ କରୁନାହାନ୍ତି । ଉତ୍କଳ ଟାନେରୀ ଓଡ଼ିଶାର ଗୋଟିଏ ବଡ଼ କାରଖାନା ଆମ୍ଭେମାନେ ଯେତେଦୂର ଜାଣୁ ପୃଥିବୀ ମଧ୍ୟରେ ଏ ଜୋତା କାରଖାନାର ସୁନାମ ଓ ବିଶେଷତ୍ୱ ଅଛି । ଆଜି ଏ କାରଖାନା ମଧୁବାବୁଙ୍କର ହୋଇଛି, କାଲି କମ୍ପାନୀ ହେଲେ, ତାହା କମ୍ପାନୀ ହାତକୁ ବାହାରିଯିବ । ସେତେବେଳେ ମଧୁବାବୁଙ୍କର କୌଣସି କର୍ତ୍ତୃତ୍ୱ ରହି ନ ପାରେ । ଅଂଶୀଦାରମାନେ ଯାହାକୁ ମାରଫତ୍-ଦାର ନିଯୁକ୍ତ କରିବେ, ସେହିମାନେ ବୁଝାସୁଝା କରିବେ । ଆଜିକାଲି ସଭ୍ୟ ଯୁଗରେ ଏ ଚମଡ଼ା ବ୍ୟବସାୟ ଗୋଟିଏ ଉଚ୍ଚଧରଣର ବ୍ୟବସାୟ । ଆମ ଦେଶରେ ଚମଡ଼ା ଅମଦାନୀ ହୁଏ, ଆମ ଦେଶରେ ମଜୁରଦାର ଅଛନ୍ତି, ଆମ ଦେଶରେ ସାଧାରଣ ଲୋକେ ୮।୧୦ ଟଙ୍କା ଦେଇ ଅଂଶ କିଣିପାରିବେ । ସେହିମାନଙ୍କ ମତ ଅନୁସାରେ ପ୍ରତିନିଧିମାନେ କାରବାର ଚଳାଇବେ । ଏହାଦ୍ୱାରା ବିଦେଶରୁ ପଇସା ରୋଜଗାର ହୋଇ ଆସିବ । ଦେଶର ମଜୁରଦାରମାନେ ମଜୁରି ପାଇବେ ଏବଂ ଲାଭ ଦେଶ ଲୋକଙ୍କ ହାତରେ ରହିବ । ଏହାଦ୍ୱାରା କଂଗ୍ରେସ ନୀତି ବା principle ରେ କି ବାଧା ପଡ଼ିଲା ? ଓଡ଼ିଶାର ଏତେ ବଡ଼ ଗୋଟିଏ କାରଖାନା ବିଦେଶୀଙ୍କ ହାତକୁ ବାହାରିଯିବା ନିଶ୍ଚୟ ଓଡ଼ିଶା ଲୋକଙ୍କ ପକ୍ଷେ ଅସୁନ୍ଦର କଥା । ଓଡ଼ିଶାରେ ନୂତନ ଧରଣର କଳକାରଖାନା ବା ବ୍ୟବସାୟ ନାହିଁ । ଓଡ଼ିଶାର ଲୋକେ ଯୌଥ କାରବାରରେ ଶିକ୍ଷା ଲାଭ କରିନାହାନ୍ତି । ସେଥିଯୋଗୁଁ ଉତ୍କଳ ଟାନେରୀ କଥା ସେମାନଙ୍କୁ ଅଡ଼ୁଆ ଅଡ଼ୁଆ ଲାଗୁଛି । ଯେଉଁମାନେ ଶିକ୍ଷିତ, ଯୌଥ କାରବାରର ଲାଭ ଅଲାଭ ବୁଝୁଛନ୍ତି, ସେମାନେ ସାଧାରଣ ଲୋକଙ୍କୁ ଏ ବିଷୟରେ ବୁଝାଇବା ଉଚିତ । ଓଡ଼ିଶା ଲୋକଙ୍କର ଅନିଷ୍ଟ ହେବାପାଇଁ ଏକଥା କେହି କରୁନାହିଁ । ଉତ୍କଳଟାନେରୀ ଓଡ଼ିଶାର, ଉତ୍କଳ ଲୋକେ ଏହାକୁ ଚଳାଇବାଦ୍ୱାରା ନାନାଭାବରେ ଲାଭବାନ୍ ହେବେ— ଏହି ଉଦ୍ଦେଶ୍ୟରେ ଆମ୍ଭେମାନେ ଓ କଂଗ୍ରେସବାଲାମାନେ ଏହାକୁ ସମର୍ଥନ କରୁଛୁଁ । ଏ ବିଷୟରେ ବ୍ୟକ୍ତିବିଶେଷର ସମାଲୋଚନା କରି କାର୍ଯ୍ୟରେ ବାଧା ଦେବା ସଙ୍ଗତ

ନୁହେଁ । ଏ କାରବାରଦ୍ୱାରା ଦେଶର ମଙ୍ଗଳ ହେବ କି ନାହିଁ ଏବଂ ଏହା ଚଳାଇ ହେବ କି ନାହିଁ ଏହି ବିଷୟରେ ଚିନ୍ତା କରିବାର କଥା ।''

ଅଂଶ ବିକ୍ରୀପାଇଁ କମ୍ପାନୀର ନୋଟିସ ପ୍ରକାଶ ପାଇବାପରେ ଯେଉଁ ବିରୋଧ ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ତାହା ଆପେ ଆପେ କମି ଆସିଥିଲା । ବିଶିଷ୍ଟ କଂଗ୍ରେସ ନେତା, କଟକ ଜିଲ୍ଲାବୋର୍ଡ଼ର ଚେଆରମ୍ୟାନ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଅସ୍ଥାୟୀ ଡିରେକ୍ଟର ବୋର୍ଡ଼ରେ ସଭ୍ୟ ରହିଥିଲେ । ପ୍ରାଦେଶିକ ସମ୍ମିଳନୀ ସମର୍ଥନର ପ୍ରାୟ ଏକ ବର୍ଷ ପରେ ମଧ୍ୟ ଅଂଶୀଦାରମାନଙ୍କ ଭିତରୁ କାହାର କାହାର ମନରେ କମ୍ପାନୀର କାର୍ଯ୍ୟାବଳୀ ସମ୍ବନ୍ଧରେ ବିଶେଷ ବିବରଣ ଜାଣିବାକୁ ଇଚ୍ଛା ହୋଇଥିଲା । ବର୍ଷେ ତଳେ ଗୋପବନ୍ଧୁ ଦାସ କମ୍ପାନୀ ସମ୍ବନ୍ଧରେ ବିଶେଷ ଆଗ୍ରହ ଦେଖାଇଥିବାରୁ ତାଙ୍କର ପରାମର୍ଶ ଲୋଡ଼ି କେହି କେହି ତାଙ୍କଠାକୁ ପତ୍ର ମଧ୍ୟ ଲେଖୁଥିଲେ । ପ୍ରକୃତରେ ଏ ଭିତରେ ଗୋପବନ୍ଧୁ ଦାସ କମ୍ପାନୀର ସୁପରିଚାଳନା କିମ୍ବା ଅଂଶ ବିକ୍ରୀ ବିଷୟରେ ବିଶେଷ କିଛି କରିପାରି ନଥିଲେ । କେତେକ ଅସୁବିଧା ମଧ୍ୟ ଥିଲା । ପ୍ରଥମ ହେଲା, ସେ ଅଂଶ କିଣି ନଥିଲେ । ଏହି କାରଣରୁ ଅନ୍ୟ ଅଂଶୀଦାର ଡିରେକ୍ଟର ବା ପରିଚାଳକମାନେ ତାଙ୍କୁ ଜଣେ ସମର୍ଥକ 'ବାହାରର ଲୋକ' ବୋଲି ଭାବୁଥିଲେ । କମ୍ପାନୀ ସହିତ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସମ୍ପର୍କ ପରିଚାଳନା କ୍ଷେତ୍ରରେ ନିବିଡ଼ ନ ଥିବା ସେ ବ୍ୟକ୍ତ କରି ଏକ ବିବୃତି 'ସମାଜ'ରେ ୨୭ । ୭ । ୧୯୨୫ରେ ପ୍ରକାଶ କରିଥିଲେ ।

''ସମ୍ବଲପୁରର ସୁପରିଚିତ ଓକିଲ ଶ୍ରୀଯୁକ୍ତ ବାଲୁକେଶ୍ୱର ବରଗଡ଼ଠାରୁ ଉତ୍କଳ ଟାନେରୀ ସମ୍ବନ୍ଧେ 'ସମାଜ'ର ସମ୍ପାଦକ ଭାବରେ ମତେ ଯେ ପତ୍ର ଲେଖିଛନ୍ତି, ତାହା ଏଥର ସମାଜରେ ସ୍ଥାନାନ୍ତରେ ପ୍ରକାଶିତ ହୋଇଅଛି; ମାତ୍ର ଟାନେରୀର କାର୍ଯ୍ୟକଳାପ ବିଷୟରେ କିଛି ଜାଣି ପାରୁ ନଥିବାରୁ ମନରେ ଶଙ୍କା କରୁଛନ୍ତି । କେବଳ ସେ ନୁହନ୍ତି, ଆଉ କେହି କେହି ମଧ୍ୟ ଏପରିଭାବେ ମୌଖିକ ମୋ ଆଗେ ବ୍ୟକ୍ତ କରିଅଛନ୍ତି । ଉତ୍କଳ ଟାନେରୀ ସ୍ଥାୟୀ ହେଲେ ତଦ୍ଦ୍ୱାରା ଦେଶୀୟ ଶିଳ୍ପର ଉନ୍ନତି ହେବ, ଦେଶର ଶ୍ରମଜୀବୀ-ମାନଙ୍କୁ କାମ ମିଳିବା ସଙ୍ଗେ ସଙ୍ଗେ ଅଂଶୀଦାରମାନଙ୍କର ଅର୍ଥାଗମ ହେବ, ଏହି ଅଭିପ୍ରାୟରେ ମୁଁ ବ୍ୟକ୍ତିଗତ ଭାବରେ ଓ ସମାଜର ସମ୍ପାଦକୀୟ ସ୍ତମ୍ଭରେ ଟାନେରୀରେ ଅଂଶ ଖରିଦ କରିବା ନିମନ୍ତେ ଦେଶବାସୀଙ୍କୁ ଉତ୍ସାହିତ କରିଥିଲି ଏବଂ ପରାମର୍ଶଦେଇ-ଥିଲି । ଏବେ ସୁଦ୍ଧା ମୁଁ କହୁଛି, ଟାନେରୀ ଗୋଟିଏ ଭଲ କାର୍ଯ୍ୟ, ତାହାର ସ୍ଥାୟିତ୍ୱ ସର୍ବଥା ବାଞ୍ଛନୀୟ । ୧୯୨୪ ମସିହା, ଅଗଷ୍ଟ ୨ ତାରିଖ 'ସମାଜ'ରେ ମୋ ସ୍ୱାକ୍ଷରରେ ଏ ବିଷୟରେ ମୋର ଗୋଟିଏ ଲେଖା ବାହାରିଥିଲା । ସେଥିରେ ମୁଁ କହିଥିଲି—''ନିର୍ଦ୍ଦିଷ୍ଟ ସଂଖ୍ୟକ ଅଂଶ ଉଠିବା ପରେ ଟାନେରୀ ପରିଚାଳନାରେ ମୋର ସମ୍ପର୍କ ରହିବା ଯେବେ ଅଂଶୀଦାରମାନେ ଚାହାନ୍ତି ତାହାହେଲେ ସେମାନଙ୍କ ଇଚ୍ଛା ଅନୁଯାୟୀ ସେତେବେଳେ ଯେ କୌଣସି କାର୍ଯ୍ୟଭାର ନେବା ନିମନ୍ତେ ମୁଁ ପ୍ରସ୍ତୁତ ଅଛି ।'' ଟାନେରୀରେ ଡିରେକ୍ଟର

ହେବା ଭଳି ଅଂଶ କିଣିବାକୁ ମୋର ବଳ ନାହିଁ । ମୁଁ କିଛି ମାତ୍ର ଅଂଶ କିଣି ନାହିଁ । ମୁଁ ଅଂଶ କିଣୁଛି ବା କିଣିବି ବୋଲି କୌଣସିଠାରେ କହିନାହିଁ । ନିର୍ଦ୍ଦିଷ୍ଟ ସଂଖ୍ୟକ ଅଂଶ ବିକ୍ରୀହେବା ପରେ ଅଂଶୀଦାରମାନେ ମତେ କୌଣସି କାର୍ଯ୍ୟଭାର ଦେଇ ନାହାନ୍ତି । ଦେଇ ନାହାନ୍ତି ବୋଲି ମୁଁ ଦୁଃଖିତ ନୁହେଁ, ବରଂ ଖୁସି । କାରଣ, ଏବେ ପୁଞ୍ଜି ମୋର ସମସ୍ତର ଅଭାବ । ବିଶେଷତଃ ବ୍ୟବସାୟ ବୁଦ୍ଧି ବା କାରବାରରେ ଅଭିଜ୍ଞତା ମୋର ନାହିଁ । ତଥାପି ସେମାନେ କୌଣସି କାର୍ଯ୍ୟଭାର ଦେଇଥିଲେ ପୂର୍ବ ଅଙ୍ଗୀକାର ଅନୁସାରେ ବାଧ୍ୟ ହୋଇ ନେଇଥାନ୍ତି । ମୁଁ ଆଦୌ ଅଂଶ ଖରିଦ କରି ନଥିବାରୁ ଅଂଶୀଦାରମାନେ ଆଇନ ଅନୁସାରେ ମତେ ବୋଧହୁଏ କୌଣସି କାର୍ଯ୍ୟଭାର ଦେଇପାରି ନାହାନ୍ତି । ସେ ଯାହାହେଉ, ଟାନେରୀର କାର୍ଯ୍ୟ କିପରି ଚାଲୁଛି ଏବଂ ତାହାର ଭବିଷ୍ୟତ ପରିଚାଳନାର କି ବନ୍ଦୋବସ୍ତ ହେଉଛି ଏସବୁ ବିଷୟ ପ୍ରତ୍ୟେକ ଅଂଶ ଖରିଦ କରିଥିବା ବ୍ୟକ୍ତିଙ୍କର ବୁଝିବାର ଅଧିକାର ଅଛି ଏବଂ ଯେଉଁମାନେ କାର୍ଯ୍ୟ ପରିଚାଳନା କରୁଛନ୍ତି ସେମାନେ ଅଂଶୀଦାରମାନଙ୍କୁ ସମସ୍ତ ହାଲ ବୁଝାଇ ସେମାନଙ୍କର ସନ୍ଦେହ ତୁଟାଇବା ଉଚିତ ।

"ପ୍ରଥମବାର ଅଂଶ ନିରୂପଣ ପରେ କମ୍ପାନୀର ଡାଇରେକ୍ଟର ନିଯୁକ୍ତ ବେଳେ ସମସ୍ତ ଅଂଶୀଦାରମାନଙ୍କୁ ଉପସ୍ଥିତ ହେବା ଲାଗି ନୋଟିସ୍ ଦିଆଯାଇଥିବ । ଯେପରି ଦେଖାଯାଉଛି ବାଲୁକେଶ୍ୱର ବାବୁ ବା ଅନ୍ୟ କେହି କେହି ତାହା ପାଇନାହାନ୍ତି । ନ ପାଇଥିଲେ ସେମାନଙ୍କ ମନରେ ଆଶଂକା ହେବା ସ୍ୱାଭାବିକ । ଓଡ଼ିଶାରେ ସମବାୟ ଉଦ୍ୟମ ବା କମ୍ପାନୀଦ୍ୱାରା କାର୍ଯ୍ୟ ପରିଚାଳନା ଏକ ନୂତନ ବ୍ୟାପାର କହିଲେ ଚଳେ । ଲୋକେ ସେଥିରେ ଅଭ୍ୟସ୍ତ ହୋଇ ନାହାନ୍ତି ବା ସେ ସମ୍ପର୍କୀୟ ନିୟମ ଓ କାର୍ଯ୍ୟାବଳୀ ଜାଣି ନାହାନ୍ତି । ଟାନେରୀକୁ ସ୍ଥାୟୀ କରିବା ଉଦ୍ୟମର ସଫଳତା ଲାଗି ଅଂଶୀଦାରମାନଙ୍କୁ ଏ ପ୍ରତ୍ୟେକ କଥା ତନ୍ନ ତନ୍ନ କରି ବୁଝାଇବା ଦରକାର । ମୁଁ ଏଥିଲାଗି ଟାନେରୀର ଜନ୍ମଦାତା ଓ ଅଦ୍ୟାପି ଉଦ୍ୟୋକ୍ତା ମଧୁବାବୁଙ୍କୁ ଅନୁରୋଧ କରୁଅଛି । ଆଶାକରେ ଯେକୌଣସି ଅଂଶୀଦାର ଯେକୌଣସି ବିଷୟରେ ମଧୁବାବୁଙ୍କୁ ପତ୍ର ଦେଲେ ସେ ବିହିତ ଉତ୍ତର ଦେଇ ତାଙ୍କର ସନ୍ଦେହ ମୋଚନ କରିବେ । ଲୋକଙ୍କ ସନ୍ଦେହ ଦୂର ନହେଲେ, ଏ ଟାନେରୀ ପରିଚାଳନା ଲାଗି ସୁବିହିତ ବନ୍ଦୋବସ୍ତ ନ ହେଲେ, ଟାନେରୀ ତ ସ୍ଥାୟୀ ହେବନାହିଁ ଏବଂ ଭବିଷ୍ୟତକୁ ଏଭଳି କୌଣସି ବଡ଼ ରକମର ସମବାୟ ଅନୁଷ୍ଠାନ ମଧ୍ୟ ହୋଇ ପାରିବ ନାହିଁ । ଟାନେରୀର କର୍ତ୍ତାମାନଙ୍କ ଉପରେ ଏ ଦୁଇ ପ୍ରକାର ଦାୟିତ୍ୱ ରହିଅଛି । ଅଂଶ କିଣିଥିବା ଲୋକେ ନିଶ୍ଚିନ୍ତ ହୋଇ ନବସି କାର୍ଯ୍ୟରେ ତତ୍ତ୍ୱ ନିଅନ୍ତୁ । ଡିରେକ୍ଟରମାନେ ପରିଚାଳନା ପ୍ରତି ଦୃଷ୍ଟି ରଖନ୍ତୁ । ତାହାହେଲେ ଉଦ୍ୟମ ନିଶ୍ଚୟ କୃତକାର୍ଯ୍ୟ ହେବ ।"

ଗୋପବନ୍ଧୁ ଦାଶଙ୍କର ଏହି ବିବୃତି ମଧୁବାବୁଙ୍କ ଅନୁରୋଧରେ ମହାତ୍ମାଜୀ କଟକ ଆସି ଟାନେରୀ ପରିଦର୍ଶନ କରିବାର ପ୍ରାୟ ଏକ ମାସ ଆଗରୁ ପ୍ରକାଶିତ ହୋଇଥିଲା ।

ଗୋପବନ୍ଧୁ ଦାସ ଟାନେରୀ ନିମନ୍ତେ ଅଧିକ ଦେଖାଯିବା ଭଳି କିଛି କରିନାହାନ୍ତି, ଏହି ଅଭିଯୋଗ ଆସିଲେ ଉଠିପାରେ, ଏହି କାରଣରୁ ଏହାର କୈଫିୟତ୍ ସ୍ୱରୂପ ଏହି ବିବୃତି ପ୍ରକାଶ ପାଇଥିବାର ଅନୁମିତ ହୁଏ । ମହାତ୍ମା ଗାନ୍ଧି ଟାନେରୀ ପରିଦର୍ଶନ କରି ମଧୁବାବୁଙ୍କୁ ସବୁମତେ ସାହାଯ୍ୟ କରିବେ ବୋଲି କହିବା ପରେ ମଧ ଗୋପବନ୍ଧୁ ବାବୁ ବିଶେଷ କିଛି କରିପାରି ନାହାନ୍ତି । ରାଜନୈତିକ କାର୍ଯ୍ୟ ଓ ବନ୍ୟା ଦୁର୍ଭିକ୍ଷାଦିରେ ସାହାଯ୍ୟ-ଦାନ କାର୍ଯ୍ୟରେ ବେଶି ସମୟ ବ୍ୟସ୍ତ ରହିବାକୁ ପଡ଼ୁଥିବାରୁ ଗୋପବନ୍ଧୁ ଦାସ ଏଥି ପ୍ରତି ଦୃଷ୍ଟି ଦେବାପାଇଁ ବିଶେଷ ସମୟ ପାଇନାହାନ୍ତି, ଏହା ସ୍ପଷ୍ଟ । ତେବେ ସେ ଇଚ୍ଛା କରି-ଥିଲେ କିଛି କରିପାରି ଥାଆନ୍ତେ । ରାଜନୈତିକ କ୍ଷେତ୍ରରେ ସହକର୍ମୀମାନଙ୍କର ସମାଲୋଚନା ଓ କମ୍ପାନୀର ଉତ୍କଟ ସଙ୍କଟାପନ୍ନ ପରିସ୍ଥିତି, ଦ୍ୱିଧାର ମଧ କାରଣ ହୋଇପାରେ ।

**ମହାତ୍ମାଜୀଙ୍କ ଟାନେରୀ ପରିଦର୍ଶନ** : ମଧୁବାବୁ ମହାତ୍ମା ଗାନ୍ଧିଙ୍କ ସଙ୍ଗେ ଦେଖା କରି, ଟାନେରୀର ଅବସ୍ଥା ସମ୍ବନ୍ଧରେ ବୁଝାଇ, ଏ କ୍ଷେତ୍ରରେ ତାଙ୍କର ସାହାଯ୍ୟ ପ୍ରାର୍ଥନା କରିଥିଲେ ଏବଂ କଟକ ଆସି କାରଖାନା ପରିଦର୍ଶନ କରିବାକୁ ଅନୁରୋଧ କରିଥିଲେ । ବଙ୍ଗ ଭ୍ରମଣ ପରେ ୧୯୨୫ ଅଗଷ୍ଟ ୧୯ ତାରିଖ ଗୁରୁବାର ଭୋର ୪ଟା ବେଳେ ପୁରୀ ଏକ୍ସପ୍ରେସ୍ ଯୋଗେ ମହାତ୍ମା ଗାନ୍ଧି କଟକରେ ପହଞ୍ଚିଲେ । ତାଙ୍କ ସହିତ ତାଙ୍କ ସେକ୍ରେଟେରୀ ଶ୍ରୀ ମହାଦେବ ଦେଶାଇ, କଲିକତାର ବିଖ୍ୟାତ ମାରୁଆଡ଼ି ଓ ମହାଜନ ଶ୍ରୀଯୁକ୍ତ ରଙ୍ଗଲାଲ ମଧ ଆସିଥିଲେ । ଷ୍ଟେସନରେ ମହାତ୍ମାଜୀଙ୍କ ସ୍ୱାଗତ କରିବା ପାଇଁ ଉତ୍କଳ ଟାନେରୀର କେତେକ ଡିରେକ୍ଟର, ମଧୁବାବୁ, ଗୋପବନ୍ଧୁ ଦାସ ପ୍ରଭୃତି ବହୁ ଲୋକ ସମବେତ ହୋଇଥିଲେ । ଷ୍ଟେସନରେ ରେଲ ପହଞ୍ଚିବା ପରେ, ମହାତ୍ମାଜୀ ରେଲରୁ ଓହ୍ଲାଇବାବେଳେ ମଧୁବାବୁ ଓ ତାଙ୍କ ଟାନେରୀର କେତେକ ଡିରେକ୍ଟର ତାଙ୍କ ଗଳାରେ ଫୁଲମାଳ ଦେଇଥିଲେ । ଷ୍ଟେସନରୁ ମଧୁବାବୁ ଓ ଗୋପବନ୍ଧୁ ବାବୁଙ୍କ ସଙ୍ଗେ ମହାତ୍ମାଜୀ ମଧୁବାବୁଙ୍କ କୋଠିକୁ ଆସିଥିଲେ ଏବଂ ସେଠାରେ ଅବସ୍ଥାନ କରିଥିଲେ ।

ସକାଳ ସାଢ଼େ ଆଠଘଣ୍ଟା ସମୟରେ କଲିକତା ଖଦି ପ୍ରତିଷ୍ଠାନରେ ଶ୍ରୀଯୁକ୍ତ ସତୀଶଚନ୍ଦ୍ର ଦାସଗୁପ୍ତ ଏବଂ ମହାଜନ ରଙ୍ଗଲାଲ ଓ ମହାଦେବ ଦେଶାଇଙ୍କ ସହିତ ମହାତ୍ମା ଗାନ୍ଧି ଗୃହିଲଅଗଷ୍ଟକୁ ଟାନେରୀ ଦେଖିବାକୁ ଆସିଥିଲେ । କାରଖାନାର କଳ, କାର୍ଯ୍ୟପ୍ରଣାଳୀ ଓ ଅନ୍ୟାନ୍ୟ ବିଭାଗ ଦେଖିବାରେ ଏକ ଘଣ୍ଟା ବିତିଥିଲା । ତତ୍ପରେ ଟାନେରୀରେ କାମ କରୁଥିବା ଅସ୍ପୃଶ୍ୟ ଜାତିର କର୍ମୀମାନେ ଗାନ୍ଧିଜୀଙ୍କୁ ଗୋଟିଏ ଅଭିନନ୍ଦନ ପତ୍ର ଦେଇଥିଲେ ।

ଅଭିନନ୍ଦନ ପତ୍ରରେ ସେମାନେ ଉତ୍କଳର ଉଦାର ଜଗନ୍ନାଥ ସଂସ୍କୃତି ପ୍ରସଙ୍ଗ ବର୍ଣ୍ଣନା କରିବା ପରେ ଉତ୍କଳ ଟାନେରୀ ବିଷୟ ଉତ୍ଥାପନ କରିଥିଲେ । ସେମାନେ କହିଥିଲେ—"ଆପଣ ଏହି ଓଡ଼ିଶାକୁ ଆଜି ଆଖି ଆଗରେ ଯେପରି ଦେଖୁଅଛନ୍ତି,

ବାସ୍ତବକରେ ଏହା ଏପରି ନ ଥିଲା । ଓଡ଼ିଶାରେ ଜାତି ଧର୍ମର ବିଚାର ନଥିଲା । ଓଡ଼ିଶା ବୌଦ୍ଧ ଧର୍ମର ଲୀଳାଭୂମି ଥିଲା । ଆଜି ମଧ୍ୟ ନୀଳାଚଳ ଧାମ ଶ୍ରୀଜଗନ୍ନାଥ କ୍ଷେତ୍ରରେ ବ୍ରାହ୍ମଣ ଶୂଦ୍ର ଏକ ପାତ୍ରରେ ବସି ଭୋଜନ କରୁଅଛନ୍ତି । ଓଡ଼ିଶା ସମସ୍ତ ହିନ୍ଦୁ ଶ୍ରୀକ୍ଷେତ୍ରରେ ଏକତା ରଖି ପାରିଛି ବୋଲି ହିନ୍ଦୁମାନେ ଜଗତରେ ପୂଜ୍ୟ ହୋଇ ଅଛନ୍ତି ସତ୍ୟ, କିନ୍ତୁ ସେଠାରେ ମଧ୍ୟ ଆମ୍ଭମାନଙ୍କର ସ୍ଥାନ ନାହିଁ ।

ଆମ୍ଭେମାନେ ବିରାଟ ମାନବ ଜାତିର ହେଲେ ମଧ୍ୟ ଅସ୍ପୃଶ୍ୟ ଓ ଘୃଣ୍ୟ । ଜଗନ୍ନାଥ ପତିତପାବନ ନାମରେ ବିଶେଷରୂପେ ଲୋକରେ ପରିଚିତ । ଦୀନଦୁଃଖୀମାନଙ୍କ ଉଦ୍ଧାର କରିବା ତାଙ୍କର ପ୍ରିୟ କାର୍ଯ୍ୟ । ବୁଦ୍ଧ, କୃଷ୍ଣ, ଚୈତନ୍ୟ ପ୍ରଭୃତି ମହାପୁରୁଷମାନେ ଧର୍ମ ସଂସ୍ଥାପନ କାଳରେ ଏ ଉତ୍କଳଖଣ୍ଡକୁ ସେମାନଙ୍କର ଲୀଳାଭୂମି ନିରୂପିତ କରିଥିଲେ । ଆମ୍ଭେମାନେ ଆପଣଙ୍କୁ ସେହି ପଥର ପଥିକ ଦେଖି ହୃଦୟରେ ବହୁ ଆଶା ପୋଷଣ କରିଅଛୁ । ଆପଣ ଜାତିର କ୍ରନ୍ଦନ ସହି ନ ପାରି ଜୀବନର ସମସ୍ତ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ ଅଛନ୍ତି । ସେମାନଙ୍କୁ ରକ୍ଷା କରିବା ପାଇଁ ଈଶ୍ୱର-ଶକ୍ତି ହୃଦୟରେ ଧରି କେତେ ମହାପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ବହୁ ସାଧନା ପରେ ଶେଷରେ ଦେଶୀୟ ଶିଳ୍ପର ଉନ୍ନତିରେ ମନପ୍ରାଣ ଢାଳିଦେଇ ଅଛନ୍ତି । ଏହି ନବଦୀକ୍ଷାରେ ଅନୁପ୍ରାଣିତ ହୋଇ ଆଜି ଆପଣ କଟକକୁ ଉତ୍କଳ ଟାନେରୀ ଦେଖିବାପାଇଁ ଆସିଅଛନ୍ତି । ଗତ ୩୦ ବର୍ଷ ମଧ୍ୟରେ ଏ ଉତ୍କଳ ଟାନେରୀ ଆମ୍ଭମାନଙ୍କରେ ହସ୍ତ ଓ ଚକ୍ଷୁରେ ଶିଳ୍ପନୈପୁଣ୍ୟ ଶକ୍ତି ବଢ଼ାଇଅଛି ଏବଂ ଆମ୍ଭେମାନେ ଅଧିକ ଉପାର୍ଜନ କରିବାର କ୍ଷମତା ଲାଭ କରିଅଛୁ । ଆମ୍ଭମାନଙ୍କର ବିଶ୍ୱାସ ଯେ, ଉତ୍କଳ ଟାନେରୀର ଉନ୍ନତିଦ୍ୱାରା ଗୋମାତାର ରକ୍ଷା ହେବ । ଦେଶର ଆର୍ଥିକ ଅବସ୍ଥା ବଦଳିବ ଏବଂ ଶିଳ୍ପର ଉନ୍ନତି ସଙ୍ଗେ ସଙ୍ଗେ ଅସ୍ପୃଶ୍ୟତା ଲୋପ ପାଇବ । ଆପଣ ଶିଳ୍ପର ଉନ୍ନତି ଛଳେ ଆସି କଟକ ତଥା ଉତ୍କଳ ଖଣ୍ଡର ପତିତମାନଙ୍କ ପ୍ରତି ଯେ ଦୟା ଦେଖାଇଅଛନ୍ତି, ସେଥିନିମନ୍ତେ ଆମ୍ଭେମାନେ ହୃଦୟର ଭକ୍ତି ଓ ଶ୍ରଦ୍ଧା ଅର୍ପଣ କରୁଅଛୁ । ବଶମ୍ବଦ— ଉତ୍କଳ ଟାନେରୀ ଶ୍ରମିକଗଣ । କଟକ, ୧୯।୮।୧୯୨୫।"

ଅଭିନନ୍ଦନର ଉତ୍ତରରେ ମହାତ୍ମା ଗାନ୍ଧି ଅସ୍ପୃଶ୍ୟ ଶ୍ରମିକମାନଙ୍କୁ ସହାନୁଭୂତି ଦେଖାଇ ଆଶୀର୍ବାଦ କରିଥିଲେ । ଉତ୍କଳ ଟାନେରୀ ଭଳି କାରଖାନାରେ ଉଚ୍ଚବର୍ଣ୍ଣମାନଙ୍କ ସଙ୍ଗେ କାର୍ଯ୍ୟ କରିବାରେ ଅଛୁଆମାନଙ୍କ ପ୍ରତି ଅନ୍ୟମାନଙ୍କର ଘୃଣା ଦୂର ହେବ ଏବଂ ସେମାନଙ୍କର ଅବସ୍ଥା ଭଲ ହେବ ବୋଲି ମଧ୍ୟ ସେ କହିଥିଲେ ।

ମଧୁବାବୁ ଗାନ୍ଧିଜୀଙ୍କର ପୃଷ୍ଠପୋଷକତା ଆଶା କରିଥିଲେ । ଟାନେରୀକୁ ବଞ୍ଚାଇ ରଖିବା ପାଇଁ ମଧୁବାବୁଙ୍କ ବହୁ ଚେଷ୍ଟା ଭିତରେ ଏହା ଅନ୍ୟତମ । ଗାନ୍ଧିଜୀ ଏ ଦିଗରେ ଆନ୍ତରିକତାର ସହ ଯତ୍ନ କରିଥିଲେ । କଲିକତାଆଡ଼ୁ ମହାଜନ ରଙ୍ଗଲାଲ୍‌ଙ୍କୁ ମଧ୍ୟ ସାଙ୍ଗରେ ଆଣିଥିଲେ । ତାଙ୍କୁ ଟାନେରୀଟି ଦେଖାଇ ତାଙ୍କର ଦୃଷ୍ଟି ଆକର୍ଷଣ କରିବା ହିଁ ମହାତ୍ମାଜୀଙ୍କର ଇଚ୍ଛା ଥିଲା । ସଙ୍ଗରେ ସତୀଶଚନ୍ଦ୍ର ଦାସଗୁପ୍ତ ମଧ୍ୟ ଥିଲେ । ଏ ଶିଳ୍ପରେ ସେ

ମଧ୍ୟ ଜଣେ ଉଦ୍‌ଯୋକ୍ତା । ଚମଡ଼ା କଷାଇବା, ମଲା ଗୋରୁର ଚମଡ଼ାରେ ଜୋତା ପ୍ରସ୍ତୁତ କରିବା ବିଷୟରେ ତାଙ୍କର ମଧ୍ୟ ବହୁ ଅଭିଜ୍ଞତା ଥିଲା । ଏ ସମ୍ବନ୍ଧରେ ସେ ଗବେଷଣା ଓ ପରୀକ୍ଷା ମଧ୍ୟ କରୁଥିଲେ । ସେ ଜଣେ ପ୍ରଧାନ ଗାନ୍ଧିଭକ୍ତରୂପେ ପରିଚିତ ଥିଲେ । ସତୀଶବାବୁ ଓ ଶେଠୀ ରଙ୍ଗଲାଲ ଅନୁକୂଳ ମତ ଦେଲେ ଏ ଦିଗରେ ଅଧିକ କାର୍ଯ୍ୟ କରିଯିବା ମହାତ୍ମାଜୀଙ୍କ ଇଚ୍ଛା ଥିଲା । ମଧୁବାବୁଙ୍କ କାରଖାନାର ଆଦର୍ଶ, କାର୍ଯ୍ୟପ୍ରଣାଳୀ ପ୍ରଭୃତି ବିଷୟରେ ତନ୍ନ ତନ୍ନ ଅନୁସନ୍ଧାନ କରି ମହାତ୍ମାଜୀ ସନ୍ତୋଷ ଲାଭ କରିଥିଲେ; କିନ୍ତୁ ରାଜନୈତିକ କ୍ଷେତ୍ରରେ ସବୁବେଳେ ଲିପ୍ତରହୁଥିବାରୁ ଏଥି ପ୍ରତି ଯେତିକି ଦୃଷ୍ଟି ଦେବା କଥା, ତାହା କରିପାରି ନଥିଲେ । ତେବେ, ଏ ପ୍ରସଙ୍ଗ ସେ ଏକାବେଳକେ ପାସୋରି ଦେଇ ନଥିଲେ ।

୧୯୨୭ ନଭେମ୍ବର ମାସର ତାଙ୍କ ଇଂରେଜୀ ସାପ୍ତାହିକ "ୟଙ୍ଗ୍ ଇଣ୍ଡିଆ" କାଗଜରେ ମହାତ୍ମାଜୀ "ଗୋରକ୍ଷା" ସମ୍ବନ୍ଧରେ ଲେଖିବାବେଳେ ମଧୁବାବୁ ଓ ତାଙ୍କ ଟାନେରୀକୁ ମନେ ପକାଇଛନ୍ତି । ଗୋହତ୍ୟା ବିରୋଧୀ ମହାଜନମାନଙ୍କ ଦୃଷ୍ଟି ଉତ୍କଳ ଟାନେରୀ ପ୍ରତି ଆକର୍ଷଣ କରିବା ହିଁ ଏ ଲେଖାର ଉଦ୍ଦେଶ୍ୟ ।

## ଗୋରକ୍ଷା ( ଏମ୍.କେ.ଗାନ୍ଧି. )

"ଏହା ସତ୍ୟ ଯେ ବର୍ତ୍ତମାନ କଟା ଗୋରୁ ଗୁଳିରୁ ଚମଡ଼ା ତିଆରି ହେଉଛି; କିନ୍ତୁ ଗତ ଯୁଦ୍ଧ ସମୟରେ ଭାରତ ସରକାର ମଲା ଗୋରୁ ଗୁଳିରୁ ଭଲ ଚମଡ଼ା କରିବା ଉଦ୍ଦେଶ୍ୟରେ ପ୍ରଚୁର ଅର୍ଥ ବ୍ୟୟ କରିଥିଲେ । ଟାନେରୀ ବିଶେଷଜ୍ଞମାନେ ମୋତେ କହିଛନ୍ତି ଯେ କଟା ଗୋରୁ ଗୁଳିରୁ ଯେପରି ଚମଡ଼ା ପ୍ରସ୍ତୁତ ହୁଏ, ମଲା ଗୋରୁ ଗୁଳିରୁ ମଧ୍ୟ ସେହିପରି ହୋଇପାରିବ । ମୁଁ ନିଜେ ଏ ଦିଗରେ ପରୀକ୍ଷା ଚଳାଇଛି । କଟକ'ର ଶ୍ରୀ ମଧୁସୂଦନ ଦାସ ବହୁ ବର୍ଷ ହେଲା ଏହା କରାଉଛନ୍ତି ଓ ମୋତେ କହିଛନ୍ତି ଯେ ଏହା ସଫଳ ହୋଇଛି । କଲିକତା ସରକାରଙ୍କ ଗବେଷଣା କେନ୍ଦ୍ର ମଧ୍ୟ ଏ ପ୍ରକାର ପରୀକ୍ଷା ଚଳାଇଛନ୍ତି ।"

ମଧୁବାବୁ ନିଲାମ ରଦ୍ଦ କରିବା ପାଇଁ ଦରଖାସ୍ତ କରିଥିଲେ । ଅଂଶୀଦାରମାନେ ଆଶା କରୁଥିଲେ ପୁରୀ ରାଜା ଧର୍ମ ଦୃଷ୍ଟିରେ ଟାନେରୀକୁ ଛାଡ଼ିଦେବେ ଏବଂ ଫଳରେ ଅଂଶୀଦାରମାନେ ସେମାନଙ୍କର ଟଙ୍କା ଫେରସ୍ତ ପାଇବାର ପଥ ସୁଗମ ହୋଇଯିବ । ଯଦି ରାଜା ନିଜେ ଚଳାନ୍ତି, ତାହାହେଲେ ଅଂଶୀଦାରମାନେ କିଛି କିଛି ପାଇଯିବେ । ଏହି ଆଶା ମଧ୍ୟ କେହି କେହି ରଖିଥିଲେ ।

ପୁରୀ ରାଜା ଶ୍ରୀ ରାମଚନ୍ଦ୍ରଦେବ ୨।୨।୧୯୨୭ର 'ସମାଜ'ରେ ଏକ ପତ୍ର ଲେଖି ଅଂଶୀଦାରମାନଙ୍କୁ ଜଣାଇଥିଲେ—"ଉତ୍କଳ ଟାନେରୀ ନାମକ କାରଖାନା ମୁଁ ଖରିଦ କରିଛି । ମିଆଦ ପରେ ସେ ଖରିଦ ମଧ୍ୟ କାଏମ ହୋଇଛି । ଆପଣଙ୍କ କମ୍ପାନୀ ଯଦି ମୋ-ଠାରୁ ଟାନେରୀକୁ କିଣିବାକୁ ଇଚ୍ଛା କରନ୍ତି ମୁଁ ବିକ୍ରୀ କରିବାକୁ ପ୍ରସ୍ତୁତ ଅଛି । ଦରଦାମ ପରସ୍ପର ମଧ୍ୟରେ ବିଚ୍ଚାର କରି ତୁଟାଇବାକୁ ହେବ । ଅଂଶୀଦାରମାନେ ଏ କାରଖାନା

କିଣିବାକୁ ଇଚ୍ଛାକଲେ, ଏକ ସାଧାରଣ ବୈଠକରେ ଜଣେ କାହାକୁ କ୍ଷମତା ଦିଅନ୍ତୁ । ସେ ମୋ ସଙ୍ଗେ କଥାବାର୍ତ୍ତା କରି ଦରଦାମ ସ୍ଥିର କରିବେ । ବଶମ୍ବଦ । ସ୍ୱା ରାମଚନ୍ଦ୍ର ଦେବ, ରାଜା, ପୁରୀ ।" ( ସମାଜ ୨ । ୨ । ୧୯୨୭ )

ଏହା ପରେ କେତେକ ଅଂଶୀଦାର କଟକରେ ମିଳିତ ହୋଇ ରାଜାଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଉଦ୍ୟମ କରିଥିଲେ; କିନ୍ତୁ ଦେଖାଗଲା ଯେ କମ୍ପାନୀ କିଣିବାକୁ ହେଲେ ଆଉ ଏକଲକ୍ଷ ଟଙ୍କା ଆବଶ୍ୟକ ଏବଂ ଚଳାଇବା ପାଇଁ ପଚିଶ ତିରିଶି ହଜାର ଟଙ୍କା ଲାଗିବ । ଏତେ ଟଙ୍କା ଅଂଶୀଦାରମାନେ ଦେବା ସମ୍ଭବ ନଥିଲା । ଏ ଅବସ୍ଥା ଦେଖି 'ସମାଜ' ପୁଣି ପରାମର୍ଶ ଦେଇଥିଲେ—"ଏ ଅବସ୍ଥାରେ ପୁରୀ ମହାରାଜା ଓ ତାଙ୍କର ସହଯୋଗୀ ଅନ୍ୟାନ୍ୟ ନିଲାମ ଖରିଦାରମାନେ ନିଲାମ ଖରିଦର ଜରସମନ ଟଙ୍କାକୁ କମ୍ପାନୀର ଅଂଶଭୁକ୍ତ କରି କମ୍ପାନୀ ପକ୍ଷରୁ ଟାନେସ୍ରି ପରିଚାଳନାରେ ନେତୃତ୍ୱ ନେଲେ ସବୁ ସୁବିଧା ହୁଅନ୍ତା । ଏ ଦୁର୍ଦ୍ଦିନରେ କମ୍ପାନୀର ସ୍ଥାୟିତ୍ୱ ଦେଖିଲେ ମଧୁବାବୁ କିଞ୍ଚିତ ଆଶ୍ୱାସନା ପାଆନ୍ତେ ଏବଂ ଭବିଷ୍ୟତକୁ ଓଡ଼ିଶାରେ ସମ୍ମିଳିତ ବ୍ୟବସାୟର ଆଶା ଭରସା ରହନ୍ତା ।" × × ଏଥିରେ ସମାଜ ଲେଖିଥିଲେ, "କୁଳବୃଦ୍ଧ ମଧୁବାବୁ ଟାନେସ୍ରି ନିମନ୍ତେ ସର୍ବସ୍ୱ ବ୍ୟୟ କରି ଆଜି ପଥର ଭିକାରି ହୋଇ ବସିଛନ୍ତି । ସତ କହିଲେ, ଅନେକ ଅଂଶୀଦାର ଏବେ ନିରାଶ ହୋଇ ପ୍ରକାଶ୍ୟରେ ଓ ଅପ୍ରକାଶ୍ୟରେ ତାଙ୍କୁ ଦୋଷୁଛନ୍ତି । × × ଅନେକ ଦିନଯାଏ ଓଡ଼ିଶାରେ ସମ୍ମିଳିତ ବ୍ୟବସାୟ ଉଦ୍ୟମ ସ୍ଥଗିତ ହେବ ।" ( ସମାଜ ୧୮ । ୯ । ୧୯୨୭ )

କମ୍ପାନୀର ଅଂଶୀଦାରମାନେ ଅଧିକ ଟଙ୍କା ଉଠାଇ ନିଲାମ ଖରିଦାରମାନଙ୍କଠାରୁ ଟାନେସ୍ରି କିଣି ନେବାର ଯେଉଁ ଉଦ୍ୟମ ଚାଲିଥିଲା, ତାହା କିଛି ହେଲାନାହିଁ । ନିଲାମଦାରମାନେ କମ୍ପାନୀ ଚଳାଇଲେ ।

ମହାତ୍ମା ଗାନ୍ଧିଙ୍କ ଆଶ୍ୱାସନା, କଂଗ୍ରେସର ସମର୍ଥନ, ନିଜର ବ୍ୟକ୍ତିଗତ ଚେଷ୍ଟା ସତ୍ତ୍ୱେ ମଧୁବାବୁ ଟାନେସ୍ରିକୁ ରକ୍ଷା କରିପାରିଲେ ନାହିଁ । ସେ ଯେଉଁ ଲକ୍ଷ ଲକ୍ଷ ଟଙ୍କା ଏଥିରେ ଖଟେଇ ଥିଲେ, ତାହା ପାଣିରେ ପଡ଼ିଲା । ମଧୁବାବୁ ଦାଣ୍ଡର ଭିକାରି ହେଲେ । ବୃଦ୍ଧ ବୟସରେ ତାଙ୍କର ଏ ଆର୍ଥିକ ପରିସ୍ଥିତି ତାଙ୍କୁ ଏକାବେଳେ ପଙ୍ଗୁ କରିଦେଲା ।

ଓଡ଼ିଶାର ସମବାୟ କ୍ଷେତ୍ର ମଧ୍ୟ ଅନୁର୍ବର ହୋଇ ପଡ଼ି ରହିଲା । 'ସମାଜ'ର ଆଶଙ୍କା—"ଅନେକ ଦିନ ଯାଏ ଓଡ଼ିଶାରେ ସମ୍ମିଳିତ ବ୍ୟବସାୟ ଉଦ୍ୟମ ସ୍ଥଗିତ ହେବ" ସତ୍ୟରେ ପରିଣତ ହେଲା । ମଧୁବାବୁ ତ କରିପାରିଲେ ନାହିଁ, ତୁମେ କଣ ପାରିବ ?"—ଏହି ହତାଶାର କଥା ଓଡ଼ିଶାର ପ୍ରତି କୋଣରେ ସମବାୟ ବ୍ୟବସାୟର ଉଦ୍ୟମୀମାନଙ୍କୁ ବହୁକାଳ ଶୁଣିବାକୁ ହୋଇଥିଲା । ମଧୁବାବୁ ବୃଦ୍ଧ ବୟସରେ ସର୍ବସ୍ୱାନ୍ତ ହୋଇ ଦେବାଳିଆ ( insolvent ) ଘୋଷଣା କରିବାପାଇଁ ( ୧୯୨୭ )ରେ ବାଧ୍ୟ ହୋଇଥିଲେ । କାହାର

କାହାର ମତରେ ମଧୁବାବୁ ଆଦର୍ଶଦ୍ୱାରା ଅନୁପ୍ରାଣିତ ହୋଇଥିଲେ ସିନା, ବରଂ ବାସ୍ତବତା ପ୍ରତି ସଜାଗ ନ ଥିଲେ । ତାଙ୍କର କୃଷି ଓ ଶିଳ୍ପ କ୍ଷେତ୍ରରେ ସବୁ କ୍ଷେତ୍ରରେ ସବୁ ଉଦ୍ୟମ ଆଦର୍ଶ ପ୍ରତିଷ୍ଠା ଦିଗରେ ନିୟୋଜିତ ହୋଇଥିଲା । ପରିଚାଳନା, ଲାଭ କ୍ଷତି ପ୍ରଭୃତି ଦିଗରେ ସେ ବିଶେଷ ଧ୍ୟାନ ଦେଇ ନ ଥିଲେ । ଦିନେ ଦିନେ ସେ ହଜାର ହଜାର ଟଙ୍କାର ଜୋତା ପୋଡ଼ି ଜାଳି ନଷ୍ଟ କରିଦେଇଛନ୍ତି । ଜୋତାର ମାନ ଉଚ୍ଚକୋଟୀର ଥିଲା । ଏହି କାରଣରୁ ତାଙ୍କ ଉତ୍କଳ ଟାନେରୀ ଜୋତାର ନାମ ଥିଲା । ଜୋତାର ମାନ କମିବାର ଦେଖିଲେ ସେ ବିରକ୍ତ ହେଉଥିଲେ ଏବଂ କ୍ଷତି ପ୍ରତି ଦୃଷ୍ଟି ନଦେଇ ସବୁ ଜୋତାକୁ ନଷ୍ଟ କରିଦେଉଥିଲେ । ଟାନେରୀ ଜୋତାକୁ ବର୍ଷିକିଆ ଗ୍ୟାରେଣ୍ଟି ଦିଆଯାଉଥିଲା । ଜୋତା ଖରାପ ଥିବା ତାଙ୍କୁ କିଏ ଦେଖାଇଦେଲେ ମଧୁବାବୁ ସେ ଛେକରେ ତିଆରି ହୋଇଥିବା ସବୁ ଜୋତାକୁ ପୋଡ଼ିଦେଇ କହୁଥିଲେ, "ମିଃ ଦାସଙ୍କ ଜୋତା ତାହାର ଉତ୍କର୍ଷ ପାଇଁ ଗୌରବ ଓ ନାମ ଲାଭ କରିଛି । ମାନ ଗଲେ ନାମ ଗଲା, ନାମ ଗଲେ ସବୁ ଗଲା ।' କିନ୍ତୁ ଯେଉଁ ଜିନିଷ ସବୁ ସେ ନଷ୍ଟ କରିଦେଉଥିଲେ, ତାହା ମଧ୍ୟ ବଜାରରେ ପ୍ରଥମ ଶ୍ରେଣୀର ସମକକ୍ଷ ବୋଲି ବିବେଚିତ ହେବା ଯୋଗ୍ୟ ଥିଲା ଏବଂ ଅକ୍ଳେଶରେ ମଧ୍ୟ ବିକ୍ରୀ ହୋଇପାରିଥାଆନ୍ତା । ଜିନିଷର ଉଚ୍ଚ ମାନ ରକ୍ଷା କରିବାକୁ ଯାଇ ସେ ହଜାର ହଜାର ଟଙ୍କାର ପଦାର୍ଥ ନଷ୍ଟ କରିଦେଇଥିଲେ ।

ତାଙ୍କର କେତେକ ବନ୍ଧୁଙ୍କ ମତରେ 'ଅତିମାନେଚ କୌରବାଃ' ଅତି ମାନରେ କୌରବମାନେ ନଷ୍ଟ ହେଲାପରି ଅତି ମାନରକ୍ଷାର ବ୍ୟାକୁଳତା ମଧୁବାବୁଙ୍କ ଶିଳ୍ପ ଉଦ୍ୟମକୁ ଧ୍ୱଂସ କରିଦେଇଥିଲା । ଏହି ସମ୍ପର୍କରେ ପାରେଶ୍ୱର ମହାନ୍ତିଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ—"However intensely a man may feel for his country, it is not possible for any body to change the economic condition of a nation with his individual resources. Mr. Madhusudan Das attempted it, and though he inspired a new spirit in various local industries, it caused his ruin without any appreciable change in the condition of his countrymen." "ଜଣେ ଲୋକ ନିଜ ଜାତିପାଇଁ ଯେତେ ଚିନ୍ତାକଲେ ମଧ୍ୟ ଜାତିର ଆର୍ଥିକ ଅବସ୍ଥାର ଉନ୍ନତି କେବଳ ନିଜର ବ୍ୟକ୍ତିଗତ ପ୍ରଚେଷ୍ଟା ଓ ପୁଞ୍ଜିଦ୍ୱାରା ସମ୍ଭବ ନୁହେଁ । ମଧୁସୂଦନ ଦାସ ଏହି ଉଦ୍ୟମ କରିଥିଲେ ଏବଂ ବହୁ ସ୍ଥାନୀୟ ଶିଳ୍ପକ୍ଷେତ୍ରରେ ନୂତନ ଚେତନା ଜାଗ୍ରତ କରିପାରି ଥିଲେହେଁ, ସେ ସମୂହଭାବରେ ଜାତିର ଆର୍ଥିକ ଅବସ୍ଥାରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣିପାରି ନ ଥିଲେ; କିନ୍ତୁ ଏହି ଉଦ୍ୟମ ତାଙ୍କୁ ସର୍ବସ୍ୱାନ୍ତ କରିଦେଇଥିଲା ।" ପାରେଶ୍ୱରବାବୁ କଟକର ଜଣେ ଉଚ୍ଚକୋଟୀର ଓକିଲ, ସେ ସରକାରୀ ଓକିଲ ମଧ୍ୟ ଥିଲେ । ସେ କିଛିକାଳ ମଧୁବାବୁଙ୍କ ଜୁନିଅର୍ ବି ଥିଲେ । ସମ୍ମିଳନୀ ଆରମ୍ଭର ପ୍ରଥମାବସ୍ଥାରେ ପାରେଶ୍ୱରବାବୁ ମଧୁବାବୁଙ୍କ ହାତବାରିସି ଥିଲେ କହିଲେ ଚଳେ । ପାରେଶ୍ୱର ବାବୁ ଅତି ଶାନ୍ତ, ଭଦ୍ର ଓ ମେଧାବୀ ଓକିଲ ଥିଲେ ।

ଓଡ଼ିଆରେ କମ୍ବା ଇଂରେଜୀରେ ହାତରେ ବେଶି ସମସ୍ତ ଲେଖିବା ଅଭ୍ୟାସ ମଧୁବାବୁଙ୍କର ନଥିଲା । ସେ ଡାକ ଦେଉଥିଲେ, ପାରେଶ୍ୱର ବାବୁ ଲେଖୁଥିଲେ । ଏପରି ବହୁ ଲେଖାରେ ମଧୁବାବୁଙ୍କୁ ସେ ସାହାଯ୍ୟ କରୁଥିଲେ । ସେ ମଧୁବାବୁଙ୍କର ଜଣେ ବିଶିଷ୍ଟ ହିତାକାଙ୍‌କ୍ଷୀ ଓ ଅନ୍ତରଙ୍ଗ ସହକର୍ମୀ ଥିଲେ ଏବଂ ତାଙ୍କୁ ଗୁରୁଭଳି ମାନୁଥିଲେ ।

ମଧୁବାବୁ ଓଡ଼ିଶାର ପ୍ରାଚୀନ ଶିଳ୍ପ ହାତକଟା ସୂତା ବୟନ ଶିଳ୍ପର ପୁନରୁଦ୍ଧାର ପାଇଁ ମଧ୍ୟ ଚେଷ୍ଟା କରୁଥିଲେ । ହାତକଟା ସରୁ ସୂତାର ଲୁଗା ଓ ଚଦରର ବ୍ୟବହାର ଯେପରି ବୃଦ୍ଧିପାଇବ ଏବଂ ଏହି ଲୁଗାର ଆଦର ଯେପରି ଦେଶ ବିଦେଶରେ ବୃଦ୍ଧି ଲାଭ କରିବ, ତାହାର ଉଦ୍ୟମ ମଧ୍ୟ କରିଥିଲେ । ଦେଶରେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ମଧୁବାବୁ ଏ ଦିଗରେ ଅଗ୍ରସର ହୋଇଥିଲେ ଏବଂ ସମଗ୍ର ଭାରତ ବର୍ଷରେ ଏ ବିଷୟରେ ପ୍ରଧାନ ଅଗ୍ରଣୀ ଥିଲେ । ସୂତାକଟା ଲୁଗାବୁଣା ଶିକ୍ଷା ଦେବାପାଇଁ ମଧ୍ୟ ସେ ବ୍ୟବସ୍ଥା କରିଥିଲେ । କେତେଜଣ କର୍ମୀ ପ୍ରଚାର କାର୍ଯ୍ୟ ମଧ୍ୟ କରିଥିଲେ ଓ ବିଦ୍ୟାର୍ଥୀମାନେ ଶିକ୍ଷାଲାଭ କରିବାର ସୁବିଧା ମଧ୍ୟ ପାଇଥିଲେ ।

ତାରକସି ଓ ଅଳଙ୍କାର ତିଆରି ସମ୍ବନ୍ଧରେ ବିଶେଷ ଜ୍ଞାନ ଅର୍ଜନ କରିବାକୁ ବହୁ ସ୍ୱର୍ଣ୍ଣକାର ଓ ଶିକ୍ଷାର୍ଥୀଙ୍କୁ ସୁବିଧା ଦିଆଯାଇଥିଲା । ଏହି ବ୍ୟବସାୟ ସହିତ ସଂପୃକ୍ତ ବହୁ କାରିଗର ମଧୁବାବୁଙ୍କ 'ଓଡ଼ିଶା ଅଳଙ୍କାର କାରଖାନା' (Orissa Art Wares)ରେ ଶିକ୍ଷାଲାଭକରି ସ୍ୱ ବ୍ୟବସାୟର ଉନ୍ନତି ସାଧନ କରିଥିଲେ ।

**ଖ୍ରୀ:୧୯୦୬ରେ ଉତ୍କଳ ସମ୍ମିଳନୀ ଅଧିବେଶନ :** ୧୯୦୬ ଅପ୍ରେଲ ମାସରେ ବାଲେଶ୍ୱରଠାରେ ଉତ୍କଳ ସମ୍ମିଳନୀର ତୃତୀୟ ଅଧିବେଶନରେ ମଧୁବାବୁ ଯୋଗଦେଇ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

**ସୁରେନ୍ଦ୍ରନାଥଙ୍କ ଗିରଫରେ ପ୍ରତିବାଦ :** ଅପ୍ରେଲ ମାସରେ ବଙ୍ଗନେତା ସୁରେନ୍ଦ୍ରନାଥ ବେନାର୍ଜୀଙ୍କୁ ସରକାର ବଙ୍ଗଭଙ୍ଗ ଆନ୍ଦୋଳନ ସମ୍ପର୍କରେ ଗିରଫ କରି ଫୌଜଦାରି ଅଦାଲତରେ ଦଣ୍ଡାଦେଶ ଦେବାରୁ ଦେଶବ୍ୟାପୀ ପ୍ରତିବାଦ ହୋଇଥିଲା । କଟକରେ ମଧ୍ୟ ପ୍ରତିବାଦ ସଭା ହୋଇଥିଲା ଏବଂ ମଧୁବାବୁ ଏହି ସଭାରେ ସୁରେନ୍ଦ୍ରନାଥଙ୍କ କାର୍ଯ୍ୟକୁ ବିଶେଷ ପ୍ରଶଂସା କରିଥିଲେ ।

**ଘରପୋଡ଼ି ସାହାଯ୍ୟ :** ଜୁନ୍ ମାସରେ କଟକ ସହରରେ କେତେକ ଘର ପୋଡ଼ି ଯାଇଥିଲା । ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବାପାଇଁ ମଧୁବାବୁଙ୍କ ଉଦ୍ୟମରେ ଏକ ସାହାଯ୍ୟ କମିଟି ଗଠନ କରାଯାଇ ସାହାଯ୍ୟ ବଣ୍ଟନ କରାଯାଇଥିଲା ।

**ଚିନ୍ତାମଣିଙ୍କୁ ସମ୍ବର୍ଦ୍ଧନା :** ଜୁଲାଇ ମାସରେ ଉତ୍ତର ପ୍ରଦେଶର ବିଖ୍ୟାତ ଉଦାରପନ୍ଥୀ ନେତା ଚିରୁରୁ ଯଜ୍ଞେଶ୍ୱର ଚିନ୍ତାମଣି ( C. Y. Chintamani ) ଙ୍କ କଟକ ଆଗମନ ଉପଲକ୍ଷେ ଏକ ସଭା ଉତ୍କଳ ସଭା ପକ୍ଷରୁ ଆହୂତ ହୋଇଥିଲା । ମଧୁବାବୁ ସ୍ୱଦେଶୀ ଶିଳ୍ପର

ପ୍ରସାର ସମ୍ବନ୍ଧରେ କେତେକ କଥା କହିଥିଲେ । ସେତେବେଳେ ଚନ୍ଦ୍ରାମଣି କଂଗ୍ରେସର ଜଣେ ପ୍ରଧାନ ନେତା ଥିଲେ । ସେ ଆଲହାବାଦର ଇଂରେଜୀ ସମ୍ବାଦପତ୍ର **'ଲିଡର'** ( **Leader** ) ର ସମ୍ପାଦକ ଥିଲେ ।

**ବ୍ରହ୍ମପୁରରେ ଉତ୍କଳ ସମ୍ମିଳନୀ ଅଧିବେଶନ :** ଡିସେମ୍ବର ମାସରେ ବ୍ରହ୍ମପୁରରେ ଅନୁଷ୍ଠିତ ଉତ୍କଳସମ୍ମିଳନୀର ଅଧିବେଶନରେ ମଧୁବାବୁ ଯୋଗ ଦେଇଥିଲେ ।

**ଛୋଟ ଶିଳ୍ପ ଉନ୍ନତିର ଯୋଜନା :** ବଙ୍ଗ ବ୍ୟବସ୍ଥାପକ ସଭାରେ ଝୋଟ ଆଇନ୍ ସଂଶୋଧନ ବିଲ୍ ସରକାର ଆଗତ କରିଥିଲେ । ମଧୁବାବୁ ଓଡ଼ିଶାରେ ଝୋଟ ଚାଷର ପ୍ରସାର, ଉତ୍ପାଦନ ଓ ବିକ୍ରୟ ସମ୍ବନ୍ଧରେ ଏକ ଯୋଜନା ଉପସ୍ଥାପିତ କରିଥିଲେ ଏବଂ ଉନ୍ନତ ଧରଣର ଝୋଟ ଚାଷପାଇଁ ଓଡ଼ିଶା ସରକାର ବ୍ୟବସ୍ଥା ଗ୍ରହଣ କରିବା ଆବଶ୍ୟକ ବୋଲି ଦର୍ଶାଇଥିଲେ ।

## ୧୯ । ଦ୍ୱିତୀୟ ଥର ବିଲାତ ଯାତ୍ରା

ମଧୁବାବୁ ୧୯୦୭ ମସିହା ଜୁନ୍ ମାସର ଆରମ୍ଭରେ (୩ ତାରିଖରେ) ବିଲାତ ଯିବା ସ୍ଥିର ହୋଇଥିବା ସମ୍ବାଦ ପ୍ରଚାରିତ ହୋଇଥିଲା । ତାଙ୍କର ସ୍ୱାସ୍ଥ୍ୟର ଉନ୍ନତି ନିମନ୍ତେ ବିଲାତ ଯାଉଥିବାରୁ ତାଙ୍କ ଅନୁପସ୍ଥିତିରେ ଉତ୍କଳ ସମ୍ମିଳନୀର କାର୍ଯ୍ୟ ତୁଲାଇବାପାଇଁ କେତେ ମାସ ଆଗରୁ ସେ ବ୍ୟବସ୍ଥା କଲେ । ସେ ସମ୍ମିଳନୀର ସମ୍ପାଦକ ଥିଲେ । ଶ୍ରୀ ରାମଶଙ୍କର ରାୟଙ୍କଠାରେ ସମ୍ପାଦକ ଭାର ନ୍ୟସ୍ତକରି ମଧୁବାବୁ ସମ୍ମିଳନୀ କାର୍ଯ୍ୟରୁ ମୁକ୍ତ ହୋଇଥିଲେ । ମଇ ମାସ ୨୬ ତାରିଖ ଦିନ କଟକ ଟାଉନ୍ ଲାଇବ୍ରେରି ହଲ୍‌ରେ ଉତ୍କଳ ସମ୍ମିଳନୀ କାର୍ଯ୍ୟକାରୀ ସମିତିର ଗୋଟିଏ ଅଧିବେଶନ ହୋଇଥିଲା । ସେଥିରେ ସର୍ବସମ୍ମତିକ୍ରମେ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ସମ୍ପାଦକ ମନୋନୀତ ହୋଇଥିଲେ । ରାମଶଙ୍କର ବାବୁ ଏହି ସମ୍ପାଦକ ଦାୟିତ୍ୱ ତୁଲାଇବାକୁ ସୁବିଧା ନଥିବା ଜଣାଇ ଇସ୍ତଫା ଦେଇଥିବାରୁ ଏ ନିର୍ବାଚନ ହୋଇଥିଲା ।

ବିଲାତକୁ ଯିବାପୂର୍ବରୁ ମଧୁବାବୁଙ୍କୁ ବାଲେଶ୍ୱରର ଜାତୀୟ ସଭା ତାଙ୍କୁ ସେହି ସଭାର ପ୍ରତିନିଧି ମନୋନୀତ କରିଥିଲେ ଏବଂ ବିଲାତରେ କର୍ତ୍ତୃପକ୍ଷଙ୍କୁ ଓଡ଼ିଶାର ଦୁଃଖ ଓ ଅଭାବ ଜଣାଇବେ ବୋଲି ଆଶା ପ୍ରକାଶ କରିଥିଲେ । କନିକାର ରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ମଧୁବାବୁଙ୍କର ସହଯାତ୍ରୀ ଥିଲେ ।

ମଇମାସ ୨୬ ତାରିଖରେ ଗଞ୍ଜାମର ବ୍ରହ୍ମପୁରର ଓଡ଼ିଆ ପ୍ରାଇମେରୀ ସ୍କୁଲ୍ ଘରେ ଅପରାହ୍ଣରେ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣଙ୍କ ସଭାପତିତ୍ୱରେ ଏକ ସଭା ହୋଇଥିଲା ।

ମଧୁବାବୁ ଏବଂ ଉତ୍କଳ ସମ୍ମିଳନୀର ଗତ ବ୍ରହ୍ମପୁର ଅଧିବେଶନର ସଭାପତି କନିକା ରାଜା ବିଲାତ ଯାଉଥିବାରୁ ସେମାନଙ୍କର ମଙ୍ଗଳକାମନା କରାଯାଇଥିଲା । ମଧୁବାବୁଙ୍କ ସମ୍ବନ୍ଧରେ ପ୍ରସ୍ତାବ ହୋଇଥିଲା—"ଉତ୍କଳ ସମ୍ମିଳନୀର ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ. ଇଂଲଣ୍ଡ ଯାତ୍ରା କରୁଥିବାରୁ ତାଙ୍କର ଯାତ୍ରା ଓ ବାହୁଡ଼ା ଶୁଭରେ ସମ୍ପନ୍ନ ହେଉ ଏହି କାମନା କରୁଛନ୍ତି । ମଧୁବାବୁଙ୍କଠାରେ ଗଞ୍ଜାମ ଓଡ଼ିଆଙ୍କର ପୂର୍ଣ୍ଣ ବିଶ୍ୱାସ ଅଛି । ଏମାନଙ୍କର ସେ ସବୁବେଳେ ଓ ଏବେ ମଧ୍ୟ କ୍ଷମତାପନ୍ନ ସର୍ବଶ୍ରେଷ୍ଠ ନେତା ।"

ମଧୁବାବୁ ଉତ୍କଳ ସମ୍ମିଳନୀର ସାଧାରଣ ସମ୍ପାଦକ ଓ କନିକାରାଜା ସଭାପତିଥିବାରୁ ଓଡ଼ିଶା ଦେଶମିଶ୍ରଣ ଓ ଓଡ଼ିଆଙ୍କର ଅଭାବ ଅସୁବିଧା କଥା ବିଲାତରେ କର୍ତ୍ତୃପକ୍ଷଙ୍କୁ ଜଣାଇବା ଅଧିକାର ସେମାନଙ୍କର ଥିଲା । ବାଲେଶ୍ୱର ଓ ଗଞ୍ଜାମର ପ୍ରସ୍ତାବ ସେମାନଙ୍କର ହାତମୁଠାକୁ ଅଧିକ ଟାଣକରି ଦେଇଥିଲା ଏବଂ ଉପାନ୍ତର ଅଞ୍ଚଳ ଓଡ଼ିଆମାନେ ଦେଶମିଶ୍ରଣ ଚାହାନ୍ତି ଏହି କଥା ବିଲାତ ସରକାରଙ୍କଠାରେ ଦୃଢ଼ଭାବରେ ଏମାନେ ବ୍ୟକ୍ତ କରିପାରିଥିଲେ ।

କଟକରୁ ମଧୁବାବୁ ଓ କନିକାରାଜା ଶ୍ରୀ ରାଜେନ୍ଦ୍ରନାରାୟଣ ଭଞ୍ଜ ଜୁନ୍ ୩ତାରିଖରେ ବାହାରି ଥିଲେ । ରାଜାଙ୍କ ସଙ୍ଗେ ଜଣେ ପୂଜାରୀ ବ୍ରାହ୍ମଣ ଯାଇଥିଲେ । ସେମାନେ ଜାହାଜରେ ଯାତ୍ରା କରିଥିଲେ ।

**ଓଡ଼ିଶା ଓ ଭାରତର ସମସ୍ୟା ସମ୍ବନ୍ଧରେ ପ୍ରଚାର :** ଜୁନ୍ ମାସ ଶେଷରେ ମଧୁବାବୁ ଓ କନିକା ରାଜା ବିଲାତରେ ପହଞ୍ଚିଲେ । ବିଲାତରେ ପ୍ରାୟ ତିନିମାସ ରହିବା ପରେ ମଧୁବାବୁ ଭାରତକୁ ଫେରିଲେ । ସ୍ୱାସ୍ଥ୍ୟର ଉନ୍ନତି ବିଲାତ ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ ଥିବା କୁହାଯାଇଥିଲେ ମଧ୍ୟ ସେ ସେଠାରେ ରାଜନୈତିକ ବ୍ୟାପାରରେ ହିଁ ବେଶି ସମୟ ଅତିବାହିତ କରିଥିଲେ ।

ବିଲାତ ରହଣି ବେଳେ ମଧୁବାବୁ ବ୍ରିଟିଶ୍ ସରକାରଙ୍କ ଉଚ୍ଚପଦସ୍ଥ କର୍ମଚାରୀ, ବିଶେଷତଃ ଭାରତ ସଚିବାଳୟର ମୁଖ୍ୟ କର୍ମକର୍ତ୍ତାମାନଙ୍କ ସହିତ ବହୁ ଆଳାପ ଆଲୋଚନା କରିଥିଲେ । ସେଠାର ବହୁ ବିଶିଷ୍ଟ ରାଜନୈତିକ ନେତା ସମ୍ଭ୍ରାନ୍ତ ବ୍ୟକ୍ତି, ସମ୍ବାଦପତ୍ର ସମ୍ପାଦକ ଓ ସାମ୍ବାଦିକଙ୍କ ସହ ମଧ୍ୟ ସେ ଦେଖାସାକ୍ଷାତ କରି ଭାରତ, ଓଡ଼ିଶା ଓ ଓଡ଼ିଆ ଜାତିର ମୁଖ୍ୟ ସମସ୍ୟାଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରିଥିଲେ । କେତେକ ସ୍ଥଳରେ ସାଧାରଣ ସଭାରେ ବକ୍ତୃତା ଦେଇ ଜନସାଧାରଣଙ୍କ ମନରେ ଏ ସମସ୍ୟାମାନଙ୍କ ସମ୍ବନ୍ଧରେ ସମ୍ୟକ୍ ଧାରଣା ଜନ୍ମାଇବାକୁ ଚେଷ୍ଟା କରିଥିଲେ । ତାଙ୍କର ବକ୍ତୃତା ଶୈଳୀ, ଇଂରେଜୀ ଭାଷାରେ ଗଭୀର ଜ୍ଞାନ ଓ ଅଭିବ୍ୟକ୍ତି କ୍ଷମତା ଦେଖି ବିଲାତବାସୀ ଶ୍ରୋତାମଣ୍ଡଳୀ ମୁଗ୍ଧ ହୋଇଯାଉଥିଲେ । ତାଙ୍କର ଉଚ୍ଚଧରଣର ବକ୍ତୃତାଶୈଳୀ ବହୁ ବିଜ୍ଞଲୋକଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା । ଇଂରେଜୀରେ ଆଳାପ ଆଲୋଚନାରେ ସେ ଧୂରନ୍ଧର ଥିବାରୁ

ତାଙ୍କର ଯୁକ୍ତିକୁ ଲୋକେ ସହଜରେ ବୁଝିପାରୁଥିଲେ ଏବଂ ସେମାନଙ୍କର ହୃଦ୍‌ବୋଧ ମଧ୍ଯ ହେଉଥିଲା । ଯଥା ସ୍ଥାନରେ ବିଭିନ୍ନ ପ୍ରକାର ଉଦାହରଣ ଦେଇ ସେ କେତେବେଳେ ଗମ୍ଭୀର ତ କେତେବେଳେ କୋମଳ ସ୍ୱରରେ କଥାବାର୍ତ୍ତା କରି ଶ୍ରୋତାଙ୍କ ମନକୁ ମୋହିତ କରିଦେଉଥିଲେ । ବିଶେଷତଃ ବାଇବେଲ୍‌ରୁ ବହୁ ଉଦାହରଣ ଦେଇ ସେ କଥାର ଗୁରୁତ୍ୱକୁ ବହୁ ଗୁଣରେ ବର୍ଦ୍ଧିତ କରାଇ ଦେଉଥିଲେ । ବେଳେବେଳେ କୌତୁକ ଭାବଭଙ୍ଗୀ, କୌତୁକ ଭାବପ୍ରକାଶ ଓ ଉଗଡମାଳର ବ୍ୟବହାର କରି ସେ ସ୍ୱକଥନକୁ ରସାଳ ଓ ହୃଦୟଗ୍ରାହୀ କରିପାରୁଥିଲେ । ବକ୍ତୃତା ଶକ୍ତି ତାଙ୍କର କାର୍ଯ୍ୟସିଦ୍ଧି ଦିଗରେ ଏକ ପ୍ରଧାନ ଅସ୍ତ୍ର ଥିଲା । ଆନ୍ତରିକତା, ବାକ୍‌ପଟୁତା, ନିର୍ଭୀକତା ଓ ଲୋଭଶୂନ୍ୟତା ତାଙ୍କର କାର୍ଯ୍ୟସିଦ୍ଧିର ପ୍ରଧାନ ହେତୁ ଥିଲା । ସେ ସମୟରେ ଭାରତର ବହୁ ଦକ୍ଷ ବକ୍ତା ବିଲାତକୁ ଯାଇ ସେଠାର ଲୋକଙ୍କୁ ଭାରତର ରାଜନୈତିକ, ଆର୍ଥିକ ଅବସ୍ଥା ବିଷୟରେ ବକ୍ତୃତା ଦେଇ ବୁଝାଉଥିଲେ । ଉତ୍ତମ ବକ୍ତୃତାର ଉତ୍ତମ ପ୍ରଭାବ ମଧ୍ଯ ପଡ଼ୁଥିଲା । ସାର୍ ସୁରେନ୍ଦ୍ରନାଥ ବାନାର୍ଜୀ, ଦାଦା ଭାଇ ନୌରୋଜୀ ପ୍ରଭୃତି ନେତାମାନେ ବିଲାତରେ ସ୍ୱବାଗ୍ମିତା ବଳରେ ଭାରତର ଦାବୀଗୁଡ଼ିକୁ ଉପସ୍ଥାପିତ କରି ସୁନାମ ଅର୍ଜନ କରିଥିଲେ । ମଧୁବାବୁଙ୍କ ବକ୍ତୃତାର ଶୈଳୀ ଇଂରେଜୀ ଭାଷାରେ ଗଭୀର ଜ୍ଞାନ ତାଙ୍କୁ ଭାରତର ଜଣେ ଅଗ୍ରଗଣ୍ୟ ବକ୍ତାରୂପେ ସ୍ଥାନ ଦେଇଥିଲା ।

**ଭାରତ-ସଚିବ ମର୍ଲେଙ୍କ ସହିତ ସାକ୍ଷାତ :** ବିଲାତରେ ଭାରତ ସଚିବ (ସେକ୍ରେଟେରୀ, ଷ୍ଟେଟ୍ ଅଫ୍ ଇଣ୍ଡିଆ ) ଲର୍ଡ ମର୍ଲେଙ୍କୁ ଦେଖାକରିବା ଉଦ୍ଦେଶ୍ୟରେ, ମଧୁବାବୁ ଇଂଲଣ୍ଡ ଯିବା ପୂର୍ବରୁ, ଜଣେ ବନ୍ଧୁ ପାର୍ଲିଆମେଣ୍ଟ ସଭ୍ୟ ସାର୍ ଜନ୍ ସ୍ପାଇସର୍ (Sir John Spicer) ଙ୍କ ସହାୟତା କାମନା କରି ଏକ ପତ୍ର ତାଙ୍କଠାକୁ ଲେଖିଥିଲେ । ବନ୍ଧୁ ସ୍ପାଇସର ଭାରତ ସଚିବ ଲର୍ଡ ମର୍ଲେଙ୍କୁ ମଧୁବାବୁଙ୍କ ଇଚ୍ଛା ବ୍ୟକ୍ତକରି କହିଥିଲେ ଯେ—ସେ କେବଳ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା ବ୍ରିଟିଶ୍ ସରକାରଙ୍କୁ ଜଣାଇବା ଉଦ୍ଦେଶ୍ୟରେ ଏ ଦେଖାସାକ୍ଷାତ ପାଇଁ ଅନୁରୋଧ କରୁଛନ୍ତି । ମର୍ଲେ କହିଲେ—ସେ ଭାରତ ସଚିବରୂପେ ଦେଖାସାକ୍ଷାତ୍ କରିବେ ନାହିଁ, କିନ୍ତୁ ବ୍ୟକ୍ତିଗତଭାବେ ଦେଖା ସାକ୍ଷାତ୍ କରିପାରନ୍ତି । ମଧୁବାବୁ ଏଥିରେ ରାଜି ହୋଇଥିଲେ ।

ଭାରତ-ସଚିବ ଲର୍ଡ ମର୍ଲେ ( Lord Morley ) ଙ୍କ ସହିତ ସାକ୍ଷାତ୍ କରି ମଧୁବାବୁ ତାଙ୍କୁ ଭାରତ ଓ ଓଡ଼ିଶାର ବିଭିନ୍ନ ମୁଖ୍ୟ ସମସ୍ୟା ସମ୍ବନ୍ଧରେ ଜଣାଇଥିଲେ । ଓଡ଼ିଶା ଦେଶମିଶ୍ରଣ ଓଡ଼ିଆ ଜାତିପକ୍ଷେ କିପରି ଜରୁରି ଆବଶ୍ୟକ ହୋଇପଡ଼ିଛି, ତାହା ବୁଝାଇ ପ୍ରସ୍ତାବିତ ଶାସନ ସଂସ୍କାରରେ ଏ ବିଷୟ ଅନ୍ତର୍ଭୁକ୍ତ କରିବା ନିମନ୍ତେ ଭାରତ-ସଚିବଙ୍କୁ ବିଶେଷ ଅନୁରୋଧ କରିଥିଲେ । ସେ ଓଡ଼ିଆ ଭାଷାଭାଷୀ ଲୋକଙ୍କପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶର ଦାବୀ ମଧ୍ଯ କରିଥିଲେ । ମାନ୍ଦ୍ରାଜରେ ଥିବା ଓଡ଼ିଶା ଅଞ୍ଚଳଗୁଡ଼ିକୁ ଓଡ଼ିଶା ଡିଭିଜନ ସହିତ ତୁରନ୍ତ ମିଶାଇଦେବା ପାଇଁ ଜଣାଇଥିଲେ ଏବଂ ଏହା ଜରୁରି

ହୋଇପଡ଼ିଥିବା ମଧ୍ୟ ବୁଝାଇଥିଲେ । ଭାରତର ବିଭିନ୍ନ ପ୍ରଦେଶର ବ୍ୟବସ୍ଥାପକ ସଭାମାନଙ୍କର ବର୍ତ୍ତମାନର ସଭ୍ୟ ସଂଖ୍ୟା ବୃଦ୍ଧି କରିବାକୁ ମଧ୍ୟ ନିବେଦନ କରିଥିଲେ ଓ ବ୍ୟବସ୍ଥାପକ ସଭାମାନଙ୍କରେ ବେସରକାରୀ ସଭ୍ୟମାନଙ୍କର ଅଧିକାର ବୃଦ୍ଧି କରିବା ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଲର୍ଡ ମର୍ଲେ ମଧୁବାବୁଙ୍କୁ କହିଥିଲେ, "ମୁଁ ଆପଣଙ୍କୁ ଜଣେ ଓଡ଼ିଆ ଭାବରେ ଦେଖୁନାହିଁ, ଏକ ବିଶ୍ୱମାନବରୂପେ ଦେଖୁଅଛି । ଭାରତ ନିମନ୍ତେ ଯାହା କରିବାର କଥା ତାହା ସମସ୍ତ କ୍ରମେ ସୁବିଧାଅନୁଯାୟୀ କରାଯିବ । ପ୍ରାଦେଶିକ ସମସ୍ୟାଗୁଡ଼ିକର ସେହି ପ୍ରସଙ୍ଗରେ ସମାଧାନ ହେବ ।

ଆଉ କେତେକ ବିଷୟ ମଧ୍ୟ ଏହି ବ୍ୟକ୍ତିଗତ ସାକ୍ଷାତ୍ ଭିତରେ ଆଲୋଚିତ ହୋଇଥିଲା । ମଧୁବାବୁଙ୍କ ଏକ ଲେଖା ଉପରେ ନିର୍ଭର କରି 'ଉତ୍କଳ ଗୌରବ ମଧୁସୂଦନ'ର ଲେଖକ ଏହିପରି ବିବରଣ ପ୍ରକାଶ କରିଛନ୍ତି ଏବଂ ସେ କହନ୍ତି ଯେ, ମଧୁବାବୁ ନିଜେ ଏହି ଦେଖାସାକ୍ଷାତ୍ ସମ୍ବନ୍ଧରେ ଏକ ଲେଖା ଲେଖିଯାଇଛନ୍ତି ।

"ମୁଁ ମିଷ୍ଟର ମର୍ଲେଙ୍କୁ କହିଲି, ଯଦି ସେ ଭାରତରେ ଏକଚ୍ଛତ୍ର ଶାସନ (Despotic Government) ଚଳାଇବାକୁ ଚାହାନ୍ତି, ତାହାହେଲେ ସେହି ଧରଣର ଶିକ୍ଷା ଉଚ୍ଚ ଭାରତୀୟ ରାଜକର୍ମଚାରୀ (I.C.S.) ମାନଙ୍କୁ ଦେବା ଉଚିତ । ତାହାହେଲେ ସେମାନଙ୍କର ଏକଚ୍ଛତ୍ର ନୀତିରେ ଶାସନ ଚଳାଇବା ସହଜ ହେବ । ଇଂରେଜ ଯୁବକମାନେ ଇଂଲଣ୍ଡର ସ୍କୁଲ ଏବଂ ବିଶ୍ୱବିଦ୍ୟାଳୟରେ ଶିକ୍ଷା ପାଇ ସ୍ୱାଧୀନ ଦେଶର ମନୁଷ୍ୟରୂପେ ଗଢ଼ା ଯାଉଅଛନ୍ତି । ସେମାନେ ଏକଚ୍ଛତ୍ର ଶାସନକୁ ଘୃଣା କରିବାକୁ ଶିକ୍ଷା କରନ୍ତି । ସେମାନେ ଇଂଲଣ୍ଡରେ ଦେଖନ୍ତି ଯେ, ଅନୁଷ୍ଠାନମାନ ଲୋକଙ୍କଦ୍ୱାରା ସ୍ଥାପିତ ଏବଂ ରକ୍ଷିତ ହୋଇଅଛି । ସେମାନେ ସ୍ୱାଧୀନ ଲୋକଙ୍କ ଉପରେ ଶାସନ କରିବାକୁ ଶିକ୍ଷା ପାଆନ୍ତି, ମାତ୍ର ଏହି ଅଫିସରମାନେ ଯେତେବେଳେ ଭାରତର ବିଭିନ୍ନ ପ୍ରଦେଶରେ ଶାସନ ଭାର ଗ୍ରହଣ କରନ୍ତି, ସେମାନଙ୍କୁ ଉପଦେଶ ଦିଆଯାଏ—ଏହା ସ୍ୱାଧୀନ ଦେଶ ନୁହେଁ—ଏକଚ୍ଛତ୍ର ଶାସକ ଭଳି ଶାସନ ଚଳାଅ । ଅବାଧ କ୍ଷମତା ଚାଳନପାଇଁ ପ୍ରତ୍ୟେକ ଯୁବକ ଅଫିସରଙ୍କୁ ଉପଦେଶ ଦିଆଯାଏ । ଏହି ଯୁବକ ଅଫିସର ଏକଚ୍ଛତ୍ର ଶାସକ ହେବାକୁ ଚେଷ୍ଟା କରନ୍ତି । ଏହି ଅଫିସରମାନେ ସେମାନଙ୍କ ଶାସନରେ ବିଫଳ ହୁଅନ୍ତି ; କାରଣ ଏକଚ୍ଛତ୍ର ଶାସନ ଚଳାଇବାକୁ ସେମାନେ ଶିକ୍ଷା ପାଇ ନଥାନ୍ତି ।

"ଏକଚ୍ଛତ୍ର ଶାସକ ଏକ ବିଶିଷ୍ଟ ଦୃଷ୍ଟିକୋଣରୁ ମାନବ ଚରିତ୍ର ଅଧ୍ୟୟନ କରନ୍ତି । ଏକଚ୍ଛତ୍ର ଶାସକ ଜାଣେ, କେଉଁଠାରେ ଦୟା ଦେଖାଇବାକୁ ହେବ; ତାହାହେଲେ ଭବିଷ୍ୟତରେ ଲୋକମାନଙ୍କ ଉପରେ ଅତ୍ୟାଚାର ଚଳାଇ ପାରିବ । ଯଦି ରୁଷ୍‌ର ଜାର୍ (ଚକ୍ରବର୍ତ୍ତୀ) ଇଂଲଣ୍ଡର ଶାସକ ହୁଅନ୍ତି, ସେ ଅଠଚାଳିଶ ଘଣ୍ଟା ମଧ୍ୟରେ ଫାଶୀ କାଠରେ ଝୁଲିବେ । ଅପର ଭାବରେ ଯଦି ରାଣୀ ଭିକ୍ଟୋରିଆ ରୁଷ୍‌ଦେଶର ଗାଦିରେ ବସନ୍ତି, ସେ ଅଠଚାଳିଶ ଘଣ୍ଟା ମଧ୍ୟରେ ରାଜଗାଦି ଛାଡ଼ିଦେବେ ।"

ମଧୁସୂଦନ ଲେଖିଛନ୍ତି, "ମୁଁ ମିଷ୍ଟର ମର୍ଲେଙ୍କୁ କହିଲି, ଯଦି ଭାରତରେ ଏକଚ୍ଛତ୍ର ଶାସନ ଚଳାଇବାକୁ ଚାହିଁ, ତେବେ ଅଫିସରମାନଙ୍କୁ ରୁଷ୍ ଦେଶରେ ପ୍ରଚଳିତ ଶିକ୍ଷା ଦିଅ; ତାହାହେଲେ ସେମାନେ ଏକଚ୍ଛତ୍ର ଶାସନର କୌଶଳ ଜାଣିପାରିବେ।" (ପୃ.୯୯)

ଇଂଲଣ୍ଡ ଏକଚ୍ଛତ୍ର ଶାସନ ପାଇଁ ପ୍ରସିଦ୍ଧ ନୁହେଁ, ଲୋକଶାସନପାଇଁ ପ୍ରସିଦ୍ଧ । ଲୋକଶାସନ ପାଇଁ ପ୍ରସିଦ୍ଧ ଦେଶର ଅଫିସରମାନଙ୍କୁ ଏହି ପ୍ରଣାଳୀ ଉପଯୋଗୀ ଶିକ୍ଷା ଦିଆଯାଇଥାଏ । ଅତଏବ ଅଫିସରମାନେ ଗଣତନ୍ତ୍ର ମନୋଭାବାପନ୍ନ ହେବା ଆଶା କରାଯାଏ । ଏହି ଗଣତନ୍ତ୍ର ପଦ୍ଧତିରେ ଶିକ୍ଷାପ୍ରାପ୍ତ ଅଫିସରମାନଙ୍କୁ ଭାରତର ଶାସନ କ୍ଷେତ୍ରକୁ ପଠାଇ ସେମାନଙ୍କୁ ଏକଚ୍ଛତ୍ର ଶାସନ ଚଳାଇବା ପାଇଁ ନିର୍ଦ୍ଦେଶ ଦେବାଦ୍ୱାରା କାର୍ଯ୍ୟ ଓ ଶିକ୍ଷା ଭିତରେ ସାମଞ୍ଜସ୍ୟ ରହୁନାହିଁ, ସେମାନେ କିମ୍ଭୂତ କିମାକାର ହୋଇ ପଡ଼ୁଛନ୍ତି । ଯଦି ସେମାନଙ୍କୁ ଏକଚ୍ଛତ୍ର ଶାସନ ପଦ୍ଧତିରେ ଉପଯୁକ୍ତ ଶିକ୍ଷା ଦିଆଯାଇ ଭାରତକୁ ସେହି ପ୍ରଣାଳୀରେ ନିର୍ଦ୍ଦେଶ ଦିଆଯାଆନ୍ତା, ତାହାହେଲେ ଏମାନଙ୍କ ଅତ୍ୟାଚାର ଓ ଅବ୍ୟବସ୍ଥା କିଛି ପରିମାଣରେ କମିଯାଇ ଥାଆନ୍ତା । ବିଲାତରୁ ଶିକ୍ଷାପାଇ ଆସିଥିବା ଅଫିସର (I. C. S.) ମାନେ ଭାରତରେ ଏକଚ୍ଛତ୍ର ଶାସନ ଚଳାଇଥିବା ବିଷୟ ହିଁ ସୂଚନାରେ ମଧୁବାବୁ କହିଥିଲେ । ରାଜ୍ୟଶାସନ ହେବ ତ, ଗୋଟିଏ ନିର୍ଦ୍ଦିଷ୍ଟ ପଦ୍ଧତିରେ ହେଉ, ଯଥେଚ୍ଛାଚାରିତା ଉପରେ ପ୍ରତିଷ୍ଠିତ ହୋଇ କୌଣସି କାର୍ଯ୍ୟ ନ ହେଉ ।"

ଜଣେ ଦକ୍ଷ ଓ ପ୍ରଜାବତ୍ସଳ ଏକଚ୍ଛତ୍ର ଶାସକ ଭାରତବର୍ଷପାଇଁ ଆବଶ୍ୟକ ଥିବା ମଧୁବାବୁ କୁଆଡ଼େ କହିଥିଲେ । ମର୍ଲେ ମିଃ ଦାସଙ୍କୁ ସେ ଏକଚ୍ଛତ୍ର ଶାସନ ଚାହାନ୍ତି କି ବୋଲି ପଚାରିବାରୁ ସେ କୁଆଡ଼େ କହିଥିଲେ ଯେ, "ମିଃ ମର୍ଲେଙ୍କଭଳି ଜଣେ ଲୋକ ଏକଚ୍ଛତ୍ର ଶାସକ ହେବା ସେ ଚାହାନ୍ତି।"

**ଲଣ୍ଡନ ଟାଉନହଲ ସଭା** ଲଣ୍ଡନ ଟାଉନହଲରେ ଇଷ୍ଟ ଇଣ୍ଡିଆନ୍ ଆସୋସିଏସନ୍ ଆନୁକୂଲ୍ୟରେ ଲଣ୍ଡନର ମେୟରଙ୍କ ସଭାପତିତ୍ୱରେ ଏକ ସଭା ହୋଇଥିଲା । ସେଠାରେ ମଧୁବାବୁ ଭାରତର ଆର୍ଥିକ ଉନ୍ନତିର ମାର୍ଗ ସମ୍ବନ୍ଧରେ ବହୁ ପ୍ରସଙ୍ଗ ଉତ୍ଥାପନ କରିଥିଲେ । ମିଃ ଦାସଙ୍କ ଦୃଢ଼ଧାରଣା ଯେ ଦେଶର ଉନ୍ନତି ନିମନ୍ତେ ଦେଶର କାରିଗର-ମାନଙ୍କ ଅବସ୍ଥାର ଉନ୍ନତି ହେବା ଆବଶ୍ୟକ । ତାଙ୍କ ବକ୍ତୃତାରେ ମୁଖ୍ୟତଃ ସେ ଭାରତବର୍ଷର କାରିଗରମାନଙ୍କର ଅବସ୍ଥା ସମ୍ବନ୍ଧରେ ଆଲୋଚନା କରିଥିଲେ । ସେ କହିଥିଲେ ଯେ, ଭାରତରେ ଜାତିଭେଦ ପ୍ରଥାରେ ଜାତିଗତ ଶିଳ୍ପ ପ୍ରଚଳିତ ଅଛି, ପ୍ରତ୍ୟେକ ଜାତିର ନିଜ ନିଜ କୁଳଶିଳ୍ପ ଅଛି । କାରିଗରମାନଙ୍କର ହସ୍ତକୁଶଳତା ସୃଷ୍ଟି କରିବାରେ ଏହାର ଚମତ୍କାର ପ୍ରଭାବ ରହିଛି । ରୁପାକାରିଗର ପୁଅର ଶିକ୍ଷାର ଉଦାହରଣ ଦେଇ ସେ କହିଥିଲେ, ସରୁ ରୁପାତାର ପ୍ରସ୍ତୁତ କରିବାରେ ସେ ଅତି ଅଳ୍ପ ବୟସରେ ଅସାଧାରଣ ଦକ୍ଷତା

ଦେଖାଇଥାଏ । ବାଁ ହାତର ବୁଢ଼ା ଆଙ୍ଗୁଠିକୁ ଅତି କୌଶଳରେ ବଙ୍କେଇଦେଇ ଶ୍ରେଷ୍ଠ ସରୁ ରୁପାତାରରୁ ଗୋଲକାର ବଳା ତିଆରି କରିପାରେ । ପୈତୃକ ପାରମ୍ପରିକ ଅଭିଜ୍ଞତା ନ ଥିଲେ ଅନ୍ୟ କାରିଗରପକ୍ଷେ ଏପରି କରିପାରିବା ଆଦୌ ସମ୍ଭବ ନୁହେଁ; ଅନ୍ୟ କେହି ମାସ ମାସ କଷ୍ଟ ସହି ଚେଷ୍ଟାକଲେ ମଧ୍ୟ ଏହି କାର୍ଯ୍ୟଟି କରିବାକୁ ସମର୍ଥ ହୋଇ ପାରିବ ନାହିଁ ।

ମଧୁବାବୁଙ୍କ ବକ୍ତୃତାର ସାରମର୍ମ 'ଲଣ୍ଡନ ଟାଇମ୍‌ସ' (London Times) ନାମକ ଦୈନିକ ଇଂରେଜୀ କାଗଜରେ ପ୍ରକାଶିତ ହୋଇଥିଲା । ଏହି ସଭାରେ ସେ ଇଂରେଜୀରେ ଏକ ପ୍ରବନ୍ଧ ପାଠ କରିଥିଲେ । ପ୍ରବନ୍ଧର ବିଷୟଗୁଡ଼ିକ ଆଲୋଚିତ ହୋଇଥିଲା । ସାର୍ ଜର୍ଜ ବାର୍ଡଉଡ୍, କୋଲ୍‌ଡ଼ ଷ୍ଟ୍ରିଙ୍ଗ୍, ସାର୍ ଲେପଲ୍ ଗ୍ରିଫିନ୍ ଡାକ୍ତର ପୋଲାକ୍, ମିଃ ଓ୍ୱାଗ୍‌ଲେ ପ୍ରଭୃତି ଇଂରେଜ ଓ ଭାରତୀୟ ବିଶିଷ୍ଟ ବ୍ୟକ୍ତିମାନେ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

**ବନ୍ୟା ଓ ଦୁର୍ଭିକ୍ଷ ସମ୍ବନ୍ଧରେ ପ୍ରଚାର :** ତାଙ୍କର ବିଲାତ ରହଣି କାଳ ଭିତରେ ମହାନଦୀ, ବ୍ରାହ୍ମଣୀ ଓ ବୈତରଣୀ ନଦୀ ବୃଦ୍ଧି ଯୋଗୁ ପ୍ରବଳ ବନ୍ୟା ହୋଇଥିଲା । ସେଥିରେ କଟକ ଜିଲ୍ଲାର ଓ ବାଲେଶ୍ୱର ଜିଲ୍ଲାର ବହୁତ କ୍ଷତି ହୋଇଥିଲା ଓ ଏହି ଅଞ୍ଚଳମାନଙ୍କରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ବିଲାତ ପାର୍ଲିଆମେଣ୍ଟର ସଭ୍ୟ ରୁଥରଫୋର୍ଡ଼' (Rutherford)ଙ୍କୁ ଓ ବିଶିଷ୍ଟ ଇଂରେଜୀ ସମ୍ବାଦପତ୍ର 'ଗ୍ଲାସଗୋ ହେରାଲ୍‌ଡ଼' (Glasgow Herald) ର ସମ୍ପାଦକ ନେଭିନ୍‌ସନ (Nevinson)ଙ୍କୁ ସ୍ୱଚକ୍ଷୁରେ ଅବସ୍ଥା ଦେଖିବା ନିମନ୍ତେ ଓଡ଼ିଶା ଯିବାକୁ ମଧୁବାବୁ ଅନୁରୋଧ କରିଥିଲେ । ମଧୁବାବୁଙ୍କ ଅନୁରୋଧ ରକ୍ଷାକରି ସେମାନେ ଓଡ଼ିଶା ଆସିଥିଲେ । ନେଭିନ୍‌ସନ୍ ଓଡ଼ିଶା ଭ୍ରମଣ ପରେ ଦୁର୍ଭିକ୍ଷର କରାଳ ଚିତ୍ର ଅଙ୍କନ କରି ଏକ ପୁସ୍ତିକା ପ୍ରକାଶ କରି ପ୍ରଚାର କରିଥିଲେ ।

ସେ ବର୍ଷ ଅଗଷ୍ଟ ମାସରେ ଅସମ୍ଭବ ଧରଣର ବର୍ଷା ହୋଇଥିଲା । ମାସକ ଭିତରେ ୩୧.୪୪ ଇଞ୍ଚ ବର୍ଷା ହୋଇଯିବା ଫଳରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ ନଦୀମାନଙ୍କରେ ଭୀଷଣ ବନ୍ୟା ହୋଇଗଲା । ଏକସମୟରେ ଏସବୁ ନଦୀ ବୃଦ୍ଧି ପାଇବାରୁ ଆଶଙ୍କାଜନକ ପରିସ୍ଥିତି ଉପୁଜିଥିଲା । ବନ୍ୟାଫଳରେ ବହୁ ଘରଦ୍ୱାର ଭାଙ୍ଗି ନଷ୍ଟ ହୋଇଗଲା । ବହୁ ମନୁଷ୍ୟ, ଗୋରୁ, ପଶୁପକ୍ଷୀ ନଷ୍ଟ ହେଲେ । ବନ୍ୟା ପରେ ପରେ ଆଉ ବର୍ଷା ନ ହେବାରୁ ଫସଲ ଏକାବେଳକେ ନଷ୍ଟ ହୋଇଗଲା । ଅକ୍ଟୋବର ମାସରେ ମୋଟେ ୦.୭୬ (ପ୍ରାୟ ତିନି-ଚତୁର୍ଥାଂଶ) ଇଞ୍ଚ ବର୍ଷା ହୋଇଥିଲା । ଫଳରେ ଫସଲ ଏକାବେଳକେ ନଷ୍ଟ ହୋଇଯାଇଥିଲା ।

ମଧୁବାବୁ ବିଲାତରୁ ସେପ୍‌ଟେମ୍ବର ମାସ ୨୭ ତାରିଖରେ ବାହାରି ଭାରତ ଅଭିମୁଖେ ଜାହାଜରେ ଯାତ୍ରା କରିଥିଲେ ।

ମଧୁବାବୁଙ୍କ ବିଲାତ ରହଣି ସମୟର କାର୍ଯ୍ୟକଳାପ ବିଲାତର ବିଖ୍ୟାତ ସମ୍ବାଦପତ୍ର 'ଡେଲି କ୍ରନିକଲ୍' (Daily Chronicle), 'ଟ୍ରିବ୍ୟୁନ୍' (Tribune) ଓ 'ଲଣ୍ଡନ୍ ଟାଇମ୍ସ' (London Times) ପ୍ରଭୃତି ପତ୍ରିକାରେ ପ୍ରକାଶ ପାଇଥିଲା । 'ଡେଲି କ୍ରନିକଲ୍'ର ସେପ୍ଟେମ୍ବର ୬ ତାରିଖ ସଂଖ୍ୟାରେ ଏହାର ବିଶଦ ବିବରଣୀ ଦିଆଯାଇ ଥିଲା ।

ବିଲାତରେ ମଧୁବାବୁଙ୍କର କେତେକ ଉତ୍କଳ-ହିତକର କାର୍ଯ୍ୟକଳାପର ବିବରଣ 'ଉତ୍କଳ ଦୀପିକା'ରେ 'ବିଲାତରେ ଶ୍ରୀମଧୁସୂଦନ ଦାସ' ଶିରୋନାମାରେ ସେପ୍ଟେମ୍ବର ୨୧ ତାରିଖ ସଂଖ୍ୟା (୧୯୦୬) ରେ ପ୍ରକାଶିତ ହୋଇଥିଲା ।

"ଉତ୍କଳର ଶ୍ରେଷ୍ଠ ମଧୁସୂଦନ ଦାସ ସିଃ ଆଇଃ ଇଃ ମହୋଦୟ ବିଲାତରେ ଥାଇ ଓଡ଼ିଶାର ଅବସ୍ଥା ବିଲାତବାସୀଙ୍କୁ ଜଣାଉଥିଲେ ।

"ବିଲାତର 'ଟ୍ରିବ୍ୟୁନ୍' ନାମକ ଦୈନିକ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା ଯେ 'ଓଡ଼ିଶାର ରାଜା ଓ ଲୋକମାନଙ୍କର ଗୁରୁତର ଗୁହାରି ପ୍ରତି ଦୃଷ୍ଟି ଆକର୍ଷଣ କରିବା କାରଣ ବିଲାତରେ ଅଛନ୍ତି । ଓଡ଼ିଶା ବଙ୍ଗ ପ୍ରଦେଶଭୁକ୍ତ ଥିଲେହେଁ ଏହାର ଓଡ଼ିଆ ନାମକ ସ୍ୱତନ୍ତ୍ର ଭାଷା ଅଛି ଏବଂ ସେଠା ଲୋକମାନଙ୍କର ଇତିହାସ, ସାହିତ୍ୟ ଏବଂ ଜାତୀୟତା ସ୍ୱତନ୍ତ୍ର । ଏଠା ଅଧିବାସୀମାନଙ୍କୁ ବହୁକାଳ ଚିନ୍ତାଶୂନ୍ୟ ରଖାଯାଇଥିଲା । ତହୁଁ ଉତ୍ତାରୁ ସେମାନଙ୍କ ମଧ୍ୟରେ ଗୋଟିଏ ବୈଦେଶିକ ଭାଷା ଚଳାଇବାର ଚେଷ୍ଟା ହେଲା । ଲୋକମାନଙ୍କୁ ଅନେକ ଜମିଦାରିରୁ ବଞ୍ଚିତ କରାଗଲା ଏବଂ ଗତ କୋଡ଼ିଏ ବର୍ଷ ବା ତଦୂର୍ଦ୍ଧ୍ୱ କାଳ ମଧ୍ୟରେ ସମସ୍ତ ସମୟରେ ସନ୍ଧି-ବନ୍ଧନ ସୂତ୍ରା ବଙ୍ଗଳା ଗଭର୍ଣ୍ଣମେଣ୍ଟ ଲଙ୍ଘନ କରିଅଛନ୍ତି । ଦୋଷୀ ବ୍ୟକ୍ତିଙ୍କ ଉପରୁ ଦେଶୀୟ ରାଜାମାନଙ୍କର ଅଧିକାର କ୍ରମେ କ୍ରମେ କାଢ଼ି ନିଆଗଲା । ତାଙ୍କର ମର୍ଯ୍ୟାଦା ଖର୍ବ କରାଗଲା ଓ ଲୋକମାନଙ୍କର ଆପଣା ହାତ ଉପରେ ଥିବା ଦାବୀ କାଢ଼ି ନିଆଗଲା । ସନ ୧୮୯୪ ମସିହାରେ ସେମାନଙ୍କର ଅଧିକାର ଆହୁରି ଖର୍ବ କରାଯାଇ ଖଣି ଏବଂ ଜଙ୍ଗଲରୁ ସେମାନଙ୍କ ସ୍ୱତ୍ୱ ରହିତ କରାଗଲା ଏବଂ ସର୍ବଶେଷରେ ଜଣେ ୩୦ (ତିରିଶ) ବର୍ଷ ବୟସ୍କ ନମ୍ର ଗୋରା ହାକିମଙ୍କ କର୍ତ୍ତୃତ୍ୱାଧୀନରେ ସେ ରାଜ୍ୟମାନ ରଖାଗଲା । ଦାସ ମହାଶୟଙ୍କ କଥାମତେ ବଙ୍ଗଳାର ଶାସନକର୍ତ୍ତା ଭାରତେଶ୍ୱରୀଙ୍କ ଘୋଷଣା ପତ୍ର ନ ମାନି ଓଡ଼ିଆମାନଙ୍କ ଧର୍ମରେ ନିତାନ୍ତ ହସ୍ତକ୍ଷେପଣ କରି ସେମାନଙ୍କର ମନ୍ଦିର ଓ ଧର୍ମସମ୍ବନ୍ଧୀୟ ପାଣ୍ଠି ଲୁଟାଲୁଟି କରୁଅଛନ୍ତି ଏବଂ ତାହା ଏମନ୍ତ କଠୋର ଭାବରେ ହେଉଅଛି ଯେ ଜଣେ ଦେଶୀୟ ପୁଲିସ କର୍ମଚାରୀ ଏକ ସ୍ତ୍ରୀରକୁ ଯନ୍ତ୍ରଣା ଦେବା ଅପରାଧରେ ଦୋଷୀ ହେବାରେ ନୀଳଗିରିର ରାଜାଙ୍କୁ ଗାଦିରୁ ରହିତ କରି ଲୋକମାନଙ୍କ ଚକ୍ଷୁରେ ତାଙ୍କୁ ଅପମାନିତ କରାଇ ରାଣୀଙ୍କୁ ନିର୍ବାସିତ ହେବାକୁ ବାଧ୍ୟ କରାଗଲା । ଅବଶେଷରେ ମୋଗଲବନ୍ଦୀରେ ସନ ୧୮୯୭ ମସିହାରେ ହେଉଥିବା ୩୦ ବର୍ଷର ମିଆଦି ବନ୍ଦୋବସ୍ତକୁ ବଙ୍ଗଳା ଗଭର୍ଣ୍ଣମେଣ୍ଟ ବ୍ୟସ୍ତ କରିବାର ଆରମ୍ଭ କରିଅଛନ୍ତି ।

ଗଭର୍ଣ୍ଣମେଣ୍ଟଙ୍କ ସମର୍ଥନକାରୀ କଲିକତାର 'ଇଙ୍ଗଲିସ୍‌ମ୍ୟାନ' ନାମକ କାଗଜ ଏହାକୁ ଗୋଟିଏ ବମ୍‌ବାଜି ନିକ୍ଷେପ ତୁଲ୍ୟ ଉଲ୍ଲେଖ କରି ଏଥିର ଫଳ ସମ୍ବନ୍ଧେ ଗଭର୍ଣ୍ଣମେଣ୍ଟଙ୍କୁ ସାବଧାନ କରିଦେଇଛନ୍ତି । ଏହି କଥାମାନ ଲେଖି ସେହି ସମ୍ବାଦପତ୍ର ଏହିପରି ମତ ପ୍ରକାଶ କରିଅଛନ୍ତି ଯେ ବର୍ତ୍ତମାନ ପାର୍ଲିଆମେଣ୍ଟ ବନ୍ଦ ହୋଇଥିବା ଯୋଗୁଁ ମର୍ଲେସାହେବ ମହୋଦୟ ଓଡ଼ିଶାର ରାଜା ଓ ଲୋକମାନଙ୍କର ଗୁହାରି ବିଷୟ ବିଚାର କରିବା କାରଣ ଯଥେଷ୍ଟ ସମୟ ପାଇବେ । ଓଡ଼ିଶାର ଲୋକମାନେ ସର୍ବଦା ରାଜଭକ୍ତ ଏବଂ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କର ସହାନୁଭୂତି ପ୍ରତି ତାଙ୍କର ବିଶେଷ ଦାବୀ ଅଛି । ଓଡ଼ିଶାରେ ଜଗନ୍ନାଥଙ୍କ ମନ୍ଦିର ଅଛି । ଭାରତରେ ଅନେକ ତୀର୍ଥସ୍ଥାନ ଥିଲେହେଁ ପ୍ରତିବର୍ଷ ଏଠାକୁ ବହୁ ସଂଖ୍ୟକ ଯାତ୍ରୀ ଆସନ୍ତି ଏବଂ ପତିତ ବ୍ୟକ୍ତି ଏହିଠାରେ ପ୍ରଥମେ ଦେଖେ ଯେ ଏମନ୍ତ ଗୋଟିଏ ପୁଣ୍ୟସ୍ଥାନ ଅଛି,ଯେଉଁଠାରେ ଜାତି, ସମ୍ପ୍ରଦାୟ ଓ ଧର୍ମ ବିଶ୍ୱାସର ସମସ୍ତ ବାଧା ଅତିକ୍ରମିତ ହୋଇଅଛି; ଉଚ୍ଚ ଓ ନୀଚ ଜାତିର ଲୋକ ଏକତ୍ର ବସି ଭୋଜନ କରିପାରନ୍ତି । ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟ ହେତୁ ଓଡ଼ିଆଙ୍କର ବର୍ତ୍ତମାନ ଗୁହାରି ଘଟିଥିବାର ସେ ସେମାନଙ୍କର ପ୍ରେରିତ ଦୂତ ମୁଖରୁ ଜଣାଯାଏ ଏବଂ ୨୦ବର୍ଷ କାଳ ଅବଶିଷ୍ଟ ବଙ୍ଗ ଗଭର୍ଣ୍ଣମେଣ୍ଟ ଓଡ଼ିଶାରେ ବଙ୍ଗଭାଷା ଚଳାଇବାର ଚେଷ୍ଟା ଉତ୍ତାରୁ ରାଜାମାନଙ୍କର ସନ୍ଧିପତ୍ରଦ୍ୱାରା ପ୍ରଦତ୍ତ କେତେକ ଅଧିକାର କାଢ଼ି ନେଇଅଛନ୍ତି; ଧର୍ମରେ ହସ୍ତକ୍ଷେପ କରିଅଛନ୍ତି ଏବଂ ବର୍ତ୍ତମାନ ଯେଉଁ ରାଜସ୍ୱ ବନ୍ଦୋବସ୍ତ ଆହୁରି ୨୦ବର୍ଷ ପର୍ଯ୍ୟନ୍ତ ପ୍ରଚଳିତ ହେବାର ଅଛି, ଏଥିମଧ୍ୟରେ ତହିଁରେ ବିଘ୍ନ ଘଟାଉ ଅଛନ୍ତି ।

"ଶ୍ରୀଯୁକ୍ତ ଦାସ ମହାଶୟ ବିଲାତ ଗମନକରି ଓଡ଼ିଶାର ଅବସ୍ଥା ବିଲାତର ରାଜକର୍ମଚାରୀ ଏବଂ ଜନସାଧାରଣଙ୍କୁ ଜଣାଇବା ବିଷୟରେ କେତେ ଯତ୍ନ ଓ ଚେଷ୍ଟା କରୁଅଛନ୍ତି, ଏଥିରୁ ପାଠକମାନେ ବୁଝିପାରିବେ । ବିଲାତର କର୍ତ୍ତୃପକ୍ଷ ଏବଂ ଯୋଗ୍ୟ-ଲୋକଙ୍କ ସାକ୍ଷାତ ପାଇ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିବା କିଛି ସାମାନ୍ୟ କଥା ନୁହେଁ । ତାହା ଅନେକ ଯତ୍ନ ଓ ପରିଶ୍ରମର ଫଳ । ଦାସ ମହାଶୟ ସ୍ୱଦେଶବାସୀଙ୍କ ନିକାଶେ ଏତେ କଷ୍ଟ ଓ ଶ୍ରମ ସ୍ୱୀକାର କରିବା ହେତୁ ଆମ୍ଭେମାନେ ସମସ୍ତେ ତାହାଙ୍କ-ଠାରେ ଋଣୀ ଅଛୁଁ । 'ଟ୍ରିବ୍ୟୁନ' ସମ୍ବାଦପତ୍ର ଓଡ଼ିଶାର ଦୁଃଖ ବିଲାତରେ ପ୍ରଚାର କରିଥିବା ବିଷୟରେ ବିଶେଷ ସାହାଯ୍ୟ କରିଅଛନ୍ତି ବୋଲି ତାହାଙ୍କୁ ଅଶେଷ ଧନ୍ୟବାଦ ଦେଉଅଛୁଁ ।"

ଭାରତ-ସଚିବଙ୍କୁ ମଧୁବାବୁ ସନ୧୮୯୭ ମସିହାରେ ହୋଇଥିବା ୩୦ ବର୍ଷ ମିଆଦର ବନ୍ଦୋବସ୍ତ ବିରୁଦ୍ଧରେ କହିଥିଲେ ଏବଂ ସାତ ବନ୍ଦୋବସ୍ତ କରିବାପାଇଁ ଅନୁରୋଧ କରିଥିଲେ ।

ଓଡ଼ିଶାର ଗଡ଼ଜାତ ରାଜାମାନଙ୍କର କ୍ଷମତାକୁ ଭାରତରେ ବ୍ରିଟିଶ୍ ସରକାରଙ୍କ ପ୍ରତିନିଧିମାନେ କ୍ରମଶଃ ହ୍ରାସକରି ଦେଉଥିବାରୁ ଏହା ସନ୍ଧି ବା ଚୁକ୍ତିର ବିରୋଧୀ ଥିବା

ବ୍ୟକ୍ତ କରିଥିଲେ । ସନ୍ଧିଚୁକ୍ତିକୁ ଉପେକ୍ଷା କରି ପୁରାତନ ମର୍ଯ୍ୟାଦାବନ୍ତ ଗଡ଼ଜାତ ରାଜା-ମାନଙ୍କ ପ୍ରତି ଅକାରଣ ଅପମାନ କରାଯାଉଥିବା ମଧ୍ୟ ଦର୍ଶାଇଥିଲେ ଏବଂ ଓଡ଼ିଶାର ନୀଳଗିରି ରାଜା ପ୍ରଭୃତିଙ୍କ ପ୍ରତି ଉଚ୍ଚ ରାଜକର୍ମଚାରୀମାନଙ୍କଦ୍ୱାରା ହୋଇଥିବା ଅବହେଳା ଓ ଅପମାନ ବିଷୟ ଉଦାହରଣ ସ୍ୱରୂପ ଜଣାଇଥିଲେ ।

ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣା ପତ୍ରକୁ ଅମାନ୍ୟ କରି ଧର୍ମ ବିଷୟରେ ଇଂରେଜ ସରକାରଙ୍କ ହସ୍ତକ୍ଷେପ ବିଷୟରେ ମଧ୍ୟ ଭାରତ-ସଚିବଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ପୁରୀର ଜଗନ୍ନାଥ ମନ୍ଦିରର ପରିଚାଳନାରେ କିପରି ସରକାର ହସ୍ତକ୍ଷେପ କରୁଛନ୍ତି, ତାହା ଏକ ଦୃଷ୍ଟାନ୍ତ ସ୍ୱରୂପ ସୂଚାଇଥିଲେ ।

ଏ ସବୁ ବିଷୟରେ ପୁନର୍ବାର ଆସନ୍ତା ବର୍ଷ (୧୯୦୮) ବିଲାତକୁ ଯାଇ ମଧୁବାବୁ ପୁଣି ଆନ୍ଦୋଳନ କରିବେ ବୋଲି ପ୍ରକାଶ କରିଥିବା 'ଡେଲି କ୍ରନିକଲ' କାଗଜ ଲେଖି-ଥିଲେ; କିନ୍ତୁ ମଧୁବାବୁ ଦ୍ୱିତୀୟ ଥର ପରେ ଆଉ ବିଲାତ ଯାଇନାହାନ୍ତି ।

ମଧୁବାବୁଙ୍କ ଉଦ୍ୟମକୁ ପ୍ରଶଂସା କରି 'ଉତ୍କଳଦୀପିକା' ଲେଖିଛନ୍ତି, "ଏଥିରୁ ପାଠକମାନେ ଦେଖିବେ ଯେ ମଧୁବାବୁ ଯେଉଁ କାର୍ଯ୍ୟରେ ହାତ ଦେଇଅଛନ୍ତି, ତାହା ସିଦ୍ଧି ନହେବା ପର୍ଯ୍ୟନ୍ତ ଛାଡ଼ିବେ ନାହିଁ ଏବଂ ସିଦ୍ଧି ହେବାଲାଗି ଯେତେଦୂର ଯତ୍ନ ଓ ପରିଶ୍ରମ କରିପାରନ୍ତି, ତାହା କରିବାକୁ ପଶ୍ଚାତ୍‌ପଦ ହେବେନାହିଁ । ଏ ବୟସରେ ଏପରି ଉଦ୍ୟମ-ଶୀଳତା ଅତୀବ ପ୍ରଶଂସନୀୟ । " ( × × × ସେପ୍ଟେମ୍ବର ୨୮ ତାରିଖ ୧୯୦୭)

ମଧୁବାବୁଙ୍କ୍ର ସେତେବେଳେ ପ୍ରାୟ ଷାଠିଏ ବର୍ଷ ବୟସ । ଏ ବୃଦ୍ଧ ବୟସ ଓ ଭଗ୍ନ ସ୍ୱାସ୍ଥ୍ୟକୁ ନମାନି ଦେଶପାଇଁ ସେ ବିଶ୍ରାମନେବା ପରିବର୍ତ୍ତେ ବିଶେଷ ଶ୍ରମ କରିଛନ୍ତି । ଦେଶ-ମିଶ୍ରଣ, ବନ୍ଦୋବସ୍ତ, ଓଡ଼ିଶା ଗଡ଼ଜାତ ରାଜାମାନଙ୍କର କ୍ଷମତା ବିଷୟରେ ବିଶେଷ ପ୍ରଚାର କରିଛନ୍ତି । ତିରିଶବର୍ଷିଆ ବନ୍ଦୋବସ୍ତର ବ୍ୟତିକ୍ରମ ହେଲେ, ଓଡ଼ିଶାର ଆର୍ଥିକ ଅବସ୍ଥାରେ ବିଭ୍ରାଟ ଘଟିବ, ପ୍ରଜା ଓ ଜମିଦାର ଉଭୟେ କ୍ଷତିଗ୍ରସ୍ତ ହେବେ, ଏହି ମତ ସେ ଘୋଷଣା କରୁଥିବାରୁ ଏହା ପ୍ରଚାର କରୁଥିଲି । ମଧୁବାବୁ ବହୁ ଜମିଦାରଙ୍କ ଓକିଲ ଥିବାରୁ ସେମାନଙ୍କ ସ୍ୱାର୍ଥରକ୍ଷା ଆଇନ ଦୃଷ୍ଟିରୁ ଯେପରି ହୋଇପାରିବ ସେହି ପରାମର୍ଶ ଦେଉଥିଲେ । ବିଲାତରେ ୩୦ ବର୍ଷିଆ ମିଆଦ ବନ୍ଦୋବସ୍ତ ସପକ୍ଷରେ ପ୍ରଚାର କରିଥିବାରୁ ଓଡ଼ିଶାର ପ୍ରଜାକୁଳର କ୍ଷତି ହେବାର ସମ୍ଭାବନା ଥିଲି । ଏଥିରେ ମଧୁବାବୁ ସଂପୃକ୍ତ ରହିବାରୁ କେହି କେହି କହୁଥିଲେ ମଧୁବାବୁଙ୍କୁ ରାଜା ମହାରାଜା ଓ ଜମିଦାରମାନେ ଟଙ୍କା ଦେଇ ବିଲାତ ପଠାଇଛନ୍ତି; ସେ ସେମାନଙ୍କ କଥା ନ କହି ଆଉ କାହା କଥା କହିବେ ? ଗଡ଼ଜାତ ରାଜାଙ୍କ କ୍ଷମତା ହ୍ରାସ ପ୍ରସଙ୍ଗରେ ତାଙ୍କର ତତ୍ପରତା କାର୍ଯ୍ୟକଳାପ ମଧ୍ୟ ସମସ୍ତଙ୍କ ମନରେ ସନ୍ତୋଷ ଜାତ କରି ନଥିଲି । ସେ ଓକିଲ ଭଳି କାର୍ଯ୍ୟ କରିଥିଲେ ସିନା; ନେତା ଭାବରେ କାର୍ଯ୍ୟ କରିନାହାନ୍ତି ବୋଲି ଆକ୍ଷେପ ହେଉଥିଲି ।

ଓଡ଼ିଶା ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଦାବୀକୁ ଉତ୍କଳ ସମ୍ମିଳନୀର ସଭାପତି ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ଓ ସମ୍ପାଦକ ମଧୁବାବୁ "ଓଡ଼ିଶାବାସୀଙ୍କ ପ୍ରମାଣୀକୃତ ପ୍ରତିନିଧି" ହିସାବରେ ଭାରତ-ସଚିବଙ୍କଠାରେ ଉପସ୍ଥାପିତ କରି ସର୍ବୋଚ୍ଚ ସରକାରୀ ସଂସ୍ଥାରେ ଏହାର ସ୍ଥାନପ୍ରାପ୍ତିରେ ସମର୍ଥ ହୋଇଥିବାରୁ ଓଡ଼ିଶାବାସୀଙ୍କ କୃତଜ୍ଞତାର ପାତ୍ର ହୋଇଥିଲେ ।

ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ. ଉତ୍କଳର ବିବିଧ ଦୁଃଖ ବିଲାତବାସୀଙ୍କୁ ଜଣାଇବା ନିମନ୍ତେ ବହୁ ଅର୍ଥ ବ୍ୟୟକରି ବିଲାତ ଯାଇଥିଲେ । ଉତ୍କଳର ଦୁଃଖ ଦୁର୍ଦ୍ଦଶା ଓ ରାଜନୈତିକ ଅଭାବ ଅସୁବିଧା ଚମତ୍କାର ଭାବରେ ସେ ଉପସ୍ଥାପିତ କରି ପାରିଥିଲେ । ତାଙ୍କର ଯୁକ୍ତିସଙ୍ଗତ କାରଣ ସବୁ ବିଲାତବାସୀଙ୍କ ଉପରେ ପ୍ରଭାବ ପକାଇଥିଲା । ବହୁ ଓଡ଼ିଶା ହିତାକାଙ୍କ୍ଷୀ ଇଂରେଜ ବନ୍ଧୁ ମଧୁବାବୁଙ୍କ ଯୁକ୍ତିରେ ମୁଗ୍ଧ ହୋଇ ଯାଇଥିଲେ । ସେ ଅନେକ ସଭା ସମିତିରେ ଯୋଗ ଦେଇ ଓଡ଼ିଶା କଥା ବୁଝାଇଲେ । ବିଲାତର ବହୁ ବିଶିଷ୍ଟ ପତ୍ରିକା ମଧୁବାବୁଙ୍କ ଯୁକ୍ତିସଙ୍ଗତ କାରଣ ସମ୍ବଳିତ ଆବେଦନ ପ୍ରତି ଯଥୋଚିତ ସହାନୁଭୂତି ପ୍ରକାଶ କରିଥିଲେ । ବିଲାତବାସୀ ସ୍ୱଦେଶ ଓ ସ୍ୱକାର୍ଯ୍ୟରେ ସବୁବେଳେ କର୍ମ-ତତ୍ପର ଥାଆନ୍ତି । ଏମାନଙ୍କ ଭିତରୁ ଯେ ବହୁ ଉଚ୍ଚପଦସ୍ଥ ରାଜକର୍ମଚାରୀ, ହିତାକାଙ୍କ୍ଷୀ ବନ୍ଧୁ ଓ ରାଜନୀତିଜ୍ଞ ତାଙ୍କର ଯୁକ୍ତିସଙ୍ଗତ ବର୍ଣ୍ଣନା ଶୁଣି ଦୁଃଖ ଓ ଅଭାବର ଯଥାର୍ଥତା ପ୍ରତି ସହାନୁଭୂତି ପ୍ରକାଶ କରିଥିଲେ, ଏହା ଓଡ଼ିଶା ପକ୍ଷରେ କମ୍ ସୌଭାଗ୍ୟର ବିଷୟ ନୁହେଁ । ଏକେ ତ ଓଡ଼ିଶା ଅନୁନ୍ନତ, ଅଜ୍ଞାତ, ଏଥି ପ୍ରତି ବିଲାତର ରାଜାଠାରୁ ପ୍ରଜା ପର୍ଯ୍ୟନ୍ତ ବିଭିନ୍ନ ଶ୍ରେଣୀର ଲୋକେ ଆକୃଷ୍ଟ ହୋଇଥିବା କେବଳ ମଧୁବାବୁଙ୍କ ସ୍ୱଚ୍ଛ ଦେଶପ୍ରେମ ଓ ଚମତ୍କାର ଯୁକ୍ତିଯୋଗୁଁ ସମ୍ଭବ ହୋଇଥିଲା । ସେ ଯେଉଁ ଗୁରୁଭାର ବହନ କରି ବିଲାତ ଯାଇଥିଲେ ତାହାକୁ ସେ ସୁଚାରୁରୂପେ ନିର୍ବାହ କରିପାରିଥିବାରୁ ଓଡ଼ିଶା ତାଙ୍କ ପ୍ରତି କୃତଜ୍ଞ ରହିଲା । ନିଜ ପ୍ରିୟ ପରମାରାଧ୍ୟା ମାତୃଭୂମି ଓଡ଼ିଶାର ସେବାପାଇଁ ସେ ବିଲାତରେ ଅନବରତ ପ୍ରଗାଢ଼ ପରିଶ୍ରମ କରିଥିଲେ ଏବଂ ଏଥିରେ ତାଙ୍କର ସ୍ୱାସ୍ଥ୍ୟ ଉନ୍ନତି ପଥରେ ନ ଯାଇ ଅବନତି ପଥରେ ଗତି କରିଥିଲା । ଏଥି ପ୍ରତି ମଧ୍ୟ ସେ ଭ୍ରୂକ୍ଷେପ କରି ନ ଥିଲେ । ତାଙ୍କର ଯତ୍ନ ଓ ଅଧ୍ୟବସାୟଯୋଗୁଁ 'ଏକ ଅଜ୍ଞାତ ରାଜ୍ୟ ସୁଜ୍ଞାତ ରାଜ୍ୟର ସୀମା ମାଡ଼ିଲା' ।

ମଧୁବାବୁ ଅକ୍ଟୋବର ମାସରେ ଭାରତକୁ ଫେରି ଆସିଲେ । ସେ କଲିକତାରେ ତିନି ଚାରିଦିନ ବିଶ୍ରାମ ନେଇ କଟକକୁ ଅକ୍ଟୋବର ୧୯ ତାରିଖ ଶୁକ୍ରବାର ସକାଳ ଡାକ ଗାଡ଼ିରେ ପ୍ରତ୍ୟାଗମନ କଲେ । ତାଙ୍କ ସହିତ କନିକା ରାଜା ଓ ତାଙ୍କ ପାଳିତା କନ୍ୟା କୁମାରୀ ଶୈଳବାଳା ମଧ୍ୟ ବିଲାତରୁ ଫେରିଆସିଲେ । ଶୈଳବାଳା ବିଲାତକୁ ଉଚ୍ଚଶିକ୍ଷା ପାଇବା ନିମନ୍ତେ ଯାଇଥିଲେ ।

**ମଧୁବାବୁଙ୍କୁ ସମ୍ବର୍ଦ୍ଧନା :** ୧୯୦୭ ଡିସେମ୍ବର ୨୧ ତାରିଖରେ କଟକବାସୀଙ୍କ ପକ୍ଷରୁ ମଧୁବାବୁଙ୍କୁ ଏକ ବିରାଟ ସଭାରେ ସମ୍ବର୍ଦ୍ଧନା କରାଯାଇଥିଲା । ସେହି ସଭାରେ

ମଧୁବାବୁ ବିଲାତରେ ଓଡ଼ିଶାପାଇଁ ଯେଉଁ ସବୁ କାର୍ଯ୍ୟ କରିଥିଲେ, ତାହାର ଏକ ବିବରଣୀ ଦେଇଥିଲେ ।

**ରେଭେନ୍‌ସା ସାହେବଙ୍କ ସହ ସାକ୍ଷାତ :** ପ୍ରଥମ ଥର ବିଲାତ ଯାତ୍ରା ବେଳେ ମଧୁବାବୁ (୧୮୯୭) ରେଭେନ୍‌ସା ସାହେବଙ୍କ ସହ ତାଙ୍କ ଘରେ ଦେଖା-କରିଥିଲେ । ମି. ଟି. ଇ. ରେଭେନ୍‌ସା (T. E. Ravenshaw) ଓଡ଼ିଶା ଡିଭିଜନର କମିଶନର ଥିଲେ । ୧୮୬୬ର କରାଳ ଦୁର୍ଭିକ୍ଷରେ ଓଡ଼ିଶାର ଯେଉଁ ଅପୂରଣୀୟ କ୍ଷତି ହୋଇଗଲା, ତାହା ତାଙ୍କ ମନରେ ବିଶେଷ କଷ୍ଟ ଦେଇଥିଲା । ସେତେବେଳେ ସେ ଓଡ଼ିଶାର କମିଶନର ଥିଲେ । ସେ ଅନୁଭବ କରିଥିଲେ ଯେ ସରକାରୀ କର୍ମଚାରୀମାନଙ୍କ ଅବହେଳା ଯୋଗୁଁ ଲୋକଙ୍କୁ ରକ୍ଷା କରିବା ନିମନ୍ତେ ଯାହା କରିବା କଥା, ତାହା ହୋଇପାରିଲା ନାହିଁ । ସେ ନିଜେ ଉଚ୍ଚ କର୍ମକର୍ତ୍ତା ଥିବାରୁ ଏ ଦୋଷ ତ୍ରୁଟି ପାଇଁ ନିଜର ଦାୟିତ୍ୱ ଥିବା ମଧ୍ୟ ଅନୁଭବ କରିଥିଲେ, ଅନୁତାପ ମଧ୍ୟ କରିଥିଲେ । ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ତାଙ୍କର ଆଖି ଫିଟାଇ ଦେଇଥିଲା । ଏ ଦେଶର ପୁନର୍ଗଠନ ପାଇଁ ନିଜେ କିଛି କରିବା ତାଙ୍କର କର୍ତ୍ତବ୍ୟ ଏହି ଭାବ ତାଙ୍କ ମନରେ ଜାତ ହୋଇଥିଲା । ସେ ଉଚ୍ଚ ରାଜକର୍ମଚାରୀ ଥିବା ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଉନ୍ନତିପାଇଁ ଧ୍ୟାନ ଦେଇଥିଲେ ଏବଂ ବହୁ ଦେଶ-ହିତକର କାର୍ଯ୍ୟ ମଧ୍ୟ କରି ଯାଇଥିଲେ ।

ଅବସର ନେବା ପରେ ରେଭେନ୍‌ସା ବିଲାତକୁ ପ୍ରତ୍ୟାବର୍ତ୍ତନ କରିଥିଲେ ଏବଂ ଜୀବନର ଅବଶିଷ୍ଟ କାଳ ଶାନ୍ତିରେ କଟାଥିଲେ । ସେ ବିଲାତରେ ଥାଇ ମଧ୍ୟ ଓଡ଼ିଶାର ସୁଖଦୁଃଖର ଖବର ରଖୁଥିଲେ । ବିଲାତରେ ପ୍ରକୃତ ଓଡ଼ିଆଙ୍କୁ ଦେଖିଲେ ସେ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ଓଡ଼ିଶାର ସର୍ବସାଧାରଣ କାର୍ଯ୍ୟରେ ସହାନୁଭୂତି ଦେଖାଇ ପତ୍ର ଲେଖୁଥିଲେ ଓ ସାଧ୍ୟମତେ ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ । ସେ ଓଡ଼ିଶାର ଜଣେ ବନ୍ଧୁରୂପେ କାର୍ଯ୍ୟ କରୁଥିଲେ । ଓଡ଼ିଶା ଲୋକେ ମଧ୍ୟ ଏକଥା ଭୁଲି ନ ଥିଲେ ।

ମଧୁବାବୁ ବିଲାତ ଯିବା ପୂର୍ବରୁ ବହୁ ବନ୍ଧୁ ତାଙ୍କୁ ରେଭେନ୍‌ସାଙ୍କ ସଙ୍ଗେ ଦେଖା କରିବାକୁ ଅନୁରୋଧ କରିଥିଲେ ଏବଂ ସେମାନଙ୍କର ସଲାମ୍ ଜଣାଇବା ପାଇଁ ମଧ୍ୟ କହିଥିଲେ । ବିଲାତରେ ପହଞ୍ଚି ମଧୁବାବୁ ରେଭେନ୍‌ସାଙ୍କ ସହିତ ସାକ୍ଷାତ୍ କରିବାପାଇଁ ତାଙ୍କ ଘରକୁ ଯିବାକୁ ଇଚ୍ଛାକରି ଏଥିପାଇଁ ଦିନ ଓ ସମୟ ଜଣାଇବା ନିମନ୍ତେ ତାଙ୍କୁ ପତ୍ର ଲେଖିଥିଲେ । ତାଙ୍କଠାରୁ ଉତ୍ତର ଆସିବା ପରେ ମଧୁବାବୁ ରେଭେନ୍‌ସା ସାହେବଙ୍କ ଘରକୁ ଯାଇଥିଲେ । ଏହି ଦେଖା ସାକ୍ଷାତର ଏକ ବିବରଣୀ ମଧୁବାବୁ ଇଂରେଜୀରେ ଲେଖି 'ଉତ୍କଳ ଦୀପିକା' (୭ ତାରିଖ, ଅଗଷ୍ଟ ୧୮୯୭)ରେ ପ୍ରକାଶ କରିଥିଲେ । ତାଙ୍କ ପତ୍ରର ସାରମର୍ମ ଏହା—

"× × ମୁଁ ଆଗରୁ ମିଃ ରେଭେନ୍‌ସାଙ୍କୁ ଜାଣି ନଥିଲି । ଭାରତରେ ତାଙ୍କ ସହିତ କେବେ ଦେଖା କରିନାହିଁ । ମୁଁ କଲିକତାରୁ ଓଡ଼ିଶାକୁ ଫେରିବା ପୂର୍ବରୁ ସେ ଏ ଦେଶରୁ ଚାଲିଯାଇଥିଲେ । ତାଙ୍କ ସହିତ ଦେଖା କରିବାର ସୌଭାଗ୍ୟ ଲାଭ କରିଥିବାରୁ

ମୁଁ ପ୍ରକୃତରେ ଖୁସି । ମୁଁ ଯାହା ଦେଖିଲି ଓ ଶୁଣିଲି ତାହାର ଆକ୍ଷରିକ ବିବରଣୀ ଦେଉଛି, ମନ୍ତବ୍ୟ ଦେଉନାହିଁ । 'ମୁଁ ଯେପରି ଅଛି ସେହିପରି ମୋର ଚିତ୍ର ଅଙ୍କନ କର' ବୋଲି ବିଲାତର ବିଖ୍ୟାତ ରାଜନୈତିକ ନେତା କ୍ରମ୍‌ୱେଲ (Cromwell) ତାଙ୍କର ଚିତ୍ରକାରଙ୍କୁ କହିଥିଲେ । ଅବଶ୍ୟ, ଏହାଦ୍ୱାରା ପ୍ରକୃତ ଯୋଗ୍ୟ ଲୋକଙ୍କର ପ୍ରକୃତ ଚିତ୍ର ଏଥିରୁ ମିଳେ । ମି: ରେଭେନ୍‌ସା ସାସେକସରେ (Sussex) ବାସ କରୁଛନ୍ତି । ଲଣ୍ଡନର ଥ୍ରୀ ବ୍ରିଜସ୍ ରେଲ ଷ୍ଟେସନ (Three Bridges Station) ଓ ବ୍ରାଇଟନ୍ ଲାଇନ୍ (Brighton Line) ଠାରୁ ଏହା ପ୍ରାୟ ପାଞ୍ଚମାଇଲ ଦୂର । ରେଭେନ୍‌ସାଙ୍କ ଗୃହ ଉପରୁ ସିଧାସଳଖ ଦେଖିଲେ ଏହି ସ୍ଥାନଟି ବେଶି ଦୂର ନୁହେଁ । ଗତ ରବିବାର ଦିନ ତାଙ୍କ ଘରକୁ ଯାଇଥିଲି । ମୁଁ ରେଳରୁ ଓହ୍ଲାଇବା ସାଙ୍ଗେ ସାଙ୍ଗେ ଜଣେ ଧବଳକେଶ ଖର୍ବକାୟ ବୃଦ୍ଧ ମୋ ନିକଟକୁ ଆସି ପଚାରିଲେ, 'ମି. ଦାସ କି ?' କେଜାଣି କେଉଁ ପ୍ରାଚୀନକାଳର ବନ୍ଧୁ ପରି ସେ କରମର୍ଦ୍ଦନ କଲେ । ମୁଁ କହିଲି, 'ମି. ରେଭେନ୍‌ସା, ଆପଣ ଏତେଦୂର ଆସିଥିବାରୁ ମୁଁ ଦୁଃଖିତ । ମୁଁ ନିଶ୍ଚୟ ଆପଣଙ୍କ ଘରକୁ ବାଟ ପାଇଥାଆନ୍ତି ।' ତାଙ୍କ ଘୋଡାଗାଡ଼ିରେ ବସି ଦୁହେଁ ତାଙ୍କ ଘରକୁ ଚାଲିଗଲୁ ।

"କେତେ ମିନଟ୍ କଥାବାର୍ତ୍ତା ପରେ ସେ ମୋତେ କହିଲେ, 'ମୋତେ କ୍ଷମା କରିବେ, ମୁଁ ଗୋଟିଏ ପ୍ରଶ୍ନ ପଚାରିବି । ଆପଣ କଣ ପ୍ରକୃତ ଓଡ଼ିଆ ?' ମୁଁ କହିଲି, 'ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଓଡ଼ିଆ ରକ୍ତ ।' ସେ କହିଲେ, 'ମୁଁ ଆପଣଙ୍କ ଜାତିକୁ ଅତି ଶ୍ରଦ୍ଧା କରେ । ଅନ୍ୟମାନଙ୍କ ଅପେକ୍ଷା ଜଣେ ଓଡ଼ିଆ ସହିତ ମୁଁ ଅତି ଅବାଧରେ କଥାବାର୍ତ୍ତା କରିବି ।' ରେଭେନ୍‌ସାଙ୍କୁ ମୁଁ ଖଣ୍ଡିଏ ଖାଣ୍ଟି ଓଡ଼ିଆ ପିକା ବଢ଼ାଇ ଦେଲି ।"

ମି. ରେଭେନ୍‌ସା ମଧୁବାବୁଙ୍କୁ ତାଙ୍କ ଘର ଭିତରେ ବୁଲାଇ ସବୁ ଦେଖାଇଲେ । ଗାଡ଼ି, ଘୋଡ଼ା, ବନ୍ଧୁକ, ତାହାଙ୍କ ପାଳିତ ପଶୁପକ୍ଷୀ ଦେଖି ମଧୁବାବୁ ଖୁସି ହେଲେ । ସାହେବ ଭଲ ଘୋଡ଼ା ଚଢ଼ାଳି ବୋଲି ତାଙ୍କର ଧାରଣା ହେଲା ।

"ତାଙ୍କ ଘରଭିତରେ ଓ ତାଙ୍କ ବୈଠକଖାନାରେ କଟକ ତିଆରି କେତେକ ରୁପାଗହଣା, ଭାରତରୁ ବଦାୟ ହୋଇ ଯିବାବେଳେ ଯେଉଁ ହୁକା ଭାରତରେ ସେ ବ୍ୟବହାର କରୁଥିଲେ, ତାହାର କେତେକ ଅଂଶ ମଧ୍ୟ ଥିବା ଦେଖିଲି । ହୁକା ବ୍ୟବହାରର ପ୍ରାଚୀନତା ଓ ଆଦ୍ୟ ସମ୍ବନ୍ଧରେ ମଧ୍ୟ ଅଳ୍ପକ୍ଷଣ କଥାବାର୍ତ୍ତା ହେବା ପରେ ତାଙ୍କ ତିନି ପୁଅଙ୍କ ଚିତ୍ର ମଧ୍ୟ ଦେଖିଲି । ଏ ତିନିଙ୍କ ମଧ୍ୟରୁ ଦୁଇଜଣ ବର୍ତ୍ତମାନ ଭାରତରେ ଅଛନ୍ତି; ତିନିହେଁ ସୈନ୍ୟ-ବିଭାଗରେ କାମ କରୁଛନ୍ତି । ସାନପୁଅ ଆଫଗାନିସ୍ଥାନ ଯୁଦ୍ଧରେ ଯୋଗ ଦେଇଥିଲେ, ସେ ପରେ ମରିଯାଇଛନ୍ତି ।"

ଢେଙ୍କାନାଳ ତିଆରି ଗୋଟିଏ ଛୁରୀ ସେଠାରେ ବୁଢ଼ା ମହାରାଜା ତାଙ୍କୁ ଭେଟି ଦେଇଥିଲେ । କେଉଁଝରର ରାଜ୍ୟର ଦୁଇଟା ବଡ଼ ହାତୀଦାନ୍ତ ଓ କେତେକ ଗଡ଼ଜାତ ଅସ୍ତ୍ର ମଧ୍ୟ ଥିଲା । ସେଗୁଡ଼ିକ ମଧୁବାବୁ ଦେଖିଥିଲେ ।

"ରେଭେନ୍‌ସା ସବୁ ଗଡ଼ଜାତ ମାହାଲର ରାଜାମାନଙ୍କର କୁଶଳ ପଚ୍ଛରିଥିଲେ । କେଉଁଝର ଓ ନୟାଗଡ଼ରେ ଯେଉଁ ମେଳି ହୋଇଥିଲା, ସେ ବିଷୟ ମଧ୍ୟ ପଚ୍ଛରିଥିଲେ । ସୌଭାଗ୍ୟକୁ ମୁଁ ଉଭୟ ଘଟନାରେ ଓକିଲ ଥିଲି, ସେହିହେତୁ ତାଙ୍କୁ ମୁଁ ସବୁ ତଥ୍ୟ କହିଥିଲି । ଗଡ଼ଜାତର ରାଜା ଓ ପ୍ରଜାଙ୍କ ଚରିତ୍ର ଏବଂ କାର୍ଯ୍ୟକଳାପ ସମ୍ବନ୍ଧରେ ତାଙ୍କର ଗଭୀର ଜ୍ଞାନ ଥିବା ଦେଖି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଲି । କେହି କେହି ରାଜାଙ୍କ ଚରିତ୍ର ଓ କାର୍ଯ୍ୟକଳାପ ସମ୍ବନ୍ଧରେ ସେ ଖୁବ୍ ମନେରଖିଥିଲେ ଏବଂ ବିଶେଷ ବିଶେଷ ଘଟନାରେ ସେ (ରାଜା) କିପରି କାର୍ଯ୍ୟ କରୁଥିଲେ, ତାହା ମଧ୍ୟ ବ୍ୟକ୍ତ କରିଥିଲେ । ଏହା ଦେଖି ମୁଁ ଅଧିକ ଅଶ୍ଚର୍ଯ୍ୟ ହୋଇଯାଇଥିଲି ।"

"ତାଙ୍କ ଘରେ ତାଙ୍କ କାରଖାନାଟି ହେଲା ଲକ୍ଷ୍ୟ କରିବାର ଜିନିଷ । ସେଥିରେ ଚଳିବାଭଳି କେତେ ପ୍ରକାର ଯନ୍ତ୍ରପାତି ଥିଲା । ଘଣ୍ଟା ନିର୍ମାଣଠାରୁ ଆରମ୍ଭ କରି ବାଷ୍ପଚାଳିତ କଳର ଯନ୍ତ୍ରାଦି ମଧ୍ୟ ସେଠାରେ ଥିଲା । ନିଜେ ରେଭେନ୍‌ସା ଘଡ଼ି ମରାମତି କରିବାଠାରୁ, ଚଉକି ଓ କବାଟିନା ଲଣ୍ଠନ ତିଆରି ପର୍ଯ୍ୟନ୍ତ ସବୁ କାମ କରୁଥିଲେ ।"

"ଆଉ ଥରେ ଓଡ଼ିଶା ଦେଖିବାକୁ ରେଭେନ୍‌ସାଙ୍କର ବଳବତ୍ତର ଇଚ୍ଛା ଥିଲା । ବର୍ତ୍ତମାନ ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ପଡ଼ିଛି, ସେ ସମ୍ବନ୍ଧରେ ସେ ଭାରତକୁ ଯିବା ଇଚ୍ଛା କରୁଥିଲେ; କିନ୍ତୁ ଭାରତ ସରକାର କହିଲେ ଯେ, ବାହାରର କୌଣସି ସାହାଯ୍ୟ ବର୍ତ୍ତମାନ ସେମାନଙ୍କର ଆବଶ୍ୟକ ନାହିଁ । ଯଦି ସେମାନେ ରେଭେନ୍‌ସାଙ୍କ ଭଳି ଜଣେ ମୂଲ୍ୟବାନ ଅଫିସରଙ୍କୁ ଭାରତକୁ ପଠାଇ ଥାଆନ୍ତେ, ତାହାହେଲେ ସେମାନେ ବହୁତ ଧନ, ବହୁତ ପ୍ରାଣରକ୍ଷା କରିପାରିଥାଆନ୍ତେ ଓ ବହୁତ ମାରାତ୍ମକ ଭ୍ରମ କରିବାରୁ ମଧ୍ୟ ରକ୍ଷାପାଇଥାଆନ୍ତେ । ଏଥିପାଇଁ ରେଭେନ୍‌ସା କିଛି ପାରିଶ୍ରମିକ ମାଗୁ ନ ଥିଲେ ।"

ଓଡ଼ିଶାକୁ ପୁନର୍ବାର ଫିରିବାପାଇଁ ରେଭେନ୍‌ସାଙ୍କର ପ୍ରବଳ ଇଚ୍ଛା ଥିବା ଦେଖି ମଧୁବାବୁ କହିଥିଲେ. "ଓଡ଼ିଶାରେ ଥିବା ତାଙ୍କର ପୁରାତନ ବନ୍ଧୁମାନେ ତାଙ୍କୁ ନିମନ୍ତ୍ରଣ ପଠାଇ ରାହାଖର୍ଚ୍ଚର ବ୍ୟବସ୍ଥା କଲେ ଭଲ ହୁଅନ୍ତା ।" କଟକର ବହୁ ଭଦ୍ରବ୍ୟକ୍ତିଙ୍କୁ ତାଙ୍କର ସଲାମ ଜଣାଇବାପାଇଁ ରେଭେନ୍‌ସା ମଧୁବାବୁଙ୍କୁ ଅନୁରୋଧ କରିଥିଲେ । ବିଲାତ ଛାଡ଼ିବା ପୂର୍ବରୁ ଆଉଥରେ ତାଙ୍କୁ ଭେଟିବାପାଇଁ ସେ ମଧୁବାବୁଙ୍କୁ ଅନୁରୋଧ କରିଥିଲେ । ମାତ୍ର ସେଥିପାଇଁ ମଧୁବାବୁ ସମୟ ପାଇନଥିଲେ । ମିଃ ରେଭେନ୍‌ସା ତାଙ୍କ ପାଖକୁ ଆଉଥରେ ଚିଠି ଦେଇଥିଲେ ।

ପ୍ରଥମ ବିଲାତଯାତ୍ରା ସମୟରେ ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ବିଷୟରେ ମିଃ ରେଭେନ୍‌ସା ଘନିଷ୍ଠ ଭାବରେ ଚିନ୍ତା କରୁଥିବା କଥା ଜଣାଯାଇଥିଲା ।

ପ୍ରଥମ ଥର ଯାତ୍ରାରେ ମଧୁବାବୁ ବିଲାତରୁ ଫେରିବା ବାଟରେ ଇଉରୋପର କେତେକ ରାଜ୍ୟ ଭ୍ରମଣ କରିଥିଲେ । ବାଟରେ ଇଜିପ୍ଟକୁ ମଧ୍ୟ ଯାଇଥିଲେ ଓ ସେଠାରେ ପିରାମିଡ଼ ଦେଖି ଅଭିଭୂତ ହୋଇପଡ଼ିଥିଲେ । ପିରାମିଡ଼୍ ନିକଟରେ ବସିଥିବାବେଳେ ଖଣ୍ଡିଏ

ପତ୍ର ଇଂରେଜୀରେ ଲେଖି ପ୍ରକାଶ ନିମନ୍ତେ ଉତ୍କଳ ଦୀପିକାକୁ ପଠାଇଥିଲେ । ମଧୁବାବୁ ବିଲାତକୁ ଯିବା ବାଟରେ ଫ୍ରାନ୍ସ ଭିତରେ ଯାଇଥିଲେ । ଫେରିବାବେଳେ ବେଲଜିୟମ୍, ଜର୍ମାନୀ, ବାଭେରିଆ, ସୁଇଜରଲାଣ୍ଡ ଓ ଇଟାଲୀ ଭ୍ରମଣ କରିଥିଲେ । ମିଶରରେ ବିଖ୍ୟାତ ପିରାମିଡ୍ ଦେଖିସାରି ସେ ଭାରତକୁ ଫେରିଥିଲେ । ଏ ସବୁ ସ୍ଥାନରେ ସେ ଅତି ଅଳ୍ପ ସମୟ ରହିଥିଲେ । ଏହି ହେତୁ ସେ ଦ୍ୱିତୀୟଥର ଏ ଦେଶମାନଙ୍କୁ ଗଲେ ନାହିଁ ।

**ବନ୍ୟା-ଦୁର୍ଭିକ୍ଷ ସାହାଯ୍ୟ ବ୍ୟବସ୍ଥା** : ୧୯୦୭ ନଭେମ୍ବର ଶେଷ ଆଡ଼କୁ କଟକ ଟାଉନ୍ ଲାଇବ୍ରେରି ହଲ୍‌ରେ ଦୁର୍ଭିକ୍ଷ ସାହାଯ୍ୟପାଇଁ ଏକ ସଭା ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । ବିଲାତରେ 'ଗ୍ଲାସ୍‌ଗୋ ହେରାଲ୍‌ଡ୍' କାଗଜର ସମ୍ବାଦଦାତା ନେଭିନ୍‌ସନ ମଧୁବାବୁଙ୍କ ଆମନ୍ତ୍ରଣକ୍ରମେ ଓଡ଼ିଶାର ଦୁର୍ଭିକ୍ଷ ଅବସ୍ଥା ଦେଖିବାପାଇଁ ଆସିଥିଲେ । ସେ ମଧୁବାବୁଙ୍କ ଅତିଥି ହୋଇ ତାଙ୍କ ବାସଭବନରେ ରହୁଥିଲେ ଓ ମଧୁବାବୁଙ୍କ ଅନୁରୋଧକ୍ରମେ ସେ ସେହି ସଭାରେ ବକ୍ତୃତା ଦେଇଥିଲେ । ନେଭିନ୍‌ସନ ବିଲାତରେ ମଧୁବାବୁଙ୍କ ଜାତିହିତକର କାର୍ଯ୍ୟାବଳୀ ବର୍ଣ୍ଣନା କରିଥିଲେ ଏବଂ ବର୍ତ୍ତମାନର ଦୁର୍ଭିକ୍ଷ ସମ୍ବନ୍ଧରେ ବିଲାତର ଖବରକାଗଜମାନଙ୍କରେ ସମ୍ବାଦ ପ୍ରକାଶ କରି ବିଲାତର ଜନସାଧାରଣ ଓ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବେ ବୋଲି କହିଥିଲେ ।

ସେହି ବର୍ଷ ଡିସେମ୍ବରରେ ବଙ୍ଗର ଲାଟ୍ (ସମ୍ବଲପୁର-ଓଡ଼ିଶା ମିଶ୍ରଣର ସୂତ୍ରଧର) ସାର୍ ଆଣ୍ଡ୍ରୁ ଫ୍ରେଜର (Sir Andrew Fraser) କଟକକୁ ଆଗମନ କରିଥିଲେ । ମଧୁବାବୁଙ୍କ ନେତୃତ୍ୱରେ ଓଡ଼ିଶାବାସୀ ଦୁର୍ଭିକ୍ଷ ସାହାଯ୍ୟ ପାଇଁ ନିବେଦନ କରିଥିଲେ । ଫ୍ରେଜର କଟକ ଜିଲ୍ଲାର ଯାଜପୁର ଓ ଯେନାପୁର ଅଞ୍ଚଳ ଭ୍ରମଣ କରି ଦୁର୍ଭିକ୍ଷର ଅବସ୍ଥା ଦେଖିଥିଲେ । ମଧୁବାବୁ ତାଙ୍କୁ ସେଠାରେ ଭେଟି ବନ୍ୟା ପ୍ରତିକାରର ଉପାୟ ବିଷୟରେ ପରାମର୍ଶ ଦେଇଥିଲେ । ବିଲାତ ପାର୍ଲାମେଣ୍ଟର ସଭ୍ୟ ମି. ରୁଥର୍‌ଫୋର୍ଡ ଡିସେମ୍ବରରେ କଟକକୁ ଆସି ମଧୁବାବୁଙ୍କର ଅତିଥି ହୋଇଥିଲେ । ତାଙ୍କୁ ସମ୍ବର୍ଦ୍ଧନା କରିବାପାଇଁ କଟକରେ ଏକ ସଭା ହୋଇଥିଲା । ମଧୁବାବୁ ସଭାରେ ଓଡ଼ିଶାର ବିଭିନ୍ନ ସମସ୍ୟା ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ଓ ଭାରତ ତଥା ଓଡ଼ିଶାର ଶିଳ୍ପ ବିକାଶପାଇଁ ସରକାରୀ ଉଦ୍ୟମ ହେବା ଉଚିତ ବୋଲି କହିଥିଲେ । ଦେଶମିଶ୍ରଣ, ଦୁର୍ଭିକ୍ଷ ପ୍ରଭୃତି ବିଭିନ୍ନ ସମସ୍ୟା ବିଷୟରେ ମଧ୍ୟ ବୁଝାଇଥିଲେ । ମି. ରୁଥର୍‌ଫୋର୍ଡ ବିଲାତ ଓ ଭାରତ ସରକାରଙ୍କୁ ଏସବୁ ସମସ୍ୟାର ଗୁରୁତ୍ୱ ବୁଝାଇ ଆଶୁ ପ୍ରତିକାର ପାଇଁ ଜଣାଇବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ମଧୁବାବୁ ଦୁର୍ଭିକ୍ଷ ସାହାଯ୍ୟ କମିଟିର ସଭାପତି ହୋଇଥିଲେ ଏବଂ ସାହାଯ୍ୟ ଦାନ କାର୍ଯ୍ୟ ନିୟନ୍ତ୍ରଣ କରୁଥିଲେ ।

ସମ୍ବାଦଦାତା ମି. ନେଭିନ୍‌ସନ୍ (Henry W. Nevinson) ମଧୁବାବୁଙ୍କ ସମ୍ବନ୍ଧରେ ତାଙ୍କର ଏକ ବହିରେ ଲେଖିଥିଲେ—"ମୁଁ ୧୯୦୭ର ବସନ୍ତ ଋତୁରେ ଓଡ଼ିଶାକୁ

ଆସିଲି । ମଧୁବାବୁଙ୍କ କରୁଣ ଓ ହୃଦୟବିଦାରକ ନିବେଦନ ଯୋଗୁଁ ମୁଁ ଆସିଥିଲି।
ମି. ମଧୁସୂଦନ ଦାସ ଜଣେ ଅତି ଉଚ୍ଚଶିକ୍ଷିତ ବ୍ୟକ୍ତି । ସେ ପ୍ରାଚୀନ ସ୍ୱତନ୍ତ୍ର ଓଡ଼ିଆ ଜାତିର ଲୋକ । ଏହି ଜାତି ସ୍ୱ ମାତୃଭାଷା ଛଡ଼ା ଅନ୍ୟ କୌଣସି ମାନବିକଭାଷା ଜାଣିନାହାନ୍ତି ଏବଂ ଏମାନଙ୍କର ଲିପି ଗୋଲ ଫାସର ତାର ଜାଲ ପରି । ସେ ନିଜକୁ ମଧ ଖ୍ରୀଷ୍ଟିଆନ୍ ବୋଲି କହୁଥିଲେ ଅବଶ୍ୟ, ତାଙ୍କର ଧର୍ମମତ ଖ୍ରୀଷ୍ଟଙ୍କ ଉପରେ ପ୍ରତିଷ୍ଠିତ ଥିଲା; ରୋମାନ୍ କେଥୋଲିକ୍ ଆଙ୍ଗ୍ଲିକାନ୍ ନନ୍‌କନ୍‌ଫରମିଷ୍ଟ ମତବାଦ ଉପରେ ପ୍ରତିଷ୍ଠିତ ନଥିଲା କହିଲେ ଚଳେ । କାରଣ, ତାଙ୍କର ମତ ଖ୍ରୀଷ୍ଟଙ୍କର ଗୋଟିଏ ମାତ୍ର ପ୍ରାର୍ଥନା ଉପରେ ପ୍ରତିଷ୍ଠିତ ଥିଲା । ପ୍ରାର୍ଥନାଟି ହେଉଛି –"ପିତା ସେମାନଙ୍କୁ କ୍ଷମାକର, କାରଣ ସେମାନେ କଣ କରୁଛନ୍ତି ଜାଣିପାରୁ ନାହାନ୍ତି ।" ସେ ମୋତେ ବହୁତ ଥର କହିଛନ୍ତି, "ଯେଉଁ ଲୋକ ଅତ୍ୟାଚାରଦ୍ୱାରା ମୃତ୍ୟୁ ବରଣ କରୁଛି ଏବଂ ସେ ମୃତ୍ୟୁ ସମୟରେ ଏହି ପ୍ରାର୍ଥନା କରି ମରୁଛି, ତାହା ନିଶ୍ଚୟ ସ୍ୱର୍ଗୀୟ । ମୁଁ ସେହି ପ୍ରାର୍ଥନାଟି ଶୁଣିବା କ୍ଷଣି ତାହାର ସତ୍ୟତା ଉପଲବ୍ଧି କରିଛି ଏବଂ ଏହା ପରେ ମୁଁ ଆଉ କେବେ ସନ୍ଦେହ କରିନାହିଁ ।"

ମଧୁବାବୁଙ୍କ ପବିତ୍ର ଜୀବନର କେତୋଟି ଘଟଣା ସେ ଲିପିବଦ୍ଧ କରିଛନ୍ତି । "ନିଜ ଜାତି ପ୍ରତି ତାଙ୍କର ଅସୀମ ବଦାନ୍ୟତା ଓ ପ୍ରଗାଢ଼ ସହାନୁଭୂତି ଯୋଗୁଁ ତାଙ୍କ ଜୀବନକାଳ ଭିତରେ ପବିତ୍ରତାର କେତେକ ବିଭୂତି ସେ ଲାଭ କରିଛନ୍ତି । ମୁଁ ଆଖିରେ ଦେଖିଛି; ଜଣେ ଅତି ଦୁଃସାଧ୍ୟ ବ୍ରଣପୀଡ଼ିତ ଲୋକ ତାଙ୍କୁ ଅତି ବିନୟରେ ପ୍ରାର୍ଥନା କରିଥିଲା, 'ମୋତେ ଅଧଲିଟିଏ ଦିଅନ୍ତୁ, ମୁଁ ତାକୁ ନେଇ ମୋ ବ୍ରଣରେ ଛୁଆଁଇଦେଲେ ମୋ ବ୍ରଣ ଭଲ ହୋଇଯିବ ।' ଆଉ ଜଣେ ଲୋକ ପିତଳ ପାତ୍ରଟିଏ ଧରି ତାଙ୍କଠାକୁ ଆସି କହିଲା, 'ଏ ପାତ୍ରର ପାଣିରେ ଆପଣ ଆଙ୍ଗୁଠିକୁ ବୁଡ଼ାଇ ଦିଅନ୍ତୁ । ମୋ ସ୍ତ୍ରୀ ଅତ୍ୟନ୍ତ ଗର୍ଭକଷ୍ଟ ପାଉଛି । ତାକୁ ଏ ପାଣି ପିଆଇ ଦେବି । ସେ ସୁଖରେ ଶିଶୁ ପ୍ରସବ କରିବ । ମଧୁବାବୁ ସେ ପାଣିରେ ଆଙ୍ଗୁଠି ବୁଡ଼ାଇଲେ ଓ ଗର୍ଭିଣୀ ତାହା ପାନ କରିବା ପରେ ଶିଶୁଟି ନିରାପଦରେ ଜନ୍ମଗ୍ରହଣ କଲା । ଏଭଳି ଜଣେ ଲୋକର ସଙ୍ଗ ଲାଭ କରିବା ଅର୍ଥ ସେହି ଲୋଭନୀୟ ମଧ୍ୟଯୁଗକୁ ଫେରିଯିବା; ପବିତ୍ରତା କାମନାକୁ ପ୍ରତ୍ୟାଖ୍ୟାନ କରିବା ଭଳି ସେହି ଯୁଗରେ ପ୍ରକୃତିର ନିୟମ ଏତେ କଠୋର ଓ ଅନମନୀୟ ନଥିଲା ।"

**ୱେଲବି କମିଶନଙ୍କ ସମ୍ମୁଖରେ ସାକ୍ଷ୍ୟ (୧୯୦୭)** : ଭାରତରେ ଶାସନ ବିକେନ୍ଦ୍ରୀକରଣ ସମ୍ପର୍କରେ ଲର୍ଡ ୱେଲବି (Lord Welby)ଙ୍କ ଅଧ୍ୟକ୍ଷତାରେ ସରକାର ଏକ କମିଶନ ବସାଇଥିଲେ । ୧୯୦୭ ଡିସେମ୍ବର ମାସରେ କଲିକତାଠାରେ ମଧୁବାବୁ ଏହି କମିଶନଙ୍କ ଆଗରେ ସାକ୍ଷ୍ୟ ଦେଇ ପ୍ରାଦେଶିକ ସରକାରମାନଙ୍କୁ ବିଶେଷ କ୍ଷମତା ଦେବା ଆବଶ୍ୟକ ବୋଲି କହିଥିଲେ । ସେ ପୁଣି କହିଥିଲେ, ଭାଷାସୂତ୍ରରେ ପ୍ରଦେଶ ଗଠନ ହେବା ସର୍ବାଗ୍ରେ ଉଚିତ । ପ୍ରଥମେ ଏପରି ନକରି ପ୍ରଦେଶମାନଙ୍କର ପୁନର୍ଗଠନ

କଲେ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ହେବ । ଉଦାହରଣ ସ୍ୱରୂପ ସେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ଦୁର୍ଦ୍ଦଶା କଥା ବର୍ଣ୍ଣନା କରି ଭାଷାସୂତ୍ରରେ ଏମାନଙ୍କୁ ଏକ ଶାସନାଧୀନରେ ରଖିବା ଉଚିତ ବୋଲି କହୁଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଖଣ୍ଡବିଖଣ୍ଡିତ ହୋଇ ଚାରୋଟି ପ୍ରଦେଶରେ ସଂଖ୍ୟାନ୍ୟୂନ ଭାଷାଭାଷୀ ଅଞ୍ଚଳ ଭାବରେ ରହିଥିବାଯୋଗୁ ଏମାନଙ୍କର କୌଣସି ପ୍ରକାର ଉନ୍ନତି ହୋଇପାରୁନାହିଁ କି ରାଜତ୍ୱର କୌଣସି ସୁବିଧା ସେମାନେ ଭୋଗକରି ପାରୁନାହାନ୍ତି । ଭାଷାସୂତ୍ରରେ ପ୍ରଦେଶ ପୁନର୍ଗଠନ ହେବା ପୂର୍ବରୁ ପ୍ରଦେଶମାନଙ୍କୁ ବେଶି ଶାସନ କ୍ଷମତା ଦେଲେ, ଭାଷା ସୂତ୍ରରେ ପ୍ରଦେଶ ଗଠନ କାର୍ଯ୍ୟ ସହଜ ହେବା ସମ୍ଭବ ନୁହେଁ । ଏହାଦ୍ୱାରା ଓଡ଼ିଶା ଓ ଓଡ଼ିଆଭାଷୀ ଲୋକଙ୍କର ଦୁଃଖ ବୃଦ୍ଧି ପାଇବ ସିନା, କମିବ ନାହିଁ । ଏହି କାରଣରୁ ସେ ଦାବୀ କରିଥିଲେ, ପ୍ରଥମେ ଭାଷାସୂତ୍ରରେ ପ୍ରଦେଶ ଗଠନ କରାଯାଉ, ତା' ପରେ କେନ୍ଦ୍ରରୁ ପ୍ରଦେଶମାନଙ୍କୁ ଅଧିକ କ୍ଷମତା ହସ୍ତାନ୍ତର କରାଯାଉ ।

**ଶୈଳବାଳାଙ୍କର ବିଲାତରେ ଶିକ୍ଷାଲାଭ** ସ୍ତ୍ରୀଶିକ୍ଷାର ଉନ୍ନତି ନିମନ୍ତେ ମଧୁବାବୁ ବରାବର ଉଦ୍ୟମକରି ଆସିଥିଲେ । 'ଉତ୍କଳ ସମ୍ମିଳନୀ'ର ବିଭିନ୍ନ ଅଧିବେଶନମାନଙ୍କରେ ସ୍ତ୍ରୀଶିକ୍ଷାର ପ୍ରଚୁର ପ୍ରସାର ନିମନ୍ତେ ପ୍ରସ୍ତାବ ଗୃହୀତ ହୋଇଛି ଏବଂ ସଭାପତିମାନେ ସ୍ୱ ସ୍ୱ ଅଭିଭାଷଣରେ ଏହି ସମ୍ବନ୍ଧରେ ବିଶେଷ ଦୃଷ୍ଟି ଦେଇଛନ୍ତି । ମଧୁବାବୁଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ସାହାଯ୍ୟ ଓ ସହାନୁଭୂତିରେ ବହୁ ବିଦ୍ୟାଳୟ ସ୍ଥାପିତ ହୋଇଛି । କଟକରେ ସ୍ତ୍ରୀଶିକ୍ଷା ପାଇଁ ବାଳିକା ବିଦ୍ୟାଳୟ ମଧ୍ୟ ସ୍ଥାପିତ ହୋଇଛି । ରାୟବାହାଦୂର ମଧୁସୂଦନ ରାଓଙ୍କ ଭଉଣୀ ଶ୍ରୀମତୀ ରେବା ରାୟଙ୍କ ଯତ୍ନରେ କଟକରେ ଏକ ବାଳିକା ବିଦ୍ୟାଳୟ ସ୍ଥାପିତ ହୋଇଥିଲା । କୁମାରୀ ଶୈଳବାଳା ମଧ୍ୟ ଏକ ବାଳିକା ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଉଭୟ ବିଦ୍ୟାଳୟ ମଧ୍ୟରେ କିଛି ପ୍ରତିଯୋଗିତା ଥିବା ଅନୁମିତ ହେଉଥିଲା । ଉପଯୁକ୍ତ ସଂଖ୍ୟାରେ ଛାତ୍ରୀଙ୍କ ଅଭାବ ଉଭୟ ସଂସ୍ଥାକୁ ଲାଗି ରହିଥିଲେ ମଧ୍ୟ ରେବା ରାୟଙ୍କ ସଂସ୍ଥାଟି ବିଶେଷ ଭାବରେ ବାଧାପ୍ରାପ୍ତ ହୋଇଥିଲା । ମଧୁବାବୁଙ୍କ ସାହାଯ୍ୟ ଓ ସହାନୁଭୂତି ଶୈଳବାଳାଙ୍କ ବିଦ୍ୟାଳୟକୁ ବଞ୍ଚାଇ ରଖିଥିଲା ।

ଖ୍ରୀ: ୧୯୦୫ରେ ଶୈଳବାଳା ଉଚ୍ଚଶିକ୍ଷା ଲାଭକରିବା ସକାଶେ ବିଲାତ ଯାଇଥିଲେ । ଏହି ବ୍ୟୟଭାର ନିଜେ ମଧୁବାବୁ ବହନ କରିଥିଲେ । ସ୍ତ୍ରୀଶିକ୍ଷା ନିମନ୍ତେ ସରକାର ବୃତ୍ତିଦାନ କରୁଥିଲେ ମଧ୍ୟ ମଧୁବାବୁ ନିଜ ପାଳିତା କନ୍ୟାର ଉଚ୍ଚଶିକ୍ଷା ପାଇଁ ବୃତ୍ତି ପ୍ରାର୍ଥନା କରି ନଥିଲେ । ସ୍ୱ ମାନମର୍ଯ୍ୟାଦାକୁ ଚାହିଁ ମଧୁବାବୁ ଶୈଳବାଳାଙ୍କ ଶିକ୍ଷାରେ ଅଜସ୍ର ଧନ ବ୍ୟୟ କରିଥିଲେ । ଏହି କାର୍ଯ୍ୟ ବହୁ ଉତ୍କଳୀୟଙ୍କ ସମର୍ଥନ ଲାଭକରି ପାରିନଥିଲା । ଏହା କେବଳ ବ୍ୟକ୍ତିଗତ ଅଭିରୁଚିର କଥା ନୁହେଁ । ଶୈଳବାଳା ମଧୁବାବୁଙ୍କ ପାଳିତାକନ୍ୟା ହେଲେ ମଧ୍ୟ ଓଡ଼ିଆଙ୍କ ସହିତ ମିଳିମିଶି ଚଳିବାରେ ସେ ସେତେ ଆଗ୍ରହୀ ନଥିବା କେହି କେହି

ଅନୁମାନ କରୁଥିଲେ । ଓଡ଼ିଆଙ୍କ ପ୍ରତି ତାଙ୍କର ସଦ୍‌ଭାବର ଅଭାବ ଦେଖାଯାଉଥିଲା । ପୁଣି ଶୈଳବାଳାଙ୍କର ଉଦ୍ଧତ ସ୍ୱଭାବ ଏବଂ ଅହଙ୍କାର ଏକ କାରଣ ହୋଇଥିବା କେହି କେହି କହନ୍ତି । ସେ ଓଡ଼ିଆ ଘରେ ଲାଳିତପାଳିତ ହୋଇଥିଲେ, ଓଡ଼ିଆ ଧନରେ ଉଚ୍ଚଶିକ୍ଷା ଲାଭ କରିଥିଲେ ଏବଂ ମଧୁବାବୁଙ୍କ କନ୍ୟାରୂପେ ପରିଚିତା ହେଉଥିଲେ । ଏପରି ସମ୍ମାନର ସ୍ଥାନ ଅଧିକାର କରି ମଧ୍ୟ ସେ ଓଡ଼ିଆ ଜାତିକୁ ସୁଖ ପାଉନଥିବା କେହି କେହି ଲକ୍ଷ୍ୟ କରୁଥିଲେ । ମଧୁବାବୁଙ୍କର ବହୁ ଅନ୍ତରଙ୍ଗ ଓ ଅକପଟ ସମର୍ଥକ ଏହି କାରଣରୁ ଅସନ୍ତୁଷ୍ଟ ମଧ୍ୟ ଥିଲେ । ମଧୁବାବୁ ଏପରି ଜଣେ ମହିଳାକୁ ବିଦେଶକୁ ପଠାଇ ଅପର୍ଯ୍ୟାପ୍ତ ଧନ ବ୍ୟୟ କରୁଥିବାରୁ ସେମାନେ ସୁଖୀ ନଥିଲେ ।

କଟକରେ ଉତ୍କଳବୀର ମଧୁସୂଦନଙ୍କ ଭ୍ରାତୃଷ୍ପୁତ୍ରୀ ରେବା ରାୟଙ୍କ ସ୍ଥାପିତ ବାଳିକା ବିଦ୍ୟାଳୟଟି ଆର୍ଥିକ ଦୁର୍ଗତିରେ ପଡ଼ିବାରୁ ଉପଯୁକ୍ତ ଆର୍ଥିକ ସାହାଯ୍ୟପ୍ରାପ୍ତିର କଥା ଉଠିଥିଲା । ଶ୍ରୀ ଦୀନବନ୍ଧୁ ଦାସ ନାମକ ଜଣେ ପାଠକ ଗଞ୍ଜାମରୁ 'ପ୍ରଜାବନ୍ଧୁ' ନାମକ ସାପ୍ତାହିକ ପତ୍ରିକାରେ ଏହି ବିଦ୍ୟାଳୟ ପ୍ରସଙ୍ଗ ଉତ୍ଥାପନ କରି ମଧୁବାବୁଙ୍କୁ ସମାଲୋଚନା କରି ଲେଖିଥିଲେ ଯେ —ମଧୁବାବୁ ଶୈଳବାଳାଙ୍କ ଉଚ୍ଚଶିକ୍ଷା ନିମନ୍ତେ ବହୁ ଅର୍ଥ ବ୍ୟୟ କରୁଛନ୍ତି, ଅଥଚ କଟକ ସହରର ଅନ୍ୟ ଏକ ବାଳିକା ଅନୁଷ୍ଠାନ ଅର୍ଥାଭାବରୁ ସଢ଼ୁଛି । ପୁଣି ମଧୁବାବୁ ଉତ୍କଳସମ୍ମିଳନୀର ସମ୍ପାଦକ ଥାଇ ଏ ଦିଗରେ ବିଶେଷ ଧ୍ୟାନ ଦେଉ ନାହାନ୍ତି ବୋଲି ସେ ମତ ବ୍ୟକ୍ତ କରିଥିଲେ । ଶୈଳବାଳାଙ୍କୁ ଉଚ୍ଚଶିକ୍ଷାପାଇଁ ବିଲାତ ପଠାଇବା ସମ୍ପର୍କୀୟ ବ୍ୟୟକୁ 'ନ ଦେବାୟ ନ ଧର୍ମାୟ' ଛଳେ ପକାଇ ପାଠକ କ୍ଷୋଭ ପ୍ରକାଶ କରିଥିଲେ । ଏହାର ଉତ୍ତର ଦେଇ 'ଉତ୍କଳ ଦୀପିକା' ରେ ଜଣେ ପତ୍ରପ୍ରେରକ ଲେଖିଥିଲେ —" × × ଉକ୍ତ ବ୍ୟୟ ଯେବେ ସମ୍ମିଳନୀ ଫଣ୍ଡରୁ ହୋଇଥିବାର ଲେଖକ ଜାଣିଥାଆନ୍ତି; ତାହାହେଲେ ସେ ପ୍ରକାଶ କରନ୍ତୁ ଏବଂ ଇଚ୍ଛାନୁରୂପ ସମାଲୋଚନା କରନ୍ତୁ । ନଚେତ୍ କେହି ବ୍ୟକ୍ତି ନିଜର ପୁତ୍ରକନ୍ୟାଙ୍କୁ କିପରି ଖାଇବା ପିନ୍ଧିବାକୁ ଦେଲେ ବା କିପରି ଶିକ୍ଷା ଦେଲେ, ଏବୁ ସବୁ ନେଇ ଖବରକାଗଜରେ ସମାଲୋଚନା କରିବା ସୁରୁଚିବିରୁଦ୍ଧ ଛଡ଼ା ଅନ୍ୟ କିଛି ନୁହେଁ । ସମସ୍ତ ପିତାମାତାମାନେ ପୁତ୍ରକନ୍ୟାମାନଙ୍କ ଭବିଷ୍ୟତ ଉନ୍ନତି ସକାଶେ ସ୍ୱ ସ୍ୱ ଶକ୍ତି ଏବଂ ଆଦର୍ଶ ଅନୁସାରେ ଚେଷ୍ଟା କରୁଥିବା ସ୍ଥଳେ ମଧୁବାବୁ ତାହା କଲେବୋଲି କାହିଁକି ସମାଲୋଚକଙ୍କର କଟାକ୍ଷରେ ପଡ଼ିବେ ଏହା ବୁଝି ହେଉ ନାହିଁ । × ×"

'ଉତ୍କଳ ଦୀପିକା' ମଧ୍ୟ ମନ୍ତବ୍ୟରେ ଲେଖିଲେ—" × × ଶୈଳବାଳା, ବାବୁ ମଧୁସୂଦନ ଦାସଙ୍କ କନ୍ୟା । ମଧୁବାବୁ ମାନ୍ୟଗଣ୍ୟ ଲୋକ । କନ୍ୟାକୁ ଉପଯୁକ୍ତ ଶିକ୍ଷାଦେବା ତାଙ୍କର କାର୍ଯ୍ୟ । ସେ ଯାହା କରିଅଛନ୍ତି, ତାଙ୍କଠାରୁ ଅଧିକ କେହି ଆପଣା କନ୍ୟା ନିମିତ୍ତ କରିପାରନ୍ତି ନାହିଁ ଏବଂ ଶୈଳବାଳା ବିଲାତ ଓ ଆମେରିକା ଯାଇ ସୁଶିକ୍ଷିତା ହୋଇ

ଆସିଲେ ଓଡ଼ିଶା କାହିଁକି ଭାରତର ମୁଖ ଉଜ୍ଜ୍ୱଳ ହେବ । ଆମ୍ଭ ଦେଶର ଲୋକମାନେ ସ୍ୱଭାବତଃ ସ୍ତ୍ରୀଶିକ୍ଷା ପ୍ରତି ନିଶ୍ଚେଷ୍ଟ ଏବଂ ସେହି ହେତୁରୁ ଉପଯୁକ୍ତ ସ୍ତ୍ରୀଶିକ୍ଷା ଦେବା କାରଣ ଗଭର୍ଣ୍ଣମେଣ୍ଟ ମଧ୍ୟ ଖର୍ଚ୍ଚ ଯୋଗାଇ ଦୁଇଜଣ ସ୍ତ୍ରୀଙ୍କୁ ବିଲାତ ପଠାଇ ଅଛନ୍ତି । ମଧୁବାବୁ ଯେମନ୍ତ ଗୁଣବାନ, ତେମନ୍ତ ଧନବାନ୍ ଓ ମାନ୍ୟବାନ୍ ଅଟନ୍ତି । ସେ ଗଭର୍ଣ୍ଣମେଣ୍ଟରୁ ସାହାଯ୍ୟ ନ ଲେଇ ସାଧୁ ଉଦ୍ଦେଶ୍ୟରେ ଆପଣାର କନ୍ୟାକୁ ନିଜ ବ୍ୟୟରେ ଦୂର ବିଦେଶକୁ ପଠାଇ ଅଛନ୍ତି । ଏ କାର୍ଯ୍ୟ କି ରୂପେ ମନ୍ଦ ହେଲି ବୋଲିଯାଇ ନପାରେ । ଦେଶର ଲୋକେ ସ୍ତ୍ରୀଶିକ୍ଷା ପ୍ରତି ମନୋଯୋଗୀ ହୋଇଥିଲେ, ଏଠାରେ ସେ କଥା ଉଠିଲି ମାତ୍ରକେ ସମ୍ମିଳନୀ ପ୍ରଚୁର ଟଙ୍କା ପାଇଯାନ୍ତେ; ମାତ୍ର ତାହା ନ ପାଇବାରୁ କାର୍ଯ୍ୟ ହୋଇ ପାରିଲି ନାହିଁ । ସେଥି ସକାଶେ ଦେଶ ଲୋକେ ଦାୟୀ । ଏକା ମଧୁବାବୁ ଅଥବା କୁମାରୀ ଶୈଳବାଳାଙ୍କୁ ଦାୟୀ କରିବା ମୂର୍ଖତାର କାର୍ଯ୍ୟ । ଆପଣା କନ୍ୟାକୁ ଏତେ ବ୍ୟୟ ସ୍ୱୀକାରପୂର୍ବକ ବିଦେଶକୁ ପଠାଇ ମଧ୍ୟ ମଧୁବାବୁ ଏଠା ବିଦ୍ୟାଳୟମାନଙ୍କୁ ସାହାଯ୍ୟ ଦେବାରେ ତ୍ରୁଟି କରି ନାହାନ୍ତି × × ।” (ଉ: ଦୀ: ୧୬।୩।୧୯୦୭)

## ୨୦ । ବଂବସ୍ଥାପକ ସଭା ନିର୍ବାଚନ

୧୯୦୬ର ଶେଷଆଡ଼କୁ ବଙ୍ଗ ସରକାର ମ୍ୟୁନିସିପାଲିଟିମାନଙ୍କର ଦାବୀ ରକ୍ଷାକରି ସେମାନଙ୍କ ପକ୍ଷରୁ ବିଧାନସଭାକୁ ପ୍ରତିନିଧି ନିର୍ବାଚିତ ହେବେ ବୋଲି ନିଜ ସିଦ୍ଧାନ୍ତ ଘୋଷଣା କରିଥିଲେ । ଓଡ଼ିଶା ଓ ଛୋଟନାଗପୁର ଦୁଇଟି ବିଭାଗର ମ୍ୟୁନିସିପାଲିଟିମାନଙ୍କୁ ମିଶାଇ ଏକ ନିର୍ବାଚନମଣ୍ଡଳୀ ଗଠିତ ହୋଇଥିଲା ଏବଂ ଏହି ମଣ୍ଡଳୀରୁ ଜଣେ ସଭ୍ୟ ନିର୍ବାଚିତ ହେବା ଘୋଷିତ ହୋଇଥିଲି । ସରକାର ମ୍ୟୁନିସିପାଲିଟିମାନଙ୍କର ଭୋଟସଂଖ୍ୟା ମଧ୍ୟ ନିର୍ଦ୍ଧାରିତ କରିଥିଲେ । ଓଡ଼ିଶାର କଟକ-୩, ଯାଜପୁର-୧, କେନ୍ଦ୍ରାପଡ଼ା-୧, ବାଲେଶ୍ୱର-୨, ପୁରୀ-୩, ସମ୍ବଲପୁର-୪, ଛୋଟନାଗପୁର—ହଜାରିବାଗ-୨, ଗିରିଡ଼ି-୧, ରାଞ୍ଚି-୩, ଭିଲଟ-୧, ପୁରୁଲିଆ-୩, ଗିରିଡ଼ି-୧ । ଏହିପରି ଓଡ଼ିଶା ଡିଭିଜନରେ ୧୪ଟି ଓ ଛୋଟନାଗପୁର ଡିଭିଜନରେ ୧୧ଟି ଭୋଟ ଦେବା ଅଧିକାର ଦିଆଯାଇଥିଲି । ଅଧିକାଂଶ ମତରେ ଯେଉଁ ବ୍ୟକ୍ତି ନିର୍ବାଚିତ ହେବେ ତାହାଙ୍କ ନାମ ନିର୍ବାଚିତ ସମିତିର ସଭାପତି ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇ ତାହାଙ୍କ ସଭ୍ୟ ନିଯୁକ୍ତ କରିବାକୁ ଅନୁରୋଧ କରିବେ ।

୧୯୦୬ ଶେଷ ଭାଗରେ ଏହି ମ୍ୟୁନିସିପାଲିଟିମାନେ ନିଜ ନିଜର ସଭା ଆହ୍ୱାନ କରି ନିଜର ଭୋଟଦାତା ପ୍ରତିନିଧିମାନଙ୍କୁ ନିର୍ବାଚିତ କରିଥିଲେ । କାହାକୁ ଭୋଟ ଦେବେ, ତାହା ମଧ୍ୟ ନିର୍ଣ୍ଣିତ କରିଦେଇଥିଲେ ।

ଓଡ଼ିଶା-ଛୋଟନାଗପୁର ମ୍ୟୁନିସିପାଲିଟି ନିର୍ବାଚନମଣ୍ଡଳୀ ଭିତରୁ ଓଡ଼ିଶାରୁ ଏହିମାନେ ପ୍ରାର୍ଥୀ ଥିଲେ—ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ବାହାଦୁର, କଟକରୁ

ଶ୍ରୀ ମଧୁସୂଦନ ଦାସ ସି. ଆଇ. ଇ. ଓ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ, ଗ୍ରେଟନାଗପୁରରୁ ବାବୁ କାଳୀପଦ ଘୋଷ । ଭୋଟଦାତା ପ୍ରତିନିଧି ସ୍ୱରୂପ ମ୍ୟୁନିସିପାଲିଟିମାନଙ୍କ ପକ୍ଷରୁ ନିମ୍ନଲିଖିତ ମ୍ୟୁନିସିପାଲିଟି କମିଶନରମାନେ ନିର୍ବାଚିତ ହୋଇଥିଲେ—କଟକ ମ୍ୟୁନିସିପାଲିଟିର ଭାଇସ୍-ଚେୟାରମ୍ୟାନ ବାବୁ ନିମାଇଁ ଚରଣ ମିତ୍ର, କେନ୍ଦ୍ରାପଡ଼ାରୁ ବାବୁ ଶ୍ରୀକୃଷ୍ଣ ଚାଟାର୍ଜୀ, ପୁରୀର ମ୍ୟୁନିସିପାଲିଟି ଚେୟାରମ୍ୟାନ୍ ଶ୍ରୀଯୁକ୍ତ ମିତ୍ର, ବାଲେଶ୍ୱରରୁ ଶ୍ରୀ ବିପିନବିହାରୀ ଦେ, ଯାଜପୁରରୁ ବାବୁ କାଳୀପ୍ରସନ୍ନ ଚକ୍ରବର୍ତ୍ତୀ । ପ୍ରଥମ ଥର ଓ ଦ୍ୱିତୀୟ ଥର ଭୋଟ ହୋଇ ସଭ୍ୟ ନିର୍ବାଚିତ ହେଉଥିଲେ ।

୧୯୦୭ ଫେବୃଆରୀ ୬ ତାରିଖରେ ମ୍ୟୁନିସିପାଲିଟିର ପ୍ରତିନିଧିମାନେ ଭୋଟ ଦେଇ ଥିଲେ । ପ୍ରଥମ ଭୋଟ ପରେ ମଧୁବାବୁ ଓ କାଳୀପଦ ଘୋଷଙ୍କ ଭିତରେ ଭୋଟ ଲଢ଼େଇ ହେଲା । ଭୋଟ ଗଣତିରେ ଘୋଷ ମହାଶୟ ୧୪ଟି ଭୋଟ ପାଇବା ସ୍ଥଳେ, ମି. ଦାସ ତାଙ୍କଠାରୁ ୬ଟି କମ୍ ପାଇଥିଲେ । ଓଡ଼ିଶାରୁ ସବୁ ଭୋଟ ମଧୁବାବୁ ପାଇଲେ ନାହିଁ । ବାଲେଶ୍ୱର ଘୋଷଙ୍କ ସପକ୍ଷରେ ଭୋଟ ଦେବାରୁ ଘୋଷ ଅଧିକ ଭୋଟରେ ନିର୍ବାଚିତ ହେଲେ । ଗ୍ରେଟନାଗପୁରରୁ ଘୋଷ ସବୁ ଭୋଟ ପାଇଥିଲେ ।

ଭୋଟରେ ଓଡ଼ିଶାର ପ୍ରାର୍ଥୀ ହାରିଯିବାରୁ ଲୋକଙ୍କ ଭିତରେ ଗଭୀର ଦୁଃଖ ପ୍ରକାଶ ପାଇଲା । ଓଡ଼ିଶାର ବିଭିନ୍ନ ସ୍ଥାନରେ ସଭାମାନ ହୋଇ ବାଲେଶ୍ୱର ଭୋଟଦାତା ପ୍ରତିନିଧିଙ୍କ କାର୍ଯ୍ୟକୁ ନିନ୍ଦା କରାଯାଇଥିଲା । କଟକ ସଭାରେ ଦାବୀ ହେଲା ଯେ ବାଲେଶ୍ୱର ପ୍ରତିନିଧି ବିପିନବିହାରୀ ଦେ ମ୍ୟୁନିସିପାଲିଟି ସଭାର ନିର୍ଦ୍ଧାରଣକୁ ନ ମାନି ନିଜ ଇଚ୍ଛାରେ ଭୋଟ ଦେଇଛନ୍ତି । ଏଥିହେତୁ ଏହାର ସରକାରୀ ତଦନ୍ତହେବା ଆବଶ୍ୟକ । ବାଲେଶ୍ୱରର କମିଶନରମାନେ ବାବୁ ବିପିନବିହାରୀ ଦେଙ୍କୁ ପ୍ରତିନିଧି ମନୋନୀତ କରି ପ୍ରଥମେ ରାଜା ବୈକୁଣ୍ଠନାଥ ଦେଙ୍କୁ ଓ ସେ ବିଫଳ ହେଲେ ଓଡ଼ିଶାର ଅନ୍ୟ କେହି ପ୍ରାର୍ଥୀ ସପକ୍ଷରେ ଭୋଟ ଦେବେ ବୋଲି ପ୍ରସ୍ତାବ ହୋଇଥିବାର ଶୁଣାଯାଇଥିଲା । ଜନସାଧାରଣଙ୍କ ଦାବୀମତେ କଟକ ଡିଭିଜନର କମିଶନର ବାଲେଶ୍ୱର ଯାଇ ତଦନ୍ତ କରିଥିଲେ ଏବଂ ବିପିନବିହାରୀ ଦେ ମ୍ୟୁନିସିପାଲିଟି ତରଫରୁ ଦିଆଯାଇଥିବା ନିର୍ଦ୍ଦେଶ ପାଳନ କରିଛନ୍ତି ବୋଲି ମତ ଦେଲେ । ବାଲେଶ୍ୱର ମ୍ୟୁନିସିପାଲିଟି ଯୋଗୁଁ ମଧୁବାବୁ ଏ ଭୋଟ ଲଢ଼େଇରେ ହାରିଗଲେ । ଓଡ଼ିଶାର ଭୋଟର ମଧୁବାବୁଙ୍କୁ ଭୋଟ ନ ଦେବାରୁ ସମସ୍ତେ ଭାବିଲେ ଯେ ଏହା ଏକ ଦେଶଦ୍ରୋହ କାର୍ଯ୍ୟ ହେଲା, କାରଣ ସେତେବେଳେ ମଧୁବାବୁ ହିଁ ଓଡ଼ିଶାରୂପେ ପରିଚିତ ହେଉଥିଲେ । ମଧୁବାବୁଙ୍କ ପରାଜୟ ଓଡ଼ିଶାର ପରାଜୟ ବୋଲି ପ୍ରବଳ ଭାବରେ ଯଥାର୍ଥ ଜନମତ ପ୍ରକାଶ ପାଇଲା ।

ନିର୍ବାଚନ ପୂର୍ବରୁ କେହି ଜଣେ ପ୍ରାର୍ଥୀ କିମ୍ବା ତାଙ୍କ ସମର୍ଥକମାନଙ୍କ ଭିତରୁ କେହି ଜଣେ ମଧୁବାବୁଙ୍କ ବିରୁଦ୍ଧରେ ଏକ ପୁସ୍ତିକା ବେନାମିରେ ପ୍ରକାଶ କରି ପ୍ରଚାର କରିଥିଲେ ।

ମଧୁବାବୁ ଏହାର ଏକ ଜବାବ ଇଂରେଜୀରେ ପ୍ରକାଶ କରି ଓଡ଼ିଶା ଦେଶପାଇଁ ସେ କି କି କାର୍ଯ୍ୟ କରିଛନ୍ତି ତାହା ବର୍ଣ୍ଣନା କରିଥିଲେ । ବାଲେଶ୍ୱର ବ୍ୟତୀତ ଅନ୍ୟ କୌଣସି ମ୍ୟୁନିସିପାଲିଟି ସଭାରେ ବିରୋଧୀଙ୍କ ପ୍ରଚାରର ଫଳ ଦେଖାଯାଇନଥିଲା । କେହି କେହି ମନେକରୁଥିଲେ ଯେ କେହି ବାଲେଶ୍ୱର ଜିଲ୍ଲାବାସୀ ଏହି କୁତ୍ସାପୂର୍ଣ୍ଣ ପ୍ରଚାରପତ୍ର ବାଣ୍ଟି-ଥିଲେ; କିନ୍ତୁ ନିର୍ଧାର୍ଯ୍ୟ ଭାବେ କିଛି ଜଣାପଡ଼ିନଥିଲା । ଅନୁଗୋଳରେ ରହି କେହି ଜଣେ ଏହା ଇଂରେଜୀରେ ଲେଖି, ପ୍ରକାଶ କରି ବାଣ୍ଟିଥିବା 'ଉତ୍କଳ ଦୀପିକା'ରେ ୮ । ୧୨ । ୧୯୦୬ରେ ପ୍ରକାଶିତ ଏକ ପତ୍ରରୁ ଜଣାଯାଏ । ଏହା ବିରୁଦ୍ଧରେ ଉତ୍କଳରେ ପ୍ରବଳ ଜନମତ ସୃଷ୍ଟି ହୋଇଥିବା ଏହି ଲେଖାରୁ ଆଭାସ ମିଳୁଛି । ସେ ଲେଖିଥିଲେ—

ପ୍ରତିଯୋଗିତା କ୍ଷେତ୍ରରେ ସ୍ୱ ସ୍ୱ ଶକ୍ତି ବିକାଶ ହେଉଛି ପ୍ରକୃଷ୍ଟ ଉପାୟ । ମାତ୍ର ଅନ୍ୟର ପ୍ରତିପତ୍ତିକୁ ଲୋକଚକ୍ଷୁରେ କମେଇ ନିଜର ଯୋଗ୍ୟତାକୁ ବଢ଼ାଇବାକୁ ଯିବା ନିତାନ୍ତ ନୀଚତା ଛଡ଼ା ଆଉ କିଛି ନୁହେଁ । ବ୍ୟବସ୍ଥାପକ ସଭାକୁ ପ୍ରତିନିଧି ନିର୍ବାଚନରୂପକ ଗୁରୁତର ବିଷୟରେ ମତ ବ୍ୟକ୍ତ କରିବାର ଯଦି କାହାର ଅଧିକାର ଥାଏ, ତାହା ହେଲି ଦେଶସ୍ଥ ଶିକ୍ଷିତ ଲୋକଙ୍କର । ମାତ୍ର ଯେଉଁ ଶିକ୍ଷିତ ଲୋକମାନେ ନିଜର ଉଦ୍ଦେଶ୍ୟ ସିଦ୍ଧି କରିବା ସକାଶେ ସୁରୁଚି ଓ ଭଦ୍ରତାକୁ ଏକାବେଳକେ ଜଳାଞ୍ଜଳି ଦିଅନ୍ତି, ଦେଶସେବାରୂପ ପବିତ୍ର କାର୍ଯ୍ୟରେ ହସ୍ତକ୍ଷେପ କରିବା ଦୂରେ ଥାଉ, ପାଟି ଫିଟାଇବାର ସେମାନଙ୍କର ଅଧିକାର ନାହିଁ । × × ସେ ଯାହା କୁତ୍ସା ଗାଇଲେ ଗାଇଲେ; ମାତ୍ର ଗୋଟିଏ ସାମାନ୍ୟ ଘଟଣା କହୁଛି, ତହିଁରୁ ସେ ବୁଝିପାରିବେ, ମଧୁବାବୁ ଓଡ଼ିଶା ଲୋକମାନଙ୍କ ହୃଦୟରେ କିପରି ସ୍ଥାନ ଅଧିକାର କରି ଅଛନ୍ତି । ମୁଁ ଦିନେ ଜଣେ ବଙ୍ଗଦେଶାଗତ ଭଦ୍ରଲୋକଙ୍କ ଘରେ ବସିଥିଲି । ସେଠାରେ ଜଣେ ୧୨।୧୩ ବର୍ଷର ପିଲା ପଙ୍ଖା ଟାଣୁଥିଲା । ସେହି ପିଲାଟି ସହିତ ଗୋଟିଏ ବଙ୍ଗାଳୀ ପିଲାର କାହିଁକି କଜିଆ ଲାଗେ । ଆଗରୁ କଣ କଥା ହୋଇଥିଲା ମୋହର ସେତିକି ମନ ନାହିଁ; ମାତ୍ର ଯେତେବେଳେ ପଙ୍ଖାଟଣା ପିଲାଟି, 'ଆମ୍ଭର ମଧୁବାବୁ' ବୋଲି କହିଉଠିଲା ସେତେବେଳେ ହଠାତ୍ ତାହା ଆଡ଼କୁ ଚାହିଁଲି ଏବଂ ମନେ ମନେ ଭାବିଲି, "ମଧୁବାବୁ ବୃଥାରେ ତୁମ୍ଭେ ତୁମ୍ଭର ଧନ ପ୍ରାଣ ବ୍ୟୟ କରୁନାହଁ । ଆଜି ସ୍ୱାର୍ଥଲାଭ ସକାଶେ ଯେ ତାଙ୍କର କୁତ୍ସାଗାନ କରିବ କରୁ; ମାତ୍ର ମଧୁବାବୁ ଯେଉଁ ସ୍ଥାନ ସାଧାରଣ ଓଡ଼ିଶାବାସୀଙ୍କ ହୃଦୟରେ ଅଧିକାର କରିଅଛନ୍ତି, ତହିଁରୁ ତାଙ୍କୁ କେହି ବଞ୍ଚିତ କରିପାରିବ ନାହିଁ × × ।"

ପତ୍ରପ୍ରେରକ ପ୍ରତ୍ୟେକ ଓଡ଼ିଶାବାସୀର ହୃଦୟର ଭାବ ସମ୍ୟକ୍ ବ୍ୟକ୍ତ କରିଛନ୍ତି ମାତ୍ର । ମଧୁବାବୁ ଅବହେଳିତ ଏକ ପ୍ରାଚୀନ ଗୌରବମଣ୍ଡିତ ଜାତିର ଉତ୍ଥାନ ପାଇଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି ଏବଂ ଜାତିର ମାନ ମର୍ଯ୍ୟାଦା ବୃଦ୍ଧି କରିଛନ୍ତି, ଓଡ଼ିଆଜାତିକୁ ଜାତିରୂପେ ପ୍ରତିଷ୍ଠା କରାଇ ପାରିଛନ୍ତି । ମଧୁବାବୁ ସ୍ୱ ବୁଦ୍ଧି, କର୍ମକୁଶଳତା ଓ ତ୍ୟାଗ ବଳରେ

ଓଡ଼ିଆଙ୍କ ହୃଦୟରେ ବିଶିଷ୍ଟ ସ୍ଥାନ ପାଇଛନ୍ତି ଏବଂ ସମଗ୍ର ଭାରତବର୍ଷରେ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଗଣ୍ୟ ହୋଇଛନ୍ତି, ଏଥିରେ ସନ୍ଦେହ ନାହିଁ । 'ଆମର ମଧୁବାବୁ'—ଏହି ଯେ ବାକ୍ୟ ୧୬ ବର୍ଷର ପଙ୍ଗୁଟିଏ ବାଳକର ମୁଖରୁ ବାହାରିଲା, ତାହା ପ୍ରତ୍ୟେକ ଓଡ଼ିଆର ହୃଦୟର ବାଣୀ ମାତ୍ର । ମଧୁବାବୁ ନିଜେ ବଡ଼, ତାଙ୍କର ଦେଶ-ହିତକର କାର୍ଯ୍ୟ ବଡ଼, ସ୍ୱ ମାତୃଭୂମି ଓଡ଼ିଶାପାଇଁ ତାଙ୍କର ତ୍ୟାଗ ବଡ଼, ଓଡ଼ିଶା ବାହାରେ ଓଡ଼ିଶାକୁ ଚହ୍ନାଇବା କ୍ଷେତ୍ରରେ ତାଙ୍କର ଉଦ୍ୟମ ବଡ଼ । ଭାରତର ନେତୃମଣ୍ଡଳୀରେ ଓଡ଼ିଶାର ଟେକ ମଧୁବାବୁ ହିଁ ବୃଦ୍ଧି କରିଛନ୍ତି ।

ନିର୍ବାଚନ ପୂର୍ବରୁ ବହୁ ବନ୍ଧୁ ମଧୁବାବୁଙ୍କୁ ପ୍ରାର୍ଥୀ ହେବାପାଇଁ ଅନୁରୋଧ କରିଥିଲେ । ସେ କହିଥିଲେ, ଯେବେ ଲୋକେ ତାହାଙ୍କୁ ଲୋଡ଼ିବେ ତେବେ ସେ ନାସ୍ତି କରିବେ ନାହିଁ; ମାତ୍ର ସେ ତାଙ୍କର ସ୍ୱଭାବସୁଲଭ ନମ୍ରତାରେ କହିଥିଲେ ଯେ, "ସେ ନିଜେ ସେହି ପଦର ଯୋଗ୍ୟ ବୋଲି ମନେ କରନ୍ତି ନାହିଁ । ସେହି ପଦର ଗୁରୁତ୍ୱ ରକ୍ଷା କରିବା ନିମନ୍ତେ ଅତ୍ୟନ୍ତ ସୁଶିକ୍ଷିତ, ବୁଦ୍ଧିମାନ, ବହୁଦର୍ଶୀ, ବିଶେଷଜ୍ଞ ଏବଂ ସାଧାରଣ ହିତାନୁରାଗୀ ବ୍ୟକ୍ତି ଏକା ଯୋଗ୍ୟ ।" ଏହି କଥାକୁ ଲକ୍ଷ୍ୟକରି ଜଣେ ସମର୍ଥକ କହିଥିଲେ—"ଦାସ ମହାଶୟ ଯେଉଁ ଯୋଗ୍ୟତା ନିର୍ଦ୍ଦେଶ କରିଅଛନ୍ତି, ତହିଁରେ ଦ୍ୱିରୁକ୍ତି ନାହିଁ; ମାତ୍ର ଓଡ଼ିଶାର ସେପରି ଯୋଗ୍ୟ ଲୋକଙ୍କୁ ବାଛିବାବେଳେ ଯାହାଠାରେ ସେହି ଗୁଣମାନ ସର୍ବାପେକ୍ଷା ଅଧିକ ପରିମାଣରେ ଥିବ, ତାହାକୁ ସିନା ମନୋନୀତ କରିବାକୁ ହେବ, ଅନ୍ୟଠାରୁ ଖୋଜି ଆଣିବାର କଥା ନାହିଁ । ଓଡ଼ିଶାରେ ସେ ସମସ୍ତ ଗୁଣରେ ତାହାଙ୍କଠାରୁ କେହି ଅଧିକ ବା ତାହାଙ୍କର ସମାନ ଥିବାର ଦେଖାଯାଉ ନଥିବା ସ୍ଥଳେ, ସେ ଆପଣାକୁ ଅଯୋଗ୍ୟ କହିଲେ ମଧ୍ୟ ଆମ୍ଭେମାନେ ତାହାଙ୍କୁ ଛାଡ଼ି ଅନ୍ୟ କାହାରିକୁ ଲୋଡ଼ିବୁ ନାହିଁ । ଓଡ଼ିଶାର ହିତ କାମନା ଅନେକେ କରନ୍ତି ଓ କେତେକ ଲୋକ ନିଜ ନିଜ ସାଧ୍ୟାନୁସାରେ କାର୍ଯ୍ୟ କରୁଅଛନ୍ତି; ମାତ୍ର ତହିଁପାଇଁ ମନ ପ୍ରାଣ ଅକାତରେ ବିସର୍ଜ୍ଜନ କରିବା ବ୍ୟକ୍ତି ତାହାଙ୍କଠାରୁ ଅଧିକ କେହି ଏପର୍ଯ୍ୟନ୍ତ ବାହାରି ଅଛନ୍ତି କି ? ଓଡ଼ିଶାରେ ତାହାଙ୍କ ପରି ଅନେକ ଲୋକ ହୋଇ ଦେଶର ମୁଖୋଜ୍ଜ୍ୱଳ କରନ୍ତୁ, ଏହା ଆମ୍ଭେମାନେ କାୟମନୋବାକ୍ୟରେ ସର୍ବଦା କାମନା କରୁ; ମାତ୍ର, ବର୍ତ୍ତମାନ ସମୟରେ ସେ ଅଗ୍ରଣୀ ଅଟନ୍ତି ଓ ତାହାଙ୍କୁ ଉପେକ୍ଷା କରି ଅକୃତଜ୍ଞ ହେବା ସ୍ୱଦେଶୀୟଙ୍କର ଉଚିତ ନୁହେଁ । ତହିଁରେ ତାହାଙ୍କର କିଛି ଯିବ ଆସିବ ନାହିଁ; ମାତ୍ର ଆମ୍ଭେମାନେ ଅମନୁଷ୍ୟ ବୋଲି ପରିଚିତ ହେବୁଁ । ଆମ୍ଭେମାନେ ଲୋଡ଼ିଲେ ସେ ପ୍ରାର୍ଥୀ ହେବାକୁ ସମ୍ମତ ଅଛନ୍ତି । ଏଥିରେ ଆମ୍ଭେମାନେ ଆନନ୍ଦିତ ହୋଇ ତାହାଙ୍କୁ ପ୍ରାର୍ଥୀ ହେବା କାରଣ ଏକାନ୍ତ ଅନୁରୋଧ କରୁଅଛୁ । ( ଉତ୍କଳଦୀପିକା, ୩।୧୧।୧୯୦୬) ।

'ଉତ୍କଳ ଦୀପିକା'ରେ ପ୍ରକାଶ ପାଇଥିବା ନିବେଦନକୁ ମଧୁବାବୁ ଅନ୍ୟ ନିବେଦନ ସହ ଗ୍ରହଣ କରି ପ୍ରାର୍ଥୀ ହୋଇଥିଲେ । ସେ ଅକୃତକାର୍ଯ୍ୟ ହେଲେ । ଦୀପିକାଙ୍କ ଭାଷାରେ "ତହିଁରେ ତାହାଙ୍କର କିଛି ଯିବ ଆସିବ ନାହିଁ, ମାତ୍ର ଆମ୍ଭେମାନେ ଅମନୁଷ୍ୟ ବୋଲି

ପରିଚିତ ହେବୁ ।'' ଦୀପିକା ଯେଉଁ ଆଶଙ୍କା କରିଥିଲେ, ତାହା ହିଁ କାର୍ଯ୍ୟରେ ଦେଖାଗଲା— ଓଡ଼ିଶାର ମାନ ଓଡ଼ିଶାବାସୀଙ୍କ ହାତରେ ନ୍ୟୂନ ହୋଇଗଲା ।

ମଧୁବାବୁଙ୍କର ବିଦ୍ୟା, ବୁଦ୍ଧି, ସାହସ, ସ୍ୱାଧୀନ ଚିନ୍ତା ଓ ମତ ପ୍ରକାଶରେ ନିର୍ଭୀକତା ଥିଲା । ତାଙ୍କର ବାକ୍‌ପଟୁତା ଅସାଧାରଣ ଥିଲା । ବ୍ୟବସ୍ଥାପକ ସଭାରେ ସେତେବେଳେ ସରକାରୀ କର୍ମଚାରୀ ଓ ସମର୍ଥକଙ୍କ ସଂଖ୍ୟା ହିଁ ଅଧିକ ଥିଲା । ସେମାନେ ଉଚ୍ଚ ଶିକ୍ଷିତ ଓ ଚତୁର ଥିଲେ । ସେମାନଙ୍କ ଉପରେ ପ୍ରଭାବ ପକାଇଲା ଭଳି କ୍ଷମତା ମଧୁବାବୁଙ୍କ ଘରି ଅନ୍ୟ ଖୁବ୍ ଅଳ୍ପ ଲୋକଙ୍କର ଥିଲା । ଏ କ୍ଷେତ୍ରରେ ଓଡ଼ିଶାରେ ସେ ଅଗ୍ରଣୀ ଥିଲେ । ସେ ଯେ ଏହି ପଦପାଇଁ ସର୍ବାପେକ୍ଷା ଯୋଗ୍ୟ ବ୍ୟକ୍ତି ଥିଲେ, ଏଥିରେ ସନ୍ଦେହ ନାହିଁ । ତେବେ, "ଦେଶରେ ଶିକ୍ଷିତଙ୍କ ସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ, ନିଜକୁ ସବୁ କ୍ଷେତ୍ରରେ, ସବୁ-କାର୍ଯ୍ୟ ନିମନ୍ତେ ଯୋଗ୍ୟ ବୋଲି ମନେ କରିବା ବ୍ୟକ୍ତିଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି । ଅତଏବ ପ୍ରତିଦ୍ୱନ୍ଦ୍ୱିତା ଅପରିହାର୍ଯ୍ୟ । କେବଳ ସାଧାରଣ ହିତଦୃଷ୍ଟିକୁ ସମ୍ମୁଖରେ ରଖି, ନିରପେକ୍ଷ ଭାବରେ ବିଚାର କରି, ସର୍ବାପେକ୍ଷା ଯୋଗ୍ୟବ୍ୟକ୍ତିଙ୍କୁ ନିର୍ବାଚନ କରିବା ଦେଶପକ୍ଷରେ ଶ୍ରେୟସ୍କର ।'' ମଧୁବାବୁଙ୍କୁ ନିର୍ବାଚନ ଯୁଦ୍ଧରେ ଓଡ଼ିଶା ପ୍ରତିନିଧିଙ୍କଠାରୁ ସର୍ବସମ୍ମତ ଭାବରେ ଭୋଟ ନ ମିଳିବାରୁ ସେ ପରାଜିତ ହେଲେ । ଫଳରେ ବ୍ୟବସ୍ଥା ସଭାର ସେହି କାଳ ଭିତରେ ଓଡ଼ିଶାର ପ୍ରତିନିଧିରୂପେ ବସିବାର ସୁବିଧାରୁ ଯୋଗ୍ୟତମ ବ୍ୟକ୍ତି ବଞ୍ଚିତ ହେଲେ । ଏହାଦ୍ୱାରା ଭୋଟଦାତା ବାଲେଶ୍ୱର ମ୍ୟୁନିସିପାଲିଟି ଦେଶର ହିତଦୃଷ୍ଟିରୁ କାର୍ଯ୍ୟ କରିନାହାନ୍ତି ବୋଲି କହିବାକୁ ହେବ । ମଧୁବାବୁ ନିର୍ବାଚିତ ହୋଇ ବିଧାନସଭାକୁ ଯାଇଥିଲେ ଓଡ଼ିଶାର ଗୌରବ ରକ୍ଷାହେବା ସଙ୍ଗେ ସଙ୍ଗେ ବୃଦ୍ଧି ମଧ୍ୟ ପାଇଥାଆନ୍ତା ।

ଏହି ନିର୍ବାଚନ ଲଢ଼େଇରେ ମନୋନୟନ ପୂର୍ବରୁ ଉତ୍କଳର କୌଣସି କୌଣସି ପତ୍ରିକା ମଧ୍ୟ ସମର୍ଥକର କାର୍ଯ୍ୟ କରିଥିଲେ । 'ଷ୍ଟାର୍ ଅଫ୍ ଉତ୍କଳ' (ଇଂରେଜୀ ସାପ୍ତାହିକ) ଓ ଓ 'ଉତ୍କଳ ଦୀପିକା' ମଧୁବାବୁଙ୍କ ସପକ୍ଷରେ ଓ 'ଉତ୍କଳ ଦର୍ପଣ' ସମ୍ଭାବିତ ପ୍ରାର୍ଥୀ ସପକ୍ଷରେ ମତ ବ୍ୟକ୍ତ କରୁଥିବା ଜଣାଯାଇଥିଲା ।

**ଦେଶପାଇଁ ଦଶ ମିନିଟ୍** : ୧୯୦୯ ଡିସେମ୍ବରରେ ଗଞ୍ଜାମ ଉତ୍କଳ ସମ୍ମିଳନୀ ଅଧିବେଶନରେ ଯେଉଁ ସବୁ ପ୍ରସ୍ତାବ ଗୃହୀତ ହୋଇଥିଲା, ସେ ସବୁ ଲୋକଙ୍କୁ ବୁଝାଇବା ନିମନ୍ତେ ୧୯୦୮ ଜାନୁଆରୀ ରବିବାର ୨୮ ତାରିଖ ଅପରବେଳା କଟକ ମ୍ୟୁନିସିପାଲିଟି ବଗିଚାରେ ଏକ ବିରାଟ ସଭା ହୋଇଥିଲା । ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀ ସଭାପତି ହୋଇଥିଲେ । ବାବୁ ରାମଶଙ୍କର ରାୟ, ଶ୍ୟାମସୁନ୍ଦର ସାହୁ, ରାମକୃଷ୍ଣ ପଟ୍ଟନାୟକ, ମଧୁସୂଦନ ଦାସ ପ୍ରଭୃତି ବକ୍ତୃତା ଦେଇଥିଲେ । ସେଦିନ ସଭାକୁ ମଧୁବାବୁ ଧୋତି ଚଦର ପିନ୍ଧି ଯାଇଥିଲେ । ସେ ସବୁଦିନେ ସାହେବୀ ପୋଷାକ ପିନ୍ଧିଥାଆନ୍ତି; ସାହେବୀ କାଏଦାରେ ମଧ୍ୟ ଚଳନ୍ତି । ଧୋତି ଚଦର ବେଶରେ ସେ ସଭାକୁ ଆସିଥିବାରୁ ତାଙ୍କୁ ଦେଖି କେତେକ କହିଲେ, ମଧୁବାବୁ ଆମ ଭାଇ, ଏ

ବେଶ ତାଙ୍କୁ ସାଜୁଛୁ ।' ଲୋକେ ମଧୁବାବୁଙ୍କୁ ଏ ଦେଶୀ ବେଶରେ ଦେଖି ଅତି ଆନନ୍ଦରେ କରତାଳି ଦେଇ ଅଭ୍ୟର୍ଥନା କରିଥିଲେ ।

ମଧୁବାବୁ ଏହି ସଭାରେ ସରଳ ଓ ତେଜପୂର୍ଣ୍ଣ ଭାଷାରେ ଏକ ବକ୍ତୃତା ଦେଇଥିଲେ । ସେ କହିଥିଲେ, "ଦେଶ ଲୋକଙ୍କୁ ନେଇ ସମ୍ମିଳନୀ । ବଡ଼ ବଡ଼ ଲୋକ, ରାଜା ମହାରାଜା ପ୍ରଭୃତିଙ୍କ ଦାନ ଲୋକେ ଭୁଲିଯାଇ ପାରନ୍ତି; କିନ୍ତୁ ବିଦୁରଙ୍କ ଖୁଦକଣିକାକୁ କେହି ଭୁଲି ପାରିବେ ନାହିଁ ।" ସେ ପୁଣି କହିଲେ, "ଲୋକେ ସ୍ୱତଃପ୍ରବୃତ୍ତ ହୋଇ ସବୁପ୍ରକାର ସାହାଯ୍ୟ କରିବା ଆବଶ୍ୟକ । ସମ୍ମିଳନୀକୁ ଲୋକେ ଧନ ସାହାଯ୍ୟ ଦେଲେ ବହୁତ ଆଗେଇ ଯାଆନ୍ତା । ଜଣପିଛା ପଇସାଏ ପଇସାଏ ଦେଲେ କେତେ ଟଙ୍କା ସଂଗ୍ରହ କରାଯାଇ ପାରନ୍ତା; କିନ୍ତୁ କାହିଁ ? ଟଙ୍କା କଥା ଛାଡ଼, ଆଉ କିଛି ଦେବାର ତେଣିକି ଥାଉ, କେତେ ଜଣ ଲୋକ ଦେଶର କଥା ଚିନ୍ତା କରନ୍ତି ? ଯଦି ଆମ୍ଭେମାନେ ନିୟମ କରୁଁ ଯେ ପ୍ରତିଦିନ ଅନ୍ତତଃ ଦଶମିନିଟ ଦେଶର କଥା ଚିନ୍ତା କରିବା, ତାହାହେଲେ ଦେଶର ଦୁର୍ଦ୍ଦଶା ଅତି ଶୀଘ୍ର ଲୋପ ପାଇଯିବ । ପ୍ରତିଦିନ ଦେଶର ଏବଂ ସମ୍ମିଳନୀର କଥା ନିୟମିତରୂପେ ଜଣଙ୍କ ସଙ୍ଗରେ ହେଲେ ଚର୍ଚ୍ଚା କରନ୍ତୁ ଏବଂ ନିତାନ୍ତ କେହି ନ ମିଳିଲେ ଯେଉଁ ଚାକର ଗୋଡ଼ ଘଷିଦିଏ ତାହାସଙ୍ଗରେ ହେଲେ ସେହି କଥା ଚର୍ଚ୍ଚା କରନ୍ତୁ । ନିୟମ ରକ୍ଷା ଏକ ପ୍ରଧାନ କଥା । ଅନେକ ଲୋକ କେବଳ ଘାସ ଗୋରୁକୁ ନ ଦେଲେ ଖାଆନ୍ତି ନାହିଁ ଏବଂ କେବଳ ଘାସ ଧରି ଖାଇବେଲେ ଗୋରୁ ଖୋଜି ବୁଲିବାର ଲୋକ ମଧ୍ୟ ଅଛନ୍ତି ।" ତାଙ୍କର (ମଧୁବାବୁଙ୍କ) ମାତା ଅନାହାରୀଙ୍କୁ ଖାଇବାକୁ ନ ଦେଇ ନିଜେ ଖାଉନଥିଲେ ବୋଲି ମଧ୍ୟ ମଧୁବାବୁ ପ୍ରକାଶ କରି କହିଲେ, "ଯଦି ଦେଶର ଲୋକେ ନିୟମକରି ପ୍ରତିଦିନ ଦେଶର ଚିନ୍ତା କରନ୍ତି, ତାହାହେଲେ ଅଚିରେ ଆମ୍ଭମାନଙ୍କର ଭାଗ୍ୟର ପରିବର୍ତ୍ତନ ହୋଇଯିବ ।" ପ୍ରତିଦିନ ଦେଶକଥା ଚିନ୍ତା କରିବା ସମ୍ବନ୍ଧରେ ଏକ ପ୍ରତିଜ୍ଞାପତ୍ର ମୁଦ୍ରିତ କରି ସେଥିରେ ପ୍ରତିଜ୍ଞାବଦ୍ଧ ବ୍ୟକ୍ତିଙ୍କ ସ୍ୱାକ୍ଷର ସଂଗ୍ରହ କାର୍ଯ୍ୟ ଆରମ୍ଭ କରାଯିବ ବୋଲି ମଧୁବାବୁ ଏହି ସଭାରେ ଘୋଷଣା କରିଥିଲେ ।

**ସ୍ୱଦେଶ ପ୍ରେମ ମନୁଷ୍ୟର ଧର୍ମ :** ୧୯୦୬ ଡିସେମ୍ବର ମାସରେ କଲିକତାଠାରେ ନିଖିଳ ଭାରତ କଂଗ୍ରେସର ଯେଉଁ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ସେଥିରେ "ଉତ୍କଳ ସଭା"ର ପ୍ରତିନିଧିରୂପେ ବାବୁ ବିହାରୀଲାଲ ପଣ୍ଡିତ, ବାବୁ ଜାନକୀନାଥ ବସୁ, ବାବୁ ବିଶ୍ୱନାଥ କର, ବାବୁ ପ୍ରିୟନାଥ ବାନାର୍ଜୀ, ବାବୁ ପୂର୍ଣ୍ଣଚନ୍ଦ୍ର ପାଲିତ, ବାବୁ ରାମଶଙ୍କର ରାୟ, ବାବୁ ନିମାଇଁଚରଣ ମିତ୍ର, ବାବୁ ପୂର୍ଣ୍ଣଚନ୍ଦ୍ର ହାଜରା ପ୍ରଭୃତି ଯୋଗ ଦେଇଥିଲେ । କଂଗ୍ରେସର ଏହି ପ୍ରତିନିଧିମାନେ କଲିକତାରୁ ଫେରି ଆସିବା ପରେ "ଉତ୍କଳ ସଭା"ର ସଭାପତି ରୂପେ ମଧୁବାବୁ ଏକ ସାଧାରଣ ସଭା କଟକରେ ଡାକିଥିଲେ । ମଧୁବାବୁ ସଭାପତି ହୋଇଥିଲେ । ବାବୁ କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀ, ବାବୁ ଜାନକୀନାଥ ବସୁ,

ବାବୁ ବିଶ୍ୱନାଥ କର, ବାବୁ କୃଷ୍ଣଚନ୍ଦ୍ର ପାଳିତ କଂଗ୍ରେସ ଓ ଦେଶର ଅବସ୍ଥା ସମ୍ବନ୍ଧରେ ନିଜ ନିଜର ମତ ବ୍ୟକ୍ତ କରିଥିଲେ । ସଭାପତି ମଧୁବାବୁ କହିଥିଲେ, "ସ୍ୱଦେଶପ୍ରେମ ମନୁଷ୍ୟର ଧର୍ମ । ଏହା ହିଁ ମନୁଷ୍ୟତା । ଏହା ହିଁ ମନୁଷ୍ୟତା ବୋଲି ଲୋକଙ୍କୁ ଯାହା ବୁଝାଇବାକୁ ପଡ଼ୁଛି ଏହାଠାରୁ ବଳି ଦୁଃଖର ବିଷୟ ଆଉ କଣ ହୋଇପାରେ ? ଏହା ଅତି ପରିତାପର ବିଷୟ, ଏହା ଅମନୁଷ୍ୟତା । ଆମ୍ଭମାନଙ୍କ ଦେଶରେ ବିଦେଶୀ ଲୁଣ ଓ ବିଦେଶୀ ଦ୍ରବ୍ୟ ବ୍ୟବହାର କଲେ ଧର୍ମ ନଷ୍ଟହେବ, ଏହି ଶିକ୍ଷା ଚିରକାଳ ପ୍ରଚଳିତ ଅଛି । ସେ ଶିକ୍ଷା ଆମ୍ଭେମାନେ ଭୁଲି ଯାଇଅଛୁ । ବିଦେଶୀ ଦ୍ରବ୍ୟ ବ୍ୟବହାରଦ୍ୱାରା ଆମ୍ଭେମାନେ ଦେଶୀୟ କାରିଗରଙ୍କ ଗ୍ରାସରୁ ନିଶ୍ଚିତରୂପେ କିଛି କିଛି ଛଡ଼େଇ ନେଉଛୁ । ସେମାନେ ଅନାହାରରେ ମଲେ ଆମ୍ଭେମାନେ କେବଳ ଦାୟୀ ହେବା; କିନ୍ତୁ ଏହାର ଚିନ୍ତା କେତେ ଜଣ କରୁଛନ୍ତି ? ଆମ୍ଭ ଆମର । ଉନ୍ନତି ତାହାର ଧର୍ମ । ଆମ୍ଭେମାନେ ସ୍ୱଦେଶର ଚିନ୍ତା କରୁଥିଲେ କ୍ରମେ ଉନ୍ନତି ମାର୍ଗରେ ଗତି କରୁଥିବା । ଦେଶପାଇଁ ଦଶପାଇଁ ସ୍ୱାର୍ଥ ତ୍ୟାଗ ଏକାନ୍ତ ପ୍ରୟୋଜନ ।" ସେ ପ୍ରଦୀପର ଉଦାହରଣ ଦେଇ ଏହାକୁ ସୁନ୍ଦର ଭାବରେ ବୁଝାଇ ଥିଲେ—"ଯେଉଁ ବତି ଆଲୋକ ପ୍ରଦାନ କରୁଛି, ସେ ନିଜେ ପୋଡ଼ି ପାଉଁଶ ହୋଇଯାଉଛି । ନିଜକୁ ସଂସାରରେ ନଗଣ୍ୟ ମଣି ଉତ୍ସାହ ଓ ଉନ୍ମାଦନା ସହିତ କାର୍ଯ୍ୟ ନକଲେ ଦେଶର ଉନ୍ନତି ହେବନାହିଁ ।" ଏହାପରେ ଗଛର ଉଦାହରଣ ଦେଇ କହିଲେ, "ଗଛର ଫଳଟିଏ ହେଲେ ଗଛର ଲାଭନାହିଁ—ମନୁଷ୍ୟ ଗୋରୁ ପ୍ରଭୃତି ଖାଇ ଜୀବନ ଧାରଣ କରନ୍ତି । ଗଛର ପତ୍ର ଶୋଭା ନିମିତ୍ତ ନୁହେଁ । ତାହା ତଳେ ପଡ଼ି ସାର ହୋଇ ଅନ୍ୟ ଗଛର ପୁଷ୍ଟିର କାରଣ ହୁଏ । ଆମ୍ଭେମାନେ ଏହି ଦୃଷ୍ଟାନ୍ତଗୁଡ଼ିକୁ ଅନୁସରଣ କରି କାର୍ଯ୍ୟ କରିବାକୁ ଶିକ୍ଷା ନକଲେ ମନୁଷ୍ୟ ହୋଇପାରିବା ନାହିଁ । ଦେଶର ଲୋକେ ମିଲ୍‌ଟନ୍, ସେକ୍‌ସପିୟର, କାଳିଦାସ ପ୍ରଭୃତି ବଡ଼ ବଡ଼ କବିଙ୍କୁ ମୁଠେ ଖାଇବାକୁ ନ ଦେବାରୁ ସେମାନେ ଅନ୍ନକଷ୍ଟରେ ମରିଛନ୍ତି । କିନ୍ତୁ ସେମାନେ ଗୁଣର ପରାକାଷ୍ଠା ଦେଖାଇଥିବାରୁ ଦେଶବାସୀ ସେମାନଙ୍କୁ ବହୁ ପରେ ଆପଣାର ବୋଲି କହୁଛନ୍ତି । ଏହି କବିମାନଙ୍କ ପରି ନିଃସ୍ୱାର୍ଥପର ଭାବରେ, ନିଜର କୌଣସି ଆଶା ନରଖି, ଦେଶବାସୀ ଉତ୍ସାହରେ ସତ୍‌କାର୍ଯ୍ୟରେ ବ୍ରତୀ ହୁଅନ୍ତୁ । ଆମ୍ଭମାନଙ୍କୁ ଧରି ଦେଶ । ଦେହର ଏକ ସ୍ଥାନରେ ଛୁଞ୍ଚି ଗଳିଗଲେ ସମଗ୍ର ଦେହରେ ପୀଡ଼ା ହୁଏ । ସୁତରାଂ, ସଦ୍‌ଗୁଣର ଆଶ୍ରୟ କରି ଆତ୍ମୋନ୍ନତିରେ ବ୍ରତୀ ହେବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ ।"

**ସ୍ୱଦେଶୀ ଆନ୍ଦୋଳନର ଅଗ୍ରଦୂତ** : ଖ୍ରୀ ୧୯୦୬ର କଲିକତା ଅଧିବେଶନରେ କଂଗ୍ରେସ ସ୍ୱଦେଶୀ ଆନ୍ଦୋଳନକୁ ସମ୍ପୂର୍ଣ୍ଣ ରୂପେ ସମର୍ଥନ କରି ଭାରତର ଦେଶବାସୀଙ୍କୁ ଦେଶୀୟ ଶିଳ୍ପର ଅଭିବୃଦ୍ଧି ଏବଂ ସ୍ୱଦେଶଜାତ ଦ୍ରବ୍ୟର ବ୍ୟବହାର ବିଷୟରେ ଏକାନ୍ତ ଶ୍ରମ ଓ ଯତ୍ନ କରିବାକୁ ଅନୁରୋଧ କରିଥିଲେ ।

ଏହି ନିର୍ଦ୍ଧାରଣପୂର୍ବରୁ ଓଡ଼ିଶାରେ ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର ଓ ବିଦେଶୀ ଦ୍ରବ୍ୟ ବର୍ଜ୍ଜନର ଭାବ ଖେଳିଯାଇଥିଲା । ମଧୁବାବୁ ଏ ଦିଗରେ ବହୁପୂର୍ବରୁ ଯଥେଷ୍ଟ ଉଦ୍ୟମ କରୁଥିଲେ । ଟାନେରି, ଅଳଙ୍କାର କାରଖାନା, ତନ୍ତୁଲୁଗା ବୁଣା ସଂଗଠନ କରି ସେ ଏ କ୍ଷେତ୍ରରେ ଅଗ୍ରଣୀ ହୋଇଥିଲେ । ଏହି ସ୍ୱଦେଶୀ ଆନ୍ଦୋଳନର ସେ ଜଣେ ଅଗ୍ରଦୂତ ଥିଲେ ।

**ବ୍ୟାୟାମ ସମିତି :** ଖ୍ରୀ: ୧୯୦୭ର ମାର୍ଚ୍ଚ ମାସରେ ମଧୁବାବୁ କଟକରେ ଏକ ବ୍ୟାୟାମ ସମିତି ଗଠନ କରିବାରେ ସାହାଯ୍ୟ କରିଥିଲେ । ଏ ସମ୍ପର୍କୀୟ ସଭାରେ ମଧୁବାବୁ ବ୍ୟାୟାମର ଉପକାରିତା ଓ ପ୍ରାଚୀନ ପରମ୍ପରାକ୍ରମେ କିପରି ଏ ଦେଶରେ ବ୍ୟାୟାମ ଶିକ୍ଷାର ପ୍ରଚଳନ ଥିଲା, ତାହା ବୁଝାଇ ଯୁବକମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

**DISCONTENTED INDIA :** ଦ୍ୱିତୀୟ ଥର ବିଲାତ ଗଲାବେଳେ ମଧୁବାବୁ **Discontented India** (ଅସନ୍ତୁଷ୍ଟ ଭାରତ) ନାମକ ଏକ ପୁସ୍ତିକା ଇଂରେଜୀରେ ଲେଖି ପ୍ରକାଶ କରିଥିଲେ ଏବଂ ବିଳାତର ଶାସକ, ପାର୍ଲିଆମେଣ୍ଟର ସଦସ୍ୟ, ବହୁ ବିଶିଷ୍ଟ ବ୍ୟକ୍ତି, ସମ୍ବାଦପତ୍ରର ସମ୍ପାଦକ ଓ ସାମ୍ବାଦିକମାନଙ୍କ ଭିତରେ ଏହାକୁ ବିତରଣ କରିଥିଲେ । ଏହି ପୁସ୍ତିକାରେ ଦେଶର ବିଭିନ୍ନ ସମସ୍ୟାମାନ ଆଲୋଚିତ ହୋଇଥିଲା ଏବଂ ବ୍ରିଟିଶ ସରକାର ଏଗୁଡ଼ିକ ସୁବିଚାର କରି ଶୀଘ୍ର ପ୍ରତିକାର କରନ୍ତୁ ବୋଲି ସେ ଅନୁରୋଧ କରିଥିଲେ ।

**ପାର୍ଲିଆମେଣ୍ଟ ସଭ୍ୟମାନଙ୍କ ବୈଠକରେ :** ପାର୍ଲିଆମେଣ୍ଟ ଭବନର ଏକ ପାର୍ଶ୍ୱ-କୋଠରୀରେ, ପାର୍ଲିଆମେଣ୍ଟ (ହାଉସ୍ ଅଫ୍ କମନସ) ସଭ୍ୟମାନଙ୍କ ଭିତରୁ ପ୍ରାୟ ୭୦ ଜଣ ସଭ୍ୟଙ୍କର ଏକ ବୈଠକରେ ମଧୁବାବୁ ଓଡ଼ିଶାର ସମସ୍ୟାମାନଙ୍କ ସମ୍ବନ୍ଧରେ ବୁଝାଇଥିଲେ ।

**ସାମ୍ବାଦିକ ସମ୍ମିଳନୀ :** ବିଲାତର ବିଶିଷ୍ଟ ପତ୍ରପତ୍ରିକାର ପ୍ରତିନିଧିମାନଙ୍କୁ ଏକ ବୈଠକକୁ ନିମନ୍ତ୍ରଣ କରି ମଧୁବାବୁ ଓଡ଼ିଶାର ବିଭିନ୍ନ ସମସ୍ୟା ବୁଝାଇଥିଲେ । ଦେଶ ମିଶ୍ରଣ, ସ୍ୱତନ୍ତ୍ର ପ୍ରଦେଶ, ବନ୍ୟା, ଦୁର୍ଭିକ୍ଷ ପ୍ରଭୃତି ପ୍ରଧାନ ପ୍ରଧାନ ସମସ୍ୟା ପ୍ରତି ସେମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେହି ବର୍ଷ (ଖ୍ରୀ: ୧୯୦୭) ଓଡ଼ିଶାରେ ଯେଉଁ ବନ୍ୟା ହୋଇ ଯାଇଥିଲା, ତାହା ଫଳରେ ଦୁର୍ଭିକ୍ଷ ଦେଖା ଦେବାର ଆଶଙ୍କା ଥିବା ବୁଝାଇ ଇଂଲଣ୍ଡ-ବାସୀଙ୍କର ସାହାଯ୍ୟ ଓ ସହାନୁଭୂତି କାମନା କରିଥିଲେ ।

## ୨୯ । ବିଭିନ୍ନ ଦେଶହିତକର କାର୍ଯ୍ୟ (୧୯୦୮-୧୧)

**ଓଡ଼ିଶା ସମସ୍ୟା ବଙ୍ଗଭଙ୍ଗ ଅପେକ୍ଷା ଗୁରୁତର** କଲିକତାର 'ବନ୍ଦେ ମାତରଂ' କାଗଜରେ (ଇଂରେଜୀ) ବିଖ୍ୟାତ ବିପ୍ଳବୀ ନେତା ଅରବିନ୍ଦ ଘୋଷ ଉତ୍କଳ ସମ୍ମିଳନୀ ଓ ଜାତୀୟ ସଂଗଠନ ବିଷୟରେ ଏକ ପ୍ରବନ୍ଧ ଲେଖି (୧୯୦୮) ମଧୁବାବୁଙ୍କ କାର୍ଯ୍ୟକୁ ପ୍ରଶଂସା କରିଥିଲେ ଏବଂ ସର୍ବଭାରତୀୟ ସ୍ତରରେ ଓଡ଼ିଆମାନେ ଆନ୍ଦୋଳନ ଚଳାଇବା ଉଚିତ ବୋଲି ମତ ପ୍ରକାଶ କରିଥିଲେ । ମଧୁବାବୁ ଏହି ସମ୍ପର୍କରେ ଅରବିନ୍ଦଙ୍କୁ ପତ୍ର ଲେଖି ନିଜର ମତ ଜଣାଇଲେ । ମହାଭାରତୀୟ ସ୍ତରରେ ଖଣ୍ଡବିଖଣ୍ଡିତ ଓଡ଼ିଶାର ସମସ୍ୟା, ବଙ୍ଗଭଙ୍ଗ ସମସ୍ୟା ଅପେକ୍ଷା ଅତି ଗୁରୁତର ହେଲେ ମଧ୍ୟ, ବଙ୍ଗୀୟ ନେତାମାନେ ଏଥି ପ୍ରତି ଗୁରୁତ୍ୱ ଆରୋପ କରୁନାହାନ୍ତି ଏବଂ ସେମାନେ ଏ ଆନ୍ଦୋଳନକୁ ସାହାଯ୍ୟ କରୁନାହାନ୍ତି, ଏହା ହିଁ ଦୁଃଖର କଥା ବୋଲି ମଧୁବାବୁ କହିଥିଲେ । ଓଡ଼ିଶାର ଲୋକେ ବଙ୍ଗୀୟ ନେତାମାନଙ୍କର ଓଡ଼ିଶା ସମସ୍ୟା ପ୍ରତି ଆଗ୍ରହର ଅଭାବକୁ ସୁଦୃଷ୍ଟିରେ ଦେଖୁ ନଥିଲେ । ମଧୁବାବୁ ଅରବିନ୍ଦଙ୍କଠାରୁ ଲେଖିଲେ, "ବଙ୍ଗଭଙ୍ଗ ହେବାରୁ ଆପଣମାନେ, ଅର୍ଥାତ୍ ବଙ୍ଗାଳୀମାନେ, ପ୍ରତିବାଦ କରୁଛନ୍ତି; କିନ୍ତୁ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇ ପଡ଼ିଛି, ତାକୁ ଯୋଡ଼ିବାକୁ ହେବ—ଏ ସମ୍ବନ୍ଧରେ ତ ଆପଣମାନେ କିଛି କହୁନାହାନ୍ତି ? ଯେଉଁ ନୀତିରେ ବଙ୍ଗ ଭଙ୍ଗର ପ୍ରତିବାଦ ହେଉଛି, ସେହି ନୀତିରେ ଉତ୍କଳ ଦେଶମିଶ୍ରଣ ପ୍ରଥମେ ହେଉ, ଏବଂ ତାହାହେଲେ ସର୍ବଭାରତୀୟ ଉନ୍ନତି ଲକ୍ଷ୍ୟରେ ପ୍ରଦେଶ-ଗୁଡ଼ିକଙ୍କର ସହଯୋଗ ମିଳିବ । ଗୋଟିଏ ପ୍ରଦେଶ ଉଠିବ, ଆଉ ଗୋଟିଏ ଦବିଯିବ, ଏପରି ହେଲେ ଭାରତର ସଂହତି ରକ୍ଷା ହୋଇପାରିବ ନାହିଁ ।

ମଧୁବାବୁଙ୍କ ମନୋଭାବକୁ ବିଶିଷ୍ଟ ବଙ୍ଗୀୟ ନେତାମାନେ ଗ୍ରହଣ କରିଥିବାର ପ୍ରମାଣ ମିଳୁ-ନାହିଁ । ତେବେ ବଙ୍ଗୀୟ ନେତାମାନଙ୍କର ଏତାଦୃଶ୍ୟ ମନୋଭାବକୁ ଅବହେଳା ପ୍ରପୀଡ଼ିତ ଓଡ଼ିଆମାନେ ସୁଦୃଷ୍ଟିରେ ଦେଖି ନାହାନ୍ତି । କେହି କେହି ଏହାକୁ ସଂକୀର୍ଣ୍ଣତା ବୋଲି ମଧ୍ୟ ପ୍ରକାଶ କରୁଥିଲେ । ବଙ୍ଗୀୟ ନେତାମାନଙ୍କର କରଛଡ଼ା ମନୋଭାବ, ସଂକୀର୍ଣ୍ଣ ପ୍ରାଦେଶିକ ମନୋଭାବର ଫଳ ବୋଲି ମଧୁବାବୁ କହୁଥିଲେ । ଏହା ମହାଭାରତୀୟ ଭ୍ରାତୃଭାବ ବର୍ଦ୍ଧନର ପରିପନ୍ଥୀ, ଏହା ମଧ୍ୟ ସେ ବ୍ୟକ୍ତ କରୁଥିଲେ । ଏ ଉଦାସୀନତା ସ୍ୱେଚ୍ଛାକୃତ ଥିବା ମଧୁବାବୁ କହୁଥିଲେ । ସେ ବାରମ୍ବାର ଏହାର ସମାଲୋଚନା କରୁଥିଲେ ମଧ୍ୟ ବଙ୍ଗଦେଶୀୟ ନେତାମାନଙ୍କ ଆନ୍ଦୋଳନକୁ ବିରୋଧ କରି କୌଣସି କାର୍ଯ୍ୟ କରୁ ନଥିଲେ । ଏକ ପଡ଼ୋଶୀ ଜାତି ପ୍ରତି ଉଚ୍ଚସ୍ତରୀୟ ବଙ୍ଗୀୟ ସ୍ୱଦେଶୀ ନେତାଙ୍କର ଏହି ଉଦାସୀନତାକୁ ସେ କେବେ କ୍ଷମା ଦେଇ ନଥିଲେ । ସେତେବେଳେ ବଙ୍ଗୀୟ ନେତାମାନେ ପ୍ରତ୍ୟକ୍ଷ ଭାବରେ ଓଡ଼ିଶା ଦେଶମିଶ୍ରଣ ଆନ୍ଦୋଳନକୁ ସାହାଯ୍ୟ କରିଥିଲେ; ହୁଏତ ଏହି ଆନ୍ଦୋଳନ ଶୀଘ୍ର ଫଳବତୀ ହୋଇ ପାରିଥାଆନ୍ତା ।

**ଭାରତମାତା, ବଙ୍ଗମାତା ଓ ଉତ୍କଳମାତା ଏକ :** ମଧୁବାବୁ ଭାରତ ଜନନୀ ଓ ଉତ୍କଳ ଜନନୀଙ୍କ ଭିତରେ କିଛି ପ୍ରଭେଦ ଦେଖୁ ନଥିଲେ । "ଉତ୍କଳ ଜନନୀ ଓ ଭାରତ ଜନନୀଙ୍କର କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶ ପୀଡ଼ା ହେଲେ, ସେହି ଅଂଶର ଚିକିତ୍ସା କରିବାକୁ ହେବ, କିନ୍ତୁ ଏହି ଅଂଶବିଶେଷର ଚିକିତ୍ସାଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ।"

ଖ୍ରୀ: ୧୯୦୮ ଉତ୍କଳ ସମ୍ମିଳନୀର ପୁରୀ ଅଧିବେଶନ (୫ମ)ରେ ମଧୁବାବୁ ଏହି ବାଣୀ ଉଚ୍ଚାରଣ କରିଥିଲେ । ଏହା ପୂର୍ବରୁ ଖ୍ରୀ: ୧୯୦୪ରେ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ଲୁଗାବୁଣା ପ୍ରସ୍ତାବର ଆଲୋଚନା ପ୍ରସଙ୍ଗରେ ବଙ୍ଗମାତା ଓ ଉତ୍କଳମାତା ଏକ ଥିବା ବ୍ୟକ୍ତ କରିଥିଲେ । ଜାତିଗତ ବିଦ୍ୱେଷକୁ ଘୃଣା କରି ସେ କହିଥିଲେ— "ବଙ୍ଗମାତା ଓ ଉତ୍କଳମାତା ଏକ । ଭାରତ ଜନନୀଙ୍କର ବିଭିନ୍ନ ଅବତାର ମଧ୍ୟ ଏକ । ଭ୍ରମରେ ଯଦି କେହି ଏହାକୁ ଅନ୍ୟ ବିବେଚନା କରନ୍ତି, ମୁଁ ଭରସା କରେଁ, ସେହି ଭ୍ରମରେ କେହି ଉତ୍କଳୀୟ ପଡ଼ିବେ ନାହିଁ । ଭ୍ରମହେତୁରୁ ଚିହ୍ନି ନ ପାରିବାରୁ, ଲବକୁଶ ରାମ ଲକ୍ଷ୍ମଣଙ୍କୁ ହତ କରିଥିଲେ । ଆମ୍ଭଙ୍କୁ ଯେ ଭାଇ ବୋଲି ନ ଚିହ୍ନି ଆଘାତ କରିବ କରୁ । ଲବ କୁଶ ଗୌରବ ଅର୍ଜ୍ଜନ କରିଥିଲେ, କିନ୍ତୁ ଘରେ ସୀତା ଦେବୀ କାନ୍ଦୁଥିଲେ । ମୁଁ ଭରସା, ଅନୁନୟ, ଆଶା କରୁଛି ଓ ଈଶ୍ୱର ମଧ୍ୟ ଆଜ୍ଞା କରିଛନ୍ତି ଯେ—

ଆଦ୍ୟେ ସ୍ମରି ଭଗବାନ ସର୍ବେ ହୋଇ ଏକ ପ୍ରାଣ
କର ମାତୃ ପାଦ ପୂଜା ଏ ମନ୍ଦିରରେ ।

**ମାତୃ ମନ୍ଦିରରେ ପୂଜା :** ମାତୃମନ୍ଦିରରେ ମାତୃପାଦପୂଜା ସମ୍ବନ୍ଧରେ ମଧୁବାବୁ କହିଥିଲେ, "ଏ ମନ୍ଦିରରେ ଯେ ପ୍ରବେଶ କରିବେ ପବିତ୍ର ହୃଦୟ ନେଇ ପ୍ରବେଶ କଲେ, ତାହାର ପୂଜା ମାତା ଓ ଈଶ୍ୱର ଗ୍ରହଣ କରିବେ । ପ୍ରବେଶ କରିବା ପୂର୍ବରୁ ମନେକରିବା ଉଚିତ ଏ ମାତୃଭୂମିର ପୂଜାସ୍ଥାନ । ମୁଁ ଯେବେ କୁପୁତ୍ର ପରି ମାତାର ଅବମାନନା କରିବି, କି ଯେଉଁ ବକ୍ଷସ୍ଥଳରେ ସୁଧାପାନ କରିଥିଲି, ସେହି ବକ୍ଷରେ ଅଜ୍ଞାନରେ ଗୋଇଠା ମାରି କଷ୍ଟ ଦେବି, ତେବେ ସୁଦ୍ଧା ମୁଁ କୁପୁତ୍ର ବୋଲି ମାତୃଭୂମି କଦାପି ମୋତେ ତ୍ୟାଗ କରିବ ନାହିଁ; କିନ୍ତୁ ସେ ମାତାଙ୍କ ପ୍ରତି ଭକ୍ତି ଆମ୍ଭର କର୍ତ୍ତବ୍ୟ । ମୁଁ ଯେତେବେଳେ କୌଣସି ଭ୍ରାତାକୁ ଦେଖେଁ ଯେ ସେ ମନରେ ଭକ୍ତି ନ ଥାଇ, ଏ ଗୃହରେ ପ୍ରବେଶ କରିଅଛନ୍ତି, ସେତେବେଳେ ମୁଁ ନୈରାଶ୍ୟରେ ଜଡ଼ିତ ହୁଏଁ । ଜାତୀୟ ଜୀବନ କାହିଁ ? ଗତବର୍ଷ କହିଥିଲି, ଉତ୍କଳଜନନୀ ମୃତ୍ୟୁଶଯ୍ୟାରେ ପଡ଼ିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ମନ୍ତ୍ରରେ କର୍ଣ୍ଣ ଫାଟିବ । ଯେବେ ଆପଣ କେହି ରୋଗୀର ଚିକିତ୍ସା କରିଥାନ୍ତି ତେବେ ମୁଁ ଚିଠି ଲେଖନ୍ତି ପ୍ରିୟ ଜନନୀ ଶଯ୍ୟାଗତ, ସନ୍ନିପାତ, ବାଉଳା, ଜ୍ଞାନ ନାହିଁ, କବିରାଜ ଔଷଧ, ଡାକ୍ତର ଔଷଧ, ଗୃହର ହାହାମୟ କ୍ରନ୍ଦନ । ଏହି ଅବସ୍ଥାରେ ଉତ୍କଳଜନନୀଙ୍କୁ ଗତବର୍ଷ

ଦେଖିଥିଲୁ । ଯେବେ ପ୍ରିୟ ଜନନୀଙ୍କୁ ଏପରି ଅବସ୍ଥାରେ ଦେଖିଥାଅ, ତେତେବେଳେ ପ୍ରଥମ ଜ୍ଞାନ ହେଲେ, ସନ୍ନିପାତ ରୋଗୀ କିସ କହେ ? ଯେଉଁ ମାତାଙ୍କ ଜୀବନ ଆଶା ଛାଡ଼ିଥିଲ, ଲୁଗାପଟା ପକାଇ ଶରୀର ଉଷ୍ଣ କରୁଥିଲ, ସେହି ମାତା ଜ୍ଞାନ ପାଇ କହୁଅଛନ୍ତି, 'ଏ କାହାର ଲୁଗା, ଏ ମୋର ନୁହେଁ ।' ଆରବର୍ଷ ସନ୍ନିପାତ ଅବସ୍ଥା, ଏ ବର୍ଷ ଜ୍ଞାନାବସ୍ଥା । ସମସ୍ତେ ମନେକର, ସେହି ଅବସ୍ଥାରେ ମାତାଙ୍କ ନିକଟରେ ଉପସ୍ଥିତ ହୋଇ ବିଚାର କର ଯେ ପରଲୁଗା ରଖିବ କି ନିଜର ଲୁଗା ଆଣି ତାଙ୍କୁ ଦେବ । ଏଠାରେ ଜାତୀୟ ଜୀବନର ପ୍ରୟୋଜନ × × ।"

ପୁଣି ଖ୍ରୀ: ୧୯୧୮ରେ, ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ, ସଭାପତିଙ୍କ ଆଦେଶାନୁସାରେ 'ଉତ୍କଳମାତା ଆବାହନ' କରିବାକୁ ଯାଇ ମଧୁବାବୁ କହିଥିଲେ, "ଏ ମଣ୍ଡପ ମାତୃପୂଜାର ମଣ୍ଡପ । ଅନ୍ୟ ସ୍ଥାନମାନଙ୍କରେ ଯେଉଁସବୁ ସମ୍ମିଳନୀ (conference) ହୁଏ, ସେଠାରେ ମାତୃପୂଜା ହୁଏ ନାହିଁ । ସେ ସବୁଠାରେ ଭାଇମାନେ ପରସ୍ପର ମନର ଭାବ ପ୍ରକାଶ କରିବାକୁ ଏକତ୍ର ମିଳିତ ହୁଅନ୍ତି । ଏ ଉତ୍କଳବାସୀଙ୍କ ସମ୍ମିଳନୀ (conference) ଜନନୀ ଜନ୍ମଭୂମିଙ୍କ ପୂଜାମଣ୍ଡପ । ପୂଜାକାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ । ଆବାହନ ବ୍ୟତିରେକେ ପୂଜା ଆରମ୍ଭ ହୋଇନପାରେ । ବର୍ତ୍ତମାନ ଏଠାରେ ଯେତେ ଭାଇଭଉଣୀ ଉପସ୍ଥିତ, ସମସ୍ତଙ୍କ ହୃଦୟରେ ଜନନୀ-ଜନ୍ମଭୂମିଙ୍କ ପ୍ରତିମୂର୍ତ୍ତି ବା ପିତୁଳା ସ୍ଥାପନ କରିବା ଉଚିତ । ଭାଇମାନେ, ସମସ୍ତେ ଥରେ ତାଙ୍କ ପୁଣ୍ୟ ପିତୁଳା ହୃଦୟରେ ସ୍ଥାପନ କର । ଏହି କାର୍ଯ୍ୟପାଇଁ ମୁଁ ଆପଣମାନଙ୍କୁ ଅନୁନୟ ବିନୟ କରୁଅଛି, ମାତାଙ୍କ ନାମରେ ଆଜ୍ଞା ଦେଉଅଛି (କରତାଳି) । ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ମାତାଙ୍କ କୋଳରେ ବସିଅଛୁଁ । ଯଦି କେହି ପଚାରନ୍ତି, ମାତାଙ୍କ କୋଳରେ ବସିଥିବାର କିପରି ଅନୁଭବ କରାଯାଇପାରେ ଓ ତାଙ୍କର ପିତୁଳା ହୃଦୟରେ କିପରି ସ୍ଥାପନ କରାଯାଇପାରେ, ତେବେ କେବଳ ଏହି ଉପରେ ଲେଖାହୋଇଥିବା 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବି । ଏ ବାକ୍ୟଟି ବହୁକାଳରୁ ଶୁଣାଅଛି; କିନ୍ତୁ ତାହାର ଅର୍ଥ ବୁଝିବାକୁ ବୋଧହୁଏ କେହି ଚେଷ୍ଟା କରନ୍ତି ନାହିଁ । ଦେଖନ୍ତୁ, ପ୍ରଥମେ 'ଜନନୀ' ଦ୍ୱିତୀୟରେ 'ଜନ୍ମଭୂମି' ଓ ତୃତୀୟରେ ସ୍ୱର୍ଗ । ମନୁଷ୍ୟଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ମନେକଲେ ଦେଖିବେ, ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି, ଶେଷରେ ସ୍ୱର୍ଗ । ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ ଜୀବନରେ ଆଦ୍ୟ ଜନନୀ, କାର୍ଯ୍ୟ ଜନ୍ମଭୂମି, ପୁରସ୍କାର ମୁକ୍ତି ବା ସ୍ୱର୍ଗ (କରତାଳି) । ଏଥିପାଇଁ ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।

"ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମା ଅଛି । ତାହା ଈଶ୍ୱରଙ୍କର ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟ କରି ଈଶ୍ୱରଙ୍କଠାରେ ମିଶିଯିବ । ଏ ଆତ୍ମା କେଉଁଠାରେ କାର୍ଯ୍ୟ କରୁଛି ? କିପରି ସ୍ୱର୍ଗଲାଭ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟ କରେ । ଏ ପୃଥିବୀରେ ହିଁ ମନୁଷ୍ୟ

ଦୟା, ଧର୍ମ, ପରୋପକାର କରି ସ୍ୱର୍ଗପ୍ରାପ୍ତ ହୁଏ । ମନେକରନ୍ତୁ, ଆଜ ପୃଥିବୀ ସମୁଦ୍ରରେ ମିଶିଯିବ । ତେବେ କେଉଁଠାରେ ଠିଆହୋଇ ମୁକ୍ତିମାର୍ଗ ଓ ସ୍ୱର୍ଗଲାଭର ଉପାୟ ଖୋଜିବା ? ଅତଏବ କହେଁ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ।

"ଆମ୍ଭେମାନେ ସମସ୍ତେ ଦିନେ ମାତୃଗର୍ଭରେ ଥିଲୁଁ । ସେତେବେଳେ ଆମ୍ଭମାନଙ୍କର ଜ୍ଞାନ ନ ଥିଲା, ଜ୍ଞାନଚକ୍ଷୁ ନଥିଲା । ସେତେବେଳେ ଆମ୍ଭମାନଙ୍କର ଏପରି ଏକ ଅବସ୍ଥା ଥିଲା ଯେ ସଂସାର ସଙ୍ଗେ ଆମ୍ଭମାନଙ୍କର ସମ୍ପର୍କ କିଛି ଜାଣୁ ନଥିଲୁଁ । ଯେଉଁ ବାୟୁ ଆମ୍ଭମାନଙ୍କର ଜୀବନ ରକ୍ଷା କରୁଅଛି, ତାହାର ପରିଚୟ ପାଇ ନ ଥିଲୁ । ଯେଉଁ ଚକ୍ଷୁରେ ସମସ୍ତ ବସ୍ତୁ ଦେଖୁଥାଉଁ, ଯେଉଁ କର୍ଣ୍ଣରେ ସମସ୍ତ ଶୁଣୁଥାଉଁ, ଏସବୁ ସେତେବେଳେ ଉପକାର କରି ନଥିଲେ । ସେ ଜୀବନ ମାତୃଗର୍ଭରେ ଥିଲା । ପରେ ପୁଣି ମନୁଷ୍ୟର ଅନ୍ତିମ-ଅବସ୍ଥା ଭାବନା କର । କେହି ପ୍ରିୟଜନର ମୃତ୍ୟୁକାଳରେ ତୁମେ ଉପସ୍ଥିତ ଥିଲେ ଦେଖିଥିବ, କଣ ହେଲା ? ସେତେବେଳେ ଆଦି ଅବସ୍ଥାରେ ଯେପରି ସେପରି କାନକୁ ଶୁଭିଲା ନାହିଁ, ଚକ୍ଷୁକୁ ଦିଶିଲା ନାହିଁ । ଭିତରେ ଯେଉଁ ଈଶ୍ୱର ଅଂଶ ଅଛି, ସେହି ଅବସ୍ଥା ଉପସ୍ଥିତ ହେଲା । ସେହି ଅବସ୍ଥା ମାତୃଗର୍ଭର ଅବସ୍ଥା ସହି ସମାନ । ଯେଉଁ ଅବସ୍ଥାରେ ପ୍ରତ୍ୟେକେ ଅନ୍ୟର ମୃତ୍ୟୁ ଦେଖିଅଛନ୍ତି, ସେହି ଅବସ୍ଥା ଦିନେ ସମସ୍ତଙ୍କର ହେବ । ଭାବି ଦେଖି, ଯେତେବେଳେ କାନ ଶୁଣୁନାହିଁ, ଆଖି ଦେଖୁନାହିଁ, କେବଳ ମାତ୍ର ଆତ୍ମା ଜାଗ୍ରତ ରହିଅଛି— ସେ ଅବସ୍ଥା କିପରି ? ମୃତ୍ୟୁ ଉତ୍ତାରୁ ଏ ମାଟିର ଦେହ ମାଟିରେ ମିଶିଯିବ । ପ୍ରାଣବାୟୁ ବାହାରିଯିବା ପୂର୍ବରୁ ତାହା ମଧ ମାଟିତୁଲ୍ୟ । ପ୍ରିୟଜନମାନେ ଏ ମୃତ ପିଣ୍ଡକୁ ମାଟିରେ ପକାଇଦେବେ । ଯେତେବେଳଯାଏ ମୃତ ବ୍ୟକ୍ତିର ମଧରେ ଜୀବନ ଥାଏ, ସେତେବେଳ-ଯାଏ ମଧ ତାହାର ଦେହ ମୃତ୍ତିକା ସହିତ ସମାନ । ମୃତ୍ତିକାଠାରୁ ତାହାର ତଫାତ୍ କଣ ? ସେତେବେଳର ଦେହ, ଏତେ ଯତ୍ନରେ ଲାଳନପାଳନର ଏ ଶରୀର ଆଉ ମାଟି ଭିତରେ ପ୍ରଭେଦ କଣ ?

"ସେତେବେଳେ କେବଳ ଈଶ୍ୱରଙ୍କ ଅଂଶ ସେହି ଆତ୍ମା ଶରୀର ମଧରେ ଥାଏ । ବାହାରେ ତାର କୌଣସି ଚିହ୍ନ ନାହିଁ । ଆଉ ଗୁରି ପାଞ୍ଚ ଘଣ୍ଟା ପରେ ଏ ଦେହ ମାଟିରେ ମିଶିଯିବ । ସେ ସମୟରେ ଦେହ ଓ ମାଟି ସମାନ । ଅର୍ଥାତ୍ ଆତ୍ମା ସେ ଶରୀର ମଧରେ ବା ମାଟିରେ ବସିଛି; ଅର୍ଥାତ୍ ସେହି ମାତୃଭୂମିର କୋଳରେ ପିଣ୍ଡ ଥାଉ ଥାଉ ଆତ୍ମା ବାହାରିଯିବ । ଦିନେ ଆମ୍ଭମାନଙ୍କ ସମସ୍ତଙ୍କର ଏହି ଅବସ୍ଥା ହେବ । ସେତେବେଳେ ବୁଝିପାରିବ, ତୁମ୍ଭେ ମାତୃକୋଳରେ ବସିଅଛ ।

"ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବା ପାଇଁ ମୋ ଜନ୍ମଭୂମି ମୋତେ ଶସ୍ୟାଦି ଦେଉଅଛି । ଅତଏବ ଶରୀରର ଆଦ୍ୟ ପଦାର୍ଥ ଦିଏ ମାତା, ତାହାର ରକ୍ଷକ ଓ ବର୍ଦ୍ଧକ ଜନ୍ମଭୂମି । ଆମ୍ଭେମାନେ ପ୍ରଥମେ ପ୍ରସବ ହେଲାବେଳେ 'ଭୂମିଷ୍ଠ

ହେଲୁ' ବୋଲି କହନ୍ତି, ଅର୍ଥାତ୍ ଆମ୍ଭମାନଙ୍କ ମାତା ଜନ୍ମଭୂମି କୋଡ଼ରେ ଅର୍ପଣ କରି ସେହି ଜନ୍ମଭୂମିର ପୂଜା କରିବାକୁ ଆଦେଶ ଦିଅନ୍ତି । ଏହି କଥା ପରେ ଅନ୍ତଃକରଣରେ ଭାବ, ଶେଷ ଅବସ୍ଥା ସ୍ମରଣ କର । ମାତା ଯେଉଁ ରକ୍ତ ଦେଇଥିଲେ, ତାହା ନିଃଶେଷ ହେଲାଣି । କେବଳ ସେ ଶରୀର ଅଛି; ତାହା ମାତୃଭୂମିର ମାଟି ସମାନ । ମାତୃଭୂମି ଉତ୍କଳ ଦେହରେ ଆତ୍ମା ରହିଛି । ମା-ଉତ୍କଳ କୋଡ଼ରେ ଚକ୍ଷୁ ବୁଜି ପରେ ପ୍ରାର୍ଥନା କର । ହୃଦୟରେ ଜନ୍ମଭୂମିର ପିଣ୍ଡୁଳା ଆପେ ଜାଗ୍ରତ ହେବ । (କରତାଳି) ଚକ୍ଷୁ ବନ୍ଦ କର, ଦେଖିବ ତୁମ୍ଭ ଭିତରେ ମା' ଅଛନ୍ତି । ଏହି ତ ମାତୃଭୂମିର ପୂଜା । ଭାଇମାନେ, ପୂଜା ନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳ ମାତାଙ୍କର ଆହ୍ୱାନ କର । ସମସ୍ତେ କହ, 'ବନ୍ଦଇ ଜନ୍ମଭୂମି ।'

ପୁଣି ଖ୍ରୀ: ୧୯୧୮ର ଏପ୍ରିଲ ମାସରେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀ ଅଧିବେଶନରେ ମଧୁବାବୁ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ବର୍ଣ୍ଣନା କରି ସେହି ଦେଶମାତୃକା ପୂଜାର ଅବତାରଣା କରିଥିଲେ । ସେ କହିଥିଲେ, "କାଲି ସଭା ଶେଷରେ ଶୁଣିଲି ଯେ କେତେଜଣ ଭ୍ରାତା ଏ ସଭାମଣ୍ଡପରୁ ଧୂଳି ନେଇ ମୁଣ୍ଡରେ ବୋଳିଛନ୍ତି ଓ ଲୁଗାରେ ବାନ୍ଧି ଘରକୁ ନେଇଛନ୍ତି । ସେ ପ୍ରକାର ଭ୍ରାତା କିଏ ତାଙ୍କର ପରିଚୟ ପାଇବା ନିମନ୍ତେ ବହୁତ ଚେଷ୍ଟା କଲି, କିନ୍ତୁ ନ ପାଇବାରୁ ମୁଁ ମଧ୍ୟ ଏଥିରୁ ଧୂଳି ନେଇ ରଖିଅଛି । କାରଣ, ସେ ପ୍ରକୃତରେ ମାତାର ପରିଚୟ ପାଇଛନ୍ତି, ଏ ସଭାମଣ୍ଡପରେ । ଉତ୍କଳ ଜନନୀ ତାଙ୍କୁ ହିଁ ଦେଖାଦେଇଛନ୍ତି । ଯେଉଁ ଭାଇମାନେ ତାଙ୍କର ପରିଚୟ ପାଇଛନ୍ତି, ସେ ପାଣ କି କଣ୍ଡରା ହେଲେ ମଧ୍ୟ ସେ ମୋର ଅଗ୍ରଜ ଓ ପୂଜ୍ୟ । ତେଣୁ ତାଙ୍କ ପାଦଧୂଳି ଏ ଧୂଳିରେ ନିଶ୍ଚୟ ଥିବ ଭାବି ନେଇ ରଖିଛି (କରତାଳି) । ମାତୃପୂଜାରେ ବାଉରି କଣ୍ଡରାର ଯେ ଅଧିକାର, ବ୍ରାହ୍ମଣ କରଣର ସେହି ଅଧିକାର; ରାଜାର ଯେ ଅଧିକାର, ପ୍ରଜାର ସେହି ଅଧିକାର (କରତାଳି) ।

"ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ, ଓଡ଼ିଆ ଜାତିକୁ ଉଠାଇବା । ଓଡ଼ିଆ ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ; ତେଣୁ ସେମାନଙ୍କ ଉନ୍ନତି ନ ହେଲେ, ଦେଶର ଆଉ କି ଉନ୍ନତି ? ସେମାନେ ଭୂମି କର୍ଷଣ କରି ଆମ୍ଭମାନଙ୍କୁ ଧାନ ଚାଉଳ ଦେଉଛନ୍ତି । ସେମାନେ ହିଁ ଉତ୍କଳ ମାତାଙ୍କର ପ୍ରଧାନ ସେବକ । ସେମାନଙ୍କୁ ଉତ୍କଳ ଜନନୀ ସ୍ତନ୍ୟପାନ କରାନ୍ତି । ଆମ୍ଭମାନଙ୍କ ଦେଶର ରାଜା ଜମିଦାରଗଣ ଶରୀରର ବକ୍ଷ ପରି । ସମସ୍ତ ଅଙ୍ଗପ୍ରତ୍ୟଙ୍ଗର ଶିରାପ୍ରଶିରାରୁ ବକ୍ଷକୁ ରକ୍ତ ଯାଏ । ବକ୍ଷ ରକ୍ତ ପରିଷ୍କାର କରି ଶରୀରର ନାନା ସ୍ଥାନକୁ ପ୍ରେରଣ କଲେ ଅଙ୍ଗପ୍ରତ୍ୟଙ୍ଗ ସବଳ ସତେଜ ହୁଅନ୍ତି । ପ୍ରଜାଗଣ ଅଙ୍ଗପ୍ରତ୍ୟଙ୍ଗ ପରି । ସେମାନଙ୍କ ଉପାର୍ଜ୍ଜିତ ଶକ୍ତି ରକ୍ତ ସ୍ୱରୂପ ଜମିଦାର ଖମାରରେ ପ୍ରବେଶ କରୁଅଛି । ଜମିଦାର ଯଦି ସେସବୁ ନିର୍ମଳ କରି ପ୍ରଜାମାନଙ୍କ ମଧ୍ୟରେ ସେମାନଙ୍କ ଉନ୍ନତି

ସାଧନରେ ବ୍ୟସ୍ତ କରନ୍ତି ସମାଜର ଶରୀର ସୁସ୍ଥ ଅବସ୍ଥାରେ ରହିବ । କାଲି ଗୀତ ଗାଇଲା ସମୟରେ ଶୁଣିଥିଲେ—

ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ର ଭୁଜା
ସେହି ତୋର ମାତା ସେହି ତୋର ଧାତା
କର ତାଙ୍କ ପାଦ ପୂଜା ।

ଯଦି କେହି କାଲି ମାତାଙ୍କର ପରିଚୟ ପାଇ ନଥିବେ, ତେବେ ଆଜି ପାଇବେ । ତେବେ ଭୂମିକମ୍ପ ହେବ ନାହିଁ—ତୁମ୍ଭର ହୃତ୍କମ୍ପ ହେବ ।”

( ଏଠାରେ ମଧୁବାବୁ ଗୋଟାଏ ଚିତ୍ର ଦେଖାଇଥିଲେ । ପଟର ଉପରଭାଗରେ ସରକାର, ପରେ ଜମିଦାର । କିଛି ନିମ୍ନରେ ମହାଜନ ଓ ତାହା ନିମ୍ନରେ କୃଷକ ଭୂମି ଖୋଳୁଥିବାର ଚିତ୍ରିତ ଥିଲା । ସର୍ବତଳେ ଦେଖନ୍ତୁ, ଗରିବ ମାଟି ଖୋଳୁଅଛି । ଭଗୀରଥ ତପସ୍ୟା କରି ଯେପରି ଗଙ୍ଗାଙ୍କୁ ଆଣିଥିଲେ, ଏ ସେହିପରି ପରିଶ୍ରମ କରି ନିର୍ଝର ବୁହାଉଛି । ସେ ନିର୍ଝରରେ ଧନ ବହୁଛି । ସେହି ସ୍ରୋତ ମହାଜନ ବାକ୍ସରେ ପ୍ରବେଶ କରୁଛି । ମହାଜନ ବାକ୍ସରୁ ସ୍ରୋତ ଟଙ୍କାରୂପେ ବାହାରି ଜମିଦାର ବାକ୍ସରେ ପଡ଼େ । ସେ ବାକ୍ସରୁ ସ୍ରୋତ ନୋଟରୂପେ ବାହାରି ରାଜକୋଷରେ ପହଞ୍ଚେ; କିନ୍ତୁ ସେଥିରୁ ତାହା ଆଉ ଫେରେ ନାହିଁ । ଭଗୀରଥ ଗଙ୍ଗାଙ୍କୁ ଆଣିଲାବେଳେ ନାନା ବିଘ୍ନରେ ପଡ଼ିଥିଲେ । ଶିବଙ୍କ ଜଟାରେ, ବ୍ରହ୍ମାଙ୍କ କମଣ୍ଡଳୁରେ ଗଙ୍ଗା ଲୁଚିଥିଲେ । ସେ କଷ୍ଟ ସହ୍ୟକରି ପରିଶ୍ରମ କରିଥିଲେ । ତାଙ୍କ ବଂଶ ଉଦ୍ଧାରରେ ଗଙ୍ଗା ଲାଗିଥିଲେ ବୋଲି ସିନା ତାଙ୍କ ପରିଶ୍ରମ ସାର୍ଥକ ହୋଇଥିଲା; କିନ୍ତୁ ଏ ସ୍ରୋତ ମାଟିଖୋଳାର ବଂଶ ଉଦ୍ଧାରରେ ତ ବିନିଯୋଗ ହେଲାନାହିଁ । ଏହାର ବଂଶ ନାଶ ହେଲା । )

[ ବର୍ତ୍ତମାନ ସେ ଆଉ ଗୋଟିଏ ଚିତ୍ରପଟ ଦେଖାଇଥିଲେ । ତାହାର ଊର୍ଦ୍ଧ୍ୱଭାଗରେ ଜଣେ ଚାରିଗୋଟି ମସ୍ତକ ବିଶିଷ୍ଟ, ତଳେ ଛଅଗୋଟି ମସ୍ତକବିଶିଷ୍ଟ, ଆଉ ଜଣେ ରୋଷ-କଷାୟିତ ନୟନରେ ମୁଦ୍‌ଗରହସ୍ତ ହୋଇ ଦଣ୍ଡାୟମାନ । ସର୍ବତଳେ ପଚିଶ ମୁଣ୍ଡବିଶିଷ୍ଟ ଛବି । ]

“ଭାଇମାନେ, ଏହି ଚିତ୍ରରେ ପ୍ରଥମ ଛବି ଚାରିମୁଣ୍ଡବିଶିଷ୍ଟ; ସେହିଟି ସରକାର । ସେ ଚାରି ଟଙ୍କା ସୁଧରେ ଋଣ ଗ୍ରହଣକରନ୍ତି । ପରେ ଜମିଦାର ଛଅମୁଣ୍ଡ, ଛଅ ଟଙ୍କା ସୁଧରେ ଟଙ୍କା ପାଏ । ସର୍ବତଳେ କୃଷକ ପଚିଶ ମୁଣ୍ଡ, ପଚିଶ ଟଙ୍କା ସୁଧ ଦିଏ । ସରକାର ଦେବେ ଚାରି ଟଙ୍କା, ଜମିଦାର ଦେବେ ଛଅ ଟଙ୍କା, ଆଉ ଯେ ଧନ ଧାନ ଉତ୍ପନ୍ନ କଲା, ସେ ଦେବ ପଚିଶ ଟଙ୍କା । ଜାତିର କୃଷକ ସଂଖ୍ୟା ବେଶି । ଜାତିକୁ ଉଠାଇବାକୁ ହେଲେ ଏହାକୁ ଏହି ପଚିଶ ଟଙ୍କା ସୁଧଭାରରୁ ରକ୍ଷା କରିବାକୁ ହେବ ।

"ଆମ୍ଭମାନଙ୍କର ପୂର୍ବପୁରୁଷମାନେ ଆମ୍ଭମାନଙ୍କର ପରିତ୍ରାଣ ନିମନ୍ତେ ଶିବ ମନ୍ଦିର, ବିଷ୍ଣୁ ମନ୍ଦିର ଇତ୍ୟାଦି ଅନେକ ମନ୍ଦିର ନିର୍ମାଣ କରିଅଛନ୍ତି; କିନ୍ତୁ କେଉଁଠାରେ ହେଲେ ଲକ୍ଷ୍ମୀପୂଜା ମନ୍ଦିର ଆପଣମାନେ ଦେଖିଛନ୍ତି କି ? ଲକ୍ଷ୍ମୀମନ୍ଦିର ନାହିଁ । ଅବଶ୍ୟ ପ୍ରତ୍ୟେକଙ୍କ ଘରେ ଗୁରୁବାର ପୂଜା ଖଟୁଲି ମାଣ ଅଛି । ସେଟା ପ୍ରତ୍ୟେକଙ୍କ ସ୍ୱତନ୍ତ୍ର ପୂଜାର ବିଷୟ । କିନ୍ତୁ ଜାତିର ମାଣ, ଗୁରୁବାର ଖଟୁଲି ନାହିଁ । ଲକ୍ଷ୍ମୀପୂଜା ନ କଲେ ଉନ୍ନତି ହେବ ନାହିଁ । ଜାତିର ଲକ୍ଷ୍ମୀ ମନ୍ଦିର ନହେଲେ, ଜାତି ଉଠିବ ନାହିଁ । ତେଣୁ ଗୋଟିଏ ଜାତୀୟ ଲକ୍ଷ୍ମୀମନ୍ଦିର ଦରକାର । × ×

"ଭାଇମାନେ, ଇଂରେଜ ଖୁବ୍ ଅଗ୍ରସର ଜାତି । ଆମ୍ଭେମାନେ ଇତିହାସରୁ ପଢ଼ିଛୁ ଆର୍ଯ୍ୟଜାତି, ଗ୍ରୀକ୍ ଓ ରୋମ ଜାତି ଖୁବ୍ ଅଗ୍ରସର ଥିଲେ । ବର୍ତ୍ତମାନ ସେମାନେ କାହାନ୍ତି ? ଏହାର କାରଣ, ତାଙ୍କର ଭୁଲ ଥିବାରୁ ଅଧିକ ଦିନ ତିଷ୍ଠି ପାରିଲେ ନାହିଁ । ମୁଁ ପିଲାଦିନେ ସ୍କୁଲରେ ପଢ଼ିଲାବେଳେ ବୁଝିଛି, ଅବଶ୍ୟ ଅନ୍ଧାର ରାତିରେ ଯେ ଆଗରେ ଗଲେ, ସେ କାଦୁଅରେ ଖସଡ଼ାରେ ଯାଇ ପଡ଼େ, ଅନ୍ୟମାନେ ସେ ଭୁଲ ଦେଖି ସତର୍କ ହୋଇଯାନ୍ତି । ଆମ ଓଡ଼ିଆ ଜାତି ସବୁ ପଶ୍ଚାତ୍‌ପଦ । ଏହାର ଗୋଟିଏ ଭଲ ଫଳ ଦେଖୁଛୁ—ପଛରେ ଥିବାରୁ ଆମେ ଅନ୍ୟ ଜାତିମାନଙ୍କର ଭଲ ଦେଖୁଛେଁ । ଆମେ ଏହା ଫଳରେ ଆଉ ଭୁଲ କରିବା ନାହିଁ । ଇଂରେଜମାନେ ଏଠାରୁ ଲକ୍ଷ ଲକ୍ଷ ଟଙ୍କାର ଝୋଟ କିଣି ନେଇ କଳକାରଖାନା ବସାଇଅଛନ୍ତି । ଯୁଦ୍ଧଯୋଗୁଁ ବସ୍ତ୍ରର ଦୁର୍ମୂଲ୍ୟତା ହେବାର ଗୋଟିଏ ପ୍ରଧାନ କାରଣ ଯେ ଇଂରେଜମାନଙ୍କର କପା ନାହିଁ; ତେଣୁ ବସ୍ତ୍ର କାରଖାନା ଖୋଲିବାକୁ ହେଲେ ଆଗେ କପା ଚାଷ କର ।

"ଆମ ଦେଶରେ ଧନ କମ୍ ଅଛି ବୋଲି ଲୋକେ କହନ୍ତି ଓଡ଼ିଆ ଗରିବ । ମୁଁ କହେ କଦାଚ ନୁହେଁ । ବର୍ତ୍ତମାନ କଲିକତା, ନାଗପୁର ଇତ୍ୟାଦି ସ୍ଥାନର କଳକାରଖାନାମାନଙ୍କ ମଧ୍ୟରେ ଲକ୍ଷ ଲକ୍ଷ ଓଡ଼ିଆ କାମ କରୁଅଛନ୍ତି । ଏହାର ଅର୍ଥ—ଓଡ଼ିଆର ହାତର ମୂଲ୍ୟ ଅଛି । ସେଠାରେ ଯେ ଦୈନିକ ଟଙ୍କାଏ ଆଦାୟ କରିବ, ଏଠାକୁ ଆସିଲେ ଦଶ ପଇସା ମାତ୍ର ପାଇବ । ଆମେ କଣ ତାଙ୍କୁ କାର୍ଯ୍ୟ ଦେଇପାରିବା ?

"ସୁନା କାରଖାନା କଲେ ସେମାନେ ଆସିବେ । ଯେଉଁ ହାତରେ କୋଣାର୍କ, ଭୁବନେଶ୍ୱର ମନ୍ଦିରମାନ ତିଆର ହୋଇଅଛି, ସେହି ହାତର ଲାଭ ବିଦେଶୀମାନେ ଖାଇ ଯାଉଅଛନ୍ତି । ଧିକ୍ ଆମ୍ଭମାନଙ୍କୁ :

'ଓଡ଼ିଆ'ର ସମ୍ପାଦକ ଯେ ସେ ହେଉ, ଥରେ ଉତ୍କଳୀୟଙ୍କ ନିମନ୍ତେ ସ୍ୱାର୍ଥତ୍ୟାଗ, ଧନ ଦାନ ଓ ସ୍ୱେଚ୍ଛାସେବା କରିବାପାଇଁ ଲେଖିଥିଲେ ।" ନିମ୍ନଲିଖିତ ବ୍ୟକ୍ତିଗଣ ସେଥିପ୍ରତି ଉତ୍ସୁକ ହୋଇଥିଲେ ।

୧ । ରାଜକିଶୋର ମହାନ୍ତି ।

୨ । ବିଚିତ୍ରାନନ୍ଦ ପଟ୍ଟନାୟକ ( ଏଣ୍ଟ୍ରାନ୍ସ ଛାତ୍ର, ଉପରୋକ୍ତ ପ୍ରକାରେ ଗ୍ରୀଷ୍ମାବକାଶରେ ବିନା ବେତନରେ ଯେ କୌଣସି କାର୍ଯ୍ୟ କରିବେ )

୩ । ଲକ୍ଷ୍ମଣ ସାହୁ ( ବିନାବେତନରେ )

୪ । ଶ୍ରୀବତ୍ସ ପଣ୍ଡା ( ୫ ଟଙ୍କା ଦାନ )

**ଛାତ୍ରସମାଜ ଓ ସୁଶୃଙ୍ଖଳ ଜୀବନ :** ୧୯୦୯ ଜାନୁଆରି ମାସରେ କଟକର ପ୍ୟାରିମୋହନ ଏକାଡ଼େମୀର ବାର୍ଷିକ ପୁରସ୍କାର ବିତରଣୀ ସଭାରେ ମଧୁବାବୁ ଛାତ୍ରମାନଙ୍କୁ ସୁଶୃଙ୍ଖଳ ଜୀବନ ଯାପନ କରିବା ପାଇଁ ଉପଦେଶ ଦେଇଥିଲେ । ଏହି ସଭାରେ କମିଶନର ମିଃ ଇ. ଭିଃ ଲେଭିନ୍‌ଜ୍ (Mr. E. V. Levinge I. C. S., ପରେ ବିହାର-ଓଡ଼ିଶା ପ୍ରଦେଶର ଲାଟ ହୋଇଥିଲେ) ସଭାପତିତ୍ୱ କରିଥିଲେ । ମଧୁବାବୁ କହିଥିଲେ "ସୁଶୃଙ୍ଖଳ ଜୀବନ ଯାପନ ବ୍ୟତୀତ ବ୍ୟକ୍ତି ଓ ସମାଜର ସମୂହ ଉନ୍ନତି ଅସମ୍ଭବ । ଦେଶ ନିମନ୍ତେ ପ୍ରତ୍ୟେକ ଛାତ୍ରକୁ ସ୍ୱାର୍ଥତ୍ୟାଗ ମନୋଭାବ ପୋଷଣ କରିବାକୁ ହେବ ।" ଚରିତ୍ର ଗଠନ ଉପରେ ସେ ବିଶେଷ ଗୁରୁତ୍ୱ ଆରୋପ କରି ବ୍ୟକ୍ତିଗତ ବ୍ୟବହାରରେ ସହନଶୀଳତା ଅବଲମ୍ବନ କରିବାକୁ ଉପଦେଶ ଦେଇଥିଲେ ।

**ବଙ୍ଗୀୟ ବ୍ୟବସ୍ଥାପକ ସଭାରେ ଲାଟଙ୍କ ସ୍ୱାଗତ :** ମଧୁବାବୁ ୧୯୦୯ରେ ବଙ୍ଗ ବ୍ୟବସ୍ଥାପକ ସଭାକୁ ଓଡ଼ିଶା ଡିଭିଜନରୁ ନିର୍ବାଚିତ ହୋଇଥିଲେ ।

ପ୍ରାରମ୍ଭିକ ଅଧିବେଶନରେ ବଙ୍ଗଳାର ନୂତନ ଗ୍ରେଟଲାଟ ସାର୍ ବେକର୍ (Sir Baker) ପ୍ରଚଳିତ ରୀତି ଅନୁଯାୟୀ ସଭାପତିତ୍ୱ କରିଥିଲେ । ସାର୍ ବେକର୍ ନୂତନ ଲାଟ ହୋଇ ଆସିଥିବାରୁ ତାଙ୍କୁ ସଭ୍ୟମାନେ ସ୍ୱାଗତ ଜଣାଇଥିଲେ । ବର୍ଦ୍ଧମାନର ମହାରାଜା, ମଧୁସୂଦନ ଦାସ ପ୍ରଭୃତି ଭାଷଣ ଦେଇ ତାଙ୍କୁ ସ୍ୱାଗତ କରିଥିଲେ ।

ଭାଷଣ ଭିତରେ ମଧୁବାବୁ କହିଥିଲେ—"ବତାସ ସମୟରେ ଜାହାଜକୁ ସ୍ଥିର କରିବା ନିମନ୍ତେ ସୁଦକ୍ଷ ନାବିକ ଆବଶ୍ୟକ । ବ୍ୟକ୍ତି ହିଁ ଶାସନ ପ୍ରଣାଳୀର ଗୋଟିଏ ପ୍ରଧାନ ଅଙ୍ଗ । ବିଶେଷତଃ, ଭାରତର ଲେଫ୍‌ଟନେଣ୍ଟ ଗଭର୍ଣ୍ଣର (ଗ୍ରେଟଲାଟ)ମାନଙ୍କର ଆଇନ ଆବଶ୍ୟକ ହୁଏ; କିନ୍ତୁ ପ୍ରୟୋଜନ ଅନୁସାରେ ଆଇନ ମିଳିବା କଷ୍ଟକର । ଏହା ଡାକ୍ତରଙ୍କ ଅସ୍ତ୍ର ସଙ୍ଗେ ତୁଳନା କରାଯାଇପାରେ । ରୋଗୀର ଅବସ୍ଥା ଦୃଷ୍ଟିରେ ଯେଉଁ ଅସ୍ତ୍ରଚାଳନା ଆବଶ୍ୟକ ହୁଏ, ତାହାର ବିଶେଷତ୍ୱ ଚିକିତ୍ସକର ନିପୁଣତା ଉପରେ ନିର୍ଭର କରେ । ଆଇନ ମଧ୍ୟ ସେହିପରି ।" ସେ କହିଥିଲେ ଯେ—ଲାଟସାହେବ କାର୍ଯ୍ୟଭାର ଗ୍ରହଣ କରିବାର ଅଳ୍ପଦିନ ପରେ ଓଡ଼ିଶା ପରିଦର୍ଶନରେ ଯିବାପାଇଁ ମନସ୍ଥ କରିଥିବାରୁ ଧନ୍ୟବାଦାର୍ହ । ଏଠାରେ ଲାଟ ମହୋଦୟଙ୍କ ପୂର୍ବସ୍ମୃତିର ଆକର୍ଷଣ କିଛିନାହିଁ । କେବଳ ଶାସିତ ଭୂଖଣ୍ଡର

ଯାବତୀୟ ସମସ୍ୟା ନିଜେ ବୁଝିବା ଓ ଲୋକଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବା ପରିଦର୍ଶନର ମୂଳ ଉଦ୍ଦେଶ୍ୟ ।

**ଲାଟସାହେବଙ୍କୁ ନିଜ ଗୃହରେ ସମ୍ବର୍ଦ୍ଧନା—୧୯୦୯ :** ବଙ୍ଗ ଲାଟ ମାନ୍ୟବର ସାର୍ ବେକର୍ ୧୯୦୯ ଫେବୃୟାରୀ ମାସରେ କଟକ ଆସିଥିଲେ । ତାହାଙ୍କୁ ଭେଟିବାପାଇଁ ମାନ୍ୟବର ମଧୁସୂଦନ ଦାସଙ୍କ ଘରେ ଏକ ସାନ୍ଧ୍ୟ ମିଳନ ହୋଇଥିଲା । ଏଥିରେ ନାନାବିଧ ଆମୋଦ ପ୍ରମୋଦର ବ୍ୟବସ୍ଥା ହୋଇଥିଲା । ତରବାରି ଖେଳ, କସରତ୍ ଏବଂ ଆତସବାଜି ବଡ଼ ଚମତ୍କାର ହୋଇଥିଲା । ବକ୍ସିବଜାରର ମୋବାରକ ହୋସେନଙ୍କ ଆଖଡ଼ାର ପିଲମାନେ କୁସ୍ତିଖେଳ ଦେଖାଇଥିଲେ । ଜଣକୁ ଚିତ୍‌କରି ଶୁଆଇ ଦେଇ ତାହା ପେଟ ଉପରେ ଗୋଟିଏ ଭାରି ପଥର ରଖି ଲୁହା ମୁଗୁରରେ ତାହା ଭାଙ୍ଗିଲେ । ଦାନ୍ତରେ ଜଳପୂର୍ଣ୍ଣ କଳସ ତୋଳିବା ଖେଳ ମଧ୍ୟ ଦେଖାଇଥିଲେ । ଏସବୁ ଖୁବ୍ ପ୍ରଶଂସନୀୟ ହୋଇଥିଲା । ଏହି ମିଳନରେ ସହରର ବହୁ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥିଲେ ।

**ଓଡ଼ିଆ ପତ୍ରପତ୍ରିକା ଓ ସଭାସମିତି ପ୍ରତି ସହାନୁଭୂତି :** କଲିକତାରେ 'ନେବୁତଲା ସେଣ୍ଟ୍ ଜେମ୍‌ସ ସ୍କୋୟାର୍'ରୁ ମଣିଲାଲ ମହାରଣା ନାମରେ ଜଣେ ଉତ୍ସାହୀ ଓଡ଼ିଆ ବ୍ୟକ୍ତି କଲିକତାସ୍ଥ ଓଡ଼ିଆମାନଙ୍କର ସୁବିଧା ନିମନ୍ତେ 'ଉତ୍କଳ ବାର୍ତ୍ତା' ନାମରେ ଏକ ସମ୍ବାଦପତ୍ର ପ୍ରକାଶ କରୁଥିଲେ । ମଧୁବାବୁ ତାହାର ପୃଷ୍ଠପୋଷକ ଥିଲେ ।

କଲିକତାରେ 'ଧର୍ମସଭା' ନାମରେ ଏକ ସଭା ଗଠନ କରି ଓଡ଼ିଆମାନେ ନିଜ ନିଜ ଅଞ୍ଚଳର ବିଭିନ୍ନ ସମସ୍ୟା ଆଲୋଚନା କରୁଥିଲେ । ମଧୁବାବୁ ସେଠାରେ ବକ୍ତୃତାଦେଇ ଓଡ଼ିଆମାନଙ୍କୁ ଉତ୍ସାହିତ କରୁଥିଲେ ।

ପାଟନା ଓ କଲିକତାକୁ ପ୍ରାଦେଶିକ ବ୍ୟବସ୍ଥାପକ ସଭା ଓ ବିଶ୍ୱବିଦ୍ୟାଳୟ ସମ୍ପର୍କରେ ବେଶିଥର ଯାତାୟାତ କରିବାକୁ ପଡ଼ୁଥିବାରୁ ମଧୁବାବୁ କଲିକତାର 'ଗ୍ରାଣ୍ଡ୍ ହୋଟେଲ୍'ରେ ଏକ କୋଠରି ସ୍ଥାୟୀରେ ଭଡ଼ା ନେଇ ସେଠାରେ ରହୁଥିଲେ । ଏହି ସମୟକୁ ମଧୁବାବୁଙ୍କ ବୟସ ୬୯ ବର୍ଷ ହୋଇଥିଲା ।

କଲିକତାର ଆମ୍‌ହର୍‌ଷ୍ଟ ଷ୍ଟ୍ରିଟ୍‌ର ପଞ୍ଚାନନ ଘୋଷ ଗଳିରେ ଓଡ଼ିଆ ଛାତ୍ରମାନଙ୍କର ଏକ 'ଲ (ଆଇନ୍) ହଷ୍ଟେଲ୍'ସ୍ଥାପିତ ହୋଇଥିଲା । ସେଠାରେ ବି.ଏଲ୍. ଓ ଏମ୍.ଏ.,ବି.ଏଲ୍ ଅଧ୍ୟୟନ କରୁଥିବା ଛାତ୍ରମାନେ ରହୁଥିଲେ । ସେଠାକୁ ମଧୁବାବୁ ବେଳେ ବେଳେ ଯାଇ ଛାତ୍ରମାନଙ୍କୁ ପ୍ରେରଣା ଓ ଉତ୍ସାହ ଦେଉଥିଲେ; ଜାତୀୟ ଭାବରେ ଉଦ୍‌ବୁଦ୍ଧ ହେବାପାଇଁ ବୁଝାଉଥିଲେ ।

**ବି: ଏଲ୍. ଛାତ୍ରମାନଙ୍କ ବୃତ୍ତିଦାନନେଇ ବିବାଦ :** ୧୯୦୭ରେ କଟକର ରେଭେନ୍‌ସା କଲେଜରେ ଆଇନ ଶିକ୍ଷାର୍ଥୀଙ୍କ ସଂଖ୍ୟା କମିଯିବାରୁ ସେଠାରୁ ସରକାର ବି. ଏଲ୍. କ୍ଲାସ୍ ଉଠାଇ ଦେଲେ । ଏହାଦ୍ୱାରା ଓଡ଼ିଶାର ବହୁତ କ୍ଷତି ହୋଇଥିବା

ଦର୍ଶାଇ ମଧୁବାବୁ ବଙ୍ଗ ସରକାର ଓ ବଙ୍ଗ-ବିଶ୍ୱବିଦ୍ୟାଳୟଙ୍କଠାରେ ବି. ଏଲ୍. ଶ୍ରେଣୀ ନ ଉଠାଇବାପାଇଁ ଦାବୀ କରିଥିଲେ; କିନ୍ତୁ ସରକାର ଓ ବିଶ୍ୱବିଦ୍ୟାଳୟ ଏଥିରେ ସମ୍ମତହୋଇ ନଥିଲେ । ଉତ୍କଳ ସମ୍ମିଳନୀରେ ଏ ସମ୍ବନ୍ଧରେ ଦାବୀ ହୋଇ ଏକ ପ୍ରସ୍ତାବ ମଧ୍ୟ ଗ୍ରହଣ କରାଯାଇଥିଲା । ସରକାର ଦାବୀର ବିଚାର କରି ଅନ୍ୟ ଏକ କାର୍ଯ୍ୟପ୍ରଣାଳୀ ସ୍ଥିର କଲେ । କଲିକତାରେ ଓଡ଼ିଶାର ଛାତ୍ରମାନେ ଏମ୍.ଏ.,ବି.ଏଲ୍. ଅଧ୍ୟୟନ କରିବା ନିମନ୍ତେ କେତୋଟି ବୃତ୍ତି ସରକାର ଖଞ୍ଜିଦେଲେ । ଇଂଜିନିଅରିଂ ଶିକ୍ଷା ପାଇଁ ମଧ୍ୟ ଏପରି କେତୋଟି ବୃତ୍ତି ବ୍ୟବସ୍ଥା କରିଥିଲେ । ଏଥିରେ ମଧୁବାବୁ ବିଶେଷ ଯତ୍ନ ନେଇଥିଲେ । ବି.ଏଲ୍. ଶିକ୍ଷା କରିବା ପାଇଁ ୬ଟି ବୃତ୍ତି ଖଞ୍ଜା ହୋଇଥିଲା ।

ପ୍ରଥମେ ସରକାର ସ୍ଥିର କରିଥିଲେ, ଓଡ଼ିଆ ଛାତ୍ରମାନେ ଏହି ବୃତ୍ତି ପାଇବେ । ପରେ 'ଯେଉଁମାନେ ଉତ୍କଳରେ ବାସ କରୁଥିବା ପ୍ରମାଣ କରିପାରିବେ' ସେମାନେ ମଧ୍ୟ ଏହି ବୃତ୍ତି ପାଇବାପାଇଁ ହକଦାର ହେବେ ବୋଲି ସ୍ଥିରହେଲା । ଓଡ଼ିଆଙ୍କ ମଧ୍ୟରେ ଉତ୍କଳର ପୁରାତନ ବଙ୍ଗୀୟ ଅଧିବାସୀମାନେ ଗଣ୍ୟ ହେବା ସମ୍ବନ୍ଧରେ ମତାନୈକ୍ୟ ଦେଖାଦେଲା । ବାଦବିବାଦ ଉତ୍କଟ ଆକାର ଧାରଣ କରି ଜାତିବିବାଦରେ ପରିଣତ ହେବା ପର୍ଯ୍ୟନ୍ତ ଯାଇଥିଲା । କଟକରେ ଫେବୃଆରି ମାସରେ (ଉତ୍କଳ ସଭା) ଏକ ବୈଠକ ହୋଇଥିଲା ଏବଂ ସେଥିରେ ପ୍ରସ୍ତାବ ଗୃହୀତ ହେଲା ଯେ "ଉତ୍କଳଖଣ୍ଡ ଇଂରେଜ ଅଧିକୃତ ହେବାପୂର୍ବରୁ ଯେଉଁମାନେ ଏଠାରେ ବାସ କରୁଥିଲେ ସେ ସମସ୍ତଙ୍କୁ ଓଡ଼ିଆ ମଧ୍ୟରେ ଗଣ୍ୟ କରାଯାଉ ।" ଏ ସମ୍ବନ୍ଧରେ ସରକାର ଓ କମିଶନରଙ୍କଠାରେ ଆବେଦନ କରିବାପାଇଁ ଏକ କମିଟି ନିଯୁକ୍ତ ହେଲା । ଏହି କମିଟିରେ ବାବୁ ମଧୁସୂଦନ ଦାସ, ବାବୁ ଗୌରୀଶଙ୍କର ରାୟ, ବାବୁ ଗୋପାଳଚନ୍ଦ୍ର ପ୍ରହରାଜ, ବାବୁ ନିମାଇଁଚରଣ ମିତ୍ର, ବାବୁ କଳ୍ପତରୁ ଦାସ ମନୋନୀତ ହୋଇଥିଲେ । 'ଉତ୍କଳ ସଭା'ର ପ୍ରସ୍ତାବରେ ସୀମା ନିର୍ଦ୍ଦିଷ୍ଟ ହୋଇଥିବାରୁ କଳହର ଅବକାଶ ରହିଲା ନାହିଁ । ଓଡ଼ିଶାର ସ୍ଥାୟୀ ବଙ୍ଗୀୟ ସମ୍ପ୍ରଦାୟ ଉତ୍କଳସଭାର ସଜ୍ଞାକୁ ଗ୍ରହଣ କରିଥିଲେ ।

**ବିଦ୍ୟାଳୟ ସଂଖ୍ୟା ବୃଦ୍ଧି ପାଇଁ ଉଦ୍ୟମ :** ମଧୁବାବୁ କଟକ ଜିଲ୍ଲାବୋର୍ଡର ଭାଇସ୍ ଚେୟାରମ୍ୟାନ୍ ହିସାବରେ କଟକ ଜିଲ୍ଲାର ବିଭିନ୍ନ ସ୍କୁଲ ଦେଖିବାକୁ ଯାଉଥିଲେ । ଓଡ଼ିଆ ରାଜ୍ୟମାନଙ୍କର ଶିକ୍ଷାର ବିଶେଷ ଉନ୍ନତି ଆବଶ୍ୟକ ଥିବା ସେ ଅନୁଭବ କରିଥିଲେ । ଏହି କାରଣରୁ ଓଡ଼ିଶା ଓ ଗଡ଼ଜାତରେ ମଧ୍ୟ-ଇଂରେଜୀ ଓ ହାଇସ୍କୁଲର ସଂଖ୍ୟା ଓ ମାନ ବୃଦ୍ଧି ପାଇଁ ସେ ଉଦ୍ୟମ କରିଥିଲେ । ଗଡ଼ଜାତର ରାଜା ଓ ବିଭିନ୍ନ ଜିଲ୍ଲାର ଭାଇସ୍ ଚେଆରମ୍ୟାନମାନଙ୍କ ସହ ଏ ସମ୍ପର୍କରେ ପରାମର୍ଶ ମଧ୍ୟ କରିଥିଲେ ।

**ଯୁବକମାନଙ୍କୁ ଉଦ୍‌ବୋଧନ :** 'ଉତ୍କଳ ଯୁବକ କେନ୍ଦ୍ର ସମିତି'ର ଖ୍ରୀ: ୧୯୦୯ରେ ବାର୍ଷିକ ଅଧିବେଶନ ଅଗଷ୍ଟ ମାସରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ମଧୁବାବୁ ଯୋଗ ଦେଇ ଯୁବକମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ଛାତ୍ରମାନେ ଗତ ବନ୍ୟା

ଓ ଦୁର୍ଭିକ୍ଷ ସମୟରେ ଗ୍ରାମାଞ୍ଚଳରେ ଲୋକଙ୍କର ସେବା କରିଥିବା ସେ ନିଜେ ଦେଖିଥିଲେ ଏବଂ ଏଥିରେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ବୋଲି କହିଥିଲେ । ବିଲାତରୁ ଫେରିଆସିବା ପରେ ମଧୁବାବୁ ସାହାଯ୍ୟ ବଣ୍ଟନର ଯେଉଁ ବ୍ୟବସ୍ଥା କରିଥିଲେ ଯୁବକମାନେ ସେଥିରେ ପ୍ରଶଂସନୀୟ କାର୍ଯ୍ୟ କରିଥିବା କହି ଏଥିରେ ସେ ଗର୍ବ ଅନୁଭବ କରିଥିବା ପ୍ରକାଶ କରିଥିଲେ । ସେ ଯୁବକମାନଙ୍କୁ ଉପଦେଶ ଦେଇ କହିଥିଲେ, "ଭଗବାନଙ୍କଠାରେ ଅର୍ଜ୍ଜୁନଙ୍କର ଯେଉଁପରି ଭକ୍ତି ପ୍ରକାଶିତ ହୋଇଥିଲା, ସେହିପରି ଭକ୍ତି ତୁମ୍ଭମାନଙ୍କଠାରେ ପ୍ରକାଶ ପାଇବାକୁ ହେବ । ସେକ୍ସପିଅର୍‌ଙ୍କ ନାଟକମାନଙ୍କରୁ ବିଶ୍ୱାସଘାତକକୁ ଘୃଣା କରିବା ନୀତିକୁ ଗ୍ରହଣ କରି ତାହା ଶିକ୍ଷା କରିବାକୁ ହେବ । ପାର୍ଥିବ ମୁକୁଟର ଲୋଭରେ ଲକ୍ଷ୍ୟ ନରଖି ଈଶ୍ୱରପ୍ରଦତ୍ତ ମୁକୁଟ ଲାଭର ଲକ୍ଷ୍ୟ ରଖିବା କର୍ତ୍ତବ୍ୟ । ତୁମ୍ଭେମାନେ ଏ ଦିଗରେ ବ୍ରତୀ ହେବା ଦେଖିଲେ ମୁଁ ଆନନ୍ଦିତ ହେବି ।"

**ଶିକ୍ଷକ ଓ ଛାତ୍ରମାନଙ୍କୁ ଉପଦେଶ** : ଖ୍ରୀ: ୧୯୦୯ ଡିସେମ୍ବର ୨୭ ତାରିଖରେ କଟକ ଜିଲ୍ଲା ରାଜକନିକା ନଗରଠାରେ ମଧ୍ୟଇଂରାଜୀ ସ୍କୁଲ ଓ ପଦ୍ମନାଭ ଟୋଲର ପୁରସ୍କାର ବିତରଣ ସଭା ମିଃ ମଧୁସୂଦନ ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁ ତାଙ୍କ ଭାଷଣରେ ଅଭିଭାବକ, ଛାତ୍ର ଓ ଶିକ୍ଷକମାନଙ୍କୁ କେତେକ ମୂଲ୍ୟବାନ ଉପଦେଶ ଦେଇଥିଲେ ।

ଅଭିଭାବକମାନଙ୍କୁ ଲକ୍ଷ୍ୟ କରି କହିଥିଲେ, "ତୁମ୍ଭେମାନେ କେହି ଇଚ୍ଛା ନକର ଯେ ମୋର ଗୋଟିଏ ପୁଅ ପଢ଼ୁ । ସମସ୍ତେ ତ ପଢ଼ିବେ—କେଉଁଠି ଚାକିରି ପାଇବେ ? କିନ୍ତୁ ଏପରି ମନେକଲେ ଶେଷରେ ଅନୁତପ୍ତ ହେବ । ପୁଅ ପାଠ ପଢ଼ି ଚାଷ କଲେ ନିଜର ଆୟବ୍ୟୟ ବୁଝିପାରିବ ।"

ଛାତ୍ରମାନଙ୍କୁ କହିଲେ, 'ଦୁଃଖ ସ୍ୱୀକାର ନକଲେ ସୁଖ ମିଳେ ନାହିଁ ।' ଏ ବିଷୟରେ ନିଜ ଜୀବନୀରୁ ଏକ ଉଦାହରଣ ଦେଲେ । ସେ କଲିକତାରେ ପଢ଼ିବାକୁ ଗଲା-ବେଳେ ନିଃସ୍ୱ ଥିଲେ କହିଲେ ଚଳେ । ସେ ଟିଉସନ କରି ଓ ଠିକା ଚାକିରି କରି ଚଳୁଥିଲେ । ତତ୍ପରେ କହିଲେ, "ପଢ଼ି ଜ୍ଞାନୀ ହୋଇ ଯେଉଁମାନେ ଆରାମ ଚୌକିରେ ନିଦ୍ରାଯାଆନ୍ତି, ସେମାନେ ଜୀବିତ ନୁହନ୍ତି । ମନୁଷ୍ୟ କାର୍ଯ୍ୟ କରିବା ନିମନ୍ତେ ସଂସାରରେ ଜନ୍ମଗ୍ରହଣ କରିଅଛୁ । ଏହି କାର୍ଯ୍ୟ କରିବାକୁ ଜ୍ଞାନର ଆବଶ୍ୟକ । ଯାହା ଜାଣିବାକୁ ହୁଏ, ତାହାର ନାମ ଜ୍ଞାନ । ଏହି ଜ୍ଞାନରୂପ ଶସ୍ତ୍ର ଧରି ମନୁଷ୍ୟ ଜୀବନରୂପ ରଣକ୍ଷେତ୍ରରେ ନାନାବିଧ ବିଘ୍ନରୂପ ଶତ୍ରୁଙ୍କୁ ଜୟକରେ । ଯେଉଁମାନେ ଏହି ଶସ୍ତ୍ର କେବଳ ଧରିଥାଆନ୍ତି କିନ୍ତୁ ତାହାର ବ୍ୟବହାର ଜାଣନ୍ତି ନାହିଁ, ସେମାନେ ପରାସ୍ତ ହୁଅନ୍ତି । ଅତଏବ ଯେଉଁ ଜ୍ଞାନ ଉପାର୍ଜ୍ଜନ କରୁଅଛ, ତାହାର ବ୍ୟବହାର କରିବାକୁ ଶିଖ ।"

ଶିକ୍ଷକମାନଙ୍କୁ ଲକ୍ଷ୍ୟକରି କହିଲେ, "ଆମ୍ଭ ଦେଶର ଲୋକେ ଶିକ୍ଷକତା କାର୍ଯ୍ୟକୁ ସାମାନ୍ୟ କାର୍ଯ୍ୟ ମନେକରି ଘୃଣା କରିଥାଆନ୍ତି; କିନ୍ତୁ ତାହା ଠିକ୍ ନୁହେଁ । ଶିକ୍ଷକ

ମନୁଷ୍ୟର ମନୁଷ୍ୟତ୍ୱ ଗଠନ କରେ । ମାତାପିତା ଜାତ ଶିଶୁ ଓ କୁମ୍ଭକାରକୃତ ମୃଣ୍ମୟ ପିଣ୍ଡ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଯେତେବେଳଯାଏ ଶିକ୍ଷକ ମନୁଷ୍ୟଠାରେ ଜ୍ଞାନରୂପ ସଞ୍ଜୀବନୀ ମନ୍ତ୍ରର ନ୍ୟାସ କରି ନଥାନ୍ତି, ସେତେବେଳ ପର୍ଯ୍ୟନ୍ତ ସେ କୁମ୍ଭକାରକୃତ ମୃଣ୍ମୟ ପିଣ୍ଡ ପରି । ପାଶ୍ଚାତ୍ୟ ଦେଶପରି ଆମ୍ଭ ଦେଶରେ ଶିକ୍ଷକମାନଙ୍କର ସମ୍ମାନ ନାହିଁ ସତ୍ୟ; କିନ୍ତୁ ଏପରି ଗୋଟିଏ ଦିନ ଆସିବ ଯେତେବେଳେ କି ସମସ୍ତେ ଶିକ୍ଷକର ଗୁଣ ବୁଝି ପାରିବେ ।"

ମଧୁବାବୁ ଏହି ସ୍କୁଲକୁ ଆସନ୍ତା ଜାନୁଆରି (୧୯୧୦ ଜାନୁଆରି) ଠାରୁ ମାସିକ ୧୦ ଟଙ୍କା (ଦଶଟଙ୍କା) ସାହାଯ୍ୟ ପ୍ରଦାନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ଏହି ସଭା ଉପଲକ୍ଷେ ପଦ୍ମନାଭ ଟୋଲର ପଣ୍ଡିତ ଶ୍ରୀ ଦାମୋଦର ମିଶ୍ର, କାବ୍ୟ-ପୁରାଣ-ତୀର୍ଥ ଅତିଥିମାନଙ୍କୁ ସ୍ୱାଗତ ଜଣାଇ କେତେକ ପଂକ୍ତି ପଦ୍ୟ ସଂସ୍କୃତରେ ରଚନା କରିଥିଲେ । ତାହାର ନାମ ଦେଇଥିଲେ "ସ୍ୱାଗତ ପଞ୍ଚକ" । ଗୋଟିଏ ଶ୍ଳୋକ ଏହିପରି —

ହନ୍ତ ରାଜକନକା ନତିରାଂ ନୋ,
ରାଜତେଽଦ୍ୟ ନଗରୀବ ମଘୋନଃ ।
ଉତ୍କଳାଖ୍ୟାଜନନୀବରପୁତ୍ରାଃ
ସ୍ୱାଗତଂ ମତିମତାଂ ଭବତାଂ ଯତ୍ ॥ ଇତ୍ୟାଦି ।

ଏହି ସଭାରେ କନକା ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେବ, ଶ୍ରୀ ମଧୁସୂଦନ ଦାସ ସି. ଆଇ. ଇ. ମିସ୍ ଶୈଳବାଳା ଦାସ, ବାବୁ ସୁଦାମଚରଣ ନାୟକ ପ୍ରଭୃତି ଯୋଗଦେଇ-ଥିଲେ ।

**ପ୍ରଜା ପ୍ରତିନିଧିସଭା ଗଠନ :** 'ଉତ୍କଳ ସଭା' ବହୁକାଳରୁ ଓଡ଼ିଆମାନଙ୍କର ଏକ ଶକ୍ତିଶାଳୀ ସଂସ୍ଥାରୂପେ କାର୍ଯ୍ୟ କରୁଥିଲା ଏବଂ ନିଜେ ମଧୁବାବୁ ଏହାର ପ୍ରାଣସ୍ୱରୂପ ଥିଲେ । ଦେଶର ସବୁ ବିଷୟ ଏକ ସଂସ୍ଥାଦ୍ୱାରା ଆଲୋଚିତ ହେବା ସମ୍ଭବ ନୁହେଁ ଏହା ଭାବି ମଧୁବାବୁ 'ପ୍ରଜା ପ୍ରତିନିଧି ସଭା' ଗଠନରେ ବ୍ରତୀ ହୋଇଥିଲେ । ପ୍ରଜାମାନଙ୍କର ଭୂମିରେ ସ୍ୱତ୍ୱାସ୍ୱତ୍ୱ ଦାବୀ, ଉନ୍ନତ ଉଦ୍ୟମ ପ୍ରଭୃତି ଏହାର ଲକ୍ଷ୍ୟ ଥିଲା ।

**କବିବର ରାଧାନାଥଙ୍କ ସମାଧି ପ୍ରତିଷ୍ଠାପାଇଁ ଦାନ :** କବିବର ରାଧାନାଥ ରାୟଙ୍କ ମୃତ୍ୟୁର ଦୁଇବର୍ଷ ପରେ ଶ୍ମଶାନଭୂମିରେ ଯେଉଁଠାରେ ତାଙ୍କ ଶବକୁ ଦାହ କରାଯାଇଥିଲା, ସେଠାରେ ତାଙ୍କ ପୁତ୍ର ଶଶିଭୂଷଣ ରାୟ ଗୋଟିଏ ପକ୍କା ସମାଧି ନିର୍ମାଣ କରି ତହିଁରେ ଖଣ୍ଡିଏ ସ୍ମାରକ ପ୍ରସ୍ତର ଫଳକ ରଖିବା ଯୋଜନା କରିଥିଲେ । ୧୯୧୦ ଫେବୃଆରୀ ୧୪ ତାରିଖ ସୋମବାର ଦିନ ଏ କାର୍ଯ୍ୟ ସମାହିତ ହୋଇଥିଲା । ଏକ ସଭା ସମାଧି ଉପରେ ରାୟବାହାଦୁର ମଧୁସୂଦନ ରାଓଙ୍କ ସଭାପତିତ୍ୱରେ ହୋଇଥିଲା ।

ମି. ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ବିଶ୍ୱନାଥ କର କବିବରଙ୍କ ଗୁଣ କୀର୍ତ୍ତନ କରି ବକ୍ତୃତା ଦେଇଥିଲେ ।

ଏହି ସ୍ମୃତିରକ୍ଷାର ବ୍ୟୟ ନିଜେ ଶଶିଭୂଷଣ ବହନ କରିଥିବା ବିଶ୍ୱନାଥ ବାବୁ ବ୍ୟକ୍ତ କରିଥିଲେ । ଏ ସମ୍ପର୍କରେ 'ଉତ୍କଳ ଦୀପିକା' ( ୧୯ । ୨ । ୧୯୧୦ ) ଲେଖିଥିଲେ—

"ଏଥକୁ ଆମ୍ଭେମାନେ ଶୁଣିଅଛୁ ଯେ ଜନସାଧାରଣଙ୍କ ମଧ୍ୟରୁ କେହି ଜଣେ ଏହି ସମାଧିର ବ୍ୟୟ ପ୍ରଦାନ କରିଅଛନ୍ତି । ସମ୍ଭବତଃ ବକ୍ତାଙ୍କୁ ତାହା ଜଣା ନଥିଲା, ଅଥବା ପିତୃଙ୍କ ସ୍ମୃତିରେ ଭିକ୍ଷା ନେବା ସାଧାରଣ ପ୍ରଥା ବୋଲି ସେଥିର ଉଲ୍ଲେଖ ହୋଇନାହିଁ ।

୨୬ । ୨ । ୧୯୧୦ ତାରିଖରେ 'ଉତ୍କଳ ଦୀପିକା'ରେ ପୁଣି ପ୍ରକାଶ ପାଇଲା—'ଉତ୍କଳ ଷ୍ଟାର' ଯୋଗେ ବାବୁ ଶଶିଭୂଷଣ ରାୟ ସର୍ବସାଧାରଣଙ୍କୁ ଜଣାଇ ଅଛନ୍ତି କି ତାହାଙ୍କର ପିତା ୰ରାଧାନାଥ ରାୟଙ୍କ ସ୍ମରଣାର୍ଥେ ଯେଉଁ ସମାଧି ପ୍ରତିଷ୍ଠା କରିଅଛନ୍ତି ତହିଁର ସମସ୍ତ ବ୍ୟୟ ଓଡ଼ିଶାର ଜଣେ ବଦାନ୍ୟବର ପ୍ରଦାନ କରିଅଛନ୍ତି, ଯେ କି ମୃତ ମହାତ୍ମାଙ୍କୁ ଆନ୍ତରିକ ଶ୍ରଦ୍ଧା କରନ୍ତି । ତାହାଙ୍କର ଇଚ୍ଛାମତେ ଶଶିବାବୁ ତାହାଙ୍କର ନାମ ପ୍ରକାଶ କରି ନାହାନ୍ତି । ଦାତାର ଇଚ୍ଛା ଗ୍ରହୀତାର ଅବଶ୍ୟ ପାଳନୀୟ; ମାତ୍ର, ଏପରି କାର୍ଯ୍ୟ ସ୍ଥଳେ ନାମ ପ୍ରକାଶ କରିବା ସାଧାରଣ ଶିକ୍ଷା ଓ ଉତ୍ସାହର ପ୍ରବର୍ତ୍ତକ । ଏଣୁ ଆମ୍ଭେମାନେ ଯାହା ଶୁଣିଅଛୁ ତାହା ପ୍ରକାଶ କରିବା ମନେକରୁଁ । ତାହା ଏହିକି, ଏ ନଗରର ଗୁଣିଶ୍ରେଷ୍ଠ ମାନ୍ୟବର ମଧୁସୂଦନ ଦାସ ସି. ଆଇ. ଇ. ଉକ୍ତ ସମାଧି ନିର୍ମାଣର ସମସ୍ତ ବ୍ୟୟ ଟ୩୦୦ଙ୍କା ଦେଇଅଛନ୍ତି ।"

୯ । ୪ । ୧୯୧୦ରେ ଶ୍ରୀ ଶଶିଭୂଷଣ ରାୟ 'ଉତ୍କଳ ଦୀପିକା'ରେ ଏକ ପତ୍ର ପ୍ରକାଶ କରି ଜଣାଇଛନ୍ତି—"ମୋର ପରଲୋକଗତ ପିତୃଦେବ କବିବର ରାଧାନାଥଙ୍କ ସମାଧି ପ୍ରତିଷ୍ଠା ପାଇଁ ମୁଁ ଆପଣାର କର୍ତ୍ତବ୍ୟ ସ୍ୱରୂପ ଆୟୋଜନ କରିଥିଲି । ଘଟଣାକ୍ରମେ ଉକ୍ତ ପ୍ରତିଷ୍ଠା ଉତ୍ସବର ପୂର୍ବଦିବସ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ସି. ଆଇ. ଇ. ମହୋଦୟ ସ୍ୱତଃପ୍ରବୃତ୍ତ ହୋଇ ସେହି ଏକ ଉଦ୍ଦେଶ୍ୟରେ ମୋତେ ତିନିଶତ ଟଙ୍କା ଅର୍ପଣ କଲେ । ମୋହର ଇଚ୍ଛା ଯେ ତହିଁଦ୍ୱାରା କୌଣସି ପ୍ରକାଶ୍ୟ ସ୍ଥାନରେ କବିବରଙ୍କର ଆଉ ଗୋଟିଏ ସ୍ୱତନ୍ତ୍ର ସ୍ମୃତିର ଅନୁଷ୍ଠାନ କରିବି ଏବଂ ତନ୍ନିମିତ୍ତ କିଛି ଅତିରିକ୍ତ ବ୍ୟୟ ପଡ଼ିଲେ ମଧ୍ୟ ମୁଁ ବହନ କରିବାକୁ ପ୍ରସ୍ତୁତ ଅଛି । ସାଧାରଣଙ୍କ ଗୋଚରାର୍ଥେ ଏହା ପ୍ରକାଶ କଲି । ଇତି । ୬ । ୪ । ୧୦, ବିନୟାବନତ ଶ୍ରୀ ଶଶିଭୂଷଣ ରାୟ, କାଳିଗଳି, କଟକ ।"

**ରେଭେନ୍ସା କଲେଜରେ ଇତିହାସ ଅଧ୍ୟାପକ ନିଯୁକ୍ତି ଦାବୀ :** ୧୯୧୦ ମାର୍ଚ୍ଚ ମାସ ୧୨ ତାରିଖରେ ମାନ୍ୟବର ମଧୁସୂଦନ ଦାସ ବଙ୍ଗ ବ୍ୟବସ୍ଥାପକ ସଭାରେ ବାର୍ଷିକ ବଜେଟ ଆଲୋଚନାବେଳେ କଟକର ରେଭେନ୍ସା କଲେଜରେ ଇତିହାସ ଅଧ୍ୟାପକ ନିଯୁକ୍ତ ନିମନ୍ତେ ଦାବୀ କରିଥିଲେ । ତାଙ୍କର ବକ୍ତୃତାଟି କୌତୁକପୂର୍ଣ୍ଣ

ହୋଇଥିଲା । ସେ କହିଥିଲେ, "ଏହା ପୂର୍ବରୁ ଜଣେ ଇତିହାସ ଅଧ୍ୟାପକ ନିଯୁକ୍ତି ଦାବି କରି ଅନେକ ନିବେଦନ ହୋଇଛି । ମି. ଜେମ୍‌ସ (ସ୍କୁଲ ଇନ୍‌ସପେକ୍ଟର) କଟକ ଆସିଥିବା ବେଳେ ବହୁ ବ୍ୟକ୍ତି ତାଙ୍କୁ ଏହି ପ୍ରସଙ୍ଗରେ ନିବେଦନ ଜଣାଇ ଥିଲେ । ଜେମ୍‌ସ ସାହେବ ସେତେବେଳେ କହିଥିଲେ, "ଯେ ଟ୍ରେନ୍‌ରେ ଯିବ ତାକୁ ନିଶ୍ଚୟ ଷ୍ଟେସନ ପ୍ଲାଟଫର୍ମକୁ ଗାଡ଼ି ଆସିବା ଆଗରୁ ପହଞ୍ଚିବାକୁ ହେବ ।" ତାଙ୍କର କହିବାର ଅର୍ଥ ହେଉଛି, ସରକାରଙ୍କଠାରେ ଆଗରୁ ନିବେଦନ କରିବା ଉଚିତ, କାରଣ ବଜେଟ୍ ବ୍ୟବସ୍ଥା ହୋଇସାରିଲା ପରେ ଦାବୀ ଆସିଲେ, କିଛି ଫଳ ହେବ ନାହିଁ । ମଧୁବାବୁ ଜେମ୍‌ସ ସାହେବଙ୍କ କଥା ଉଲ୍ଲେଖ କରି କୌତୁକରେ କହିଲେ, "ଏଥର ସେ ମଧୁବାବୁ ରେଳ ଆସିବାର ବହୁ ପୂର୍ବରୁ ପ୍ଲାଟଫର୍ମରେ ଉପସ୍ଥିତ ହୋଇଚନ୍ତି; କିନ୍ତୁ ଶିକ୍ଷା ବିଭାଗ ଡିରେକ୍ଟର ତାଙ୍କୁ ଜଣାଇଲେ ଯେ ବୁକିଂ (ଟିକଟ ବିକ୍ରୀ) ବନ୍ଦ କରି ଦିଆଯାଇଛି ।" କନିକାର ରାଜା ମାନ୍ୟବର ରାଜେନ୍ଦ୍ରନାରାୟଣ ଭଞ୍ଜଦେବ ଏହି ପ୍ରସ୍ତାବକୁ ସମର୍ଥନ କରିଥିଲେ । ସରକାର ମଧୁବାବୁଙ୍କ ପ୍ରସ୍ତାବକୁ ଗ୍ରହଣ କରି ରେଭେନ୍‌ସା କଲେଜରେ ଜଣେ ଇତିହାସ ଅଧ୍ୟାପକ ନିଯୁକ୍ତ କରିବା ପାଇଁ ରାଜି ହୋଇଥିଲେ ।

**ଲୋକଙ୍କୁ ମନୁଷ୍ୟ କରି ଗଢ଼ :** ରେଭେନ୍‌ସା କଲେଜର ପ୍ରିନ୍‌ସପାଲ୍ ଶ୍ରୀଯୁକ୍ତ ବିପିନବିହାରୀ ଗୁପ୍ତଙ୍କ ଫଟୋ ଉନ୍ମୋଚନ ନିମିତ୍ତ କଲେଜ ଗୃହରେ ୧୯୧୦ ଫେବୃୟାରୀ ଆରମ୍ଭରେ ଏକ ସଭା ହୋଇଥିଲା । କମିଶନର ଲେଭେଞ୍ଜ ସାହେବ ସଭାପତି ହୋଇଥିଲେ । ଏହି ସଭାରେ ମାନ୍ୟବର ମଧୁସୂଦନ ଦାସ ସି. ଆଇ. ଇ. ବିପିନ ବାବୁଙ୍କ ଗୁଣ କୀର୍ତ୍ତନ କହିବା ପରେ ଛାତ୍ରମାନଙ୍କୁ ସମ୍ବୋଧନ କରି କହିଲେ—"ଓକିଲାତି ଏବଂ ଡିପୋଟି କାର୍ଯ୍ୟକୁ ଏକା ଲକ୍ଷ୍ୟ ରଖି ପାଠାଭ୍ୟାସରେ ମନୋଯୋଗୀ ହେବା କର୍ତ୍ତବ୍ୟ ନୁହେଁ । ଓକିଲାତିରେ ପ୍ରଥମ ଶ୍ରେଣୀ ବୁଦ୍ଧିର ପ୍ରୟୋଜନ ନାହିଁ । ସେ ନିଜେ ପୂର୍ବେ ଅଧ୍ୟାପକ ଥିଲେ । ସ୍କୁଲର ଛାଡ଼ି ଆସିବା ସମୟରେ ଶତାଧିକ ଛାତ୍ର ଅକୃତ୍ରିମ ସ୍ନେହବଶତଃ ଶୋକାଭିଭୂତ ହୋଇପଡ଼ିଥିଲେ । ତାହା ଅଦ୍ୟାପି ତାଙ୍କ ମନରେ ଜାଗରୁକ ଅଛି । ଚରିତ୍ରଗଠନ ହିଁ ଯୁବକମାନଙ୍କର ପ୍ରଧାନ କର୍ତ୍ତବ୍ୟ ଏବଂ ତାହା କେବଳ ଉପଯୁକ୍ତ ଶିକ୍ଷକଙ୍କ ଯୋଗୁଁ ସମ୍ପାଦିତ ହୋଇପାରିବ । ପିତା ଜନ୍ମଦେଇ ଶରୀର ଗଢ଼ି ଦିଅନ୍ତି ସତ୍ୟ, ମାତ୍ର ଶିକ୍ଷାଦ୍ୱାରା ତାହାର ମନୁଷ୍ୟତ୍ୱ ଲାଭ ହୁଏ ଏବଂ ଏହା ଶିକ୍ଷକଙ୍କ ଯୋଗୁଁ ଘଟେ । ବିପିନବାବୁ ଚରିତ୍ରବାନ୍ ଲୋକ ଥିଲେ । ଶିକ୍ଷକଙ୍କର ଶିକ୍ଷାଗୁଣରୁ ଯେଉଁମାନେ ମନୁଷ୍ୟ ହେବେ, ସେମାନେ ତାଙ୍କୁ ସର୍ବଦା ସ୍ମରଣ ରଖିବେ । ଛାତ୍ରମାନେ ଏହା ମନେରଖି ଯେତେ ଲୋକଙ୍କୁ ମନୁଷ୍ୟ କରି ଗଢ଼ିବେ ସେମାନେ ମଧ୍ୟ ତାଙ୍କୁ ସ୍ମରଣ ରଖିବେ ।" ସ୍ମୃତି ଚିହ୍ନ ରକ୍ଷାର ପ୍ରୟୋଜନୀୟତା ସମ୍ବନ୍ଧରେ ସେ କହିଲେ, "ଏ ସ୍ମୃତି ପ୍ରକୃତ ମୂଲ୍ୟବାନ । ଚିତ୍ରପଟ ସମ୍ମୁଖରେ ଥିଲେ, ସେହି ଲୋକର କାର୍ଯ୍ୟାବଳୀ ସ୍ମୃତିପଥରେ ଆବିର୍ଭୂତ ହୁଏ ଏବଂ ନାନା ହିତକର କାର୍ଯ୍ୟରେ ପଥପ୍ରଦର୍ଶକ ହୁଏ ।" ଚିତ୍ରପଟଟିରେ ବକ୍ଷ ପର୍ଯ୍ୟନ୍ତ ଶରୀରର ଚିତ୍ର ଥିଲା । ଏହାକୁ ଲକ୍ଷ୍ୟକରି ମଧୁବାବୁ ଏହାର ତାତ୍ପର୍ଯ୍ୟ ବୁଝାଇଲେ; 'ଏ ଚିତ୍ରପଟଟି ପୂର୍ଣ୍ଣାବୟବର ଚିତ୍ର ନୁହେଁ, କେବଳ ବକ୍ଷ ପର୍ଯ୍ୟନ୍ତ ଚିତ୍ରିତ ହୋଇଛି । ଏହାର

ଅର୍ଥ, ନିମ୍ନାଙ୍ଗ ବା ଦୋଷାବଳୀ ପ୍ରଦର୍ଶିତ ନ ହୋଇ ହୃଦୟ ଓ ମନର ପ୍ରକୃତ ସ୍ମୃତି ଜାଗରୂକ କରାଇବା ପାଇଁ ବକ୍ଷ ଓ ମୁଖର କେବଳ ପ୍ରତିକୃତି ଅଙ୍କିତ ହୋଇଛି । ତେଣୁ ତାହା ସାର୍ଥକ ।''

**ସମ୍ରାଟଙ୍କ ମୃତ୍ୟୁରେ ଶୋକସଭା** : ସମ୍ରାଟ ସପ୍ତମ ଏଡ଼ୱାର୍ଡଙ୍କ ବିୟୋଗରେ ୧୯୧୦, ମଇ ୧୧ ତାରିଖ ଦିନ କଟକର ଟାଉନ ଲାଇବ୍ରେରି ହଲରେ ମଧୁବାବୁଙ୍କ ସଭାପତିତ୍ୱରେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା ।

**ଉତ୍କଳସଭା ସଭାପତିତ୍ୱରୁ ଇସ୍ତଫା** : ଖ୍ରୀ: ୧୯୧୦ରେ 'ଡୋମିସାଇଲ୍ଡ଼' (**domiciled**)ର ସଂଜ୍ଞା ନିରୂପଣରେ ମତଭେଦ ଦେଖାଦେଇଥିଲା । ଯେଉଁମାନେ ଓଡ଼ିଶାରେ ପୁରୁଷାନୁକ୍ରମେ ରହିଛନ୍ତି, ଏଭଳି ଅଣ-ଓଡ଼ିଆଙ୍କୁ ବାଦ୍‌ଦେବାର ସମ୍ଭାବନା ଥିବାରୁ ସ୍ଥାୟୀ ବସବାସ କରୁଥିବା ଅଣ-ଓଡ଼ିଆଙ୍କୁ ମଧ୍ୟ ଓଡ଼ିଆଙ୍କ ପରି ସୁବିଧା ଦିଆଯିବା ଉଚିତ ବୋଲି ବ୍ୟବସ୍ଥା ହୋଇଥିଲା । ଅଣ-ଓଡ଼ିଆ ସ୍ଥାୟୀ ବାସିନ୍ଦାମାନେ ମଧ୍ୟ ଓଡ଼ିଆ ଭିତରେ ଗଣ୍ୟ ହେବାପାଇଁ ମଧୁବାବୁ ଚାହୁଁଥିଲେ । ଅଣଓଡ଼ିଆମାନେ ଉତ୍କଳ ସଭାର ସଭ୍ୟ ହୋଇପାରିବେ ନାହିଁ, ଏହିପରି ନିୟମ ହେବା ପ୍ରସ୍ତାବ ହୋଇଥିଲା; କିନ୍ତୁ ମଧୁବାବୁ ଏହି ଧାରାକୁ କୋହଳ କରିବା ସପକ୍ଷରେ ଥିଲେ ।

ଓଡ଼ିଶା ଆସୋସିଏସନ୍ ବା ଉତ୍କଳ-ସଭାର ଫେବୃଆରି ମାସ ୧୮ ତାରିଖ ଅଧିବେଶନରେ 'ଅନ୍ୟତ୍ର ଘର ନଥିବ ଏବଂ ଯାହାଙ୍କର ସ୍ୱାର୍ଥ ଓଡ଼ିଆଙ୍କ ସଙ୍ଗେ ସମାନ ଥିବ କେବଳ ସେହିମାନେ ଏଣିକି ଉତ୍କଳ-ସଭାର ସଭ୍ୟ ହୋଇପାରିବେ' ଏହି ମର୍ମରେ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ତାହା ବିଚାର କରିବା ନିମନ୍ତେ ଛଅ ଜଣ ସଭ୍ୟଙ୍କ ପ୍ରାର୍ଥନାମତେ ଜୁନ୍ ୩ ତାରିଖ ସନ୍ଧ୍ୟାରେ ଏକ ଅଧିବେଶନ ହୋଇଥିଲା । ସଭାରେ ଉତ୍କଳ ସଭାର ସ୍ଥାୟୀ ସଭାପତି ମଧୁସୂଦନ ଦାସ ସଭାପତି ହୋଇଥିଲେ । ଏହି ସଭାରେ କେତେ ଜଣ ବଙ୍ଗାଳୀ ଓ ଓଡ଼ିଆଙ୍କ ମଧ୍ୟରେ ଖୁବ୍ ଯୁକ୍ତିତର୍କ ହୋଇଥିଲା, ଆକ୍ଷେପୋକ୍ତି ମଧ୍ୟ ହୋଇଥିଲା । କେହି କେହି ଯୁକ୍ତିକଲେ ଯେ, "ଓଡ଼ିଆ ଭାଷା ପ୍ରଚଳନ ସମୟରେ ଯେଉଁ ଓଡ଼ିଆ-ବଙ୍ଗାଳୀ କନ୍ଦଳ ଜାତ ହୋଇଥିଲା, ତାହା ବହୁକାଳରୁ ନିର୍ବାପିତ ହୋଇଅଛି । ଉତ୍କଳର ଉନ୍ନତି ନିମିତ୍ତ ୧୮୮୨ ମସିହା ଅଗଷ୍ଟ ମାସ ୩ ତାରିଖରେ 'ଉତ୍କଳ ସଭା' ସଂସ୍ଥାପନ ସକାଶେ ଯେଉଁ ବିଜ୍ଞାପନ ଦିଆଯାଇଥିଲା, ତହିଁରେ ରାୟ ହରବଲ୍ଲଭ ବସୁ ବାହାଦୁର, ଭିଙ୍ଗାରପୁର ଜମିଦାର ଚୌଧୁରୀ କାଶୀନାଥ ଦାଶ, ମାନ୍ୟବର ବାବୁ ମଧୁସୂଦନ ଦାସ ସି. ଆଇ. ଇ., ବାବୁ ବିହାରୀଲାଲ ପଣ୍ଡିତ, ଚୌଧୁରୀ ରାଧାମାଧବ ସାନ୍ତରା, ମହାପାତ୍ର ଓ ଚୌଧୁରୀ ଶ୍ୟାମସୁନ୍ଦର ରାୟଗୁରୁ ସ୍ୱାକ୍ଷର କରିଥିଲେ । ସଭାର ଅଧିବେଶନରେ ହାଜି ଅବ୍‌ଦୁଲ ରହମାନ ମୁସା, ବାବୁ ଜଗମୋହନ ରାୟ, ବାବୁ ପ୍ରାଣକୃଷ୍ଣ ରାୟ, ବାବୁ ରାମଦାସ ଚକ୍ରବର୍ତ୍ତୀ, ବାବୁ ବିପିନବିହାରୀ ମିତ୍ର, ବାବୁ ବଳଦେବ ପ୍ରସାଦ ଭଗତ, ବାବୁ ହରେକୃଷ୍ଣ

ଦାସ, ବାବୁ ମଧୁସୂଦନ ରାଓ, ବାବୁ ବଳରାମ ଦାସ, ବାବୁ ନନ୍ଦକିଶୋର ଦାସ, ବାବୁ ବହାରୀଲାଲ ପଣ୍ଡିତ, ଡୋମପଡ଼ାର ରାଜା ପ୍ରଭୃତ ଶହଶତ ଉତ୍କଳବାସୀ ସମବେତ ହୋଇ ଏକ ମେଳରେ ସଭା ସ୍ଥାପନ କଲେ । ଓଡ଼ିଆ ଓ ବଙ୍ଗାଳୀମାନେ ମିଳିମିଶି ଯାଇଥିବାର ଏହାଠାରୁ ଆଉ ଅଧିକ କି ପରିଚୟ ମିଳିବ ? ଉଦାରଚେତା ପ୍ରଧାନ ଓଡ଼ିଆ ରାଇ ରାୟ ନନ୍ଦକିଶୋର ଦାସ ବାହାଦୂର ଏପରି ମିଳନର ଏକାନ୍ତ ପକ୍ଷପାତୀ ଥିଲେ ଏବଂ ତହିଁ ସକାଶେ ପ୍ରାଣପଣେ ଯତ୍ନ କରିଥିଲେ । ସେହି ଯତ୍ନର ଫଳରେ ଉତ୍କଳ-ସଭାରେ ଓଡ଼ିଆ ଓ ବଙ୍ଗାଳୀ ମିଳିମିଶି ୨୮ ବର୍ଷ କାଳ କାର୍ଯ୍ୟ କଲେ । ଗଭର୍ଣ୍ଣମେଣ୍ଟରୁ ଓଡ଼ିଆଙ୍କ ସକାଶେ କେତେକ ବୃତ୍ତି ଖଞ୍ଜାଯିବାରୁ ପୁଣି କନ୍ଦଳ ଜାତ ହୋଇଅଛି ମାତ୍ର ।”

ବନ୍ଧୁ ବର୍ଷର ପରେ ଏହି ମର୍ମରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । “କାର୍ଯ୍ୟକାରୀ କମିଟି ନିର୍ଦ୍ଧାରିତ କରିଥିବା ଓ ଏହି ସଭା ମଞ୍ଜୁର କରିଥିବା ପ୍ରସ୍ତାବ ଏହିପରି—ଓଡ଼ିଶାର ଯେ କୌଣସି ଅଧିବାସୀ ବା ଓଡ଼ିଶାରେ ଯେ କୌଣସି ସମ୍ପତ୍ତିର ଅଧିକାରୀ, ଓଡ଼ିଶାରେ ଯେ କୌଣସି ବ୍ୟବସାୟ କରୁଥିବା ଲୋକ ଏହି ଉତ୍କଳ ସଭାର ସଭ୍ୟ ହୋଇପାରିବେ ।”

ପ୍ରସ୍ତାବଟି ଗୃହୀତ ହୋଇଯିବା ପରେ ବାବୁ ଗୋକୁଳାନନ୍ଦ ଚୌଧୁରୀ, ବାବୁ କଲ୍ପତରୁ ଦାସ ଓ ବାବୁ ଧର୍ମାନନ୍ଦ ପଟ୍ଟନାୟକ ଉତ୍କଳ ସଭାରୁ ଇସ୍ତଫା ଦେବେ ବୋଲି କହି ସଭାଗୃହ ତ୍ୟାଗକଲେ, ଆଉ କେତେକ ସଭ୍ୟ ମଧ୍ୟ ଚାଲିଗଲେ ।

ମଧୁବାବୁ ସଭାରେ କହିଥିଲେ ଯେ—ସେ ସଭାପତି ପଦରୁ କୌଣସିମତେ ଆଉ ଇସ୍ତଫା ଫେରାଇବେ ନାହିଁ । ସଭା ତାଙ୍କର ମନୋଭାବ ବୁଝିପାରି ଅତି ଦୁଃଖରେ ଇସ୍ତଫା ଗ୍ରହଣ କରିଥିଲେ । “ମଧୁବାବୁ ଉତ୍କଳର ଯୋଗ୍ୟ ଲୋକଙ୍କ ଭିତରେ ଅଗ୍ରଗଣ୍ୟ ବୋଲି ଉତ୍କଳ ସଭା ତାହାଙ୍କୁ ଆଦ୍ୟରୁ ସଭାପତି କରିଥିଲେ ଏବଂ ଏତେ ଦୀର୍ଘକାଳ ସେ ଅତ୍ୟନ୍ତ ଉଦାରତା ଓ ବିଚକ୍ଷଣତା ସହିତ କାର୍ଯ୍ୟକରି ସଭାର ଟେକ ବଢ଼ାଇଥିଲେ । ଏପରି ବ୍ୟକ୍ତିଙ୍କର ନେତୃତ୍ୱ ହରାଇବା କାହାରି ଇଚ୍ଛା ନୁହେଁ ।” ଏପରି ହାର୍ଦ୍ଦିକ ମତ ସଭାରେ ପ୍ରକାଶ ପାଇଥିଲା ।

ବାର୍ଦ୍ଧକ୍ୟ ଓ ତାହାର ଆନୁଷଙ୍ଗିକ ଦୁର୍ବଳତାଯୋଗୁଁ ମଧୁବାବୁ ସଭାପତି ପଦ ତ୍ୟାଗ କରିଥିବା ଇସ୍ତଫାପତ୍ରରେ ଲେଖିଥିଲେ । ସେତେବେଳକୁ ମଧୁବାବୁଙ୍କ ବୟସ ୭୨ । ସଭାରେ ସଭ୍ୟମାନେ ମଧୁବାବୁଙ୍କ ବାର୍ଦ୍ଧକ୍ୟ କାରଣକୁ ଗ୍ରହଣ କରି ନଥିଲେ । ଓଡ଼ିଆ-ଅଣଓଡ଼ିଆ ଗଣ୍ଡଗୋଳ ତାଙ୍କର ଇସ୍ତଫାର ଏକମାତ୍ର କାରଣ ଥିବା ମଧୁବାବୁ ସ୍ପଷ୍ଟରେ ବ୍ୟକ୍ତ କରି ନଥିଲେ ମଧ୍ୟ, ଏ ସମ୍ବନ୍ଧରେ ତାଙ୍କ ମନରେ ଯେ ଗଭୀର ଦୁଃଖ ଜାତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ; ମାତ୍ର ସେ ଉତ୍କଳ-ସଭାର ସଭ୍ୟପଦରୁ ଇସ୍ତଫା ଦେଇ ନଥିଲେ ।

ଏହାର କେତେ ଦିନ ପରେ ୧୭।୭।୧୯୧୦ ତାରିଖର 'ଉତ୍କଳ ଦୀପିକା'ରେ ମଧୁବାବୁ ଇଂରାଜୀରେ ଏକ ପତ୍ର ଲେଖି ପଦତ୍ୟାଗର ପ୍ରକୃତ କାରଣର ସୂଚନା ଦେଇଥିଲେ । ତାତ୍ତ୍ୱିକ ବ୍ୟାଖ୍ୟା ଓ ଜୀବନ-ଦର୍ଶନରେ ତାଙ୍କର ଉଦାର ମନୋଭାବ ଏଥିରେ ସ୍ପଷ୍ଟଭାବରେ ପ୍ରକାଶ ପାଇଛି । 'ଦୀପିକା' ଚିଠିର ସାରମର୍ମ ଏପରି ପ୍ରକାଶ କରିଛନ୍ତି—"ସେ ଓକିଲାତି ଓ ବ୍ୟବସ୍ଥାପକ ସଭାକାର୍ଯ୍ୟ ବର୍ତ୍ତମାନ ବୟସରେ ମଧ୍ୟ ଚଳାଇ ପାରୁଥିବାରୁ ବୃଦ୍ଧ ବୟସ ଓ ମନ୍ଦ ସ୍ୱାସ୍ଥ୍ୟ ଯୋଗୁଁ ସେ ସଭାପତିପଦରୁ ଇସ୍ତଫା ଦେଲେବୋଲି ଯାହା କହୁଛନ୍ତି, ତାହାକୁ ଉତ୍କଳ ସଭାର ସଭ୍ୟମାନେ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । କିନ୍ତୁ ସେମାନେ ଭୁଲିଯାଉଛନ୍ତି ଯେ, ଯେଉଁ ଅଧିବେଶନରେ କେତେକ ସଭ୍ୟଙ୍କର ଇସ୍ତଫାପତ୍ର ପ୍ରସଙ୍ଗ ହେଉଥିଲା, ସେହି ସଭାରେ ବ୍ୟକ୍ତିମାନେ ତାଙ୍କୁ ଅଯୋଗ୍ୟ ବୋଲି ପ୍ରକାଶ କରିଥିବା ସେ ଭାବୁଛନ୍ତି । ଏପରି ଭାବିବାର କାରଣ ହେଉଛି, ସେହି ସଭାରେ ସେ ସଭାପତିରୂପେ ଶୃଙ୍ଖଳା ରକ୍ଷାକରି କାର୍ଯ୍ୟ ଚଳାଇବାକୁ ସମର୍ଥ ହୋଇପାରି ନାହାନ୍ତି । ନିୟମ ଓ ଶୃଙ୍ଖଳା ରକ୍ଷା ନିମନ୍ତେ ଶିଷ୍ଟ ଅନୁରୋଧ ଉପରେ ଆଉ କିଛି ଆବଶ୍ୟକ । ବୃଦ୍ଧ ଓ ଦୁର୍ବଳ ଅବସ୍ଥାବଶତଃ ତାଙ୍କର ତାହା ନାହିଁ । ପୁଣି ସେହି ସଭାରେ ଯେଉଁ ଅସାଧାରଣ ଭାଷା ଓ ଭଙ୍ଗୀ ପ୍ରକାଶ ପାଇଲା, ସେଥିପାଇଁ କେହି ଦୁଃଖ ପ୍ରକାଶ କରିଥିବା ମଧ୍ୟ ଦେଖାଗଲା ନାହିଁ । ପରିଶେଷରେ ସେ କହିଥିଲେ ଯେ, ଉତ୍କଳ-ସଭା ଏ ପର୍ଯ୍ୟନ୍ତ ଯେପରି ମିଳିମିଶି କାର୍ଯ୍ୟ କରିଆସୁଥିଲା ସେପରି ଥିଲେ, ସେ ପଦତ୍ୟାଗ କରିନଥାନ୍ତେ ।"

କିନ୍ତୁ କେତେଜଣ ସଭ୍ୟଙ୍କ ଅଶିଷ୍ଟ ଭାଷା ଓ ଭଙ୍ଗୀରେ ଅନେକ ଦୁଃଖିତ ହୋଇଥିଲେ । 'ଦୋଷୀ' ସଭ୍ୟଙ୍କ ଭିତରୁ କେହି କେହି ମଧୁବାବୁଙ୍କଠାକୁ ଯାଇ କ୍ଷମା ମାଗିଥିବା ଶୁଣାଯାଇଥିଲା । 'ଉତ୍କଳ ଦୀପିକା' ଏହି ସମ୍ପର୍କରେ କେତେକ ଶାନ୍ତିବାଣୀ ଶୁଣାଇବା ପରେ ମଧୁବାବୁଙ୍କୁ ଅନୁରୋଧ କରି ଲେଖିଥିଲେ, "ସଭାର ସଭ୍ୟମାନେ ସଭାପତିଙ୍କୁ ମାନି ନାହାନ୍ତି ବୋଲିଯାଇ ନପାରେ । 'ଦୀପିକା' ଲେଖିଛନ୍ତି, "ସଭାର ଉଦ୍ଦେଶ୍ୟ ଓ ଆଶା ପୂର୍ବପ୍ରାୟ ରହିଅଛି । ଯଦ୍ୟପି କି କେତେଜଣ ସଭାକୁ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ଭାବରେ ଗଢ଼ିବାର ଚେଷ୍ଟା କରିଥିଲେ ଏବଂ ସେ ଚେଷ୍ଟା ସଫଳ ନହେବାରେ ସେମାନେ ରୁଷ୍ଟ ହୋଇଗଲେ, ତହିଁପାଇଁ ସଭା ବିଗିଡ଼ି ଯିବାର ବୋଲିଯିବ କି ? ସବୁ ସଭାରେ ବେଳେ ବେଳେ ମତାନ୍ତର ଘଟେ ଓ ସମୟ ସମୟରେ ଭାଙ୍ଗିଯାଏ । ଯେ ଗଣ୍ଡି କରି ବସେ ତାହାର ଭ୍ରମ । ଆଜିକାଲି ଲୋକଙ୍କର ବିଚାର ବ୍ୟବହାର ଯେମନ୍ତ ହୋଇଅଛି, ପୂର୍ବେ ତେମନ୍ତ ନଥିଲା ଓ ଏମାନଙ୍କୁ ସମ୍ଭାଳିବା କଷ୍ଟକର ବୋଲି ଦାସ ମହାଶୟ ଯାହା କହିଅଛନ୍ତି, ତାହା ଯଥାର୍ଥ ଅଟେ । କିନ୍ତୁ ସେମାନେ ଆପଣାର ଲୋକ ହୋଇଥିବାରୁ ସେମାନେ ଅବାଟରେ ଚାଲିବାର ଦେଖି ସେମାନଙ୍କ ମଙ୍ଗଳ ସକାଶେ ବରଂ ଅପମାନ ସହି ସେମାନଙ୍କ ସଙ୍ଗେ ଥାଇ ସଦୁପଦେଶ ଦେବା ଶ୍ରେୟସ୍କର, ଅଲଗା ହେବା ଅପ୍ରଶସ୍ତ । ପରନ୍ତୁ ପାର୍ଥକ୍ୟଭାବ ପୋଷଣ ନକରିବା ଓ ବନ୍ଧୁଭାବରେ ଆପଣାମଧ୍ୟରେ ମିଶି ରହିବା ବିଷୟରେ ଦାସ ମହାଶୟ ଯେଉଁ ଅମୂଲ୍ୟ

ଉପଦେଶ ଦେଇଅଛନ୍ତି, ତାହା ସମସ୍ତଙ୍କୁ ସ୍ମରଣ ରଖିବା କାରଣ ଆମ୍ଭେମାନେ ଏକାନ୍ତ ଅନୁରୋଧ କରୁଁ । ପରିଣାମରେ ଧର୍ମର ଜୟ ଅବଶ୍ୟ ହେବ ।''

ପୂର୍ବର ନିୟମ ଥିଲି ଯେ, 'ଯେଉଁ ଲୋକର ଅନ୍ୟତ୍ର ଘର ନଥିବ ଏବଂ ଯାହାଙ୍କ ସ୍ୱାର୍ଥ ଓଡ଼ିଆଙ୍କ ସଙ୍ଗେ ସମାନ ଥିବ' କେବଳ ସେହିମାନେ ସଭାର ସଭ୍ୟ ହୋଇପାରିବେ । ନିୟମାବଳୀ ସଂଶୋଧନ ସଭାରେ ୧୮।୨।୧୯୧୦ ତାରିଖରେ ଉତ୍କଳ-ସଭା ବା ଓଡ଼ିଶା ଆସୋସିଏସନ୍‌ର ସଭାପତି ମଧୁବାବୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିବା ଅଧିବେଶନରେ ଏହା ସଂଶୋଧିତ ହୋଇଥିଲି ।

**ପ୍ରଜା ପ୍ରତିନିଧି ସଭାର ଶାଖା ସ୍ଥାପନ :** ଉତ୍କଳ ସଭାର ସଭାପତି ପଦରୁ ଇସ୍ତଫା ଦବା ପରେ ମଧୁବାବୁ ସେହି ବର୍ଷ ( ୧୯୧୦ ) ଓଡ଼ିଶା ଡିଭିଜନର ବିଭିନ୍ନ ସ୍ଥାନରେ ଗସ୍ତକରି ଓଡ଼ିଶା ପ୍ରଜା ପ୍ରତିନିଧି ସଭା (୧୯୦୯ରେ ସ୍ଥାପିତ)ର ଶାଖା ସ୍ଥାପନରେ ସାହାଯ୍ୟ କରିଥିଲେ । ସେ ଏହି କାରଣରୁ ଏହି ସମୟରେ ଓକିଲତି କାମରେ ମଧ ବିଶେଷ ଧ୍ୟାନ ଦେଇପାରି ନଥିଲେ ।

ଓଡ଼ିଶା ପ୍ରଜା-ପ୍ରତିନିଧି ସଭା ପକ୍ଷରୁ ପ୍ରଜାସ୍ୱତ୍ୱ ସମ୍ପର୍କରେ ଏକ ସ୍ମାରକପତ୍ର ପ୍ରସ୍ତୁତ କରି ବଙ୍ଗ ସରକାରଙ୍କୁ ଦେଇଥିଲେ । ଉତ୍କଳ-ସଭାର ଉଦ୍ଦେଶ୍ୟ ଓ କର୍ମପନ୍ଥା ସହିତ ଏହି ନୂତନ ସଂସ୍ଥାର ବହୁ ସାମ୍ୟ ଥିଲି । ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ପ୍ରଭୃତି କେତେକ ନେତା ଉତ୍କଳ ସଭାରୁ ଅଲଗା ହୋଇଯିବାରୁ ମଧୁବାବୁ ଟିକିଏ ବିଚଳିତ ହୋଇ ପଡ଼ିଥିଲେ । କଟକରେ ତାଙ୍କ ନେତୃତ୍ୱ କେତେକାଂଶରେ ହ୍ରାସ ପାଇଥିଲି । ଏହି ବିବାଦ ମନୋମାଳିନ୍ୟରେ ମଧ ପରିଣତ ହୋଇଥିବାର ଅନୁମାନ କରାଯାଉଥିଲି । ଉତ୍କଳ ସମ୍ମିଳନୀ ଏହି ପ୍ରଭାବରୁ ମୁକ୍ତ ଥିଲି ବୋଲି ମନେହୁଏ ନାହିଁ । ୧୯୦୯ର ବାର୍ଷିକ ଅଧିବେଶନ ବହୁ ବିଳମ୍ବରେ ଅନୁଷ୍ଠିତ ହୋଇଥିଲି । ପରବର୍ତ୍ତୀ କାଳରେ ସମ୍ମିଳନୀ କାର୍ଯ୍ୟର ମନ୍ଥର ଗତି ଏହାର ଏକ ପ୍ରମାଣ ।

**ଓଡ଼ିଶା ଦେଶମିଶ୍ରଣପାଇଁ ତ୍ୟାଗର ଆହ୍ୱାନ—**ଖ୍ରୀ: ୧୯୧୦ରେ କଟକ ସେକେଣ୍ଡାରି ଟ୍ରେନିଂ ସ୍କୁଲ ପୁରସ୍କାର ବିତରଣୀ ସଭାରେ ମଧୁବାବୁ ସଭାପତିତ୍ୱ କରିଥିଲେ । ବିଖ୍ୟାତ କବି ରାୟବାହାଦୁର ମଧୁସୂଦନ ରାଓ ମଧ ଉପସ୍ଥିତ ଥିଲେ । ମଧୁ ରାଓ ଏହି ସ୍କୁଲରେ ପୂର୍ବେ ହେଡ଼ମାଷ୍ଟର ଥିଲେ । ସଭା ସମୟରେ ସେ ଓଡ଼ିଶା ଡିଭିଜନ୍‌ର ସ୍କୁଲବିଭାଗୀୟ ସର୍କଲ ଇନ୍‌ସପେକ୍ଟର ଥିଲେ । ଏହି ସଭାରେ ମଧୁସୂଦନ ଦାସ ପ୍ରସଙ୍ଗକ୍ରମେ ବ୍ୟକ୍ତ କରିଥିଲେ ଯେ, ସେ କଲିକତାରେ ପଢ଼ୁଥିଲି ସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରିକରଣକୁ ଜୀବନର ଲକ୍ଷ୍ୟ ରଖିଥିଲେ । ସେ କଲିକତାରେ ଶୁଣି ଥିଲେ ଯେ, ଖଣ୍ଡବିଖଣ୍ଡିତ ଜର୍ମାନଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ଏକ ଶାସନାଧୀନକୁ ଆଣିବା ନିମନ୍ତେ ବିସମାର୍କ ଯେଉଁ ଅଦମ୍ୟ ଚେଷ୍ଟା କରିଥିଲେ, ସେ ସମ୍ବନ୍ଧରେ ସେ

ଇତିହାସ ବିଦ୍ୟମାନଙ୍କରୁ କାହାଣୀ ପାଠ କରିଥିଲେ । ମାଜିନି ( Mazzini ) ଓ ଗାରିବାଲଡ଼ି ( Garibaldi ) ଇଟାଲୀକୁ ମଧ୍ୟ ଏକ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ କରିବା କାହାଣୀ ପାଠକରିଥିଲେ । ଓଡ଼ିଶାର ପୂର୍ବଗୌରବ ଓ ବର୍ତ୍ତମାନର ହୀନ ଅବସ୍ଥା ସହିତ ପୂର୍ବ କାଳର ଜର୍ମାନୀ ଓ ଇଟାଲୀର ଅବସ୍ଥା ତୁଳନୀୟ ବୋଲି ସେ କହିଥିଲେ । ବିସ୍‌ମାର୍କ, ମାଜିନି, ଗାରିବାଲଡ଼ି ପ୍ରଭୃତି ନେତାମାନେ ଯେଉଁ ଅପ୍ରାଣ ଚେଷ୍ଟା କରିଛନ୍ତି, ତାହା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଛି । ଖଣ୍ଡବିଖଣ୍ଡିତ ବିକଳାଙ୍ଗ ଦେଶମାତୃକାର କରୁଣ କ୍ରନ୍ଦନ ସେମାନଙ୍କୁ ବ୍ୟଥିତ କରୁଥିଲା । ପ୍ରତ୍ୟେକ ଓଡ଼ିଆ ଏଥିରୁ ଶିକ୍ଷା ପାଇବା ଆବଶ୍ୟକ । ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ସର୍ବପ୍ରକାର ତ୍ୟାଗପାଇଁ ଯୁବକମାନେ ପ୍ରସ୍ତୁତ ହୁଅନ୍ତୁ ବୋଲି ସେ ଅନୁରୋଧ କରିଥିଲେ ।

**ବନ୍ୟା ସାହାଯ୍ୟ କାର୍ଯ୍ୟ :** ଖ୍ରୀ: ୧୯୧୧ ଅଗଷ୍ଟରେ କଟକ ଜିଲ୍ଲାର ଦକ୍ଷିଣ ଓ ପୂର୍ବ ଅଞ୍ଚଳରେ ପ୍ରବଳ ବନ୍ୟା ହୋଇଥିଲା । କାଠଯୋଡ଼ି ବନ୍ଧ କେତେକ ସ୍ଥାନରେ ବନ୍ୟାରେ ଭାଙ୍ଗିଯିବାରୁ ଜିଲ୍ଲାର ତ୍ରିକୋଣଭୂମି ଅଞ୍ଚଳରେ ଶସ୍ୟର ବହୁତ କ୍ଷତି ହୋଇଥିଲା । ହଜାର ହଜାର ଏକର ଜମିର ଫସଲ ନଷ୍ଟ ହେବା ସଙ୍ଗେ ସଙ୍ଗେ ବାଲି ମାଡ଼ିଯାଇ ବହୁତ ଜମି ନଷ୍ଟ ହୋଇଗଲା । ସହସ୍ର ସହସ୍ର ସଂଖ୍ୟାରେ ଗଛ ଉପୁଡ଼ି ପଡ଼ିଥିଲା । ଶହ ଶହ ଗୋରୁଗାଈ ବଢ଼ିପାଣିରେ ଭାସିଯାଇଥିଲେ । ବିପନ୍ନ ଅଞ୍ଚଳରେ ସାହାଯ୍ୟ ଦେବାପାଇଁ ମଧୁବାବୁ କଟକରେ ଏକ ସାଧାରଣ ସଭା ଆହ୍ୱାନ କରିଥିଲେ । ଏଠାରେ ଏକ ରିଲିଫ୍ କମିଟି ବା ବନ୍ୟା ସାହାଯ୍ୟ କମିଟି ଗଠିତ ହୋଇଥିଲା ।

ମଧୁବାବୁ ଦେଶରେ ଘଟିଥିବା ଅକଥନୀୟ କ୍ଷତି, ଦୁଃଖ ଦୁର୍ଦ୍ଦଶା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ବଙ୍ଗର ଗ୍ଭେଟଲାଟ ଯଥୋଚିତ ସାହାଯ୍ୟ ଦାନର ବ୍ୟବସ୍ଥା କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ଜିଲ୍ଲାର ବିଭିନ୍ନ ସ୍ଥାନରେ କେନ୍ଦ୍ରମାନ ଖୋଲିଯାଇ ସାହାଯ୍ୟ ବଣ୍ଟନର ବ୍ୟବସ୍ଥା ହୋଇଥିଲା । ମଧୁବାବୁ ବୃଦ୍ଧ ବୟସରେ ମଧ୍ୟ ବିଭିନ୍ନ ସ୍ଥାନକୁ ଯାଇ ସାହାଯ୍ୟର ବ୍ୟବସ୍ଥା କରି ଆସୁଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ ମଧୁବାବୁଙ୍କ ସହ ଏ କାର୍ଯ୍ୟରେ ସହଯୋଗ କରୁଥିଲେ । ସେ ବନ୍ୟା ଅଞ୍ଚଳକୁ ଡଙ୍ଗାରେ ଯାଇ ସାହାଯ୍ୟ ବଣ୍ଟନ କରୁଥିଲେ ।

**ସମ୍ରାଟଙ୍କ ଘୋଷଣାରେ ଓଡ଼ିଶାବାସୀ ନିରାଶ :** ଦିଲ୍ଲୀ ଦରବାରରେ ସମ୍ରାଟଙ୍କ ଘୋଷଣାରେ ଓଡ଼ିଆମାନଙ୍କ ପ୍ରଧାନ ଦାବୀ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସମ୍ବନ୍ଧରେ ଉଲ୍ଲେଖ ସୁଦ୍ଧା ନଥିବାରୁ ଓଡ଼ିଶାବାସୀଙ୍କ ତରଫରୁ ଗଭୀର ନିରାଶା ପ୍ରକାଶ ପାଇଥିଲା । ବିଲାତର ମୁଖ୍ୟ ପାର୍ଲିଆମେଣ୍ଟ ମେମ୍ବର ଓ ଅନ୍ୟାନ୍ୟ ବିଶିଷ୍ଟ ରାଜନୀତିଜ୍ଞଙ୍କୁ ମଧୁବାବୁ ଓଡ଼ିଶାର ମନୋଭାବ ଜଣାଇଥିଲେ । ଲର୍ଡ଼ କର୍ଜନ ଓ ମାଲକମ୍ ସ୍କଟ ଓଡ଼ିଶାର ଦାବୀ ଗୃହୀତ ହୋଇ ନଥିବାରୁ ବ୍ରିଟିଶ ସରକାରଙ୍କୁ ତୀବ୍ର ସମାଲୋଚନା କରିଥିଲେ ।

## ୨୨ । ବିଧାନସଭା ଓ ଅନ୍ୟାନ୍ୟ କାର୍ଯ୍ୟାବଳୀ (ଖ୍ରୀ:୧୯୧୨-୧୪)

କେନ୍ଦ୍ର ସରକାର ଖ୍ରୀ: ୧୯୧୨ରେ ବିହାର ଓ ଓଡ଼ିଶାକୁ ବଙ୍ଗ ପ୍ରଦେଶରୁ ବିଚ୍ଛିନ୍ନ କରିଦେଇ ବିହାର-ଓଡ଼ିଶା ପ୍ରଦେଶ ଗଠନ କଲେ । ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାକୁ ତିନିଜଣ ସଭ୍ୟ ନିର୍ବାଚିତ ହେବା ସ୍ଥିର ହୋଇଥିଲା । ଜମିଦାର ନିର୍ବାଚନମଣ୍ଡଳୀ, ଜିଲ୍ଲା-ବୋର୍ଡ଼ ନିର୍ବାଚନମଣ୍ଡଳୀ ଓ ମ୍ୟୁନିସିପାଲିଟି ନିର୍ବାଚନମଣ୍ଡଳୀ ପ୍ରତ୍ୟେକେ ଏକ ଏକ ପ୍ରତିନିଧି ନିର୍ବାଚନ କରିବା ବ୍ୟବସ୍ଥା ହୋଇଥିଲା । ପ୍ରାଦେଶିକ ସରକାର ମଧୁବାବୁଙ୍କୁ ସ୍ୱତନ୍ତ୍ରଭାବରେ ବ୍ୟବସ୍ଥାପକ ସଭାର ସଭ୍ୟ ମନୋନୀତ କରିଥିଲେ ।

**ଯୁବ ଉତ୍କଳ ସଂଘ**—୧୯୧୨ରେ କଟକ ରେଭେନ୍‌ସା କଲେଜରେ ମାଟ୍ରିକ୍ୟୁଲେଶନ୍ ପରୀକ୍ଷାର୍ଥିମାନଙ୍କ ସମ୍ବର୍ଦ୍ଧନା କରିବା ଉଦ୍ଦେଶ୍ୟରେ କେନ୍ଦ୍ର ଯୁବ ଉତ୍କଳ ସଂଘ (Central Young Utkal Association) ପକ୍ଷରୁ ଏକ ସଭା ଆହୂତ ହୋଇଥିଲା । ସେତେବେଳେ ରେଭେନ୍‌ସା କଲେଜ ବର୍ତ୍ତମାନର ରେଭେନ୍‌ସା କଲେଜିଏଟ୍ ସ୍କୁଲ କୋଠାରେ ହେଉଥିଲା । କଲେଜର ପ୍ରିନ୍‌ସିପାଲ ମି: ଆର୍. ଏଫ୍. ଡବ୍ଲ୍ୟୁ ଶ (Mr. R. F. W. Shaw) ଙ୍କ ଅନୁରୋଧକ୍ରମେ ମଧୁବାବୁ ସଭାପତିତ୍ୱ କରିଥିଲେ । ଛାତ୍ରମାନଙ୍କୁ ଉପଦେଶ ଦେବା ଭିତରେ ସେ ଯୁବ ଉତ୍କଳ ସଂଘର ପ୍ରତିଷ୍ଠାର ସଂକ୍ଷିପ୍ତ ଇତିହାସ ପ୍ରଦାନ କରିଥିଲେ । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ (ଡିସେମ୍ବର ମାସ ୧୯୦୩) ପରେ କଟକରେ ଏହି ସଂଘକୁ ମଧୁବାବୁ ସ୍ଥାପନ କରିଥିଲେ ବୋଲି କହିଥିଲେ । ବ୍ରଜସୁନ୍ଦର ଦାସ ଓ ଗୋପବନ୍ଧୁ ଦାଶ ଏହାର ସମ୍ପାଦକ ଥିଲେ । ଉତ୍କଳ ସମ୍ମିଳନୀ ସହିତ ଏହି ସଂଘଟି ସଂଲଗ୍ନ ଥିଲା । ଦେଶର ଲୋକଙ୍କ ସେବାକାର୍ଯ୍ୟ କରିବା ପାଇଁ ଯୁବକମାନଙ୍କୁ ସେ ଏହି ସଂଘ ମାଧ୍ୟମରେ ସଂଗଠିତ କରିଥିଲେ । ବନ୍ୟା, ଦୁର୍ଭିକ୍ଷ, ମହାମାରୀ ପ୍ରଭୃତି ବିପତ୍ତିବେଳେ ଗ୍ରାମାଞ୍ଚଳରେ ଲୋକଙ୍କର ସେବା କରିବା ହିଁ ଏହି ସଂଘର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେ କହିଥିଲେ, "ଛାତ୍ରମାନେ ମଫସଲକୁ ଯାଇ ଲୋକଙ୍କ ସଙ୍ଗରେ ମିଳାମିଶି ସେମାନଙ୍କ ସୁଖଦୁଃଖ, ଅଭାବ-ଅସୁବିଧା ସମ୍ବନ୍ଧରେ ସମ୍ୟକ୍ ଅବହିତ ହେବା ଆବଶ୍ୟକ । ଛାତ୍ରମାନଙ୍କ ଜୀବନରେ ସେବା ଏକ ପ୍ରଧାନ କାର୍ଯ୍ୟହେବା ଉଚିତ । ପ୍ରତ୍ୟେକ ଛାତ୍ର ପ୍ରତିଦିନ ଲୋକଙ୍କର କିଛି ସେବା କରିବା ଉଚିତ । ଶ୍ରମଦାନ ଛାତ୍ରଙ୍କ ପକ୍ଷେ ଏକ ମହାନ୍ ଦାନ ।" ତ୍ୟାଗ, ସେବା ଓ ଦେଶାତ୍ମବୋଧ ପ୍ରତି ଦୃଷ୍ଟି ରଖିବାକୁ ମଧୁବାବୁ ଛାତ୍ରମାନଙ୍କୁ ଉପଦେଶ ଦେଇଥିଲେ ।

**ମଧୁବାବୁଙ୍କୁ ମୁସଲମାନମାନଙ୍କ ଅଭିନନ୍ଦନ**—ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ପ୍ରାଦେଶିକ ବ୍ୟବସ୍ଥା ସଭାରେ ଗୃହୀତ ହୋଇଥିଲା; କିନ୍ତୁ ମହାମାନ୍ୟ ବଡ଼ଲାଟ ଏହି ଆଇନକୁ ମଞ୍ଜୁର ନକରିବାରୁ ଓଡ଼ିଶା ବିପଦରୁ ରକ୍ଷାପାଇଅଛି ବୋଲି ଲୋକେ ଭାବିଲେ ।

ଏଥିର ପ୍ରଧାନ ଉଦ୍ୟୋଗୀ ମାନ୍ୟବର ମଧୁସୂଦନ ଦାସ ଓ ମାନ୍ୟବର କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଙ୍କୁ ଅଭିନନ୍ଦନ ଜଣାଇବା ପାଇଁ କଟକର ମୁସଲମାନମାନେ ଏକ ସଭା ଖ୍ରୀ' ୧୯୧୨ ଏପ୍ରିଲ ମାସ ୭ ତାରିଖରେ ଡାକିଥିଲେ । ନୁରୁଲ ହକ୍ (ଓକିଲ) ମଧୁବାବୁଙ୍କ ଗୁଣ ଓ କାର୍ଯ୍ୟର ପ୍ରଶଂସା କରିଥିଲେ । ସେ କହିଥିଲେ, "ମଧୁବାବୁଙ୍କ ଯୋଗେ ଦେଶବାସୀ ମଙ୍ଗଳମୟ ମଧୁ ପାଇ ଆନନ୍ଦିତ ଅଛନ୍ତି ।" ବହୁ ଭଦ୍ରବ୍ୟକ୍ତି ବକ୍ତୃତା ଦେଇ ଅଭିନନ୍ଦନ ଜଣାଇଥିଲେ । ମଧୁବାବୁ ଉତ୍ତରରେ ନୁରୁଲଙ୍କ କଥାକୁ ଉଲ୍ଲେଖ କରି କହିଥିଲେ, "ଯଦି ମୋ ଯୋଗେ କିଛି ମଧୁ ସଞ୍ଚିତ ହୋଇଥାଏ, ତେବେ ତାହା ଭ୍ରମର ନାନା ଫୁଲରୁ ମଧୁ ଆହରଣ କରିବା ଯୋଗୁଁ ସମ୍ଭବ ହୋଇଛି । ଏ କ୍ଷେତ୍ରରେ ଦେଶଲୋକଙ୍କ ସହାୟତାରେ ମୁଁ ତାହା ଆହରଣ କରିଥିବା ହେତୁ ଦେଶ ଲୋକଙ୍କଠାରେ କୃତଜ୍ଞ ।" ସେ ଉର୍ଦ୍ଦୁ ଭାଷାରେ କିଛିକ୍ଷଣ କହିଥିଲେ । କନିକା ରାଜା ମଧ୍ୟ ନିଜର କୃତଜ୍ଞତା ପ୍ରକାଶ କରିଥିଲେ ।

ମଧୁବାବୁ ଏଠାରେ ଉତ୍ତରରେ ଅନ୍ୟାନ୍ୟ କଥା ଭିତରେ କହିଥିଲେ, "ସମୁଦାୟ କାର୍ଯ୍ୟ ଈଶ୍ୱରଙ୍କଠାରେ ଅର୍ପଣପୂର୍ବକ ତାଙ୍କର ଯଶୋଗାନ କରିବା ସମୁଚିତ ।" ଏହା ନିଷ୍କାମ କର୍ମର ଉଦାହରଣ । ମଧୁବାବୁ ଈଶ୍ୱରବିଶ୍ୱାସୀ ଥିଲେ ଏବଂ ସବୁ କାର୍ଯ୍ୟ ଈଶ୍ୱର ନିୟନ୍ତ୍ରଣ କରନ୍ତି ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା ।

**ଉତ୍କଳ ସମ୍ମିଳନୀର ବିଶେଷ ସଭା :** ଖ୍ରୀ: ୧୯୧୨ ସେପ୍ଟେମ୍ବର ୨୨ ତାରିଖ ରବିବାର ଦିନ ଗଞ୍ଜାମର ବ୍ରହ୍ମପୁରଠାରେ ଟାଉନହଲରେ ଦେଶମିଶ୍ରଣ ବିଷୟରେ ଭାରତ ସମ୍ବନ୍ଧରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ଦେଶମିଶ୍ରଣ ବିଷୟରେ ଭାରତ ଗଭର୍ଣ୍ଣମେଣ୍ଟଙ୍କ ଉକ୍ତିର ପ୍ରତିବାଦ ଏ ସଭାରେ ହୋଇଥିଲା । ଉତ୍କଳ ସମ୍ମିଳନୀରସମ୍ପାଦକ ଏ ସଭା ଆହ୍ୱାନ କରିଥିଲେ । ରାଜା, ମହାଜନ, ଭଦ୍ରବ୍ୟକ୍ତି ସର୍ବଶ୍ରେଣୀର ପ୍ରାୟ ୨।୩ ହଜାର ଲୋକ ସମବେତ ହୋଇଥିଲେ । ସୁରଙ୍ଗୀ ରାଜା ସଭାପତି ହୋଇଥିଲେ । ଧରାକୋଟ, ସୁରଙ୍ଗୀ, ମଞ୍ଜୁଷା, ଚିକିଟି ପ୍ରଭୃତିର ରାଜାମାନେ ଓ ଓଡ଼ିଶାରୁ ବାବୁ ମଧୁସୂଦନ ଦାସ, ଗୋପବନ୍ଧୁ ଦାଶ, ବ୍ରଜସୁନ୍ଦର ଦାସ ପ୍ରଭୃତି ଉପସ୍ଥିତ ଥିଲେ ।

"ଏହି ସଭାରେ ଆଉ ଗୋଟିଏ ସ୍ଥିର ହେଲା ଯେ ଗଞ୍ଜାମ ଉତ୍କଳଖଣ୍ଡ ଓଡ଼ିଶା ସଙ୍ଗେ ମିଶିବାଯାଏ ପ୍ରତିବର୍ଷ ଏହି ଦିନ ଏକ ବିରାଟ ସଭା ହେବ ଏବଂ ଉତ୍କଳୀୟମାନେ ଏ ଦିନ ଉପବାସ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେବେ ।"

ଏ ପ୍ରସ୍ତାବ ଉପସ୍ଥାପିତ ହେବାମାତ୍ରେ ସମସ୍ତଙ୍କ ମନକୁ ଏପରି ଯେ ଛୁଇଁଲା ଯେ 'ହରିବୋଲ' ଧ୍ୱନିରେ ସଭା କମ୍ପମାନ ହେଲା । ଅସୀମ ଉତ୍ସାହ ଓ ଆଗ୍ରହ ସହକାରେ ସମବେତ ଭଦ୍ରମଣ୍ଡଳୀ ଏ ଶପଥ ପାଠ କରିଥିଲେ ।

ମାନ୍ୟବର ମଧୁସୂଦନ ଦାସ ଅନ୍ୟାନ୍ୟ କଥା ମଧ୍ୟରେ ଏ ନିୟମ ପ୍ରସଙ୍ଗ ଉଲ୍ଲେଖ କରିବାବେଳେ ସମସ୍ତେ ମନ୍ତ୍ରମୁଗ୍ଧ ପ୍ରାୟ ହୋଇଯାଇଥିଲେ ଏବଂ ଏହି ନିୟମକୁ କାୟମନୋବାକ୍ୟରେ ପାଳିବାକୁ ଦୃଢ଼ ସଂକଳ୍ପ କଲେ ।

ପୂର୍ବେ ମଧୁବାବୁ 'ପ୍ରତ୍ୟେକ ଉତ୍କଳୀୟଙ୍କର ଦେଶପାଇଁ ପାଞ୍ଚ ମିନିଟ ଚିନ୍ତା' ଓ "ନ୍ୟୂନପକ୍ଷେ ଏକଦିନର ଆୟ ସମ୍ମିଳନୀ ପାଣ୍ଠିକୁ ଦାନ' ନିୟମ ଉତ୍କଳ ସମ୍ମିଳନୀର ଅଧିବେଶନମାନଙ୍କରେ କରାଇଲେ । (ଉ.ଦୀ.)

କିନ୍ତୁ ଏହି ନିୟମଗୁଡ଼ିକ କେବଳ ନିୟମରେ ହିଁ ରହିଲା । ପ୍ରଥମ ବର୍ଷେ ଦି ବର୍ଷ କେହି କେହି ଏ ନିୟମ ପାଳନ କଲେ । ପରେ ଲୋକେ ଏହା ପାସୋରି ଦେଇଥିଲେ କହିଲେ ଚଳେ ।

ଏହି ବିରାଟ ସଭାରେ ଏହି ମର୍ମରେ ପ୍ରସ୍ତାବ ଗୃହୀତ ହୋଇଥିଲା ।

(୧) ରାଜା, ଜମିଦାର, ମହାନ୍ତ, ବ୍ୟବସାୟୀ, ଓକିଲ, ରୟତ ପ୍ରଭୃତି ପ୍ରାୟ ଘ୍ରଶହଜାର ଲୋକଙ୍କର ଏହି ସଭା ଆଶଙ୍କା କରୁଛନ୍ତି ଯେ ୧୯୧୨ ଅଗଷ୍ଟ ମାସ ୧୧ ତାରିଖରେ ଗଞ୍ଜାମ ଜିଲ୍ଲା କଲେକ୍ଟର ମାନ୍ଦ୍ରାଜର ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକୁ ବିହାର ଓ ଓଡ଼ିଶା ସହିତ ଯୁକ୍ତ କରିବା ଅବାଞ୍ଛନୀୟ ଓ ଅନାବଶ୍ୟକ ବୋଲି ଭାରତ ସରକାରଙ୍କର ସିଦ୍ଧାନ୍ତ ଥିବା ଯାହା ଜଣାଇଛନ୍ତି, ତାହା ଭ୍ରମପୂର୍ଣ୍ଣ । ଯେଉଁ ସବୁ କାରଣରୁ ଓଡ଼ିଆ ଜାତିର ସାଧାରଣ ଉନ୍ନତିରେ ବାଧା ଘଟୁଛି, ସେହି ସମ୍ବନ୍ଧରେ ଯଥୋଚିତ ତଥ୍ୟର ଅଭାବ ଉପରେ ଏ ସିଦ୍ଧାନ୍ତ ପ୍ରତିଷ୍ଠିତ ଏବଂ ଏହି ସିଦ୍ଧାନ୍ତ ସରକାରଙ୍କର ସାମ୍ପ୍ରଦାୟିକ ଓ ଜାତିଗତ ଅଗ୍ରଗତି ନିମନ୍ତେ ସୁଯୋଗ ସୁବିଧା ଦେବା ଘୋଷିତ ନୀତିର ବିରୋଧ କରୁଛି । ଏହି ସିଦ୍ଧାନ୍ତକୁ ଏହି ସଭା ଅତ୍ୟନ୍ତ ବିନୟପୂର୍ବକ ବିରୋଧ କରୁଅଛନ୍ତି ।

(୨) ଓଡ଼ିଆ ଜାତିର ସୁରକ୍ଷା ନିମନ୍ତେ ଇମ୍ପିରିଆଲ୍, ଲେଜିସ୍‌ଲେଟିଭ୍ କାଉନ୍‌ସିଲରେ (ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ) ଜଣେ ବେସରକାରୀ ସଭ୍ୟ ରହିବା ସର୍ବତୋଭାବେ ବାଞ୍ଛନୀୟ ଓ ଆବଶ୍ୟକ ବୋଲି ଏହି ସଭା ମତ ବ୍ୟକ୍ତ କରୁଛନ୍ତି ।

**କୃଷୀମାନଙ୍କର ଅଭ୍ୟୁତ୍‌ଥାନ କଳ୍ପନା :** ଖ୍ରୀ: ୧୯୧୨ରେ କଟକ ନିକଟସ୍ଥ ବାରଙ୍ଗରେ ପ୍ରଜାପ୍ରତିନିଧି ସଭା ଆନୁକୂଲ୍ୟରେ ଏକ ସଭା ହୋଇଥିଲା । କଟକ ନିକଟସ୍ଥ ଫୁଲନଖରାଠାରେ ମଧ୍ୟ ଏହି ସଭା ତରଫରୁ ଆଉ ଗୋଟିଏ ସଭା ହୋଇଥିଲା । ନିକଟସ୍ଥ ଗ୍ରାମମାନଙ୍କରୁ ବହୁତ କୃଷୀ ଏହି ସଭାମାନଙ୍କରେ ଉପସ୍ଥିତ ଥିଲେ । ମଧୁବାବୁ ସଭା ଡାକିଛନ୍ତି ଏବଂ ସେ ସଭାରେ ଭାଷଣ ଦେବେ, ଏହା ଏକ ଆକର୍ଷଣ ଥିଲା । ପୁଣି ମଧୁବାବୁ ଯେତେବେଳେ ନିଜେ ତତ୍ତ୍ୱ ନେଉଛନ୍ତି, ସେତେବେଳେ ପ୍ରଜାମାନଙ୍କର ଯେ ନିଶ୍ଚୟ ଉନ୍ନତି ହେବ, ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଦୂରଦୂରାନ୍ତରୁ ମଧ୍ୟ କୃଷୀମାନେ

ଚୂଡ଼ା ଘୁଡ଼ଳ ଧରି ସଭାକୁ ଆସିଥିଲେ । ଏହି ସଭାମାନଙ୍କରେ ମଧୁବାବୁ ଉନ୍ନତ ଧରଣର ଚାଷ କିପରି କରାଯାଇ ପାରିବ, ତାହା ଲୋକଙ୍କୁ ବୁଝାଇ ଥିଲେ । ଚାଷଜମିରେ ଭାଗଚାଷୀ-ମାନଙ୍କର ଅଧିକାର ଓ ଉତ୍ପନ୍ନ ଶସ୍ୟର ଭାଗରେ ସେମାନଙ୍କର ପରିମାଣ ସମ୍ବନ୍ଧରେ ସେ କହିଥିଲେ, ଭାଗଚାଷୀମାନଙ୍କର ସ୍ୱତ୍ୱ ଯେପରି ନିରାପଦ, ଦୃଢ଼ ଓ ଉନ୍ନତ ରହେ, ସେଥି ପ୍ରତି ସେ ସବୁବେଳେ ସରକାରୀ ଓ ବେସରକାରୀ କ୍ଷେତ୍ରରେ ସଜାଗ ରହିବେ ଏବଂ ଅବିରତଭାବେ ସେ ନିଜେ ଚେଷ୍ଟା କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ରୟତ ଓ ରୟତ ମଧ୍ୟରେ ଜମି ହସ୍ତାନ୍ତର ବିନା ଖର୍ଚ୍ଚରେ ହେବା ଆବଶ୍ୟକ ଏବଂ ଜମିଦାରମାନେ ଯେଉଁ ଦାଖଲ-ଖାରଜ୍ ଫି ଦାବୀ କରୁଛନ୍ତି, ତାହା ଉଠାଇ ଦେବାକୁ ହେବ ବୋଲି ସେ ଦାବୀ କରିଥିଲେ । ତାଙ୍କ ମତରେ ମୋଗଲ ରାଜତ୍ୱ ସମୟରେ ଏ ଦେଶରେ ଜମିଦାରୀ ବ୍ୟବସ୍ଥା ଉଦ୍ଭବ ହୋଇଥିଲା । ସେତେବେଳେ ଶାସକମାନେ ଏହି ପ୍ରକାର ପନ୍ଥାଦ୍ୱାରା ଖଜଣା ସୁବିଧାରେ ଆଦାୟ ହୋଇପାରିବ ବୋଲି ଆଶା କରିଥିଲେ । ପରେ ଏହି ପ୍ରଥାଟି କ୍ରମେ ମୌରସି ହୋଇଗଲା । କାଳକ୍ରମେ ଏହି ଜମିଦାରୀ ପ୍ରଥା ଯେ ଲୋପ ପାଇଯିବ, ଏହା ସେ ବିଶ୍ୱାସ କରୁଥିଲେ । ସେ କହୁଥିଲେ, ଯଦି ଜମିଦାରମାନେ ଜମିରୁ ବେଶି ଉତ୍ପନ୍ନ କରିବାପାଇଁ ପ୍ରଜାମାନଙ୍କୁ ସାହାଯ୍ୟ ଓ ଉତ୍ସାହ ନ ଦେବେ ଏବଂ ସେମାନଙ୍କର ସ୍ୱତ୍ୱ, ସୁଖ ଓ ସୁବିଧା ପ୍ରତି ଯତ୍ନବାନ୍ ନହେବେ, ତାହାହେଲେ ଜମିଦାରୀ ଲୋପ ନିକଟ ହୋଇ ଆସିବ । ଅସ୍ଥାୟୀ ଭାବରେ ଜମିଜମା ବନ୍ଦୋବସ୍ତ କରିବାଦ୍ୱାରା ଦେଶର କିଛି ଉପକାର ହେବନାହିଁ । ଏ ସମ୍ବନ୍ଧରେ ସେ ଭାରତ ସଚିବ ଲର୍ଡ ମର୍ଲେ (Lord Morley) ଙ୍କ ସହିତ ଇଂଲଣ୍ଡରେ ଖ୍ରୀ: ୧୯୦୭ରେ ଦେଖାକରି ତାଙ୍କୁ ଏ ସମ୍ବନ୍ଧରେ ବୁଝାଇଥିଲେ । ବର୍ତ୍ତମାନ ଚାଷୀ ଜମିର ଉତ୍ପନ୍ନରୁ ଯେଉଁ ପରିମାଣରେ ଭାଗ ପାଉଛୁ, ତାହା ଯଦି ବୃଦ୍ଧି ନହୁଏ, ତାହାହେଲେ ଜମିରେ ଅଧିକ ଉତ୍ପନ୍ନ କରିବାପାଇଁ ଚାଷୀର ଆଗ୍ରହ ବୃଦ୍ଧି ହେବ ନାହିଁ । ଏହା ଦେଶପକ୍ଷରେ ସମୂହଭାବରେ କ୍ଷତିକାରକ ହେବ ।

ଚାଷୀମାନଙ୍କୁ ଧାନ, ମୁଗ, ରାଶି ପ୍ରଭୃତି ଛଡ଼ା ଝୋଟ, ହରଡ଼, ଆଖୁ ପ୍ରଭୃତି କରିବାପାଇଁ ମଧ୍ୟ ସେ ଉପଦେଶ ଦେଇଥିଲେ । ଏହି ଫସଲଦ୍ୱାରା ସେମାନେ ଯେ ଅଧିକ ଧନ ପାଇବା ସମ୍ଭବ, ଏହା ସେ ବୁଝାଉଥିଲେ ।

ଦେଶରେ ଚାଷୀମାନଙ୍କ ଭିତରେ ଚାଷପାଇଁ ବଳଦ କିଣା ଓ ହଳଲଙ୍ଗଳ ତିଆରି ପ୍ରଭୃତି କ୍ଷେତ୍ରରେ ସମବାୟ ନୀତିରେ ଉଦ୍ୟମ ହେବା ଉଚିତ, ଏହା ସେ ବାରମ୍ବାର କହୁଥିଲେ ।

ଯେଉଁ ଶ୍ରମିକମାନେ ଜମିରେ ପରିଶ୍ରମ କରୁଛନ୍ତି, ସେମାନଙ୍କର ମଜୁରି ବୃଦ୍ଧି-ପାଇବା ନିତାନ୍ତ ଦରକାର । ଯେଉଁଠାରେ ସେମାନେ ଭାଗ ନେଉଛନ୍ତି, ସେଠାରେ ମଧ୍ୟ ଭାଗର ପରିମାଣ ବଢ଼ିବା ଆବଶ୍ୟକ । ଏହା ନହେଲେ କାମ କରିବାପାଇଁ ଶ୍ରମିକମାନଙ୍କର ଉତ୍ସାହ ହେବ ନାହିଁ ଏବଂ ଫଳରେ ଉତ୍ପନ୍ନ ଶସ୍ୟର ପରିମାଣ ହ୍ରାସ ପାଇଯିବ ।

ଜମିଦାରଙ୍କ ଗୁମାସ୍ତାମାନେ ଖଜଣା ଆଦାୟବେଳେ ଓ ଅନ୍ୟ ସମୟରେ ଯେଉଁ ସବୁ ଅତ୍ୟାଚାର କରନ୍ତି ଓ ବେଆଇନ ପାଉଣା ଆଦାୟ କରନ୍ତି, ଏହାକୁ ସରକାରୀ ଆଇନଦ୍ୱାରା ବନ୍ଦ କରିବା ଆବଶ୍ୟକ ଏବଂ ଆଇନବଳରେ ଅପରାଧୀଙ୍କୁ ଦଣ୍ଡ ଦିଆଯିବା ଉଚିତ ବୋଲି ମଧୁବାବୁ କହୁଥିଲେ ଏବଂ ଏହା ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ଏହା ଶୀଘ୍ର କାର୍ଯ୍ୟରେ ପରିଣତ କରିବାପାଇଁ ସେ ସରକାରଙ୍କୁ ଅନୁରୋଧ ମଧ୍ୟ କରିଥିଲେ ।

ନିଜର ସ୍ୱାର୍ଥରକ୍ଷା ନିମନ୍ତେ ପ୍ରଜାକୁଳ ସ୍ଥାନେ ସ୍ଥାନେ ସଭାକରି ଓ ସମିତି ଗଠନ କରି ସରକାର ଓ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ଆବଶ୍ୟକ ଥିବା ସେ କହୁଥିଲେ ।

ମଧୁବାବୁ ବିଂଶ ଶତାବ୍ଦୀର ଆଗମନ ପୂର୍ବରୁ ପ୍ରଜାମାନଙ୍କ ସ୍ୱାର୍ଥରକ୍ଷା ପ୍ରତି ସଜାଗ ଥିଲେ ଓ ଏ ସମ୍ବନ୍ଧରେ ସରକାର ଓ ଦେଶବାସୀଙ୍କୁ ବାରମ୍ବାର ବୁଝାଉଥିଲେ । ଉନ୍ନତ ଓ ସମୃଦ୍ଧ ପ୍ରଜାକୁଳ ଦେଶର ସାମୂହିକ ଉନ୍ନତିର ପ୍ରଧାନ ଅଙ୍ଗ ବୋଲି ସେ କହୁଥିଲେ । ବିଭିନ୍ନ ଜମି ବନ୍ଦୋବସ୍ତ ବେଳେ ସେ ଓକିଲ ହିସାବରେ ଜମିଦାରମାନଙ୍କୁ ସେମାନଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ଅର୍ଜି ଗଠାକରି ପରାମର୍ଶ ଦେଉଥିଲେ ମଧ୍ୟ, ସେ ନିଜେ ପ୍ରଜାଙ୍କ ସପକ୍ଷରେ ଥିଲେ । ପ୍ରଜାଙ୍କ ଉପରେ ଅତ୍ୟାଚାରର ସେ ଘୋର ବିରୋଧୀ ଥିଲେ । ବର୍ତ୍ତମାନର ପ୍ରଚଳିତ ମାନଦଣ୍ଡ ଅନୁସାରେ ଦେଖିଲେ ମଧୁବାବୁଙ୍କ କଳ୍ପନା ଓ ଯୋଜନାକୁ ନିଶ୍ଚୟ ପ୍ରଗତିଶୀଳ ବୋଲି କୁହାଯିବ ।

**ବିହାର ଛୋଟଲାଟଙ୍କୁ କଂଗ୍ରେସର ସମ୍ବର୍ଦ୍ଧନା :** ଖ୍ରୀ: ୧୯୧୨ ଡିସେମ୍ବର ମାସରେ ବିହାର-ଓଡ଼ିଶା ପ୍ରଦେଶର ମାନ୍ୟବର ଗ୍ରେଟଲାଟଙ୍କୁ ବିହାର ପ୍ରାଦେଶିକ କଂଗ୍ରେସ ସମିତି ଏକ ଅଭିନନ୍ଦନପତ୍ର ପ୍ରଦାନ କରିଥିଲା । ସମିତିପକ୍ଷରୁ ୧୮ ଜଣ ପ୍ରତିନିଧି ଲାଟସାହେବଙ୍କ ସମ୍ମୁଖରେ ଉପସ୍ଥିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀ ମଧୁସୂଦନ ଦାସ ସି.ଆଇ.ଇ ଥିଲେ । ଗଭର୍ଣ୍ଣମେଣ୍ଟ ଗୃହରେ ଅଭିନନ୍ଦନପତ୍ରଟି ଦିଆଯାଇଥିଲା । ଗୋଟିଏ ଆଧାରରେ ଅଭିନନ୍ଦନପତ୍ରଟି ରଖାହୋଇଥିଲା । ତହିଁ ଉପରେ ଲେଖାହୋଇଥିଲା— "ଭାରତ ଜାତୀୟ କଂଗ୍ରେସ ଇଂରେଜ ଶାସନର ଅବଶ୍ୟମ୍ଭାବୀ ସନ୍ତାନ ।" ବିହାର ଅଞ୍ଚଳର ଟିକାରୀର ରାଜା ଏହି ଅଭିନନ୍ଦନ ପାଠ କରିଥିଲେ । ଉତ୍କଳ ଦେଶର ସର୍ବପ୍ରଧାନ ନେତା ମଧୁବାବୁ ଅଭିନନ୍ଦନ ପତ୍ର ଦେବା ନିମନ୍ତେ ପାଟନାର ବାର୍କିପୁରଠାକୁ ଯାଇଥିଲେ । ଓଡ଼ିଶାବାସୀ ବିହାରୀଙ୍କ ସଙ୍ଗେ ମିଳିମିଶି ଚଳିବା ଇଚ୍ଛା କରୁଥିବା ଏଥିରୁ ପ୍ରମାଣିତ ହୋଇଥିଲା । ବିହାରୀ ନେତାମାନେ ମଧ୍ୟ ମଧୁବାବୁଙ୍କ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରିଥିଲେ ।

ମଧୁବାବୁ ଏହିବର୍ଷ ପାଟନାରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ ଓ କଟକରେ ଜିଲ୍ଲା କଂଗ୍ରେସ କମିଟି ଗଠନ କରିବାରେ ସାହାଯ୍ୟ କରିଥିଲେ ।

**ଉତ୍କଳ ସମ୍ମିଳନୀ ଓ ଜାତୀୟଜୀବନ :** ଖ୍ରୀ: ୧୯୧୬ରେ ଗଞ୍ଜାମ ଉତ୍କଳ ସମ୍ମିଳନୀ ଅଧିବେଶନରେ ଯୋଗଦେଇ ମଧୁବାବୁ କାର୍ଯ୍ୟ ନିର୍ବାହିକା ସମିତିର ଆଲୋଚନା ଓ ମୂଳ ସମ୍ମିଳନୀର ସଭାରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସମ୍ମିଳନୀର କାର୍ଯ୍ୟ କ୍ରମେ କ୍ଷୀଣ ହୋଇ ଯାଉଥିବାରୁ ସେ ଦୁଃଖ ପ୍ରକାଶ କରିଥିଲେ । ସମ୍ମିଳନୀର ଉଦ୍ଦେଶ୍ୟକୁ ଓଡ଼ିଶାବାସୀ ଉତ୍ତମରୂପେ ହୃଦୟଙ୍ଗମ କରି ନଥିବାରୁ ଏପରି ଦୁରବସ୍ଥା ଘଟୁଛି ବୋଲି ସେ କହିଥିଲେ । ସେ ନିଜେ ମଧ୍ୟ ସମ୍ମିଳନୀଠାରୁ କ୍ରମେ ଦୂରେଇ ଯାଉଥିବା ବ୍ୟକ୍ତ କରିଥିଲେ । ତାଙ୍କର ବାର୍ଦ୍ଧକ୍ୟ ଓ ବିଧାନସଭାମାନଙ୍କରେ ଅଧିକ ସମୟ କଟାଇବାକୁ ପଡ଼ୁଥିବାରୁ ସେ ଏଥି ପ୍ରତି ବିଶେଷ ଧ୍ୟାନ ଦେଇ ପାରୁନଥିଲେ । ପୁଣି, ତାଙ୍କ ସମାଲୋଚକଙ୍କ ବୃଥା ସମାଲୋଚନାରେ ମଧ୍ୟ ସେ ଦୁଃଖିତ ଥିଲେ । ସେ ଏପରି ବିରୋଧ ଓ ସମାଲୋଚନା ଆଶା କରୁନଥିଲେ । କଟକର କେତେଜଣ ମୁଷ୍ଟିମେୟ ଓଡ଼ିଆ ନେତାଙ୍କ ବ୍ୟତୀତ ଓଡ଼ିଶାରେ ଉଲ୍ଲେଖଯୋଗ୍ୟ କୌଣସି ସମାଲୋଚନା ହେଉନଥିଲା । ସେ ଓଡ଼ିଶା ଜନସାଧାରଣଙ୍କ ହୃଦୟରେ ସ୍ନେହ ଓ ଭକ୍ତିର ଦୃଢ଼ ଆସନ ପାଇ ସାରିଥିଲେ ଏବଂ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ । ସମ୍ମିଳନୀ ଓ ଓଡ଼ିଶା ସମ୍ପର୍କୀୟ ସବୁ କାର୍ଯ୍ୟ ମଧୁବାବୁ କରିବେ, ଏହି ଧାରଣା ବୃଥାରେ ଅଡ଼ୁଆ ସୃଷ୍ଟି କରୁଥିଲା ।

ଉପଯୁକ୍ତ ସଂଖ୍ୟକ ନିଃସ୍ୱାର୍ଥପର, ବିଜ୍ଞ କର୍ମୀ ଅଭାବରୁ ସମ୍ମିଳନୀର କାର୍ଯ୍ୟ ଆଶାନୁରୂପ ଅଗ୍ରସର ହୋଇପାରୁନଥିଲା । ଉତ୍କଳ ସମ୍ମିଳନୀର ସମ୍ପାଦକତ୍ୱ ମଧୁବାବୁ ବହୁଦିନରୁ ତ୍ୟାଗ କରିଥିଲେ ମଧ୍ୟ ସେ ସବୁ କରୁଛନ୍ତି ବୋଲି ଜନସାଧାରଣ ଭାବୁଥିଲେ । ଫଳରେ ସମାଲୋଚନାର ଅବକାଶ ବୃଦ୍ଧି ପାଉଥିଲା । "ସମ୍ମିଳନୀ ଜାତିର ସଭା ଓ ମନୁଷ୍ୟ ପ୍ରାଣରେ ଜାତୀୟ ଜୀବନ ଉଦ୍ରେକ କରିବା ଏହାର ଉଦ୍ଦେଶ୍ୟ" ବୋଲି ମଧୁବାବୁ କହିଥିଲେ; କିନ୍ତୁ ଅନେକେ ଏହି ଉଦ୍ଦେଶ୍ୟ ହୃଦୟଙ୍ଗମ କରି ପାରି ନ ଥିବା ସେ ସମ୍ମିଳନୀର ଅଧିବେଶନମାନଙ୍କରେ ବ୍ୟକ୍ତ କରିଥିଲେ । "ମୁଁ ବିଶ୍ୱାସ କରେ, ଏପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରେ ସମ୍ମିଳନୀର ପ୍ରକୃତ ଅର୍ଥ ଅନେକେ ଗ୍ରହଣ କରି ପାରିନାହାନ୍ତି । ଯେଉଁମାନେ ଏ ବିଷୟରେ ଅଜ୍ଞ, ସେମାନଙ୍କ ମଧ୍ୟରେ ମୁଁ ପ୍ରଥମ । ସମ୍ମିଳନୀର କାର୍ଯ୍ୟ କି ଉପାୟରେ କରିବାକୁ ହେବ ଓ ତହିଁର ପରିମାଣ କଣ ହେବ, ତାହା ମୁଁ ସମସ୍ତଙ୍କ ଅପେକ୍ଷା କମ୍ ଜାଣେ । ସମ୍ମିଳନୀର ପ୍ରଥମାବସ୍ଥାରେ ସମ୍ମିଳନୀ ସହିତ ମୋର କିଛି ସମ୍ପର୍କ ଥିଲା । ନାନାପ୍ରକାର ଆଶା ମନରେ ଉଦିତ ହୋଇଥିଲା, କିନ୍ତୁ ପରିପୂର୍ଣ୍ଣ ହୋଇ ନାହିଁ । ସୁତରାଂ ମୁଁ ସମ୍ମିଳନୀ ବିଷୟରେ ଅଜ୍ଞ ।"

ସେ ପୁଣି କହୁଥିଲେ, "ସମ୍ମିଳନୀ ଜାତୀୟ ଅନୁଷ୍ଠାନ । ଏହାକୁ ନେଇ ଯେ କାର୍ଯ୍ୟ କରିବ, ସେ ଜାତି ନିକଟରେ ପହଞ୍ଚିବ । ସମ୍ମିଳନୀ ଜାତୀୟ ଜୀବନର ସନ୍ତାନ ସ୍ୱରୂପ । ମନେକରନ୍ତୁ, ଉପେନ୍ଦ୍ର ଭଞ୍ଜ ଏଠାରେ ଜନ୍ମଗ୍ରହଣ କରିଥିଲେ । କୋଟି କୋଟି ଓଡ଼ିଆ ତାଙ୍କୁ ଆମ ଜାତିର କବି ବୋଲି କହୁଛନ୍ତି; କିନ୍ତୁ ଉପେନ୍ଦ୍ରଙ୍କ ପିତାମାତାଙ୍କର ନାମ, ତାଙ୍କ ବାଲ୍ୟକାଳର କଥା ଅଧିକାଂଶ କହିପାରିବେ ନାହିଁ । ମାତ୍ର ସମସ୍ତେ କହନ୍ତି, ଆମ୍ଭର ଉପେନ୍ଦ୍ର ଭଞ୍ଜ । ମୁଁ ପ୍ରଶ୍ନକରେ, ତୁମ୍ଭର କପରି ହେଲେ ? ଜାତି କହିଲା—ଜାତିର ଯୋଗ୍ୟ ସୁସନ୍ତାନ ଜାତିର ଏବଂ କୁସନ୍ତାନ ବାପ ମାଆଙ୍କର । ଏହା ଜାତିର ବିଗ୍ରହ ଅଟେ ।"

"ସମ୍ମିଳନୀ ଜାତୀୟ ଅନୁଷ୍ଠାନ ବୋଲି କହିବାର ତାତ୍ପର୍ଯ୍ୟ—ନିଃସ୍ୱାର୍ଥପର ଭାବେ ଜାତିର ସେବା ନକଲେ ସମ୍ମିଳନୀର ଉଦ୍ଦେଶ୍ୟ ସଫଳ ହେବନାହିଁ ।" ଏହି ପ୍ରସଙ୍ଗରେ ସେ ବ୍ୟକ୍ତିଗତ ଜୀବନ ଓ ଜାତୀୟ ଜୀବନ ସମ୍ବନ୍ଧରେ ସଂକ୍ଷେପରେ ବୁଝାଇଥିଲେ ।

ପ୍ରତ୍ୟେକର ଦୁଇଗୋଟି ଜୀବନ, ବ୍ୟକ୍ତିଗତ ଜୀବନ ଓ ଜାତୀୟ ଜୀବନ ଅଛି ବୋଲି କହି ସେ ଏହାକୁ ବୁଝାଇଥିଲେ । "ମୁଁ ଖାଉଛି, ପିନ୍ଧୁଛି, ଅର୍ଥ ଉପାର୍ଜ୍ଜନ କରୁଛି, ମୋ ପିଲା ବଡ଼ଲୋକ ହେବ, ଏ ଇଚ୍ଛା ବ୍ୟକ୍ତିଗତ ଜୀବନର ଇଚ୍ଛା; ମାତ୍ର ଜାତୀୟ ଜୀବନ ତାହା ନୁହେଁ ।" ସେ ଉଦାହରଣ ଦେଇ ବୁଝାଇଥିଲେ—"ଯେବେ ଜଣେ କହେ ଓଡ଼ିଆଙ୍କୁ ମାର, ତେବେ ସମସ୍ତଙ୍କର ରକ୍ତ ଗରମ ହେବ । ଏଥିରୁ ଜାତୀୟ ଜୀବନ ଅଛି, ପରିଚୟ ମିଳିଲା ।"

"କିନ୍ତୁ ଆମ୍ଭମାନଙ୍କର ଜାତୀୟ ଜୀବନ ବଡ଼ ଶିଥିଳ । ତାକୁ ଉତ୍ତେଜିତ କରି ବ୍ୟକ୍ତିଗତ ଜୀବନପରି ବଳବାନ୍ କରିବାକୁ ହେବ । ଏହାହିଁ ସମ୍ମିଳନୀର ଉଦ୍ଦେଶ୍ୟ । ସମ୍ମିଳନୀ ଜାତୀୟ ଜୀବନର ସନ୍ତାନ ସ୍ୱରୂପ । ବର୍ତ୍ତମାନ ଏ ସମ୍ମିଳନୀ ଯେ ଚଳାଇବେ, ତାଙ୍କର ଏ ସମ୍ମିଳନୀକୁ ନିଜର ସନ୍ତାନ ତୁଲ୍ୟ ଜ୍ଞାନ କରିବା ଉଚିତ । ମୁଁ ବଢ଼ାଇବି ମୁଁ ଲାଳନ ପାଳନ କରିବି, ଯୋଗ୍ୟ ହେଲେ ଜାତି ମୋ କୋଳରୁ କାଢ଼ି ନେବ।"

ସମ୍ମିଳନୀର ଅର୍ଥ ଓଡ଼ିଶାବାସୀ ଉତ୍ତମରୂପେ ବୁଝିପାରିନଥିବା ମଧୁବାବୁ କହିଥିଲେ ଓ ପ୍ରକୃତ ଅର୍ଥ ଏହିପରି ଭାବରେ ବୁଝାଇଥିଲେ—"ସମ୍ମିଳନୀର ଅର୍ଥ ମୁଁ ବୁଝିପାରିଲିନାହିଁ ଅନେକ ମଧ୍ୟ ବୁଝିନାହାନ୍ତି । ଇନ୍‌ସୁରେନ୍‌ସ କମ୍ପାନୀ, କରଣ ସଭା, ବ୍ରାହ୍ମଣ-ସଭାଭଳି, ଏହା ଗୋଟିଏ ସଭା ନୁହେଁ । କେତେକ ମହାଜନ ତାଙ୍କର ସ୍ୱାର୍ଥରକ୍ଷା ପାଇଁ ଗୋଟିଏ ସଭା ଗଠନକଲେ, କରଣମାନେ ବ୍ରାହ୍ମଣମାନେ କଲେ । ସମ୍ମିଳନୀର ସଂଖ୍ୟା ବା ସୀମା ନାହିଁ । ଅନ୍ୟ ସଭାର ସଭ୍ୟତାଲିକା ଅଛି; ମାତ୍ର ଉତ୍କଳ ସମ୍ମିଳନୀ ସଭ୍ୟମାନଙ୍କର ସଂଖ୍ୟା ନାହିଁ, କି ତାଲିକା ନାହିଁ । ସମସ୍ତ ଓଡ଼ିଆ ଜାତି ଏହାର ସଭ୍ୟ । ଶିଶୁଠାରୁ ଭବିଷ୍ୟତ ବଂଶଧର ଓଡ଼ିଆମାନେ ସମସ୍ତେ ଏଥିରେ ସଭ୍ୟ । ପ୍ରଥମେ ଏ ଭୁଲ ହେବା ଉଚିତ ନୁହେଁ — ଏ ସଭା ନୁହେଁ କି କମ୍ପାନୀ ନୁହେଁ । ଏ ଜାତିର ସମ୍ମିଳନୀ ଅଟେ । ଯାହା ହୋଇଅଛି ସେଥିରେ ଜାତିର ଦାବୀ ଅଛି, ପୁଣି ଯାହା ହେବ, ସେଥିରେ ସୁଦ୍ଧା ଦାବୀ ହେବ । ଏ

ପ୍ରଭେଦ ମନେ ରଖିଲେ ଅନେକ ଗୋଳମାଳ ସୃଷ୍ଟିଯିବ ।" ନିର୍ଦ୍ଦିଷ୍ଟ ଅଙ୍କାବଶିଷ୍ଟ କେତେକ ଲୋକଙ୍କର ଏ ସମ୍ମିଳନୀ ନୁହେଁ, ଏହା ସମଗ୍ର ଜାତିର ଏବଂ ଓଡ଼ିଆର ଜାତୀୟଜୀବନ ସହିତ ଏହା ଅଙ୍ଗାଙ୍ଗୀଭାବେ ଜଡ଼ିତ, ଏହି ତାତ୍ପର୍ଯ୍ୟ ହିଁ ମଧୁବାବୁ ବୁଝାଇଛନ୍ତି ।

ଜାତୀୟ ଜୀବନ ଓ ବ୍ୟକ୍ତିର ସମ୍ପର୍କ ସମ୍ବନ୍ଧରେ ଏକ ଚମତ୍କାର ଉଦାହରଣ ଦେଇ ସେ ବୁଝାଇଥିଲେ, "ମାଳତୀ ଲତା ଆମ୍ବଗଛରେ ଉଠେ, ମୋଟ ହୁଏ, ଶେଷରେ ଆମ୍ବ ଗଛକୁ ମାରିଦିଏ । ଆମ୍ବଗଛର ଫଳ କମ୍ ଲୋକ ଖାଉଥିଲେ । ଏହା ତୁଳନାରେ ମାଳତୀ ପୁଷ୍ପର ସୁଗନ୍ଧ ସହସ୍ର ଲୋକଙ୍କୁ ମୋହିତ କରୁଛି । ଜାତୀୟ ଜୀବନ ଯେତେବେଳେ ବ୍ୟକ୍ତିକୁ ମାଳତୀ ଲତାପରି ବେଢ଼ି ଧରିବ, ସେତେବେଳେ ସେ (ଆମ୍ବଗଛପରି) ମରିବ, କିନ୍ତୁ ମାଳତୀର ସୁଗନ୍ଧ ଚାରିଆଡ଼େ ମହକିବ । ନିଜ ସକାଶେ ଜୀବନ ଧାରଣ କରିବା ମନୁଷ୍ୟ ଜୀବନର କଦାପି ଉଦ୍ଦେଶ୍ୟ ନୁହେଁ । ଈଶ୍ୱର ଏ ଉଦ୍ଦେଶ୍ୟରେ କାହାକୁ ସୃଷ୍ଟି କରିନାହାନ୍ତି । ପଶୁ ଓ ମନୁଷ୍ୟର ପ୍ରଭେଦ କଣ ? ପଶୁ ତାହାର ନିଜର ପାଇଁ ସବୁ କରେ । ବ୍ୟକ୍ତିଗତ ଜୀବନ ନ ମଲେ ଜାତୀୟ ଜୀବନ ହେବ ନାହିଁ ।" ମଞ୍ଜିରୁ ଗଛ ହେବା ଉଦାହରଣ ଦେଇ ସେ କହିଲେ, 'ମଞ୍ଜି ବା ଟାକୁଆ ପୋତିଲା ପରେ ଆଗେ ଟାକୁଆ ପଚିଲେ, ପଛେ ଗଛ ଉଠିବ; ନ ପଚିବା ପର୍ଯ୍ୟନ୍ତ ଗଛ ଉଠିବ ନାହିଁ । ସେହିପରି ଯହିଁରୁ ଜାତୀୟ ଜୀବନ ଉଠିବ, ସେ ମରିବ, ସେ ପଚିବ । ଗୋଟାଏ ଟାକୁଆ ମଲେ ଲକ୍ଷେ ଆମ୍ବ ଫଳିବ । ଆମ୍ବର ଜାତି ରକ୍ଷା ହେଲା, କିନ୍ତୁ ପ୍ରଥମେ ଟାକୁଆ ମଲା ।"

ମଧୁବାବୁ ୧୯୦୪ ଡିସେମ୍ବର ୨୮ ତାରିଖରେ କଟକର ଇଦ୍‌ଗା ପଡ଼ିଆରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନର ପ୍ରଥମ ଦିନ ଏକ ପ୍ରସ୍ତାବ ସମ୍ବନ୍ଧରେ ଜାତୀୟ ଜୀବନ ଉପରେ ବିସ୍ତୃତ ଆଲୋଚନା କରି ଏକ ପ୍ରାଣସ୍ପର୍ଶୀ ବକ୍ତୃତା ଦେଇଥିଲେ । ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନମାନଙ୍କରେ ଏହି ବିଷୟ ଆଲୋଚନା କରୁଥିଲେ । ଦ୍ୱିତୀୟ ଅଧିବେଶନର ସଭାପତି ଜାତୀୟ ଜୀବନ ଓ ଏକତା ସମ୍ବନ୍ଧରେ ତାଙ୍କ ଅଭିଭାଷଣରେ କେତେକ ସୂଚନା ଦେଇଥିଲେ । ଉପଯୁକ୍ତ ଭାବରେ ଓଡ଼ିଆଙ୍କ ଭିତରେ ଜାତୀୟ ଜୀବନ ପରିଲକ୍ଷିତ ହେଉନଥିବା ଦେଖି ସଭାପତି କ୍ଷୋଭ ପ୍ରକାଶ କରି କହିଥିଲେ, "ଜାତୀୟଜୀବନ ଓ ଏକତ୍ରିତ ଭାବରେ କାର୍ଯ୍ୟ କରିବା, ଏ ଦୁଇଟି ଭିନ୍ନ କୌଣସି ଜାତି ଉନ୍ନତି କରିବାର ଦୃଷ୍ଟାନ୍ତ ପୃଥିବୀର ଇତିହାସରେ ମିଳେ ନାହିଁ ।" ମଧୁବାବୁ ଏହି ପ୍ରସଙ୍ଗକୁ ଉଲ୍ଲେଖ କରି କହିଥିଲେ, "ବ୍ୟକ୍ତିଗତ ଉଦାହରଣମାନଙ୍କରୁ ଆପଣମାନେ ବୁଝିପାରିବେ ଯେ, କି ଅବସ୍ଥାରେ ଜଣେ ମନୁଷ୍ୟ ଆଉ ଜଣେ ମନୁଷ୍ୟ ଭିତରେ ପ୍ରୀତି ଓ ବନ୍ଧୁତା ହୋଇ-ପାରେ । ଦୁଇ ଶବ ମଧ୍ୟରେ କଦାପି ବନ୍ଧୁତା ହୋଇ ନପାରେ । ସେହିପରି ଦୁଇ ଜାତି ମଧ୍ୟରେ ବନ୍ଧୁତା ହେଲେ ଉଭୟ ଜାତି ମଧ୍ୟରେ ଜାତୀୟ ଜୀବନ ଥିବା ଦରକାର ।" ଏହାପରେ ସେ ପ୍ରଶ୍ନ କରିଥିଲେ, "ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି ?" ଏହାର

ଉତ୍ତର ସେ ନିଜେ ଦେଇଥିଲେ । ସେ ବହୁ ଉଦାହରଣ ଦେଇ ଜାତୀୟ ଜୀବନ ଓ ବ୍ୟକ୍ତିଗତ ଜୀବନ, ଜାତୀୟ ଐକ୍ୟ ପ୍ରଭୃତି ବିଷୟ ସୁନ୍ଦର ଭାବରେ ବୁଝାଇଥିଲେ ।

ଜାତୀୟ ଜୀବନ ଓ ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ ସେ କହିଥିଲେ—"ଜାତି ଜାତି ମଧ୍ୟରେ ଭାବ ହେବା ନିମନ୍ତେ ଜାତୀୟ ଜୀବନର ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ଜୀବନ ପରିଲକ୍ଷିତ ହୁଏ, ତାହା ବ୍ୟକ୍ତିଗତ ଜୀବନ । ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ; ତାହା କାଲି ଶ୍ମଶାନରେ ଶେଷ ହେବ । ଶରୀର ଅଭ୍ୟନ୍ତରରେ ଯେଉଁ ଆତ୍ମା ବିଦ୍ୟମାନ, ତାହା ଈଶ୍ୱରଙ୍କ ନିକଟରେ ପହଞ୍ଚିବ । ତଳେ ପାର୍ଥିବ ଜୀବନର ଆକର୍ଷଣ ଶକ୍ତି, ଅର୍ଥାତ୍ ମୋର ସ୍ତ୍ରୀ, ମୋର ଅପତ୍ୟ, ମୋର ସମ୍ପତ୍ତି ଏବଂ ଭୂତ ପାର୍ଥିବ ଭାବଗୁଡ଼ିକ ମୋତେ ପ୍ରତିକ୍ଷଣ ତଳକୁ ଓଟାରୁଅଛି । ଉପରେ ସ୍ୱର୍ଗୀୟ ଜୀବନର ଆକର୍ଷଣ ଶକ୍ତି, ଅର୍ଥାତ୍ ମୋର ପରିତ୍ରାଣ, ମୋର ଅନନ୍ତ ବିଶ୍ରାମ ସ୍ଥାନ ମୋତେ ସର୍ବଦା ଉପରକୁ ଟାଣୁଅଛି । ଚତୁଃପାର୍ଶ୍ୱରେ ଅନ୍ୟାନ୍ୟ ଜାତି ଓ ସମାଜ ବିଦ୍ୟମାନ । ସେହି ଜାତି ଓ ସମାଜମାନଙ୍କ ସଙ୍ଗେ ଜୀବନ ମିଳାଇ ଆଳାପ କରିବା ଆମ୍ଭମାନଙ୍କର ଗୋଟିଏ ପ୍ରଧାନ କର୍ମ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ, ଜାତି ଜାତି ମଧ୍ୟରେ ସଦ୍ଭାବ ହେବ । ଜାତି ଜାତି ମଧ୍ୟରେ ଯେଉଁ ସଦ୍ଭାବ ତହିଁର ବିଚ୍ଛେଦ ହେବ ନାହିଁ; କିନ୍ତୁ ବ୍ୟକ୍ତିଗତ ସଦ୍ଭାବ ଚିରସ୍ଥାୟୀ ନୁହେଁ, ତାହା କ୍ଷଣଭଙ୍ଗୁର । କେହି କେହି ଏପରି ବିଚାର କରନ୍ତି ଯେ, ଜାତୀୟ ସଦ୍ଭାବ ହେଲେ ବ୍ୟକ୍ତିଗତ ଅସଦ୍ଭାବ ରହିବ ନାହିଁ । ଏପରି ବିଚାର ଭ୍ରାନ୍ତିମୂଳକ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ସୁଦ୍ଧା ଜାତି ମଧ୍ୟରେ ବ୍ୟକ୍ତିଗତ ବିବାଦ ସମୂଳେ ଲୋପ ପାଇବା ଅସମ୍ଭବ । ଏପରି କେହି ମନେ କର ନାହିଁ ଯେ, ଉତ୍କଳରେ ଜାତୀୟ ଜୀବନ ପ୍ରତିଷ୍ଠିତ ହୋଇ ତହିଁର ମୂଳଦୁଆ ଦୃଢ଼ ହେଲେ ଆମ୍ଭ ଦେଶରେ ବ୍ୟକ୍ତିଗତ ବିବାଦ ଆଦୌ ରହିବ ନାହିଁ ଓ ଅଦାଲତଗୁଡ଼ିକ ଉଠିଯିବ । ବ୍ୟକ୍ତିଗତ ଜୀବନରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ସଦ୍ଭାବରେ କିଛି ଅଭାବ ଘଟିବ ନାହିଁ । ମୁଁ କୌଣସି ଶିକ୍ଷିତ ଓ ପଦସ୍ଥ ଉତ୍କଳୀୟଙ୍କଠାରୁ ଏହି ମର୍ମରେ ଏକ ଚିଠି ପାଇଅଛି—'ମୋ ସଙ୍ଗେ ଆପଣଙ୍କ ମନ ମିଳିଲା ନାହିଁ, ଅତଏବ ମୁଁ ସମ୍ମିଳନୀରେ କାର୍ଯ୍ୟ କରିପାରିବି ନାହିଁ ।' ଏଥିର କାରଣ ଆମ୍ଭମାନଙ୍କର ଜାତୀୟ ଜୀବନର ଅଭାବ । ଜାତୀୟ ଜୀବନ ଗଠିତ ହେଲେ ବ୍ୟକ୍ତିଗତ ସ୍ତରରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ଅନୁଷ୍ଠାନରେ ସମସ୍ତେ ମିଳିମିଶି କାର୍ଯ୍ୟ କରିପାରିବା, ଏଥିରେ ସନ୍ଦେହ ନାହିଁ । ଏଠାରେ ଆପଣମାନଙ୍କୁ ଗୋଟିଏ ଉଦାହରଣ ଦେବାକୁ ଇଚ୍ଛା ହେଉଅଛି । ପ୍ରଥମେ ଆକାଶରୁ କ୍ଷୁଦ୍ର ଜଳବିନ୍ଦୁ ପୃଥିବୀ ଉପରେ ପଡ଼େ । ତତ୍ପରେ ଜଳବିନ୍ଦୁଗୁଡ଼ିକ ଏକତ୍ରିତ ହୋଇ ଗୋଟିଏ ଜଳଧାରା-ରୂପେ ତଳକୁ ବହିଯାଏ । ଏହିପରି କେତେଗୁଡ଼ିଏ ଜଳଧାରା ମିଶି ଗୋଟିଏ ନାଳରେ ପରିଣତ ହୁଏ । ଏହିପରି କେତେଗୁଡ଼ିଏ ନାଳ ନଦୀରେ ପରିଣତ ହୋଇ ତଳକୁ ବହିଯାଏ ଓ ଶେଷରେ ସମୁଦ୍ରରେ ଯାଇ ପଡ଼େ । ଆପଣମାନେ ଦେଖନ୍ତୁ, ସବୁ ସ୍ଥଳରେ ସବୁ ଅବସ୍ଥାରେ ଜଳ ନିଜର ଜାତୀୟ ଗୁଣକୁ ଧାରଣ କରି ନିଜର ଜାତୀୟ ଜୀବନର

ଟେକ ରଖିଅଛୁ । ଜଳର ଜାତୀୟ ଗୁଣ ନିମ୍ନଗତି । ବିନ୍ଦୁଏ ଜଳରେ ସେହି ଗୁଣ ବିଦ୍ୟମାନ ଓ ମହାସମୁଦ୍ରରେ ମଧ୍ୟ ଜଳ ନିଜର ଜାତୀୟ ଗୁଣକୁ ହରାଇ ପାରି ନାହିଁ । ଆମ୍ଭ ସମସ୍ତଙ୍କର ସର୍ବଦା ମନେରଖିବା ଉଚିତ ଯେ ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି । ସବୁ ଅବସ୍ଥାରେ, ସବୁ କାଳରେ, ସବୁ ସ୍ଥାନରେ ଆମ୍ଭେମାନେ ପ୍ରତ୍ୟେକେ ଜାତୀୟ ଜୀବନର ଟେକ ରଖି କାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରୁ ଯେବେ କେହି ଭ୍ରମରେ ପଡ଼ିଥାନ୍ତି, ସେ ଭ୍ରମ ଅତି ଶୀଘ୍ର ସଂଶୋଧନ କରିବା ଏକାନ୍ତ ଆବଶ୍ୟକ ।”

ଜାତୀୟ ଜୀବନର ଚିହ୍ନ ସମ୍ବନ୍ଧରେ ସେ କହିଲେ—“ଯେବେ କେହି ଜଣେ ଓଡ଼ିଆ ଜାତିକୁ ଗାଳିଦିଏ, ତାହାହେଲେ ତୁମ୍ଭ ମନରେ ରାଗ ହୁଏ କାହିଁକି ? ଏଥିର କାରଣ ନିରୂପଣ କରିବାକୁ ଗଲେ, ସ୍ପଷ୍ଟ ଜଣାଯିବ ଯେ ଏହା ଜାତୀୟ ଜୀବନର ଚିହ୍ନ । ଯେବେ ଜାତୀୟ ଜୀବନର ଚିହ୍ନ ଆମ୍ଭମାନଙ୍କ ମଧ୍ୟରେ ଅଛି, ତେବେ ଆମ୍ଭେମାନେ ପ୍ରତ୍ୟେକେ କୌଣସି କାର୍ଯ୍ୟ କରିବାବେଳେ ନିଜ ନିଜକୁ ସର୍ବପ୍ରଥମେ ଏହି ପ୍ରଶ୍ନଟି ପଚାରିବା ଆବଶ୍ୟକ, ‘ମୋ କାର୍ଯ୍ୟଦ୍ୱାରା ମୋ ଜାତିର ନିନ୍ଦା ହେବ କି ନାହିଁ ?’ ମୁଁ ମିଥ୍ୟାବାଦୀ ହେଲେ କିମ୍ବା ଖୋସାମଦ କଲେ, ଏହି ନିନ୍ଦାରେ ମୋ ଜାତି ଭାଗୀ ହେବ, ଏହା ପ୍ରତ୍ୟେକ ବ୍ୟକ୍ତିର ବୁଝିବା ଆବଶ୍ୟକ । ମୋତେ ଯେବେ ଜଣେ କୁବାକ୍ୟ କହେ, ତେବେ ମୁଁ ତହିଁର ପ୍ରତି-ଉତ୍ତର କଲେ ତଦ୍ଦ୍ୱାରା ମୋ ଜାତିର ଗୌରବ ବୃଦ୍ଧି ହେବକି ନାହିଁ ? ଜାତିର ମୂଲ୍ୟ ବଢ଼ିଲେ ଜାତୀୟ ଲୋକେ ତହିଁର ସୁଫଳ ଭୋଗ କରିବେ, ଏଥିରେ ସନ୍ଦେହ ନାହିଁ । ଜାପାନୀ ଜାତିଙ୍କ ବିଷୟ ଆମ୍ଭମାନଙ୍କର ସଭାପତି ମହାଶୟ ତାହାଙ୍କର ବକ୍ତୃତାରେ କହିଅଛନ୍ତି । ଜାପାନୀ ଜାତିର ଉନ୍ନତିର ମୂଳମନ୍ତ୍ର କଅଣ ? ‘ମୋର ପ୍ରାଣ ଯାଉ, ଲକ୍ଷେ ଜାପାନୀଙ୍କର ପ୍ରାଣ ଯାଉ, କିନ୍ତୁ ଜାପାନୀ ଜାତିର ମାନ ବୃଦ୍ଧି ହେଉ’—ଏହି ଭାବ ପ୍ରତ୍ୟେକ ଜାପାନୀଙ୍କ ହୃଦୟରେ ନୃତ୍ୟ କରୁଅଛି । ଏହି ଭାବ ଯୋଗୁଁ ଆଜି ଜାପାନୀ ଜାତି ପୃଥିବୀରେ ସର୍ବତ୍ର ପୂଜିତ ହେଉଅଛି । ‘ମୁଁ ଦିନେ ମରିବି, ମୁଁ ଆଜି ମଲେ ମୋ ଜାତିର ମାନ ବୃଦ୍ଧି ହେବ, ମୋର ପୂର୍ବପୁରୁଷଙ୍କର ମାନ ବୃଦ୍ଧି ହେବ ଓ ମୋ ସନ୍ତାନ ସନ୍ତତି-ମାନଙ୍କର ମାନ ବୃଦ୍ଧି ହେବ, ଏହି ଭାବାପନ୍ନ ଲୋକଙ୍କୁ ନେଇ ଜାପାନ ଜାତି ଗଠିତ । ଜାତିର ମାନ ବୃଦ୍ଧି ସଙ୍ଗେ ସଙ୍ଗେ ଜଗତର ଚକ୍ଷୁରେ ସେ ଜାତିର ମୂଲ୍ୟ ବଢ଼ୁଅଛି, ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ ଯେ, ଜାପାନୀ ଜାତି ଟଙ୍କା କରଜ ନେବାକୁ ବିଜ୍ଞାପନ ଦେଲମାତ୍ରେ, ସମସ୍ତ ସଭ୍ୟଜାତି ତାଙ୍କୁ ଟଙ୍କା ଋଣ ଦେବାପାଇଁ ପ୍ରସ୍ତୁତ । ଏଥିର କାରଣ କଣ ? ଜଗତର ଚକ୍ଷୁରେ ଜାପାନ ଜାତିର ମୂଲ୍ୟ ବଢ଼ିଅଛି । ଯେତେବେଳ ପର୍ଯ୍ୟନ୍ତ ଲୋକେ ବ୍ୟକ୍ତିଗତ ଜୀବନକୁ ଜାତି ନିମନ୍ତେ ବଳିଦେବାକୁ ଶିଖିନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଜାଣିବାକୁ ହେବ ଓ ସେତେବେଳଯାଏ ଜାତୀୟ ଜୀବନର ମୂଲ୍ୟ ଲୋକମାନେ ଜାଣିନାହାନ୍ତି ବୋଲି କହିବାକୁ ହେବ । ଗୋଟିଏ ଦେଶୀ କୁକୁରକୁ ଆଦର ସହିତ ହୃଷ୍ଟପୁଷ୍ଟ କରି ରଖନ୍ତୁ ଓ ତାକୁ ନେଇ

ଗୋଟାଏ ବିଲୁଆ ଦେଖାଇ ଦିଅନ୍ତୁ, ଦେଖିବେ ଯେ ବିଲୁଆଟି ଝିଙ୍କାରି ହେଲା ମାତ୍ରକେ ଦେଶୀ କୁକୁରଟି ଲଙ୍ଗୁଡ଼ ଗୁଞ୍ଜି ଆପଣଙ୍କ ନିକଟକୁ ପଳାଇ ଆସିବ; କିନ୍ତୁ ଗୋଟିଏ ବିଲାତି ଡାହାଳ କୁକୁର ଛୁଆ ଆଣନ୍ତୁ, ତାକୁ ଗୋଟାଏ ବାଘ ଦେଖାଇ ଦିଅନ୍ତୁ । ଦେଖିବେ ଯେ ଡାହାଳ ଛୁଆଟି ନିର୍ଭୟସ୍ୱଭାବରେ ମହାବଳ ବାଘ ଆଡ଼କୁ ଝପଟି ଯିବ, ଯେବେ ସେ ଡାହାଳ କୁକୁର ଛୁଆଟି କଥା କହି ପାରୁଥାନ୍ତା, ତାହାର ଅସୀମ ସାହସିକ କାର୍ଯ୍ୟର କାରଣ ଆପଣ ତାକୁ ପଚାରିଲେ ସେ ଏହିପରି ଜବାବ ଦିଅନ୍ତା—ମୁଁ ଜାଣେ ଯେ ମହାବଳ ବାଘକୁ ଆକ୍ରମଣ କରିବାକୁ ଯାଇ ମୁଁ ସେହି ବାଘ ମୁହଁରେ ମରିବି; କିନ୍ତୁ ମୋର ଜାତିର ଗୁଣ ସାହସିକତା, ମୁଁ ମୋର ଜୀବନ ପ୍ରତି ମାୟା ରଖି ବାଘ ନିକଟକୁ ନ ଗଲେ ମୋ ଜାତିର ମାନ ଓ ମୂଲ୍ୟ କମିଯିବ । ମୁଁ ମରେ ପଛକେ କିନ୍ତୁ ଡାହାଳ କୁକୁରର ଦାମ ମୋର ସାହସିକତା ଦ୍ୱାରା ବଢ଼ିବ ଏଥିରେ ସନ୍ଦେହ ନାହିଁ ।" ଏହି ଉଦାହରଣ ଅର୍ଥ ଏହି କି ଆମ୍ଭେମାନେ ସମସ୍ତେ କାର୍ଯ୍ୟ କଲାବେଳେ ଥରେ ଆମ୍ଭମାନଙ୍କର ଭାବିବା ଉଚିତ ଯେ ମୋ କାର୍ଯ୍ୟ ଦ୍ୱାରା ମୋ ଜାତିର ମାନ ବଢ଼ୁଛି କି ନାହିଁ ? ଯେବେ ମୋତେ ଜଣେ କୁବାକ୍ୟ କହେ ଓ ମୁଁ ଯେବେ ଜାଣିପାରେ ଯେ ମୁଁ ସେ କୁବାକ୍ୟର ପ୍ରତ୍ୟୁତ୍ତର ନ ଦେଇ ଚୁପ୍ ରହିଲେ ମୋ ଜାତିର ମାନ ବଢ଼ିବ ଓ ମୋ ଜାତିର ଗମ୍ଭୀରତା ବଢ଼ିବ, ତାହାହେଲେ ଏପରି ସ୍ଥଳରେ ମୋର ନୀରବ ରହିବା ଏକାନ୍ତ କର୍ତ୍ତବ୍ୟ ।"

ଦୋଷ ଓ ଗୁଣ ଦେଖିବା ସମ୍ବନ୍ଧରେ ମଧ୍ୟ ମନ୍ତବ୍ୟ ପ୍ରକାଶ କରି ମଧୁବାବୁ କହିଥିଲେ—"ଯୋଡ଼ିଏ ଆଖିରୁ ଗୋଟିଏ ଆଖି ବନ୍ଦ କର ଓ ଗୋଟିଏ ଆଖି ଖୋଲା ରଖ ବନ୍ଦ ଆଖିରେ ଅନ୍ୟ ଜାତିଙ୍କର ଦୋଷଗୁଡ଼ିକ ଦେଖ ଓ ଖୋଲା ଆଖିରେ ସେମାନଙ୍କର ଗୁଣଗୁଡ଼ିକ ନିରୀକ୍ଷଣ କର ଓ ସେହି ଗୁଣଗୁଡ଼ିକ ଶିକ୍ଷା କର । ସବୁ ବ୍ୟକ୍ତି ଓ ସବୁ ଜାତିଙ୍କ ଠାରେ ଅନୁକରଣ କରିବା ଯୋଗ୍ୟ ଅନେକଗୁଡ଼ିଏ ଗୁଣ ଅଛି । ମୋର ପୂର୍ବବର୍ତ୍ତୀ ବକ୍ତା ଉମର୍ ସାହେବ ମହୁମାଛି ଓ ପିମ୍ପୁଡ଼ିଙ୍କ ଉଦାହରଣ ଦେଇ ଯାହା କହିଅଛନ୍ତି, ସେଥିରୁ ଆପଣମାନେ ଦେଖିପାରିବେ ଯେ କ୍ଷୁଦ୍ର ପିପୀଲିକା ଓ ମଧୁମକ୍ଷିକାଙ୍କଠାରୁ ଆମ୍ଭମାନଙ୍କର ଅନେକ ଶିକ୍ଷା କରିବାର ବିଷୟ ଅଛି ।

"ସୂର୍ଯ୍ୟ ନିର୍ବିକାରଭାବରେ ସବୁଠାରେ କିରଣ ବିତରଣ କରୁଅଛନ୍ତି । ସମୁଦ୍ରର ଲୁଣିପାଣିରେ, ମିଶ୍ରି ସରବତ୍ତରେ, ନର୍ଦ୍ଦମାରେ, ସବୁ ସ୍ଥାନରେ ତାଙ୍କ କିରଣ ପଡ଼ୁଛି । କିନ୍ତୁ ଆପଣମାନେ ଦେଖନ୍ତୁ ଯେ ସୂର୍ଯ୍ୟଙ୍କର କିରଣ ବିଶୁଦ୍ଧ ଜଳତକ ଟାଣିନିଏ ଓ ମଇଳା, ଦୁର୍ଗନ୍ଧ, ପଙ୍କଗୁଡ଼ିକ ଛାଡ଼ିଯାଏ । ପୁଣି ସେ ବିଶୁଦ୍ଧ ଜଳ ବାଷ୍ପରୂପରେ ଟାଣିନିଏ ଓ ସେହିଗୁଡ଼ିକ ପୁନର୍ବାର ପୃଥିବୀରେ ସେଚନ କରେ । ଏଥିରୁ ଆମ୍ଭେମାନେ ଏହି ମହାଶିକ୍ଷା ପାଉଅଛୁଁ ଯେ ସବୁଠାରୁ ଦୋଷତକ ତ୍ୟାଗ କରି ଗୁଣଗୁଡ଼ିକ ଗ୍ରହଣ କର ।

"ପ୍ରତ୍ୟେକ ଲୋକର ହୃଦୟରେ ଯେତେବେଳେ ଜାତିର ଚିନ୍ତା ପ୍ରବେଶ କରିବ, ତେତେବେଳେ ଆମ୍ଭମାନଙ୍କ ମଧ୍ୟରେ ଜାତୀୟ ଜୀବନ ପ୍ରବେଶ କରିବ । ମୋର ଶରୀରର

ପ୍ରତ୍ୟେକ ରେଣୁ, ମୋର ମାନସିକ ଚିନ୍ତାର ପ୍ରତ୍ୟେକ ଚିନ୍ତା ସେହି ଜାତୀୟ ଜୀବନର ଏକ ଏକ ଅଂଶ । ତନ୍ତୀର ଅବସ୍ଥାକୁ ଉନ୍ନତ କରିବା ଜାତୀୟ ଜୀବନର ଉନ୍ନତି ଉପରେ ନିର୍ଭର କରୁଅଛି । କେତେଦିନ ପୂର୍ବେ କଲିକତାରେ ଜଣେ ଇଂରେଜଙ୍କ ଔଷଧ ଦୋକାନରେ ଜଣେ ଦେଶୀୟ ଲୋକ ପହଞ୍ଚିବାରୁ ଇଂରେଜ ପଚାରିଲେ, 'ବାଟରେ ଏତେ ଦୋକାନ ଡାକ୍ତରଖାନା ଅଛି; ସେଠାରୁ ନିଅନାହିଁ କାହିଁକି ?' ସେ ଦେଶୀୟ ଜଣକ ଉତ୍ତର କଲେ, 'ସେମାନେ ଠକନ୍ତି ।' ସେ ସାହେବ ମୋତେ ଇଂରେଜୀରେ ପଚାରିଲେ, 'Mr. Das, what became of your patriotism ?' ତୁମ୍ଭର ଜାତୀୟ ଜୀବନ କାହିଁ ? ତୁମ୍ଭେ ଜଣେ ଇଉରୋପୀଆନ୍‌କୁ ଦେଖି ଯାହା କରିବ ନାହିଁ, ତାହା କିନ୍ତୁ ନିଜ ଜାତି ସମକ୍ଷରେ କରିବ । ତୁମ୍ଭର ଜାତିପ୍ରତି ଘୃଣା ଥିବାରୁ ତୁମ୍ଭଠାରେ ଜାତୀୟ ଜୀବନ ଲେଶମାତ୍ର ନାହିଁ କହିବାକୁ ହେବ ।"

ବିଲାତର ଉନ୍ନତି ସମ୍ବନ୍ଧରେ ସେ କହିଲେ, "୧୮୪୦ ସାଲ ପର୍ଯ୍ୟନ୍ତ ବାଣିଜ୍ୟର ଅବସ୍ଥା ସନ୍ତୋଷଜନକ ନଥିଲା । ଜାତୀୟ ଜୀବନର ଉନ୍ନତି ଫଳରେ ୧୮୪୦ ଠାରୁ ୧୮୭୦ ପର୍ଯ୍ୟନ୍ତ ସନ୍ତୋଷଜନକ ହୋଇଥିଲା । ୧୮୭୦ ସାଲଠାରୁ ଆଜି ପର୍ଯ୍ୟନ୍ତ ଜାତୀୟ ଜୀବନର ବିକାଶ ସଙ୍ଗେ ସଙ୍ଗେ ତିରିଶ ବର୍ଷ ମଧ୍ୟରେ ବାଣିଜ୍ୟର ବିଶେଷ ଉନ୍ନତି ହୋଇଅଛି ।

"କଲିକତାରେ ଥିବା ଏକ ଇଂରେଜ ଜୋତା ଦୋକାନରେ ଜଣେ ସାହେବ ପହଞ୍ଚି ଦେଖିଲେ ଯେ ବିଦେଶୀୟ ( ବା ସ୍ୱଦେଶୀୟ ) ଜିନିଷ ଶସ୍ତା, ସ୍ୱଦେଶୀୟ ଜିନିଷ ମହଙ୍ଗା; କିନ୍ତୁ ଇଂରେଜ ବିଦେଶୀୟ ଜୋତା କିଣିଲେ ନାହିଁ । ମୁଁ ଦଶ ବର୍ଷ ପୂର୍ବେ ମନେକରିଥିଲି ଇଂରେଜୀ ଜୋତା ମୋ ଭାଗ୍ୟରେ କିପରି ନ ପଡ଼ୁ; କିନ୍ତୁ ଦଶ ବର୍ଷ ମଧ୍ୟରେ ମୁଁ ଦେଶୀ ଜୋତା ପିନ୍ଧିଅଛି । ଆମ୍ଭର ପ୍ରତିଜ୍ଞା କରିବା ଉଚିତ ଯେ 'ବିଦେଶୀୟ ଦ୍ରବ୍ୟ' କିଣିବା ପୂର୍ବରୁ ଟିକିଏ ଚିନ୍ତା କରିବା । ଯେତିକି କରିପାରିବ ସେତିକି କର । ଯେ କୌଣସି ବିଦେଶୀୟ ପଦାର୍ଥ ଏଠାରେ ପ୍ରସ୍ତୁତ କରିବା ଅସମ୍ଭବ ନୁହେଁ । ମୋର ପରାମର୍ଶ ଯେ ଗୋଟିଏ ଚିଜ ଧର । ଦଶ କୋଡ଼ିଏ ଜଣ ପ୍ରତ୍ୟେକ ଗ୍ରାମରୁ ଏକତ୍ରିତ ହୁଅ । ପ୍ରତିଜ୍ଞା କର, ଏକ ନମ୍ବର ସୂତା, ଏକ ରକମ ଧଡ଼ିର ଲୁଗା ପଖାଲକରି ଲୁଗା ସ୍ୱରୂପ ପିନ୍ଧିବ । ତନ୍ତୀ ବୁଣିବାକୁ ପ୍ରସ୍ତୁତ । ତାକୁ ଏଠାକୁ (କଟକକୁ) ପଠାଅ । ସେ ପାଞ୍ଚହାତ ବୁଣୁଥିଲେ ଏଠାରେ ୧୨-୧୫ ହାତ ବୁଣି ଶିଖିଯିବ । ସେ ଏଠାରୁ ଫେରିଲେ ସମସ୍ତେ ସେହି ଲୁଗା ପିନ୍ଧିବ । ଏଥିରେ ବର୍ତ୍ତମାନ ବାରଅଣା ଲାଭ ହେବ, ତନ୍ତୀ ଓ ଖରିଦଦାର ସମସ୍ତେ ସନ୍ତୁଷ୍ଟ ହେବେ । ୫୦ ଜଣ ଏକମନ ହୁଅ, ଏକ ପ୍ରତିଜ୍ଞା କର । ପ୍ରଥମେ ଘରେ ପିନ୍ଧିବା ଲୁଗା ପଖାଲକରିରେ ଆରମ୍ଭ କର । କ୍ଷୁଦ୍ର ସୀମାରେ କର । ସେଥିର ଆଦର ବୃଦ୍ଧି ହେଲେ ସେହି ତନ୍ତୀ ଅନ୍ୟ ପାଞ୍ଚଜଣଙ୍କୁ ଶିଖାଇବ । ସରୁ ଲୁଗା ନିମନ୍ତେ ଅନ୍ୟ ଗୋଟିଏ ତନ୍ତୀକୁ ନିଯୋଗ କର । ୫୦ ଜଣ ଦୃଢ଼ ପ୍ରତିଜ୍ଞା କରି ଗୋଟାଏ ଚିଜ ସମ୍ବନ୍ଧରେ ଚିନ୍ତା କର । ଯେବେ ପ୍ରତିଜ୍ଞା ଭଙ୍ଗ ହେବ, ତେବେ ଜାତୀୟ ଜୀବନରେ ଆଘାତ ଲାଗିବ । ଯେଉଁ ପ୍ରତିଜ୍ଞା

ପାଳନ କରିପାରିବ, ତାହା କର । ୧୦ ଜଣ ଏକାଠି ହୋଇ ଏକ ଧର୍ମର ପଖାଳକଣ୍ଠି ଚିନ୍ତ । ଉତ୍କଳ ଜନନୀ ଏହା ତୁମ୍ଭମାନଙ୍କୁ ମାଗୁଅଛନ୍ତି । ପ୍ରଥମେ ଘରେ ପିନ୍ଧିବା ଲୁଗା ଖଣ୍ଡିକ ଦେଶୀୟ ହେଉ । ଏ ବିଷୟର ସମଗ୍ର ବିବରଣ ସମ୍ମିଳନୀ ପକ୍ଷରୁ ଗ୍ରାମ୍ୟ ସମିତିକୁ ପ୍ରେରିତ ହେବ ।

"ପରିଶେଷରେ ମୋର ପ୍ରାର୍ଥନା ଏହି ଯେ, ଏକଜ ହେବାକୁ ଶିଖ, ଜୀବନର ସୀମା ବୃଦ୍ଧି କରିବାକୁ ଶିଖ । ପୁଷ୍କରିଣୀର ସ୍ଥିର ଜଳରେ ଢେଲାଟିଏ ପଡ଼ିଲେ ଢେଉ ଏକ ସ୍ଥାନରୁ ଉଠି କ୍ରମେ କ୍ରମେ ବିସ୍ତାର ହୁଏ । ଯଦି ତୁମ୍ଭ ଅନ୍ତଃକରଣ ଜାତୀୟ ଜୀବନପାଇଁ ଦିନେ କାନ୍ଦିଥାଏ, କି 'ମୋ ଜାତିର ଅଧୋଗତି ହୋଇଅଛି' ଏକଥା ଦିନେ ଯଦି ତାକୁ ବାଧିଥାଏ, ତେବେ ତୁମେ ସ୍ଥିର ହୋଇପାରିବ ନାହିଁ । ଏ ଦେଶର 'ଦାତା କର୍ଣ୍ଣ' ଗୋଟିଏ ନିଷ୍ଠାପର ଉଦାହରଣ । ମୁଁ ନିଜ ଚକ୍ଷୁରେ ଦେଖିଛି, ୭୦।୮୦ ବର୍ଷର ବୃଦ୍ଧ ଦୁବଘାସ କେରିଏ ନେଇ 'ଗୋରୁକୁ ଦେଲେ ପଛେ, ମୁଁ ଖାଇବି' ଏପରି କର୍ତ୍ତବ୍ୟ କର୍ମରେ ନିଷ୍ଠା ଥିଲା । ବର୍ତ୍ତମାନ ସୁଦ୍ଧା ଅଶିକ୍ଷିତଙ୍କ ମଧ୍ୟରେ ଏହାର ପ୍ରଚଳନ ଅଛି । ରାତ୍ରିରେ ଶୋଇବାବେଳ ପୂର୍ବରୁ ଆପଣାକୁ ପ୍ରଶ୍ନ ପଚାରିବ, 'ମୁଁ ଆଜି ଜାତୀୟ ଜୀବନ ସମ୍ବନ୍ଧରେ କଅଣ କରିଛି ।' ଜଣେ ଡେପୁଟିଙ୍କୁ ଦିନେ ପଚାରିଲି, ତୁମ୍ଭେ ଜାତୀୟ ଜୀବନ ସମ୍ବନ୍ଧରେ କଅଣ କରିଅଛ ? ସେ କହିଲେ, ମୋର ସମୟ ନାହିଁ । କହିଲି, ବାଟଘାଟ, କଚେରିରେ ଯାହାକୁ ଦେଖୁଛ ଓ ତୁମ୍ଭର ନିଜ ସ୍ତ୍ରୀକୁ ମଧ୍ୟ ଏ ସମ୍ବନ୍ଧରେ କିଛି କହିବାକୁ ସମୟ ପାଉନାହଁ କି ? ତୁମ୍ଭେ ସମସ୍ତେ ମନକୁ ପଚାର, ସ୍ତ୍ରୀକୁ କେବେ କହିଛ କି ତୋର ଜାତୀୟ ଜୀବନ ହେବା ଉଚିତ । ଏ ପିଲାମାନେ ଯେପରି ଜାତିର ଗୌରବ ବୃଦ୍ଧି କରିପାରନ୍ତି, ସେହିପରି ତୁ ତାଙ୍କୁ ବଢ଼ାଇବୁ ।' ଯେବେ ପ୍ରତ୍ୟେକ ଲୋକ ପ୍ରତିଦିନ ପାଞ୍ଚ ମିନିଟ ସମୟ ଏଥିରେ ବ୍ୟୟ କରନ୍ତି, ତେବେ ଦଶ ପନ୍ଦର ବର୍ଷ ମଧ୍ୟରେ ଜାତି ବଦଳିଯିବ ।"

ପୁଣି, ଜାତୀୟ ଜୀବନ ଓ ବ୍ୟକ୍ତିଗତ ଜୀବନ ସମ୍ବନ୍ଧରେ ମଧୁବାବୁ ୧୯୧୩ ମସିହା ଉତ୍କଳ ସମ୍ମିଳନୀର ନବମ ଅଧିବେଶନ (ପୁରୀ)ରେ ଆଲୋଚନା କରି ଏହାର ଗୁରୁତ୍ୱ ଉପଲବ୍ଧି କରିବାକୁ ନିବେଦନ କରିଥିଲେ ।

ଏହି ପ୍ରସଙ୍ଗରେ ସ୍ୱାର୍ଥପରତା ଓ ଦେଶସେବା ସମ୍ବନ୍ଧରେ ମଧ୍ୟ ମନ୍ତବ୍ୟ ଦେଇ ସେ କହିଥିଲେ, "ମୁଁ ବିଶ୍ୱାସ କରେ ନାହିଁ ଯେ ଈଶ୍ୱରଙ୍କ ଜଗତରେ କେହି ମନୁଷ୍ୟ ସ୍ୱାର୍ଥପର ହୋଇପାରେ । ଯେ ସ୍ୱାର୍ଥପର, ସେ ଈଶ୍ୱରଙ୍କ ଆଜ୍ଞା ଲଙ୍ଘନ କରିଅଛି । ଈଶ୍ୱର କାହାରିକୁ ସ୍ୱାର୍ଥପର ହେବାକୁ ଦିଅନ୍ତି ନାହିଁ । ଅତି କୃପଣକୁ ଲୋକେ ସ୍ୱାର୍ଥପର କହନ୍ତି, ମାତ୍ର ମୁଁ କହେଁ ସେ ସ୍ୱାର୍ଥହୀନ । ସେ ନିଜ ପାଇଁ ରଖୁନାହିଁ, ରଖୁଅଛି କେବଳ ପର ପାଇଁ । ଈଶ୍ୱର କହନ୍ତି, ତୁ ଖରଚ କଲୁ ନାହିଁ, ତୋ ପୁଅ ନାତି ଖରଚ କରିବେ । ଏକ ଉଦାହରଣ ଦେଇ ସେ ବୁଝାଇଥିଲେ—'ଘଣାରେ ବଳଦ ବୁଲୁଛି, ମାତ୍ର ତେଲ ଲଗାଏ ଆଉ

ଜଣେ ।' ମନୁଷ୍ୟର ବ୍ୟକ୍ତିଗତ ଜୀବନ ଓ ସମାଜ ସମ୍ବନ୍ଧରେ ମଧୁବାବୁଙ୍କ ଜ୍ଞାନ କେପରି ତୀକ୍ଷ୍ଣ ଓ ଗମ୍ଭୀର ଥିଲା, ତାହା ଏହି ଉପଦେଶ ଓ ଉଦାହରଣମାନଙ୍କରୁ ସ୍ପଷ୍ଟ ଜଣାପଡ଼ୁଛି । ସେ କେବଳ ଯେ ବାକ୍ୟବୀର ଥିଲେ ଏହା ନୁହେଁ, ସେ କର୍ମବୀର ଓ ତ୍ୟାଗବୀର ମଧ୍ୟ ଥିଲେ ।

ଜାତିର ସ୍ୱାର୍ଥ ସମ୍ବନ୍ଧରେ ସେ ଉଦାହରଣମାନ ଦେଇ ବହୁବାର ବୁଝାଉଥିଲେ । ବ୍ରହ୍ମପୁର ସମ୍ମିଳନୀରେ ମଧ୍ୟ ଏହା କହିଥିଲେ । ସ୍ୱାର୍ଥତ୍ୟାଗ ନ କଲେ ସମ୍ମିଳନୀ ବା ଜାତୀୟ କାର୍ଯ୍ୟ କରିବା ସମ୍ଭବ ନୁହେଁ, ଏହା ଉପରେ ସେ ବାରମ୍ବାର ଜୋର୍ ଦେଉଥିଲେ । "ଏ ସମ୍ମିଳନୀ ଜାତିର ସମ୍ମିଳନୀ ହେଲେ, କୌଣସି ଏକ ବ୍ୟକ୍ତିର ସୁନାମ, ଯଥା ମଧୁସୂଦନର ସୁନାମ ଆଉ ହୁଅନ୍ତା ନାହିଁ । ବର୍ତ୍ତମାନ ଏ ସମ୍ମିଳନୀର କାର୍ଯ୍ୟ ଯେ ଚଳାଇବେ ତାଙ୍କର ଏ ସମ୍ମିଳନୀକୁ ନିଜର ସନ୍ତାନରୂପେ ଜ୍ଞାନ କରିବା ଉଚିତ । ସମ୍ମିଳନୀ ବଡ଼ ହୋଇଗଲେ ବା ଜାତି ବଡ଼ ହୋଇଗଲେ ହୁଏତ ପିତାକୁ କେହି ପଗ୍ଭରିବେନାହିଁ ।" ସେ ଚୈତନ୍ୟ ଦେବ, ମିଲ୍ଟନ୍, ସେକ୍ସପିଅର ଓ କାଳିଦାସ ପ୍ରଭୃତିଙ୍କ ଉଦାହରଣ ଦେଇଥିଲେ । "ସନ୍ତାନ ବଡ଼ ହେଲେ, ଯୋଗ୍ୟ ହେଲେ, ହୁଏତ ସମାଜ ପିତାଙ୍କ କୋଳରୁ ତାକୁ ଛଡ଼ାଇ ନେବ । ଚୈତନ୍ୟଙ୍କୁ ତାଙ୍କର ପିତାମାତା ନିଜର ସନ୍ତାନ ପରି ପାଳିଥିଲେ; କିନ୍ତୁ ବର୍ତ୍ତମାନ ତାଙ୍କ ପିତାମାତାଙ୍କୁ କେହି ଜାଣନ୍ତି ନାହିଁ । ମାତ୍ର ଚୈତନ୍ୟ ବର୍ତ୍ତମାନ ଲକ୍ଷ ଲକ୍ଷ ଲୋକଙ୍କର । ଇତିହାସ ପାଠ କର, ସବୁ ଦେଶର ଏହି ନିୟମ । ମିଲ୍ଟନ୍ ଶେଷ କାଳକୁ ଅନାହାରରେ ପ୍ରାଣତ୍ୟାଗ କଲେ, ସେକ୍ସପିଅର ଥିଏଟରଯାତ୍ରୀଙ୍କ ଘୋଡ଼ା ଧରି ପେଟ ପୋଷୁଥିଲେ । ବର୍ତ୍ତମାନ ବିଲାତର ଲୋକେ କହନ୍ତି, ଆମର ମିଲ୍ଟନ୍ ଓ ଆମର ସେକ୍ସପିଅର । କାଳିଦାସ ପାଇଙ୍କି ବୋଲୁଥିଲେ । ତେତେବେଳେ କେହି କିଛି ନଥିଲେ; ମାତ୍ର ବର୍ତ୍ତମାନ କହୁଛନ୍ତି—ଆମର କାଳିଦାସ । ଏହା ଜାତିର ସ୍ୱାର୍ଥ ଅଟେ । ଯେ ସ୍ୱାର୍ଥ ତ୍ୟାଗ କରିବାକୁ ପ୍ରସ୍ତୁତ ନୁହେଁ, ସେ ବ୍ୟକ୍ତି ସମ୍ମିଳନୀରୁ ନାମ କଟାଇ ଗ୍ଭଲିଯିବା ଉଚିତ । ଭାର ନେଇ କଥା କହିଲେ ଚଳିବ ନାହିଁ । ଯେତିକି ପାରିବ ସେତିକି ଭାର ନିଅ ।" ଗଞ୍ଜାମରେ ଚଉଦଟି ଜମିଦାରୀର ରାଜା ସମ୍ମିଳନୀର ଆଗାମୀ ବର୍ଷର ସମସ୍ତ ବ୍ୟୟ ବହନ କରିବାକୁ ପ୍ରସ୍ତୁତ ଥିବା ଘୋଷଣା କରିଥିବାରୁ ମଧୁବାବୁ ଧନ୍ୟବାଦ ଦେଇ କହିଥିଲେ, "ଯେ ପୁଅକୁ ଖୁଆଇ ପିଆଇ ଉତ୍କଳ ମାତାଙ୍କ କୋଳରେ ଦେବ, ସେ ସୁପୁତ୍ର ।"

(ଉତ୍କଳ ସମ୍ମିଳନୀ କାର୍ଯ୍ୟ ବିବରଣୀ)

ମଧୁବାବୁ ଉତ୍କଳ ସମ୍ମିଳନୀର ଜନ୍ମଦାତା । ସେ ଅଶେଷ ତ୍ୟାଗ ସ୍ୱୀକାର କରି ସମ୍ମିଳନୀରୂପକ ପୁତ୍ରକୁ ଲାଳନ ପାଳନ କରି ବଢ଼ାଇଥିଲେ । ଏବେ ସମ୍ମିଳନୀ ପୁଅ ବଡ଼ ହୋଇଯିବାରୁ ତାଙ୍କ କୋଳରୁ ଜାତି ଛଡ଼ାଇ ନେଲା । ତାଙ୍କର ଲାଳନ ପାଳନରେ ବର୍ଦ୍ଧିତ ପୁତ୍ରରୂପକ ଉତ୍କଳ ସମ୍ମିଳନୀଟି ତାଙ୍କର ଜାତିକୁ ସର୍ବୋଚ୍ଚ ଅମର ଦାନ । ସେ ବ୍ୟକ୍ତିକୁ

ଜଳାଞ୍ଜଳି ଦେଇଛନ୍ତି । ତାଙ୍କ 'ପୁତ୍ର' ଜାତି ସେବାରେ ଲାଗିଛି, ଏହା ହିଁ ତାଙ୍କ ଆନନ୍ଦ ।

କାଳିଦାସ, ଚୈତନ୍ୟ, ମିଲ୍ଟନ୍, ସେକ୍ସପିଅରଙ୍କ ଉଦାହରଣ ଦେଇ ସେ ଯେଉଁ ମତ ବ୍ୟକ୍ତ କରିଛନ୍ତି, ତାହା କେତେକାଂଶରେ ତାଙ୍କପ୍ରତି ମଧ୍ୟ ପ୍ରଯୁଜ୍ୟ । ସେ ଜାତି ପାଇଁ ବହୁ କାର୍ଯ୍ୟ, ଶ୍ରମ ଓ ଅର୍ଥ ଦାନ କରିଥିଲେ । ବୃଦ୍ଧାବସ୍ଥାରେ ସେ ଆର୍ଥିକ ଦୁର୍ଗତିରେ ପଡ଼ି ଜୀବନ ଯାପନ କରୁଥିଲେ । ସେ କିପରି ଚଳୁଛନ୍ତି, ଏହା କେହି ପଚାରି ନଥିଲେ । କିନ୍ତୁ ସେ ମଲାପରେ ଜାତି କହୁଛି, "ମଧୁବାବୁ ଅମର !"

ଉତ୍କଳ ସମ୍ମିଳନୀର କାର୍ଯ୍ୟରେ ସନ୍ତୋଷଜନକ ଅଗ୍ରଗତି ହେଉନଥିବା ଦେଖି ମଧୁବାବୁଙ୍କ ମନରେ ଗଭୀର ଦୁଃଖ ଜାତ ହେଉଥିଲା । ୧୯୦୬ରେ ବାଲେଶ୍ୱରର ଅଧିବେଶନରେ ମଧୁବାବୁ 'ସମ୍ବଲପୁର ମିଶ୍ରଣରେ ଆନନ୍ଦ ପ୍ରକାଶ' ପ୍ରସ୍ତାବ ଉପରେ ଭାଷଣଦେଇ ଦୁଃଖଭରା ପ୍ରାଣରେ କହିଥିଲେ, "ଉତ୍କଳ ସମ୍ମିଳନୀର ଦୁରବସ୍ଥା ଦେଖି ମୋ ମନରେ ଯେପରି ଦୁଃଖ ଜାତ ହୋଇଅଛି, ମୋର ପୁତ୍ରକଷ୍ଟ ହୋଇଥିଲେ ମୋ ମନରେ ସେପରି ଦୁଃଖ ହୁଅନ୍ତା ନାହିଁ । ସମ୍ମିଳନୀ ତିନି ବର୍ଷହେଲା ସ୍ଥାପିତ ହୋଇଅଛି, କିନ୍ତୁ ଏପର୍ଯ୍ୟନ୍ତ କୌଣସି କାର୍ଯ୍ୟ କରିବାକୁ କ୍ଷମ ହୋଇନାହିଁ । ବର୍ତ୍ତମାନ ତାର ଶୈଶବାବସ୍ଥା । ଏ ଅବସ୍ଥାରେ ବିଶେଷ କାର୍ଯ୍ୟ ଯଦିଚ ଆଶା କରାଯାଏ ନାହିଁ, ତଥାଚ ତାମସା ଦେଖିବା ବ୍ୟତୀତ ଉତ୍କଳୀୟମାନଙ୍କର ସମ୍ମିଳନୀର ଉଦ୍ଦେଶ୍ୟ ସାଧନରେ ବ୍ରତୀ ହୋଇ ଅନ୍ତରର ସହିତ ଚେଷ୍ଟା କରିବା ଉଚିତ ଥିଲା । ପ୍ରତି ଅଧିବେଶନରେ ଶତ ଶତ, ସହସ୍ର, ସହସ୍ର ଲୋକେ କେବଳ ତାମସା ଦେଖିବା ନିମନ୍ତେ ଉପସ୍ଥିତ ହୁଅନ୍ତି ଏବଂ ମୁଁ ସେହି ତାମସା ଦେଖିଅଛି; କିନ୍ତୁ କିଛି କରିପାରିନାହିଁ । ମୁଁ ଉତ୍କଳ ଜନନୀର କୁପୁତ୍ର, ମୋଦ୍ୱାରା କିଛି ହୋଇପାରିବ ନାହିଁ । ସମସ୍ତଙ୍କର ଧାରଣା ଯେ ଉତ୍କଳ ସମ୍ମିଳନୀ ମଧୁବାବୁଙ୍କର, କିନ୍ତୁ ତାହା ସହିତ ମୋର ବିଶେଷ କିଛି ସମ୍ପର୍କ ନାହିଁ । ଆପଣମାନଙ୍କ ସହିତ ସମ୍ମିଳନୀର ଯେପରି ସମ୍ପର୍କ, ମୋ ସହିତ ସେହିପରି ସମ୍ପର୍କ । ଏହି ସମ୍ମିଳନୀ ପ୍ରତ୍ୟେକ ଉତ୍କଳୀୟଙ୍କର, ଏପରି ମନେ କରିବା ଉଚିତ । ଯେପର୍ଯ୍ୟନ୍ତ ସେ ଧାରଣା ହୋଇନାହିଁ, ସେ ପର୍ଯ୍ୟନ୍ତ ସମ୍ମିଳନୀର ଉଦ୍ଦେଶ୍ୟ ସାଧିତ ହେବନାହିଁ ।

ଉତ୍କଳର ଶୋଚନୀୟ ଅବସ୍ଥାକୁ ଲକ୍ଷ୍ୟକରି ଉଦାହରଣ ଦେଇ ସେ କହିଥିଲେ— "ଉତ୍କଳ ଜନନୀର ତିନିପୁତ୍ର ମଧ୍ୟରୁ ତାହାର ପୀଡ଼ା ସମୟରେ ଦୁଇପୁତ୍ର ମୃତ୍ୟୁଶଯ୍ୟା ପାଖରେ ଉପସ୍ଥିତ । ଅନ୍ୟ ଏକ ପୁତ୍ର (ଗଞ୍ଜାମବାସୀ) ଅନେକ ଦୂରରେ ଥିବାରୁ ଜନନୀ ତାହାକୁ ପାଖରେ ନ ଦେଖି ବିଶେଷ କଷ୍ଟବୋଧ କରୁଅଛି । ସେହି ଦୂରବର୍ତ୍ତୀ ପୁତ୍ର ମାତୃସେବା କରି ନପାରି ମଧ୍ୟ ବିଶେଷ ଦୁଃଖିତ । ମାତା ପୀଡ଼ିତା ହେଲେ ଦୁଇ ତିନି ବର୍ଷର ଶିଶୁ ମୁଖରେ ତଜ୍ଜନିତ ଦୁଃଖ ପ୍ରତିଭାତ ହୋଇଥାଏ । ବର୍ତ୍ତମାନ ଉତ୍କଳ-ଜନନୀର ସେହି

ଅବସ୍ଥା । ଜନନୀ ବିପଦଗ୍ରସ୍ତା, ପାଖରେ ଦୁଇପୁତ୍ର ମିଳିତ, ମାତ୍ର ଏକ ପୁତ୍ର ବହୁ ଦୂରରେ ଅଛୁ, ଆସି ପାରିନାହିଁ । ମୃତ୍ୟୁଶଯ୍ୟାରେ ଏକ ପୁତ୍ରକୁ ନ ଦେଖି ଜନନୀ ମନରେ କିପରି ଦୁଃଖ ଜାତ ହୁଏ, ତାହା ସହଜରେ ଅନୁମେୟ । ଉତ୍କଳ-ଜନନୀ ଯେ ସେଥି ନିମନ୍ତେ ବିଶେଷ ଦୁଃଖିତ, ସନ୍ଦେହ ନାହିଁ । ଯେ ପୁତ୍ର ମାତା ପାଖକୁ ଆସି ସେବା, ଶୁଶ୍ରୂଷା କରି ଜୀବନ ଚରିତାର୍ଥ କରିବା ନିମନ୍ତେ ବିଶେଷ ଚେଷ୍ଟା କରୁଅଛୁ । ତିନିପୁତ୍ର ଏକତ୍ର ନହେଲେ ଶୁଶ୍ରୂଷା ସମ୍ପୂର୍ଣ୍ଣ ହେବନାହିଁ । ଜନନୀ ପାଖରେ ତିନିଜଣଙ୍କର ଯେ ଏକ ସମୟରେ ସମ୍ମିଳନ ହେବ, ଏପରି ଆଶା କରୁଁ ।"

**ଉତ୍କଳ ସମ୍ମିଳନୀର ଅର୍ଥ :** ପୁରୀଠାରେ ୧୯୦୮ରେ ଉତ୍କଳ ସମ୍ମିଳନୀର ୫ମ ଅଧିବେଶନ ଅନୁଷ୍ଠିତ ହୋଇଗଲା । ସେଠାରେ ମଧୁବାବୁ ଯୋଗଦେଇଥିଲେ । ଉତ୍କଳ ସମ୍ମିଳନୀର ଶାଖାସ୍ୱରୂପ 'ଗ୍ରାମ ସମିତି ଗଠନ ସମ୍ପର୍କୀୟ ପ୍ରସ୍ତାବ' ଉପରେ ଭାଷଣ-ଦେଇ ମଧୁବାବୁ କହିଥିଲେ, "ଉତ୍କଳ ସମ୍ମିଳନୀ ତୁମ ଆମ ଛଡ଼ା ଆଉ କିଛି ନୁହେଁ । ଯେତେବେଳେ ଉତ୍କଳଭାଷୀ ଓ ଉତ୍କଳବାସୀମାନେ ଏକାଠି ହେଉ ତାହା ହିଁ ସମ୍ମିଳନୀ ।"

ସଭାପତି ଓ କେତେ କେତେ ବକ୍ତା ସମ୍ମିଳନୀ ୫ ବର୍ଷ ବୟସରେ ପହଞ୍ଚିବାରୁ ଆନନ୍ଦ ପ୍ରକାଶକରି ପରମ୍ପରା ଅନୁସାରେ ସେହି ବର୍ଷଟି ସମ୍ମିଳନୀ ଶିଶୁର ବିଦ୍ୟାରମ୍ଭ ବୋଲି କହିଥିଲେ ଏବଂ ସମ୍ମିଳନୀର ପ୍ରଥମ ଦିନଟି 'ବିଦ୍ୟାରମ୍ଭ ଦିନ' ବୋଲି ଅଭିହିତ କରିଥିଲେ ।

ମଧୁବାବୁ ଏହି ଆନନ୍ଦଦାୟକ ମନ୍ତବ୍ୟକୁ ଉଲ୍ଲେଖକରି ଉତ୍କଳର ପ୍ରାଚୀନ ଗୌରବର କାହାଣୀ ବର୍ଣ୍ଣନା କରିଥିଲେ । ସେ କହିଥିଲେ—"ଉତ୍କଳର ଗୌରବ କଥା ମନେପଡ଼ିଲେ ଗାତ୍ର ଫୁଲିଉଠେ; କିନ୍ତୁ ବର୍ତ୍ତମାନ ଅବସ୍ଥା କଣ ? ଏହାର ଉତ୍ତର ସେ ନିଜେ ପ୍ରଦାନ କରିଥିଲେ—"ବର୍ତ୍ତମାନ ଅବସ୍ଥା ଏହି ଯେ ଉତ୍କଳବାସୀ ସମସ୍ତଙ୍କର ଘୃଣାର୍ହ ହୋଇଅଛନ୍ତି, ଅତୀତର କଥା ସ୍ମରଣକଲେ ଆମ୍ଭେମାନେ ନିଜେ ନିଜକୁ ଘୃଣାକରିବୁ ।"

ଅତୀତର କଥାକୁ ପୁଣି ସ୍ମରଣ କରାଇଦେଇ ସେ କହିଲେ, "ବଡ଼ଦେଉଳ ବାଲିରେ ପୋତି ହୋଇଯାଇଥିଲା । ରାଜାଙ୍କ ଘୋଡ଼ା ଟାପୁ ବାଜିବାରୁ ରାଜା ତାକୁ ପୁନରୁଦ୍ଧାର କରିଥିଲେ । ଏହି ସ୍ଥାନରେ ବଡ଼ଦେଉଳକୁ ଘୃଣି 'ଜାତିର ପୁନରୁଦ୍ଧାର କର' ଏହା ଆମ୍ଭମାନଙ୍କର ବୀଜମନ୍ତ୍ର ହେବା ଆବଶ୍ୟକ । ଜାତୀୟ ଜୀବନରେ ଏହି କଥାକୁ ବୀଜମନ୍ତ୍ର କରି ଜପ । ଯେଉଁ ପୂର୍ବପୁରୁଷମାନେ ଏହି କୀର୍ତ୍ତି କରିଥିଲେ, ସେହିମାନଙ୍କର ରକ୍ତ ମୋ ଶରୀରରେ ଅଛି; କିନ୍ତୁ ତଦନୁସାରେ ମୁଁ କାର୍ଯ୍ୟ କରୁଅଛି କି ନା ଏହା ସମସ୍ତେ ଭାବିବା ଉଚିତ । ଭାଇ, ମୁଁ ଏଠାରେ ଗୋଟିଏ ଦୃଷ୍ଟାନ୍ତ ଦେଉଛି । ଗୋଟିଏ ଭଲ ଜାତି ଡାହାଲ କୁକୁର ଛୁଆକୁ ଆଣ । ଗୋଟିଏ ବାଘକୁ ତାକୁ ଦେଖାଅ । ତାର ବାଘକୁ ମାରିପକାଇବାକୁ ବଳ ଥାଉ ବା ନଥାଉ, ସେ ବାଘକୁ କାମୁଡ଼ିବାକୁ ଦୌଡ଼ିବ । ଭାଇ, ତାକୁ ପଚାର 'ତୁ ତ

ପିଲାଟିଏ, ବାଘକୁ ମାରି ପାରିବୁ ବୋଲି ଦୌଡ଼ୁଛୁ ?' ସେ ଉତ୍ତର ଦେବ 'ମୁଁ ଜାଣିଛି ଯେ ମୁଁ ବାଘକୁ କାମୁଡ଼ି ପାରିବି ନାହିଁ; କିନ୍ତୁ ମୁଁ ମୋ ଜାତିର ନାମକୁ ବୁଡ଼ାଇବି ନାହିଁ !'

"ଯେଉଁ ଜାତି ବଡ଼ଦେଉଳ, ଭୁବନେଶ୍ୱର ଓ ଅନ୍ୟାନ୍ୟ ଶିଳ୍ପକାର୍ଯ୍ୟମାନ କରିଥିଲେ, ସେହି ଜାତିର ରକ୍ତ ଆମ୍ଭ ଦେହରେ ଅଛି କି ? ବିଦ୍ୟାରମ୍ଭ ସମୟରେ ଏହି କଥା ଭାବ, 'ନିଜ ଜାତୀୟ ଜୀବନ ଆପଣା ଦେହରେ ଅଛି କି ନାହିଁ ?' ଯେବେ ନ ଥାଏ, ସେ କିପରି ହେବ ଚେଷ୍ଟାକର । ଜାତୀୟ ଜୀବନ ବ୍ୟକ୍ତିଗତ ଜୀବନରୁ ପୃଥକ୍ । 'ଜାତିପାଇଁ ବାଟରେ ଭିକ୍ଷାକରି ମରିବି' ଏହିପରି ପଣ ନ କରିବା ପର୍ଯ୍ୟନ୍ତ ଜାତୀୟ ଜୀବନର ସଞ୍ଚାର ହେବନାହିଁ । ବ୍ୟକ୍ତିଗତ ଜୀବନ ସ୍ୱାର୍ଥପର । ସ୍ୱାର୍ଥପରତା ଯେତେ ବୃଦ୍ଧି ହେବ, ଜାତୀୟଜୀବନ ତେତିକି କମିବ । ସ୍ୱାର୍ଥପରତା ଯେତେ କମିଯିବ ଜାତୀୟ ଜୀବନ ସେତିକି ବୃଦ୍ଧି ହେବ ।

"ମୋ ପିତାମହୀ ସତୀ ଥିଲେ । ସେ କିପରି ନ୍ୟାୟରେ ବଢ଼ିଥିଲେ ସେ କଥା ମୋତେ ଅନେକଥର କହିଥିଲେ । କୌଣସି କୌଣସି ଲୋକ ମୋତେ ସମୟ ସମୟରେ କହନ୍ତି, 'କାହିଁକି ଏ କାମ କରୁଛ ? ଅମୁକ ଚିଡ଼ିବେ ଯେ ।' ସେତେବେଳେ ମୋର ମନେହୁଏ ମୋ ପିତାମହୀଙ୍କ ରକ୍ତ ମୋ ଦେହରେ ବହୁଛି । ମୁଁ ସେ ରକ୍ତ କଳୁଷିତ କରିବି ନାହିଁ । ସେହିପରି ସମସ୍ତେ ଚିନ୍ତାକର, ପୂର୍ବପୁରୁଷଙ୍କ ରକ୍ତ କଳୁଷିତ କରିବନାହିଁ । ଆମ୍ଭେମାନେ ସମସ୍ତଙ୍କୁ ଭାଇ ବୋଲି ସମ୍ବୋଧନ କରୁଅଛୁ । ତାହାର ଅର୍ଥ ଏହି ଯେ, ମୋ ଭାଇ ଯେଉଁ ମାତାଙ୍କ ରକ୍ତମାଂସରେ ଗଠିତ, ମୁଁ ସେହି ରକ୍ତମାଂସରେ ଗଠିତ । ସମସ୍ତେ ଭାରତ ସନ୍ତାନ । ସମସ୍ତେ ଏକ ରକ୍ତମାଂସ ସମ୍ଭୂତ । ଯେତେବେଳେ ଏ ଜ୍ଞାନ ହେବ, ତେତେବେଳେ ଜାତୀୟ ଜୀବନର ଅଭାବ ରହିବ ନାହିଁ । ଉତ୍କଳର ଅସ୍ତମିତ ଗୌରବର ବିଷୟ ଥରେ ଚିନ୍ତାକର । ଯେତେବେଳେ ଶିଶୁ ସ୍ତନ୍ୟପାନ କରୁଥାଏ, ତେତେବେଳେ ବିଶ୍ୱାସପୂର୍ଣ୍ଣ ନୟନରେ ମାତାର ମୁଖ ପ୍ରତି ଦୃଷ୍ଟି କରିଥାଏ । ଏହିଠାରେ ଆମ୍ଭେମାନେ ଉତ୍କଳ-ଜନନୀ ତଥା ଭାରତ-ଜନନୀର କ୍ରୋଡ଼ରେ ବସିଥାଉଁ । ସମସ୍ତେ ଏଇ କଥା ଭାବ ଓ ପ୍ରତିଜ୍ଞା କର ଯେ, ଯେଉଁ ଉତ୍କଳ-ଜନନୀ ମୋତେ ଜନ୍ମ ଦେଇଅଛନ୍ତି, ତାଙ୍କ ସକାଶେ ଏହି ସଭାରେ ଦୃଢ଼ ପ୍ରତିଜ୍ଞା କରୁଅଛି ଯେ 'ମୁଁ ପ୍ରତିଦିନ ପାଞ୍ଚ ମିନିଟ ସମୟ ଦେଶର କଥା ଭାବିବି ଏବଂ ସମ୍ମିଳନୀ ନିମନ୍ତେ, ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ, ଅନ୍ତତଃ ପାଞ୍ଚ ମିନଟ୍ ସମୟ ବ୍ୟୟ କରିବି ।' ଏ ମନ୍ତ୍ର ସମସ୍ତେ ମୁହଁରେ ପାଠ କରି କହ । ଏହା ସମ୍ମିଳନୀର 'ବିଦ୍ୟାରମ୍ଭ' ।"

ସଭାରେ ଉପସ୍ଥିତ ଥିବା ଉତ୍କଳୀୟମାନେ ଦଣ୍ଡାୟମାନ ହୋଇ ଉଚ୍ଚସ୍ୱରରେ ଏହି ବିଦ୍ୟାରମ୍ଭ ମନ୍ତ୍ର ପାଠକରିଥିଲେ । ମଧୁବାବୁ ଅବଧାନ ସ୍ୱରୂପ ଉକ୍ତ ମନ୍ତ୍ର ପାଠକରାଇଥିଲେ । ସମ୍ମିଳନୀରେ ବିଶେଷ ଆନନ୍ଦଧ୍ୱନି ପ୍ରକାଶ ପାଇଥିଲା । ମଧୁବାବୁଙ୍କଠାରେ ଏହି ବୃଦ୍ଧ ବୟସରେ ମଧ୍ୟ ପୂର୍ବର ସେହି ତେଜ ଓ ନେତୃତ୍ୱର ପରିଚୟ ମିଳିଥିଲା । ମଧୁବାବୁଙ୍କର 'ଜାତି ପାଇଁ ପାଞ୍ଚ ମିନିଟ ଚିନ୍ତାକର' ମିନତିଟି ଉତ୍କଳର ପୁରପଲ୍ଲୀରେ, ପ୍ରତ୍ୟେକ ଗୃହରେ

ସେତେବେଳେ ପ୍ରବେଶ କରିଥିଲା । ବାରମ୍ବାର ଏହି ମନ୍ତ୍ରର ଉଚ୍ଚାରଣ ଜାତୀୟତା ପ୍ରଚାରର କ୍ଷେତ୍ରରେ ବିଶେଷ ସାହାଯ୍ୟ କରିଥିଲା । ଏ ପ୍ରକାର ଜାତୀୟ ମନ୍ତ୍ର ସବୁଦିନେ ବଞ୍ଚିରହିଥିବା ଦେଖାଯାଏ ନାହିଁ । ଉତ୍କଳର ପରବର୍ତ୍ତୀ ସମୟରେ ଏହାର ଆଚରଣରେ ଶିଥିଳତା ଦେଖାଦେଇଥିଲା ।

**ବିହାର ଛାତ୍ର ସମ୍ମିଳନୀ**—ଖ୍ରୀ: ୧୯୧୯ରେ ବିହାର ଛାତ୍ର ସମ୍ମିଳନୀର ଏକ ଅଧିବେଶନ ବିହାର ଅଞ୍ଚଳର ମୋତିହାରୀଠାରେ ଅନୁଷ୍ଠିତ ହେବା ସ୍ଥିର ହୋଇଥିଲା । ସେତେବେଳେ ବିହାରର ଉଦୀୟମାନ ନେତା ବାବୁ ରାଜେନ୍ଦ୍ର ପ୍ରସାଦ କଲିକତାରେ ମଧୁବାବୁଙ୍କ ସହିତ ଦେଖାକରି ସଭାପତି ହେବା ନିମନ୍ତେ ଅନୁରୋଧ କରିଥିଲେ । ଏହି ବର୍ଷ ଶେଷଆଡ଼କୁ ଏହି ଛାତ୍ର ସମ୍ମିଳନୀର ଅଧିବେଶନ ମଧୁବାବୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁଙ୍କ ଅଭିଭାଷଣକୁ ସର୍ବଶ୍ରେଣୀର ବିଶିଷ୍ଟ ଭଦ୍ରବ୍ୟକ୍ତି ଓ ଛାତ୍ରମାନେ ପସନ୍ଦ କରିଥିଲେ । ଭାଷଣଟି ଉଚ୍ଚକୋଟୀର ହୋଇଥିଲା ଏବଂ ଭାରତର ବିଭିନ୍ନ ଅଞ୍ଚଳର ପତ୍ରପତ୍ରିକାମାନଙ୍କରେ ମୌଳିକ ଚିନ୍ତା ଓ ନିର୍ଭୀକ ମତ ସକାଶେ ପ୍ରଶଂସିତ ହୋଇଥିଲା ।

ବିହାର ଓ ଓଡ଼ିଶା ମିଶି ଏକ ପ୍ରଦେଶ ଗଠିତ ହେବାପରେ ବିହାରୀ ଓ ଓଡ଼ିଆମାନଙ୍କ ଭିତରେ ସଦ୍‌ଭାବ ଆଣିବାପାଇଁ ଉଭୟ ସମ୍ପ୍ରଦାୟର ନେତାମାନେ ଚେଷ୍ଟାକରିଥିଲେ । ଏଥିରେ ବିହାରର ଶ୍ରୀ ସଚ୍ଚିଦାନନ୍ଦ ସିଂହ, ସୁଲ୍‌ତାନ୍ ଆହମଦ୍ ଓ ଓଡ଼ିଶାର ମଧୁସୂଦନ ଦାସ ଓ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ ପ୍ରଭୃତି ନେତାମାନେ ଏ ଦିଗରେ ବିଶେଷ କାର୍ଯ୍ୟ କରିଥିଲେ । ମଧୁବାବୁ ଜଣେ ସୁବକ୍ତା, ଉଚ୍ଚକୋଟୀର ରାଜନୀତିଜ୍ଞ, ନିର୍ଭୀକ ନେତା, ଉଚ୍ଚଶିକ୍ଷିତ ଓ ସର୍ବୋପରି ସେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ସର୍ବମାନ୍ୟ ନେତା ଥିବାରୁ ତାଙ୍କୁ ବିହାର ଛାତ୍ରସମାଜ ସଭାପତିରୂପେ ବରଣ କରିଥିଲେ । ଓଡ଼ିଶା ଛାତ୍ରସମାଜର ସଂଗଠନ ଓ ଉନ୍ନତି ପାଇଁ ମଧୁବାବୁ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ଥିଲେ । ବିହାରୀ ଛାତ୍ରମାନେ ଉତ୍କଳ ଛାତ୍ରସମାଜର ଏହି ପୃଷ୍ଠପୋଷକଙ୍କୁ ନିଜର ସମ୍ମିଳନୀର ସଭାପତିରୂପେ ବରଣକରି ଉଚ୍ଚକୋଟୀର ଭ୍ରାତୃଭାବର ପରିଚୟ ଦେଇଥିଲେ ।

ସଭାପତି ଅଭିଭାଷଣରେ ମଧୁବାବୁ ଦେଶର ସାଧାରଣ ଅବସ୍ଥାର ଏକ ସୁନ୍ଦର ବିଶ୍ଳେଷଣ ପ୍ରଦାନକରି ଛାତ୍ରମାନେ ସମାଜ ଓ ଦେଶ ଗଠନରେ ବିଶେଷ ଭାଗ ନିଅନ୍ତୁ ବୋଲି ନିବେଦନ କରିଥିଲେ ।

ଏହି ଅଭିଭାଷଣରେ ମଧୁବାବୁ ବିଭିନ୍ନ ବିଷୟରେ ନିଜର ମତ ବ୍ୟକ୍ତ କରିଛନ୍ତି । ପୂର୍ବରୁ ବହୁ ସ୍ଥାନରେ ମଧ୍ୟ ସଭାସମିତିରେ ଏସବୁ ପ୍ରକାଶ କରିଥିଲେ ।

ନବଗଠିତ ପ୍ରଦେଶର ଅପ୍ରମାରମ୍ଭ ଅବସ୍ଥାରେ ଓଡ଼ିଶାର ବିଶିଷ୍ଟ ନେତାଙ୍କୁ ବିହାରୀ ଛାତ୍ରମାନେ ସଭାପତିରୂପେ ବରଣ କରିଥିବାରୁ ଉଭୟ ଅଞ୍ଚଳର ପାରସ୍ପରିକ ସ୍ନେହ ଓ

ଭ୍ରାତୃଭାବ ସବୁକ୍ଷେତ୍ରରେ ପ୍ରସାର ଲାଭ କରିବ ବୋଲି ଓଡ଼ିଆ ଓ ବିହାରୀ ଉଭୟ ଜାତିର ଲୋକେ ଆଶା କରିଥିଲେ ।

ବ୍ରିଟିଶ ରାଜତ୍ୱଦ୍ୱାରା ଭାରତ କିପରି ଉପକୃତ ହୋଇଛି, ତାହା ବର୍ଣ୍ଣନା କରି ମଧୁବାବୁ ଅଭିଭାଷଣ ଆରମ୍ଭ କରିଥିଲେ । ସେ କହିଥିଲେ, "ବ୍ରିଟିଶ ଭାରତର ଇତିହାସରେ ସର୍ବାପେକ୍ଷା ପ୍ରଧାନ ଘଟଣା ହେଉଛି, ମହାମହିମ ଭାରତସମ୍ରାଟ ପଞ୍ଚମ ଜର୍ଜଙ୍କ ଭାରତକୁ ଆଗମନ । ଭାରତୀୟମାନେ ସମ୍ରାଟଙ୍କୁ ଭଗବାନଙ୍କ ଅବତାର ବୋଲି ଭାବନ୍ତି । ଭାରତର କୋଟି କୋଟି ଜନତା ସାଂବିଧାନିକ ସରକାର କଣ ତାହା ଆଦୌ ବୁଝିପାରିବେ ନାହିଁ । ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ହାତରୁ ଭାରତ ବ୍ରିଟିଶ ସମ୍ରାଟଙ୍କ ଅଧୀନକୁ ଚାଲିଯିବା ସମୟରୁ ଭାରତୀୟମାନେ ସମ୍ରାଟଙ୍କୁ ଦେଖିବାପାଇଁ ଇଚ୍ଛା କରୁଥିଲେ । ଶେଷରେ ଭଗବାନ ସେମାନଙ୍କ ପ୍ରାର୍ଥନା ଗ୍ରହଣକଲେ । ଚନ୍ଦ୍ର ଉଦୟ ହେବାକ୍ଷଣି ସମୁଦ୍ର କୋଟି କୋଟି ଲହରୀରେ ଉପରକୁ ଉଠି ଯେପରି ତାକୁ ଅଭିବାଦନ କରେ ସେହିପରି ଭାରତର କୋଟି କୋଟି ହୃଦୟ ଉଠି ତାଙ୍କର ଆଦରଣୀୟ ସମ୍ରାଟଙ୍କୁ ଅଭିନନ୍ଦନ କରିଅଛନ୍ତି । ଯେତେବେଳେ ଭାରତର ରାଜନୈତିକ ଦିଗ୍‌ବଳୟରେ ସ୍ଥାନେ ସ୍ଥାନେ ମେଘଖଣ୍ଡ ଦେଖାଯାଉଥିଲା, ସେତିକିବେଳେ ସମ୍ରାଟ ଏଠାକୁ ଆସିଥିଲେ । ସେତେବେଳେ ଦିଗ୍‌ବଳୟର ଏହି ମେଘପୁଞ୍ଜକୁ ଦେଖି ଏହା ଭବିଷ୍ୟତରେ ବାତ୍ୟାର ଆଗମନର ସଙ୍କେତ ବୋଲି ଲୋକେ ଭାବୁଥିଲେ; କିନ୍ତୁ ସୂର୍ଯ୍ୟ ଉଦୟହେଲେ ଯେପରି ତାଙ୍କର କିରଣଦ୍ୱାରା ମେଘ ଅପସରି ଯାଏ ଏବଂ ନୀଳଆକାଶ ନିର୍ମଳ ହୋଇଯାଏ, ସେହିପରି ସମ୍ରାଟଙ୍କ ଆଗମନଯୋଗୁଁ ଭାରତୀୟ ରାଜନୈତିକ ଆକାଶରୁ ଏହି ମେଘ ଅପସରିଯାଇଛି ଏବଂ ଦେଶରେ ଶାନ୍ତି ବିରାଜିଛି । ଏହା ସମ୍ରାଟଙ୍କ ପକ୍ଷରେ ଏକ ଗୌରବମୟ କୀର୍ତ୍ତି । ଉପଯୁକ୍ତ ପିତାର ଉପଯୁକ୍ତ ଉତ୍ତରାଧିକାରୀରୂପେ ସେ ଏହା କରିପାରିଛନ୍ତି । ତାଙ୍କ ପିତା ସପ୍ତମ ଏଡ଼ୱାର୍ଡ଼ 'ୟୁରୋପରେ ଶାନ୍ତିପ୍ରତିଷ୍ଠା' ଉପାଧି ଲାଭକରି ପାରିଥିଲେ ।"

ସମ୍ରାଟଙ୍କ ଆଦେଶଦ୍ୱାରା ବିହାର ଓ ଓଡ଼ିଶା ପ୍ରଦେଶ ନୂତନ ହୋଇ ଗଠିତ ହୋଇଥିବାରୁ ମଧୁବାବୁ ଏଥିରେ ଆନନ୍ଦ ପ୍ରକାଶକରି କହିଥିଲେ, "ସମ୍ରାଟ କୋଟି କୋଟି ପ୍ରଜାଙ୍କ ମଙ୍ଗଳପାଇଁ ଏହି ପ୍ରଦେଶଟିକୁ ଗଠନ କରିଛନ୍ତି । ବିହାରୀ ଓ ଓଡ଼ିଆମାନେ ଏ ପ୍ରଦେଶର ବାସିନ୍ଦା, ଏହି ଦୁଇଜାତି ଯଦି ଧୈର୍ଯ୍ୟ ଓ ତତ୍ପରତାର ସହିତ କାର୍ଯ୍ୟ କରନ୍ତି ତେବେ ସେମାନେ ନିଶ୍ଚୟ ପ୍ରଦେଶର ଉନ୍ନତି କରିପାରିବେ ଏବଂ ଯଦି ସେମାନଙ୍କର ଉଦ୍ୟମ ନିଷ୍ଫଳ ହୁଏ, ତାହାହେଲେ ସମ୍ରାଟଙ୍କ ପ୍ରଜାମାନଙ୍କୁ ଏଥିପାଇଁ କେହି ଦୋଷୀ କହିବେ ନାହିଁ । ଓଡ଼ିଶା ଭାରତବର୍ଷର ପବିତ୍ରଭୂମି । ବୌଦ୍ଧଧର୍ମର ଜନ୍ମଭୂମି ବିହାର ପୂର୍ବ-ଏସିଆସ୍ଥିତ ରାଜ୍ୟମାନଙ୍କର ମଧ୍ୟ ପବିତ୍ରଭୂମି । ବୁଦ୍ଧ ଜାତିଭେଦ ପ୍ରଥାର ଲୋପପାଇଁ ପ୍ରଚାର କରିଥିଲେ । ପୁରୀରେ ଏହି ବିଦ୍ବେଷୀରାକ୍ଷସ ପ୍ରବେଶ କରିପାରି ନାହିଁ । ମନ୍ଦିରକୁ ଏହି ରାକ୍ଷସର ଆକ୍ରମଣରୁ ରକ୍ଷା କରିବାପାଇଁ ଜଗନ୍ନାଥ ଜଗିରହିଛନ୍ତି । ବିହାରୀ ଓ ଓଡ଼ିଆ ଏହି

ଦୁଇଜାତି ଦେଶବିଭେଦକାରୀ ଶକ୍ତିମାନଙ୍କୁ ଲୋପ କରିବାପାଇଁ ଆପ୍ରାଣ ଚେଷ୍ଟା କରିଅଛନ୍ତି । ଏହି ବିଭେଦକାରୀ ଶକ୍ତି ଭାରତର କୋଟି କୋଟି ଲୋକଙ୍କୁ ଏକଜାତିରୂପେ ଗଠନ କରିବା କାର୍ଯ୍ୟରେ ଘୋର ଅନ୍ତରାୟ ହୋଇଛି । ଏହି ଜାତିକୁ ଏକତ୍ରକରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପଛରେ ଭଗବାନଙ୍କର ଇଚ୍ଛା ରହିଥିବା ଜଣାଯାଉଛି ଏବଂ ଏହି ଇଚ୍ଛା ତାଙ୍କର ପୃଥିବୀରେ ଥିବା ପ୍ରତିନିଧି, ଆମର ସମ୍ରାଟଙ୍କଦ୍ୱାରା ଘୋଷିତ ହୋଇଛି । ଏହି ଦୁଇ ଜାତି ଏକତ୍ରିତ ହୋଇଛନ୍ତି । ସେମାନେ ଏକ ପବିତ୍ର ଭୂମିରୁ ଉଦ୍ଭବ ହୋଇଥିବା ଦୁଇଟି ନଦୀ ସ୍ୱରୂପ । ବର୍ତ୍ତମାନ ଏହି ଶୁଭ ସମ୍ମିଳନୀ ଏହି ଦୁଇ ସ୍ରୋତର ଗଙ୍ଗା ଯମୁନା ନଦୀର ସଂଗମ ସ୍ଥଳ ପରି ସଂଗମ ସ୍ଥଳ ହେଉ । ଏହି ସଂଯୁକ୍ତ ସ୍ରୋତ ସମଗ୍ର ପ୍ରଦେଶରେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ପ୍ରବାହିତ ହେଉ, କୋଟି କୋଟି ଲୋକଙ୍କୁ ସମୃଦ୍ଧି ବିତରଣ କରୁ ଏବଂ ଏହାଙ୍କର ମିଳିତ ସ୍ରୋତଦ୍ୱାରା ଉନ୍ନତି ମାର୍ଗର ଯାବତୀୟ ପ୍ରତିବନ୍ଧକ ହଟିଯାଉ ।"

**ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶ ସମ୍ବନ୍ଧରେ ମଧୁବାବୁଙ୍କ ମତ—** "ପ୍ରାଚ୍ୟ ପ୍ରାଚ୍ୟ ପାଶ୍ଚାତ୍ୟ ପାଶ୍ଚାତ୍ୟ; ଉଭୟେ କୌଣସି କାଳେ ମିଳିତ ହୋଇ ପାରିବେ ନାହିଁ"—ଏହି ଉକ୍ତିଟି ଆପଣମାନେ ଶୁଣିଥିବେ । ଏହି ପଦଗୁଡ଼ିକ ବାରମ୍ବାର ଆବୃତ୍ତି କରାଯାଉଥିଲେ ମଧ୍ୟ, ଏହି ଉକ୍ତିର ମର୍ମ ସମ୍ବନ୍ଧରେ ଅଧିକ କିଛି ଜ୍ଞାନ ଲାଭ ହେଲବୋଲି ମୁଁ ଭାବୁନାହିଁ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମିଳିତ ହୋଇଛନ୍ତି । ପ୍ରାଚ୍ୟର ନିଜସ୍ୱ ଏକ ସଭ୍ୟତା ଅଛି, ପାଶ୍ଚାତ୍ୟର ଅନ୍ୟ ଏକ ସଭ୍ୟତା ଅଛି । ଏ ଦୁଇଟି ମୁଖ୍ୟତଃ ଭିନ୍ନ । କାରଣ, ଜୀବନ ଧାରଣର ପାରିପାର୍ଶ୍ୱିକ ଅବସ୍ଥା ଓ ମନୁଷ୍ୟର ଅଭ୍ୟୁଦୟ ନିମନ୍ତେ ମିଳୁଥିବା ସହାୟକ ଅବସ୍ଥା ପ୍ରାଚ୍ୟ ପାଶ୍ଚାତ୍ୟରେ ବିଭିନ୍ନ ଦେଖାଯାଏ । ଏହା ପରସ୍ପର ବିରୋଧୀ ସ୍ୱଭାବର ଥିବା ମଧ୍ୟ ଦେଖାଯାଏ । ଉଦୟମାନ ସୂର୍ଯ୍ୟ ଜଡ଼ତାଭିଭୂତ ଜୀବନରେ ଆନନ୍ଦମୟ କର୍ମମୁଖରତା ଆଣିଦେଉଛି । ହାସ୍ୟମୁଖୀ ପ୍ରକୃତିର ପ୍ରତିବିମ୍ବ ନୀଳ ଆକାଶର ଶ୍ୟାମଳ ଶୋଭାରେ ଓ ଶସ୍ୟଶ୍ୟାମଳ କ୍ଷେତ୍ରରେ ପ୍ରକାଶିତ ହୋଇଛି । ସଂକ୍ଷେପରେ କହିଲେ, ସ୍ନେହମୟୀ ମାତା ପ୍ରକୃତି ସୁନ୍ଦର ବସ୍ତ୍ର ପରିଧାନକରି ମନୁଷ୍ୟକୁ ତାର କୋମଳ କୋଡ଼ରେ ଗ୍ରହଣ କରୁଛି ଏବଂ ମନୁଷ୍ୟ କୃତଜ୍ଞତାରେ ଅଭିଭୂତ ହୋଇପଡ଼ୁଛି ଏବଂ ନତଜାନୁ ହୋଇ ମିଲ୍‌ଟନ୍‌ଙ୍କ ଭାଷାରେ ପ୍ରାର୍ଥନା କରୁଛି—"ଏସବୁ ମୋର ଗୌରବ; ହେ ସର୍ବଶକ୍ତିମାନ୍ ପିତା, ତୁମେ କେତେ ଗୌରବମୟ ହୋଇ ନଥିବ !" ମଧୁବାବୁଙ୍କର ଏ ବାଣୀକୁ ବିହାରର ଶୁଭ ସମ୍ମିଳନୀରେ ସମବେତ ସଭ୍ୟ ଓ ଦର୍ଶକମାନେ ଘନ ଘନ ଆନନ୍ଦଧ୍ୱନି କରି ସ୍ୱାଗତ କରିଥିଲେ । ମଧୁବାବୁଙ୍କ ଅମୃତବାଣୀ ଗଭୀର ଚାଞ୍ଚଲ୍ୟର ଉଦ୍ରେକ କରିଥିଲା । ମନେ ହୋଇଥିଲା, ସତେ ଯେପରି ସେ ଏକ ନୂତନ ଭାବଧାରା ସୃଷ୍ଟି କରିଛନ୍ତି । ସେ ପ୍ରାଚ୍ୟ ପାଶ୍ଚାତ୍ୟ ସଭ୍ୟତା, ସାମ୍ୟ ଓ ବୈଷମ୍ୟ ଭାବଧାରା ଏବଂ ଜୀବନଧାରା ବର୍ଣ୍ଣନାକରି ବକ୍ତବ୍ୟକୁ ଚିତ୍ତାକର୍ଷକ କରିପାରିଥିଲେ ।

ଶିଳ୍ପ ଜାଗରଣ ସମ୍ବନ୍ଧରେ ମଧୁବାବୁ ଏକାଧିକ ଥର ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇଛନ୍ତି । ତାଙ୍କ ମତରେ—"ବ୍ରିଟିଶ୍ ଶାସନ ଆସିଲାପରେ ଆମ୍ଭେମାନେ ବିଦେଶୀ ଜିନିଷ ବ୍ୟବହାର ପାଇଁ ଏପରି ସ୍ପୃହା ପ୍ରକାଶ କଲୁଁ ଯେ ଦେଶର ଶିଳ୍ପୀକୁଳ ବା କାରିଗର-ମାନେ ଅବହେଳିତ ହେଲେ । ଆମ୍ଭେମାନେ ସେମାନଙ୍କ ବର୍ତ୍ତମାନ ଦୁର୍ଦ୍ଦଶା ପାଇଁ ଦାୟୀ । ତେଣୁ ନ୍ୟାୟତଃ ସେମାନଙ୍କ ଆର୍ଥିକ ଅବସ୍ଥା ଉନ୍ନତ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଶିକ୍ଷିତ ସମାଜରେ ଏହି ସ୍ୱଦେଶୀ ଶିଳ୍ପିକୁଳଙ୍କ ଅଭିବୃଦ୍ଧି ଦ୍ୱାରା କି ଆର୍ଥିକ ପରିଣତି ହେବ, ତାହା କେହି ଭାବୁନାହାନ୍ତି । ହୁଏତ, ସାମାଜିକ ଗର୍ବ ଆମ୍ଭମାନଙ୍କୁ ଏ ବିଷୟରେ ଅନ୍ଧକରି ରଖିଛି; କିନ୍ତୁ ଏହି କାରିଗରକୁଳଙ୍କ ସ୍ୱାର୍ଥରକ୍ଷା ଆମ୍ଭମାନଙ୍କ ଦେଶର ଅର୍ଥନୈତିକ ଅଗ୍ରଗତି ନିମନ୍ତେ ଅତି ଜରୁରୀ ଦରକାର । ଏହି କାମ ଅତିଶୀଘ୍ର ଆରମ୍ଭ ହେବା ଉଚିତ । 'ଶିଳ୍ପ ଜାଗରଣ' ପ୍ରବନ୍ଧରେ (ଇଂରେଜୀରେ) ସେ ଏହା କହିଥିଲେ । ପୁଣି ବିହାର ଗ୍ରୁବ ସମ୍ମିଳନୀରେ ଏହାର ଉଲ୍ଲେଖ ପ୍ରକାରାନ୍ତରେ କରିଥିଲେ । ସେ କହିଥିଲେ—"ପ୍ରାୟ ଅଠରବର୍ଷ ହେବ ମୁଁ ସ୍ୱଦେଶ ଶିଳ୍ପ ସଂଗଠନ କ୍ଷେତ୍ରରେ କାମ କରିଆସୁଛି । ଯେତେବେଳେ ଦେଶରେ ସ୍ୱଦେଶୀ ଆନ୍ଦୋଳନର ଗ୍ରୁଘ୍ନା ସୁଦ୍ଧା ଦେଖାନଥିଲା, ସେତେବେଳେ ମୁଁ ଏ କ୍ଷେତ୍ରରେ କାର୍ଯ୍ୟ ଆରମ୍ଭ କରିଥିଲି । ମୁଁ ଜାଣେ, ମୁଁ ଏଥିରେ ବିଫଳ ହୋଇଛି; ତଥାପି ମୁଁ ଏଥିରୁ ( ଶିଳ୍ପୋନ୍ନତି ପ୍ରଚେଷ୍ଟାରୁ ) ନିବୃତ୍ତ ହୋଇନାହିଁ । କାରଣ, ମୁଁ ଜଣେ ଅନୁଭବୀ କାପ୍ତାନ । ମୋର ଜାହାଜ ପାଣିରେ ରହିଥିବା ପଥରରେ ବାଜି ଭାଙ୍ଗି ଯାଇଛି । ଜାହାଜର କାପ୍ତାନ ଜଳଭିତରେ କେଉଁଠାରେ କେତେ ବଡ଼ ପଥରରେ ବାଜି ତାଙ୍କର ଜାହାଜ ଭାଙ୍ଗି ଯାଇଛି, ତାହା ଦେଖାଇ ଦିଅନ୍ତି । ଏହାହିଁ ତାଙ୍କ ଉପଦେଶର ମୂଲ୍ୟକୁ ବୃଦ୍ଧି କରୁଛି । କାପ୍ତାନଙ୍କ ଉପଦେଶ ଅପେକ୍ଷା ମୋ ଉପଦେଶ ଉପରେ ବେଶି ମୂଲ୍ୟ ଆରୋପ କରିବାକୁ ଆପଣମାନଙ୍କୁ ମୁଁ କହୁନାହିଁ । ଏହାକୁ ଧ୍ୱଂସ ପାଇଥିବା ଜାହାଜର ଜଣେ ନାବିକର ଉପଦେଶ ବୋଲି ଭାବନ୍ତୁ ।" ପ୍ରକୃତରେ ସେ ଜଣେ ଅନୁଭବୀ କାପ୍ତାନ । ତାଙ୍କର ଜାହାଜ ପାଣିରେ ବୁଡ଼ିରହିଥିବା ପଥରରେ ବାଜି ଭାଙ୍ଗି ଯାଇଛି । ଅତଏବ, ଏ କ୍ଷେତ୍ରରେ ତାଙ୍କର ଅଭିଜ୍ଞତାପ୍ରସୂତ ଉପଦେଶ ବେଶି ମୂଲ୍ୟବାନ୍ । ଏଥିନିମନ୍ତେ ସେ ବାରମ୍ବାର କହୁଥିଲେ, "ଜାହାଜ ବୁଡ଼େଇଥିବା ଏହି ନାବିକର ଉପଦେଶ ପ୍ରତି କର୍ଣ୍ଣପାତ କର ।" ସେ କହିଥିଲେ, ଶାରୀରିକ ପରିଶ୍ରମ ପ୍ରତି ଯେଉଁ ଘୃଣାଭାବ ଓ ଅବହେଳା ଭାରତରେ ଅଛି, ତାହାକୁ ଦୂରକର । ଶାରୀରିକ ଶ୍ରମର ମର୍ଯ୍ୟାଦା ଅଛି । ମାନବ ଜାତିର ଆଦିପୁରୁଷ ଆଦାମ (Adam) ନିଶ୍ଚୟ ଜଣେ ଶ୍ରମିକ ହୋଇଥିବେ । ପରମ୍ପରା କହେ, ସ୍ୱୟଂ ବିଶ୍ୱକର୍ମା ଜଣେ ବଢ଼େଇ ବେଶରେ ଆସି ପୁରୀର ଜଗନ୍ନାଥ ମୂର୍ତ୍ତିଙ୍କୁ ନିର୍ମାଣକରି-ଥିଲେ । ହିନ୍ଦୁଙ୍କ ପ୍ରସିଦ୍ଧ ଅବତାର ଶ୍ରୀକୃଷ୍ଣ ଜଣେ ଗୋପାଳ ବାଳକ ପରି ଗୋ-ପାଳନ କାର୍ଯ୍ୟ କରୁଥିଲେ । ଯେଉଁ ହାତ ଅନ୍ନ ଖାଇବାରେ ସାହାଯ୍ୟ କରୁଛି, ପରିଶ୍ରମ କରୁଛି, ସେ କାହିଁକି ଉତ୍ପାଦନରେ ସାହାଯ୍ୟ ନ କରିବ, ପରିଶ୍ରମ ନ କରିବ ?"

ଏହି କଥାକୁ ମଧୁବାବୁ ୧୯୨୪ରେ 'ଶ୍ରମ ମର୍ଯ୍ୟାଦା' ସମ୍ପର୍କରେ ବିହାର ଯୁବ ସଂଘରେ ପ୍ରଦତ୍ତ ଅଭିଭାଷଣରେ ମଧ୍ୟ କହିଲେ । "ମନୁଷ୍ୟ ତାର ଜୀବନଧାରଣ ଓ ସୁଖରେ ଜୀବନଯାପନ କରିବା ପାଇଁ କାମ ଯୋଗାଇବା ଆବଶ୍ୟକ । ଏହା ଯୋଗାଇଦେଲ ପରେ ଧର୍ମ, ନୀତି ପ୍ରଭୃତି ବିଷୟ ତାକୁ କହିପାରେ ।"

ନିଜର 'ଦି ଓଡ଼ିଆ' ନାମକ ଇଂରେଜୀ ସାପ୍ତାହିକ (କଟକ) ରେ ସେ ଥରେ କହିଥିଲେ—"ବର୍ତ୍ତମାନ ବିଦେଶରେ ଶିଳ୍ପକ୍ଷେତ୍ରରେ ବିଶେଷ ଉନ୍ନତି ହେଉଛି । ଏହାକୁ ଦେଖି ଆମ୍ଭେମାନେ ଏ ଦିଗରେ ଅଗ୍ରସରହେବା ଉଚିତ । ଅନ୍ୟମାନେ ଯାହା କରି-ପାରୁଛନ୍ତି, ତାହା ଆମ୍ଭେମାନେ କାହିଁକି କରି ନ ପାରିବା ? ତେବେ ଏଥିପାଇଁ କେତେକ ସୁବିଧା ଆବଶ୍ୟକ । ଏଗୁଡ଼ିକ ଶିଳ୍ପକ୍ଷେତ୍ରରେ ଉନ୍ନତ ହୋଇଥିବା ଦେଶରେ ଦେଖାଯାଉଛି, ଆମ ଦେଶରେ ତାହା ନାହିଁ । ଅବଶ୍ୟ ଶିଳ୍ପର ଉନ୍ନତି ପାଇଁ ଉଦ୍ୟମ ସର୍ବଥା ପ୍ରଶଂସନୀୟ । ପ୍ରବଳ ଇଚ୍ଛା ଉପରେ ମଧ୍ୟ ଏହା କେତେକାଂଶରେ ନିର୍ଭରକରେ । ଏହି ପ୍ରବଳ ଇଚ୍ଛା ଆମ୍ଭମାନଙ୍କୁ ଠେଲି ପେଲି ନେଉଛି; କିନ୍ତୁ ଦେଶର ଅବସ୍ଥା ଏଥିପାଇଁ ଅନୁକୂଳ ନୁହେଁ । ପ୍ରାକୃତିକ ସମ୍ପଦ, ସଂଗଠନ ଓ ଦକ୍ଷତା ଆମ ଦେଶରେ ଅଭାବ ରହିଛି, ଏହା ମଧ୍ୟ ଆମର କ୍ଷମତାର ବାହାରେ ।

"ପୁଣି ଶିଳ୍ପର ଉନ୍ନତି ଓ ସଫଳତା ପାଇଁ ଆବଶ୍ୟକ ମୂଳଧନ, ଶ୍ରମ ଓ ବୁଦ୍ଧି । ଏହାର ସଦୁପଯୋଗ ନହେଲେ ଶିଳ୍ପୋନ୍ନତି ଅସମ୍ଭବ । ଦେଶରେ କଞ୍ଚାମାଲ ବହୁ ପରିମାଣରେ ଅଛି ସତ; କିନ୍ତୁ ଏହାକୁ ନିଜ ଅକ୍ତିଆରରେ ଆଣି ଶିଳ୍ପୋପଯୋଗୀ କରିବା ସହଜ ବ୍ୟାପାର ନୁହେଁ ।"

ଅନ୍ୟ ସ୍ଥଳରେ ସେ ପୁଣି କହିଛନ୍ତି, "ଯେଉଁ ଶିକ୍ଷିତ ଓ ଅବସ୍ଥାସମ୍ପନ୍ନ ଶ୍ରେଣୀର ଲୋକେ ତନ୍ତୀକୁଳାକୁ ଉପାସରେ ମାରିଲେ, ସେମାନେ ଦେଶଦ୍ରୋହୀ । ସେମାନଙ୍କ ଦେଶଦ୍ରୋହ ଓ ଅସଦ୍ ଆଚରଣର ସଂଶୋଧନ ହେବା ଆବଶ୍ୟକ ।" ଏହି ପ୍ରସଙ୍ଗରେ ସେ ଭାରତରେ ବିଦେଶୀ ବସ୍ତ୍ର ବ୍ୟବସାୟ କିପରି ଦେଶୀ ବସ୍ତ୍ର ବ୍ୟବସାୟକୁ ଧ୍ୱଂସ କରିଦେଲା, ତାହା ଉଲ୍ଲେଖକରି କହିଥିଲେ ଯେ "ବର୍ତ୍ତମାନ ଭାରତରେ (ତତ୍କାଳୀନ) ଶିଳ୍ପ-ଅବରୋଧ ପରି ଅବସ୍ଥା ଉପୁଜିଛି । ଅବରୋଧ ଅବସ୍ଥାରେ ଦୁର୍ଗର ଲୋକେ ସ୍ୱାବଲମ୍ବୀ ହେବାକୁ ବାଧ୍ୟ ହୁଅନ୍ତି । ଅବରୋଧ ସମୟରେ ବାହାରୁ କୌଣସି ସାହାଯ୍ୟ ନମିଳିଲେ ଅବରୁଦ୍ଧ ଜୀବନ ରକ୍ଷା ପାଇଁ ପ୍ରାଣପଣ ଚେଷ୍ଟା କରେ । ପ୍ରଥମେ ସଂଗ୍ରାମ ଭୀଷଣ ଆକାର ଧାରଣକରେ; କିନ୍ତୁ ଜୟଲାଭ ପାଇଁ ସମସ୍ତ ଶକ୍ତି ଠୁଳକରିବାକୁ ହୁଏ ଏବଂ ଅଶେଷ ତ୍ୟାଗ ସ୍ୱୀକାର କରିବାକୁ ହୁଏ ।" ପୁଣି ସେ କହିଥିଲେ, "ବିଦେଶୀ ଭାବଭଙ୍ଗୀ, ଜୀବନ-ଯାପନରେ ବିଦେଶୀ ରୀତିନୀତି, ବିଦେଶୀ ପରିଧାନ ପ୍ରଭୃତି ଶିଳ୍ପବନ୍ଧନର ପ୍ରହରୀ ।" ସେ ଦୁଃଖରେ ଲେଖିଥିଲେ, "ଭାରତୀୟ ଦଣ୍ଡବିଧି ଆଇନ ତନ୍ତୀରୂପକ ଅବରୁଦ୍ଧ ସୈନ୍ୟମାନଙ୍କୁ ରକ୍ଷା କରିପାରିବ ନାହିଁ । ତନ୍ତୀମାନଙ୍କୁ ଅବରୋଧରୁ ରକ୍ଷାକରିବାକୁ ହେଲେ, ସେମାନଙ୍କ

ସ୍ୱାର୍ଥଦୃଷ୍ଟିରୁ ପରିପନ୍ଥୀ ଭାବ ଓ କାର୍ଯ୍ୟକୁ ଧ୍ୱଂସ କରିଦେବାକୁ ହେବ । ଏହାଦ୍ୱାରା କେବଳ ତନ୍ତ୍ରୀକୁଳର ପୂର୍ବ ଶକ୍ତି ଫେରିଆସିବ ।” ସେ କହିଥିଲେ, “ଆମ ଦେଶର ଅବସ୍ଥାସମ୍ପନ୍ନ ଲୋକେ ମୋଟାଲୁଗା ବ୍ୟବହାର କରନ୍ତୁ ।” ଉପମା ଦେଇ ସେ କହିଥିଲେ, “ଗର୍ଜ୍ଜନ-ମୁଖର କମାଣରେ ସମ୍ମୁଖକୁ ଯିବା ନିମନ୍ତେ ଯେତେ ସାହସ ଆବଶ୍ୟକ; ତାହା ଅପେକ୍ଷା ଲୋକଙ୍କ ଅସମ୍ମାନ ଓ ଅସନ୍ତୋଷ ବିରୁଦ୍ଧରେ ଦଣ୍ଡାୟମାନ ହେବାପାଇଁ ଅଧିକ ସାହସ ଆବଶ୍ୟକ । (“ଶିଳ୍ପବନ୍ଧନରୁ ମୁକ୍ତି” “The Uriya”)

ସେ ସ୍ପଷ୍ଟଭାବରେ କହୁଥିଲେ ଯେ, “ଅନ୍ୟ ଜାତି ଉପରେ ନିର୍ଭରକରି ଚଳୁଥିବା ଏକ ଜାତି ପକ୍ଷରେ ସ୍ୱରାଜ୍ୟ ( Home rule ) ଦାବୀର ଅର୍ଥ କିଛି ନୁହେଁ । ଏ ପର-ନିର୍ଭରଶୀଳତା ଦୂରକରିବାକୁ ହେଲେ ଦେଶ ଶିଳ୍ପ ଓ ଅର୍ଥନୀତି କ୍ଷେତ୍ରରେ ସ୍ୱାବଲମ୍ବୀ ହେବା ଆବଶ୍ୟକ । ଲୋକମାନଙ୍କର ବ୍ୟବସାୟରେ ସାହସ ବୃଦ୍ଧି ନ ପାଇଲେ, ଶିଳ୍ପୋନ୍ନତି ଅସମ୍ଭବ । ବର୍ତ୍ତମାନ ଦେଖାଯାଉଛି, ଦେଶର ପୁଞ୍ଜିପତିମାନେ ଶିଳ୍ପ, ବ୍ୟବସାୟ ବାଣିଜ୍ୟ ଅପେକ୍ଷା ଭୂମିରେ ବେଶି ମୂଳଧନ ଖଟାଉଛନ୍ତି । ଜମିରୁ କେବଳ କୃଷିଜାତ ଦ୍ରବ୍ୟ ମିଳିବ; କିନ୍ତୁ ଧୋତି, ଜୋତା, ଛତା ବା ଅଖା ଜମି ପ୍ରସ୍ତୁତ କରିପାରିବ ନାହିଁ । ଦେଶର ଜମିଦାର ଓ ଧନବାନ୍ ଲୋକେ ଦେଶର ଆର୍ଥିକ କ୍ଷେତ୍ରର ପ୍ରଧାନ ଚାଳକ ଥିବାରୁ ଏ ଦୁର୍ଦ୍ଦଶା ଉପସ୍ଥିତ ହୋଇଛି । ଏହା ଦୂର ନହେଲେ ବାଣିଜ୍ୟ ବିକାଶର ଆଶା ନାହିଁ ।”

ସେ କ୍ଷୋଭ ପ୍ରକାଶକରି କହିଥିଲେ, “ଯେଉଁମାନେ ଅର୍ଥନୀତିର ପ୍ରାଥମିକ ନୀତି ସୁଦ୍ଧା ଜାଣିନାହାନ୍ତି, ସେମାନଙ୍କଠାରେ ପୁଞ୍ଜି ରହିଛି । ପୁଣି ସେମାନେ ମଧ୍ୟ ଶିକ୍ଷାର ଉଚିତ ମୂଲ୍ୟ ହୃଦୟଙ୍ଗମ କରିପାରୁନାହାନ୍ତି ।”

ସେ ବିହାର ଛାତ୍ରମାନଙ୍କୁ କହିଥିଲେ, “ଆଧୁନିକ ଜାତି ପ୍ରଥା ଦେଶୀୟ ଶିଳ୍ପରେ ଶ୍ରମବିଭାଗର ପ୍ରଧାନ ଅନ୍ତରାୟ ହେଉଛି । ଏହି କ୍ଷେତ୍ରରେ ଭାରତ ଅପେକ୍ଷା ବିଲାତର ବେଶି ସୁବିଧା ରହିଛି । ଜଣେ ମୋ[illegible] ବା ଚମାର କେବଳ ଜୋତାର ତଳିପା ତିଆରି କରିବାରେ ଆବଦ୍ଧ ରହି ନପାରେ । ଜାତି ପ୍ରଥାର ନିର୍ଦ୍ଦେଶ ଅନୁସାରେ ଲୋକଙ୍କ ଭିତରେ ଶ୍ରମ ବିଭାଗ ସମ୍ଭବ ନୁହେଁ । [illegible] ଅନୁଷ୍ଠାନ ଗଠିତ ନହେଲେ; ଶ୍ରମ ବିଭାଗ ସମ୍ଭବ ହେବନାହିଁ । [illegible]ସାୟ ସଂସାରର ତିନୋଟି ପ୍ରଧାନ ଶକ୍ତି ଆବଶ୍ୟକ—ହସ୍ତ, ମସ୍ତିଷ୍କ [illegible]ନ ।” [illegible]ର ବହୁ କଥା ଏହି ପ୍ରସଙ୍ଗରେ ବିହାର ଛାତ୍ରମାନଙ୍କୁ ସେ କହିଥିଲେ ।

ବିହାର-ଓଡ଼ିଶା [illegible] ସୃଷ୍ଟିର ତାତ୍ପର୍ଯ୍ୟ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତି, ଶିଳ୍ପ ବିକାଶ, ଶିଳ୍ପିକୁଳର ଉନ୍ନତି, ଛାତ୍ରମାନେ ଭାରତର ଭବିଷ୍ୟତ ଆଶା, ସ୍ତ୍ରୀଶିକ୍ଷା, ଜାତୀୟ ଜ୍ଞାନ, ଜାତୀୟ ପ୍ରଣାଳୀ ଅନୁସାରେ ବିଶ୍ୱବିଦ୍ୟାଳୟ ସ୍ଥାପନ, ତ୍ୟାଗ, ଦେଶପ୍ରେମ, ରାଜନୀତି, ବୌଦ୍ଧିକ ଅପରିପକ୍ୱତା, ଗୌରବ ଓ ସୁଖ ପ୍ରଭୃତି ବିଷୟରେ ଉଚ୍ଚକୋଟୀର ଆଲୋଚନା ଅଭିଭାଷଣରେ ଥିଲା ।

"ଗୌରବ ଓ ସୁଖ"—"ଗୌରବ ଓ ସୁଖ ପଛରେ ଧାଇଁବା ହେଉଛି ଜୀବନ । ଯୌବନାବସ୍ଥାରେ ଏହା ଅତ୍ୟନ୍ତ ହୁଏ । ଏହାକୁ କୁକୁରମାନଙ୍କର ବାଲୁଆ ଶିକାର ବା ପ୍ରାଚୀନ ଗଳ୍ପରେ ବର୍ଣ୍ଣିତ ମଣିଷର ଇନ୍ଦ୍ରଧନୁକୁ ଧରିବାପାଇଁ ଉଦ୍ୟମ ସହିତ ତୁଳନା କରାଯାଇପାରେ । ବାଲୁଆ ପଛରେ ଦୌଡ଼ିବା କୁକୁର ମିଥ୍ୟା ସୁବାସଦ୍ୱାରା ବିପଥଗାମୀ ହୁଏ ଏବଂ ଇନ୍ଦ୍ରଧନୁକୁ ଧରିବାପାଇଁ ଦୌଡ଼ିବା ଲୋକ ଇନ୍ଦ୍ରଧନୁ ଉଭେଇ ଯିବାଦ୍ୱାରା ନିରାଶ ହୁଏ । ଏ ଦୁଇଟି ଶବ୍ଦ (ଗୌରବ ଓ ସୁଖ)ର ସଂଜ୍ଞା ନିରୂପଣ କରିବା ସମ୍ଭବ ନୁହେଁ । ପ୍ରତ୍ୟେକ ଲୋକ ଏହାର ସଂଜ୍ଞା ନିରୂପଣ କରିବା ଉଚିତ ଏବଂ ଏହା ହୋଇପାରିଲେ, ଜୀବନ-ଯାତ୍ରାର ଲକ୍ଷ୍ୟ ସ୍ଥିର ହୋଇଯିବ । ଜୀବନର ପରବର୍ତ୍ତୀ ସମୟରେ ଏହାର ପରିବର୍ତ୍ତନ ସମ୍ଭବ ନୁହେଁ ।" ସେ କେତେକ ଉଦାହରଣ ଦେଇ ଏହା କିପରି ବିଭିନ୍ନ ପ୍ରକାରରେ ଦେଖାଯାଏ, ତାହା ବୁଝାଇଥିଲେ । "ବହୁ-ଆହାରୀ ଉଦରକୁ ପୂର୍ଣ୍ଣ-କରି ଭୋଜନ କରେ ଏବଂ ଏଥିରେ ସେ ଆନନ୍ଦ ପାଏ; କିନ୍ତୁ ଯୋଗୀ ତାହାର ଆହାରକୁ ଅତି ଅଳ୍ପ ପରିମାଣରେ ରଖି ଆନନ୍ଦ ପାଏ ।" ଇତିହାସରୁ ବୁଦ୍ଧ, ଯୀଶୁ, ରାମ ପ୍ରଭୃତିଙ୍କ ଜୀବନରେ 'ସୁଖ' ଓ 'ଗୌରବ' କି ପ୍ରକାର ରୂପ ଧାରଣ କରିଥିଲା, ତାହା ବୁଝାଇ ସେ କହିଥିଲେ, "ଏମାନଙ୍କର ପ୍ରତିପକ୍ଷମାନଙ୍କୁ ଏବେ କେତେ ଲୋକ ବା ମନେ ରଖିଛନ୍ତି ? କିନ୍ତୁ ଏମାନେ ମାନବ ମାନସପଟରେ ଅମର ହୋଇ ରହିଛନ୍ତି ।"

ଶେଷରେ ସେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ, "ଭଗବାନ ତୁମକୁ ଗୋଟିଏ ବିଶିଷ୍ଟ ଲକ୍ଷ୍ୟରେ ଏ ସଂସାରକୁ ପଠାଇଛନ୍ତି । ତୁମର କର୍ମସ୍ଥାନ ବାଛିନିଅ । ଉପରେ ଭଗବାନ ଓ ଅନ୍ତରରେ ହୃଦୟକୁ ସାକ୍ଷୀ ରଖି କର୍ମସ୍ଥାନରେ ଦଣ୍ଡାୟମାନ ହୁଅ । ସଂସାରର ମତପ୍ରତି ଭ୍ରୂକ୍ଷେପ ନକରି ତୁମେ ତୁମର କର୍ତ୍ତବ୍ୟ କରିଯାଅ । ଯେତେବେଳେ ତୁମକୁ ଭଗବାନ ଜୀବନ ଦେଲେ, ସେତେବେଳେ ତୁମେ ମାତାଙ୍କ ଗର୍ଭରେ ଥିଲ, ବାହ୍ୟ-ଜଗତ ସହିତ ତୁମର କିଛି ସମ୍ପର୍କ ନଥିଲା । ମୃତ୍ୟୁଶଯ୍ୟାରେ ପଡ଼ିଥିଲାବେଳେ ତୁମର ଚକ୍ଷୁକୁ କିଛି ଦିଶିବ ନାହିଁ, ତୁମ କାନକୁ କିଛି ଶୁଭିବ ନାହିଁ, ତୁମର ଜିଭ କଥା କହିପାରିବ ନାହିଁ, ଅନ୍ତରାତ୍ମା ସହ ତୁମର କିଛି ସମ୍ପର୍କ ରହିବନାହିଁ । ଯଦି ଜୀବନଯାତ୍ରାର ସେହି ଶେଷ ସମୟରେ ତୁମର ଅନ୍ତରାତ୍ମା ତୁମକୁ କହେ—'ତୁମେ ତୁମର କର୍ତ୍ତବ୍ୟ କରିଛ, ତୁମ ସମ୍ବନ୍ଧରେ ପୃଥିବୀ ଯାହା କହୁ ପଛେ, ବିଶ୍ୱାସ କର, ତୁମର ଭଗବାନ ତୁମକୁ ଏହିପରି ଭାବରେ ସମ୍ବୋଧନ କରିବେ—'ମୋର ଶିଶୁ, ତୁମେ ଅତି ସୁନ୍ଦରଭାବରେ କାର୍ଯ୍ୟ କରିଛ । ମୃତ୍ୟୁ ପର୍ଯ୍ୟନ୍ତ ତୁମେ ବିଶ୍ୱସ୍ତ ରହିଛ । ମୁଁ ତୁମକୁ ଜୀବନ-ମୁକୁଟ ପ୍ରଦାନ କରିବି ।"

ମଧୁବାବୁଙ୍କର ଏ ବାଣୀ, ଏ ଉଦ୍‌ବୋଧନ ସମଗ୍ର ବିହାରରେ ଉତ୍ସାହ ଖେଳାଇ-ଦେଇଥିଲା । ବାସ୍ତବତା ଦୃଷ୍ଟିରେ ଜୀବନରଙ୍ଗର ଏ ସୁସ୍ପଷ୍ଟ ପରିଚୟ ନିତ୍ୟ ସତେଜ ଓ ନୂତନ ଦେଖାଯାଉଥିବ । ଯୁବକ, ଛାତ୍ର ଓ ବିକାଶୋନ୍ମୁଖ ସମାଜ ପକ୍ଷରେ ଏ ଉପଦେଶ ଅମୃତ-ବାଣୀ ସଦୃଶ ।

**ମଧୁବାବୁ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାର ସଭ୍ୟ ମନୋନୀତ ହେଲେ (୧୯୧୩) :** ମଧୁବାବୁ ବିହାର ଓଡ଼ିଶା ବ୍ୟବସ୍ଥାସଭାକୁ ଗ୍ରେଟଲାଟଙ୍କଦ୍ୱାରା ବେସରକାରୀ ସଭ୍ୟରୂପେ ମନୋନୀତ ହୋଇଥିଲେ । ଓଡ଼ିଶାରୁ ବାଲେଶ୍ୱରର ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର ମଧ୍ୟ ମନୋନୀତ ହୋଇଥିଲେ । ବିହାର ବ୍ୟବସ୍ଥାପକ ସଭା ପକ୍ଷରୁ ମଧୁବାବୁ ଭାରତ ବ୍ୟବସ୍ଥାପକ ସଭାର ସଦସ୍ୟରୂପେ ୧୯୧୩ ଜାନୁଆରି ୨୨ ତାରିଖ ଦିନ ମନୋନୀତ ହୋଇଥିଲେ । ଏହି ଉପଲକ୍ଷରେ ୧ ତାରିଖ ଫେବୃଆରୀ ଶୁକ୍ରବାର ଦିନ କଟକ ଟାଉନ୍‌ହଲ୍‌ରେ ଏକ ସଭା ହୋଇଥିଲା । ସେଥିରେ ରାୟବାହାଦୁର ଜାନକୀନାଥ ବସୁ ସଭାପତି ହୋଇଥିଲେ । ସଭାପତି ମହାଶୟ କହିଲେ—"ଜାନୁଆରୀ ୨୨ ତାରିଖ ଓଡ଼ିଶାରେ ଚିରକାଳ ସ୍ମରଣୀୟ ହୋଇ ରହିବ । କାରଣ, ଭାରତ ଶାସନ ସମ୍ବନ୍ଧୀୟ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଓଡ଼ିଶାର ମାନ୍ୟବର ମଧୁସୂଦନ ଦାସ ସି. ଆଇ. ଇ. ମହୋଦୟ ସେଦିନ ପ୍ରଥମ ହୋଇ ବସିଲେ । ତାଙ୍କୁ ସମ୍ମାନ କରିବା ସକାଶେ ଆହୂତ ହୋଇଥିବା ସଭା ପ୍ରକୃତପକ୍ଷରେ ଆପଣାର ସମ୍ମାନ ରକ୍ଷାକରିବା ସଙ୍ଗେ ସମାନ ।" ଅଭିନନ୍ଦନପତ୍ରଟି ଏକ ରୁମାଲରେ ଛପାହୋଇ ମଧୁବାବୁଙ୍କୁ ଉପହାର ଦିଆଯାଇଥିଲା ।

ସେଦିନ ରାତି ଭୋର ସମୟରେ ମଧୁବାବୁଙ୍କୁ ରେଲଷ୍ଟେସନରେ ଅଭ୍ୟର୍ଥନା କରାଯାଇଥିଲା । କଲିକତାର ଉତ୍କଳୀୟ ଛାତ୍ରମାନେ ମଧ୍ୟ ତାଙ୍କୁ ଏକ ବନ୍ଧୁମିଳନରେ କଲିକତାରେ ଅଭ୍ୟର୍ଥନା କରିଥିଲେ ।

ବିହାର-ଓଡ଼ିଶା-ବ୍ୟବସ୍ଥାପକ ସଭା ପକ୍ଷରୁ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହେବାପାଇଁ ମଧୁବାବୁ ଓ ବିହାରର ପ୍ରସିଦ୍ଧ ନେତା ସଚ୍ଚିଦାନନ୍ଦ ସିଂହ ପ୍ରାର୍ଥୀ ଥିଲେ । ସିଂହ ମହାଶୟ ଓଡ଼ିଶାର ହିତଦୃଷ୍ଟିରୁ ନିଜ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବାରୁ ମଧୁବାବୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ଏଥିପାଇଁ ଓଡ଼ିଶାରେ ବିଭିନ୍ନ ସ୍ଥାନରେ ସଭା ହୋଇଥିଲା । ମାନ୍ୟବର ସିଂହଙ୍କ ଉଦାରତା ଯୋଗୁଁ ତାଙ୍କୁ ଓଡ଼ିଶାବାସୀ କୃତଜ୍ଞତା ଜଣାଇଥିଲେ । ବିହାରୀ ଓ ଓଡ଼ିଆ ଭେଦଭାବ ଦୂରହେଲା ବୋଲି ସମସ୍ତେ ମୁକ୍ତକଣ୍ଠରେ ବ୍ୟକ୍ତ କରି ଆନନ୍ଦ ପ୍ରକାଶ କରିଥିଲେ ।

ଫେବୃଆରୀ ମାସ ୯ ତାରିଖରେ 'ଯୁବ ଉତ୍କଳ ସମାଜ'ର କେନ୍ଦ୍ର ସମିତି ପକ୍ଷରୁ ମଧୁବାବୁଙ୍କୁ ଅଭ୍ୟର୍ଥନା କରାଯାଇଥିଲା । ଏହି ମାସରେ କଟକର ୟୁନିୟନ୍ କ୍ଲବ୍ ମଧ୍ୟ ଅଭ୍ୟର୍ଥନା କରିଥିଲେ । ଏହି ସଭାରେ ଲାଟସଭାର ଓଡ଼ିଶାର ସବୁ ମାନ୍ୟବର ସଭ୍ୟମାନଙ୍କୁ ମଧ୍ୟ ଅଭ୍ୟର୍ଥନା କରାଯାଇଥିଲା । ମଧୁବାବୁ ସମ୍ବର୍ଦ୍ଧନାର ଉତ୍ତର ଦେଇ କହିଥିଲେ—

"ନିଜ ପ୍ରଶଂସା ଶୁଣିବା ମାରାତ୍ମକ ଗୁଳି ପ୍ରାୟ । ତହିଁରୁ ଆପଣାକୁ ବଞ୍ଚାଇବା ନିମନ୍ତେ ଚେଷ୍ଟା କରିବା ସର୍ବଦା ଉଚିତ । ଜନ୍ମଭୂମିର ହିତାର୍ଥେ ଆତ୍ମତ୍ୟାଗ ସ୍ୱୀକାର କରିବା ଏକାନ୍ତ କର୍ତ୍ତବ୍ୟ ।"

ମାନ୍ୟବର ସଭ୍ୟମାନେ ଉତ୍ତର ପ୍ରସଙ୍ଗରେ କହିଥିଲେ—"ଆମ୍ଭେମାନେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ହେବାରୁ, ବିଶେଷତଃ ମଧୁବାବୁ ଭାରତୀୟ ବ୍ୟବସ୍ଥାପକ ସଭାର ସଦସ୍ୟ ହେବାରେ କେତେ ଦିନ ହେଲା ଓଡ଼ିଶାରେ ଉଲ୍ଲାସତରଙ୍ଗ ଉଠିଅଛି । ପୂର୍ବେ ଏପରି ଦେଖା ନଥିଲା । ଏଥିରେ ବ୍ୟକ୍ତିଗତଭାବେ ଆମ୍ଭେମାନେ ଆନନ୍ଦିତ । ଦେଶ ଲୋକଙ୍କର ଉଚ୍ଚ ଆଶା ଓ ହିତଚେଷ୍ଟା ପ୍ରବଳ ହୋଇଉଠିବା ଅଧିକ ଆନନ୍ଦର ବିଷୟ ଏବଂ ଏହା ଏକ ଶୁଭସୂଚନା ।"

**ବିହାରୀ-ଓଡ଼ିଆ ସମ୍ପର୍କ :** ସମସ୍ତ ଉତ୍କଳଭାଷୀ ରାଜ୍ୟଖଣ୍ଡମାନ ଏକ ଶାସନାଧୀନ କରିବା ପ୍ରସଙ୍ଗ କଂଗ୍ରେସରେ ପଡ଼ିବା ପ୍ରସ୍ତାବକୁ ବିହାର କଂଗ୍ରେସ କମିଟି ଗ୍ରହଣ କରି ନଥିଲେ । ନବଗଠିତ ପ୍ରଦେଶରେ ଓଡ଼ିଆ-ବିହାରୀ ମନୋମାଳିନ୍ୟ ଏଠାରୁ ଆରମ୍ଭହେଲା ବୋଲି ଆଶଙ୍କା ହେଉଥିଲା । ବଡ଼ଲାଟ ସଭାକୁ ପ୍ରାଦେଶିକ ସଭାରୁ ଦୁଇଜଣ ବେସରକାରୀ ସଭ୍ୟ ମନୋନୀତ ହେବା ବିଧାନ ଥିଲା । ଏହି ଦୁଇଟି ସଭ୍ୟପଦରୁ ଓଡ଼ିଶାକୁ ଗୋଟିଏ ଦେବା ନିମନ୍ତେ ଓଡ଼ିଶା ସଭ୍ୟମାନେ ବିହାରୀ ସଭ୍ୟମାନଙ୍କୁ ଅନୁରୋଧ କଲେ; କିନ୍ତୁ ଏ ଭିତରେ ଜଣେ ବିହାରୀ ସଭ୍ୟ ନିଜପାଇଁ ମତ ସଂଗ୍ରହ କରିବାକୁ ଉଦ୍ୟମ ଆରମ୍ଭ କରିଦେଲେ । ଏଥିରେ ବିହାରୀ-ଓଡ଼ିଆ ଭେଦଭାବ ସ୍ପଷ୍ଟରୂପ ଧାରଣା କରିବା ଆଶଙ୍କା ଉପୁଜିଥିଲା । ନବଗଠିତ ପ୍ରଦେଶରେ ଦୁଇ ଭାଗିଦାର—ଓଡ଼ିଆ ଓ ବିହାର ମଧ୍ୟରେ ଏହି ଭେଦଭାବ ଉଭୟଙ୍କ ପକ୍ଷରେ ମାରାତ୍ମକ ହୋଇଥାଆନ୍ତା ।

ପୁଣି ଏହି ବର୍ଷ ବିହାରର ପାଟନା ବାଙ୍କିପୁରଠାରେ କଂଗ୍ରେସ ଅଧିବେଶନର ଆୟୋଜନ ହୋଇଥିଲା । ଅଭ୍ୟର୍ଥନା ସମିତିରେ କେତେଜଣ ଓଡ଼ିଆ ସଭ୍ୟଙ୍କୁ ବିହାରର ଅଭ୍ୟର୍ଥନା ଆୟୋଜନ ସଭା ନିମନ୍ତ୍ରଣ କରିଥିଲେ । କଟକରେ ଏଥିପାଇଁ ଏକ ଜିଲ୍ଲା ଶାଖା ସମିତି ମଧ୍ୟ ଗଠିତ ହୋଇଥିଲା । ଏହି ଜିଲ୍ଲା ସମିତି ପକ୍ଷରୁ କଂଗ୍ରେସକୁ ପ୍ରତିନିଧି ପଠାଇବା ସ୍ଥିର ହୋଇଥିଲା ।

ଓଡ଼ିଶା ଦେଶମିଶ୍ରଣ ପ୍ରସ୍ତାବକୁ ବିହାର କଂଗ୍ରେସ ବିରୋଧ କରିଥିବାରୁ ଏହାର ପ୍ରତିବାଦସ୍ୱରୂପ ବାଙ୍କିପୁର କଂଗ୍ରେସରେ ଓଡ଼ିଶାରୁ କେହି ପ୍ରତିନିଧି ଯୋଗଦେବା ଉଚିତ ନୁହେଁ ବୋଲି କେହି କେହି କହିଲେ । ଏହି ମର୍ମରେ ଏକ ତାରବାର୍ତ୍ତା ମଧ୍ୟ କଟକରୁ ଯାଇଥିଲା । 'ଉତ୍କଳ ଷ୍ଟାର' (Star of Utkal) ଏହି ସମ୍ବାଦ ପ୍ରକାଶ କରିବା ପରେ ନିଜେ ମଧୁବାବୁ ଏପରି ତାର ପଠାଇଥିବେ ବୋଲି କେହି କେହି ଭାବିଲେ । କାରଣ ଏହି ତାରରେ କୁଆଡ଼େ ଲେଖାଥିଲା ଯେ ବିହାର ଓ ଓଡ଼ିଶାପାଇଁ ବଡ଼ଲାଟ-ସଭାକୁ ଯେଉଁ ଦୁଇଜଣ ସଭ୍ୟ ମନୋନୀତ ହେବା ସରକାର ସ୍ଥିରକରିଛନ୍ତି, ସେଥିରୁ ଗୋଟିଏ ଓଡ଼ିଶାପାଇଁ ଦିଆଯାଉ ଏବଂ ମାନ୍ୟବର ମଧୁସୂଦନ ଦାସଙ୍କୁ ସଭ୍ୟ ମନୋନୀତ କରାଯାଉ; କିନ୍ତୁ ପରେ ମଧୁବାବୁ ଏ ତାରସମ୍ବାଦ ପଠାଇନାହାନ୍ତି ବୋଲି ଘୋଷଣା କରିଦେଲେ । ମଧୁବାବୁ

ବଡ଼ଲାଟ-ସଭାକୁ ସଭ୍ୟ ମନୋନୀତ ହେବା ପୂର୍ବରୁ ଏସବୁ ଘଟଣା ଅନୁକୂଳ ବାତାବରଣ ସୃଷ୍ଟି କରିନଥିଲା ।

ଏହା ପରେ ବିହାରୀ ଗ୍ରୁପ ସମିତି ମଧୁବାବୁଙ୍କୁ ସଭାପତିରୂପେ ବରଣ କରିଥିଲେ । ଫଳରେ ବିହାରୀ ଓ ଓଡ଼ିଆଙ୍କ ଭିତରେ ଭେଦଭାବର ଯେଉଁ ଗ୍ରନ୍ଥି ଦେଖାଦେଇଥିଲା, ତାହା ଟିକିଏ ହ୍ରାସପାଇଲା । ବଡ଼ଲାଟ ସଭାକୁ ଲାଟସଭାର ସଭ୍ୟ ମନୋନୟନ ସମୟରେ ବିହାରର ବିଶିଷ୍ଟ ନେତା ଶ୍ରୀ ସଚ୍ଚିଦାନନ୍ଦ ସିଂହ ମଧୁବାବୁଙ୍କ ପ୍ରତିଦ୍ୱନ୍ଦ୍ୱୀ ହୋଇଥିଲେ; କିନ୍ତୁ ଓଡ଼ିଶା ସହିତ ବିହାରର ସଦ୍‌ଭାବ ପ୍ରତିଷ୍ଠା କାମନାରେ ସେ ପ୍ରତିଦ୍ୱନ୍ଦ୍ୱିତାରୁ ଓହରିଗଲେ ଏବଂ ଫଳରେ ମଧୁବାବୁ ବଡ଼ଲାଟ-ସଭାକୁ ନିର୍ଦ୍ୱନ୍ଦ୍ୱରେ ସଭ୍ୟ ମନୋନୀତ ହେଲେ । ବିହାରୀମାନେ ଯେଉଁ ଉଦାରତା ଦେଖାଇଲେ, ସେଥିରେ ଓଡ଼ିଶାବାସୀ ସନ୍ତୋଷ ଲାଭକଲେ ଏବଂ ବିହାରୀ ଓଡ଼ିଆ ସଦ୍‌ଭାବ ପୁଣି ପ୍ରତିଷ୍ଠିତ ହେଲା ।

ଏହି ସମ୍ପର୍କରେ ସଚ୍ଚିଦାନନ୍ଦ ସିଂହ କନିକା ରଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଙ୍କଠାକୁ ୫ ତାରିଖ ଜାନୁଆରୀ (୧୯୧୩) ରେ ଏକ ପତ୍ର ଲେଖି ଜଣାଇଥିଲେ ଯେ ବଡ଼ଲାଟ ବ୍ୟବସ୍ଥାପକ ସଭାକୁ ଜଣେ ସଭ୍ୟ ନିର୍ବାଚନ ହେବା ପ୍ରସଙ୍ଗରେ ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କ ସହିତ ଏକାଧିକବାର ପରାମର୍ଶରେ ଏହି କଥା ଠିକ୍‌ହେଲା ଯେ କନିକାରାଜା 'ଅଳ୍ପ ବୟସ ଓ ଅଳ୍ପ ବହୁଦର୍ଶିତା' ହେତୁ ଦାସ ମହାଶୟଙ୍କୁ ଛାଡ଼ି ଏକା ସଭ୍ୟ ହେବାକୁ ସାହସ କରୁନାହାନ୍ତି ଓ ଦୁଇଜଣ ଓଡ଼ିଆ ସଭ୍ୟହେବା ସଙ୍ଗତ ନୁହେଁ । ପୁଣି, ଦାସ ମହାଶୟ ବୃଦ୍ଧ ବୟସ ଓ ଅସୁସ୍ଥତା କାରଣରୁ ସଭ୍ୟହେବାକୁ ଇଚ୍ଛା କରନ୍ତିନାହିଁ । ଅନ୍ୟଜଣେ ଓଡ଼ିଆ ହେଲେ ଭଲହେବ ବୋଲି ସେ କହିଲେ, କିନ୍ତୁ ତାଙ୍କର ନାମ କହି-ନଥିଲେ । ଏ ଚିଠିର ମର୍ମ ବିହାରର ପତ୍ରିକାମାନଙ୍କରେ ପ୍ରକାଶ ପାଇଥିଲା ।

ସଚ୍ଚିଦାନନ୍ଦ ସିଂହ ମଧୁବାବୁଙ୍କ ପ୍ରାର୍ଥିତ୍ୱ ସପକ୍ଷରେ ନିଜ ପ୍ରାର୍ଥିତ୍ୱ ପ୍ରତ୍ୟାହାର କରି ନେଇଥିବାରୁ ବିହାରୀ-ଓଡ଼ିଆ ଭେଦଭାବର ଅଙ୍କୁରରୋପଣ ହେଲା ବୋଲି ଯେଉଁ ଆଶଙ୍କା କରାଯାଉଥିଲା, ତାହାର ନିରାକରଣ ହେଲା । ସଚ୍ଚିଦାନନ୍ଦ ବିଭିନ୍ନ ସମୟରେ ଓ ଏହାପରେ ମଧ୍ୟ ପ୍ରାଦେଶିକ ବ୍ୟବସ୍ଥାପକ ସଭା ଓ କେନ୍ଦ୍ର ବ୍ୟବସ୍ଥାପକ ସଭା ପ୍ରଭୃତିରେ ଓଡ଼ିଶା ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସପକ୍ଷରେ ଦାବୀ କରୁଥିଲେ, ଏଥିପାଇଁ ଓଡ଼ିଶା ସଚ୍ଚିଦାନନ୍ଦ ସିଂହଙ୍କୁ ଜଣେ ପ୍ରଧାନ ବନ୍ଧୁରୂପେ ଗ୍ରହଣ କରିଥିଲା । ସଚ୍ଚିଦାନନ୍ଦ ମଧୁବାବୁଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ବିହାରୀ-ଓଡ଼ିଆ ସଦ୍‌ଭାବ ପ୍ରତିଷ୍ଠାପାଇଁ ସଚ୍ଚିଦାନନ୍ଦଙ୍କର ଏ ତ୍ୟାଗ ଓଡ଼ିଶା ଭୁଲିନାହିଁ । ନବଗଠିତ ପ୍ରଦେଶର ଦୁଇ ଅଂଶ ବିହାର ଓ ଓଡ଼ିଶା ବନ୍ଧୁଭାବରେ ରହିବା ସଂକଳ୍ପ ଏଥିରୁ ସ୍ପଷ୍ଟ ଜଣାପଡ଼ୁଥିଲା ।

**ମହାମାନ୍ୟ ଭାରତ ପ୍ରତିନିଧିଙ୍କ ଅଭ୍ୟର୍ଥନା ସଭା** –ମହାମାନ୍ୟ ଭାରତ ପ୍ରତିନିଧିଙ୍କ କଟକ ଶୁଭାଗମନ ସମୟରେ ତାହାଙ୍କ ଅଭ୍ୟର୍ଥନା ଆୟୋଜନ ନିମନ୍ତେ

କଟକର ଟାଉନ୍‌ହଲ ଲାଇବ୍ରେରି ହଲ୍‌ରେ ୧୯୧୩ ସେପ୍‌ଟେମ୍ବର ୨୭ ତାରିଖରେ ଏକ ସଭା ହୋଇଥିଲା । ମଧୁବାବୁ ଏ ସଭାରେ ସଭାପତି ହୋଇଥିଲେ ।

**ବାର୍ଦ୍ଧକ୍ୟର ତାଡ଼ନା** ୧୯୧୩ ଡିସେମ୍ବରରେ ମଧୁବାବୁ ଉତ୍କଳ ସମ୍ମିଳନୀର ନବମ ଅଧିବେଶନରେ ପୁରୀଠାରେ ସଭାପତିତ୍ୱ କରିଥିଲେ । ସେତେବେଳକୁ ତାଙ୍କର ବୟସ ୬୫ । ଏ ବୟସରେ ମଧ୍ୟ ସେ ଯୁବକର ମାନସିକ ଶକ୍ତି ଧରି କାର୍ଯ୍ୟ କରିବାକୁ ଉଦ୍ୟମ କରୁଥିଲେ । ହେଲେହେଁ, ବାର୍ଦ୍ଧକ୍ୟର ଗ୍ରୁପ ତାଙ୍କର ବିବିଧ କାର୍ଯ୍ୟରେ ସ୍ପଷ୍ଟ ହୋଇଉଠୁଥିଲା । ସେ ଏହି ସମ୍ପର୍କରେ ନିଜ ଅଭିଭାଷଣରେ କହିଥିଲେ—

"ଭାଇମାନେ, ଆପଣମାନଙ୍କ ଅନୁଗ୍ରହରୁ ମୁଁ ଏଠାରେ ବର୍ତ୍ତମାନ ସଭାପତିସ୍ୱରୂପ ଆପଣମାନଙ୍କ ସମ୍ମୁଖରେ ଦଣ୍ଡାୟମାନ; କିନ୍ତୁ ବର୍ତ୍ତମାନ ମୋହର ବୃଦ୍ଧାବସ୍ଥା । ଗୋଟିଏ ଗୋଡ଼ ଶ୍ମଶାନରେ ଏବଂ ଅନ୍ୟ ଗୋଡ଼ ଜନସମାଜରେ । ଏ ବୟସରେ ମୃତ୍ୟୁଶଯ୍ୟା ମାନସିକ ଚିତ୍ରପଟରେ ଓ ଆତ୍ମାର ଚକ୍ଷୁର ସମ୍ମୁଖରେ ସର୍ବଦା ଦୃଶ୍ୟମାନ । ମୁଁ ଓଡ଼ିଶାରେ ଜନ୍ମ ଗ୍ରହଣ କରିଅଛି ଏବଂ ଜାତି ପ୍ରତି ମୋହର କର୍ତ୍ତବ୍ୟକର୍ମ ଈଶ୍ୱରଙ୍କଦ୍ୱାରା ନିର୍ଦ୍ଦିଷ୍ଟ ହୋଇଅଛି । ଯେତେବେଳେ ମୃତ୍ୟୁଶଯ୍ୟାରେ ସଂସାର ସହିତ ମୋହର ସମ୍ପର୍କ ଛିନ୍ନହେବ ଏବଂ ମୋହର ଆତ୍ମାକୁ ଈଶ୍ୱର ପଚାରିବେ—'ତୁ ତୋର ଜାତିପ୍ରତି କର୍ତ୍ତବ୍ୟ କର୍ମ କି ପ୍ରକାର କରିଅଛୁ ?' ତେତେବେଳେ ମୋହର ଆତ୍ମା ଯଦି କହିପାରେ, 'ଯଥାସାଧ୍ୟ ମୁଁ ମୋହର ଜାତିର ସେବା କରିବାକୁ ଚେଷ୍ଟା କରିଅଛି', ତାହାହେଲେ ଦୀନଦରିଦ୍ର ଅବସ୍ଥାରେ ଏବଂ ଜନଶୂନ୍ୟ ସ୍ଥାନରେ ମୋହର ଶଯ୍ୟା ଥିଲେ ମଧ୍ୟ ମୁଁ ଆପଣାକୁ ସୁଖୀ ଜ୍ଞାନକରିବି । ଜଣେ ପାରସୀ କବି କହିଛନ୍ତି କି, 'ଯେତେବେଳେ କର୍ତ୍ତବ୍ୟପରାୟଣ ଆତ୍ମା ଏ ସଂସାର ତ୍ୟାଗ କରିବାକୁ ପ୍ରସ୍ତୁତ ହୁଏ, ତେତେବେଳେ ତାହା ପକ୍ଷରେ ମୃତ୍ୟୁଶଯ୍ୟା ରାଜସିଂହାସନ ହେଉ, ଅବା ପାଉଁଶଗଦା ହେଉ, ଏ ଦୁଇରେ କିଛି ପ୍ରଭେଦ ନାହିଁ ।"

ନିଃସ୍ୱାର୍ଥପର ଜନସେବକ, ଜନନାୟକ ମଧୁବାବୁ ଦୀନଦରିଦ୍ର ଓ ଅବହେଳିତ ଦୁଇକୋଟି ଓଡ଼ିଆଙ୍କପାଇଁ ଜୀବନ ଉତ୍ସର୍ଗ କରିଥିଲେ । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଏ ଦେଶର ଜନସମାଜର କଲ୍ୟାଣ କାମନା ଉଦ୍ଦେଶ୍ୟରେହିଁ ହୋଇଛି । ୬୫ ବର୍ଷର ବୃଦ୍ଧ ମୃତ୍ୟୁପରେ ନିଜର ସ୍ଥାନ ସମ୍ବନ୍ଧରେ ସନ୍ଧାନ ହେବାର ଅବକାଶ ନଥିଲା । ସେ ଜନସେବାରେ ଜୀବନ କଟାଇଛନ୍ତି, ଜନକଲ୍ୟାଣ ଚିନ୍ତା କରୁ କରୁ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ତାଙ୍କର ଆତ୍ମା ଈଶ୍ୱରଙ୍କ ପ୍ରଶ୍ନର ଉତ୍ତର ଦେଇଥିବ—'ଯଥାସାଧ୍ୟ ମୁଁ ମୋହର ଜାତିର ସେବା କରିବାକୁ ଚେଷ୍ଟା କରିଅଛି ।'

**ବିଚ୍ଛିନ୍ନାଞ୍ଚଳର ଦୁର୍ଦ୍ଦଶା** ମାନ୍ଦ୍ରାଜର ଓଡ଼ିଆ ଅଞ୍ଚଳ ମିଶ୍ରଣ ସମ୍ପର୍କୀୟ ପ୍ରସ୍ତାବ ଉପରେ ସଭାପତିରୂପେ ମଧୁବାବୁ (ନବମ ଅଧିବେଶନ, ପୁରୀ) ଏକ ମର୍ମସ୍ପର୍ଶୀ ମନ୍ତବ୍ୟ ପ୍ରକାଶକରିଥିଲେ । ସେ କହିଥିଲେ, "ମୁଣ୍ଡ ଏକ ସ୍ଥାନରେ, ହାତ ଏକ ସ୍ଥାନରେ, ପାଦ ଏକ

ସ୍ଥାନରେ ପଡ଼ିରହିଅଛି । ଏହି ଅବସ୍ଥାକୁ କେହି ମନୁଷ୍ୟର ସୁସ୍ଥ ଅବସ୍ଥା ବୋଲି କହିନପାରେ । ଉପେନ୍ଦ୍ର ଭଞ୍ଜ ଜନ୍ମଭୂମି **ଗଞ୍ଜାମ** ଉତ୍କଳମାତାଙ୍କ **ଗଣ୍ଡି**ରୁ **ବିଚ୍ଛିନ୍ନ** ହୋଇ ପଡ଼ିରହିଛି । ଯଦି ଏ ଦେଶର ମିଳନ **ହୁଏ**, ତେବେ ମନେକର ଏ ଅନ୍ତଃକରଣ କଅଣ ହେବ ? ନଦୀର ଯେପରି ଜୁଆର ହୋଇଥାଏ, ପୁଣି ଭଟ୍ଟା ହୋଇଗଲେ ପାଣିସବୁ ସ୍ଥାନେ ସ୍ଥାନେ ରହିଯାଏ, ସେହିପରି ଓଡ଼ିଶାର ଦିନେ ଜୁଆର ଅବସ୍ଥା ଥିଲା; କିନ୍ତୁ ବର୍ତ୍ତମାନ ଭଟ୍ଟା ଅବସ୍ଥାରେ ସ୍ଥାନେ ସ୍ଥାନେ ମନ୍ଦାଏ ପାଣି ରହିଲାପରି ଦେଶଟା ଏଠାରେ ଖଣ୍ଡେ ସେଠାରେ ଖଣ୍ଡେ ହୋଇ ପଡ଼ିରହିଅଛି । ଯେପରି ସେହି ସମସ୍ତ ଜଳାଶୟକୁ ପୁଣି ଏକତ୍ର କରିବାକୁ ହେଲେ ଜୁଆର ଆବଶ୍ୟକ, ସେହିପରି ଏହି ଦେଶକୁ ଏକତ୍ର କରିବାକୁ ହେଲେ, ସର୍ବତ୍ର ଜାତୀୟ ଭାବର ଜୁଆର ଉଠାଇବାକୁ ହେବ (ଘନ ଘନ କରତାଳି) । ଭଡ଼ାଗ-ପାଟଣାର (ବଣାଖାପାଟଣାର) ବନ୍ଧୁଙ୍କୁ ମୁଁ ପ୍ରଥମେ ତେଲୁଗୁ ବୋଲି ଜାଣିଥିଲି; କିନ୍ତୁ ତାଙ୍କର ବକ୍ତୃତା ଶୁଣି ମୋର ଏ ଭ୍ରମ ଭାଙ୍ଗିଗଲା । ସମସ୍ତେ ମରିପଡ଼ିଥିଲାବେଳେ କେହି କାହାକୁ ଚିହ୍ନନ୍ତି ନାହିଁ ; କିନ୍ତୁ ମୃତସଞ୍ଜୀବନୀ ଔଷଧ ଖାଇ ସମସ୍ତେ ଜୀବିତ ହେବାରୁ ପରସ୍ପରକୁ ଚିହ୍ନିଲେ । ଗୋପବନ୍ଧୁବାବୁ ଯାହା କହିଥିଲେ, କେବଳ ବିଶ୍ୱାସହିଁ ସର୍ବତ୍ର ଜୟ କରିବ (କରତାଳି) । ମୁଁ ମଧ୍ୟ ତାହାହିଁ କହୁଅଛି, କେବଳ ବିଶ୍ୱାସ କର । ବିଶ୍ୱାସରେ ବଳୀୟାନ ହୁଅ, ଜାତୀୟ ଉନ୍ନତିର ଜୁଆର ଦେଶର ଚାରିଆଡ଼େ ଉଠାଅ । ତୁମର ଅଭୀଷ୍ଟ ଫଳ ଆପେ ଆପେ ଆସିବ (କରତାଳି) ।''

**ସମ୍ମିଳନୀ କାର୍ଯ୍ୟରେ ଅସନ୍ତୋଷ** : ଉତ୍କଳ ସମ୍ମିଳନୀ କାର୍ଯ୍ୟର ଗତିରେ ମଧୁବାବୁ ସନ୍ତୁଷ୍ଟ ନ ଥିବା ୧୯୧୩ ପୁରୀ ଅଧିବେଶନରେ ତାଙ୍କର ସଭାପତି ଅଭିଭାଷଣରୁ ସ୍ପଷ୍ଟ ହେଉଛି । ସେ ଅତ୍ୟନ୍ତ ଦୁଃଖିତ ହୋଇ କହିଛନ୍ତି—''ମୁଁ ଶୁଣିଅଛି, ସଭାପତିର ଆସନ ଗ୍ରହଣ କରିବାକୁ କେହି ଇଚ୍ଛୁକ ନ ହେବାରୁ ଗତବର୍ଷ ସମ୍ମିଳନୀର ଅଧିବେଶନ ହୋଇନାହିଁ । ଏଥିରୁ ପ୍ରକାଶ ହେଉଅଛି, ସମ୍ମିଳନୀ ପ୍ରତି ଉତ୍କଳବାସୀମାନଙ୍କର ଯେ ପ୍ରକାର ଶ୍ରଦ୍ଧା, ଭକ୍ତି ଓ ସ୍ନେହ ପ୍ରଥମାବସ୍ଥାରେ ଥିଲା, ତାହା ବର୍ତ୍ତମାନ ନାହିଁ । ପୂର୍ବେ ସଭାପତିର ଆସନ ସମ୍ମାନସୂଚକ ଥିଲା । ବର୍ତ୍ତମାନ ତାହା ଅସମ୍ମାନର ସ୍ଥାନ ହୋଇଅଛି । ସେହି ହେତୁରୁ ଉତ୍କଳର କେହି କୃତି ସନ୍ତାନ ସେ ସ୍ଥାନରେ ବସିବାକୁ ଚାହାନ୍ତି ନାହିଁ । ମନେକରନ୍ତି, ଏହା ଅଯୋଗ୍ୟ ଲୋକର ଉପଯୁକ୍ତ ସ୍ଥାନ । ଏଣୁକରି ଉତ୍କଳମାତାର ମୁଁ ଜଣେ ଅଯୋଗ୍ୟ ସନ୍ତାନ ଥିବାରୁ କର୍ତ୍ତବ୍ୟାନୁରୋଧରେ ବାଧ୍ୟ ହୋଇ ଏ ସ୍ଥାନରେ ଉପସ୍ଥିତ ହେଲି । ଏତଦ୍ଦ୍ୱାରା ଉତ୍କଳର ମଙ୍ଗଳ ହେବ କି ଅମଙ୍ଗଳ ହେବ, ତାହା ଆପଣମାନେ ବିଚାର କରିବେ × × ।''

ମଧୁବାବୁ ଉତ୍କଳ ସମ୍ମିଳନୀର କାର୍ଯ୍ୟ ପରିଚାଳନା ସହିତ ମୂଳରୁ ଅର୍ଥାତ୍ ୧୯୦୩ରୁ ଘନିଷ୍ଠଭାବରେ ସମ୍ପୃକ୍ତ ଥିଲେ । ପ୍ରଥମାବସ୍ଥାରେ ସେ ଉତ୍କଳ ସମ୍ମିଳନୀର ସମ୍ପାଦକ ଥାଇ

କାର୍ଯ୍ୟ ନିର୍ଦ୍ଦେଶ କରୁଥିଲେ । ଅଭୂତପୂର୍ବ ଉନ୍ମାଦନା ଓଡ଼ିଆ ଅଞ୍ଚଳମାନଙ୍କରେ ଦେଖାଦେଇଥିଲା । ବହୁ କର୍ମୀ ଓ ସ୍ୱେଚ୍ଛାସେବକ ମୋଗଲବନ୍ଦୀ ଓ ଗଡ଼ଜାତର ବିଭିନ୍ନ ସ୍ଥାନ ଭ୍ରମଣ କରି ସମ୍ମିଳନୀର ମନ୍ତ୍ର ପ୍ରଚାର କରୁଥିଲେ—'ତୁମେ ଓଡ଼ିଆ, ଓଡ଼ିଆ ବୋଲି ଗର୍ବ କର । ତୁମର ଗୌରବମୟ ଇତିହାସ ଅଛି, ତୁମ ଜାତି ନଗଣ୍ୟ ହେୟ ନୁହେଁ । ଉଠ, ଜାଗ୍ରତ ହୁଅ, ଦେଶମାତୃକାର ଡାକ ଶୁଣ ।' ମଧୁବାବୁ ଏହି ମନ୍ତ୍ର ସ୍ୱଚ୍ଛପ୍ରାଣ, ନିରଳସ, ତ୍ୟାଗୀ ଉତ୍କଳ ସମ୍ମିଳନୀର କର୍ମୀଗଣଙ୍କଦ୍ୱାରା ଦେଶରେ ପ୍ରଚାର କରିବାରେ ସମର୍ଥ ହୋଇପାରିଥିଲେ । ସେ ନିଜ ହାତରୁ ଏଥିସକାଶେ ବହୁ ଅର୍ଥ ବ୍ୟୟ କରୁଥିଲେ । ମଧୁବାବୁଙ୍କର ସମ୍ପାଦକତ୍ୱ ସହିତ ସମ୍ପର୍କ ତ୍ୟାଗ ପରେ ସମ୍ମିଳନୀର କାର୍ଯ୍ୟ ସନ୍ତୋଷଜନକ ହୋଇ ନଥିବା ଉପଲବ୍ଧି କରାଯାଉଥିଲା । ଏହିପରି ଅବସାଦର ଅବସ୍ଥା ପ୍ରତ୍ୟେକ ଅନୁଷ୍ଠାନରେ ଦେଖାଯାଇଥାଏ । ପ୍ରଥମାବସ୍ଥାର ମାଦକତା କ୍ରମେ କ୍ଷୀଣ ହୋଇ ଆସେ । ପୁନର୍ବାର ଚେଷ୍ଟା କରିବାକୁ ହୁଏ । ସମ୍ମିଳନୀର ଅବସ୍ଥା ମଧ୍ୟ ସେହିପରି ହୋଇଥିଲା । ପ୍ରାଥମିକ ମାଦକତା କ୍ରମେ ହ୍ରାସ ପାଇଆସିବାରୁ ଦଶବର୍ଷ ପରେ (୧୯୧୩ ବେଳକୁ) ସଭାପତି ହେବାପାଇଁ ମଧ୍ୟ କେହି ସମ୍ମତ ହେଉନଥିଲା ଭଳି ଅବସ୍ଥା ଉପୁଜିଥିଲା । 'ଉତ୍କଳ ସମ୍ମିଳନୀ' ମଧୁବାବୁଙ୍କ ବାର୍ଦ୍ଧକ୍ୟ ଅବସ୍ଥାର ସନ୍ତାନ । ସନ୍ତାନର ଯଥୋଚିତ ଲାଳନପାଳନ ପାଇଁ ଯେଉଁ ପରିଶ୍ରମ ଓ ଯତ୍ନ ଆବଶ୍ୟକ, ତାହା ବୃଦ୍ଧାବସ୍ଥାରେ ସମ୍ଭବ ନଥିଲା । ସେହିହେତୁ ସେ ବିଶେଷ ଭାବରେ ଚିନ୍ତିତ ହୋଇପଡ଼ୁଥିଲେ । ଉତ୍କଳ ସମ୍ମିଳନୀର ଅଗ୍ରଗତି ଓ ସୁଷମ ବର୍ଦ୍ଧନ ତାଙ୍କ ପ୍ରାଣର ଆକାଂକ୍ଷା ଥିଲା । ଏଥିରେ ଟିକିଏ ଶିଥିଳତା ଦେଖାଦେଲେ ବୃଦ୍ଧ ପିତାର ମନରେ ଅବସାଦ ଜାତ ହେବା ସ୍ୱାଭାବିକ । ସେ ସ୍ପଷ୍ଟଭାବରେ କହିଛନ୍ତି, "ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ ଉତ୍କଳର ଉନ୍ନତିସାଧନ ସକାଶେ ଅନେକ ପ୍ରସ୍ତାବ ଏଥିପୂର୍ବେ ହୋଇଥିଲା । ସେସବୁ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇନାହିଁ ବୋଲି ମୁଁ ଶୁଣିଅଛି । ତାହା ସତ୍ୟ କି ମିଥ୍ୟା, ବିଚାର କରିବାର ଅଧିକାର ମୋର ନାହିଁ; କିନ୍ତୁ ଯେଉଁ ସବୁ କାର୍ଯ୍ୟ କରିବାର ପ୍ରସ୍ତାବ ହୋଇଥିଲା, ସେସବୁ ଉନ୍ନତି ପଥରେ ଉତ୍କଳବାସୀମାନେ ଯେ ଗତ ଦଶ ବର୍ଷ ମଧ୍ୟରେ ଅଗ୍ରସର ହୋଇଛନ୍ତି ତାହା କୌଣସି ପ୍ରକାରେ କୁହାଯାଇ ନପାରେ । ଉତ୍କଳବାସୀଙ୍କ ମଧ୍ୟରେ ଯେଉଁମାନେ ଉଚ୍ଚ ଶ୍ରେଣୀସ୍ଥ ଅଟନ୍ତି, ସେମାନେ ପ୍ରତ୍ୟେକ ଅଧିବେଶନରେ ସମ୍ମିଳନୀର କାର୍ଯ୍ୟରେ ଯୋଗଦାନ କରିଥିଲେ ଏବଂ ଉନ୍ନତି ସମ୍ବନ୍ଧେ ଅନୁରାଗ ଓ ଉତ୍ସାହ ପ୍ରକାଶକରିଥିଲେ; କିନ୍ତୁ କାର୍ଯ୍ୟରେ କୌଣସି ଉନ୍ନତି ହୋଇ ନାହିଁ । ଏହାର କାରଣ ସମ୍ବନ୍ଧରେ ସେ କହିଥିଲେ ଯେ ଦେଶର ଲୋକେ ଓ କର୍ମୀମାନେ "ଉତ୍କଳ ସମ୍ମିଳନୀର ଅର୍ଥ ବୁଝିବା ଉଚିତ ଏବଂ ଉତ୍କଳ ସମ୍ମିଳନୀର ଅର୍ଥ ବୁଝିବା ପୂର୍ବରୁ ସମ୍ମିଳନୀର ଅର୍ଥ ବୁଝିବା ଆବଶ୍ୟକ ।" ସେ ଏହି ଦୁଇଟିର ଅର୍ଥ ମଧ୍ୟ ବୁଝାଇଥିଲେ ।

ମଧୁବାବୁ ନିରାଶାବାଦୀ ନ ଥିଲେ । ଶିଳ୍ପୋନ୍ନତି କ୍ଷେତ୍ରରେ ସ୍ୱାର୍ଥତ୍ୟାଗୀ ଓ ପରୋପକାରୀ ବ୍ୟକ୍ତି ବାହାରି ବିଭିନ୍ନ ଶିଳ୍ପ ପ୍ରତିଷ୍ଠାକରି ଦେଶମୁଖ ଉଜ୍ଜ୍ୱଳ କରିବେ,

ଏ ଆଶା ତାଙ୍କର ଥିଲା; କିନ୍ତୁ ତାଙ୍କର ମନ୍ତବ୍ୟଗୁଡ଼ିକ ସ୍ୱ-ଜୀବନ କାହାଣୀରୁ ଗୃହୀତ ହୋଇଥିବା ସ୍ପଷ୍ଟ । ସେ ନିଜେ ମୁଷ୍ଟିମେୟ ପରୋପକାରୀଙ୍କ ଭିତରୁ ଜଣେ; ଜାତିର ଶିଳ୍ପର ଉନ୍ନତିପାଇଁ ଅକାତରରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରିଛନ୍ତି । ଶିଳ୍ପୋନ୍ନତିଦ୍ୱାରା ଦେଶର ଉନ୍ନତି ହେବ ବୋଲି ସେ ବିଶ୍ୱାସ କରୁଥିଲେ । ସେଥିପାଇଁ "ଆପଣାର ପରିଶ୍ରମ, ବୁଦ୍ଧି ଓ ଧନକୁ ବଳିଦାନ" ସ୍ୱରୂପ ସେ କାର୍ଯ୍ୟରେ ଅର୍ପଣ କରିଥିଲେ ଓ ଲାଭର ଆଶା ତ୍ୟାଗ କରିଥିଲେ । "ହୋଇପାରେ, ଦରିଦ୍ର ଅବସ୍ଥାରେ ପ୍ରାଣତ୍ୟାଗ କରିବି"—ମଧୁବାବୁଙ୍କ ଏ ଆଶଙ୍କା, ଏ ଭବିଷ୍ୟତବାଣୀ ତାଙ୍କ ଜୀବନରେହିଁ ଦେଖା ଦେଇଥିଲା । ଓଡ଼ିଆ ଜାତି ପାଇଁ ତାଙ୍କର ଏ ତ୍ୟାଗ ଅତୁଳନୀୟ । "ଯେଉଁ ଉନ୍ନତିର ବୀଜ ବପନ କରିଯିବି ତହିଁର ଫଳ ଉତ୍କଳ ସନ୍ତାନମାନେ ପଶ୍ଚାତ୍ ଆସ୍ୱାଦନ କରିବେ"—ମଧୁବାବୁଙ୍କର ଏହି ଭବିଷ୍ୟତ୍‌ବାଣୀ ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରମାଣିତ ହୋଇଛି ।

ଯେଉଁମାନେ ଦେଶକାର୍ଯ୍ୟ କରିବାକୁ ବାହାରିବେ, ସେମାନେ ପ୍ରଥମେ ଆପେ ଆପଣାକୁ ପରୀକ୍ଷା କରିବା ଉଚିତ । ତେବେ ଏହି କାର୍ଯ୍ୟ ସହଜ ନୁହେଁ । ମଧୁବାବୁ କହିଥିଲେ—"କୌଣସି ଜାତିର ଉନ୍ନତିସାଧନ କରିବା ନିମନ୍ତେ ଯେଉଁ ବ୍ୟକ୍ତିମାନେ ଇଚ୍ଛାକରନ୍ତି ସେମାନଙ୍କର ପ୍ରଥମେ ଆପଣାକୁ ଆପେ ପରୀକ୍ଷାକରିବା ଉଚିତ । ପରୀକ୍ଷାର ଉଦ୍ଦେଶ୍ୟ, ତାଙ୍କ ହୃଦୟରେ ଜାତୀୟ ଜୀବନର ଉତ୍ପତ୍ତି ହୋଇଛି କି ନା ? ଆପଣାକୁ ଆପେ ପରୀକ୍ଷା କରିବାକୁ ହେବ । ଯେ ପରୀକ୍ଷା କରିବେ ଓ ଯାହାଙ୍କର ପରୀକ୍ଷା ହେବ, ସେମାନେ ଏ ସ୍ଥଳରେ ପୃଥକ୍ ବ୍ୟକ୍ତି ନ ହୋଇ ଏକ ବ୍ୟକ୍ତି ଅଟନ୍ତି । ଆପଣାକୁ ଆପେ ପରୀକ୍ଷାକରିବା ଏକଭାବରେ ବଡ଼ ସହଜ କାର୍ଯ୍ୟ; ମାତ୍ର ପ୍ରକୃତରେ ବଡ଼ କଠିନ ଅଟେ ।" ଏକ ଉଦାହରଣ ଦେଇ ସେ ବୁଝାଇଥିଲେ, "ମନୁଷ୍ୟ ସ୍ୱଭାବତଃ ପରର ଦୋଷ ପ୍ରକୃତରେ ଦେଖିପାରେ; ନିଜର ଦୋଷ ଦେଖିବା ତାହାପକ୍ଷରେ ସହଜ ନୁହେଁ । ଅନ୍ଧକାର ରାତ୍ରିରେ ଚନ୍ଦ୍ରର ଉଦୟ ହେଲେ, ଅନ୍ଧକାର ଦୂର ହୁଏ; ମାତ୍ର ମନୁଷ୍ୟ ଚନ୍ଦ୍ରର କଳଙ୍କ ଦେଖିବାକୁ ଛାଡ଼େ ନାହିଁ, ଆପେ ଯେ ଅନ୍ଧକାରରେ ଥିଲା, ସେକଥା ସେ ଭୁଲିଯାଏ । ମଇଁଷିଟା ନିଜେ କଳା, ମାତ୍ର କାଳିଆ ବସ୍ତ୍ର ଦେଖିଲେ କ୍ରୋଧ ପ୍ରକାଶ କରେ ଓ ଯେ ପିନ୍ଧିଥାଏ ତାକୁ ମାରିବାକୁ ଦଉଡ଼େ । ସୁତରାଂ ଦେଖାଯାଏ ଆତ୍ମପରୀକ୍ଷା ବଡ଼ ସହଜ ନୁହେଁ × ✖ ।"

**କର୍ମୀ ଅଭାବ** : ମଧୁବାବୁ ସଭାପତି ଅଭିଭାଷଣରେ ସମ୍ମିଳନୀ କାର୍ଯ୍ୟର ଶିଥିଳତା ଦେଖି ଦୁଃଖ ପ୍ରକାଶ କରିଥିଲେ ଏବଂ ଉପଯୁକ୍ତ କର୍ମୀଙ୍କ ଅଭାବ ଦୂର କରିଗଲେ ଅଗ୍ରଗତି ସନ୍ତୋଷଜନକ ହେବ ବୋଲି କହିଥିଲେ ।

**ମିଳନ ଓ ସମ୍ମିଳନୀ** : "ସମ୍ମିଳନୀ' ଓ 'ମିଳନ' ଭିତରେ ଯେଉଁ ପ୍ରଭେଦ ବିଦ୍ୟମାନ, ତାହା ବହୁ ଉଦାହରଣ ଦେଇ ସେ ବୁଝାଇଥିଲେ—"ମିଳିତ ପଦାର୍ଥମାନଙ୍କର ପୃଥକ୍ ଅସ୍ତିତ୍ୱ ଓ ଗୁଣ ଲୋପହୋଇ ଏକ ନୂତନ ପଦାର୍ଥ ଉତ୍ପନ୍ନ ହେବ । ବ୍ୟକ୍ତିଗତ

ଜୀବନ ଲୋପହୋଇ ଜାତୀୟ ଜୀବନରେ ପରିଣତ ନ ହେବାଯାଏ ପ୍ରକୃତ ମିଳନ ଅସମ୍ଭବ । ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସମସ୍ତ ଉତ୍କଳବାସୀଙ୍କର ମଙ୍ଗଳସାଧନ । ସମସ୍ତ ଉତ୍କଳବାସୀ କହିଲେ ଏକ ଜାତି ବୁଝାଏ । ଜାତି ଶବ୍ଦ ସାଧାରଣତଃ ବ୍ରାହ୍ମଣାଦି ବର୍ଣ୍ଣକୁ ବୁଝାଇଥାଏ । କିନ୍ତୁ ସେ ଅର୍ଥରେ ମୁଁ ଜାତିଶବ୍ଦ ବ୍ୟବହାର କରୁନାହିଁ । ଯେଉଁ ଅର୍ଥରେ ଇଂରେଜ ଜାତି, ଜାପାନୀ ଜାତି, ବଙ୍ଗାଳୀ ଜାତି ଏହି ଶବ୍ଦମାନ ଆମ୍ଭେମାନେ ବ୍ୟବହାର କରିଥାଉଁ, ସେହି ଅର୍ଥରେ ମୁଁ ଜାତିଶବ୍ଦ ବ୍ୟବହାର କରୁଅଛି । ଉତ୍କଳଜାତିର ଅର୍ଥ, ଯେଉଁମାନେ ଆପଣାକୁ ଉତ୍କଳ-ସନ୍ତାନ ବୋଲି ମନେ କରନ୍ତି ଏବଂ ଉତ୍କଳର ଅତୀତ ଗୌରବକୁ ଆକାଂକ୍ଷା କରନ୍ତି, ସେହିମାନଙ୍କୁ ମୁଁ ଉତ୍କଳଜାତି ବୋଲି ଜ୍ଞାନକରେ ।" ଉତ୍କଳଜାତିର ସଂଜ୍ଞା ଅତି ବ୍ୟାପକ ଓ ବିଶ୍ୱଭାବଦ୍ୟୋତକ । ସଂକୀର୍ଣ୍ଣତାବର୍ଜିତ ଏ ସଂଜ୍ଞା ସେତେବେଳେ ଯେ ଓଡ଼ିଶାର ସବୁ ଭାଷାଭାଷୀ ଅଧିବାସୀଙ୍କୁ ଏକ ଭ୍ରାତୃଭାବରେ ବନ୍ଧନ କରି ରଖିଥିଲା, ଏଥିରେ ସନ୍ଦେହ ନାହିଁ । ଏହା ଓଡ଼ିଆ ଜାତିର ସାମୂହିକ ଉନ୍ନତି ପଥରେ ସହାୟକ ହେଉଛି । ଏ ଉଦାର ମନୋଭାବ ଉତ୍କଳର ପ୍ରାଚୀନ ପରଂପରାଦ୍ୱାରା ସମର୍ଥିତ ।

**ବ୍ୟକ୍ତିଗତ ଜୀବନ ଓ ଜାତୀୟ ଜୀବନ :** ବ୍ୟକ୍ତିଗତ ଜୀବନ ଓ ଜାତୀୟ ଜୀବନ ସମ୍ବନ୍ଧରେ ବିସ୍ତୃତଭାବରେ ଆଲୋଚନା କରି ମଧୁବାବୁ କହିଥିଲେ—"ଉତ୍କଳ ସମ୍ମିଳନୀ ଜାତିର ସଭା । ଏଠାରେ ଜାତି ଉପସ୍ଥିତ । ପଶୁପକ୍ଷୀଙ୍କର ମଧ୍ୟ ଜାତୀୟ ଗୁଣ ଅଛି; କାରଣ ସେମାନଙ୍କର ଜାତୀୟ ଜୀବନ ଅଛି ।" ଏହି ଓଡ଼ିଆ ଜାତିର ମଧ୍ୟ କେତେକ ନିର୍ଦ୍ଦିଷ୍ଟ ଗୁଣ ଥିବା ବ୍ୟକ୍ତକରି ସେ କହିଥିଲେ—"ମାନ ଉନ୍ନତିର ସବନିମ୍ନ ସୋପାନ ହେଉଛି ସ୍ୱାର୍ଥପରତା । ତତ୍ପରେ ସହଚରମାନଙ୍କ ମଙ୍ଗଳସାଧନ, ତତ୍ପରେ ପାରିବାରିକ ଜୀବନ, ତତ୍ପରେ ଜାତୀୟ ଜୀବନ । ଜାତୀୟ ଜୀବନ ଉଦ୍‌ଭବ ହେବାପୂର୍ବେ ଜାତିର ଉନ୍ନତି ସାଧନ ସକାଶେ କାର୍ଯ୍ୟ ଆରମ୍ଭକଲେ ସେ କାର୍ଯ୍ୟ ସଫଳ ହେବାର ସମ୍ଭବ ନୁହେଁ ।" ଉତ୍କଳବାସୀଙ୍କ ମଧ୍ୟରୁ ପ୍ରଧାନ ବ୍ୟକ୍ତିମାନଙ୍କ ଭିତରେ ଜାତୀୟ ଜୀବନର ଅଭାବ ଦେଖି ସେ ଦୁଃଖ ପ୍ରକାଶ କରିଥିଲେ ଏବଂ ଏହାହିଁ ଉତ୍କଳ ସମ୍ମିଳନୀର ପ୍ରସ୍ତାବମାନ ବିଫଳ ହୋଇଥିବାର ପ୍ରଧାନ କାରଣ ବୋଲି ସ୍ପଷ୍ଟଭାବରେ କହିଥିଲେ ।

**ଶିଳ୍ପର ଉନ୍ନତିପାଇଁ ଉଦ୍ୟମ :** ଜାତୀୟଜୀବନ ଓ ବ୍ୟକ୍ତିଗତ ଜୀବନ ଭିତରେ ବିଦ୍ୟମାନ ଥିବା ପ୍ରଭେଦ ଜାତୀୟ ଉନ୍ନତି ଓ ବ୍ୟକ୍ତିଗତ ଉନ୍ନତିରେ ମଧ୍ୟ ଥିବା ସେ ବୁଝାଇଥିଲେ । ଉତ୍କଳ ଜାତିର ଉନ୍ନତିପାଇଁ ସମସ୍ତେ ଚେଷ୍ଟା କରିବା ଆବଶ୍ୟକ ବୋଲି ଉଦ୍‌ବୋଧନ ଦେଇ ସେ କହିଥିଲେ —"ଶିଳ୍ପର ଉନ୍ନତି ନ ହେଲେ ଦେଶର ଉନ୍ନତି ଅସମ୍ଭବ । ଏ କ୍ଷେତ୍ରରେ ବକ୍ତୃତା ଅପେକ୍ଷା କାମକୁ ସେ ପସନ୍ଦ କରୁଥିଲେ । 'ଆପଣେ ଆଚରି ଧର୍ମ ପରକେ ଶିଖାଏ' ନୀତିକୁ ସେ ବେଶି ମାନ୍ୟ କରୁଥିଲେ । ବର୍ତ୍ତମାନ ଭାରତବର୍ଷରେ ଶିଳ୍ପର ଉନ୍ନତି ସମ୍ବନ୍ଧେ ଅନେକ ବକ୍ତୃତା ଓ ଅନେକ ଉଦ୍‌ଯୋଗ ଦେଖାଯାଏ । ସୁଶିକ୍ଷିତ ବ୍ୟକ୍ତିମାନେ ସ୍ୱୀକାର କରନ୍ତି ଯେ ଶିଳ୍ପର ଉନ୍ନତି ନ ହେଲେ

ଭାରତବର୍ଷର ଉନ୍ନତ ହେବା ଅସମ୍ଭବ । ସମ୍ମିଳନୀ ଅଧିବେଶନରୁ ମଧ୍ୟ ଏ ସମ୍ବନ୍ଧେ ଅନେକ ପ୍ରସ୍ତାବ ହୋଇଅଛି ଓ ଦୀର୍ଘ ବକ୍ତୃତାମାନ ହୋଇଅଛି; କିନ୍ତୁ ଯେଉଁମାନେ ବକ୍ତୃତା କରନ୍ତି, ସେମାନେ ନିଜେ ଶିଳ୍ପୀ ହେବାର ଚେଷ୍ଟା କରନ୍ତିନାହିଁ । ଅଧୁନା ଓଡ଼ିଶାର ସୁଶିକ୍ଷିତ ଯୁବକମାନଙ୍କ ମଧ୍ୟରେ ସରକାରୀ ଚାକିରୀ କିମ୍ବା ଓକିଲତି ଜୀବନର ଉଦ୍ଦେଶ୍ୟ ଦେଖାଯାଏ ।" ଏହାର କାରଣ ନିର୍ଦ୍ଦେଶ କରିବାକୁ ଯାଇ ସେ କହିଛନ୍ତି, "ମୋ କ୍ଷୁଦ୍ର ବିବେଚନାରେ ଏହାର କାରଣ ଆମ୍ଭେମାନେ ଆତ୍ମୋନ୍ନତି ଓ ଜାତୀୟ ଉନ୍ନତିର ପ୍ରଭେଦ ବୁଝିନାହୁଁ ।"

ଓଡ଼ିଶାର ଶିଳ୍ପୋନ୍ନତି ସମ୍ବନ୍ଧରେ ମଧୁବାବୁ କହିଥିଲେ, "ମୁଁ ଆଶା କରୁନାହିଁ ଯେ ଏ ଦେଶରେ ବର୍ତ୍ତମାନ ଅବସ୍ଥାରେ ମୋହର କହିବାଦ୍ୱାରା ଓଡ଼ିଶାର ଲୋକମାନେ ଶିଳ୍ପୋନ୍ନତିର ଆବଶ୍ୟକତା ବୁଝିବେ । କୌଣସି ଜାତିକୁ ବକ୍ତୃତାଦ୍ୱାରା ଅନଭ୍ୟସ୍ତ କାର୍ଯ୍ୟରେ ପ୍ରବୃତ୍ତ କରାଯାଇ ନପାରେ । ଏହାର ଏକମାତ୍ର ଉପାୟ ବ୍ୟକ୍ତିଗତ ତ୍ୟାଗ ସ୍ୱୀକାରଦ୍ୱାରା ବାଟ ଦେଖାଇବା । ବର୍ତ୍ତମାନ ଯେଉଁ ବ୍ୟକ୍ତି ବିଶ୍ୱାସକରେ କି ଶିଳ୍ପୋନ୍ନତି ଦ୍ୱାରା ଓଡ଼ିଶାର ଉନ୍ନତି ହେବ, ସେ ଆପଣାର ପରିଶ୍ରମ, ବୁଦ୍ଧି ଓ ଧନକୁ ବଳିଦାନ ସ୍ୱରୂପ ସେ କାର୍ଯ୍ୟରେ ଅର୍ପଣ କରୁ, ଲାଭର ଆଶା ତ୍ୟାଗକରୁ । ହୋଇପାରେ, ସେ ଦରିଦ୍ର ଅବସ୍ଥାରେ ପ୍ରାଣ ତ୍ୟାଗକରିବ; କିନ୍ତୁ ଯେଉଁ ଉନ୍ନତିର ବୀଜ ସେ ବପନ କରିଯିବ ତହିଁର ଫଳ ଉତ୍କଳ ସନ୍ତାନମାନେ ପଶ୍ଚାତ୍ ଆସ୍ୱାଦନ କରିବେ ।"

ଏହା ସହିତ ଶିଳ୍ପ ବିକାଶର ଧାରା ସମ୍ବନ୍ଧରେ ମଧୁବାବୁ କହିଥିଲେ, "ଯେଉଁ ଶିଳ୍ପୀର ହାତର ମୂଲ୍ୟ ଥରେ ବୃଦ୍ଧି ହେଲା ତାହା ହ୍ରାସ ପାଇବ ନାହିଁ, ବରଂ ସେ ପ୍ରକାର ହାତର ସଂଖ୍ୟା କ୍ରମଶଃ ବୃଦ୍ଧି ହେବ । ଜଣକର ମୃତ୍ୟୁରେ ଜାତିର ଜୀବନ ବୃଦ୍ଧି ହୁଏ, ଏହା ପ୍ରକୃତିର ନିୟମ ଅଟେ ।" ସେ ବିଶ୍ୱାସ କରୁଥିଲେ ଯେ ନିଃସ୍ୱାର୍ଥ ଭାବେ ଏ କ୍ଷେତ୍ରରେ ପ୍ରବୃତ୍ତ ହେବା ଲୋକଙ୍କ ସଂଖ୍ୟା ବୃଦ୍ଧି ପାଇବ, ଅବଶ୍ୟ ଏମାନଙ୍କ ସଂଖ୍ୟା ବେଶି ନହୋଇ ପାରେ; "କିନ୍ତୁ ଦେଶରେ କୋଟି କୋଟି ଟଙ୍କା ବ୍ୟୟକରି ରାଜାମାନେ ସମସ୍ତ ଭାରତବର୍ଷର ଉପକାରାର୍ଥେ ଜଗନ୍ନାଥଙ୍କର ମନ୍ଦିର ପ୍ରସ୍ତୁତ କରିଥିଲେ । ଆଶା କରାଯାଏ, ସେହି ଉତ୍କଳଭୂମିରେ ସେ ପ୍ରକାର ପରୋପକାରୀ ବ୍ୟକ୍ତିମାନେ ବର୍ତ୍ତମାନ ଅଛନ୍ତି ଓ ସେମାନେ ନିଜ ଜନ୍ମଭୂମି ପ୍ରତି କର୍ତ୍ତବ୍ୟରେ କେବେହେଲେ ତ୍ରୁଟି କରିବେନାହିଁ ।"

ମଧୁବାବୁ ନିରାଶାବାଦୀ ନଥିଲେ । ଶିଳ୍ପୋନ୍ନତି କ୍ଷେତ୍ରରେ ସ୍ୱାର୍ଥତ୍ୟାଗୀ, ପରୋପକାରୀ ବ୍ୟକ୍ତି ବାହାରି ବିଭିନ୍ନ ଶିଳ୍ପ ପ୍ରତିଷ୍ଠାକରି ଦେଶର ମୁଖ ଉଜ୍ଜ୍ୱଳ କରିବେ, ଏ ଆଶା ତାଙ୍କର ଥିଲା । ତାଙ୍କର ଏହି ମନ୍ତବ୍ୟଗୁଡ଼ିକ ସ୍ୱ ଜୀବନ କାହାଣୀରୁ ଗୃହୀତ ହୋଇଥିବା ସ୍ପଷ୍ଟ । ସେ ନିଜେ ମୁଷ୍ଟିମେୟ ସେହି ପରୋପକାରୀଙ୍କ ଭିତରୁ ଜଣେ । ଜାତିର ଶିଳ୍ପର ଉନ୍ନତି ପାଇଁ ଅକାତରରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରିଛନ୍ତି । ଶିଳ୍ପୋନ୍ନତିଦ୍ୱାରା ଦେଶର ଉନ୍ନତି

ହେବ ବୋଲି ସେ ବିଶ୍ୱାସ କରୁଥିଲେ । ସେଥିପାଇଁ ଆପଣାର ପରିଶ୍ରମ, ବୁଦ୍ଧି ଓ ଧନକୁ ବଳିଦାନ ସ୍ୱରୂପ ସେ କାର୍ଯ୍ୟରେ ଅର୍ପଣ କରିଥିଲେ ଓ ଲାଭର ଆଶା ତ୍ୟାଗକରିଥିଲେ । 'ହୋଇପାରେ, ଦରିଦ୍ର ଅବସ୍ଥାରେ ସେ ପ୍ରାଣତ୍ୟାଗ କରିବ' ମଧୁବାବୁଙ୍କ ଏ ଆଶଙ୍କା, ଏ ଭବିଷ୍ୟତ ବାଣୀ ତାଙ୍କ ଜୀବନରେ ହିଁ ଦେଖାଦେଇଥିଲା । ଓଡ଼ିଆ ଜାତିପାଇଁ ତାଙ୍କର ଏ ତ୍ୟାଗ ଅତୁଳନୀୟ; 'କିନ୍ତୁ ଯେଉଁ ଉନ୍ନତିର ବୀଜ ସେ ବପନ କରିଯିବ, ତହିଁର ଫଳ ଉତ୍କଳ ସନ୍ତାନମାନେ ପଶ୍ଚାତ୍ ଆସ୍ୱାଦନ କରିବେ ।' ଏହି ଭବିଷ୍ୟତବାଣୀ ସର୍ବତୋଭାବେ ଦେଶରେ ପ୍ରକାଶ ପାଉ, ଏହା ପ୍ରତ୍ୟେକ ଦେଶବାସୀ ଆଶା କରୁଛି ।

**ସ୍ତ୍ରୀ ଶିକ୍ଷାର ଆବଶ୍ୟକତା** : ସ୍ତ୍ରୀ ଶିକ୍ଷା ପ୍ରସାରର ଆବଶ୍ୟକତା ବୁଝାଇବାକୁ ସେ କେତେକ ମୌଳିକ ଚିନ୍ତାର ଅବତାରଣା କରିଥିଲେ । ସେ କହିଥିଲେ, ସ୍ତ୍ରୀଜାତିର ଶିକ୍ଷା ବ୍ୟତୀତ ଜାତିର ଉନ୍ନତି ସମ୍ଭବ ନୁହେଁ । 'ଜାତି'ର ତତ୍ତ୍ୱ ସମ୍ବନ୍ଧରେ ସେ କହିଥିଲେ, "ଇତିହାସଲିଖିତ ପୂର୍ବକାଳର ଆମ୍ଭମାନଙ୍କର ଗୌରବାନ୍ୱିତ ଅବସ୍ଥା ସ୍ମରଣକରି ଆମ୍ଭେମାନେ ଆସ୍ଫାଳନ କରିଥାଉଁ; କିନ୍ତୁ ତେତେବେଳେ 'ଜାତି' ବୋଇଲେ କେବଳ ପୁରୁଷମାନଙ୍କୁ ବୁଝାଉଥିଲା । ଜାତିର କୌଣସି କାର୍ଯ୍ୟରେ ସ୍ତ୍ରୀମାନେ ଯୋଗ ଦେଉ ନଥିଲେ କିମ୍ବା ସେରୂପ କାର୍ଯ୍ୟରେ ସେମାନେ ଆମ୍ଭକୁ ସାହାଯ୍ୟ କରିବା ମଧ୍ୟ ଆମେ ଇଚ୍ଛା କରିନାହୁଁ । ଓଡ଼ିଶାର ବର୍ତ୍ତମାନ ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ପୁସ୍ତକ ଲେଖିବାର ଇଚ୍ଛା ଅତିଶୟ ବଳବତୀ ହେବାର ଦେଖାଯାଏ । ଅନେକ କବିତା ରଚିତ ହେଉଅଛି । ନାଟକ ଲେଖିବାର ଇଚ୍ଛା ମଧ୍ୟ ପ୍ରବଳ ହୋଇଥିବାର ବୋଧହୁଏ । ମୁଁ ଗ୍ରନ୍ଥକାରମାନଙ୍କ ଅନୁଗ୍ରହରୁ ପୁସ୍ତକ ସବୁ ପାଇଥାଏ । ସେ ସବୁ ପୁସ୍ତକ ମଧ୍ୟରୁ ଅଧିକାଂଶରେ ଦେଖାଯାଏ ଯେ ଲେଖକ ମାନସିକ ଚିତ୍ରପଟରେ ସ୍ତ୍ରୀଜାତିର ମାଧୁର୍ଯ୍ୟ ପ୍ରକୃତି ସ୍ଥାପନକରି ଲେଖନୀ ପରିଚାଳନା କରିଅଛନ୍ତି । ଅଥଚ ଅନୁସନ୍ଧାନ କଲେ ଦେଖାଯାଏ ଯେ ଅନେକ ସ୍ଥଳରେ ଲେଖକ କାର୍ଯ୍ୟରେ ସ୍ତ୍ରୀଶିକ୍ଷାର ବିରୋଧୀ । ଧନ ଓ ବିଦ୍ୟା ମନୁଷ୍ୟର ଜୀବନଯାତ୍ରାରେ ବହୁ ମୂଲ୍ୟ ଅସ୍ତ୍ର ସ୍ୱରୂପ । ଏହି ଦୁଇ ଅସ୍ତ୍ରଦ୍ୱାରା ମନୁଷ୍ୟ ତାହାର ଉନ୍ନତି ପଥରେ ସମସ୍ତ ବାଧାବିଘ୍ନ ବିନାଶ-କରି ଅଗ୍ରସର ହେଉଅଛି । ଯେଉଁ ଜାତି ଏ ପ୍ରକାର ଦୁଇ ଅସ୍ତ୍ରକୁ ସ୍ତ୍ରୀ ରୂପିଣୀ ଲକ୍ଷ୍ମୀ ଓ ସରସ୍ୱତୀ ରୂପରେ ପୂଜା କରୁଅଛନ୍ତି, ସେମାନେ ଯେ ସ୍ତ୍ରୀଶିକ୍ଷାର ବିରୋଧୀ ହେବେ, ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ । ବାଲ୍ମୀକି ଓ ବେଦବ୍ୟାସଙ୍କର କଳ୍ପନା ଶକ୍ତିକୁ ଦୁଇ ସ୍ତ୍ରୀ ଚରିତ୍ର ଜାଗ୍ରତ ଓ ଚାଳିତ କରିଥିଲେ । ସୀତା ନଥିଲେ ରାମାୟଣ ନଥାନ୍ତା । ଇଂଲଣ୍ଡ ବର୍ତ୍ତମାନ ଯେଉଁ ଖ୍ୟାତି ଲାଭକରିଅଛି ଓ ଯେ ପ୍ରକାର ଇଂଲଣ୍ଡର ରାଜ୍ୟ ବିସ୍ତାର ହେଉଅଛି, ତାହା ସେ ଦେଶର ଦୁଇଜଣ ରାଣୀ ଏଲିଜାବେଥ୍ ଓ ଭିକ୍ଟୋରିଆଙ୍କଦ୍ୱାରା ହୋଇଅଛି × ×" "ଯେ ପ୍ରକାର କୋଟି କୋଟି ଜଳବିନ୍ଦୁ ଏକତ୍ରିତ ହୋଇ ନଦୀର ଆକାର ଧାରଣକରି ସମୁଦ୍ରାଭିମୁଖରେ ଧାବମାନ ହେଉଅଛି, ତଦ୍ରୂପ କୋଟି କୋଟି ମନୁଷ୍ୟ ସେମାନଙ୍କର ବଳପରାକ୍ରମ ଏକତ୍ରିତ କରି ଜାତି-ରୂପରେ ଉନ୍ନତି ମାର୍ଗରେ ଧାବମାନ ହେଉଅଛନ୍ତି ।

କରୁ ନଦୀ ସ୍ରୋତ ଯେପ୍ରକାର ନଦୀର ଉତ୍ପତ୍ତି ସ୍ଥାନରୁ ଅଧିକ ଉଚ୍ଚ ସ୍ଥାନକୁ ଉଠି ନପାରେ, ସେହି ପ୍ରକାର କୌଣସି ଜାତି ସେ ଜାତିର ମାତାମାନଙ୍କୁ ଅର୍ଥାତ୍ ନାରୀଜାତିକୁ ନୀଚ ଅବସ୍ଥାରେ ରଖି ଉନ୍ନତ ଅବସ୍ଥାକୁ ଉଠି ନପାରେ । × ×"

ମଧୁବାବୁ ଆବେଗଭରା କଣ୍ଠରେ ମାତୃଭୂମିର ସେବା ଓ ମାତୃଶିକ୍ଷାର ସେବା ପ୍ରସଙ୍ଗ ଉତ୍ଥାପନ କରି "ମାତୃମନ୍ତ୍ର" ଜପକରିବା ପାଇଁ ଉପଦେଶ ଦେଇଥିଲେ । ଏହାଦ୍ୱାରା ଜାତିର ଅବସାଦ ଦୂରହେବ, ହୀନମନ୍ୟତା ଲୋପ ପାଇବ, ଏହା ହିଁ ମଧୁବାବୁଙ୍କର ଲକ୍ଷ୍ୟ ଥିଲା । ସେ କହିଥିଲେ, "ଭାଇମାନେ, ଯଦ୍ୟପି ଉତ୍କଳ ସମ୍ମିଳନୀକୁ ଜୀବନ୍ତ କରିବାକୁ ଇଚ୍ଛା କର, ପ୍ରଥମେ ମାତୃଶିକ୍ଷା ଭୁଲନାହିଁ । ପର ସକାଶେ ବଞ୍ଚିବାକୁ ଶିକ୍ଷାକର । ମୋହର ଜୀବନ ଏକା ମୋହର ନୁହେଁ—ଏ ଜୀବନରେ ସମସ୍ତ ଉତ୍କଳ ଜାତିର ଅଧିକାର ଅଛି, ସ୍ୱତ୍ୱ ଅଛି –ଏହି ମନ୍ତ୍ର ଜପିବା ଆରମ୍ଭ କର । ମୁଁ ଉତ୍କଳ ସନ୍ତାନ, ମୋହର ଲକ୍ଷ ଲକ୍ଷ ଭାଇ ଭଉଣୀ ଅଛନ୍ତି, ସେମାନଙ୍କ ଜୀବନରେ ମୋହର ଜୀବନ ମିଶିଯାଇ ଲୀନ ହୋଇଯାଉ, ଏକ ଜୀବନ ହୋଇ ଜାତୀୟ ଜୀବନ ରୂପେ ପ୍ରବଳବେଗରେ ପ୍ରବାହିତ ହେଉ ।" ମଧୁବାବୁ ସମୁଦ୍ରର ଜଳରାଶି ସହିତ ଜାତୀୟ ଜୀବନକୁ ଓ ନଦୀର ଜଳ ସହିତ ବ୍ୟକ୍ତିଗତ ଜୀବନକୁ ତୁଳନାକରି ଉତ୍କଳ ସମ୍ମିଳନୀକୁ "ଜାତିର ସମୁଦ୍ର" ବୋଲି ଅଭିହିତ କରିଛନ୍ତି ।

ମଧୁବାବୁ ଦୃଢ଼ଭାବେ ବ୍ୟକ୍ତ କରିଥିଲେ, "ଜାତୀୟ ଜୀବନର ସଞ୍ଚାର ହେଲେ ଦେଶମିଶ୍ରଣ ନିମନ୍ତେ ପ୍ରସ୍ତାବ କରିବା, ମେମୋରିଏଲ୍ କରିବା ଆବଶ୍ୟକ ହେବନାହିଁ ।"

**ସତ୍ୟବାଦୀ ବିଦ୍ୟାଳୟ** : ସାକ୍ଷିଗୋପାଳ ବକୁଳବନରେ ପ୍ରତିଷ୍ଠିତ ବିଦ୍ୟାଳୟଟି ଗୋପବନ୍ଧୁ ଦାଶ, ନୀଳକଣ୍ଠ ଦାଶ ପ୍ରଭୃତି ଉତ୍ସାହୀ ଦେଶଭକ୍ତମାନେ ଆପ୍ରାଣ ଚେଷ୍ଟା କରି ଠିଆ କରାଇଥିଲେ । ସେହି ସମୟରେ ଦେଶବାସୀଙ୍କ ସାହାଯ୍ୟ ଓ ସହାନୁଭୂତି ଏହି ଅନୁଷ୍ଠାନଟିର ବିଶେଷ ଆବଶ୍ୟକ ଥିଲା । ବିଦ୍ୟାଳୟଟି ଓଡ଼ିଶାରେ ଶିକ୍ଷା ଓ ସାମାଜିକ ଜୀବନ କ୍ଷେତ୍ରରେ ଏକ ଅଭିନବ ପନ୍ଥା ଦର୍ଶାଇଥିବାରୁ ଦେଶବାସୀଙ୍କ ସହାନୁଭୂତି ସମ୍ମିଳନୀର ଏକ ପ୍ରସ୍ତାବରେ ପ୍ରକାଶ ପାଇଥିଲା । ମଧୁବାବୁ କହିଥିଲେ, "ବର୍ତ୍ତମାନ ଯେଉଁ ପ୍ରସ୍ତାବ ଉପସ୍ଥିତ ହୋଇଅଛି, ସେ ସମ୍ବନ୍ଧରେ ମୁଁ କିଛି କହିବାକୁ ଇଚ୍ଛୁକ ଓ ଅନୁରୁଦ୍ଧ । ମୁଁ, ନୀଳକଣ୍ଠଙ୍କୁ ଅନେକ ଦିନରୁ ଚିହ୍ନେ । ପୂର୍ବେ ମୋହର ତାଙ୍କପ୍ରତି ଅନେକ ପ୍ରକାର ସନ୍ଦେହାତ୍ମକ ଧାରଣା ଥିଲା ଏବଂ ତାଙ୍କ ବିଷୟରେ ମୋର ନାନାପ୍ରକାର ଆଶଙ୍କା ହୋଇଥିଲା । କିନ୍ତୁ ସୁଖର କଥା, ସେ ସବୁ ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ମୋ ମନରୁ ଘୁଞ୍ଚିଅଛି । କାଲି ରାତି ତାଙ୍କ ସହିତ ୬ଟାଠାରୁ ୮ଟା ପର୍ଯ୍ୟନ୍ତ କଥୋପକଥନ କରି ମୋର ଭ୍ରାନ୍ତି ଘୁଞ୍ଚିଯାଇଛି । ତାଙ୍କ ସହିତ ମୋର ସେହି କଥୋପକଥନରୁ ମୁଁ ତାଙ୍କ ବିଷୟରେ ବହୁତ ଉଚ୍ଚ ଭାବ ମନରେ ପୋଷିଅଛି । ଏମାନଙ୍କଦ୍ୱାରା ବାସ୍ତବିକ ଜାତୀୟ ଉନ୍ନତି ସାଧିତ ହେବ,

ଏଥିରେ ସନ୍ଦେହ ନାହିଁ । ଏମାନଙ୍କୁ ଦେଖି କୀଟ, ପତଙ୍ଗ ଦୀପରେ ପଡ଼ିଲାଭଳି ଶତ ଶତ ରାଜା ମହାରାଜାମାନେ ମଧ୍ୟ ଆଜି ସେମାନଙ୍କର ଧର୍ମ ଗ୍ରହଣ ଓ ସମର୍ଥନ ଥିଲେ । ମୁଁ ସେମାନଙ୍କ କାର୍ଯ୍ୟରେ ସାହାଯ୍ୟ କରିଥାଏ ଏବଂ ବରାବର କରିବି । ସେମାନେ ମନୁଷ୍ୟ ଗଢ଼ିବା ପାଇଁ କୃତସଙ୍କଳ୍ପ । ଜଗନ୍ନାଥ ମୂର୍ତ୍ତି ସମସ୍ତେ ଗଢ଼ି ପାରିବେ; କିନ୍ତୁ ତା ଭିତରେ ଯେଉଁ ବ୍ରହ୍ମ ଅଛି, ତା କେହି ଗଢ଼ି ପାରନ୍ତିନାହିଁ । ଯେତେବେଳେ ଆମ୍ଭମାନଙ୍କ ଦେଶର ଯୁବକମାନଙ୍କ ହୃଦୟରେ ପ୍ରାଣବ୍ରହ୍ମ ପ୍ରତିଷ୍ଠିତ ହୋଇ ସେମାନଙ୍କୁ ପବିତ୍ର ମନୁଷ୍ୟଭାବରେ ଜାଜ୍ଜ୍ୱଲ୍ୟମାନ କରିଦେବ, ସେତେବେଳେ ଗଭର୍ଣ୍ଣମେଣ୍ଟ ବା ଅନ୍ୟ ଯେ କେହି ସେମାନଙ୍କୁ ଅବଶ୍ୟ ସମ୍ମାନ କରିବେ (କରତାଳି) । ଆତ୍ମସାହାଯ୍ୟ ଇଚ୍ଛା ଫଳ ଅତି ଉଚ୍ଚ । ନାଉରୀକୁ ଭଡ଼ା ନ ଦେଇ ପାଣିରେ ଡେଇଁପଡ଼ିଲେ ସେହି ନାଉରୀ ଲୁଗା ପକାଇ ତାହାକୁ ପାଣିରୁ ଉଠାଇ ଆଣି, ପିନ୍ଧିବାକୁ ଲୁଗାଦେଇ, ତାତ୍ପର୍ଯ୍ୟକରି ମନକୁ ପାରି କରିଦିଏ । ଗୋପବନ୍ଧୁ, ନୀଳକଣ୍ଠ ନିଜ ଗୋଡ଼ରେ ଛିଡ଼ା ହୋଇଅଛନ୍ତି । ସେମାନଙ୍କ କାର୍ଯ୍ୟ ଦେଖି ଦେଶବାସୀ ତଥା ଗଭର୍ଣ୍ଣମେଣ୍ଟ ଯଥାସମୟରେ ସେମାନଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହେବେ, ସନ୍ଦେହ ନାହିଁ । ସେମାନେ ଯେ ଭାବରେ କାର୍ଯ୍ୟ ଆରମ୍ଭ କରିଅଛନ୍ତି ଏବଂ ନାନାବିଧ ବିଘ୍ନ ସତ୍ତ୍ୱେ ଅବିଚଳିତ ଚିତ୍ତରେ ଉକ୍ତ କାର୍ଯ୍ୟରେ ଲାଗିରହି- ଅଛନ୍ତି, ସେଥିର ସେମାନେ ଯେ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଛନ୍ତି, ଏହା କହିବା ବାହୁଲ୍ୟ ମାତ୍ର । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଅଛି ଏବଂ ଆପଣମାନେ ସେମାନଙ୍କ କାର୍ଯ୍ୟକୁ ଅନ୍ତରର ସହିତ ଗ୍ରହଣ କରିଅଛନ୍ତି, ସେଥିଲାଗି ଆପଣମାନଙ୍କୁ ମଧ୍ୟ ଧନ୍ୟବାଦ ଦେଉଛି ।"

ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ସମ୍ବନ୍ଧରେ ପୂର୍ବରୁ ମଧୁବାବୁଙ୍କର କିଛି ସନ୍ଦେହ ଥିବା ଅନୁମିତ ହୁଏ । ଯେଉଁମାନେ କାର୍ଯ୍ୟ ଚଳାଇବା ପାଇଁ ବାହାରିଛନ୍ତି, ସେମାନେ କେତେଦୂର କ୍ଷମ ହେବେ, ଏହି ବିଷୟରେ ତାଙ୍କ ମନରେ ସନ୍ଦେହ ଜାତ ହୋଇଥିଲା । ଉଦ୍ୟୋକ୍ତା ଓ ଶିକ୍ଷକମାନଙ୍କ ଲକ୍ଷ୍ୟ ଓ କର୍ମପଦ୍ଧତି ଦୃଢ଼ଭିତ୍ତିରେ ପ୍ରତିଷ୍ଠିତ କି ନାହିଁ, ଏହା ମଧ୍ୟ ସେ ବିଚାର କରୁଥିଲେ । ଅଧିକ ଅର୍ଥ ଆଶାରେ ଏ ଉଚ୍ଚଶିକ୍ଷିତ ଯୁବକମାନେ ଏହି କ୍ଷେତ୍ରକୁ ଆଉ ଧରି ରଖି ପାରିବେନାହିଁ, ଏ ସମ୍ବନ୍ଧରେ ସେ ନିର୍ଭର ପ୍ରମାଣ ପାଇବା ଅପେକ୍ଷାରେ ଥିଲେ । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ସହିତ ସେ ବିଷୟ ଆଲୋଚନା କରି ନିଜର ସନ୍ଦେହ ଓ ଆଶଙ୍କା ଭିତ୍ତିହୀନ ବୋଲି ବୁଝିପାରୁଥିଲେ । ଏହି କାରଣରୁ ଉତ୍କଳ-ସମ୍ମିଳନୀର ପୁରୀ ଅଧିବେଶନରେ ଏହି ବିଦ୍ୟାଳୟର ଲକ୍ଷ୍ୟ ଓ କାର୍ଯ୍ୟକ୍ରମକୁ ଅନୁମୋଦନ କରି ଏକ ପ୍ରସ୍ତାବ ଆସିବାରୁ ମଧୁବାବୁ ତାହାକୁ ପୂର୍ଣ୍ଣପ୍ରାଣରେ ନିଜର ସମର୍ଥନ ଜଣାଇଥିଲେ ।

**ବ୍ୟବସ୍ଥାପକ ସଭା କାର୍ଯ୍ୟ** : ୧୯୧୩ରେ ମଧୁବାବୁ, କେନ୍ଦ୍ର ଓ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ବିଭିନ୍ନ ସମୟରେ ଚାନ୍ଦବାଲି ଓ ସର୍ଟସ୍ ଦ୍ୱୀପ ମଧ୍ୟରେ ଏକ ବନ୍ଦର ନିର୍ମାଣ ପାଇଁ ଦାବୀ କରିଥିଲେ ।

ଓଡ଼ିଶାକୁ ଛୋଟନାଗପୁର (ରାଞ୍ଚି) ଓ ପାଟଣା ସହିତ ରେଲପଥରେ ଯୋଗାଯୋଗ ସ୍ଥାପନ କରିବାପାଇଁ ସେ ଦାବୀ କରିଥିଲେ । ପାଟନା-ରାଞ୍ଚି ଓ ପୁରୀ ଭିତରେ ରେଲପଥ ନିର୍ମାଣ ଏହି ଦାବୀର ଲକ୍ଷ୍ୟ ଥିଲା ।

"ନିରାଶ୍ରୟା ବାଳିକାଙ୍କ ଉଦ୍ଧାର" ପ୍ରସ୍ତାବ ଉପରେ ମଧୁବାବୁ ଆଲୋଚନା କରିଥିଲେ ଏବଂ ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗର ଖର୍ଚ୍ଚ ପାଇଁ ବାର୍ଷିକ ଗ୍ରାଣ୍ଟର ପରିମାଣ ବୃଦ୍ଧି ଦାବୀ କରିଥିଲେ । ସେ ନ୍ୟାୟ ବିଭାଗ ଓ ଶାସନ ବିଭାଗର ପୃଥକୀକରଣ, ଚନ୍ଦା ଉପରେ ଅବକାରୀ ଟିକସ, ଅଫିମ ରାଜସ୍ୱ, ପ୍ରାଥମିକ ଶିକ୍ଷାବିଲ୍ ପ୍ରଭୃତି ବହୁ ବିଷୟର ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

ଏହି ସବୁ ଦାବୀ ପ୍ରସଙ୍ଗରେ ମଧୁବାବୁ ଜଣେ ଉଚ୍ଚକୋଟୀର ସମାଜ ସଂସ୍କାରକ, ରାଜନୀତିଜ୍ଞ, ଅର୍ଥନୀତିଜ୍ଞ ଓ ସର୍ବୋପରି ଜଣେ ବିଶିଷ୍ଟ ଲୋକପ୍ରତିନିଧିରୂପେ ପ୍ରଶଂସିତ ହୋଇଥିଲେ । ଓଡ଼ିଶାର ସର୍ବବିଧ ଉନ୍ନତି ନିମନ୍ତେ ସର୍ବକ୍ଷେତ୍ରରେ ସେ ଉଦ୍ୟମ କରୁଥିଲେ ଏବଂ ଶେଷ ନିଃଶ୍ୱାସ ତ୍ୟାଗକରିବା ପର୍ଯ୍ୟନ୍ତ ସେ ଏହି କାର୍ଯ୍ୟରୁ ବିରତ ନଥିଲେ ।

**ଚାନ୍ଦବାଲିଠାରେ ବନ୍ଦର ନିର୍ମାଣ ଦାବୀ :** ଖ୍ରୀ: ୧୯୧୩ ମାର୍ଚ୍ଚରେ ମଧୁବାବୁ ବଡ଼ଲାଟ ସଭାରେ ଚାନ୍ଦବାଲିଠାରେ ଏକ ବନ୍ଦର ସ୍ଥାପନକରିବା ପାଇଁ ଦାବୀ କରିଥିଲେ । ଖ୍ରୀ: ୧୯୧୨ରେ ବିହାର-ଓଡ଼ିଶା ପ୍ରଦେଶ ଗଠନ ଘୋଷଣାକରି ସରକାର ଯେଉଁ ଇସ୍ତାହାର ପ୍ରକାଶ କରିଥିଲେ, ସେଥିରେ ନୂତନ ପ୍ରଦେଶକୁ ସମୁଦ୍ର ସହିତ ଯୋଗ କରିବା ପାଇଁ ଏକ ବନ୍ଦର ନିର୍ମାଣ କରିବା କଳ୍ପନା ରହିଥିବା ଜଣାଇଥିଲେ । ନୂତନ ପ୍ରଦେଶର ଓଡ଼ିଶା ଅଞ୍ଚଳ କେବଳ ସମୁଦ୍ର ସହିତ ସଂଯୁକ୍ତ । ଅତଏବ ଏହି ଅଞ୍ଚଳରେ ଏକ ବନ୍ଦର ନିର୍ମାଣ କରାଗଲେ ନୂତନ ପ୍ରଦେଶର ବାଣିଜ୍ୟର ଉନ୍ନତି ହେବ, ଏହା ମଧୁବାବୁ କେନ୍ଦ୍ର ସରକାରଙ୍କୁ ବୁଝାଇଥିଲେ ଏବଂ ବଙ୍ଗୋପସାଗର ଉପକୂଳରେ ଚାନ୍ଦବାଲି ଓ ସର୍ଟସ୍ ଦ୍ୱୀପ (Shorts Island) ମଧ୍ୟରେ ବନ୍ଦର ନିର୍ମାଣ କରିବାକୁ ଦାବୀ କରିଥିଲେ ।

ମଧୁବାବୁ ଯୁକ୍ତି କରିଥିଲେ ଯେ, ବର୍ତ୍ତମାନ ଓଡ଼ିଶାରେ ତିନୋଟି ସ୍ଥଳରେ ବନ୍ଦର ଅଛି —ପୁରୀ, ଫଲସ୍ ପଏଣ୍ଟ ଓ ଚାନ୍ଦବାଲି; କିନ୍ତୁ ଏ ତିନୋଟିଯାକ ବନ୍ଦରର ରକ୍ଷଣାବେକ୍ଷଣ ପାଇଁ ସରକାରଙ୍କୁ କ୍ଷତି ସହିବାକୁ ପଡ଼ୁଛି । ପୁରୀ ନାମକୁମାତ୍ର ବନ୍ଦର ହୋଇଛି; କାରଣ ଏଠାରେ ସମୁଦ୍ରର ଗଭୀରତା ଅଳ୍ପ ଏବଂ ସମୁଦ୍ର ଭିତରେ କେତେ ମାଇଲ ଦୂରରେ ଜାହାଜ ରହୁଛି, କୂଳକୁ ଆସିପାରୁନାହିଁ । ବନ୍ଦରର ଉଦ୍ଦେଶ୍ୟ ଏଥିରେ ସାଧିତ ହୋଇପାରୁନାହିଁ । ପୂର୍ବେ ଫଲ୍ସପଏଣ୍ଟ ବନ୍ଦରରୂପେ ଖୁବ୍ ବ୍ୟବହୃତ ହେଉଥିଲା; କିନ୍ତୁ ଦୁର୍ଭାଗ୍ୟକୁ ସେଠାରେ ସମୁଦ୍ର ପୂର୍ବଆଡ଼କୁ ଘୁଞ୍ଚିଯାଉଛି । ଏଠାରେ ମଧ୍ୟ ଷ୍ଟିମର୍‌ଗୁଡ଼ିକ ବର୍ଷାଦିନେ ସମୁଦ୍ର ଭିତରେ ବହୁ ଦୂରରେ ରହିବାକୁ ବାଧ୍ୟ ହେଉଛନ୍ତି । ଏଠାରେ ମାଲ୍ ବୋଝେଇ କରିବା ବା ଉତାରିବା ଆଦୌ ସମ୍ଭବ ନୁହେଁ । ଫଳରେ ବାଣିଜ୍ୟ ଓ ଅନ୍ୟାନ୍ୟ

କାର୍ଯ୍ୟକାରୀ ଦୃଷ୍ଟିରୁ ଏହି ବନ୍ଦରର ଅବସ୍ଥିତି ନାହିଁ କହିଲେ ଚଳେ । ବର୍ତ୍ତମାନ ଏକମାତ୍ର ଚାନ୍ଦବାଲି ବନ୍ଦରରୂପେ ବ୍ୟବହୃତ ହେଉଛି; ମାତ୍ର ବନ୍ଦର ନିକଟରେ ନଦୀ କ୍ରମେ ପୋତାପଡ଼ିଯାଉଥିବାରୁ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ୁଛି । ଯଦି ଧାମରା ମୁହାଣ କିମ୍ବା ତାହାର ନିକଟବର୍ତ୍ତୀ କୌଣସି ସ୍ଥାନରେ ବନ୍ଦର କରାଯାଏ, ତାହାହେଲେ ବହୁତ ସୁବିଧା ହେବ । ବନ୍ଦର ସହିତ ଭଦ୍ରକକୁ ରେଲଲାଇନଦ୍ୱାରା ଯୋଗ କରିଦେଲେ ବାଣିଜ୍ୟର ସୁବିଧା ହେବ । ଏ ପ୍ରସଙ୍ଗରେ ଓଡ଼ିଶାର ଆମଦାନୀ ଓ ରପ୍ତାନି ବାଣିଜ୍ୟ ସମ୍ବନ୍ଧରେ ମଧୁବାବୁ ବହୁ ତଥ୍ୟ ଦେଇଥିଲେ ଓ ସରକାର ସହାନୁଭୂତି ସହିତ ଏହି ପ୍ରସ୍ତାବକୁ ଶୁଣିଥିଲେ ।

**ପାଟନା-ରାଞ୍ଚି-ପୁରୀ ରେଳପଥ ଦାବୀ** : ବିହାର ଓଡ଼ିଶା ନୂତନ ପ୍ରଦେଶର ବିଭିନ୍ନ ଅଞ୍ଚଳକୁ ସଂଯୋଗ କରିବାପାଇଁ ଅଧିକ ସଂଖ୍ୟକ ନୂତନ ରେଲଲାଇନ୍‌ର ଆବଶ୍ୟକତା ସମସ୍ତେ ଉପଲବ୍‌ଧି କରୁଥିଲେ । ପାଟନା ଓ ରାଞ୍ଚି ସହିତ ଓଡ଼ିଶାକୁ ସଂଯୋଗ କରିବାପାଇଁ ଏକାଧିକ ରେଲଲାଇନ୍ ଖୋଲିହେବାର ଆବଶ୍ୟକତା ଥିବା ଦର୍ଶାଇ ଏହାର ନିର୍ମାଣପାଇଁ ମଧୁବାବୁ ସରକାରଙ୍କଠାରେ ଦାବୀ କରିଥିଲେ । ବଡ଼ଲାଟ ସଭାରେ ୧୯୧୩ ମାର୍ଚ୍ଚ ୩ ତାରିଖ ଦିନ ବଜେଟ ଆଲୋଚନା ଅଧିବେଶନରେ ଏ ସମ୍ପର୍କରେ ଏକ ପ୍ରସ୍ତାବ ସେ ଆଗତ କରିଥିଲେ । ସରକାରଙ୍କର ଏଥିପ୍ରତି ଅନୁକୂଳ ମନୋଭାବ ଥିବା ଜାଣି ସେ ଏ ଦାବୀ କରିଥିଲେ । ଯଦି ପ୍ରଦେଶର ଦୁଇଟି ଭାଗ ରେଲରାସ୍ତାଦ୍ୱାରା ସଂଯୁକ୍ତ ନ ହୁଏ, ତାହାହେଲେ ଗୋଟିଏ ଭାଗ ନିଶ୍ଚୟ ଅସୁବିଧା ଭୋଗକରିବ ଏବଂ ସେହି ଭାଗଟି ହେଉଛି ଓଡ଼ିଶା । ରେଲ ଲାଇନ୍ ହୋଇପାରିଲେ, ଓଡ଼ିଶାର ଗଡ଼ଜାତ ଓ ମୋଗଲବନ୍ଦୀ ଉଭୟ ଭୂଖଣ୍ଡ ଖୋଲା ହୋଇଯିବ । ଫଳରେ ଦେଶର ବାଣିଜ୍ୟ ବୃଦ୍ଧି ପାଇ ଲୋକଙ୍କର ଓ ସରକାରଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଘଟିବ ବୋଲି ବହୁ ପ୍ରମାଣ ଦେଇ ମଧୁବାବୁ ଯୁକ୍ତି କରିଥିଲେ ।

**ନ୍ୟାୟ ବିଭାଗ ଓ ଶାସନ ବିଭାଗର ପୃଥକୀକରଣ ଦାବୀ** : ଖ୍ରୀ: ୧୯୧୩ରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାର ବଜେଟ ଅଧିବେଶନରେ ବଙ୍ଗର ପ୍ରତିନିଧି ବିଖ୍ୟାତ ନେତା ମାନ୍ୟବର ସାର୍ ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ବିଚାର-ବିଭାଗକୁ ଶାସନବିଭାଗରୁ ପୃଥକ୍ କରିଦେବାପାଇଁ ସରକାରଙ୍କଠାରେ ଏକ ପ୍ରସ୍ତାବରେ ଦାବୀ କରିଥିଲେ । ସେ ଦେଶବିଦେଶର ବିଚାର ବିଭାଗୀୟ ଉଚ୍ଚ ବିଚାରପତି ଓ ଅଭିଜ୍ଞ ଆଇନଜ୍ଞମାନଙ୍କ ମତ ଉଦ୍ଧାରକରି ନିଜ ପ୍ରସ୍ତାବ ସପକ୍ଷରେ ଯୁକ୍ତି ଦର୍ଶାଇଥିଲେ । ଏହା ପୂର୍ବରୁ ପ୍ରାୟ ଏକଶତ ବର୍ଷ କାଳ ଏହି ବିଷୟରେ ଭାରତ ଓ ବିଲାତରେ ଆଲୋଚନା ହୋଇଆସୁଥିଲା । ଭାରତ ସରକାର ଏହି ପ୍ରସ୍ତାବକୁ ଗ୍ରହଣ କରି ନ ଥିଲେ । ନୀତିଗତଭାବେ ଏହାର ଉତ୍କର୍ଷ ସ୍ୱୀକାର କରୁଥିଲେ ମଧ୍ୟ ନିର୍ଦ୍ଦିଷ୍ଟ ଯୋଜନା ଓ ତତ୍‌ସମ୍ପର୍କୀୟ ଅର୍ଥର ବ୍ୟବସ୍ଥା କ୍ରମନ୍ତେ ନିକଟ

ସାମର୍ଥ୍ୟ ନଥିବା ଯୁକ୍ତି ସରକାର ଉପସ୍ଥାପିତ କରିଥିଲେ; ମାତ୍ର ସରକାରଙ୍କ ଅଭିନାଷ୍ଟି ମତ ସ୍ପଷ୍ଟଭାବରେ ବ୍ୟକ୍ତ ପାଇ ନଥିଲା ।

ମଧୁବାବୁ ସୁରେନ୍ଦ୍ର ବାବୁଙ୍କର ପ୍ରସ୍ତାବକୁ ସମର୍ଥନ କରିଥିଲେ ଏବଂ ସରକାର ନିର୍ଦ୍ଦିଷ୍ଟ ମତ ପ୍ରକାଶ କରିବା ଉଚିତ ବୋଲି ନିଜର ମତ ପ୍ରକାଶ କରିଥିଲେ । ସେ କହିଥିଲେ, "ଏହି ପ୍ରସ୍ତାବ ସପକ୍ଷରେ ପୁଙ୍ଖାନୁପୁଙ୍ଖରୂପେ ତଥ୍ୟ ଓ ଅଭିଜ୍ଞତା ପରିବେଷଣ କରିବା ବର୍ତ୍ତମାନ ଆଉ ଆବଶ୍ୟକ ନାହିଁ । ଏହା ପ୍ରାୟ ଶହେ ବର୍ଷ ହେଲା ସର୍ବସାଧାରଣଙ୍କ ସମକ୍ଷରେ ରହିଛି । ଏହା ପାଠକରିବା ମାତ୍ରେ ବିହାର ବିଭାଗକୁ ପୃଥକ୍ କରିବାପାଇଁ ଲୋକେ ଦୃଢ଼-କଣ୍ଠରେ ଦାବୀ କରୁଛନ୍ତି ।" ସେ ପୁଣି କହିଥିଲେ ଯେ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ସରକାରଙ୍କ ପାଖରେ ଯଥେଷ୍ଟ ତଥ୍ୟ ରହିଛି । ସରକାର ନିଜର ନିର୍ଦ୍ଦିଷ୍ଟ ମତ ପ୍ରକାଶ କରନ୍ତୁ । ଏକ ନିର୍ଦ୍ଦିଷ୍ଟ ଯୋଜନା କରିବା ପରେ ଅର୍ଥ ଅନଟନର ଆଶଙ୍କା ହେଲେ ଲୋକେ ଅଧିକ କରଭାର ବହନକରି ପୃଥକୀକରଣକୁ କାର୍ଯ୍ୟକାରୀ କରାଇବା ପାଇଁ ପ୍ରସ୍ତୁତ ଥିବା ସେ ପ୍ରକାଶ କରିଥିଲେ ।

**ନିରାଶ୍ରୟା ବାଳିକାଙ୍କୁ ଉଦ୍ଧାର ପାଇଁ ବିଲ୍ :** ଖ୍ରୀ: ୧୯୧୩ ସେପ୍ଟେମ୍ବର ମାସ ୧୭ ତାରିଖ ଦିନ ବଡ଼ଲାଟ ବ୍ୟବସ୍ଥାପକ-ସଭାରେ "ନିରାଶ୍ରୟା ବାଳିକାମାନଙ୍କର ଉଦ୍ଧାର" ସମ୍ବନ୍ଧୀୟ ବିଲ୍ ଉପରେ ଆଲୋଚନା କରି ମଧୁବାବୁ ନିଜର ସମର୍ଥନ ଜଣାଇଥିଲେ । ଏହି ସମ୍ପର୍କରେ ସେ କହିଥିଲେ ଯେ, ଏଥିରେ ସମାଜ, ଆଇନ ଓ ନ୍ୟାୟବିଷୟକ ବହୁ ବାଧାବିଘ୍ନ ରହିଛି । ସମାଜରେ ପ୍ରଚଳିତ 'ନୈତିକତା' ସମ୍ବନ୍ଧରେ ସେ କହିଥିଲେ, "ଏହି ଶବ୍ଦଟିର ସଂଜ୍ଞା କେବେହେଲେ ନିର୍ଦ୍ଦିଷ୍ଟ ହୋଇନାହିଁ । ସର୍ବଶ୍ରେଣୀର ଓ ପ୍ରକାରର ଲୋକଙ୍କୁ ସନ୍ତୁଷ୍ଟ କଲାଭଳି କୌଣସି ସଂଜ୍ଞା ନିରୂପଣ କରିବା ମଧ୍ୟ ସମ୍ଭବ ନୁହେଁ । ନୈତିକତା ଓ ଧର୍ମ ଭିତରେ ବିଦ୍ୟମାନ ଥିବା ସୀମାରେଖା ନିର୍ଣ୍ଣୟ କରିବା ମଧ୍ୟ କଷ୍ଟକର" ବୋଲି କହି ମଧୁବାବୁ ହିନ୍ଦୁ ଆଚାର ବିଚାର ସମ୍ବନ୍ଧରେ ମତ ବ୍ୟକ୍ତ କରିଥିଲେ—"ହିନ୍ଦୁ ସର୍ବବିଧରେ ଧାର୍ମିକ । ସେ ଧାର୍ମିକଭାବରେ, ପାନ, ଭୋଜନ ଓ ସ୍ନାନ କରୁଛି । ହୁଏତ ଧାର୍ମିକଭାବରେ ସ୍ୱପ୍ନ ମଧ୍ୟ ଦେଖୁଛି ।" ଏପରି ଅବସ୍ଥାରେ ନୈତିକତା ଓ ଧର୍ମ ଭିତରେ ଥିବା ସୀମାରେଖା ନିର୍ଣ୍ଣୟକରିବା ସହଜ ନୁହେଁ; କେବଳ ସମାଜର ଉଦାର ଗୋଷ୍ଠୀ ଉପରେ ନିର୍ଭର କରିବାକୁ ହେବ ଏବଂ ସେମାନେ ଏହି ସମାଜ କଲ୍ୟାଣ କାର୍ଯ୍ୟରେ ସରକାରଙ୍କୁ ନିଶ୍ଚୟ ସାହାଯ୍ୟ କରିବେ ।" ବିଭିନ୍ନ ସ୍ଥାନରେ ଆଶ୍ରମମାନ ସ୍ଥାପନ କରି ଏହି ନିରାଶ୍ରୟାମାନଙ୍କୁ ଉପଯୋଗୀ ଧନ୍ଦାରେ ଶିକ୍ଷା ଦେବା ଉଚିତ ବୋଲି ମଧୁବାବୁ କହିଥିଲେ । ସେ ପୁଣି କହିଥିଲେ, "ଏ କଳଙ୍କ ଯେ କେବଳ ଭାରତରେ ଅଛି, ଏହା ନୁହେଁ । ପୃଥିବୀର ପ୍ରାୟ ସବୁ ଦେଶରେ ଏହା ବୋଧହୁଏ ଅଛି । ଏହି ଅନାଥା ନିରାଶ୍ରୟା ବାଳିକାମାନଙ୍କୁ ହୀନ ଜୀବନ ଯାପନରୁ ଉଦ୍ଧାର କରିବା କେବଳ ଏହାର ଲକ୍ଷ୍ୟ ନୁହେଁ, ଏହା ସଙ୍ଗେ ସଙ୍ଗେ

ସମାଜରେ ଏ କଳଙ୍କ ଯେପରି ସଂକ୍ରାମକ ବ୍ୟାଧି ପରି ବ୍ୟାପି ନଯାଏ, ତାହା ମଧ୍ୟ ଏହି କାର୍ଯ୍ୟଦ୍ୱାରା ସମ୍ଭବ ହେବ ।"

**ପାଟନା ବିଶ୍ୱବିଦ୍ୟାଳୟର ସଭ୍ୟ :** ମଧୁବାବୁ ୧୯୧୪ରେ ପାଟନା ବିଶ୍ୱବିଦ୍ୟାଳୟ କମିଟିର ସଭ୍ୟ ହୋଇଥିଲେ ।

**ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭା :** ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଆଗତ ହୋଇଥିବା ବିଭିନ୍ନ ମୁଖ୍ୟ ପ୍ରସ୍ତାବଗୁଡ଼ିକ ବିଷୟରେ ମଧୁବାବୁ ଆଲୋଚନା କରିଥିଲେ । ଆୟକର, ଜିଲ୍ଲା ଓ ମ୍ୟୁନିସିପାଲିଟିର କାର୍ଯ୍ୟ ଓ ଅବସ୍ଥାର ଉନ୍ନତି, ଗୋପାଳକୃଷ୍ଣ ଗୋଖଲେଙ୍କ ପ୍ରାଥମିକ ଶିକ୍ଷା ବିଲ୍, ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ହିନ୍ଦୁ ବିଶ୍ୱବିଦ୍ୟାଳୟ ବିଲ୍ ପ୍ରଭୃତି ବିଶିଷ୍ଟ ଚଠା ଓ ପ୍ରସ୍ତାବର ଆଲୋଚନାରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

**କନିଷ୍ଠ ଭ୍ରାତାଙ୍କ ପରଲୋକ**  ଖ୍ରୀ: ୧୯୧୪ ଡିସେମ୍ବର ୨୩ ତାରିଖ ଦିନ ମଧୁବାବୁଙ୍କ କନିଷ୍ଠଭ୍ରାତା ଗୋପାଳବଲ୍ଲଭ ଦାସଙ୍କର ପରଲୋକ ହୋଇଥିଲା । ରେଭେନ୍‌ସା କଲେଜର ସେ ପ୍ରଥମ ଏମ୍. ଏ. । ଖ୍ରୀ. ୧୮୮୪ରେ ସେ ଏମ୍. ଏ. ପାସ୍ କରିଥିଲେ । ଗୋପାଳବଲ୍ଲଭ ପ୍ରଥମେ ଓଡ଼ିଶା କମିଶନରଙ୍କ ପର୍ସନାଲ୍ ଆସିଷ୍ଟାଣ୍ଟ ଥିଲେ । ପରେ ପ୍ରାଦେଶିକ ଶାସନ କ୍ଷେତ୍ରରେ ଚାକିରି କଲେ । ସେ କେଉଁଝରର ଦେୱାନ ମଧ୍ୟ ଥିଲେ । ସେ ଜଣେ ଦକ୍ଷ, ନ୍ୟାୟପରାୟଣ, ସଚ୍ଚୋଟ ଅଧିକାରୀ ଓ ଜଣେ ଉଚ୍ଚକୋଟୀର ଲେଖକ ମଧ୍ୟ ଥିଲେ । 'ଇନ୍ଦ୍ରଧନୁ' ଓ 'ବିଜୁଳୀ' ପତ୍ରିକାଦ୍ୱୟର ଦ୍ୱନ୍ଦ୍ୱ ବେଳେ ସେ 'ଇନ୍ଦ୍ରଧନୁ' ପ୍ରତିଷ୍ଠା କରି ଉପେନ୍ଦ୍ରଭଞ୍ଜଙ୍କ ସମର୍ଥନ କରିଥିଲେ । ଗୋପାଳବଲ୍ଲଭ "ଶ୍ୟାମା ଖେଇ" ଉପନ୍ୟାସର ଲେଖକ ।

**ପ୍ରଥମ ମହାଯୁଦ୍ଧରେ ବ୍ରିଟିଶ୍ ସପକ୍ଷରେ ଉଦ୍‌ବୋଧନ**—ଖ୍ରୀ : ୧୯୧୪ ଡିସେମ୍ବର ମାସର ୬ ଓ ୨୭ ତାରିଖରେ ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ବାର୍ଷିକ ଅଧିବେଶନରେ ଶ୍ରୀ ବିକ୍ରମ ଦେବ ବର୍ମାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସଭାପତିଙ୍କ ଅଭିଭାଷଣ ପରେ 'ଯୁଦ୍ଧରେ ବ୍ରିଟିଶଙ୍କ ଜୟ କାମନା' କରି ଏକ ପ୍ରସ୍ତାବ ଆଗତ ହୋଇଥିଲା । ମଧୁବାବୁ ଏହି ପ୍ରସ୍ତାବ ଆଗତ କରି ଇଂରେଜୀରେ ଏକ ଚମତ୍କାର ବକ୍ତୃତା ଦେଇଥିଲେ । ସମୟାତିକ୍ରାନ୍ତ ହୋଇଯିବାରୁ ସେ ବକ୍ତୃତା ବନ୍ଦ କରିବାକୁ ଉଦ୍ୟତ ହେଲେ; କିନ୍ତୁ ସଭାପତି ଓ ସଭାସଦ୍‌ମାନେ 'କହନ୍ତୁ କହନ୍ତୁ' କହି ତାଙ୍କୁ କହିବାକୁ ଅନୁରୋଧ କଲେ । ପୁନର୍ବାର ସେ ବକ୍ତୃତା ଦେଇ ସେ ସମସ୍ତଙ୍କୁ ମୁଗ୍ଧ କରିଦେଇ ଥିଲେ । ଇଂରେଜୀ ବକ୍ତୃତା ପରେ ଓଡ଼ିଆରେ ତାର ସାରମର୍ମ ସେ ନିଜେ ବ୍ୟକ୍ତ କରିଥିଲେ । ସେ କହିଥିଲେ—

"ନ୍ୟାୟସଙ୍ଗତ ଓ ଯୁକ୍ତିସଙ୍ଗତ କାରଣରୁ ଆମ୍ଭମାନଙ୍କର ସମ୍ରାଟ ଯୁଦ୍ଧକାର୍ଯ୍ୟରେ ବ୍ୟାପୃତ ହେଲେ । ମନୁଷ୍ୟ ଜୀବନରେ ଶରୀର ଅପେକ୍ଷା ମନ ବଳବାନ୍ । ଯୁଦ୍ଧରେ ଅନ୍ୟ ଜାତିକୁ ଜିଣିବା କେବଳ ବାହୁବଳର କାର୍ଯ୍ୟ ନୁହେଁ । ରାମାୟଣରେ ଏକମୁଣ୍ଡ ରାମଚନ୍ଦ୍ର ଦଶ ମୁଣ୍ଡ ରାବଣଙ୍କୁ ଜୟକରିଥିଲେ । ଚରିତ୍ରବଳ, ଧର୍ମବଳଦ୍ୱାରା ଜୟଲାଭ ହୁଏ । କେବଳ ଶସ୍ତ୍ରବଳ ବା ବାହୁବଳରେ ଚେଷ୍ଟା କଲେ ପରାଜୟ ଅବଶ୍ୟମ୍ଭାବୀ । ଜର୍ମାନୀର ସେହି ଦଶା ହେବ । ଉତ୍କଳୀୟମାନେ ବଳବାନ୍ ଥିଲେ । ବନ୍ୟା ଜଳ ମାଡ଼ି ଗ୍ରାଡ଼ଗଲେ ଯେପରି ସ୍ଥାନେ ସ୍ଥାନେ ଖଣ୍ଡେ ଖଣ୍ଡେ ଡୋଖ (ଚୁଆ) ରହିଯାଏ, ସେହିପରି ତାହାର ନିଦର୍ଶନ ବିଦ୍ୟମାନ ଅଛି । ନଦୀସ୍ରୋତ ବିନ୍ଦୁର ସମଷ୍ଟି । ନାନା ସ୍ଥାନରେ ବିଭିନ୍ନ ରଙ୍ଗର ଜଳ ଏକ ସ୍ରୋତରେ ମିଶି ଏକା ରଙ୍ଗ ଧାରଣକରେ । ଜାତୀୟ ଅଭିମାନ ସ୍ରୋତ ରୂପରେ ପ୍ରବାହିତ ହେଲେ, କେହି ବନ୍ଦ କରି ପାରିବେ ନାହିଁ । ଓଡ଼ିଆଙ୍କ ପୂର୍ବପୁରୁଷମାନଙ୍କ ସ୍ଥାପିତ ଶାନ୍ତ ମନ୍ଦିର (ଜଗନ୍ନାଥ ମନ୍ଦିର) ସେମାନଙ୍କ ବଂଶଧରମାନଙ୍କ ହାତରେ ଅଛି । ଭାରତେଶ୍ୱରଙ୍କୁ ଏହା ମଧ୍ୟ କହିବୁ—ବିଚ୍ଛିନ୍ନ ଭାବରେ କେତେ କାଳ ରଖିବ ? ମୃତସଞ୍ଜିବନୀ ଜଳ ମୁଠାଏ ସେଚନ କଲେ ଯୋଡ଼ି ହୋଇଯିବ ।" ମଧୁବାବୁ ପୁଣି କହିଲେ, "ବର୍ତ୍ତମାନ ଆମ୍ଭ-ମାନଙ୍କର ଅସ୍ତ୍ରଧାରଣର କ୍ଷମତା ନାହିଁ । ପୁଣି, ଅସ୍ତ୍ର ମଧ୍ୟରେ ଅଛି ପନିକି । ସୁତରାଂ ଅଧିକ କହିବାରୁ କ୍ଷାନ୍ତ ହୋଇ ପ୍ରଥମ ପ୍ରସ୍ତାବ ସମର୍ଥନ କରୁଅଛି ।"

**ଯୁଦ୍ଧ-ସାହାଯ୍ୟ ସଭା :** ପ୍ରଥମ ମହାଯୁଦ୍ଧରେ ଇଂରେଜ ପକ୍ଷକୁ ସାହାଯ୍ୟ କରିବାପାଇଁ ବିହାର-ଓଡ଼ିଶା ଗଭର୍ଣ୍ଣମେଣ୍ଟ ଯୁଦ୍ଧ-ସାହାଯ୍ୟ ପାଣ୍ଠି ଗଠିତ ହୋଇଥିଲା । ଓଡ଼ିଶା କମିଶନରଙ୍କ ସଭାପତିତ୍ୱରେ ୧୯୧୪ ସେପ୍ଟେମ୍ବର ୭ ତାରିଖ ଦିନ ଏକ ସଭା ହୋଇଥିଲା । ମଧୁବାବୁ ସେଥିରେ ଯୋଗ ଦେଇଥିଲେ । ସଭାପତି ଇଂରେଜୀରେ ଯୁଦ୍ଧର ବିବରଣ ଦେଇଥିଲେ । ମଧୁବାବୁ ଏହି ଭାଷଣର ସାରାଂଶ ଓଡ଼ିଆରେ ବୁଝାଇଥିଲେ । ଯୁଦ୍ଧ ସାହାଯ୍ୟ ପାଣ୍ଠି ପାଇଁ ଚାନ୍ଦା ଉଠାଇବା ଉଦ୍ଦେଶ୍ୟରେ ଏକ କମିଟି ଗଠିତ ହୋଇଥିଲା । ମଧୁବାବୁ ସେଥିରେ ଜଣେ ସଭ୍ୟ ଥିଲେ । ଏହି କମିଟି ତରଫରୁ ଏକ ନିବେଦନପତ୍ର ମଧ୍ୟ ପ୍ରକାଶ ପାଇଥିଲା । ମଧୁବାବୁ ଯୁଦ୍ଧ ପାଣ୍ଠିକୁ ନିଜେ ୨୦୦ ଟଙ୍କା ଚାନ୍ଦା ଦେଇଥିଲେ ।

**ଗ୍ରାଜୁଏଟ୍‌ମାନଙ୍କୁ ସମ୍ବର୍ଦ୍ଧନା :** କଲିକତା ବିଶ୍ୱବିଦ୍ୟାଳୟରୁ ଏହି ବର୍ଷ (୧୯୧୪) ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କୁ ମଧୁବାବୁ ୧୯୧୪ ଅକ୍ଟୋବର ୨୭ ତାରିଖ ଦିନ ନିଜ ଗୃହରେ ଏକ ବନ୍ଧୁମିଳନରେ ସମ୍ବର୍ଦ୍ଧନା କରିଥିଲେ । ମଧୁବାବୁ ଗ୍ରାଜୁଏଟ୍-ମାନଙ୍କୁ ଉଦ୍‌ବୋଧନ ଦେଇ ଜୀବନର ଲକ୍ଷ୍ୟ ଓ ଆଦର୍ଶ ସମ୍ବନ୍ଧରେ କେତେକ ବିଷୟ କହିବା ପରେ ଏମାନଙ୍କ ଭିତରୁ କେତେଜଣ ସ୍ୱାଧୀନ ବ୍ୟବସାୟ କରିବା ଇଚ୍ଛା କରନ୍ତି କି ବୋଲି ପ୍ରଶ୍ନ କରିଥିଲେ । ସେ କହିଥିଲେ ଯେ, ସ୍ୱାଧୀନ ବ୍ୟବସାୟଦ୍ୱାରା ହିଁ ଦେଶର ଉନ୍ନତି ସମ୍ଭବ । ବହୁ ଉଦାହରଣ ଦେଇ ସେ ବୁଝାଇଥିଲେ ଯେ, ଦେଶର ସ୍ୱାଧୀନ ବ୍ୟବସାୟୀ ଓ ଓକିଲମାନଙ୍କଦ୍ୱାରା ଦେଶର ଅଗ୍ରଗତି ସମ୍ଭବ ହେଉଛି । ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନରେ ମର୍ଯ୍ୟାଦା ଓ ସୁଖ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିବା ଉଚିତ । ଜଣେ ଉଚ୍ଚାଭିଳାଷୀ

ରାଜା ଓ ଜଣେ ସନ୍ନ୍ୟାସୀ ଏ ଦୁହିଁଙ୍କର ମାନମର୍ଯ୍ୟାଦା ଓ ସୁଖ ବିଷୟକ ଜ୍ଞାନ ସମ୍ବନ୍ଧରେ କି ପ୍ରଭେଦ ରହିଛି, ତାହାର ଉଦାହରଣ ଦେଇ ମଧୁବାବୁ ବୁଝାଇଥିଲେ । ଦେଶର ଯୁବ-ଶକ୍ତିକୁ ମଧୁବାବୁ ଖୁବ୍ ଶ୍ରଦ୍ଧା ଓ ଆଦର କରୁଥିଲେ ।

**ସର୍ଭେ ସ୍କୁଲ ଛାତ୍ରମାନଙ୍କୁ ଉଦ୍‌ବୋଧନ :** ଖ୍ରୀ: ୧୯୧୪ରେ କଟକ ସର୍ଭେ ସ୍କୁଲ ଆନୁକୂଲ୍ୟରେ ଗଠିତ ସାସ୍କୃତିକ ସଙ୍ଘର ଏକ ସଭାରେ ମଧୁବାବୁ ସଭାପତି ହୋଇଥିଲେ । ସେତେବେଳେ ସର୍ଭେ ସ୍କୁଲଟି କଲେଜିଏଟ୍ ସ୍କୁଲ ହତା ଭିତରେ ଯେଉଁଠାରେ ଶିକ୍ଷା-ବିଭାଗର ଅଫିସ ଅଛି, ସେହିଠାରେ ବସୁଥିଲା । ଶ୍ରୀ କାଳୀନାରାୟଣ ସେନ୍ ଏହାର ହେଡ୍‌ମାଷ୍ଟର ଥିଲେ । ସେତେବେଳେ ବଙ୍ଗ ପ୍ରଦେଶରେ ୪ ବା ୫ଟି ମାତ୍ର ସର୍ଭେ ସ୍କୁଲ ଥିଲା । ତା ଭିତରୁ କଟକ ସର୍ଭେ ସ୍କୁଲ ଅନ୍ୟତମ । ଏହି ସ୍କୁଲରେ ଉତ୍ତୀର୍ଣ୍ଣ ହେବା ଛାତ୍ରମାନେ ପୂର୍ତ୍ତ ବିଭାଗ (P.W.D.)ରେ ସବ୍-ଓଭରସିଅର ରୂପେ ନିଯୁକ୍ତ ପାଉଥିଲେ । ଏହି ସଭାରେ ମଧୁବାବୁ ଏହି ସ୍କୁଲକୁ ଅଗ୍ରଗତି ଦେଖି ପ୍ରଶଂସା କରିଥିଲେ । ସମୀପରେ ପ୍ରବାହିତ ହେଉଥିବା କାଠଯୋଡ଼ିର ପଥରବନ୍ଧ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ସେ କହିଥିଲେ, "ଆମର ଏ ଦେଶର ପୂର୍ବପୁରୁଷମାନେ ଏହି ଆଶ୍ଚର୍ଯ୍ୟଜନକ ସୁଦୃଢ଼ ଓ କୌଶଳ-ପୂର୍ଣ୍ଣ ପଥରବନ୍ଧ ନିର୍ମାଣ କରିଥିଲେ । ଏମାନେ ମଧ୍ୟ ପୁରୀର ଅଠରନଳା ଶଙ୍ଖ ଓ ଭୁବନେଶ୍ବର ନିକଟସ୍ଥ ଗଙ୍ଗୁଆ ନଦୀ ଉପରେ ନିର୍ମିତ ପଥରଶଙ୍ଖ ନିର୍ମାଣ କରିଥିଲେ । ଆମ ଦେଶରେ ଇଞ୍ଜିନିଅରମାନେ ପୁରୀ, ଭୁବନେଶ୍ୱର ଓ କୋଣାର୍କର ବିରାଟ ମନ୍ଦିର ନିର୍ମାଣ କରି ଅମରକୀର୍ତ୍ତି ରଖିଯାଇଛନ୍ତି । ସେମାନଙ୍କର ଅଦ୍‌ଭୁତ ନିର୍ମାଣକୌଶଳକୁ ପୃଥିବୀର ସବୁ ଦେଶର ଇଞ୍ଜିନିୟର ଓ କଳାପ୍ରେମୀମାନେ ପ୍ରଶଂସା କରୁଛନ୍ତି । ଏହି ଗୌରବକୁ ଅଖି ଆଗରେ ରଖି ଆପଣମାନେ ନିଜ ନିଜ କର୍ତ୍ତବ୍ୟ ପାଳନ କରନ୍ତୁ ।" ସେ ପରିହାସ କରି କହିଥିଲେ, "ବର୍ତ୍ତମାନ P. W. D. ଏହି ତିନୋଟି ଅକ୍ଷର ଦେଖି ଲୋକେ କହୁଛନ୍ତି, ଏହା plunder without dangerର ସଂକ୍ଷିପ୍ତ ସୂଚନା । ଆପଣମାନେ ଏ ଧାରଣାକୁ ଦୂର କରିବେ ବୋଲି ମୋର ଆଶା ।"

ସେ ଏହି ସ୍କୁଲର ପ୍ରତିଷ୍ଠା ସମ୍ବନ୍ଧରେ କହିଥିଲେ, "ମୁଁ ନିଜେ ଏହି ସମ୍ପର୍କରେ ବରାବର ଆନ୍ଦୋଳନ କରିଆସିଛି ଏବଂ କଟକରେ ଇଞ୍ଜିନିୟରିଂ ସ୍କୁଲ ବସାଇବାପାଇଁ ସରକାରଙ୍କଠାରେ ଦାବୀ କରିଆସିଅଛି । ଦେଶପ୍ରେମୀ ଲୋକଙ୍କ ଗଡ଼ଜାତ ଅନ୍ତର୍ଗତ ଆଠଗଡ଼ର ରାଜା ସ୍ୱତଃପ୍ରବୃତ୍ତ ହୋଇ ଏହି ସ୍କୁଲ ସ୍ଥାପନ ଉଦ୍ଦେଶ୍ୟରେ ୨୦ ହଜାର ଟଙ୍କା ଦାନ ସ୍ୱରୂପ ସରକାରଙ୍କ ହାତରେ ଅର୍ପଣ କରିଥିଲେ ।"

ସେତେବେଳେ ସର୍ଭେ ସ୍କୁଲଟି କଟକର ରେଭେନ୍‌ସା କଲେଜ ସହିତ ସଂଲଗ୍ନ ହୋଇଥିଲା । ବର୍ତ୍ତମାନର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ସେତେବେଳେ ରେଭେନ୍‌ସା କଲେଜ, ସର୍ଭେ ସ୍କୁଲ ଓ ଲ' (ଆଇନ) କଲେଜର ଶ୍ରେଣୀ ଖୋଲା ହୋଇଥିଲା ।

ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ୧୯୧୪ରେ ଜିଲ୍ଲାବୋର୍ଡମାନଙ୍କରେ ପରାମର୍ଶଦାତା ବୋର୍ଡ଼ ପ୍ରତିଷ୍ଠା, ସମ୍ବାଦପତ୍ର ଆଇନ ସଂଶୋଧନ ବିଲ୍ ସମ୍ପର୍କୀୟ ପ୍ରସ୍ତାବର ଆଲୋଚନାରେ ମଧୁବାବୁ ଯୋଗ ଦେଇଥିଲେ ।

**ବନ୍ଦୋବସ୍ତ କାଳ ଓ ନୀତି :** ଖ୍ରୀ: ୧୯୧୪ ଫେବୃଆରି ମାସ ୨୭ ତାରିଖରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଜମିଜମା ବନ୍ଦୋବସ୍ତର କାଳ ସମ୍ପର୍କରେ ହୋଇଥିବା ଆଲୋଚନାରେ ମଧୁବାବୁ ଯୋଗ ଦେଇଥିଲେ । ସ୍ୱରାଷ୍ଟ୍ର ସଚିବ ବ୍ୟବସ୍ଥା ସଭାରେ ପ୍ରସଙ୍ଗକ୍ରମେ କହିଥିଲେ, "ସରକାର ଲୋକମାନଙ୍କର ନ୍ୟାସୀ । କେତେ ବର୍ଷ ପରେ ଜମିର ବର୍ଦ୍ଧିତ ଉତ୍ପନ୍ନ ଦ୍ରବ୍ୟକୁ ଉପଯୁକ୍ତ, ନ୍ୟାୟୋଚିତ ଓ ଯଥାର୍ଥ ବଣ୍ଟନ କରିବା ସରକାରଙ୍କ କର୍ତ୍ତବ୍ୟ ହେବ ।" ସ୍ୱରାଷ୍ଟ୍ର ସଚିବଙ୍କ ମତକୁ ଉଲ୍ଲେଖକରି ମଧୁବାବୁ କହିଥିଲେ, "ସଚିବ ପ୍ରସଙ୍ଗକ୍ରମେ ମଧ୍ୟ ବ୍ୟକ୍ତ କରିଛନ୍ତି ଯେ ବନ୍ଦୋବସ୍ତର କାର୍ଯ୍ୟକାଳ ବର୍ଦ୍ଧିତ କରାଯାଉ ଏବଂ ତାହାକୁ ଅପେକ୍ଷାକୃତ ଦୀର୍ଘ କରାଯାଉ । ଏହାର ଫଳ ହେବ, ଜମିଦାରମାନେ ଲାଭ ଭୋଗକରିବେ, କିନ୍ତୁ, ସେମାନେ ଅପେକ୍ଷାକୃତ ଉତ୍ପାଦନ ବୃଦ୍ଧିରେ କୌଣସି ପ୍ରକାର ଶ୍ରମ ବହନ କରନ୍ତିନାହିଁ । ବିଶେଷତଃ ଖାସମାହାଲ ଜମିଦାରୀରେ ଜମିଦାର ନିଜେ ସରକାର ଓ କୃଷୀ, ନିଜେ ତାଙ୍କର ପ୍ରଜା । ଏ ଦେଶର ପ୍ରଜା ବା ରୟତ ସବୁବେଳେ ସମ୍ବଳହୀନ; ପ୍ରକୃତରେ ଜମିର ଉନ୍ନତି ପାଇଁ ଧନ ଖଟାଇପାରେ ନାହିଁ କି ଜମିର ଉନ୍ନତିରେ ତାହାର ମନ ନାହିଁ । ସେ ଚିର ଋଣୀ ଥିବା ଯୋଗୁଁ ଉତ୍ପନ୍ନ ଦ୍ରବ୍ୟର ମୂଲ୍ୟ କେତେ ବୃଦ୍ଧି ପାଇଲା, ସେଥିପ୍ରତି ସେ ଆଦୌ ଦୃଷ୍ଟି ଦିଏ ନାହିଁ । ଅତଏବ ଉତ୍ପନ୍ନ ଦ୍ରବ୍ୟର ମୂଲ୍ୟବୃଦ୍ଧି ସହିତ ଖଜଣା ନିର୍ଣ୍ଣୟ ପ୍ରଜା ପକ୍ଷରେ ମୂଲ୍ୟହୀନ । ଉତ୍ପନ୍ନ ଦ୍ରବ୍ୟର ଅଳ୍ପ କେତେ ଅଂଶ ମାତ୍ର କୃଷୀ ହାତକୁ ଆସେ । ରୟତ ଅବସ୍ଥାର ଉନ୍ନତି ହେବା ନିଶ୍ଚୟ ଆବଶ୍ୟକ । କେତେ ବର୍ଷ ନିର୍ଦ୍ଦିଷ୍ଟ ଭାବରେ ତାର ପରିଶ୍ରମ ଫଳକୁ ନିର୍ଦ୍ୱନ୍ଦ୍ୱରେ ସେ ଭୋଗ କରିପାରିବ, ଏହା ରୟତ ନ ଜାଣିଲେ (ବିଶେଷତଃ ଖାସମାହାଲରେ) ତାହାର ଅବସ୍ଥାର ଉନ୍ନତି ଅସମ୍ଭବ । ବନ୍ଦୋବସ୍ତ ଏପରି ପନ୍ଥାରେ ନ ହେଉ, ଯାହାଦ୍ୱାରା କି ପ୍ରଜାମାନେ କଷ୍ଟ ଭୋଗକରିବେ ।"

୧୯୧୫ ଜାନୁଆରି ୧ ତାରିଖରେ ବିଖ୍ୟାତ ନେତା ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କୁ ସମ୍ବର୍ଦ୍ଧନା କରିବା ନିମିତ୍ତ କଟକରେ ଆହୂତ ସାଧାରଣ ସଭାରେ ମଧୁବାବୁ ସଭାପତିତ୍ୱ କରିଥିଲେ ।

ଏହି ବର୍ଷ କେନ୍ଦ୍ର (ବଡ଼ଲାଟଙ୍କ) ବ୍ୟବସ୍ଥାପକ ସଭାରେ ଭାରତୀୟ ଆଞ୍ଚଳିକ ଭାଷାର ଉନ୍ନତି, ପତିତ ଦଳିତ ଜାତିମାନଙ୍କର ସର୍ବବିଧ ଉନ୍ନତି, ଦେଶୀୟ ଚିକିତ୍ସାର ସମ୍ପ୍ରସାରଣ ପ୍ରଭୃତି ବିଷୟ ଆଲୋଚନା କରି ଏ ସମ୍ବନ୍ଧରେ ଶୀଘ୍ର ଦୃଢ଼ ବ୍ୟବସ୍ଥା ଗ୍ରହଣ କରିବା ନିମନ୍ତେ ମଧୁବାବୁ ସରକାରଙ୍କୁ ଅନୁରୋଧ କରିଥିଲେ ।

ତାହାଛଡ଼ା ସମ୍ରାଟଙ୍କ ପ୍ରତି ଆନୁଗତ୍ୟ, ବଡ଼ଲାଟଙ୍କ ବିଦାୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ବିଲ୍, ରେଲଲାଇନର ସରକାରୀ ପରିଚାଳନା ପ୍ରଭୃତି ବିଷୟରେ ଆଲୋଚନା କରି ସେ ମତ ବ୍ୟକ୍ତ କରିଥିଲେ ।

**ରେଭେନ୍‌ସା ସ୍କୁଲର ପୂର୍ବ ଇତିହାସ** : ଖ୍ରୀ: ୧୯୧୫ରେ ରେଭେନ୍‌ସା କଲିଜିଏଟ ସ୍କୁଲର ପୁରସ୍କାର ବିତରଣୀ ସଭାରେ ସଭାପତିତ୍ୱ କରି ମଧୁବାବୁ କହିଥିଲେ, "ମୁଁ ଯେତେବେଳେ ଏହି ସ୍କୁଲରେ ଖ୍ରୀଷ୍ଟାବ୍ଦ ୧୮୬୦ ଠାରୁ ୧୮୬୫ ପର୍ଯ୍ୟନ୍ତ ପଢ଼ୁଥିଲି, ସେତେବେଳେ ଏହି ସ୍କୁଲରେ କେହି ଓଡ଼ିଆ ଶିକ୍ଷକ ନଥିଲେ, ସମସ୍ତେ ବଙ୍ଗାଳୀ ଶିକ୍ଷକ । ବଙ୍ଗାଳୀ ଶିକ୍ଷକଙ୍କ ଭିତରୁ ଅଧିକାଂଶ ଶିକ୍ଷକ ଓଡ଼ିଆ ଛାତ୍ରମାନଙ୍କୁ ଘୃଣାଚକ୍ଷୁରେ ଦେଖୁଥିଲେ । ବହୁ ଶିକ୍ଷକ ଓଡ଼ିଆଭାଷା ଜାଣି ନଥିବାରୁ ବଙ୍ଗଳାଭାଷାରେ ଶିକ୍ଷା ଦେଉଥିଲେ । ଏ ଅବସ୍ଥାର ବିଷମୟ ଫଳ ମୁଁ ଭୋଗ କରିଛି । ସେହି ସମୟକୁ ଓଡ଼ିଆ ଛାତ୍ରମାନଙ୍କର ଏକ ସଂଘ ଗଠନ କରି ଓଡ଼ିଆଭାଷାରେ ଶିକ୍ଷକମାନେ ପଢ଼ାଇବା ନିମନ୍ତେ ମୁଁ ଦାବୀ କରିଥିଲି ।" ସେ କହିଥିଲେ, "ଓଡ଼ିଆଭାଷା ପ୍ରଚଳନ ସମ୍ପର୍କୀୟ ଆନ୍ଦୋଳନ ସେ ସମୟରୁ ଏହି ସ୍କୁଲରେ ଆରମ୍ଭ ହୋଇଥିଲା । ଏହି ଆନ୍ଦୋଳନ ୧୮୬୬ ଖ୍ରୀଷ୍ଟାବ୍ଦର ଦୁର୍ଭିକ୍ଷ ପୂର୍ବରୁ ଆରମ୍ଭ ହୋଇଯାଇଥିଲା ।"

ମଧୁବାବୁ ପଢ଼ିଲାବେଳକୁ ଏହି ସ୍କୁଲଟି "କଟକ ହାଇସ୍କୁଲ" ନାମରେ ପରିଚିତ ଥିଲା । ପରେ ଏହାର ନାମ "କଟକ ଜିଲ୍ଲାସ୍କୁଲ" ହେଲା ଓ ତତ୍ପରେ ରେଭେନ୍‌ସା କଲେଜ ସହିତ ଯୋଡ଼ା ହୋଇଯିବାରୁ ସ୍କୁଲର ନାମ "ରେଭେନ୍‌ସା କଲେଜିଏଟ୍ ସ୍କୁଲ" ହେଲା । ୧୯୧୫ ବେଳକୁ କଲେଜିଏଟ୍ ସ୍କୁଲ ବକ୍‌ସିବଜାରସ୍ଥ ବଳିଭଗତ କୋଠାରେ (ଯେଉଁଠାରେ ବର୍ତ୍ତମାନ ସରକାରୀ ମୁଦ୍ରଣାଳୟର ଏକ ଅଂଶ ଅଛି) ବସୁଥିଲା ।

ମଧୁବାବୁ ରେଭେନ୍‌ସା କଲେଜିଏଟ୍ ସ୍କୁଲର 'ସାହିତ୍ୟ ସମାଜ' ତରଫରୁ ଅନୁଷ୍ଠିତ ତର୍କସଭାମାନଙ୍କରେ ବେଳେ ବେଳେ ଉପସ୍ଥିତ ହେଉଥିଲେ । ଏହି ସମାଜଟି ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ, କାବ୍ୟତୀର୍ଥଙ୍କ ଯତ୍ନରେ ଆରମ୍ଭ ହୋଇଥିଲା । ରଥ ମହାଶୟ ସେତେବେଳେ ଏହି ସ୍କୁଲର ଶିକ୍ଷକ ଥିଲେ । ସେ ଜଣେ କୃତବିଦ୍ୟ ଲେଖକ ଓ ଗବେଷକ ରୂପେ ଖ୍ୟାତି ଅର୍ଜନ କରିଥିଲେ । ୧୯୧୩ ମସିହାରେ ଶ୍ରୀ ମହେଶଚନ୍ଦ୍ର ପ୍ରଧାନ ଏହି ସମାଜର ସମ୍ପାଦକ ଥିଲେ । ସେ ମଧ୍ୟ ସେହି ସ୍କୁଲର ଛାତ୍ର ଓ ପରେ ଓଡ଼ିଶା ଶିକ୍ଷା ବିଭାଗର ଡିରେକ୍‌ଟର ହୋଇଥିଲେ । ସେ ବର୍ଷର ପୁରସ୍କାର ବିତରଣୀ ସଭାଟି ଅପ୍ରେଲ ମାସରେ କଟକ ଟାଉନ୍‌ହଲରେ ଅନୁଷ୍ଠିତ ହୋଇଥିଲା । ସଭାପତି ମଧୁସୂଦନ ଦାସ ଓଡ଼ିଆଭାଷା ଓ ସାହିତ୍ୟର କ୍ରମବିକାଶ ଓ ବୈଭବ ସମ୍ବନ୍ଧରେ ଏକ ଚମତ୍କାର ବକ୍ତୃତା ଦେଇଥିଲେ । ଓଡ଼ିଆ ଭାଷାର ଉତ୍ପତ୍ତିକାଳ ନିର୍ଣ୍ଣୟ କରିବା ପ୍ରସଙ୍ଗରେ ସେ ଭରତ ମୁନିଙ୍କ ନାଟ୍ୟଶାସ୍ତ୍ରରୁ କେତେକ ଉଦାହରଣ ଦେଇ ଓଡ଼ିଆଭାଷାର ପ୍ରାଚୀନତା ସମ୍ବନ୍ଧରେ ଅକାଟ୍ୟ ପ୍ରମାଣ ଉପସ୍ଥାପିତ କରିଥିଲେ ।

**ନିଖିଳ ଭାରତ ଖ୍ରୀଷ୍ଟିଆନ୍ ସମ୍ମିଳନୀ (୧୯୧୫)** : ମଧୁବାବୁ ଖ୍ରୀ: ୧୯୧୫ରେ ଆଲହାବାଦରେ ଅନୁଷ୍ଠିତ ନିଖିଳ ଭାରତ ଖ୍ରୀଷ୍ଟିଆନ୍ ସମ୍ମିଳନୀର ଦ୍ୱିତୀୟ ବାର୍ଷିକ ଅଧିବେଶନରେ କାର୍ଯ୍ୟକାରୀ ସଭାପତିତ୍ୱ କରିଥିଲେ । ପୂର୍ବ ନିର୍ବାଚିତ ସଭାପତି ରାଜା ସାର୍ ହରନାମ ସିଂହ ସଭାପତି ଆସନରେ ଅଳ୍ପକ୍ଷଣ ବସି ତାଙ୍କ ଅଭିଭାଷଣଟି ପାଠ କରିଥିଲେ; କିନ୍ତୁ ଅତି ଜରୁରି କାର୍ଯ୍ୟ ପଡ଼ିବାରୁ ସେ ସଭାରୁ ଚାଲିଗଲେ ଏବଂ ମଧୁବାବୁଙ୍କୁ ସଭାକାର୍ଯ୍ୟ ପରିଚାଳନା କରିବାପାଇଁ ମନୋନୀତ କରାଗଲା । ସଭାକାର୍ଯ୍ୟ ଅତି ଦକ୍ଷତା ସହକାରେ ଚଳାଇପାରିଥିବାରୁ ଭାରତର ସବୁ ପ୍ରଦେଶରୁ ଆସିଥିବା ପ୍ରତିନିଧିମାନେ ମଧୁବାବୁଙ୍କୁ ବହୁତ ପ୍ରଶଂସା କରିଥିଲେ । ସଭାରେ ସେ ଯେଉଁ ବକ୍ତୃତା ଦେଇଥିଲେ, ତାହା ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା । ସେହି ଯେଉଁ ବକ୍ତୃତା ଅତି ସମୟୋପଯୋଗୀ ଗଠନମୂଳକ ଓ ସଂସ୍କାରଭାବଗର୍ଭିକ ହୋଇଥିଲା । ମଧୁବାବୁ ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ ନିଜର ଉଦାର ମନୋଭାବର ସୂଚନା ସେହି ବକ୍ତୃତାରେ ପ୍ରକାଶ କରିଥିଲେ । ସେ କହିଥିଲେ, "ଖ୍ରୀଷ୍ଟିଆନ୍ କହିଲେ ଖ୍ରୀଷ୍ଟଙ୍କଠାରେ ଯେଉଁ ବ୍ୟକ୍ତି ନିଜ ଜୀବନର ଆଦର୍ଶ ଦେଖିଥାଏ, ତାହାଙ୍କୁ ଏହି ପଦଟି ବୁଝାଏ । ମୁଁ ଜଣେ ସଂପ୍ରଦାୟବିହୀନ ସାଧାରଣ ଲୋକଟିଏ ପରି କହୁଛି । ମୁଁ ମଧ୍ୟ ସେହିପରି ଜଣେ ଲୋକ । ଖ୍ରୀଷ୍ଟଙ୍କ ଜୀବନରେ ସର୍ବାପେକ୍ଷା ବିଶିଷ୍ଟ ଘଟଣା କଣ ? ମୁଁ ହିନ୍ଦୁ ଥିଲାବେଳେ ମୋତେ ଯେଉଁ ବିଷୟଟି ବିଶେଷ ଭାବରେ ପ୍ରଭାବିତ କରି ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ପ୍ରବର୍ତ୍ତାଇଥିଲା, ତାହା ହେଉଛି ଏହି ପ୍ରାର୍ଥନାଟି—'ପିତା ଏମାନଙ୍କୁ କ୍ଷମାକର; କାରଣ ସେମାନେ କଣ କରୁଛନ୍ତି ତାହା ବୁଝିପାରୁନାହାନ୍ତି । (Father forgive them for they know not what they do) ।' ମୋ ମନରେ ଏହି ଧାରଣା ହୋଇଥିଲା, ଏହିଠାରୁ ବେଶି ଉଚ୍ଚକୁ ମାନବ ପ୍ରକୃତି ଉଠିନପାରେ । ମୁଁ ଏହାଠାରୁ ବଳି ଅନ୍ୟ କୌଣସି ଭଲ ଆଦର୍ଶ ପାଇଲିନାହିଁ । ଏହି ପଦଗୁଡ଼ିକ କେତେବେଳେ କୁହାଯାଇଥିଲା, ତାହା ଆମ୍ଭେମାନେ ଜାଣୁ । ଏ ପଦ-ଗୁଡ଼ିକର ଅର୍ଥ କଣ ? ମୋତେ ଏହି ଶବ୍ଦଗୁଡ଼ିକ ଗୋଟିଏ ଭେରୀର ନିନାଦପରି ଜଣାଯାଉଛି । ଏହି ଭେରୀ ପୃଥିବୀରେ ଘୋଷଣା କରୁଛି, ମନୁଷ୍ୟର ଶାରୀରିକ ପ୍ରବୃତ୍ତି ଉପରେ ତାହାର ଆଧ୍ୟାତ୍ମିକ ପ୍ରକୃତି ସମ୍ପୂର୍ଣ୍ଣରୂପେ ଅଧିକାର ବିସ୍ତାର କରିଛି । ମୋପରି ଭାବୁଥିବା ଅନ୍ୟମାନେ ମଧ୍ୟ ଏହିପରି ଅନୁଭବ କରୁଥିବେ ।" ବକ୍ତୃତାର ଉପସଂହାର କରି ସେ କହିଥିଲେ—"ମୋର ପିଣ୍ଡରେ ଜୀବନ ସଞ୍ଚାର ହେବାବେଳେ ବାହ୍ୟ ସଂସାର ସହିତ ମୋର କିଛି ସମ୍ପର୍କ ନଥିଲା । ଯେତେବେଳେ ମୃତ୍ୟୁ ଆସୁଛି, ମୁଁ ମୋର ଚକ୍ଷୁକୁ ମୁଦ୍ରିତ କରୁଛି । ମୁଁ ନିଶ୍ଚୟ ବଞ୍ଚିବି, କିନ୍ତୁ ବାହ୍ୟ ସଂସାର ସହିତ ମଧ୍ୟ କୌଣସି ସମ୍ପର୍କ ରହିବ ନାହିଁ । ବାହ୍ୟ ସଂସାର ସହିତ ମୋର ସମ୍ପର୍କ ତୁଟିଗଲେ, ମୋର ଆତ୍ମା ଓ ଭଗବାନଙ୍କ ସହିତ ମୋର ସମ୍ପର୍କ ରହିବ । ଯଦି ସେହି ସମୟରେ ଭଗବାନ କହନ୍ତି, 'ତୁମେ ତୁମର କର୍ତ୍ତବ୍ୟ କରିଛ', ତାହାହେଲେ ସଂସାର ମୋ ସମ୍ବନ୍ଧରେ କି ଧାରଣା କରୁଛି, ସେଥିପ୍ରତି ମୋର ଭ୍ରୂକ୍ଷେପ ନାହିଁ ।"

ଏହି ବକ୍ତୃତା ଶୁଣି ସମବେତ ପ୍ରତିନିଧିମାନେ ମୁଗ୍ଧ ହୋଇଯାଇଥିଲେ ଏବଂ ପରବର୍ଷ ମାନ୍ଦ୍ରାଜ ଅଧିବେଶନ (ଖ୍ରୀ: ୧୯୧୭) ନିମନ୍ତେ ମଧୁବାବୁଙ୍କୁ ସଭାପତିରୂପେ ନିର୍ବାଚନ କରିଥିଲେ ।

ମାନ୍ଦ୍ରାଜ ଅଧିବେଶନରେ ସେ ଯେଉଁ ଚମତ୍କାର ଅଭିଭାଷଣ ଦେଇଥିଲେ, ସେଥିରେ ସେ ଏକ ନୂତନ ଚିନ୍ତାଧାରା ସୃଷ୍ଟି କରିପାରିଥିଲେ । ସେତେବେଳେ ବହୁ ଖ୍ରୀଷ୍ଟିଆନ୍ ଏ ଦେଶର ଲୋକ ହୋଇ ମଧ୍ୟ ନିଜକୁ ୟୁରୋପୀୟ ଛାଞ୍ଚରେ ଗଠନ କରୁଥିଲେ ଏବଂ ଭାରତର ସଂସ୍କୃତି ଓ ଇତିହାସ ପ୍ରଭୃତିକୁ ସେମାନେ ସେତେ ସମ୍ମାନ ଦେଉନଥିଲେ । ମଧୁବାବୁ ଏ ଚିନ୍ତାଧାରାକୁ ପସନ୍ଦ କରୁ ନ ଥିଲେ । ସେ ଉଦାତ୍ତ କଣ୍ଠରେ ଘୋଷଣା କରିଥିଲେ—

"ଆମ୍ଭେମାନେ ଭାରତୀୟ । ଭାରତୀୟ ରକ୍ତ ଆମ୍ଭମାନଙ୍କର ଧମନୀରେ ପ୍ରବାହିତ ହେଉଛି । ଭାରତୀୟ ଇତିହାସ, ଭାରତୀୟ ପରମ୍ପରାରୂପକ ନିର୍ଝରରୁ ଆମ୍ଭେମାନେ ଆମର ପ୍ରେରଣା ପାଉଛୁ । ଆମର ଭାରତର ଭବିଷ୍ୟତ ଗୌରବର ଆଶା-ସୌଧ ପ୍ରାଚୀନ ଭାରତର ଗୌରବ ଉପରେ ନିର୍ମିତ । ସଂକୀର୍ଣ୍ଣ ମନୋଭାବ ଜାତୀୟ କାପୁରୁଷତାର ଏକ ରୂପ ମାତ୍ର । ପୂର୍ବପରି ଆମ୍ଭେମାନେ କାର୍ଯ୍ୟ କରିଯିବା । ଦଳିତ ଜାତିର ଲୋକଙ୍କୁ ଆମ ଶ୍ରେଣୀ ଭିତରେ ଗ୍ରହଣ କରି ଆମର ସଂଖ୍ୟାକୁ ବୃଦ୍ଧି କରିବା । ଏହାଦ୍ୱାରା ଆମର ସମାଜ ବୃଦ୍ଧି ପାଇବ । ଏହାଦ୍ୱାରା ଆମେ ଜାତୀୟ ଜୀବନର ଭିତ୍ତିରେ ଏକ ସାମାଜିକ ଗଣ୍ଡି ନିର୍ମାଣ କରିପାରିବା । ଆମର ମାତୃଜାତିକୁ ଗୌରବର ସ୍ଥାନ ଦେବାପାଇଁ ଆମ୍ଭେମାନେ ଯଥାସମ୍ଭବ ଉଦ୍ୟମ କରିବା । ବର୍ତ୍ତମାନ ଆମ ଖ୍ରୀଷ୍ଟିଆନମାନଙ୍କର ସଂଖ୍ୟା ମାତ୍ର ୪୦ (ଚାଳିଶି) ଲକ୍ଷ । ଏପରି କଲେ ଆମ୍ଭମାନଙ୍କର ସଂଖ୍ୟା ବହୁଗୁଣରେ ବର୍ଦ୍ଧିତ ହେବ ଏବଂ ଗୋଟିଏ ବଳିଷ୍ଠ ମୂଳପିଣ୍ଡ ସୃଷ୍ଟି ହୋଇପାରିବ । ଏହି ମୂଳପିଣ୍ଡର ଚତୁର୍ଦ୍ଦିଗରେ ପୃଥିବୀର ଏକ-ପଞ୍ଚମାଂଶ ଜନସଂଖ୍ୟା ବେଷ୍ଟିତ ହୋଇ ରହିବେ ଏବଂ ଏହା ଏକ ଜାତି ସୃଷ୍ଟି କରିବ । ଏହି ଜାତିର ଗୌରବମୟ ପ୍ରାଚୀନତା ଥିଲା, ଭବିଷ୍ୟତ ଗୌରବମୟ ହେବା ଅବଶ୍ୟମ୍ଭାବୀ ।"

"ଆମର ଅଣ-ଖ୍ରୀଷ୍ଟିଆନ୍ ଭାଇମାନଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଉଛୁ ଯେ ବ୍ରିଟିଶ ଭାରତ ଭିତରେ ରହି ଆମ ଦେଶର ରାଜନୈତିକ ଉନ୍ନତିନିମନ୍ତେ ଯେ କୌଣସି ଆନ୍ଦୋଳନ ହେଲେ ସେଥିରେ ଆମ୍ଭମାନଙ୍କର ସବିନୟ ସେବା ସେମାନଙ୍କ ହସ୍ତରେ ଅର୍ପଣ କରିବୁ । 'ପୃଥିବୀରେ ଶାନ୍ତି ଓ ମାନବ ଜାତି ପ୍ରତି ସଦ୍‌ଭାବ' ଏହା ହିଁ ଆମର ସାମ୍ପ୍ରଦାୟିକ ଜୀବନର ମୁଖ୍ୟ ନିର୍ଦ୍ଦେଶକ ନୀତି ହେଲା । ପୂର୍ବେ ମଧ୍ୟ ଏହା ହିଁ ଥିଲା ।"

ଭାରତୀୟ ଖ୍ରୀଷ୍ଟିଆନମାନେ ମଧୁବାବୁଙ୍କର ବାଣୀ, ପ୍ରେରଣା ଓ ଆନ୍ତରିକତାରେ ମୁଗ୍ଧ ହୋଇଯାଇଥିଲେ । ଏତେ ବଡନେତା ନେତାଟିଏ ପାଇଲେ ଭାବି ସମସ୍ତେ ଆନନ୍ଦିତ ହେଉଥିଲେ । ତାଙ୍କୁ ପୁଣି ତୃତୀୟ ଥର ସଭାପତି ରୂପେ ଖ୍ରୀ: ୧୯୧୭ର ନାଗପୁର

ଅଧିବେଶନରେ ନିର୍ବାଚିତ କରାଗଲା । ମଧୁବାବୁଙ୍କ ଲୋକପ୍ରିୟତା, ବାଗ୍ମିତା, ଅଟଳ ଆତ୍ମବିଶ୍ୱାସ, ତୀକ୍ଷ୍ଣ ଦୂରଦୃଷ୍ଟି, ନିର୍ଭୀକତା ତାଙ୍କୁ ଏ ସମ୍ମାନର ଅଧିକାରୀ କରିଥିଲା । ପ୍ରକୃତ ନେତାଠାରେ ଏହି ଗୁଣ ଥିବା ଆବଶ୍ୟକ। ନାଗପୁର ସମ୍ମିଳନୀରେ ସେ ଏକ ଜ୍ୱାଳାମୟୀ ଅଭିଭାଷଣ ଦେଇଥିଲେ ଏବଂ ଏହାର ପ୍ରଭାବ ପ୍ରତ୍ୟେକ ଚିନ୍ତାଶୀଳ ଖ୍ରୀଷ୍ଟିଆନଙ୍କ ଉପରେ ପଡ଼ିଥିଲା । ବ୍ୟକ୍ତିଗତ ଓ ସାମାଜିକ ସ୍ୱାର୍ଥ ତ୍ୟାଗର ଆବଶ୍ୟକତା ଓ ମହନୀୟତା ସମ୍ବନ୍ଧରେ ସେ ଯେଉଁ ଉଜ୍ଜ୍ୱଳ ବ୍ୟାଖ୍ୟା ଦେଇଥିଲେ ତାହା ଅମର ଭାଷାରେ ଲିପିବଦ୍ଧ ହୋଇ ରହିଛି; ଯୁଗେ ଯୁଗେ ଏହା ମାନବ ଜାତିକୁ ଉଦ୍‌ବୁଦ୍ଧ କରୁଥିବ । ଅନୁଭୂତ, ଅକୃତ୍ରିମ ଜୀବନଯାପନ ପ୍ରଣାଳୀ, ଉଚ୍ଚ ମାନଦଣ୍ଡ, ଉଦାରତା, ନୈସର୍ଗିକ ନେତୃତ୍ୱ ପ୍ରଭୃତି ସଦ୍‌ଗୁଣରେ ଭୂଷିତ ମଧୁବାବୁଙ୍କ ସଦୃଶ ବ୍ୟକ୍ତି ପକ୍ଷେ ଏହି ବାଣୀ ସହଜ ସ୍ୱାଭାବିକ ଭାବରେ ହୃଦୟ କନ୍ଦରରୁ ନିର୍ଗତ ହୋଇଥିବା କିଛି ଆଶ୍ଚର୍ଯ୍ୟ ବ୍ୟାପାର ନୁହେଁ ।

ନାଗପୁର ସଭାରେ ମଧୁବାବୁଙ୍କ ବକ୍ତୃତା ଅତି ଚମତ୍କାର ପ୍ରଭାବ ବିସ୍ତାର କରିପାରିଥିଲା । ଅଭିଭାଷଣ ଭିତରେ ସେ କହିଲେ, "ପ୍ରତ୍ୟେକ ମନୁଷ୍ୟର ନିଜ ଭିତରେ ଏକାଧିକ ଜୀବନ ଅଛି । ତାହାର ବ୍ୟକ୍ତିଗତ ଜୀବନ ତ ଅଛି, ଏହା ବ୍ୟତୀତ ଅନ୍ୟ ଏକ ଜୀବନ ଅଛି —ଏହାକୁ ଆପଣମାନେ ସାମାଜିକ ବା ଜାତୀୟ-ଜୀବନ ବୋଲି କହିପାରନ୍ତି । ମନୁଷ୍ୟ ପରପାଇଁ ସୃଷ୍ଟି ହୋଇଛି ସିନା, ସ୍ୱାର୍ଥପର ଜୀବନ ଯାପନ କରିବାକୁ ନୁହେଁ । ଜଣେ ମନୁଷ୍ୟ ପକ୍ଷରେ ନିର୍ବାଯ୍ୟ ସ୍ୱାର୍ଥପର ଜୀବନ ଯାପନକରିବା ସମ୍ଭବ ନୁହେଁ । ସ୍ୱାର୍ଥପର ବୋଲି କୁହାଯାଉଥିଲେ ମଧ୍ଯ ଜଣେ ଲୋଭୀର ଜୀବନ ନିଶ୍ଚିତ ଭାବେ ଅନାସକ୍ତ । ଲୋଭୀ ମାନବିକ ସୁଖସମ୍ଭୋଗରୁ ନିଜକୁ ବଞ୍ଚିତ କରେ । ଏପରି କରିବାଦ୍ୱାରା ସେ ନିଶ୍ଚୟ ଅନାସକ୍ତ ବା ସ୍ୱାର୍ଥତ୍ୟାଗକୁ ବରଣ କରିଛି, କାରଣ ଏହାଦ୍ୱାରା ତାହାର ସଞ୍ଚିତ ଧନ ପର ହସ୍ତକୁ, ସେ ଭାର୍ଯ୍ୟା ହେଉ, କି ପୁତ୍ର ହେଉ, କି ଦୁହିତା ହେଉ, ଯାଉଛି । ମାନବ ଜୀବନ ତ୍ୟାଗରୁ ଜନ୍ମ ହୋଇଛି । ମୋର ମାତାର ଅନାସକ୍ତି, ହିଁ ମୋର ଜୀବନର ମୂଳ । ମୁଁ ଯେତେବେଳେ ମୋର ମାତାର ଗର୍ଭରେ ଅନ୍ଧକାରମୟ ପ୍ରୟୋଗଶାଳାରେ ଥିଲି, ସେତେବେଳେ ମୁଁ ମାତାଙ୍କର ରକ୍ତ ଶୋଷଣ କରିଛି । ମୋର ଏହି ଶରୀରଟି ମୋର ମାତାର ସର୍ବବାଧାବିବର୍ଜିତ ମୁକ୍ତ ଦାନ। ଏହା ପ୍ରଥମେ ତାଙ୍କର ଶରୀରର ଏକ ଅଂଶ ଥିଲା । ସେ ଯେତେବେଳେ ମୋତେ ଏ ସଂସାରରେ ଅବତୀର୍ଣ୍ଣ କରାଇଲେ, ସେତେବେଳେ ସେ ମୋ ପ୍ରକୃତି ଉପରେ ସ୍ୱାର୍ଥତ୍ୟାଗର ଛାପ ପକାଇଦେଲେ । ଜଣେ ମାତାଙ୍କର ଅନାସକ୍ତ ଯୋଗୁଁ ମୁଁ ସଂସାରରେ ଅବତୀର୍ଣ୍ଣ ହେଲି ଏବଂ ଏହି ସଂସାରରୁ ମୋତେ ଯେତେବେଳେ ଚାଲିଯିବାକୁ ଆଦେଶ ହେବ, ସେତେବେଳେ ମୋ ତ୍ରାଣକର୍ତ୍ତାଙ୍କ ସ୍ୱାର୍ଥତ୍ୟାଗ ମୋତେ ସ୍ୱର୍ଗକୁ ନେବ । ଅନାସକ୍ତି ଓ ସ୍ୱାର୍ଥ ତ୍ୟାଗ ମାନବ ଜୀବନର ସାଧାରଣ ଅବସ୍ଥା ମାତ୍ର ।"

ପ୍ରାର୍ଥନାରେ ମଧୁବାବୁଙ୍କର ବିଶ୍ୱାସ ଥିଲେ ମଧ୍ୟ ପରର ପ୍ରାର୍ଥନାରେ ନିଜର ମଙ୍ଗଳ ହେବା ବିଷୟରେ ତାଙ୍କର ବିଶ୍ୱାସ ନ ଥାଏ । ସେ କହନ୍ତି, "ପର ମୋର ମଙ୍ଗଳପାଇଁ ପ୍ରାର୍ଥନା କଲେ ଭଗବାନ ତାଙ୍କ କଥା ଶୁଣି ମୋର ମଙ୍ଗଳ କରିବେ, ଏ ବିଶ୍ୱାସ ମୋର ନାହିଁ । ମୁଁ କାତରରେ ଡାକିଲେ ଭଗବାନ ମୋ ଦୁଃଖ ଶୁଣିବେ । ଈଶ୍ୱରଙ୍କଠାରେ ନିଜର ବିଶ୍ୱାସ ଥିଲେ ପ୍ରାର୍ଥନା ନିଶ୍ଚୟ ଫଳପ୍ରଦ ହେବ । ଅନ୍ୟ କେହି ମୋର ପ୍ରତିନିଧି ହୋଇ ଭଗବାନଙ୍କୁ ମୋ ଅନ୍ତରର ବେଦନା କିପରି ଜଣାଇପାରିବ ?" ଥରେ ଜଣେ ଧର୍ମଯାଜକ ଓ ତାଙ୍କ ସ୍ତ୍ରୀ ମଧୁବାବୁଙ୍କ ଘରକୁ ଆସି ତାଙ୍କର ମଙ୍ଗଳପାଇଁ ସେମାନେ ପ୍ରାର୍ଥନା କରିବେ ବୋଲି କହିଲେ । ମଧୁବାବୁ ସେମାନଙ୍କୁ ମନାକଲେ ନାହିଁ । ସେମାନେ ଗଲାପରେ ଆତ୍ମୀୟମାନଙ୍କୁ ଏହା ବୁଝାଇ କହିଲେ ।

**'ଷ୍ଟାର୍ ପ୍ରେସ' ଅମାନତ**—ଖ୍ରୀ: ୧୯୧୫ରେ ବିହାର-ଓଡ଼ିଶା ସରକାର କଟକର 'ଷ୍ଟାର୍ ପ୍ରେସ' (Star Press)ଠାରୁ ଟ ୨୦୦୦ (ଦୁଇହଜାର ଟଙ୍କା) ଅମାନତ ଦାବି କରିଥିଲେ ଓ ଇଣ୍ଡିଆନ୍ ପ୍ରେସ ଆକ୍ଟ ଅନୁସାରେ କଟକ ମାଜିଷ୍ଟ୍ରେଟ୍ ନୋଟିସ ଜାରି କରିଥିଲେ । ଏହି ପ୍ରେସ୍‌ରୁ 'ଷ୍ଟାର ଅଫ୍ ଉତ୍କଳ' (Star of Utkal) ନାମକ ସାପ୍ତାହିକ ଇଂରେଜୀ ପତ୍ରିକା ପ୍ରକାଶ ପାଉଥିଲା । ଏହି ପତ୍ରିକାରେ ସରକାରଙ୍କ ପ୍ରତି ଘୃଣା ଓ ଅଶ୍ରଦ୍ଧା ଜାଗ୍ରତ କରିବା ଭଳି କେତେକ ଲେଖା ପ୍ରକାଶ ପାଇଥିବାରୁ ସରକାର ଅମାନତ ଦାବି କରିଥିଲେ । ଏହା ପୂର୍ବରୁ ସରକାର ଏକାଧିକ ଥର ଏହି ଦୋଷପାଇଁ ମୁଦ୍ରାକରଙ୍କୁ ତାଗିଦ୍ ମଧ୍ୟ କରିଥିଲେ । ଶେଷରେ ନଗଦ ଟଙ୍କା ଅମାନତ ଦାଖଲ କରିବାପାଇଁ ଆଦେଶ ହୋଇଥିଲା ଓ ମୁଦ୍ରାକରଙ୍କୁ ଏକ ସପ୍ତାହ ସମୟ ଦିଆଯାଇଥିଲା । ମଧୁବାବୁ ଏହାର ପ୍ରତିବାଦ କରି କହିଥିଲେ ଯେ ମୁଦ୍ରାକରଙ୍କ ଅଯଥା ହଇରାଣ କରାଯାଉଛି । ସେପରି ଆପତ୍ତିଜନକ କୌଣସି ଲେଖା ସେଥିରେ ପ୍ରକାଶ ପାଇ ନାହିଁ । ମୁଦ୍ରାକରଙ୍କୁ ପ୍ରଥମେ ତାଗିଦ୍ କରିବା ଉଚିତ ଥିଲା । ଅମାନତ ଟଙ୍କା ଆକାରରେ ନ ହୋଇ ଅନ୍ୟ ରୂପରେ ନିର୍ଦ୍ଦିଷ୍ଟ ସମୟ ଭିତରେ ଦାଖଲ କରିବାପାଇଁ ନିର୍ଦ୍ଦେଶ ଦେବା ଉଚିତ ଥିଲା ବୋଲି ସେ କହିଥିଲେ । ମାତ୍ର ସରକାର ମଧୁବାବୁଙ୍କ ଏହି ଯୁକ୍ତିକୁ ବ୍ୟବସ୍ଥାପକ ସଭାରେ ଗ୍ରହଣ କରି ନ ଥିଲେ ।

**ଅନୁନ୍ନତ ସମ୍ପ୍ରଦାୟର ଉନ୍ନୟନ ଓ ସରକାର**—ଖ୍ରୀ: ୧୯୧୫ରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଅନୁନ୍ନତ ସମ୍ପ୍ରଦାୟର ଉନ୍ନତି ବିଧାନ ଓ ସରକାରଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ ସଭାର ମାନ୍ୟବର ସଭ୍ୟ (ବେସରକାରୀ) ଦାଦାଭାଇ ନଓରୋଜୀ (ବୋମ୍ବେ) ଏକ ପ୍ରସ୍ତାବ ଆଗତ କରିଥିଲେ । ପ୍ରସ୍ତାବକଙ୍କ ବ୍ୟତୀତ ମାନ୍ୟବର ପଣ୍ଡିତ ମଦନମୋହନ ମାଲବ୍ୟ, ମାନ୍ୟବର ଶ୍ରୀ ମଧୁସୂଦନ ଦାସ ପ୍ରମୁଖ ସଭ୍ୟମାନେ ଆଲୋଚନାରେ ଯୋଗ ଦେଇଥିଲେ । ମଧୁବାବୁ ଆଲୋଚନାରେ ଫୁଟବଲ ଖେଳର ପୂର୍ବ

ଅବସ୍ଥା ସହିତ ଏହି ପ୍ରସ୍ତାବର ବିତର୍କର ଆରମ୍ଭକୁ ତୁଳନା କରିଥିଲେ । ସେ କହିଥିଲେ, ଏ ପ୍ରସ୍ତାବର ଆଲୋଚନାର ଗତି ଦେଖି ଫୁଟବଲ ଖେଳ ମନେପଡ଼ିଯାଉଛି । ଖେଳ ପୂର୍ବରୁ ଖେଳପଡ଼ିଆରେ ଦୁଇଦଳ ଖେଳାଳି ମୁହାଁମୁହିଁ ହେବାବେଳେ ପରସ୍ପରକୁ ଅଭିବାଦନ କରି 'ଜୟଯୁକ୍ତ ହୁଅନ୍ତୁ' ବୋଲି କାମନା କରନ୍ତି; କିନ୍ତୁ ଖେଳ ଆରମ୍ଭ ହୋଇଯିବା ସଙ୍ଗେ ସଙ୍ଗେ ଏ ଦୟାର୍ଦ୍ର ମନୋଭାବ କେଉଁଆଡ଼େ ଉଭେଇଯାଏ; ଅବସ୍ଥା ଅନ୍ୟରୂପ ଧାରଣ କରେ ।'' ଆଲୋଚନା ଆରମ୍ଭ ସମୟରେ ସବୁ ସମ୍ପ୍ରଦାୟର ସଭ୍ୟମାନେ ଏଥିପ୍ରତି ସହାନୁଭୂତି ପ୍ରଦର୍ଶନ କରିଥିଲେ; କିନ୍ତୁ ଆଲୋଚନା ବେଳେ ହିନ୍ଦୁ ଓ ଅନୁନ୍ନତ ସମ୍ପ୍ରଦାୟର ସଭ୍ୟମାନଙ୍କ ଭିତରେ ଅଳ୍ପ ତିକ୍ତ ଭାବ ପ୍ରକାଶ ପାଇଥିଲା । ମଧୁବାବୁ ଏହା ଲକ୍ଷ୍ୟକରି ଫୁଟବଲ ଖେଳର ଉଦାହରଣ ଦେଇଥିଲେ । ମଧୁବାବୁ କହିଥିଲେ, ''ଆଲୋଚନାରୁ ସ୍ପଷ୍ଟ ହେଉଛି ଯେ ଅନ୍ୟ ସଭ୍ୟମାନଙ୍କପରି ସବୁ ହିନ୍ଦୁ ସଭ୍ୟ ଅନୁନ୍ନତ ସମ୍ପ୍ରଦାୟର ସ୍ୱାର୍ଥର ଉନ୍ନତି କରିବାପାଇଁ ଉତ୍କଣ୍ଠିତ ।'' ସେ ପୁଣି କହିଥିଲେ,''ଅନୁନ୍ନତ ସମ୍ପ୍ରଦାୟକୁ ମୁଁ ଅତ୍ୟାଗ୍ରହିତ ସମ୍ପ୍ରଦାୟ ବୋଲି କହିବି ।'' ପଣ୍ଡିତ ମଦନମୋହନ ମାଲବ୍ୟ ଓ ଶ୍ରୀ ସୁରେନ୍ଦ୍ରନାଥ ବାନାର୍ଜିଙ୍କ ଉକ୍ତିରୁ କିଛି ଉଦ୍ଧାରକରି ସେ କହିଥିଲେ ଯେ, ''ଆତ୍ମିକ ଧର୍ମ ଉପରେ ପ୍ରତିଷ୍ଠିତ ହୋଇଥିଲେ ଏହାହିଁ ହୁଏ । ସାମାଜିକ ପରମ୍ପରା ରକ୍ଷଣଶୀଳ ହୁଏ । ଉନ୍ନତି କାମନା ଓ ପ୍ରାଚୀନ ପରମ୍ପରା ଓ ଆତ୍ମିକ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେଲେ, ବିବର୍ତ୍ତନବାଦର କାର୍ଯ୍ୟ ପ୍ରତି ଆମକୁ ଦୃଷ୍ଟି ରଖିବାକୁ ପଡ଼ିଲେ ମଧ୍ୟ ବିପ୍ଳବକୁ ତ୍ୟାଗକରିବାକୁ ହେବ କି ? କିନ୍ତୁ ବିବର୍ତ୍ତନ ମନ୍ଥର ଗତିଶୀଳ; ଅବିଚଳିତ ମଧ୍ୟ ହୋଇପାରେ; କିନ୍ତୁ ଏହା ମନ୍ଥର, ଅତି ମନ୍ଥର ।''ସେ ପୁଣି କହିଥିଲେ, ''ମରୁଭୂମି ଭିତରେ ହିନ୍ଦୁ ସମାଜଠାରୁ ଅନୁନ୍ନତ ସମ୍ପ୍ରଦାୟ ବହୁ ଦୂରରେ ଅବସ୍ଥିତ । ସେ କାହିଁକି ସେଠାରେ ରହିଛି ? କାରଣ, କୌଣସି ଏକ ସମୟରେ ତାକୁ ସମାଜର ଆବର୍ଜନାରୂପେ ଫିଙ୍ଗି ଦିଆଯାଇଛି । ଉନ୍ନତିଶୀଳ ନଗରମାନଙ୍କରେ ଆବର୍ଜନା ଯେଉଁ ବ୍ୟବହାର ପାଉଛି, ସେ ଭଲ ବ୍ୟବହାର ମଧ୍ୟ ସେ ପାଉନାହିଁ ।'' ଏପରି ବହୁ ଯୁକ୍ତି ଚମତ୍କାର ଭାବରେ ଉପମା ସହ ଅବତାରଣା କରି ମଧୁବାବୁ ତାଙ୍କ ବକ୍ତବ୍ୟକୁ ଅତି ଉଚ୍ଚ-କୋଟୀର କରିପାରିଥିଲେ । ଗ୍ରାମମାନଙ୍କରେ ଅନୁନ୍ନତ ସମ୍ପ୍ରଦାୟ କିପରି ଅବହେଳିତ ଅବସ୍ଥାରେ ଅଛନ୍ତି ତାହାର ସେ ବର୍ଣ୍ଣନା କରିଥିଲେ । ଅପରାଧୀ ଜାତିର ଅବସ୍ଥାକୁ ମଧ୍ୟ ସେ ଅତି କରୁଣ ଭାବରେ ବର୍ଣ୍ଣନା କରିଥିଲେ । ଏ କ୍ଷେତ୍ରରେ ସମ୍ଭ୍ରାନ୍ତ ସମାଜର ସମ୍ପତ୍ତିର ପ୍ରଭାବ ପ୍ରବଳ ଥିବା ସେ କହିଥିଲେ । ଏହି ପ୍ରସଙ୍ଗରେ ସେ ବିକଳ କଣ୍ଠରେ କହିଥିଲେ,''ପୃଥିବୀର କ୍ରୀତଦାସ ପ୍ରଥା ଲୋପକରି ବ୍ରିଟିଶ ରାଜମୁକୁଟ ଉଜ୍ଜ୍ୱଳତମ ହୀରକମଣ୍ଡିତ ହୋଇଥିଲେ ମଧ୍ୟ ବ୍ରିଟିଶ ରାଜ୍ୟରେ 'ଅପରାଧୀ ଜାତି' କ୍ରୀତଦାସ ପରି ହିଁ ରହିଛନ୍ତି ।''

ଏହି ଆଲୋଚନାବେଳେ ମଧୁବାବୁ ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟର ଉନ୍ନତି ନିମିତ୍ତ ସରକାର ଏଯାବତ୍ ସନ୍ତୋଷଜନକ ଉନ୍ନତିକର ଉପାୟ ଅବଲମ୍ବନ କରିନଥିବା ମତବ୍ୟକ୍ତ କରିଥିଲେ ଏବଂ ଭାରତୀୟ ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟର ଦୁରବସ୍ଥା ବର୍ଣ୍ଣନା କରିଥିଲେ ।

ମଧୁବାବୁ କହିଥିଲେ, "ଅପରାଧୀ ସମ୍ପ୍ରଦାୟର ବହୁ ଲୋକ ଜେଲରେ ଅଛନ୍ତି । ସେମାନଙ୍କୁ ବିଭିନ୍ନ ଧନ୍ଦା ଶିକ୍ଷାଦେବା ଉଚିତ ଏବଂ ସେମାନେ ଜେଲରୁ ମୁକ୍ତହୋଇ ଯେପରି ପୁନର୍ବାର ଅପରାଧ ନ କରନ୍ତି, ସେଥିପ୍ରତି ସରକାର ଲକ୍ଷ୍ୟଦେବା ଉଚିତ । ଜେଲ ଭିତରେ ଯେଉଁ ସବୁ ନିୟମ ଅଛି, ତାହାକୁ ଅଳ୍ପ କୋହଳ କରିଦେଲେ କଏଦୀ ଜେଲ ଭିତରେ ଯେଉଁ ଶିଳ୍ପଶିକ୍ଷାରେ ଅଭିଜ୍ଞତା ଅର୍ଜ୍ଜନ କରୁଛି, ଜେଲରୁ ମୁକ୍ତହେବା ପରେ ସେହି ଶିଳ୍ପରେ ନିଜକୁ ନିୟୋଜିତ କରିପାରନ୍ତି ।" ସେ କହିଲେ, "ମୁଁ ଆଉ ଅଧିକ ଦୂରକୁ ଯିବାକୁ ଚାହୁଁ ନାହିଁ । କାରଣ ମୁଁ ଜାଣେ, ସରକାରୀ ବିଧାନଗୁଡ଼ିକ ଲୁହା ଚାଞ୍ଚରେ ଢଳା; କିନ୍ତୁ ଏହାକୁ ତରଳାଇ ପୁଣି ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ସୁବିଧା ହେବାଭଳି ନୂତନ ଭାବରେ ଢଳେଇ କରିବା ଅଧିକାର ସରକାରଙ୍କର ନିଶ୍ଚୟ ଅଛି ।"

**ମାତୃଭାଷା ମାଧ୍ୟମରେ ଶିକ୍ଷା** ଖ୍ରୀ: ୧୯୧୫ରେ ବଡ଼ଲାଟ ସଭାରେ ବଙ୍ଗର ବେସରକାରୀ ପ୍ରତିନିଧି ମାନ୍ୟବର ସୁରେନ୍ଦ୍ରନାଥ ବାନାର୍ଜି (ବନ୍ଦୋପାଧ୍ୟାୟ) ବଜେଟ୍ ଅଧିବେଶନରେ ସେକେଣ୍ଡାରୀ ସ୍କୁଲ (ମାଧ୍ୟମିକ ବିଦ୍ୟାଳୟ)ମାନଙ୍କରେ ଭର୍ଣ୍ଣାକୁଲାର (ମାତୃଭାଷା) ମାଧ୍ୟମରେ ଶିକ୍ଷା ଦିଆଯାଉ ବୋଲି ଏକ ପ୍ରସ୍ତାବ ଆଗତ କରିଥିଲେ । ମାନ୍ୟବର ମଧୁସୂଦନ ଦାସ ଏହାର ବିରୋଧ କରିଥିଲେ । ପ୍ରଚଳିତ ଶିକ୍ଷା ପଦ୍ଧତିର ପରିବର୍ତ୍ତନ ନିମନ୍ତେ କୌଣସି ଯୁକ୍ତିଯୁକ୍ତ କାରଣ ନଥିବା ସେ ଦର୍ଶାଇଥିଲେ । ସେ ଭାଷାର କ୍ରମବିକାଶ ସମ୍ବନ୍ଧରେ ଆଲୋଚନା କରି କହିଥିଲେ ଯେ, ନିଜର ଦୈନନ୍ଦିନ ଜୀବନର ଅଭିବ୍ୟକ୍ତି ହିଁ ବ୍ୟକ୍ତିର ମାତୃଭାଷା । ବର୍ତ୍ତମାନ ଭାରତୀୟ ଭାଷାମାନଙ୍କରେ କେତେ ତ୍ରୁଟିଥିବା ଉଲ୍ଲେଖ କରି ମଧୁବାବୁ କହିଥିଲେ, "ମାତୃଭାଷା ଶିକ୍ଷା ମାଧ୍ୟମର ଉପଯୁକ୍ତ ହେବାଭଳି ଅବସ୍ଥା ଆସିନାହିଁ । ଏହି ଅଭାବଯୋଗୁଁ ବହୁ ବର୍ଷ ହେଲା ଇଂରାଜୀ ଭାଷା ମାଧ୍ୟମରେ ଶିକ୍ଷା ଦେବାର ବ୍ୟବସ୍ଥା ହୋଇଥିଲା । ବର୍ତ୍ତମାନ ମଧ୍ୟ ସେ ଅଭାବ ଦୂର ହୋଇନାହିଁ କି ସେ ଅବସ୍ଥାର ପରିବର୍ତ୍ତନ ହୋଇନାହିଁ । ବର୍ତ୍ତମାନ ଭାରତୀୟ ଭାଷା ଅନୁନ୍ନତ, ଶବ୍ଦବିଭବହୀନ । ଯଥେଷ୍ଟ ପାଠ୍ୟ ପୁସ୍ତକ ନାହିଁ କି ଯଥେଷ୍ଟ ସଂଖ୍ୟକ ଶିକ୍ଷକ ନାହାନ୍ତି ।

"ବର୍ତ୍ତମାନ ଏହି ପ୍ରସ୍ତାବ ଅନୁସାରେ ଶିକ୍ଷା ଦିଆଗଲେ, ବିଭିନ୍ନ ପ୍ରଦେଶରେ ସଂଖ୍ୟାଲଘୁରୂପେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର କ୍ଷତି ହେବ ।" ମଧୁବାବୁ କହିଥିଲେ, "ଏହି ପ୍ରସ୍ତାବ ଗୃହୀତହେଲେ ଓଡ଼ିଆ ପରି ସଂଖ୍ୟାଲଘୁ ଲୋକଙ୍କର ଭାଷା ଶିକ୍ଷାକ୍ଷେତ୍ରରୁ ଏକାବେଳକେ ଲୋପ ପାଇଯିବ ।" ସେ ମାନ୍ଦ୍ରାଜ ପ୍ରଦେଶର ଉଦାହରଣ ଦେଇ କହିଲେ, "ଏଠାରେ ଏକାଧିକ ଭାଷା ପ୍ରଚଳିତ ଅଛି । ଓଡ଼ିଆ ଭାଷାଭାଷୀଙ୍କ ସଂଖ୍ୟା ଗରିଷ୍ଠତା ନ ଥିବାରୁ ଓଡ଼ିଆ ପିଲାମାନଙ୍କୁ ଶିକ୍ଷାକ୍ଷେତ୍ରରୁ ବିଦାୟ ଦିଆଯିବାର ସମ୍ଭାବନା ରହିଛି ।" ଏପରି ଆଉ କେତେକ ଯୁକ୍ତି ଦେଖାଇ ସେ ଏ ପ୍ରସ୍ତାବର ବିରୋଧୀ ଥିଲେ ।

**ପ୍ରଥମ ମହାଯୁଦ୍ଧ ସମ୍ବନ୍ଧରେ ମତ :** ଖ୍ରୀ: ୧୯୧୪ରେ ୟୁରୋପରେ ଯେଉଁ ମହାଯୁଦ୍ଧ ଲାଗିଗଲା, ସେ ସମ୍ବନ୍ଧରେ ମଧୁବାବୁଙ୍କ ମତ ବ୍ରିଟିଶଙ୍କ ସପକ୍ଷରେ ଥିଲା । ସେ

ଆକ୍ରମଣକାରୀ ଜର୍ମାନୀକୁ ଅତି ମାତ୍ରାରେ ଘୃଣା କରୁଥିଲେ । ଜର୍ମାନୀର ପଶୁବଳ ଧ୍ୱଂସ ହେଲେ ପୃଥିବୀରେ ଶାନ୍ତି ବିରାଜିବ ଓ ନୂତନ ଆଲୋକ ଦେଖାଦିବ ବୋଲି ତାଙ୍କର ବିଶ୍ୱାସ ଥିଲା । ବିପଦ ବେଳେ ବ୍ରିଟିଶ୍ ସରକାରଙ୍କୁ ସର୍ବପ୍ରକାରେ ସାହାଯ୍ୟ କରିବା ଭାରତର କର୍ତ୍ତବ୍ୟ, ଏହା ସେ କହୁଥିଲେ । ବିପଦରୁ ଉଦ୍ଧାର ପାଇଲେ ବ୍ରିଟେନ ଭାରତର ସାହାଯ୍ୟକୁ କେବେ ଭୁଲିବ ନାହିଁ, ଏ ବିଶ୍ୱାସ ତାଙ୍କର ଥିଲା । ବ୍ରିଟେନ ଏହି କାରଣରୁ ଭାରତର ରାଜନୈତିକ, ଆର୍ଥିକ, ସାମାଜିକ ପ୍ରଭୃତି ସକଳ କ୍ଷେତ୍ରରେ ଉନ୍ନତିମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରିବ, ଏ ବିଶ୍ୱାସ ମଧ୍ୟ ତାଙ୍କର ଥିଲା । ଏହି ସକାଶେ ସେ ଇମ୍ପିରିଆଲ କାଉନ୍‌ସିଲରେ ପ୍ରସଙ୍ଗକ୍ରମେ ବ୍ରିଟିଶ ଜାତିକୁ ବିପଦବେଳେ ଭାରତର ଅକାତର ସାହାଯ୍ୟ ଦାନ ଓ ବ୍ରିଟିଶ ଜାତିର ପ୍ରତ୍ୟୁପକାର ସମ୍ବନ୍ଧରେ ଇଂରେଜ ଶାସନକର୍ତ୍ତାମାନଙ୍କୁ ଚେତାଇ ଦେଉଥିଲେ ।

"ସୌଭାଗ୍ୟକୁ ହେଉ କି ଦୁର୍ଭାଗ୍ୟକୁ ହେଉ, ମୁଁ ଏ ଯୁଦ୍ଧକୁ ଏକ ଐଶ୍ୱରିକ ଘଟଣା ବୋଲି ମନେକରେ । ଠିକ୍ ଏହି ସମୟରେ ଯୁଦ୍ଧ ଉପସ୍ଥିତ ହୋଇଛି ଏବଂ ଭାରତବର୍ଷକୁ ପରୀକ୍ଷା ଦେବାକୁ ପଡ଼ୁଛି । କେତେଜଣ ସମାଲୋଚକ ଭାରତ ରାଜଭକ୍ତ ବୋଲି ବିଶ୍ୱାସ କରୁନାହାନ୍ତି; କିନ୍ତୁ ଭାରତୀୟ ରାଜଭକ୍ତିର ପରୀକ୍ଷା ହୋଇସାରିଛି । × ×"
(Imperial Council Proceeding, Vol. 54. P. 550. 1915)

**ଲବଣକର** : ଖ୍ରୀ: ୧୯୧୬ରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଟାରିଫ୍ ବିଲ୍ (ଶୁଳ୍କ ବିଲ୍) ଆଲୋଚନାବେଳେ ମଧୁବାବୁ ଲବଣକର ପ୍ରସ୍ତାବର ଘୋର ବିରୋଧ କରିଥିଲେ । ଯୁଦ୍ଧ ସମୟରେ ଦେଶ ବିପନ୍ନ ଥିବାବେଳେ କରବୃଦ୍ଧିର ଆବଶ୍ୟକତା ଥିବା ସ୍ୱୀକାର କରି ସେ ଦାବୀ କରିଥିଲେ ଯେ ଯୁଦ୍ଧ ବନ୍ଦହେବା ସଙ୍ଗେ ସଙ୍ଗେ ଲବଣ-ଶୁଳ୍କ ଉଠାଇ ଦେବାକୁ ହେବ । ସେ କହିଥିଲେ, "ଆମ ସମଗ୍ର ଜାତିର ଜୀବନରକ୍ତ ଏକ ଭଣ୍ଡାର ପରି । ବ୍ରିଟିଶ୍ ସାମ୍ରାଜ୍ୟ ବିପନ୍ନ ହେଲେ, ମହାମହିମ ସମ୍ରାଟ ଏ ଭଣ୍ଡାରରୁ ଯେତେ ଆବଶ୍ୟକ ସେତେ ନେଇ ପାରିବେ । ଭାରତର ଗରିବ ଜନସାଧାରଣ ଅଧିକ ବା କଣ କରିପାରିବେ ? ସୈନ୍ୟ ବିଭାଗ ଉପରେ ତାହାର କର୍ତ୍ତୃତ୍ୱ ନାହିଁ । ପୃଥିବୀର ବିଭିନ୍ନ ସ୍ଥାନରେ ଯେଉଁ ଯୁଦ୍ଧ ଚାଲିଛି, ତାହା ମଧ୍ୟ ଏହାର ଆୟତ୍ତାଧୀନ ନୁହେଁ । ଯୁଦ୍ଧକ୍ଷେତ୍ରରେ ନିଜ ଜୀବନରକ୍ତ ଦାନ କରିବା ପରେ ଦ୍ୱିତୀୟ ଦାନ ସ୍ୱରୂପ ସେ ଦୈନନ୍ଦିନ ଆହାର୍ଯ୍ୟର ଅତ୍ୟାବଶ୍ୟକ ଏକ ଦ୍ରବ୍ୟ ଉପରେ କରକୁ ଆନନ୍ଦ ସହକାରେ ସ୍ୱୀକାର କରିବା ବ୍ୟତୀତ ଆଉ କଣ କରିପାରେ ?"

"ମୁଁ ଖୁସି ଯେ ଲବଣ-କର ପ୍ରଚଳିତ ହେଲା । ମୁଁ କେବେ କହୁନାହିଁ ଯେ ଲବଣକର ଏକ କାମ୍ୟକର । ଏକ ମୁହୂର୍ତ୍ତ ପାଇଁ ହେଲେ ମଧ୍ୟ ଏହି କରର ଯୁକ୍ତିଯୁକ୍ତତା ରହିଛିବୋଲି ମୁଁ ମନେ କରୁନାହିଁ, ବରଂ ଲବଣକର ଭାରତ ସରକାରଙ୍କ ରାଜନୀତି ଉପରେ ଏକ କଳଙ୍କ ।"

ଲବଣ ଉପରେ କର ବସାଇଲେ ଗରିବ ଜନସାଧାରଣଙ୍କୁ କେତେକ ବାଧିବ, ମଧୁବାବୁ ତାହା ସ୍ପଷ୍ଟଭାବରେ ବ୍ୟକ୍ତ କରିଛନ୍ତି । ଯୁଦ୍ଧର ଗତି ପ୍ରଭୃତି ନିୟନ୍ତ୍ରଣରେ ଭାରତର କୌଣସି ପ୍ରକାର କର୍ତ୍ତୃତ୍ୱ ନଥିବା ଦର୍ଶାଇ ସେ ବ୍ରିଟିଶ ରାଜ୍ୟଶାସନକୁ କଠୋର ଭାବରେ ସମାଲୋଚନା କରିଥିଲେ ।

**ଶୁଳ୍କ ଆଇନ ବିଚାର :** ଖ୍ରୀ: ୧୯୧୬ରେ ବଡ଼ଲାଟଙ୍କ ସଭାରେ ଶୁଳ୍କ ଆଇନର ବିଚାର ବେଳେ ରପ୍ତାନି ଶୁଳ୍କର ବୃଦ୍ଧି ପ୍ରସ୍ତାବକୁ ଲକ୍ଷ୍ୟ କରି ମଧୁବାବୁ କହିଥିଲେ, "ଶୁଳ୍କ ଆଇନ ସଂଶୋଧିତ ହେବାଦ୍ୱାରା ରପ୍ତାନି କରର ପରିମାଣ ବହୁତ ବୃଦ୍ଧି ପାଇବାର ଆଶଙ୍କା ରହିଛି । ଯଦି ଏହା ଘଟେ, ତାହାହେଲେ ଯୁଦ୍ଧପରେ କହିପାରନ୍ତି ଯେ ଭାରତବର୍ଷ ଯୁଦ୍ଧପାଣ୍ଠିକୁ ଯେଉଁ ଅର୍ଥଦାନ କରିଥିଲା, ତାହା ବିଦେଶୀମାନେ ରପ୍ତାନି ଶୁଳ୍କ ଆକାରରେ ଯାହା ଦେଇଥିଲେ ସେଥିରୁହିଁ ଏହି ଧନ ଆସିଥିଲା । ଅର୍ଥସଚିବ ସତର୍କତା ସହକାରେ ଯୁକ୍ତିଯୁକ୍ତ ବିଚାରକରି ବ୍ୟବସ୍ଥା ଗ୍ରହଣ କରିଛନ୍ତି । ଏହାଦ୍ୱାରା ସମଗ୍ର ଜଗତ ରାଷ୍ଟ୍ରଦେବ ଯେ ଭାରତ ଅତି ଗରିବ ହେଲେ ମଧ୍ୟ ସାମ୍ରାଜ୍ୟର ମାନମର୍ଯ୍ୟାଦା ରକ୍ଷା-କରିବାପାଇଁ ସେ କେବେ ପଶ୍ଚାତ୍ପଦ ହୋଇନାହିଁ । ଆମର ଶକ୍ତି ଅନୁସାରେ ଯାହା କରିବାର କଥା, ତାହା ଆମେ କରିଛୁ । ୟୁରୋପର ଯୁଦ୍ଧଭୂମିରେ ଆମେ ପ୍ରମାଣ କରି-ଦେଇଛୁ ଯେ ଜଣେ ବ୍ରିଟିଶ ପ୍ରଜାର ରକ୍ତ, ସେ କାନଡ଼ାବାସୀ ହେଉ କି ଭାରତବାସୀ ହେଉ, ଏକ ବର୍ଣ୍ଣର । ଜାତୀୟ ଗୀତ ଗାନବେଳେ ହୃଦୟରେ ଯେଉଁ ସ୍ପନ୍ଦନ ଜାତ ହେଉଛି ତାହା ଭାରତୀୟର ହେଉ କି ଇଂରେଜର ହେଉ, ତାହା ଏକ ପ୍ରକାରର । ଏହା ମଧ୍ୟ ଆମେ ପ୍ରମାଣ କରିଦେଇଛୁ । ସାମ୍ରାଜ୍ୟର ଶାନ୍ତି ଦିବସ ପର୍ଯ୍ୟନ୍ତ ଆମେ ଅପେକ୍ଷା କରି ରହିବା, ନୂତନ ସୁବ୍ୟବସ୍ଥାର ଦିନ ପର୍ଯ୍ୟନ୍ତ ଅପେକ୍ଷା କରି ରହିବା । ସେତେବେଳେ କେହି ନ କହନ୍ତୁ ବା କହିବାକୁ କାହାରିକୁ ସୁବିଧା ନ ମିଳୁ ଯେ ବିପଦବେଳେ ଭାରତକୁ ତୁଳା ଦଣ୍ଡରେ ତୁଳିବାରୁ ଲଘୁ ଦେଖାଗଲା ।"

ମଧୁବାବୁ ଏହା କହିସାରି ଶୁଳ୍କ ଆଇନ୍ ସଂଶୋଧନ ବିଲ୍‌କୁ ସମର୍ଥନ ଜଣାଇଥିଲେ ।

**ବଡ଼ଲାଟ ହାର୍ଡ଼ିଞ୍ଜଙ୍କ ଅବସର ଗ୍ରହଣରେ ଶ୍ରଦ୍ଧାଞ୍ଜଳି ଅର୍ପଣ :** ଖ୍ରୀ: ଅ: ୧୯୧୬ରେ ବଡ଼ଲାଟ ଲର୍ଡ ହାର୍ଡିଞ୍ଜ ଭାରତରୁ ଅବସର ନେଇ ଯାଉଥିବାରୁ ବଡ଼ଲାଟ ସଭାର ସଭ୍ୟମାନେ ଦୁଃଖ ପ୍ରକାଶ କରିଥିଲେ ଓ ବଡ଼ଲାଟଙ୍କ ଗୁଣକୀର୍ତ୍ତନ କରି ତାଙ୍କର ଅବସର ଗ୍ରହଣ ଭାରତପକ୍ଷେ ଦୁଃଖଜନକ ବୋଲି ବ୍ୟକ୍ତ କରିଥିଲେ । ବିଶେଷତଃ, ମହାଯୁଦ୍ଧ ସମୟରେ ବିଲାତ-ଭାରତ-ସମ୍ପର୍କ ଓ ଭାରତର ବିଶିଷ୍ଟ ସମସ୍ୟାମାନଙ୍କ ପ୍ରତି ବଡ଼ଲାଟ ଉଦାର ମନୋଭାବ ପୋଷଣକରି ଶାସନକାର୍ଯ୍ୟ ପରିଚାଳନା କରିଥିବାରୁ ବ୍ୟବସ୍ଥାପକମାନେ ତାଙ୍କର କାର୍ଯ୍ୟକଳାପରେ ସନ୍ତୁଷ୍ଟ ଥିଲେ । ଯୁଦ୍ଧକାଳୀନ ବିପଦ

ଦୂର ହୋଇ ନଥିବାରୁ ହାଡ଼ିଞ୍ଜଙ୍କ ଉପସ୍ଥିତି ଭାରତର ବିଶେଷ ଆବଶ୍ୟକ ଥିବା ସେମାନେ ବ୍ୟକ୍ତ କରିଥିଲେ । ଭାରତ ଶାସନକୁ ସମୁଦ୍ର ମଧ୍ୟସ୍ଥ ବୋଇତ ଏବଂ ବଡ଼ଲାଟଙ୍କୁ କାପ୍‌ଟେନ୍ ସ୍ୱରୂପ କଳ୍ପନା କରି ମଧୁବାବୁ ସୁନ୍ଦର ଉପମା ଦେଇ ନିଜର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ସେ କହିଥିଲେ—

"ଭାରତ ବହୁତ ଥର ଦୁର୍ଭାଗ୍ୟ ଭୋଗ କରିଛି; କିନ୍ତୁ ବର୍ତ୍ତମାନ ଅଲ୍ପଦିନ ତଳେ ଭାରତ ଯେଉଁ ଦୁର୍ଭାଗ୍ୟର ସମ୍ମୁଖୀନ ହୋଇଅଛି, ସେ ସମ୍ବନ୍ଧରେ ଅନ୍ୟାନ୍ୟ ସଭ୍ୟମାନେ କହିଛନ୍ତି । ଦୁର୍ଭାଗ୍ୟଟି ହେଉଛି, ଯୁକ୍ତ ପ୍ରଦେଶରେ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ( Executive Council ) ସ୍ଥାପନକରିବା ସୁପାରିସ୍ ସମ୍ବନ୍ଧରେ ବିଲାତର ହାଉସ୍ ଅଫ୍ ଲର୍ଡ଼ସ୍ (House of Lords)ଙ୍କ ମତାମତ । ଭାରତ ଉପରେ ବହୁ ବିପତ୍ତି ପଡ଼ିଛି, କିନ୍ତୁ ଅତିଶୟ ବିପତ୍ତି ହେଉଛି, ବିପଦବେଳେ ଉତ୍ତାଳ ତରଙ୍ଗବିକ୍ଷୁବ୍ଧ ପୋତରୁ ପଥପ୍ରଦର୍ଶକ ( ମଙ୍ଗଧାରୀ ପ୍ରଧାନ ଚାଳକ ) ଦୂରକରିବା । ପ୍ରବଳ ବେଗରେ ତୋଫାନ ବହୁଛି, ଶାସନ-ପୋତ ଉପରେ ଭୟଙ୍କର ଭାବରେ ଲହରୀ ଆଘାତ ଦେଉଛି । ଦିଗ୍-ବଳୟରେ କ୍ଷୁଦ୍ର କ୍ଷୁଦ୍ର ମେଘଖଣ୍ଡ ଦେଖାଯାଉଛି । ଏହାର ଭବିଷ୍ୟତ ଆକାର ସମ୍ବନ୍ଧରେ ବର୍ତ୍ତମାନ କିଛି କଳନା କରାଯାଇ ପାରୁନାହିଁ । ଏପରି ସମୟରେ ପୋତର ପଥପ୍ରଦର୍ଶକ ପ୍ରଧାନ ନାୟକଙ୍କୁ ପୋତରୁ ଦୂର କରିଦେବା ଭାରତପକ୍ଷେ ସର୍ବାପେକ୍ଷା ବିପଦ ହୋଇପଡ଼ିଛି । କାପ୍‌ଟେନ୍ କିମ୍ବା ପ୍ରଧାନ ନାୟକଙ୍କ ଯୋଗ୍ୟତା ଏଠାରେ ବିଚାର୍ଯ୍ୟ ନୁହେଁ, ପୋତକୁ ଚଳାଇବା ସମ୍ବନ୍ଧରେ ତାଙ୍କର ଯେତେ ଜ୍ଞାନ ଥାଉ, ବିପଦ ସମୟରେ ତାଙ୍କର ଦକ୍ଷ ଅଧିନାୟକତ୍ୱ ଉପରେ ଲୋକଙ୍କ ବିଶ୍ୱାସ ହିଁ ପ୍ରଧାନ କଥା । ଯଦି ତାଙ୍କ ଉପରେ ଲୋକଙ୍କର ବିଶ୍ୱାସ ନାହିଁ, ତାହାହେଲେ ଜାହାଜର ଧ୍ୱଂସ ନିମନ୍ତେ ଲୋକମାନେ ହିଁ ସାହାଯ୍ୟ କରିବେ । ଯଦି ତାଙ୍କ ଉପରେ ଲୋକଙ୍କର ବିଶ୍ୱାସ ଥିବ, ତାହାହେଲେ ସେମାନଙ୍କର ବ୍ୟବହାର, ଚରିତ୍ର, ଧୀରତା ବିପଦରୁ ଜାହାଜକୁ ରକ୍ଷାକରିବ । ମୁଁ ଆଶା କରୁଛି, ଏପରି ଏକ ବିପଦରୁ ସମ୍ରାଟ ଭାରତକୁ ରକ୍ଷାକରିବେ ।" ମୋର ମଧ୍ୟ ବିଶ୍ୱାସ ଯେ ଭଗବାନ ଭାରତକୁ ଏ ବିପଦରୁ ରକ୍ଷା କରିବେ ।" (୨୫।୩।୧୯୧୫ରେ ବଡ଼ଲାଟ ସଭାରେ ମଧୁବାବୁଙ୍କ ଭାଷଣ । ଖଣ୍ଡ ୫୩, ପୃଷ୍ଠା ୭୧୧ )

**ଶିଳ୍ପ ଜାଗରଣ** : ଖ୍ରୀ: ୧୯୧୫ ମାର୍ଚ୍ଚରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ବଜେଟ୍ ଅଧିବେଶନ ବେଳେ ମଧୁବାବୁ ଶିଳ୍ପର ଉନ୍ନତି ସମ୍ପର୍କୀୟ ପ୍ରସ୍ତାବର ଆଲୋଚନାରେ ଯୋଗଦେଇ କହିଥିଲେ, "ଦେଶର ଲୋକଙ୍କର ମନୋଭାବ ହେଉଛି, ସରକାର ଏ ଦେଶରେ ଶିଳ୍ପର ଉନ୍ନତି ନିମନ୍ତେ ତାଙ୍କର ଦାୟିତ୍ୱ ଥିବା ଅନୁଭବ କରନ୍ତୁ । ଦେଶର ଆର୍ଥିକ ଉନ୍ନତି ନିମନ୍ତେ ଶିଳ୍ପର ବିକାଶ କରିବା ପ୍ରତ୍ୟେକ ସରକାରଙ୍କ କର୍ତ୍ତବ୍ୟ । ଏହା ସହିତ ଅଧିକା ନୈତିକ ଦାୟିତ୍ୱ ମଧ୍ୟ ସରକାରଙ୍କ ଉପରେ ପଡ଼ିଛି । ଏହି କେତେ ବର୍ଷ ହେଲା ଦେଶରେ ଶିଳ୍ପର ଜାଗରଣ ଦେଖାଦେଇଛି । ଏହି ଶିଳ୍ପ ଜାଗରଣ ଏ

ଦେଶରେ ପ୍ରାଚୀନ ଯୁଗର ଶିଳ୍ପର ଅବସ୍ଥାର ଅନୁସନ୍ଧାନ ଓ ଅଧ୍ୟୟନ କରିବା ପାଇଁ ପ୍ରେରଣା ଦେଇଛି । ପ୍ରାଚୀନ ଇତିହାସ ଅଧ୍ୟୟନରୁ ଲୋକଙ୍କର ଧାରଣା ହୋଇଛି ଯେ, ଦେଶୀୟ ଶିଳ୍ପର ଅଧୋଗତି, ଅବନତି ଓ ବର୍ତ୍ତମାନର ଦୁରବସ୍ଥା ନିମନ୍ତେ ବ୍ରିଟିଶ ସରକାରଙ୍କ ଅମଙ୍ଗଳଜନକ ପ୍ରଭାବ ହିଁ ବିଶେଷ ଭାବରେ ଦାୟୀ । ଏହା ହିଁ ଲୋକମାନଙ୍କର ଧାରଣା । ଏହି କାରଣରୁ ସରକାରଙ୍କ ନୈତିକ ଦାୟିତ୍ୱ ପ୍ରସଙ୍ଗ ଉଠୁଛି । ଯେଉଁ ତନ୍ତୀ ତନ୍ତ ଗୁଡ଼ି ଲଙ୍ଗଳ ଧରିଛି, ତାହାର ଏହି ଧାରଣା ହୋଇଛି । ଯେଉଁ କାଗଜର ହାତ ଅଚଳହୋଇ ପଡ଼ିଛି, ତାହାର ଏହି ଧାରଣା ହୋଇଛି । ଯେଉଁ ଶିଳ୍ପୀର ପୁଅ ପେଟ ପୋଷିବା ପାଇଁ ଇଂରେଜୀ ଭାଷା ଶିକ୍ଷା କରୁଛି, ସରକାରଙ୍କଠାରେ କିରାଣି ଚାକିରି କରିବାକୁ ଯାଇ ନିରାଶ ହେଉଛି, ତାହାର ଏହି ଧାରଣା ହେଉଛି । ଗତ ପଚାଶବର୍ଷକାଳ କାରିଗର-ମାନଙ୍କ ସହିତ ଘନିଷ୍ଠଭାବରେ ସଂପୃକ୍ତ ରହି ସେମାନଙ୍କ ଜୀବନୋପାୟ ସଂଗ୍ରାମ ଦେଖିଥିବା ଜଣେ ବୃଦ୍ଧର ଏହି ଧାରଣା ହୋଇଛି ।" ସେ ନିଜକୁ ଲକ୍ଷ୍ୟ କରି ଏହା କହିଥିଲେ ।

"ଆମେ ଭାରତୀୟମାନେ ଶାସନ କ୍ଷମତାରେ ଥିବା ଲୋକଙ୍କୁ ପିତୃତୁଲ୍ୟ ଦେଖୁଁ । ତାଙ୍କଠାରୁ ସହାନୁଭୂତି ଆଶା କରିବା ସ୍ୱାଭାବିକ । ଯେଉଁମାନେ ନିଜର ମର୍ଯ୍ୟାଦା ଓ କ୍ଷମତାର ପ୍ରଭାବ ବଳରେ ଭାରତର ଶିଳ୍ପ ଓ ଆର୍ଥିକ କ୍ଷେତ୍ରରେ) ଏ ଅବନତି ଘଟାଇଛନ୍ତି, ସେମାନଙ୍କର ଅସ୍ଥି ଖୋଳି ବାହାରକରିବା ପାଇଁ ହୁଏତ ମୋତେ ଏହା ପ୍ରବର୍ତ୍ତାଇବ । ଏହି ମୃତ ଅସ୍ଥି ଜୀବନ୍ତ ମନୁଷ୍ୟଙ୍କୁ କୁକୁରରେ ପରିଣତ କରିଦିଏ ।"

ସରକାରୀ ମନୋଭାବକୁ ଲକ୍ଷ୍ୟକରି ସେ କହିଥିଲେ, "ମୁଁ ଅନେକ ସମୟରେ ଲକ୍ଷ୍ୟ କରିଛି, ଆମର ଶିଳ୍ପ ଓ ବାଣିଜ୍ୟ-ସଚିବ ବରାବର ଉତ୍ତରରେ କହିଛନ୍ତି, 'ସରକାର ଏହା କରିପାରିବେ ନାହିଁ', 'ସରକାର ତାହା କରିପାରିବେ ନାହିଁ ।' ଲଣ୍ଡନ ବାଣିଜ୍ୟ ସମିତି (London Chamber of Commerce) ର ସ୍ୱର ଓ ଚିନ୍ତାଧାରା ସଚିବ ପ୍ରକାଶ କରୁଥିବାପରି ଜଣାଯାଉଛି । ବ୍ୟବସ୍ଥାପକ ସଭାରେ ଏଭଳି ଉତ୍ତର ନିରାଶ ମନରେ ସାନ୍ତ୍ୱନା ଦେଇପାରିବ ନାହିଁ ।"

ମଧୁବାବୁ ଏକାଧିକ ଥର ବ୍ୟବସ୍ଥାପକ ସଭା, ସାଧାରଣ ସଭାସମିତି ଓ ଉତ୍କଳ ସମ୍ମିଳନୀରେ ସରକାରଙ୍କର ଏ ଉଦାସ ଓ ନିରୁତ୍ସାହଜନକ ମନୋଭାବର କଟୁ ସମାଲୋଚନା କରିଥିଲେ । ସେ ବାଣିଜ୍ୟ-ସଚିବଙ୍କୁ ଲକ୍ଷ୍ୟକରି କହିଥିଲେ, "ବର୍ତ୍ତମାନର ମହାଯୁଦ୍ଧ ସମୟରେ ଇଂରେଜ ଜାତିର ପ୍ରତି ସମଗ୍ର ଭାରତୀୟ ଜାତିର ସହାନୁଭୂତି ଜାଗ୍ରତ ହୋଇଛି । ଏପରି ସମୟରେ ସଚିବ ଏହା ମନେ ରଖନ୍ତୁ, ସେ କେବଳ ବିଲାତର ବାଣିଜ୍ୟ ଉପରେ ସବୁ ଦୃଷ୍ଟି ନଦିଅନ୍ତୁ । ଭାରତ ଇଂଲଣ୍ଡ ମଧ୍ୟରେ ଥିବା ପୂର୍ବ ସମ୍ପର୍କ ଓ ଘଟଣାବଳୀ ପ୍ରତି ସେ ଦୃଷ୍ଟି ଦିଅନ୍ତୁ, ସେହି ପୂର୍ବ ସମ୍ପର୍କଜନିତ ନୈତିକ ଦାୟିତ୍ୱ ପ୍ରତି ଦୃଷ୍ଟି

ଦିଅନ୍ତୁ । ଲୋକଙ୍କ ଉପରେ ବିଶ୍ୱାସ ରଖି ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ କି ପ୍ରକାର ସାହାଯ୍ୟ କରାଯାଇ ପାରିବ, ତାହା ଚିନ୍ତାକରନ୍ତୁ ।"

**ଭାରତୀୟ ଖ୍ରୀଷ୍ଟିଆନ୍‌ମାନଙ୍କ ଉନ୍ନତି ବ୍ୟବସ୍ଥା :** ଖ୍ରୀ: ୧୯୧୫ର ବଜେଟ୍ ଅଧିବେଶନବେଳେ କେନ୍ଦ୍ର ବ୍ୟବସ୍ଥାପକ ସଭାରେ ମଧୁବାବୁ ଭାରତରେ ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଉନ୍ନତିପାଇଁ କୌଣସି ବ୍ୟବସ୍ଥା ସରକାର କରି ନ ଥିବାରୁ ଦୁଃଖ ପ୍ରକାଶ କରିଥିଲେ । ଭାରତୀୟ ଖ୍ରୀଷ୍ଟିଆନଙ୍କ ସଂଖ୍ୟା ପ୍ରାୟ ୩୫ ଲକ୍ଷ ହେବ ଏବଂ ଏତେ ବଡ଼ ସମ୍ପ୍ରଦାୟର ଉନ୍ନତି ପ୍ରତି ସରକାର ଉଦାସୀନ ରହିବା ନ୍ୟାୟସଙ୍ଗତ ନୁହେଁ ବୋଲି ସେ ସମାଲୋଚନା କରିଥିଲେ । ସରକାରୀ ଓ ବେସରକାରୀ ବହୁ କ୍ଷେତ୍ରରେ ଭାରତୀୟ ଖ୍ରୀଷ୍ଟିଆନମାନେ ସେବା କରୁଥିବାରୁ ସେମାନଙ୍କ ଅଭାବ ଅସୁବିଧା ପ୍ରତି ସରକାର ଦୃଷ୍ଟି-ଦେବା ଉଚିତ ଏବଂ ଯଦି ଏ ସମ୍ପ୍ରଦାୟର ଜଣେ ପ୍ରତିନିଧି ସଭ୍ୟରୂପେ ଏ ସଭାରେ ରହେ, ତାହାହେଲେ ଏହି ଅସୁବିଧା ଦୂର ହୋଇପାରିବ, ଏହା ସେ ବ୍ୟକ୍ତ କରିଥିଲେ । ଏହାକୁ ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ଦୃଷ୍ଟିକୋଣରୁ ସେ ଦେଖି ନ ଥିବା ମଧ୍ୟ କହିଥିଲେ । ମଧୁବାବୁ କହିଥିଲେ, "ଅନ୍ୟ କୌଣସି ସମ୍ପ୍ରଦାୟର ସ୍ଥାନରେ ଭାରତୀୟ ଖ୍ରୀଷ୍ଟିଆନ୍ ସମାଜର ଜଣେ ଲୋକକୁ ପ୍ରତିନିଧି କରାଯାଉ ବୋଲି ଯଦି ମୁଁ କହିବି, ତାହାହେଲେ ମୁଁ ଓ ମୋର ସମ୍ପ୍ରଦାୟ ଅକୃତଜ୍ଞତା ଦୋଷରେ ନିନ୍ଦିତ ହେବୁ; କିନ୍ତୁ ମୁଁ ବିଶ୍ୱାସକରୁଛି କି, ଯଦି କବାଟର କବ୍‌ଜା ଟିକିଏ ଢିଲାକରି ଦିଆଯାଆନ୍ତା, ତାହାହେଲେ ଭିତରେ ବହୁତ ସ୍ଥାନ ହୋଇଯାଆନ୍ତା ଓ ଆଉ ଗୋଟିଏ ଅଧିକା ଆସନ ପାଇଁ ଯଥେଷ୍ଟ ସ୍ଥାନ ହୁଅନ୍ତା ।"

**ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନ :** ଖ୍ରୀ: ୧୯୧୫ ଡିସେମ୍ବର ମାସର ଶେଷ ସପ୍ତାହରେ ସମ୍ବଲପୁରରେ ଉତ୍କଳ ସମ୍ମିଳନୀର ଏକାଦଶ ଅଧିବେଶନ ବସିଥିଲା । କେଉଁଝରର ରାଜା ଶ୍ରୀ ଲକ୍ଷ୍ମୀନାରାୟଣ ସିଂହଦେବ ସଭାପତି ହୋଇଥିଲେ । ମଧୁବାବୁ ଅଧିବେଶନରେ ଯୋଗ ଦେଇ ନ ପାରି ବାର୍ତ୍ତା ପଠାଇଥିଲେ ।

ଉତ୍କଳ ସମ୍ମିଳନୀର କାର୍ଯ୍ୟ ସମ୍ବନ୍ଧରେ ଅସନ୍ତୋଷ ପ୍ରକାଶକରି ସେତେବେଳେ ବହୁ ଲୋକ ଦୁଃଖ ପ୍ରକାଶ କରିଥିଲେ । 'ଉତ୍କଳ ଦୀପିକା' ଏଥିପ୍ରତି ବାରମ୍ବାର କାତର ଦୃଷ୍ଟି ଆକର୍ଷଣ କରିଥିଲେ—"ଉତ୍କଳ ସମ୍ମିଳନୀର ଏକାଦଶ ବର୍ଷ ଅତୀତ ହୋଇଅଛି । ଆଶା ଓ ନୈରାଶ୍ୟ, ଉତ୍ସାହ ଓ ନିରୁତ୍ସାହ, ସହାନୁଭୂତି ଓ ବିଦ୍ୱେଷ ଏବଂ ଅନୁକୂଳତା ଓ ପ୍ରତିକୂଳତା ମଧ୍ୟରେ ସମ୍ମିଳନୀ ତାହାର କର୍ତ୍ତବ୍ୟ ସାଧନ କରିଆସୁଅଛି; ମାତ୍ର ଥରକୁ-ଥର ସମ୍ମିଳନୀର ପବିତ୍ର ମଣ୍ଡପରେ ଓଡ଼ିଆମାନଙ୍କର ହୃଦୟର ଶକ୍ତି ଦୃଢ଼ରୁ ଦୃଢ଼ତରହେବା ଦେଖାଗଲା ନାହିଁ । କର୍ମପ୍ରାଣ ମଧୁବାବୁଙ୍କ କାତର ଆହ୍ୱାନ କର୍ଣ୍ଣରେ ବାଜିଲାନାହିଁ ×" (୨୨।୧।୧୯୧୬)

## ୨୩ । ବିବିଧ ସାଂସ୍କୃତିକ କାର୍ଯ୍ୟାବଳୀ

**ମଧୁବାବୁଙ୍କ ପ୍ରତି 'ବଙ୍ଗାଳୀ ବିଦ୍ୱେଷ' ଅଭିଯୋଗ** : ଖ୍ରୀ: ଅ: ୧୯୧୫ ଡିସେମ୍ବର ୧୭ ଓ ୧୮ ତାରିଖରେ ସମ୍ବଲପୁରରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ଶାନ୍ତିଭାବରେ ନିର୍ବାହ ହୋଇଥିବା ସମ୍ବାଦ ପ୍ରକାଶପାଇବା ପରେ କଲିକତାରେ 'ହିନ୍ଦୁ ପେଟ୍ରିଅଟ୍' ନାମକ ଇଂରେଜୀ ପତ୍ରିକା ଲେଖିଲେ ଯେ, "ସମ୍ଭବତଃ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କ ଅନୁପସ୍ଥିତି ଯୋଗୁଁ ବଙ୍ଗାଳୀ ବିଦ୍ୱେଷ ବକ୍ତୃତାଦି କିଛି ହୋଇନାହିଁ । ଓଡ଼ିଆ ବଙ୍ଗାଳୀ ମୁଖ୍ୟ ବ୍ୟକ୍ତିମାନେ ଭାଇଭାବେ ମିଳିମିଶି କାର୍ଯ୍ୟ କରିଥିଲେ ।" 'ଉତ୍କଳଦୀପିକା' ଏ ମନ୍ତବ୍ୟକୁ ଲକ୍ଷ୍ୟକରି ଲେଖିଥିଲେ—"ସହଯୋଗୀଙ୍କର ମନ୍ତବ୍ୟ ମଧୁବାବୁଙ୍କ ପ୍ରତି ଏପରି ଅପ୍ରୀତିକର କି ହେତୁ ହେଲା ବୁଝାଯାଉନାହିଁ । ସମ୍ଭବତଃ କେହି ତାହାଙ୍କୁ ଭ୍ରମାଇଥିବ । ଫଳତଃ ଯେଉଁ ଶୁଭଫଳ ଦେଖି ସହଯୋଗୀ ଆନନ୍ଦିତ ହୋଇଅଛନ୍ତି, ତାହା ଏକା ସମ୍ବଲପୁରବାସୀଙ୍କ ନିର୍ମଳ ଉଦାରତା ଓ ବିଚକ୍ଷଣ ବୁଦ୍ଧିର ଫଳ ଅଟେ । ଆମ୍ଭେମାନେ ଅଳ୍ପ ସମୟରେ ଯାହା ଦେଖିଅଛୁ, ସେଥିରୁ ଜଣାଗଲା ଯେ ସେମାନେ ଓଡ଼ିଆ ଓ ବଙ୍ଗାଳୀ ପ୍ରଭୃତି ଅଧିକ ବା ଅଳ୍ପକାଳବାସୀଙ୍କ ମଧ୍ୟରେ ଭେଦଜ୍ଞାନ ନ ରଖି ଚିରସ୍ଥାୟୀଭାବେ ଅଥବା କାର୍ଯ୍ୟୋପଲକ୍ଷେ ଦୀର୍ଘକାଳ ଓଡ଼ିଶାରେ ବାସ କରିଅଛନ୍ତି, ସେମାନଙ୍କୁ ଆପଣା ଭାଇ ବୋଲି ବିବାଦିତ ମାତୃସେବାରେ ଖଟାଉଅଛନ୍ତି । ଏପରି ଉଦାରତା ସର୍ବତ୍ର ଦେଖିବାକୁ ଆମ୍ଭେମାନେ ସର୍ବଦା ଆଶାକରୁ ।" (ଉ:ଦୀ: ୧।୧।୧୯୧୬

**'ଉତ୍କଳ ଦୀପିକା'ର ନୂତନ ସମ୍ପାଦକ ମନୋନୟନ** : ଖ୍ରୀ: ୧୯୧୬ ଜାନୁଆରି ୧ ତାରିଖଠାରୁ 'ଉତ୍କଳ ଦୀପିକା'ର ଆଦ୍ୟ ଓ ପୁରାତନ ସମ୍ପାଦକ ବାବୁ ଗୌରୀଶଙ୍କର ରାୟ ପ୍ରିଣ୍ଟିଂ କମ୍ପାନୀ ଡାଇରେକ୍ଟରଗଣଙ୍କ ସମ୍ମତି ଅନୁସାରେ ଅବସର ଗ୍ରହଣକଲେ । ତାଙ୍କ ସ୍ଥାନରେ ଶ୍ରୀ ମଧୁସୂଦନ ଦାସ ସି. ଆଇ. ଇ.ଙ୍କୁ ସମ୍ପାଦକ ହେବାପାଇଁ ବୋର୍ଡ ମନୋନୀତ କଲେ । ଉତ୍କଳର ଶ୍ରେଷ୍ଠ ଓ ବିଖ୍ୟାତ ପୁତ୍ର ଏ ଭାରଗ୍ରହଣ କରିଥିଲେ, ଏଥିରେ ସମସ୍ତେ ସନ୍ତୁଷ୍ଟ ହୋଇଥାଆନ୍ତେ, ସନ୍ଦେହ ନାହିଁ । ମଧୁବାବୁ ପ୍ରଥମେ ସମ୍ମତି ପ୍ରଦାନ କରିଥିଲେ; କିନ୍ତୁ ପରେ ବିଚାରକରି ଏ ଗୁରୁଭାର ବହନ କରିବାକୁ ଅନିଚ୍ଛା ପ୍ରକାଶ କଲେ । ତାଙ୍କ ଇସ୍ତଫା ପରେ ଶ୍ରୀ ସୁଦାମ ଚରଣ ନାୟକ 'ଦୀପିକା'ର ସମ୍ପାଦକ ହେଲେ । ସେ ସମ୍ପାଦକୀୟ ମନ୍ତବ୍ୟରେ ଲେଖିଥିଲେ—"ଏ ଭାର ଆମ୍ଭମାନଙ୍କର ଶ୍ରଦ୍ଧାସ୍ପଦ, ସମଗ୍ର ଉତ୍କଳର ବରପୁତ୍ର, ସ୍ୱନାମଧନ୍ୟ ଦାସ ମହୋଦୟ ନେବାପାଇଁ ସମ୍ମତି ଦେଇଥିଲେ । ମାତ୍ର ପରେ ବିଚାର କରି ଭାର ଗ୍ରହଣକରିବାକୁ ଅନିଚ୍ଛା ପ୍ରକାଶ କରନ୍ତେ, ଛାପାଖାନାର ଡାଇରେକ୍ଟରମାନେ ଅତ୍ୟନ୍ତ ଅନିଚ୍ଛା ଓ ଦୁଃଖରେ ତାହା ଗ୍ରହଣ କଲେ । ଦାସ ମହାଶୟ ଦୀପିକାର ଭାର ନେଇଥିଲେ ଗୌରୀଶଙ୍କରଙ୍କ ପରେ ଦୀପିକାର ପ୍ରତିଷ୍ଠା ଓ ପ୍ରତିଭା ଅକ୍ଷୁର୍ଣ୍ଣ ରହିଥାନ୍ତା ଏବଂ ହୁଏତ ଉତ୍ତରୋତ୍ତର ବୃଦ୍ଧି ପାଇବାର ଧ୍ରୁବ ସମ୍ଭାବନା ଥିଲା; ଜନସାଧାରଣରେ ଏ ପ୍ରକାର

ଉନ୍ନତିର ଆଶା ପ୍ରଭୂତ ପରିମାଣରେ ଜନ୍ମିଥିଲା । ମାତ୍ର ଦୁର୍ଭାଗ୍ୟବଶତଃ ତାହା ଘଟିଲା ନାହିଁ । ଆସି ପଡ଼ିଲା ଆମ୍ଭମାନଙ୍କ ମୁଣ୍ଡ ଉପରେ । ଏ ଭାର ଗ୍ରହଣକଲୁଁ, ମାତ୍ର ଗୌରୀଶଙ୍କର ଓ ଦାସ ମହାଶୟମାନଙ୍କୁ ଛାଡ଼ିବୁନାହିଁ କିମ୍ବା ଛାଡ଼ି ପାରିବୁନାହିଁ । ଦାସ ମହୋଦୟଙ୍କୁ ଆମ୍ଭେମାନେ ଛାଡ଼ି ପାରୁ କି ? ଛାଡ଼ିବୁ କପରି ? ଛାଡ଼ିବୁ କାହିଁକି ? ଅନେକ ଥର ଦାସ ମହାଶୟ ଆକ୍ଷେପରେ କହିଥାନ୍ତି ଯେ—ଓଡ଼ିଶାରେ ସେ ଯେତେ ଯାହା କରିଅଛନ୍ତି, କୌଣସିଥିରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ଏ କଥା କହିବା ତାଙ୍କ ପକ୍ଷେ ସତ୍ୟ ହୋଇପାରେ ଏବଂ କହିବାର କାରଣ ଓ ଅଧିକାର ମଧ୍ୟ ଅଛି । ହେଲେହେଁ, ଆମ୍ଭେମାନେ ପଚାରୁ, ଦାସ ମହାଶୟ ସମସ୍ତ କାର୍ଯ୍ୟ କି ବୃଥା ହୋଇଅଛି ? କଦାପି ନୁହେଁ । ତାଙ୍କ କାର୍ଯ୍ୟାବଳୀର ସମାଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ଆଜି ସମସ୍ତେ ପ୍ରାକୃତିକ ଉତ୍କଳର ଯେଉଁ ଜାତୀୟ ଭାବ (Nationalism) ର ତରଙ୍ଗ ଦେଖୁଅଛୁ, ଏଥିର କର୍ତ୍ତା କିଏ ? ତାଙ୍କରି ନାମକୁ ବିକି ଆମ୍ଭେମାନେ ଆପଣାକୁ ଦେଶ ବିଦେଶରେ କୃତାର୍ଥ ମଣୁଅଛୁ । ଯେଉଁ ନୂତନ ନୂତନ ଭାବମାନ (ideas) ସେ କଥାରେ ଏବଂ କାର୍ଯ୍ୟରେ ଦେଖାଇଅଛନ୍ତି, ଦେଖାଉଅଛନ୍ତି ଏବଂ ଈଶ୍ୱରଙ୍କ କୃପାରେ ବହୁ କାଳ ଦେଖାଇବେ, ଏ ସମସ୍ତ କି ଜଳର ବୁଦ୍‌ବୁଦବତ୍ ମିଳେଇଯିବ ? ସେ ଚାହାନ୍ତି ତାହାଙ୍କ ପରି କର୍ମବୀର ଜଣକେତେ ଓଡ଼ିଆ ସେ ଦେଖନ୍ତେ । ଏମନ୍ତ ଇଚ୍ଛା ନିଶ୍ଚୟ ସ୍ୱାଭାବିକ । ନିଜ କାର୍ଯ୍ୟର ସୁଫଳ ଦେଖିବାକୁ କାହାର ବା ଇଚ୍ଛା ନୁହେଁ ? ଗଛଟିଏ ଲଗାଇଲେ ଫଳଟିଏ ଖାଇବାକୁ କାହାର ଇଚ୍ଛା ନ ଥାଏ ? ଏପରି ଇଚ୍ଛା ସ୍ୱାଭାବିକ ଏବଂ ସଦିଚ୍ଛା; କିନ୍ତୁ ସର୍ବତ୍ର ଘଟିପାରେନାହିଁ । ପୃଥିବୀର ଇତିହାସରେ ଦେଖାଯାଉଛି ଯେ ପ୍ରତିଭାଶାଳୀ ବିଶିଷ୍ଟ ବ୍ୟକ୍ତିମାନେ (greatmen) ଯେଉଁ ପ୍ରତିଭା ବଳରେ କାର୍ଯ୍ୟମାନ ସାଧନ କରିଅଛନ୍ତି ବା ତହିଁର ସୂଚନା ଦେଇଯାଇଛନ୍ତି, ତାହାର ଫଳ କି ହାତେ ହାତେ ପାଇପାରିଥିଲେ ? ଫଳ ସମୟସାପେକ୍ଷ । ଦାସ ମହାଶୟ କିମ୍ବା ଗୌରୀଶଙ୍କର ବାବୁଙ୍କ ପରି କର୍ମବୀର ବଞ୍ଚି ଥାଉଁ ଥାଉଁ ଦେଖିବେ, ଏ ଆଶା ଦୁରାଶା ନୁହେଁ; ମାତ୍ର ଦୁରୂହ । ସେମାନଙ୍କ ଜୀବନ ଦୃଷ୍ଟାନ୍ତ ସ୍ୱରୂପ ଏବଂ ଯେଉଁସବୁ ଭାବ ସେମାନେ ଉତ୍କଳକୁ ଦେଇଛନ୍ତି, ତାହା ଅବଶ୍ୟ ଦିନେ ହେଲେ କାର୍ଯ୍ୟ କରିବ ଓ ଫଳପ୍ରଦ ହେବ । ମନୁଷ୍ୟ ଜୀବନରେ ଚେଷ୍ଟା ହିଁ ସାର । କାର୍ଯ୍ୟ ଫଳ ଈଶ୍ୱରଙ୍କରେ । ଅବିକଳ ସବୁ କାର୍ଯ୍ୟରେ ସେମାନଙ୍କ ବଳ, ବୀର୍ଯ୍ୟ, ପ୍ରତିଭା ଓ ପ୍ରଭା, ସ୍ୱାଧୀନଭାବ ଓ ଦେଶ ସକାଶେ ଯଥାସର୍ବସ୍ୱ ତ୍ୟାଗ ଅନ୍ୟ କେଉଁଠାରୁ ଆସିବ ବା ଯାହା ନିକଟରେ ଯାହା ନାହିଁ, ସେ ତାହା ଆଣି କେଉଁଠାରୁ ଦେଖାଇବ ? ଅବଶ୍ୟ ଆଦର୍ଶ ଓ ଅନୁକରଣ ସହାୟରେ ଯେତେଦୂର ସାଧ୍ୟ ସେହି ପଦଚିହ୍ନ ଖୋଜି ଅନୁସରି ଚାଲି ଅଗ୍ରସର ହେବ । ଆମ୍ଭେମାନେ ଏଥିପାଇଁ ସମ୍ପୂର୍ଣ୍ଣ ଚେଷ୍ଟାକରିବୁ ଏବଂ ଆଶାକରୁଁ ସେ ଦ୍ୱିଜଙ୍କଙ୍କ ଆଦର୍ଶବାଦ ମସ୍ତକୋପରି ଧାରଣକରି, ଦୀପିକାର ପାଠକପାଠିକା, ଗ୍ରାହକ, ଅନୁଗ୍ରାହକ ଓ ଉତ୍କଳ ସାଧାରଣଙ୍କ ଅନୁଗ୍ରହ ଉପରେ ନିର୍ଭର କରି, ନିଜପ୍ରତିଷ୍ଠା ଅକ୍ଷୁର୍ଣ୍ଣ ରଖି 'ଦୀପିକା' ଚଳାଇବୁଁ × ×" (ଉ:ଦୀ: ୧୫।୧।୧୯୧୭)

ମଧୁବାବୁ କଲିକତାରୁ କଟକ ଆସିବାପରେ ପ୍ରାୟ ୧୫ ବର୍ଷ କାଳ 'ଉତ୍କଳ ଦୀପିକା' ସହିତ ଘନିଷ୍ଠ ସମ୍ପର୍କ ରଖିଥିଲେ । ଦୀପିକାର ସମ୍ପାଦକ କର୍ମବୀର ଗୌରୀଶଙ୍କର ରାୟ ତାଙ୍କୁ ଅଳ୍ପକାଳ ପାଇଁ ଶିକ୍ଷକରୂପେ ପାଠ ପଢ଼ାଇଥିଲେ । ସେହି ବାଲ୍ୟକାଳରୁ ରାୟଙ୍କୁ ମଧୁବାବୁ ଗୁରୁସ୍ୱରୂପ ମାନ୍ୟ କରୁଥିଲେ । ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା, ଓଡ଼ିଶାର ସାମୂହିକ ଉନ୍ନତି, ବିଭିନ୍ନ ସମ୍ପ୍ରଦାୟ ଭିତରେ ସୌହାର୍ଦ୍ଦ୍ୟରକ୍ଷା ଦିଗରେ ରାୟ ଓଡ଼ିଶାର ଜଣେ ଅଗ୍ରଗଣ୍ୟ ଦେଶସେବକ ଥିଲେ । ତାଙ୍କର ଅକ୍ଳାନ୍ତ ପରିଶ୍ରମ ଓ ଆନ୍ତରିକ ପ୍ରଚେଷ୍ଟା ଯୋଗୁଁ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ଆନ୍ଦୋଳନର ମୂଳୋତ୍ପାଟନ ହୋଇପାରିଥିଲା । ସେ ନିଜେ ଅତି ବିଜ୍ଞ ଓ କାର୍ଯ୍ୟଦକ୍ଷ ଥିଲେ । ଏହି ସବୁ କାରଣରୁ ଉତ୍କଳ ସେବକ ମଧୁବାବୁଙ୍କର ତାଙ୍କ ପ୍ରତି ପ୍ରଗାଢ଼ ସ୍ନେହ ଓ ଭକ୍ତି ଥିଲା । ଗୌରୀଶଙ୍କର ସବୁ ଜଟିଳ ସମସ୍ୟାରେ ମଧୁବାବୁଙ୍କ ପରାମର୍ଶ ଲୋଡ଼ୁଥିଲେ ଏବଂ ମଧୁବାବୁଙ୍କ ଯାବତୀୟ ଦେଶହିତକର କାର୍ଯ୍ୟର ବିବରଣ ଯଥାସମୟରେ 'ଉତ୍କଳଦୀପିକା'ରେ ପ୍ରକାଶକରି ଦେଶବାସୀଙ୍କ ଦୃଷ୍ଟିକୁ ଆଣୁଥିଲେ । ନିଜେ ମଧୁବାବୁ 'ନାମା' ଓ 'ବେନାମୀ'ରେ ବହୁପ୍ରକାର ମନ୍ତବ୍ୟ ସମ୍ବଳିତ ଲେଖା ଦୀପିକାକୁ ଯୋଗାଉଥିଲେ । ଖ୍ରୀ: ୧୮୮୧-୮୨ ଠାରୁ ଖ୍ରୀ. ୧୯୧୫ ପର୍ଯ୍ୟନ୍ତ ପ୍ରାୟ ୩୫ ବର୍ଷ କାଳ ମଧୁବାବୁ ଓ ଗୌରୀଶଙ୍କର ଘନିଷ୍ଠଭାବରେ ମିଳାମିଶି ଦେଶକାର୍ଯ୍ୟ କରୁଥିଲେ । ମଧୁବାବୁଙ୍କ ସାହାଯ୍ୟ ଓ ସହାନୁଭୂତି 'ଦୀପିକା'ର ଉନ୍ନତି ଦିଗରେ ମଧ୍ୟ ସାହାଯ୍ୟ କରିଥିଲା । ଏହି କାରଣରୁ ପ୍ରିଣ୍ଟିଂ କମ୍ପାନୀ 'ଉତ୍କଳର ବରପୁତ୍ର' ମଧୁସୂଦନଙ୍କୁ ପ୍ରତ୍ୟକ୍ଷ ଭାବରେ 'ଦୀପିକା'ର ସମ୍ପାଦନାରେ ସଂପୃକ୍ତ କରିବାକୁ ଇଚ୍ଛାକରିଥିଲେ । ମଧୁବାବୁ ସମ୍ପାଦକ ଦାୟିତ୍ୱ ବହନ କରିବାକୁ ଅନିଚ୍ଛା ପ୍ରକାଶ କରି ଅନୁରୋଧ ରକ୍ଷା କରି ନଥିଲେ ମଧ୍ୟ 'ଦୀପିକା' ସହିତ ପୂର୍ବପରି ସୁସଂପର୍କ ରଖି ଚଳିଥିଲେ । 'ଦୀପିକା' ମଧୁବାବୁଙ୍କୁ ବରାବର ସମର୍ଥନ କରି ଆସିଥିଲା ।

**ନନ୍ଦଙ୍କ ଅଭିଧାନ ସପକ୍ଷରେ ମଧୁବାବୁ :** ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଙ୍କ ନବପ୍ରକାଶିତ 'ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ'ର ସମାଲୋଚନାକରି ପଣ୍ଡିତ ଶ୍ରୀ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ କାବ୍ୟତୀର୍ଥ ଏକ ପ୍ରବନ୍ଧ ଲେଖିଥିଲେ ଏବଂ ଏହା ପାଠ-ହେବା ନିମନ୍ତେ ଉତ୍କଳ ସାହିତ୍ୟ ସମାଜର ବିଶେଷ ଅଧିବେଶନ କଟକର ଟ୍ରେନିଂ ସ୍କୁଲରେ ଖ୍ରୀ: ୧୯୧୭ ଅପ୍ରେଲ ୧୭ ତାରିଖରେ ଅନୁଷ୍ଠିତ ହୋଇଥିଲା । ସମାଜର ଉପ-ସଭାପତି ରାୟବାହାଦୁର ସୁଦାମ ଚରଣ ନାୟକ ସଭାପତିତ୍ୱ କରିଥିଲେ । ପ୍ରଥମେ ସମାଜ ପରିଚାଳନା ସମ୍ପର୍କୀୟ କେତେକ କାର୍ଯ୍ୟ ହେବାପରେ ସଭାପତି ପ୍ରବନ୍ଧଟି ପାଠ କରିବାକୁ କହିବାରୁ ଶ୍ରୀ ବିଶ୍ୱନାଥ କର ପ୍ରବନ୍ଧଟି ବର୍ତ୍ତମାନ ପାଠହେବା ଉଚିତ କି ନୁହେଁ, ତାହା ବିଚାର କରିବାକୁ କହିଲେ । ସେ ଯୁକ୍ତି କଲେ ଯେ ଅଭିଧାନଟି ଅଳ୍ପ ଦିନ ହେଲା ପ୍ରକାଶିତ ହୋଇଛି । ତାହା ବହୁ ଲୋକ ଦେଖି ନ ଥିବେ । ଏପରି ସ୍ଥଳେ ଏ ସମ୍ପର୍କୀୟ ଆଲୋଚନା ହେବା ଅନୁଚିତ । ପ୍ରବନ୍ଧ ବର୍ତ୍ତମାନ ପାଠ ନ ହେଉ ବୋଲି ଶ୍ରୀ କର କହିଥିଲେ ।

ବାବୁ ମଧୁସୂଦନ ଦାସ କହିଲେ, "ଯେତେବେଳେ ଅନ୍ୟ ଅଭିଧାନମାନ ପ୍ରକାଶିତ ହେଲା ସମୟରେ କୌଣସି ଆନ୍ଦୋଳନ ଲାଗିନାହିଁ, ସେତେବେଳେ ନନ୍ଦଙ୍କ ଅଭିଧାନ ହେତୁ ଆନ୍ଦୋଳନ ଉଠାଇବା ଅଯୌକ୍ତିକ । ବରଂ ପ୍ରବନ୍ଧ ପାଠ ନ ହୋଇ ସବ୍‌କମିଟି ନିଯୋଗଦ୍ୱାରା ଅଭିଧାନର ଦୋଷଗୁଣ ପରୀକ୍ଷିତ ହେଉ ।" ରାୟବାହାଦୂର ଯୋଗେଶଚନ୍ଦ୍ର ରାୟ, ରାମଶଙ୍କର ରାୟ ପ୍ରଭୃତି ପ୍ରବନ୍ଧ ପାଠ ସପକ୍ଷରେ କହିଥିଲେ । ସଭାପତିଙ୍କ ଆଦେଶ-କ୍ରମେ ପ୍ରବନ୍ଧ ପଠିତ ହୋଇଥିଲା; କିନ୍ତୁ ସମୟ ଅଭାବରୁ ପୂରା ପାଠ ହୋଇପାରିଲା ନାହିଁ । ଅନ୍ୟ ଅଧିବେଶନ ପର୍ଯ୍ୟନ୍ତ ସଭା ବନ୍ଦ ରହିଲା ।

ପୁଣି ଜୁଲାଇ ମାସ ୨୧ ତାରିଖରେ କଟକ ଟ୍ରେନିଂ ସ୍କୁଲରେ ଉତ୍କଳସାହିତ୍ୟ ସମାଜର ଆଉ ଏକ ସଭା ଶ୍ରୀ ରାମଶଙ୍କର ରାୟ (ଦେବବର୍ମା)ଙ୍କ ସଭାପତିତ୍ୱରେ ହୋଇଥିଲା । ନନ୍ଦଙ୍କ ଅଭିଧାନର ସମାଲୋଚନା ସମ୍ବନ୍ଧରେ ଯେଉଁ ବାଦାନୁବାଦ ଚାଲିଥିଲା; ତାହାର ବିଚାର ହୋଇଥିଲା ଓ ମଧୁବାବୁ ସଭାରେ ଉପସ୍ଥିତ ଥିଲେ । ପଣ୍ଡିତ ନୀଳକଣ୍ଠ ରଥ ସମାଲୋଚନା ପ୍ରବନ୍ଧର ପ୍ରତିବାଦ ପ୍ରବନ୍ଧ ପାଠକଲେ । ପଣ୍ଡିତ ଗୋପବନ୍ଧୁ ଦାସ ସତ୍ୟବାଦୀରୁ ଏକ ଦୀର୍ଘ ପତ୍ର ସାହିତ୍ୟ ସମାଜ ସମ୍ପାଦକଙ୍କୁ ଲେଖି ନନ୍ଦଙ୍କ ଅଭିଧାନର ଯେଉଁ ସମାଲୋଚନା ମୃତ୍ୟୁଞ୍ଜୟ ରଥ କରିଛନ୍ତି, ତାହା ଯଥାର୍ଥ ନୁହେଁ ବୋଲି କହିଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ନନ୍ଦଙ୍କ ଅଭିଧାନ ସପକ୍ଷରେ ଏକ ପ୍ରବନ୍ଧ ପଠାଇଥିଲେ । ଆଲୋଚନା ଶେଷ ନ ହୋଇ ସଭା ସମାପ୍ତ ହୋଇଥିବା ଜଣାଯାଏ । ନନ୍ଦଙ୍କ ଅଭିଧାନକୁ ସମାଲୋଚନା କରି ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର 'ଉତ୍କଳ ଦୀପିକା'ରେ ଏକ ପ୍ରବନ୍ଧ କ୍ରମଶଃ କେତୋଟି ସଂଖ୍ୟାରେ ପ୍ରକାଶ କରିଥିଲେ । ଉତ୍କଳଦୀପିକା ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସମାଲୋଚନାକୁ ସମର୍ଥନ କରିଥିଲେ । 'ଆଶା'ରେ ନନ୍ଦଙ୍କ ଅଭିଧାନ ସପକ୍ଷରେ କେତୋଟି ଲେଖା ମଧ୍ୟ ପ୍ରକାଶ ପାଇଥିଲା । ଶ୍ରୀ ଫକୀରମୋହନ ସେନାପତି ନନ୍ଦଙ୍କୁ ସମର୍ଥନ କରି ଉତ୍କଳ ଦୀପିକାରେ ଏକ ପତ୍ର ପ୍ରକାଶ କରିଥିଲେ । ସାହିତ୍ୟ ସମାଜର ଏକ ଅଧିବେଶନରେ ଶ୍ରୀନନ୍ଦଙ୍କୁ ପନ୍ଦର ଦିନ ଭିତରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସମାଲୋଚନାର ଉତ୍ତର ଦେବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏ ସମୟ ଭିତରେ ଉତ୍ତର ନ ପଠାଇଲେ ମୃତ୍ୟୁଞ୍ଜୟଙ୍କ ସମାଲୋଚନାକୁ ସାହିତ୍ୟ ସମାଜ ଗ୍ରହଣ କରିନେବ ବୋଲି ମଧ୍ୟ କୁହାଯାଇଥିଲା । ପଣ୍ଡିତ ଗୋପୀନାଥ ନନ୍ଦ ଉତ୍କଳ ସାହିତ୍ୟ ସମାଜକୁ ଉତ୍ତର ଦେଇଥିଲେ କି ନାହିଁ ଜଣାଯାଇ ନଥିଲେ ମଧ୍ୟ, ବ୍ରହ୍ମପୁରର 'ଆଶା'ରେ କ୍ରମାନ୍ୱୟରେ ଏକାଧିକ ପ୍ରବନ୍ଧ ମୃତ୍ୟୁଞ୍ଜୟ ରଥଙ୍କୁ ଉତ୍ତରଦେଇ ପ୍ରକାଶ ପାଇଥିଲା ଏବଂ ତାହାଙ୍କ ସମାଲୋଚନା ଆକ୍ରୋଶମୂଳକ ବୋଲି କୁହାଯାଇଥିଲା ।

ମଧୁବାବୁ ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧି ପାଇଁ ତାଙ୍କର କର୍ମମୟ ଜୀବନର ଆରମ୍ଭରୁ ଚେଷ୍ଟା ଓ ପ୍ରଚାର କରୁଥିଲେ । ତାଙ୍କର ପୃଷ୍ଠପୋଷକତାରେ ପ୍ରଥମେ 'ଉତ୍କଳ ସାହିତ୍ୟ ସମାଜ' ଉତ୍କଳ ସମ୍ମିଳନୀର ଏକ ଶାଖାରୂପେ ଖ୍ରୀ: ୧୯୦୩ ଡିସେମ୍ବରରେ

ସମ୍ମିଳନୀର ଜନ୍ମବେଳେ ଏକ ସମୟରେ ଜନ୍ମଲାଭ କରିଥିଲା । କେତେବର୍ଷ ସମ୍ମିଳନୀର ବାର୍ଷିକ ଅଧିବେଶନବେଳେ ସାହିତ୍ୟ-ସମାଜର ବାର୍ଷିକ ଅଧିବେଶନ ମଧ୍ୟ ହେଉଥିଲା । ଏହି କାରଣରୁ ମଧୁବାବୁ 'ଉତ୍କଳ ସାହିତ୍ୟ-ସମାଜ'ର କାର୍ଯ୍ୟକଳାପ ସହିତ ସମ୍ପୃକ୍ତ ଥିଲେ । ତାଙ୍କର ଭାଷା ଓ ସାହିତ୍ୟ ସମ୍ବନ୍ଧରେ ଉଦାର ଦୃଷ୍ଟିକୋଣ ଥିବାରୁ ନନ୍ଦଙ୍କ ଉଦ୍ୟମକୁ ସେ ସମର୍ଥନ କରୁଥିଲେ ।

ନନ୍ଦ-ରଥ ବାଦାନୁବାଦ ଅତି ଉତ୍କଟ ଆକାର ଧାରଣ କରିଥିଲା । ଏହା ଫଳରେ ଗଞ୍ଜାମ-କଟକ ଭେଦଭାବ ମଧ୍ୟ ଅଙ୍କୁରିତ ଉଠିଥିଲା । ଦଳେ ନନ୍ଦଙ୍କ ଭାଷାରେ ତେଲୁଗୁ ପ୍ରଭାବ ଦେଖି ନାସିକାକୁଞ୍ଚନ କଲେ ଓ ଦଳେ ରଥଙ୍କ ଅଞ୍ଚଳର ଭାଷାରେ ପାର୍ଶୀ, ହିନ୍ଦି ଓ ବଙ୍ଗଳାର ପ୍ରଭାବ ଦେଖି ଉପହାସ କଲେ । ଫକୀରମୋହନ, ଗୋପବନ୍ଧୁ ଓ ନୀଳକଣ୍ଠ ପ୍ରଭୃତି ନନ୍ଦଙ୍କ ସପକ୍ଷରେ ଅବତୀର୍ଣ୍ଣ ହେବାରୁ ଏ ସମାଲୋଚନା ପ୍ରସଙ୍ଗର ଅବସାନ ହୋଇଥିଲା ବୋଲି ଅନୁମିତ ହୁଏ ।

'ଉତ୍କଳ ସାହିତ୍ୟ ସମାଜ' ନନ୍ଦଙ୍କ ପ୍ରତି ଉଚିତ ବିଚାର ନ କରି ସମାଲୋଚକଙ୍କ ପ୍ରତି ପକ୍ଷପାତ ବିଚାର କରୁଛନ୍ତି ବୋଲି ଓଡ଼ିଶାର ବହୁ ଅଞ୍ଚଳରୁ ପ୍ରତିବାଦପତ୍ର ସାହିତ୍ୟ-ସମାଜ ସମ୍ପାଦକଙ୍କଠାକୁ ଆସିଥିଲା । ଆଲୋଚନାଟି ଆନ୍ଦୋଳନ ଆକାର ଧାରଣ କରିବାରୁ ଏହି ଧାରଣା ହୋଇଥିବା ସ୍ୱାଭାବିକ ।

'ଉତ୍କଳ ସାହିତ୍ୟ ସମାଜ'ର ପ୍ରତିଷ୍ଠା ଦିନ କଟକର ପୁରାତନ ଟାଉନ୍‌ହଲ୍ ଗୃହରେ (ଖ୍ରୀ: ୧୯୦୩) ଅନୁଷ୍ଠିତ ସଭାରେ ରାଧାନାଥ ରାୟ, ଗୌରୀଶଙ୍କର ରାୟ, ବାମଣ୍ଡା ରାଜା ସାର୍ ସୁଚଳ ଦେବ ଓ ମି. ମଧୁସୂଦନ ଦାସ 'ଉତ୍କଳ ସାହିତ୍ୟ ସମାଜ'ର ଅଭିଭାବକ ରୂପେ ଗୃହୀତ ହୋଇଥିଲେ । ବହୁବର୍ଷ ପାଇଁ ମଧୁବାବୁ ଏହି ସମାଜର କାର୍ଯ୍ୟ-ନିର୍ବାହିକା ସମିତିର ମଧ୍ୟ ସଭ୍ୟ ଥିଲେ । ତାଙ୍କର ମତ ଥିଲା, ସମାଜର ଦୁଇଜଣ ସମ୍ପାଦକ ରହିବା ଦରକାର—ଜଣେ ସାହିତ୍ୟ ସମ୍ପାଦକ ଓ ଅନ୍ୟ ଜଣକ ଅର୍ଥ ସମ୍ପାଦକ ।

**ବଡ଼ଲାଟ ଲର୍ଡ଼ ହାର୍ଡ଼ିଂଜଙ୍କ ଓଡ଼ିଶା ପରିଦର୍ଶନ :** ଲର୍ଡ଼ ହାର୍ଡ଼ିଂଜ ନିଜ ହାତରେ ଯେଉଁ ଓଡ଼ିଶାକୁ ଗଠନ କରିଥିଲେ, ତାହାର ଅବସ୍ଥା ନିଜ ଚକ୍ଷୁରେ ଦେଖିବାପାଇଁ ସେ ଖ୍ରୀ: ୧୯୧୬ରେ ଓଡ଼ିଶାକୁ ଆସିଥିଲେ । ଓଡ଼ିଶାବାସୀ ତାଙ୍କ ପରିଦର୍ଶନରେ ଖୁସି ହୋଇଥିଲେ । ମଧୁବାବୁଙ୍କ ସାଦର ଅନୁରୋଧକ୍ରମେ ସେ ଓଡ଼ିଶାକୁ ଆସିଥିବା ଜଣାଯାଏ । କନିକାର ତତ୍କାଳୀନ ରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ମଧ୍ୟ ଏଥିପାଇଁ କିଛି ଅଂଶରେ ଦାୟୀ ।

**ଇମ୍ପିରିଆଲ୍ କାଉନ୍‌ସିଲ୍‌ର ମେମ୍ବର :** ଖ୍ରୀ: ୧୯୧୬ରେ ନିମ୍ନଲିଖିତ ବ୍ୟକ୍ତିମାନେ ବିହାର-ଓଡ଼ିଶା-କାଉନସିଲରେ ଓଡ଼ିଶାରୁ ମେମ୍ବର ହେଲେ—ଜମିଦାରମାନଙ୍କ

ତରଫରୁ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ (କନିକା), ମୁସଲମାନମାନଙ୍କ ତରଫରୁ ଖାଁ ବାହାଦୂର ଖାଜା ମହମଦ୍ ନୁର୍, ମୁନସିପାଲିଟିମାନଙ୍କ ତରଫରୁ ବାବୁ ଗୋପବନ୍ଧୁ ଦାସ, ଜିଲ୍ଲାବୋର୍ଡ଼ମାନଙ୍କ ତରଫରୁ ବାବୁ ବ୍ରଜସୁନ୍ଦର ଦାସ ଓ ସରକାରଙ୍କ ତରଫରୁ ମି. ମଧୁସୂଦନ ଦାସ ସି. ଆଇ. ଇ.।

**ମଧୁବାବୁଙ୍କର ସଭ୍ୟମାନଙ୍କୁ ସମ୍ବର୍ଦ୍ଧନା :** କଟକରେ ଓଡ଼ିଶାର ନବନିର୍ବାଚିତ କାଉନ୍‌ସିଲ୍ ସଭ୍ୟମାନଙ୍କୁ ସମ୍ବର୍ଦ୍ଧନା କରିବାପାଇଁ ଏକ ଉତ୍ସବ ମଧୁବାବୁ ନିଜ ଘରେ ଅନୁଷ୍ଠିତ କରିଥିଲେ । କଟକ ଡିଭିଜନ୍‌ର କମିଶନର ଲି ମେସୁରିଏର (Mr. Le Mesurier) ସାହେବ ମଧ୍ୟ ଏଥିରେ ଯୋଗ ଦେଇଥିଲେ । ଭୋଜନର ବ୍ୟବସ୍ଥା ଅତି ଉଚ୍ଚକୋଟିର ହୋଇଥିଲା । କମିଶନର ସଭ୍ୟମାନଙ୍କୁ ଲକ୍ଷ୍ୟ କରି ସାଦର ଅଭ୍ୟର୍ଥନା ଜଣାଇଥିଲେ । ସଭା ଓ ଭୋଜି ଶେଷବେଳକୁ ଦୁଇ ବନ୍ଧୁ ଓ ସଭ୍ୟ ଶ୍ରୀ ଗୋପବନ୍ଧୁ ଦାସ ଓ ଶ୍ରୀ ବ୍ରଜସୁନ୍ଦର ଦାସ ଆସି ପହଞ୍ଚିଲେ ଓ ନିଜର ତ୍ରୁଟି ବୁଝିପାରି କେହି ନ ଜାଣିଲା ଭଳି ଟେବୁଲ ଶେଷରେ ବସିଗଲେ; କିନ୍ତୁ ସମସ୍ତଙ୍କ ଦୃଷ୍ଟି ସେମାନଙ୍କ ଉପରେ ପଡ଼ିବାରୁ ସମସ୍ତେ କୌତୁକ କଲେ । ମଧୁବାବୁ କହିଲେ, "ଜଣେ ତ ଗୋପର ବନ୍ଧୁ, ଆଉ ଜଣେ ତ ବ୍ରଜର ସୁନ୍ଦର ! ଉଭୟେ ଏକ କୃଷ୍ଣଙ୍କର ନାମ ଧରିଥିବାରୁ ଏକା ସମୟରେ ଓ ଏକ ଭାବରେ ଆସି ପହଞ୍ଚିଲେ । ବିଳମ୍ବରେ ଆସିଲେ ହେଁ ଭଲ କଲେ; ନ ଆସିଥିଲେ ଏ ଉତ୍ସବ ଏ ଦୁହିଁଙ୍କ ବିନା ସୁନ୍ଦର ଦିଶି ନ ଥାଆନ୍ତା ।"

ମଧୁବାବୁ ସଭ୍ୟମାନଙ୍କୁ ଲକ୍ଷ୍ୟ କରି ଓଡ଼ିଶାର ବିଚ୍ଛିନ୍ନ ସମସ୍ୟା ପ୍ରତି ଦୃଷ୍ଟି ଦେବାକୁ ଅନୁରୋଧ କରିଥିଲେ । ପ୍ରଥମେ ଶୁଣାଯାଉଥିଲା ଯେ ବାର୍ଦ୍ଧକ୍ୟ ଓ ରୁଗ୍‌ଣ ଅବସ୍ଥା ଯୋଗୁଁ ମଧୁବାବୁ ସଭାପଦ ତ୍ୟାଗକରିବେ; କିନ୍ତୁ ପରେ ଏହା ଠିକ୍ ନଥିବା ଜଣାପଡ଼ିଥିଲା ।

ଏ ବର୍ଷର (ଖ୍ରୀ: ୧୯୧୬-୧୭) କେନ୍ଦ୍ର ବ୍ୟବସ୍ଥାପକ ସଭାରେ ବଜେଟ ଆଲୋଚନା-ବେଳେ ମାନ୍ୟବର ମଧୁବାବୁ ଶିଳ୍ପ ପ୍ରସାର, ଦେଶୀୟ ଶିଳ୍ପର ପୁନରୁଦ୍ଧାର, କୁଟୀରଶିଳ୍ପର ନିୟନ୍ତ୍ରଣ, ରେଳବାଇ ବିଭାଗର ପରିଚାଳନାରେ ଉନ୍ନତି କାମନାକରି ଯୁକ୍ତି ଉପସ୍ଥାପିତ କରିଥିଲେ ।

**ଉତ୍କଳ ସମ୍ମିଳନୀର ଅଧିବେଶନ :** ଉତ୍କଳ ସମ୍ମିଳନୀର ଦ୍ୱାଦଶ ଅଧିବେଶନ ଖ୍ରୀ: ୧୯୧୬ ଡିସେମ୍ବର ମାସ ୨୯ ଓ ୩୦ ତାରିଖରେ ବାଲେଶ୍ୱରଠାରେ ମଞ୍ଜୁଷାର ରାଜା ଶ୍ରୀନିବାସ ରାଜମଣି ଦେବଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏଥିରେ ସମ୍ମିଳନୀର ଜିଲା ଶାଖା ଓ ବଙ୍ଗୀୟ ସମ୍ପ୍ରଦାୟର କେତେକ ବିଶିଷ୍ଟ ବ୍ୟକ୍ତି ସହଯୋଗ କରି ନ ଥିଲେ । ନିଖିଳ ଭାରତ ଖ୍ରୀଷ୍ଟିଆନ ସମ୍ମିଳନୀର ସଭାପତିରୂପେ ମଧୁବାବୁ ନିର୍ବାଚିତ ହୋଇଥିବାରୁ, ସେ ସେହି ସମ୍ମିଳନୀରେ ଯୋଗଦେବାକୁ ମାନ୍ଦ୍ରାଜକୁ ଯାଇଥିଲେ । ତେଣୁ ଉତ୍କଳ ସମ୍ମିଳନୀର ଏହି ଅଧିବେଶନରେ ସେ ଯୋଗ ଦେଇପାରିନଥିଲେ ।

ସମ୍ମିଳନୀର ଏହି ଅଧିବେଶନରେ ସେ ଯୋଗ ଦେଇପାରିନଥିଲେ । ସମ୍ମିଳନୀର ପ୍ରାୟ ସବୁ ଅଧିବେଶନରେ ମଧୁବାବୁ ଯୋଗ ଦେଇ ଅଂଶ ଗ୍ରହଣ କରୁଥିଲେ ।

**ଭାରତୀୟ ଖ୍ରୀଷ୍ଟିଆନ୍ ସମ୍ମିଳନୀର ସଭାପତି :** ଖ୍ରୀ: ୧୯୧୭ ଡିସେମ୍ବର ୨୭ ତାରିଖରେ ଭାରତୀୟ ଖ୍ରୀଷ୍ଟିଆନ ସମ୍ମିଳନୀର ତୃତୀୟ ବାର୍ଷିକ ଅଧିବେଶନ ମାନ୍ଦ୍ରାଜ ନଗରୀରେ ଅନୁଷ୍ଠିତ ହୋଇଥିଲା ଓ ମାନ୍ୟବର ମଧୁସୂଦନ ଦାସ ସି. ଆଇ. ଇ. ସଭାପତି ହୋଇଥିଲେ ।

ଏହି ସଭାର ବିବରଣୀ ଭାରତର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା ଓ କୌତୁକର ବିଷୟ ଯେ ଅଧିକାଂଶ ପତ୍ରିକାରେ 'Mr. M. S. Das of Culcutta (କଲିକତାର ମି. ଏମ୍. ଏସ୍. ଦାସ) ସଭାପତି ହୋଇଥିଲେ ବୋଲି ଲେଖାଥିଲା । 'ଉତ୍କଳ ଦୀପିକା' ଏହାର ପ୍ରତିବାଦ କରିଥିଲେ ।

ମି ମଧୁସୂଦନ ଦାସ ନିଜର ସଭାପତି ଅଭିଭାଷଣରେ କହିଥିଲେ, "ଖ୍ରୀଷ୍ଟିଆନ୍‌ମାନେ ଭାରତବାସୀଙ୍କର ଏକ ପ୍ରଧାନ ଅଙ୍ଗ । ଏମାନେ ଭାରତୀୟ । ଜାତୀୟ ଉନ୍ନତି ପ୍ରତି ଉଦାସୀନ ନୁହନ୍ତି । ଏ ଦିଗରେ ଏମାନେ ଯଥେଷ୍ଟ ସହଯୋଗ କରୁଛନ୍ତି ଏବଂ ଜାତୀୟ ଉନ୍ନତିକଳ୍ପେ ଅନେକ ସାହାଯ୍ୟ କରିଛନ୍ତି ଓ କରୁଛନ୍ତି ମଧ୍ୟ ।

ଖ୍ରୀଷ୍ଟିଆନମାନେ ଗୋ-ମାଂସ ବ୍ୟବହାର କରିବା ଉଚିତ ନୁହେଁ ବୋଲି ସେ ଯୁକ୍ତିକରି କହିଥିଲେ—"ଖ୍ରୀଷ୍ଟିଆନମାନଙ୍କ ନାଡ଼ିରେ ସେମାନଙ୍କର ହିନ୍ଦୁ ପୂର୍ବପୁରୁଷମାନଙ୍କର ରକ୍ତ ପ୍ରବାହିତ ହେଉଛି । ଭାରତୀୟ ଖ୍ରୀଷ୍ଟିଆନମାନେ ବିଦେଶୀୟ ଧର୍ମପ୍ରଚାରକମାନଙ୍କୁ ପିତୃତୁଲ୍ୟ ସମ୍ମାନ କରୁଛନ୍ତି । ଖ୍ରୀଷ୍ଟିଆନ ଧର୍ମ-ପୁସ୍ତକରେ ମାଂସ ଓ ସୁରା ସେବନକରିବା ନିଷେଧ ଅଛି । ବହୁ ସଂଖ୍ୟକ ଭାରତୀୟ ଖ୍ରୀଷ୍ଟିଆନ ଗୋ-ମାଂସ ଭକ୍ଷଣ କରନ୍ତିନାହିଁ । ଅନ୍ତତଃ ସମସ୍ତ ଭାରତୀୟ ଖ୍ରୀଷ୍ଟିଆନ ଅନିଷ୍ଟକାରକ ଗୋମାଂସ ବ୍ୟବହାର ନ କଲେ ଅବଶ୍ୟ ହିନ୍ଦୁ ଭ୍ରାତାମାନଙ୍କ ସହିତ ସହାନୁଭୂତି ବୃଦ୍ଧି ପାଇବ । ସୁତରାଂ ଭାରତୀୟ ଖ୍ରୀଷ୍ଟିଆନମାନେ ଗୋ ମାଂସକୁ ଖାଦ୍ୟରୂପେ ଆଦୌ ବ୍ୟବହାର ନ କରିବା ନିମନ୍ତେ ନିର୍ଦ୍ଧାରଣ ଗ୍ରହଣ କରିବା ଆବଶ୍ୟକ ବୋଲି ସେ ଉପଲବ୍ଧି କରୁଛନ୍ତି ।"

ଭାରତୀୟ ବ୍ୟବସ୍ଥାପକ ସଭାରେ ଖ୍ରୀଷ୍ଟିଆନମାନଙ୍କର ସଦସ୍ୟ ନ ଥିବାରୁ ଅସୁବିଧା ହେଉଥିବା ସେ ଦର୍ଶାଇଥିଲେ । ସେମାନେ ଅନୁନ୍ନତ ସମ୍ପ୍ରଦାୟ ଏବଂ ସେମାନଙ୍କ ଦାବୀ ସରକାରଙ୍କଠାରେ ଉପସ୍ଥାପିତ କରିବାପାଇଁ ବ୍ୟବସ୍ଥାପକ ସଭାରେ ସଦସ୍ୟ ରହିବା ଆବଶ୍ୟକ ବୋଲି ସେ ଦାବୀ କରିଥିଲେ ।

ଖ୍ରୀଷ୍ଟିଆନ୍‌ମାନଙ୍କର ଶିକ୍ଷା ନିମନ୍ତେ ସରକାର କିଛି ସ୍ୱତନ୍ତ୍ର ବ୍ୟବସ୍ଥା କରି ନଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ ।

ଭାରତୀୟ ଶ୍ରମଶିଳ୍ପର ଉନ୍ନତି କରିବାପାଇଁ ସେ ସଭ୍ୟମାନଙ୍କୁ ବିଶେଷ ଭାବରେ ଅନୁରୋଧ କରିଥିଲେ ।

ସଭା ଶେଷରେ ସଭାପତି ମି. ଦାସ ମାନ୍ଦ୍ରାଜ ନଗରୀରେ ଭାରତୀୟ ଖ୍ରୀଷ୍ଟିଆନ୍ ସମିତିର ସ୍ଥାୟୀ ଗୃହର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ମାନ୍ଦ୍ରାଜର ଲାଟ୍ ଏହି ସଭାରେ ଉପସ୍ଥିତ ଥିଲେ ।

**ଯୁଦ୍ଧ-ଋଣ ସଂଗ୍ରହ ଓ ମଧୁବାବୁ :** ଖ୍ରୀ. ୧୯୧୭ ମାର୍ଚ୍ଚ ୧୧ ତାରିଖ ଦିନ କଟକରେ ଓଡ଼ିଶା କମିଶନରଙ୍କ ସଭାପତିତ୍ୱରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଯୁଦ୍ଧଋଣ ସଂଗ୍ରହ ଏହାର ଉଦ୍ଦେଶ୍ୟ ଥିଲା । ଏହି ସଭାରେ ମଧୁବାବୁ କହିଥିଲେ "ଏହି ଯୁଦ୍ଧ ଧର୍ମବିରୋଧୀ ଯୁଦ୍ଧ ସହିତ ତୁଳନୀୟ । ବ୍ରିଟିଶ ସମ୍ରାଟଙ୍କ ନ୍ୟାୟପରତା ଧର୍ମ ଓ ଜର୍ମାନ ସମ୍ରାଟଙ୍କ ଅନ୍ୟାୟ କାର୍ଯ୍ୟ ଅଧର୍ମ । ମୁଁ ନିଜେ ଜଣେ ଓଡ଼ିଆ । ଭାରତବାସୀଙ୍କର ଉପସ୍ଥିତ ଯୁଦ୍ଧରେ ଯେତେଦୂର ତ୍ୟାଗ ସ୍ୱୀକାରକରିବା ଉଚିତ, ବ୍ୟବସ୍ଥାପକ ସଭାରେ ତାହା ପ୍ରସ୍ତାବ ଆକାରରେ ନିର୍ଦ୍ଧାରିତ କରାଯାଇଛି । ଓଡ଼ିଶା ଭାରତରୁ ଭିନ୍ନ ନୁହେଁ । ଏହି ପ୍ରସ୍ତାବ ଜଣେ ଓଡ଼ିଆଙ୍କଦ୍ୱାରା ହୋଇଥିଲା । ଉପସ୍ଥିତ ମହାସମରଜନିତ ସଙ୍କଟ ଓ ଯୁଦ୍ଧକୁ ଶୀଘ୍ର ଅବସାନ କରିବା ଆବଶ୍ୟକ; କିନ୍ତୁ, ଏଥିପାଇଁ ଅର୍ଥର ପ୍ରୟୋଜନ ।"

ମଧୁବାବୁ କହିଥିଲେ, "ଓଡ଼ିଶାର ରାଜଭକ୍ତି ଚିରପ୍ରସିଦ୍ଧ ଏବଂ ଓଡ଼ିଆମାନେ ପ୍ରଚୁର ପରିମାଣ ଅର୍ଥ ସହିତ ଗଭର୍ଣ୍ଣମେଣ୍ଟକୁ ସାହାଯ୍ୟ କରିବେ, ଏଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ । ଉପସ୍ଥିତ ଯୁଦ୍ଧଋଣଦ୍ୱାରା ଗଭର୍ଣ୍ଣମେଣ୍ଟଙ୍କର ସାହାଯ୍ୟ ଓ ନିଜର ଲାଭ ଦୁଇ କାର୍ଯ୍ୟ ଏକାବେଳେ ସମାହିତ ହେବ । ଯେଉଁ ଓଡ଼ିଆମାନେ ରାମଲୀଳାରେ ରାବଣର ପରାଜୟ ଦିନ ବିରାଟ ଉତ୍ସବରେ ଅର୍ଥ ବ୍ୟୟକରି ଆସୁଅଛନ୍ତି, ସେମାନେ ଯୁଦ୍ଧଋଣରେ ଟଙ୍କା ଦେଇ ଆମ ସମ୍ରାଟଙ୍କୁ ସାହାଯ୍ୟ କରିବେ, ଏଥିରେ କିଛି ଅଧିକା କଥା ନାହିଁ । ଓଡ଼ିଆମାନେ ଖୁବ୍ ଧନୀ ନ ଥିଲେହେଁ, ଅଧିକସଂଖ୍ୟକ ଲୋକ ଯୁଦ୍ଧଋଣରେ ଅର୍ଥ ଦେଇ ସେମାନଙ୍କର ମନ ଓ ରାଜଭକ୍ତି ପ୍ରଦର୍ଶନ କରିବା ଉଚିତ ।"

ପୋଷ୍ଟଅଫିସର ୧୦ ଟଙ୍କିଆ ଋଣ ପତ୍ରରେ ଟଙ୍କା ଦେବା ସକାଶେ ଅନୁରୋଧ କରି ସେ କହିଲେ, "ପ୍ରଥମ ୧୦୦୦ ସଂଖ୍ୟା ପ୍ରତ୍ୟେକ ୧୦ ଟଙ୍କାର ଯୁଦ୍ଧଋଣ ସକାଶେ ଋଣଦାତା ଟ୬ ଦେଲେ ମୁଁ ନିଜେ ନିଜ ହାତରୁ ଏମାନଙ୍କ ସକାଶେ ଟ୧.୭୫ପ ଦେବାକୁ ପ୍ରତିଶ୍ରୁତି ଦେଉଛି । ଯଦି ସେହି ୧୦୦୦ ସଂଖ୍ୟକ ୧୦ ଟଙ୍କିଆ ଯୁଦ୍ଧଋଣ ଏକମାସ ମଧ୍ୟରେ ହୋଇଯାଏ, ତାହାହେଲେ ଆଉ ୧୦୦୦ସଂଖ୍ୟା ୧୦ଟଙ୍କିଆ ଋଣ ସକାଶେ ସେହି ସୁବିଧା ଦେବି ।"

ଏ ଯୋଜନାର କି ଅବସ୍ଥା ହେଲା ଜଣା ନଥିଲେ ମଧ୍ୟ ଓଡ଼ିଶାର ବହୁ ରାଜା, ଜମିଦାର ଓ ଧନୀ ଯୁଦ୍ଧଋଣ ଦେଇଥିଲେ । ମଧୁବାବୁଙ୍କ ଉତ୍ସାହବାଣୀ ଏମାନଙ୍କୁ ବହୁତ ପ୍ରେରଣା ଦେଇଥିଲା ।

ମଧୁବାବୁ ଯୁଦ୍ଧଋଣ ଦେବାପାଇଁ ନିବେଦନ କରି ଏକ ପ୍ରଚାରପତ୍ର ମଧ୍ୟ ବାଣ୍ଟିଥିଲେ । ଗ୍ରାମାଞ୍ଚଳରେ ସରକାରୀ ଓ ବେସରକାରୀ ଉଦ୍ୟମରେ ହେଉଥିବା ବହୁ ସଭାରେ ଏହି ନିବେଦନ ପତ୍ର ପଢ଼ାଯାଉଥିଲା । ମଧୁବାବୁ ନିବେଦନ କରିଥିବାଯୋଗୁଁ ବହୁଲୋକ ଯୁଦ୍ଧଋଣ ପତ୍ର କିଣିଥିଲେ ।

**ସାହିତ୍ୟ ସମାଜର ବନ୍ଧୁମିଳନ**—ଖ୍ରୀ: ୧୯୧୭ ଫେବୃଆରୀ ୧୮ ତାରିଖରେ କଟକ ଟ୍ରେନିଂ ସ୍କୁଲ ପ୍ରାଙ୍ଗଣରେ ସୋନପୁରର ମହାରାଜା ଶ୍ରୀ ବୀରମିତ୍ର ସିଂହ ଦେବଙ୍କୁ ସମ୍ବର୍ଦ୍ଧନା କରିବା ନିମନ୍ତେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏକ ବନ୍ଧୁମିଳନ ହୋଇଥିଲା । ସମାଜର ସ୍ଥାୟିତ୍ୱ ନିମନ୍ତେ ଯେଉଁ ବିଶେଷ ପାଣ୍ଠି ଗଠିତ ହୋଇଥିଲା, ମହାରାଜା ସେଥିରେ ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । ସେ ପର୍ଯ୍ୟନ୍ତ ଯେଉଁ ମହୋଦୟମାନେ ସ୍ୱୀକୃତ ସାହାଯ୍ୟ ପ୍ରଦାନ କରିଥିଲେ, ସେମାନଙ୍କ ମଧ୍ୟରେ ସୋନପୁର ମହାରାଜା ସର୍ବାପେକ୍ଷା ଅଧିକ ଦାନ କରିଥିଲେ । ମାନ୍ୟବର ମଧୁବାବୁ ଏହି ସଭାରେ ଉପସ୍ଥିତ ଥାଇ ମିଳନଟିକୁ ସର୍ବାଙ୍ଗସୁନ୍ଦର କରିବାରେ ସାହାଯ୍ୟ କରିଥିଲେ ।

**ସୁଦର୍ଶନ ଦାସଙ୍କୁ ସମ୍ବର୍ଦ୍ଧନା**—ଖ୍ରୀ: ୧୯୧୭ ଜୁନ୍ ମାସ ୧୭ ତାରିଖରେ ମଧୁବାବୁ ରାୟସାହେବ ସୁଦର୍ଶନ ଦାସଙ୍କ ସମ୍ବର୍ଦ୍ଧନା କରିବା ପାଇଁ ନିଜ ଗୃହରେ ଏକ ବନ୍ଧୁମିଳନର ଆୟୋଜନ କରିଥିଲେ । ସୁଦର୍ଶନ ବାବୁ 'ରାୟ ସାହେବ' ଉପାଧି ପାଇବା ଉପଲକ୍ଷେ ଏହା କରାଯାଇଥିଲା । ସେ କେତେଜଣ ଫିରିଙ୍ଗି ଓ କିଛି ଓଡ଼ିଆ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରି ଭୋଜନରେ ଆପ୍ୟାୟିତ କରିଥିଲେ । ମଧୁବାବୁ ଜଣେ ସୁନ୍ଦର ଗଳ୍ପପଟୁ ଥିଲେ । ତାଙ୍କର ତିରସ୍କାର, ଭର୍ତ୍ସନା, ସମାଲୋଚନା ପ୍ରଭୃତି ସବୁ ଉପଦେଶମୂଳକ ଥିଲା । ମଧୁବାବୁ ରୁଚିକର ଗଳ୍ପରେ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କୁ ଆନନ୍ଦ ଦାନ କରିଥିଲେ ।

ସେତେବେଳେ ଶ୍ରୀ ଦୁର୍ଗାପ୍ରସନ୍ନ ଦାସ ଗୁପ୍ତ ସରକାରୀ ଓକିଲରୂପେ ନିଯୁକ୍ତି ପାଇବାରୁ ତାଙ୍କ ଅଭିବାଦନ କରିବାପାଇଁ ମଧୁବାବୁ ଏକ ବନ୍ଧୁମିଳନ କରିଥିଲେ ।

ଜୁଲାଇମାସ ୨୫ ତାରିଖ ଦିନ ପାଟଣା ହାଇକୋର୍ଟର ବିଚାରପତି ମାନ୍ୟବର ମଲ୍ଲିକ ଓ ଅଟକିନ୍‌ସନ୍ ସାହେବଙ୍କ ସହିତ ସାକ୍ଷାତକରିବା ସକାଶେ ମଧୁବାବୁ ଏକ ଉଦ୍ୟାନମିଳନ ଆୟୋଜନ କରିଥିଲେ । ଏଥିରେ ବହୁ ଉଚ୍ଚପଦସ୍ଥ ସରକାରୀ ହାକିମ ଓ ଭଦ୍ରବ୍ୟକ୍ତି ଯୋଗ ଦେଇଥିଲେ । ମିଳନଟି ଅତ୍ୟନ୍ତ ରମଣୀୟ ହୋଇଥିଲା । ବିଚାରପତିମାନେ ସର୍କିଟକୋର୍ଟ ନିମନ୍ତେ କଟକ ଆସିଥିଲେ ।

**ସ୍ୱ ସମାଲୋଚକଙ୍କୁ ଉତ୍ସାହ ଦାନ**—କଟକର ସୁଖ୍ୟାତ ଓକିଲ ଓ ଲେଖକ ଶ୍ରୀ ଭିକାରିଚରଣ ପଟ୍ଟନାୟକଙ୍କ ସାହିତ୍ୟସେବାରେ ମୁଗ୍ଧହୋଇ ମଧୁବାବୁ ଖ୍ରୀ: ୧୯୧୭ ଜୁନ୍ ମାସ ୬ ତାରିଖରେ ଏକ ପତ୍ର ଲେଖି ପ୍ରଶଂସା କରିଥିଲେ । ତାଙ୍କର 'ଶୁଶୀଳା' ନାମକ ନାଟକରେ ଭିକାରିବାବୁ ମଧୁବାବୁଙ୍କ ପ୍ରତି କେତେକ କଟାକ୍ଷମୂଳକ 'କୁବାକ୍ୟ' ପ୍ରୟୋଗ କରିଛନ୍ତି । ଏହି ବହିଟି ପ୍ରକାଶ ପାଇସାରିବା ପରେ ମଧୁବାବୁ ନିଜପ୍ରତି କେତେକ କୁବାକ୍ୟ ପ୍ରୟୋଗ ହୋଇଥିବା ଜାଣି ମଧ୍ୟ ଭିକାରିବାବୁଙ୍କ ସାହିତ୍ୟ ସାଧନା ପ୍ରତି ସହାନୁଭୂତି ପ୍ରକାଶ କରିଛନ୍ତି । ଭିକାରିବାବୁ ମଧ୍ୟ ପତ୍ରିକାରେ ଏକ ପତ୍ର ଲେଖି କୃତଜ୍ଞତା ଜଣାଇଥିଲେ । ସେ ଲେଖିଥିଲେ—"ମାନ୍ୟବର ମଧୁସୂଦନ ଦାସ ସି.ଆଇ.ଇ. ମହୋଦୟ ମୋହର ପୁସ୍ତକମାନଙ୍କ ସମ୍ବନ୍ଧେ ଗତ ୬।୬।୧୭ ତାରିଖରେ ଖଣ୍ଡିଏ ଅତ୍ୟନ୍ତ ଉତ୍ସାହପୂର୍ଣ୍ଣ ପତ୍ର ଲେଖିଅଛନ୍ତି ଏବଂ ପ୍ରୁଫ୍‌ଖର୍ଚ୍ଚର ସାହାଯ୍ୟ ସ୍ୱରୂପ ପଚିଶ ଟଙ୍କା ପଠାଇ-ଦେଇଅଛନ୍ତି । ସେ ପଚିଶ ଟଙ୍କାର ମୂଲ୍ୟ ପଚିଶଟି ଟଙ୍କା ନୁହେଁ, ତାହା ମୋହ ଜୀବନରେ ଗୋଟିଏ ବହୁମୂଲ୍ୟ ପୁରସ୍କାର । ଆହୁରି ଗୋଟିଏ କଥା ଶୁଣିବାକୁ ବୋଧହୁଏ ସମସ୍ତଙ୍କର କୌତୂହଳ ଜାତହେବ ଯେ, ମୋହର ଶେଷ ମୁଦ୍ରିତ ପୁସ୍ତକ 'ସୁଶୀଳା' ନାଟକରେ ମିଃ ଦାସଙ୍କ ପ୍ରତି କେତେଗୁଡ଼ିଏ କୁବାକ୍ୟର ପ୍ରୟୋଗ ଅଛି । ତହିଁର ଅବ୍ୟବହିତ ପରେ ଏ ପୁରସ୍କାର ପ୍ରାପ୍ତି । ଏ ରହସ୍ୟଟିକି 'ସୁଶୀଳା' ପୁସ୍ତକ ଖଣ୍ଡି ନପଢ଼ିଲେ ସହଜରେ ବୁଝାଯିବ ନାହିଁ । ଯାହାହେଉ ମି. ଦାସଙ୍କର ଏପ୍ରକାର ସହାନୁଭୂତି ଓ ଉତ୍ସାହ ପ୍ରଦାନ ନିମନ୍ତେ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଅଛି । ମି. ଦାସ ମୋ ସକାଶେ ଦୁଃଖ ପ୍ରକାଶ କରିଅଛନ୍ତି ଯେ, ଓଡ଼ିଶାର ସର୍ବସାଧାରଣଙ୍କର ସହାନୁଭୂତିର ଅଭାବ ହେତୁ ମୁଁ ନିରୁତ୍ସାହିତ ହେଉଥିବି । ସେ କଥା ମିଛ ନୁହେଁ । × ×" (ଉତ୍କଳ ଦୀପିକା, ୨୩।୬।୧୯୧୭)

## ୬୪ । ସାମ୍ବାଦିକତା ଓ ଉତ୍କଳ ସମ୍ମିଳନୀର କାମ

**ଉତ୍କଳ ସମ୍ମିଳନୀର ମୁଖପତ୍ର ପ୍ରକାଶ ପ୍ରସ୍ତାବ** : ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ନିମନ୍ତେ କଟକରେ ଖ୍ରୀ: ୧୯୧୭ ସେପ୍‌ଟେମ୍ବର ୧୬ ତାରିଖ ଦିନ ସମ୍ପାଦକ ମାନ୍ୟବର ମଧୁସୂଦନ ଦାସଙ୍କ ଆହ୍ୱାନକ୍ରମେ ତାଙ୍କ ବାସଭବନରେ ଏକ ସାଧାରଣସଭା ହୋଇଥିଲା । ଭଦ୍ରକର ବାବୁ ଭଗବତପ୍ରସାଦ ମହାପାତ୍ର ସଭାପତି ହୋଇ-ଥିଲେ । ଆଗାମୀ କଂଗ୍ରେସ କଲିକତାରେ ହେବାର ସ୍ଥିର ହୋଇଥିବାରୁ ବହୁ ଲୋକ ସେଠାକୁ ଯିବାପାଇଁ ଇଚ୍ଛା ପ୍ରକାଶକରିଥିଲେ । ଏହି କାରଣରୁ ଖ୍ରୀ:୧୯୧୮ର ଇଷ୍ଟରଛୁଟିରେ ସମ୍ମିଳନୀର ଆଗାମୀ ଅଧିବେଶନ ହେବା ସ୍ଥିରହେଲା । ଖ୍ରୀ: ୧୯୧୭ର ବାର୍ଷିକ ଅଧିବେଶନ ସେହି ବର୍ଷ ଏହି କାରଣରୁ ହୋଇପାରିଲା ନାହିଁ ।

ଏହି ସଭାରେ ସ୍ଥିର ହୋଇଥିଲା ଯେ ସମ୍ମିଳନୀ ପକ୍ଷରୁ ଏକ ଇଂରେଜୀ ପତ୍ର ପ୍ରକାଶ କରାଯିବ । "ସମ୍ମିଳନୀର ଉଦ୍ଦେଶ୍ୟ ପ୍ରକାଶ କରିବା କାରଣ ଗୋଟିଏ ଇଂରେଜୀ ସମ୍ବାଦ ପତ୍ରର ଅଭାବ ଅନେକ ଦିନରୁ ଅନୁଭୂତ ହୋଇଅଛି । ଗତ ବାଲେଶ୍ୱର ଅଧିବେଶନରେ ସମସ୍ତ ଓଡ଼ିଆଭାଷୀ ପ୍ରଦେଶମାନଙ୍କୁ ଏକତ୍ରକରିବା କାରଣ ବୈଧ ଉପାୟ ଅବଲମ୍ବନ କରିବା ନିମନ୍ତେ ଗୋଟିଏ କମିଟି ଗଠିତ ହୋଇଥିଲା । କମିଟି ଏକତ୍ରିତ ହୋଇ ସ୍ଥିର କରିଅଛନ୍ତି ଯେ ଦେଶମିଶ୍ରଣ ଆନ୍ଦୋଳନକୁ ନ୍ୟାୟ ଓ ଆଇନସଙ୍ଗତ ଉପାୟରେ ସଜୀବ ରଖିବା କାରଣ ବହୁତ ଉପାୟ ଅବଲମ୍ବନ କରାଯିବ ଏବଂ ସେଥି ସକାଶେ ନାନା ଉପାୟ ମଧ୍ୟରେ ଖଣ୍ଡେ ସାପ୍ତାହିକ ଇଂରେଜୀ ସମ୍ବାଦପତ୍ର ଆବଶ୍ୟକ । ବିଶେଷତଃ ବର୍ତ୍ତମାନ ଭାରତର ଷ୍ଟେଟ୍ ସେକ୍ରେଟେରୀ ମଣ୍ଟେଗୁ ସାହେବ ଭାରତକୁ ଆସୁଅଛନ୍ତି । ସେହି ଉପଲକ୍ଷେ ଭାରତର ସମସ୍ତ ପ୍ରଦେଶର ନେତୃବର୍ଗ ଭାରତର ନାନା ଦୁଃଖ ଓ ଅଭାବମାନ ଜଣାଇବା ନିମନ୍ତେ ତତ୍ପର ହୋଇ କି କି ଉପାୟରେ ତାହା ଜଣାଇବେ, ତାହା ସ୍ଥିର କରିବାରେ ବ୍ୟସ୍ତ ହେଲେଣି ଏବଂ ସେଥିନିମନ୍ତେ ନାନା ଆନ୍ଦୋଳନ ହେଉଅଛି । ଅତଏବ ଏପରି ମାହେନ୍ଦ୍ର ସୁଯୋଗରେ ଉତ୍କଳର ନାନା ଅଭାବ ଜଣାଇବା ଏକାନ୍ତ ଆବଶ୍ୟକ ଏବଂ ସେଥି ନିମନ୍ତେ 'ଉତ୍କଳସମ୍ମିଳନୀ' ନାମକ ଖଣ୍ଡିଏ ସମ୍ବାଦପତ୍ର ଉତ୍କଳର ଦେଶମିଶ୍ରଣ ଓ ଅନ୍ୟାନ୍ୟ ଅଭାବ ଜଣାଇବା ନିମନ୍ତେ ଅତିଶୀଘ୍ର, ଏପରି କି ମଣ୍ଟେଗୁ ସାହେବଙ୍କ ଆଗମନ ପୂର୍ବରୁ, ପ୍ରକାଶହେବା ଆବଶ୍ୟକ ବୋଧହେଉଅଛି; ମାତ୍ର ସମ୍ବାଦପତ୍ର ସକାଶେ ଅର୍ଥ ଆବଶ୍ୟକ । ହିସାବ ହୋଇ ଦେଖାଗଲା ଯେ ଟ ୩୬୦୦ (ତିନି ହଜାର ଛଅ ଶହ ଟଙ୍କା ) ହେଲେ ଏକ ବର୍ଷ ସକାଶେ ସମ୍ବାଦପତ୍ରଟି ପରିଚାଳିତ ହେବ । ଅନ୍ତତଃ ଜଣକେ ୧୦ଟଙ୍କା ଲେଖାଏଁ ଦେଲେ କେବଳ ୩୬୦ ଜଣଙ୍କଦ୍ୱାରା ସମ୍ବାଦପତ୍ରର ମୂଳଧନ ହୋଇଯିବ; ଅର୍ଥାତ୍ ସମ୍ବାଦ-ପତ୍ରଟି ଆରମ୍ଭ ହୋଇଯିବ । ଉତ୍କଳର ଲୋକସଂଖ୍ୟା ୯୦ ଲକ୍ଷ । ତହିଁ ଅନୁପାତରେ ୩୬୦ ଜଣ କିଛି ନୁହେଁ । ଯଦ୍ୟପି ୯୦ ଲକ୍ଷ ଲୋକଙ୍କ ମଧ୍ୟରେ ୩୬୦ ଜଣ ୧୦ ଟଙ୍କା ଦେବାକୁ ଇଚ୍ଛୁକ ନଥାନ୍ତି ତାହାହେଲେ ଓଡ଼ିଆ ଜାତି ଏପର୍ଯ୍ୟନ୍ତ ଜାତୀୟ ଭାବ କଣ ଜାଣିନାହାନ୍ତି ? ଆଶାକରୁଁ ଏ ସମ୍ବାଦ ପ୍ରଚାର ହେଲମାତ୍ରକେ ୩୬୦ ଜଣ ୧୦ ଟଙ୍କା ଲେଖାଏଁ 'ଉତ୍କଳ ଦୀପିକା'ର ସମ୍ପାଦକ ଅଥବା ମି. ଦାସଙ୍କ ନିକଟକୁ ପଠାଇଦେବେ । ଚାନ୍ଦାଦାତାମାନଙ୍କ ନାମ 'ଉତ୍କଳ ଦୀପିକା'ରେ ପ୍ରାପ୍ତି ସ୍ୱୀକାର ସ୍ତମ୍ଭରେ ପ୍ରକାଶ କରାଯିବ । ଟଙ୍କା ଉଠିଲେ ସମ୍ବାଦପତ୍ର ଆସନ୍ତା ନଭେମ୍ବରମାସ ପୂର୍ବରୁ ପ୍ରକାଶ ହେବାର ସ୍ଥିର ହୋଇଅଛି । ସମ୍ବାଦପତ୍ର ପ୍ରକାଶ ହେବା ପୂର୍ବରୁ ଅନେକ ଆନୁଷଙ୍ଗିକ କାର୍ଯ୍ୟହେବା ଆବଶ୍ୟକ । ସୁତରାଂ ଆଉ ସମୟ ନାହିଁ । ଆଶାକରୁ ସମସ୍ତ ବିଳମ୍ବ ନ କରି ସ୍ୱଦେୟ ଚାନ୍ଦା ସମସ୍ତେ ପଠାଇଦେବେ ।

"ବର୍ତ୍ତମାନ ଭାରତବର୍ଷରେ ନବଯୁଗ ଓ ନବଭାବ । ଏହି ନବଭାବ ଓ ନବଯୁଗରେ କେବଳ ଉତ୍କଳ ପଶ୍ଚାତ୍ପଦ । ପୁରୀ, ଭୁବନେଶ୍ୱର, କୋଣାର୍କକୁ ଦେଖି କେବଳ ଅତୀତ ଗୌରବପାଇଁ ଛାତି ଫୁଲାଇବାର ସମୟ ଏ ନୁହେଁ । ବର୍ତ୍ତମାନ—

Act, act in the living present
Heart within and God over head.” ର ଯୁଗ । ଉତ୍କଳର ସନ୍ତାନମାନଙ୍କୁ ଏହି ପତ୍ରିକା ସମ୍ବନ୍ଧରେ ଏହି ପ୍ରଥମ ଓ ଶେଷ ଆହ୍ୱାନ ।”

ଉତ୍କଳ ସମ୍ମିଳନୀର ଏ ନିର୍ଦ୍ଧାରଣ ଓ ନିବେଦନ ସର୍ବସାଧାରଣରେ ପ୍ରକାଶ ପାଇଥିଲା ।

‘ଉତ୍କଳ ଦୀପିକା’ରେ ସେପ୍ଟେମ୍ବର ୨୨ ତାରିଖ (୧୯୧୭)ରେ ଏହି ନିବେଦନ ପ୍ରକାଶ ପାଇବାପରେ ପ୍ରାୟ ସପ୍ତାହକ ଭିତରେ ‘ଉତ୍କଳ ଦୀପିକା’ ଅଫିସ ଏହିମାନଙ୍କଠାରୁ ଚାନ୍ଦା ଟ ୧୦ କରି ଆଦାୟ ପାଇଥିଲେ—ସର୍ବଶ୍ରୀ ରାଘବାନନ୍ଦ ଦାସ, ବିଚିତ୍ରାନନ୍ଦ ଦାସ, ମାୟାଧର ଦାସ, ଲକ୍ଷ୍ମୀଧର ମହାନ୍ତି, ଶ୍ୟାମାନନ୍ଦ ପଟ୍ଟନାୟକ (ଚଣାହାଟ), ସଦାନନ୍ଦ ଦାସ, ହରପ୍ରସାଦ ସିଂହ, ବ୍ରଜସୁନ୍ଦର ଦାସ, ସୁଦର୍ଶନ ନନ୍ଦ, ରାୟ ବାହାଦୁର ସୁଦାମଚରଣ ନାୟକ, ଫକିରମୋହନ ସେନାପତି । ମୋଟ ଟ ୧୧୦ । ଏହା ପରେ ମଧ୍ୟ ଆଉ କେତେ ଟଙ୍କା ମିଳିଥିଲା ।

ପ୍ରଥମେ ‘ଉତ୍କଳ କନ୍‌ଫରେନ୍‌ସ’ ନାମରେ ପତ୍ରିକା ପ୍ରକାଶ ପାଇବ ବୋଲି ସ୍ଥିର ହୋଇଥିଲା; କିନ୍ତୁ ନଭେମ୍ବର ମାସରେ ଉତ୍କଳ ସମ୍ମିଳନୀର କମିଟି ଏହାର ନାମ ‘The Oriya’ ଦେବା ସ୍ଥିରକଲେ । ଏହି ସମ୍ବାଦପତ୍ରର ସମ୍ପାଦକ ରୂପେ ସମ୍ମିଳନୀର ସମ୍ପାଦକ ମଧୁବାବୁ ମନୋନୀତ ହୋଇଥିଲେ ଏବଂ ପତ୍ରିକା ପ୍ରକାଶ କରିବା ଭାର ସମ୍ପୂର୍ଣ୍ଣ-ରୂପେ ଉତ୍କଳ ସମ୍ମିଳନୀର କମିଟି ଉପରେ ନ୍ୟସ୍ତ ରହିଲା ।

ଖ୍ରୀ: ୧୯୧୭ ଡିସେମ୍ବର ମାସ ୫ ତାରିଖ ବୁଧବାର ଦିନ ଉତ୍କଳ ସମ୍ମିଳନୀର ମୁଖପତ୍ର ସ୍ୱରୂପ ଇଂରାଜୀରେ ‘ଦି ଓଡ଼ିଆ’ ସାପ୍ତାହିକ କଟକରୁ ଉତ୍କଳ ସମ୍ମିଳନୀର ସମ୍ପାଦକ ମଧୁବାବୁଙ୍କ ସମ୍ପାଦକତ୍ୱରେ ପ୍ରକାଶ ପାଇଲା । ପ୍ରସ୍ତାବିତ ଚାନ୍ଦା ସମ୍ପୂର୍ଣ୍ଣରୂପେ ଆଦାୟ ହୋଇ ନଥିଲେ ମଧ୍ୟ ଅଭାବ ପୂରଣ ହୋଇଯିବା ଆଶାରେ ସମ୍ମିଳନୀ କମିଟି ଏଥିରେ ଅଗ୍ରସର ହୋଇଥିଲେ । ଏହି କାଗଜକୁ ସ୍ୱାଗତକରି ‘ଉତ୍କଳ ଦୀପିକା’ ଲେଖିଥିଲେ—“ଓଡ଼ିଆମାନଙ୍କର ଅଦ୍ୟାବଧି ଖଣ୍ଡେ ଇଂରେଜୀ ସମ୍ବାଦପତ୍ର ନଥିଲା । ‘ଦି ଓଡ଼ିଆ’ ସର୍ବପ୍ରଥମ । ଉତ୍କଳ ମାତାଙ୍କ ସମ୍ମୁଖରେ ଜଣାଣ କନ୍ୟାକୁ ଅଭୟବର ଦେଉନ୍ତୁ । ଉତ୍କଳବାସୀ ଓ ପ୍ରବାସୀ ଭାଇମାନେ କୋଡ଼ପାତି ‘ଓଡ଼ିଆ’କୁ ଘେନନ୍ତୁ ।” (୮ । ୧୨ । ୧୭)

ଓଡ଼ିଶା ଓ ଓଡ଼ିଆମାନଙ୍କର ବିଭିନ୍ନ ସମସ୍ୟା ଏଥିରେ ଆଲୋଚିତ ହେଉଥିଲା । ଏହା ବ୍ୟତୀତ ସର୍ବଭାରତୀୟ ବିଭିନ୍ନ ସମସ୍ୟା ଉପରେ ମନ୍ତବ୍ୟ ଓ ନିବନ୍ଧ ମଧ୍ୟ ପ୍ରକାଶ ପାଉଥିଲା; କିନ୍ତୁ ପତ୍ରିକାଟି ବେଶି ଦିନ ତିଷ୍ଠି ପାରିଲାନାହିଁ । ସେତେବେଳକୁ ମଧୁବାବୁଙ୍କ ବୟସ ୭୧ । ଏ ବୃଦ୍ଧ ବୟସରେ ପତ୍ରିକା ପ୍ରକାଶନର ଦାୟିତ୍ୱ ଓ ଜଞ୍ଜାଳ ବହନକରିବା ତାଙ୍କ ପକ୍ଷେ ସେତେ ସମ୍ଭବ ନଥିଲା । ପ୍ରାୟ ଦୁଇବର୍ଷ ଏହି ପତ୍ରିକା ଚାଲିଥିବା ଜଣାଯାଏ ।

ପତ୍ରିକାର ଆର୍ଥିକ ଅବସ୍ଥା ମଧ୍ୟ ଶୋଚନୀୟ ହୋଇପଡ଼ିଥିଲା । ମଧୁବାବୁ ନିଜେ ସବୁ ବ୍ୟୟ ବହନକରିବା ମଧ୍ୟ ସମ୍ଭବ ନଥିଲା । ଓଡ଼ିଶା ବାହାରେ ଭାରତ ଓ ବିଲାତରେ ଓଡ଼ିଶାର ଦାବୀ ସମ୍ବନ୍ଧରେ ଉପଯୁକ୍ତ ପ୍ରଚାର କରିବା ଲକ୍ଷ୍ୟରେ ଉତ୍କଳ ସମ୍ମିଳନୀ ଏହି ଯେଉଁ ଇଂରେଜୀ ସାପ୍ତାହିକ ପତ୍ରିକା ପ୍ରକାଶର ବ୍ୟବସ୍ଥା କରିଥିଲେ, ତାହା ବିଫଳ ହେଲା ।

**ବିଶ୍ୱବିଦ୍ୟାଳୟ ସଭା :** ଖ୍ରୀ: ୧୯୧୭ ଅକ୍ଟୋବର ମାସରେ ନୂତନ ପ୍ରତିଷ୍ଠିତ ପାଟନା ବିଶ୍ୱବିଦ୍ୟାଳୟର ସର୍ବପ୍ରଥମ ସିନେଟରେ ମଧୁବାବୁ ଜଣେ ସଭ୍ୟ ମନୋନୀତ ହୋଇଥିଲେ । ସେହି ବର୍ଷ ସିଣ୍ଡିକେଟର ସଭ୍ୟରୂପେ ମଧ୍ୟ ମଧୁବାବୁ ମନୋନୀତ ହୋଇଥିଲେ ।

**ଦେଶମିଶ୍ରଣ ଡେପୁଟେସନ୍ :** ଖ୍ରୀ: ୧୯୧୭ ଅକ୍ଟୋବର ୧୯ ତାରିଖରେ କଟକରେ ଏକ ବିରାଟ ଦେଶମିଶ୍ରଣ ସଭା ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । ଗଞ୍ଜାମରୁ ହରିହର ପଣ୍ଡା, ଗଣେଶ୍ୱର ମହାପାତ୍ର, ମଧୁସୂଦନ ପାଣିଗ୍ରାହୀ, ମଞ୍ଜୁଷାର ରାଜା, କଟକରୁ କନିକାରାଜା, ମଧୁପୁରରାଜା ପ୍ରଭୃତି ବିଶିଷ୍ଟ ନେତାମାନେ ଉପସ୍ଥିତ ଥିଲେ । ସଭାରେ ଦେଶମିଶ୍ରଣ ଦାବୀ କରାଯାଇଥିଲା । ମଣ୍ଟେଗୁ ସାହେବଙ୍କ ସହିତ ଦେଖାକରି ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନାଧୀନରେ ରଖିବାକୁ ନିବେଦନ କରିବା ନିମନ୍ତେ ଏକ ଡେପୁଟେସନ୍‌ର ପ୍ରସ୍ତାବ ହୋଇଥିଲା ।

ଏହି ପ୍ରସ୍ତାବ ଅନୁସାରେ ଏକ ଡେପୁଟେସନ ମହାମାନ୍ୟ ଭାଇସରାୟ ଓ ଭାରତ ସଚିବ ମଣ୍ଟେଗୁ ସାହେବଙ୍କୁ ଡିସେମ୍ବର ୧୧ ତାରିଖ (୧୯୧୭) ଦିନ କଲିକତାରେ ଭେଟିଥିଲେ । ଡେପୁଟେସନ୍‌ରେ ଥିଲେ—ମାନ୍ୟବର କନିକାରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ, ସେରଗଡ଼ ରାଜା, ମାନ୍ୟବର ମଧୁବାବୁ, ମାନ୍ୟବର ଗୋପବନ୍ଧୁ ଦାସ, ବାବୁ ହରିହର ପଣ୍ଡା, ରାୟବାହାଦୁର ସୁଦାମଚରଣ ନାୟକ । ସେହିଦିନ ଉପରବେଳା ଭାଇସ୍‌ରାୟ ଓ ଭାରତ ସଚିବଙ୍କ ସହ, କନିକାରାଜା ଓ ମଧୁବାବୁଙ୍କର ଘରୋଇ ସାକ୍ଷାତ ହୋଇଥିଲା ଏବଂ ଅନ୍ୟାନ୍ୟ ପ୍ରସଙ୍ଗ ଭିତରେ ଦେଶମିଶ୍ରଣ ସମସ୍ୟା ଆଲୋଚିତ ହୋଇଥିଲା ।

ଏହି ଡେପୁଟେସନ୍ ଦଳକୁ ସମ୍ବର୍ଦ୍ଧନା ଜଣାଇବା ନିମନ୍ତେ କଲିକତାରେ ଓଡ଼ିଆ ଛାତ୍ରମାନେ ଏକ ସଭା କରିଥିଲେ । ଅସୁସ୍ଥତାବଶତଃ ମଧୁବାବୁ ଏହି ସଭାରେ ଉପସ୍ଥିତ ହୋଇପାରି ନ ଥିଲେ ।

**ଶାସନ ସଂସ୍କାର କମିଟିଙ୍କୁ ସ୍ମାରକପତ୍ର :** ଶାସନ ସଂସ୍କାର ସମ୍ବନ୍ଧରେ ବ୍ରିଟିଶ ସରକାର ଖ୍ରୀ: ୧୯୧୭ ନଭେମ୍ବର ମାସରେ ଯେଉଁ ଘୋଷଣା (ମଣ୍ଟେଗୁ ଚେମ୍‌ସ୍‌ଫୋର୍ଡ ଶାସନ ସଂସ୍କାର ଚିଠା) ପ୍ରକାଶକଲେ, ସେଥିର ଆଲୋଚନା ସମଗ୍ର ଭାରତବର୍ଷରେ ହୋଇଥିଲା । ଏହି ସଂସ୍କାରର ଚିଠାରେ ଓଡ଼ିଶା ଦେଶମିଶ୍ରଣ ଓ ସ୍ୱତନ୍ତ୍ର

ପ୍ରଦେଶ ସମ୍ବନ୍ଧରେ ଉଲ୍ଲେଖ ନଥିବାରୁ ଏ ସମ୍ବନ୍ଧରେ ଆଲୋଚନା କରି ଏକ ଡେପୁଟେସନ୍ ଯିବା ସାଧାରଣ ସଭାରେ ସ୍ଥିର ହୋଇଥିଲା । ଏହା ବ୍ୟତୀତ ଏକ ସ୍ମାରକ-ପତ୍ରରେ ଦାବୀ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ମଧୁବାବୁ କଟକରେ ନିଜ କୋଠିରେ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଏକ ସଭା ଆହ୍ୱାନ କରିଥିଲେ । ଏଠାରେ ଆଲୋଚନା ଫଳରେ ଓଡ଼ିଶାର ସ୍ୱତନ୍ତ୍ର ସମସ୍ୟାମାନଙ୍କ ସମ୍ବନ୍ଧରେ ଯେଉଁ ସ୍ମାରକପତ୍ର ଭାରତ ସଚିବ ମଣ୍ଟେଗୁ ଓ ବଡ଼ଲାଟ ଚେମସ୍ ଫୋର୍ଡ଼ଙ୍କୁ କଲିକତାଠାରେ ଦେବାପାଇଁ ସ୍ଥିର ହୋଇଥିଲା, ତାହା ରଚନା କରିବାରେ ମଧୁବାବୁ ବିଶେଷ ସାହାଯ୍ୟ କରିଥିଲେ । ସ୍ମାରକପତ୍ର ରଚନା କରିବାପାଇଁ ଏକ କମିଟି ମଧୁବାବୁଙ୍କ ନେତୃତ୍ୱରେ ଗଠିତ ହୋଇଥିଲା । ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ସମ୍ବନ୍ଧରେ ଏହି ସ୍ମାରକପତ୍ରରେ ବହୁ ଯୁକ୍ତି ଦିଆଯାଇଥିଲା । କଲିକତାରେ ମଣ୍ଟେଗୁ ଓ ଚେମ୍‌ସଫୋର୍ଡଙ୍କୁ ସାକ୍ଷାତ୍‌କରି ମଧୁବାବୁ, କନିକାର ରାଜା ଶ୍ରୀ ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ ପ୍ରମୁଖ ଯେଉଁ ସ୍ମାରକପତ୍ରଟି ଖ୍ରୀ: ୧୯୧୭ ଡିସେମ୍ବର ୧୧ ତାରିଖରେ ପ୍ରଦାନ କରିଥିଲେ, ତାହା କଲିକତାରେ ଓଡ଼ିଆମାନଙ୍କ ଭିତରେ ବିଶେଷ ଉତ୍ସାହ ସୃଷ୍ଟି କରିଥିଲା ।

ଏହି ସମ୍ପର୍କରେ ଡିସେମ୍ବର ମାସରେ କଲିକତାସ୍ଥ ଓଡ଼ିଆମାନଙ୍କର ଏକ ବିରାଟ ସାଧାରଣ ସଭା ମଧ୍ୟ ଅନୁଷ୍ଠିତ ହୋଇଥିଲା ଏବଂ ମଧୁବାବୁ ସେଠାରେ ଭାଷଣ ଦେଇଥିଲେ । ଖ୍ରୀ: ୧୯୧୭ ଜୁଲାଇ ମାସରେ ଭାରତ ସଚିବ ମି: ମଣ୍ଟେଗୁ ଭାରତ ଶାସନ ସଂସ୍କାର ସମ୍ବନ୍ଧରେ ବ୍ରିଟିଶ ସରକାରଙ୍କ ସିଦ୍ଧାନ୍ତ ଘୋଷଣା କରିଥିଲେ । ଭାରତ ଶାସନରେ ସଂସ୍କାରର ରୂପରେଖ ନିର୍ଣ୍ଣିତ ହେବାପାଇଁ ଅନୁସନ୍ଧାନ ଓ ମତାମତ ସଂଗ୍ରହର ଅବକାଶ ଥିଲା । ଏହି ସୁବିଧାରେ ଓଡ଼ିଆମାନେ ନିଜର ଦାବୀକୁ ମଣ୍ଟେଗୁ ଓ ଚେମ୍‌ସ୍‌ଫୋର୍ଡ଼ଙ୍କ ଆଗରେ ଉପସ୍ଥାପିତ କରିବାପାଇଁ ତତ୍ପର ହୋଇପଡ଼ିଲେ । ଏହା ପୂର୍ବରୁ ଉତ୍କଳ ସମ୍ମିଳନୀର ଖ୍ରୀ: ୧୯୧୬ ଡିସେମ୍ବର ୨୯ ଓ ୩୦ ତାରିଖରେ ବାଲେଶ୍ୱରରେ ଯେଉଁ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ସେଠାରେ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଦାବୀ ହାସଲ କରିବା ଦିଗରେ କାର୍ଯ୍ୟ କରିବାପାଇଁ ଏକ କମିଟି ମଧ୍ୟ ନିଯୁକ୍ତ ହୋଇଥିଲା । ସେଥିରେ ମଧୁବାବୁ କନିକା ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ, ବାବୁ ବ୍ରଜସୁନ୍ଦର ଦାସ, ପଣ୍ଡିତ ଗୋପବନ୍ଧୁ ଦାଶ, ରାୟ ବାହାଦୁର ସୁଦାମଚରଣ ନାୟକ, ଗଞ୍ଜାମ ସେରଗଡ଼ର ରାଜା (ସମ୍ମିଳନୀର ସଭାପତି)ଙ୍କୁ ନେଇ ଏକ କମିଟି ଗଠିତ ହୋଇଥିଲା ଏବଂ ଶାସନ ସଂସ୍କାର କମିଶନ ଆଗରେ ଏକ ସ୍ମାରକପତ୍ର ଦେବା ମଧ୍ୟ ସ୍ଥିର ହୋଇଥିଲା ।

**ଓଡ଼ିଶାର ମୁକୁଟବିହୀନ ରାଜା** : ଖ୍ରୀ: ୧୯୧୮ ମାର୍ଚ୍ଚ ମାସରେ କଟକର ଉଦୟଗୀପଡ଼ିଆରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ବସିଥିଲା । ବିଶିଷ୍ଟ ନେତା ଓ ସାହିତ୍ୟିକ ଫକୀରମୋହନ ସେନାପତି ସଭାପତି ହୋଇଥିଲେ । ମଧୁବାବୁଙ୍କ ବୟସ ସେତେବେଳକୁ ୭୦ ହୋଇଥିଲେ ମଧ୍ୟ ସେ ସମ୍ମିଳନୀର ପ୍ରାଣ ଥିଲେ ।

ସମ୍ମିଳନୀର ଏହି ଅଧିବେଶନଟି ଖ୍ରୀ ୧୯୧୭ରେ ହେବାର ଥିଲା, କିନ୍ତୁ ହୋଇପାରି ନଥିଲା । ଏଥିା ସହିତ ଏକ ଗ୍ରନ୍ଥ-ସମ୍ମିଳନୀର ମଧ୍ୟ ଆୟୋଜନ ହୋଇଥିଲା । ଉତ୍କଳ ସମ୍ମିଳନୀର ସଂଗଠନ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ କଟକଜିଲ୍ଲା କେନ୍ଦ୍ରାପଡ଼ାର ଜାତୀୟବାଦୀ ଦେଶସେବକ ଯୁବକ ଯଦୁମଣି ମଙ୍ଗରାଜ ସ୍ୱେଚ୍ଛାସେବକ ଦଳର ନାୟକ ବା କ୍ୟାପ୍‌ଟେନ୍ ହୋଇଥିଲେ । ଗ୍ରନ୍ଥ ସମ୍ମିଳନୀର ଉଦ୍ୟୋକ୍ତାମାନେ କଲିକତାର ବିଖ୍ୟାତ ଶିକ୍ଷାବିତ୍, ଦେଶସେବକ ବଙ୍ଗୀୟ ନେତା (ସାର୍) ଦେବପ୍ରସାଦ ସର୍ବାଧିକାରୀଙ୍କଠାରୁ (କଲିକତା ବିଶ୍ୱବିଦ୍ୟାଳୟର ଭାଇସ୍-ଚାନ୍‌ସଲର୍) ସଭାପତି ହେବାପାଇଁ ସମ୍ମତି ଆଣିଥିଲେ । ମାତ୍ର ଗ୍ରନ୍ଥନେତାମାନଙ୍କ ସହିତ ମଧୁବାବୁଙ୍କର ମନୋମାଳିନ୍ୟ ଘଟିବାରୁ ମଧୁବାବୁ ଦେବପ୍ରସାଦବାବୁଙ୍କୁ ସଭାପତି ନ ହେବାପାଇଁ କୁଆଡ଼େ ପରାମର୍ଶ ଦେଲେ । ମଧୁବାବୁଙ୍କ ପରାମର୍ଶକୁ ଗ୍ରହଣକରି ଦେବପ୍ରସାଦ ବାବୁ ଗ୍ରନ୍ଥ ସମ୍ମିଳନୀର ସଭାପତି ହେବାକୁ ମନାକରି ଦେଲେ ବୋଲି ଗ୍ରନ୍ଥନେତାମାନେ ଅଭିଯୋଗକଲେ । ତାପରେ ଗ୍ରନ୍ଥନେତାମାନେ ଫକୀରମୋହନଙ୍କୁ ଅନୁରୋଧ କରିବାରୁ ସେ ସଭାପତି ହେବାକୁ ସମ୍ମତି ଦେଲେ; କିନ୍ତୁ ସେ କଟକରେ ପହଞ୍ଚିବା ପରେ ମଧୁବାବୁଙ୍କ କବଳରେ ପଡ଼ି ଗ୍ରନ୍ଥମାନଙ୍କୁ ନିରାଶ କଲେ ବୋଲି ଗ୍ରନ୍ଥସମ୍ମିଳନୀର ନେତାମାନେ ପୁଣି ଦୋଷଦେଲେ । ଏହି ଘଟଣା ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ସାହୁ ଏକ ପ୍ରବନ୍ଧରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି—

"ତା' ପରେ—ସେତେବେଳେ ମୁଁ ଭାରତ ସେବକ ସମିତିରେ ଯୋଗଦାନ କରିସାରିଛି । ମଧୁବାବୁ ସେତେବେଳେ କଟକରେ ଉତ୍କଳ ସମ୍ମିଳନୀ କରୁଥାଆନ୍ତି— ତା ସହିତ ଗୋଟିଏ ଗ୍ରନ୍ଥ-ସମ୍ମିଳନୀ ମଧ୍ୟ । ଶ୍ରୀ ଯଦୁମଣି ମଙ୍ଗରାଜ ଭଲେଣ୍ଟିଅରମାନଙ୍କର କ୍ୟାପ୍‌ଟେନ୍ ହୋଇଥାନ୍ତି । ମଧୁବାବୁଙ୍କ ସହିତ କଜିଆ ହେଲା । ଯାହାହେଉ, ଉତ୍କଳ ସମ୍ମିଳନୀ ପରେ ଗ୍ରନ୍ଥ ସମ୍ମିଳନୀ ହେବାର କଥା ।

"ସେ ବର୍ଷ ଦେବପ୍ରସାଦ ସର୍ବାଧିକାରୀ ଗ୍ରନ୍ଥ-ସମ୍ମିଳନୀର ସଭାପତି ହେବାକୁ ସ୍ୱୀକୃତି ଦେଇଥିଲେ; କିନ୍ତୁ ମଧୁବାବୁ ତାଙ୍କୁ ଡରେଇଥିଲେ । ଏଣୁ ସର୍ବାଧିକାରୀ ମନାକରିଦେଲେ । ମୁଁ ସେତେବେଳେ କଟକ ଆସିଥାଏଁ । ଯଦୁମଣି ବାବୁ ସେତେବେଳେ ସୂତାହାଟରେ ଥାଆନ୍ତି । ସେ ମୋତେ କହିଲେ—'ଫକୀରମୋହନ ବାବୁଙ୍କୁ ଗ୍ରନ୍ଥ ସମ୍ମିଳନୀର ସଭାପତି ହେବାପାଇଁ ଆପଣ ଆମକୁ ସାହାଯ୍ୟ କରନ୍ତୁ ।' ସେଥିପାଇଁ ମୁଁ ବାଲେଶ୍ୱର ଗଲି । ଫକୀର-ମୋହନ ବାବୁ ମଧ୍ୟ ସଭାପତି ହେବାକୁ ରାଜିହେଲେ । ମୁଁ କଟକ ଫେରିଆସିଲି ।

"ଏଣେ ମଧୁବାବୁ ଫକୀରମୋହନ ବାବୁଙ୍କୁ ଷ୍ଟେସନରୁ ଉତ୍କଳ ସମ୍ମିଳନୀ ପାଇଁ ତାଙ୍କ ଘରଆଡ଼କୁ ନେଇଗଲେ—ଆମର ଆଉ କର୍ତ୍ତୃତ୍ୱ ତାଙ୍କ ଉପରେ ରହିଲାନାହିଁ । ଆମେ ଶେଷ ମୁହୂର୍ତ୍ତରେ ଜଣେ ଆମେରିକାନ୍ ମହିଳାଙ୍କୁ ସଭାପତିକରି କାର୍ଯ୍ୟ ନିର୍ବାହ କଲୁଁ । ଫକୀରମୋହନ ବାବୁ ଶେଷ ଜୀବନରେ ବଡ଼ କୋମଳ ଓ ନମନୀୟ ଥିଲେ, ତା'

ନ ହେଲେ ଏପରି ଘଟଣା ହୋଇ ନ ଥାଆନ୍ତା । × ×" ('ଫକୀରମୋହନ ପରିକ୍ରମା' ପୃ ୨୫, ୧୯୫୫)

ଟୀକାଟିପ୍ପଣୀ ଅନାବଶ୍ୟକ । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଶାର ଜଣେ ବିଖ୍ୟାତ ସମାଜସେବୀ ଓ ତ୍ୟାଗୀ । ସେ ପରିଣତ ବୟସରେ, ଘଟଣାର ପ୍ରାୟ ୩୭ ବର୍ଷ ପରେ ଏ ବିବରଣ ପ୍ରଦାନ କରିଥିଲେ । ଏହି ଘଟନାର ନୀତି ଅପେକ୍ଷା ଜିଦ୍ ହିଁ ପ୍ରଧାନ କାରଣ ବୋଲି ଜଣାଯାଉଛି । ମଧୁବାବୁ ଜିଦ୍‌ଖୋର ଥିଲେ, ଏହା ଅସ୍ୱୀକାର କରିହେବନାହିଁ । କେତେକ ସହଯୋଗୀଙ୍କ ମତରେ ସେ 'ଭୟଙ୍କର' ଜିଦ୍‌ଖୋର ଥିଲେ । ଜିଦ୍ ଯୋଗୁଁ ଅନେକ କ୍ଷେତ୍ରରେ ଅସୁବିଧା ଓ ବିଘ୍ନ ମଧ୍ୟ ଘଟିଛି । ଜିଦ୍ ଯୋଗୁଁ ସେ ମନ୍ତ୍ରିତ୍ୱ ତ୍ୟାଗ କଲେ ବୋଲି ତାଙ୍କର ଜଣେ ବନ୍ଧୁ, ବିହାରର ନେତା ଡାକ୍ତର ସଚ୍ଚିଦାନନ୍ଦ ସିଂହ 'ଶୋକବାର୍ତ୍ତା'ରେ ଲେଖିଛନ୍ତି ।

"I knew Madhusudan Das intimately for a long time, both as a public man and as a colleague in the Government of Bihar and Orissa, when he was the Minister and I the Finance Member. I found him a man of principles, assiduous in the discharge of his duties, straight forward and conscientious but a little eccentric. It was his eccentricity which made him suddenly resign the Ministership not by reason of a vote of censure by the Legislature, but because the Governor did not agree to his proposal—that instead of drawing his salary as a minister, he should be allowed to maintain himself by practising at the Bar and also working as Minister without salary, × ×" '(Life of Madhusudan Das as seen by many eyes.' P. 12)

ପଦ୍ମମଣି ମଙ୍ଗରାଜଙ୍କ ନେତୃତ୍ୱରେ କେତେଜଣ ଛାତ୍ର ସ୍ୱେଚ୍ଛାସେବକ ହେବାକୁ ଅନିଚ୍ଛା ପ୍ରକାଶ କରିବାରୁ ମଧୁବାବୁ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କ ସାହାଯ୍ୟ ଲୋଡ଼ିଥିଲେ ।

ସେତେବେଳେ ଦୋଳକୁଟିର ଅଳ୍ପ ପୂର୍ବରୁ କର୍ଣ୍ଣେଲର ନୀଳମାଧବ ମନ୍ଦିର ଦର୍ଶନ କରିବାପାଇଁ ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ନେତୃତ୍ୱରେ

ସତ୍ୟବାଦୀ ବିଦ୍ୟାଳୟର ଛାତ୍ରବୃନ୍ଦ ଯାଇଥିଲେ । ପଣ୍ଡିତଦ୍ୱୟ ବିଦ୍ୟାଳୟର ଶିକ୍ଷକ ଥିଲେ । ଛାତ୍ରମାନେ ଫେରି ଆସିବା ବାଟରେ ଜଟଣୀ ଷ୍ଟେସନରେ ବିଶ୍ରାମ ନେଉଥିଲେ । ଏଠାରୁ ରେଲଗାଡ଼ିରେ ସାକ୍ଷିଗୋପାଳ ଫେରିଯିବାର କଥା । ଦିନ ୪ଟା ବେଳେ ଗାଡ଼ି ଛାଡ଼ିବ, "ମାତ୍ର ପ୍ରାୟ ବାରଟା ବେଳେ ଶ୍ରୀ ବ୍ରଜସୁନ୍ଦର ଦାସ ଓ ଗୋପବନ୍ଧୁ ଦାଶ ଆସି ପହଞ୍ଚିଲେ । ଗୋପବନ୍ଧୁ ବାବୁ ହଠାତ୍ କହିଲେ, 'କଟକରେ ଯେଉଁ ଛାତ୍ରମାନେ ଉତ୍କଳ ସମ୍ମିଳନୀରେ ସ୍ୱେଚ୍ଛାସେବକ ହେବାର ଥିଲି, ମିଃ ଦାସଙ୍କ ସଙ୍ଗେ ଅପଡ଼ହୋଇ ସେମାନେ ସ୍ୱେଚ୍ଛାସେବକ ହେବେନାହିଁ ବୋଲି ଜଣାଇଦେଲେ । ମୋ ପାଖକୁ ବ୍ରଜସୁନ୍ଦର ଏ ଖବର ଘେନି ଆସିଛନ୍ତି । ଆମ ସ୍କୁଲରୁ ସ୍ୱେଚ୍ଛାସେବକ ଯାଇପାରିଲେ କାମ ଚଳିଯିବ ବୋଲି ମିଃ ଦାସ ଚିଠି ଲେଖିଛନ୍ତି । ମୁଁ ଷାଠିଏ ଜଣ ସ୍ୱେଚ୍ଛାସେବକ ନେଇ ଯିବି ବୋଲି ଆଜି ଟେଲିଗ୍ରାମ୍ କରିଚି ।" ଶେଷରେ ଷାଠିଏ ଜଣ ଛାତ୍ର, ଗୋପବନ୍ଧୁ ବାବୁ, ମୁଁ (ନୀଳକଣ୍ଠ ଦାସ), ଗୋଦାବରୀଶ ଏବଂ କେତେଜଣ ଆଗ୍ରହୀ ଶିକ୍ଷକ କଟକ ଆସିଲୁ । ଅନ୍ୟମାନେ ସତ୍ୟବାଦୀକୁ ଫେରିଗଲେ ।

"ଗାଡ଼ିରୁ ଓହ୍ଲାଇଲି ମାତ୍ରେ ଦେଖିଲୁ ହର୍ଷୋତ୍‌ଫୁଲ୍ଲ ବଦନରେ ମିଃ ଦାସ ଏବଂ ତାଙ୍କର କେତେକ ବନ୍ଧୁ ଗୁଡ଼ିଏ ଘୋଡ଼ାଗାଡ଼ି ରଖାଇ ପ୍ଲାଟଫର୍ମ ଭିତରେ ଆମକୁ ଅପେକ୍ଷା କରିଛନ୍ତି । ହଠାତ୍ ଗୋପବନ୍ଧୁଙ୍କୁ ସେ ନିବିଡ଼ ଆଲିଙ୍ଗନ କରିସାରି ମୋତେ ଓ ଗୋଦାବରୀଶଙ୍କୁ କୁଣ୍ଢାଇ ପକାଇ କହିଲେ, 'ଆସ ନାଳନ୍ଦାର ଗୁରୁ ! ଆଉ କର୍ମୀ ଅଭାବ ହେବେନାହିଁ । ମଙ୍ଗରାଜ ମଙ୍ଗ ମୋଡ଼ିପାରିବ ନାହିଁ ।'

"ସମ୍ମିଳନୀ ଆରମ୍ଭହେଲା । ଯେଉଁମାନେ ଆଗରୁ ସ୍ୱେଚ୍ଛାସେବକ ହୋଇଥିଲେ, ସେମାନେ ଦର୍ଶକ ଟିକଟ ଘେନିଆସି ସମ୍ମିଳନୀରେ ବସିଥାନ୍ତି ; ମାତ୍ର ଆମ୍ଭମାନଙ୍କର ଶାନ୍ତି-ଶୃଙ୍ଖଳା ରକ୍ଷା ଯୋଜନା ଦେଖିବାପରେ ସେମାନଙ୍କ ଆଡ଼ୁ ଆଉ କୌଣସି ପ୍ରକାର ଗୋଳମାଳ ହୋଇ ନଥିଲା । ସଭାସ୍ଥଳକୁ ଲୋକମାନେ ଟିକଟ ଦେଖାଇ ଆସୁଥାନ୍ତି । ସେ ବର୍ଷର ଉତ୍କଳ ସମ୍ମିଳନୀରେ ଏକ ପ୍ରକାର ଉତ୍ସାହ ଓ ଉତ୍ତେଜନା ଥିବାରୁ ବହୁ ଭଦ୍ରବ୍ୟକ୍ତି ଉତ୍କଳର ସବୁ ଅଞ୍ଚଳରୁ ଆସିବାର ଥିଲି ।

"ମିଃ ଦାସଙ୍କ ଆଦେଶ ଥିଲି ଯେ, ଯେକୌଣସି ବ୍ୟକ୍ତି ହେଉ ପଛକେ, ଟିକଟ ନ ଦେଖେଇଲେ କାହାରିକି ପ୍ରବେଶ କରିବାକୁ ସ୍ୱେଚ୍ଛାସେବକମାନେ ଦେବେ ନାହିଁ । ଚାରିଜଣ ସ୍ୱେଚ୍ଛାସେବକ ଦୁଇଟି ସ୍ଥାନରେ ଟିକଟ ଦେଉଥାନ୍ତି ଏବଂ ଆଠଜଣ ସ୍ୱେଚ୍ଛାସେବକ ପ୍ରଧାନ ପ୍ରବେଶଦ୍ୱାରରେ ଜଗି ରହିଥାନ୍ତି । ଅନ୍ୟ ତିନି ଫାଟକରେ ଦୁଇ ଦୁଇ ଜଣ ନିଯୁକ୍ତ ଥାନ୍ତି । ସେ ବାଟରେ ପ୍ରବେଶ କରିବାକୁ ମନା; ମାତ୍ର ଭିନ୍ନ ଭିନ୍ନ ଶ୍ରେଣୀର ଭଦ୍ରବ୍ୟକ୍ତି ଭିନ୍ନ ଭିନ୍ନ ବାଟରେ ବାହାରକୁ ଯିବାର ବନ୍ଦୋବସ୍ତ ଥାଏ ।

"ଜଣେ ଭଦ୍ରବ୍ୟକ୍ତିଙ୍କୁ ସ୍ୱେଚ୍ଛାସେବକମାନେ ବିନା ଟିକଟରେ ଯିବାକୁ ଅନୁମତି ଦେଲେନାହିଁ । ଗୋଦାବରୀଶବାବୁ ତାଙ୍କର ପରିଚୟ ଦେବାରୁ ସେ ପ୍ରବେଶ କରିଥିଲେ;

କଲୁ ବାଟରେ ଆଉ କେତେକ ସ୍ୱେଚ୍ଛାସେବକ ତାଙ୍କୁ ଅଟକାଇ ଦେଲେ । ମିଃ ଦାସ ଆସି ଘଟଣା ସ୍ଥଳରେ ପହଞ୍ଚି ଗମ୍ଭୀରଭାବରେ ସ୍ୱେଚ୍ଛାସେବକମାନଙ୍କୁ କହିଲେ—'ତାଙ୍କୁ ଛାଡ଼ିଦିଅ ।' ତଥାପି ସତ୍ୟବାଦୀର ଛାତ୍ରମାନେ ନିର୍ଦ୍ଧାରିତ ଶୃଙ୍ଖଳାକୁ ବ୍ୟତିକ୍ରମ କରି ତାଙ୍କୁ ଅନୁମତି ଦେବାରେ କୁଣ୍ଠା ପ୍ରକାଶକଲେ । ଗୋପବନ୍ଧୁ ପହଞ୍ଚି କହିଲେ 'ସେ ପରା କବିବର ଗଙ୍ଗାଧର ମେହେର, ତାଙ୍କୁ ଛାଡ଼ିଦିଅ ।' ପିଲମାନେ ତାଙ୍କୁ ଚହ୍ନି ନ ଥିଲେ । ତାଙ୍କୁ ବିନୀତ ଅଭିବାଦନ କଲେ । ଗଙ୍ଗାଧର ମେହେର ଅଳ୍ପ ଅଳ୍ପ ହସୁଥାନ୍ତି । ଜଣେ ସ୍ୱେଚ୍ଛାସେବକ ସଭାମଣ୍ଡପକୁ ଯାଇ ଗୋଟିଏ ବିଶିଷ୍ଟ ଅତିଥି ଟିକେଟ ଆଣିଲେ ମି. ଦାସ ସତ୍ୟବାଦୀ ଛାତ୍ରଙ୍କ ଶୃଙ୍ଖଳାଜ୍ଞାନ ଦେଖି ଅବାକ୍ ହୋଇଗଲେ ଏବଂ କହିଲେ, Nilakantha, your boys are fine !' ସେହିଠାରେ ଠିଆହୋଇ ସେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲେ । 'ନେପୋଲିଅନ୍ ବୋନାପାର୍ଟଙ୍କ ଜୀବନରେ ଏହିପରି ଏକ ଅନୁଭୂତି ଜଣେ ବିଶ୍ୱସ୍ତ ପ୍ରହରୀଠାରୁ ହୋଇଥିଲା । ନେପୋଲିଆନ୍ ସମ୍ରାଟ୍ ଥିବାରୁ ପ୍ରହରୀକୁ ଯଥେଷ୍ଟ ପୁରସ୍କାର ଦେଇଥିଲେ । ଆମେ ସବୁ କାଙ୍ଗାଳ କି ପୁରସ୍କାର ଦେବୁ ? ଏତିକବେଳେ ଜନତାମଧ୍ୟରୁ ଆନନ୍ଦ ଧ୍ୱନି ଉଠିଲା ଏବଂ ମିଃ ଦାସଙ୍କୁ 'Uncrowned King of Orissa' ଧ୍ୱନିରେ ଜନତା ଅଭିବାଦନ ଜଣାଇଲା । ମି. ଦାସ କବିବରଙ୍କୁ ମାଲ୍ୟଦେଇ ପୂଜିତ କଲେ ଏବଂ ସେଥିରୁ ଖଣ୍ଡିଏ ସତ୍ୟବାଦୀର ସ୍ୱେଚ୍ଛାସେବକ ଚନ୍ଦ୍ରଶେଖରଙ୍କ ବେକରେ ପକାଇଦେଲେ । ସେହି ସମୟଠାରୁ ସମ୍ମିଳନୀର ଶେଷ ପର୍ଯ୍ୟନ୍ତ ସଭାକୁ ପ୍ରବେଶ ଓ ବହିର୍ଗମନ ନିୟମ ସମସ୍ତେ ପାଳନ କରିଥିଲେ ।

"ସେଦିନ ଗୋପବନ୍ଧୁ ବାବୁଙ୍କୁ ଦେଶମିଶ୍ରଣ ସମ୍ପର୍କରେ ବକ୍ତୃତା ଦେବାକୁ ଜନତାର ଅନୁରୋଧ ଶୁଣି ଆମ୍ଭେମାନେ ଅତ୍ୟନ୍ତ ଆହ୍ଲାଦିତ ହୋଇଥିଲୁ । ମି. ଦାସ ଗୋପବନ୍ଧୁଙ୍କ କାନ୍ଧରେ ହାତ ପକାଇ ତାଙ୍କୁ ଆଣି ବକ୍ତୃତା ମଞ୍ଚରେ ଠିଆ କରାଇ କହିଲେ, 'ଗୋପବନ୍ଧୁ ଆଉ ଗୋପ୍ୟ ହୋଇ ରହି ନ ପାରେ । ଏସମ୍ପର୍କରେ ମୋର କହିବାର ନଥିଲା, କାରଣ ଲୋକପ୍ରାଣରେ ମୋ ଗୋପବନ୍ଧୁ ସ୍ଥାନ ପାଇଛି । ସଭାପତିଙ୍କ ଅନୁମତି ହେଉ ।' ସଭାପତି ମହାଶୟ ଭକ୍ତ ବିନମ୍ର ସ୍ମିତ ବଦନରେ ଗୋପବନ୍ଧୁଙ୍କୁ କେବଳ ଚାହିଁ ଦେଇ ଅନୁମତି ଦିଅନ୍ତେ ଜଳଦ ଗମ୍ଭୀର ସ୍ୱରରେ ଗୋପବନ୍ଧୁ ଉତ୍କଳର ବିଚ୍ଛିନ୍ନ ଅଞ୍ଚଳ ସିଂହଭୂମି, ମେଦିନୀପୁରର ଦୁରବସ୍ଥା ବର୍ଣ୍ଣନାକରି ଯେଉଁ ବକ୍ତୃତା ଦେଇଥିଲେ, ତାହା ଜନତାକୁ କନ୍ଦାଇ ଦେଲା । ଟିକେଟ ବନ୍ଧା ଓ ପ୍ରବେଶ ତଥା ବହିର୍ଗମନ ବନ୍ଦ କରି ଆମ୍ଭେମାନେ ନିବିଷ୍ଟ ମନରେ ଶୁଣିଲୁ । ବ୍ରିଟିଶ୍ ସରକାରଙ୍କର ଅଯୌକ୍ତିକ ଉତ୍କଳ ବିଚ୍ଛେଦର ତୀବ୍ର ଓ ନିର୍ଭୀକ ସମାଲୋଚନା ଗୋପବନ୍ଧୁଙ୍କୁ ଅତି ଉଚ୍ଚକୋଟୀର ବକ୍ତା ଓ କର୍ମବୀର ବୋଲି ଲୋକଙ୍କ ମନରେ ଧାରଣା ଜନ୍ମାଇ ଦେଲା ।

"ସେଦିନ ରାତିରେ ମି. ଦାସ ଗୋଟିଏ ଭୋଜିର ବନ୍ଦୋବସ୍ତ କରିଥିଲେ । କେତେଜଣ ରାଜା ଓ ଏମାରମଠର ମହନ୍ତ ମହାରାଜ ଆସି ଆମ ବସାଘର ପ୍ରାଙ୍ଗଣରେ ବସିଲେ । ମିଃ ଦାସ ଗୀତ ଓ ଶ୍ଳୋକାନ୍ତ ଶୁଣିବାକୁ ଆଗ୍ରହ ପ୍ରକାଶକଲେ । ତାହା ବେଶ୍ ଆନନ୍ଦଦାୟକ ହେଲା । ମି. ଦାସ, ଗୋପବନ୍ଧୁ, ମୁଁ, ଗୋଦାବରୀଶ ମଧ୍ୟ ସେଥିରେ ଯୋଗ ଦେଲୁ । ଆମକୁ ସ୍ୱର ଧରି ବୋଲି ଆସୁନଥାଏ, ତେଣୁ ବେଶ୍ ହସ ଜମୁଥାଏ । ଶ୍ଳୋକାନ୍ତ ବନ୍ଦ କରାଇ ସଂସ୍କୃତ ଭାଷା ଓ ସାହିତ୍ୟର ଗାମ୍ଭୀର୍ଯ୍ୟ ଓ ଗୁରୁତ୍ୱ ବର୍ଣ୍ଣନାକରି ମି. ଦାସ ଗୋଟିଏ ଆଲୋଚନାମୂଳକ ଭାଷଣ ଦେଲେ । ମିଃ ଦାସ ମୋତେ ଅନୁରୋଧ କରିବାରୁ ମୁଁ ଆଉ-ଦିନେ ସତ୍ୟବାଦୀ ପିଲାଙ୍କୁ ଛୁଟିଦେଲି । ଚାରି ଚାରି ଜଣଙ୍କ ପାଇଁ ଘୋଡ଼ାଗାଡ଼ିର ଆୟୋଜନ ହେଲା । ମିଃ ଦାଶଙ୍କ କଥା ଅନୁସାରେ ଗୋଦାବରୀଶ ଛାତ୍ରମାନଙ୍କୁ କଟକସହର ବୁଲେଇ ଦେଖେଇଲେ । ନିଜେ ମିଃ ଦାସ ପିଲାମାନଙ୍କୁ ନେଇ ଐତିହାସିକ ଦୁର୍ଗ ବାରବାଟୀ ପରିଦର୍ଶନରେ ଗଲେ । ପ୍ରବେଶ କାଳରୁ ବାହାରି ଆସିବା ଯାଏ ସେ ବରାବର ପ୍ରଗଲ୍ଭ କଥା କହୁଥାନ୍ତି । ମୁହଁ କାନ୍ଦ କାନ୍ଦ ହୋଇ ଅସୁଥାଏ । ଆମ୍ଭେମାନେ ସତ୍ୟବାଦୀ ଫେରି ଆସିଲୁ । ସତ୍ୟବାଦୀର ମର୍ଯ୍ୟାଦା ଓ ଖ୍ୟାତି ଆହୁରି ବଢ଼ିଗଲା ।" (ଆତ୍ମଜୀବନୀ—ପଣ୍ଡିତ ନୀଳକଣ୍ଠ ଦାସ—ପୃ. ୧୩୬-୧୩୯ )

ଛାତ୍ରସମାଜ ପ୍ରତି ମଧୁବାବୁଙ୍କର ଅତ୍ୟନ୍ତ ଆଗ୍ରହ ଓ ସ୍ନେହ ଥିଲା । ସେ କଲିକତାରୁ କଟକ ଫେରିଆସି ଓକିଲାତି ଓ ରାଜନୈତିକ ଜୀବନ ଯାପନ ଆରମ୍ଭକରିବା ସଙ୍ଗେ ସଙ୍ଗେ ଛାତ୍ରସମାଜ ପ୍ରତି ତାଙ୍କର କର୍ତ୍ତବ୍ୟ ଥିବା ଅନୁଭବ କରିଥିଲେ ଏବଂ ଛାତ୍ର-ସମାଜର ଉନ୍ନତିକଳ୍ପେ ବିବିଧ ଉପାୟ ଅବଲମ୍ବନ କରି ଛାତ୍ରସମାଜକୁ ସାହାଯ୍ୟ କରୁଥିଲେ । ସେ କଟକ ଫେରିବାର ପ୍ରାୟ କୋଡ଼ିଏ ବର୍ଷ ପରେ ଖ୍ରୀ: ୧୯୦୩ରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠିତ ହୋଇଥିଲା । ଏହି ଖ୍ରୀ: ୧୯୦୩ଠାରୁ ସଙ୍ଘବଦ୍ଧଭାବରେ ଛାତ୍ରସମାଜ ଓଡ଼ିଶା ସମସ୍ୟା ସମାଧାନ ଦିଗରେ ପଦକ୍ଷେପ ନେଇଥିଲେ । ଓଡ଼ିଆ ଜାତୀୟ ଅନୁଷ୍ଠାନ ସହିତ ଛାତ୍ରମାନେ ଜଡ଼ିତ ହେବାର ଆଗ୍ରହ ପ୍ରକାଶକରି ସର୍ବବିଧ ତ୍ୟାଗପାଇଁ ପ୍ରସ୍ତୁତ ଥିବା ଜଣାପଡ଼ିଥିଲା । ଛାତ୍ର ସମାଜର ସ୍ୱେଚ୍ଛାସେବକ ବାହିନୀରୂପେ କାର୍ଯ୍ୟ ଉତ୍କଳ ସମ୍ମିଳନୀକୁ ବିଶେଷ ବଳ ଓ ସାହସ ପ୍ରଦାନ କରିଥିଲା; କିନ୍ତୁ ଉତ୍କଳ ସମ୍ମିଳନୀ ସମୟର 'ଅସହଯୋଗ' କ୍ଷୁଦ୍ର ଘଟଣାଟି ଅଳ୍ପକ୍ଷଣ ସ୍ଥାୟୀ ଥିଲା । ଦେଶର ସମଗ୍ର ଛାତ୍ରସମାଜ ଉପରେ ଏହାର ପ୍ରଭାବ ପଡ଼ି ନଥିଲା ।

ମଧୁବାବୁ ସବୁବେଳେ ଛାତ୍ରସମାଜକୁ ସଂଗଠିତ କରିବା ଦିଗରେ ଯତ୍ନପରୋନାସ୍ତି ଚେଷ୍ଟା କରୁଥିଲେ । ସମ୍ମିଳନୀର ପ୍ରଥମ ଅଧିବେଶନ ପୂର୍ବରୁ ମଧୁବାବୁ ନିଜ କୋଠିରେ ଛାତ୍ରସମାଜକୁ ଯେଉଁ ଉଦ୍‌ବୋଧନ ଦେଇଥିଲେ, ସେଥିରୁ ତାଙ୍କର ଲକ୍ଷ୍ୟ ଓ କାର୍ଯ୍ୟପ୍ରଣାଳୀ ସ୍ପଷ୍ଟ ହୋଇଥିଲା । ଖ୍ରୀ: ୧୯୦୩ ଅଗଷ୍ଟ ମାସ ୨୦ ତାରିଖ ଅପରାହ୍ଣରେ ମଧୁବାବୁଙ୍କ ଆମନ୍ତ୍ରଣକ୍ରମେ ତାହାଙ୍କ କୋଠିରେ ଦେଶୀୟ ଓ ୟୁରୋପୀୟ ବହୁ ଭଦ୍ରବ୍ୟକ୍ତି ଓ ଛାତ୍ର

ସମବେତ ହୋଇଥିଲେ । ଓଡ଼ିଶାର କମିଶନର ଶ୍ରୀ କେ. ଜି. ଗୁପ୍ତଙ୍କ ଦ୍ୱିତୀୟ ପୁତ୍ର ଇଲେକ୍‌ଟ୍ରିସିଟି (ତଡ଼ିତ୍ ବିଜ୍ଞାନ) ସମ୍ବନ୍ଧରେ ଉଚ୍ଚଶିକ୍ଷା ଲାଭକରିବାପାଇଁ ଆମେରିକା ଯାଉଥିବାରୁ ତାଙ୍କୁ ଅଭିନନ୍ଦନ କରିବା ଏହି ମିଳନର ଏକ ଉଦ୍ଦେଶ୍ୟ ଥିଲା । କମିଶନରଙ୍କ ପୁତ୍ର ଯୁବକ ବୀରେନ୍ଦ୍ରକୁମାର ଗୁପ୍ତଙ୍କ ଆଦର୍ଶ ଓଡ଼ିଆ ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ କରୁ ଏହା ମଧ୍ୟ ମଧୁବାବୁଙ୍କର ଏକ ଲକ୍ଷ୍ୟ ଥିଲା । ଛାତ୍ରମାନଙ୍କପାଇଁ କ୍ରିକେଟ ଖେଳ ଓ ନୌକାଖେଳ ଏବଂ ଗୀତବାଦ୍ୟର ବ୍ୟବସ୍ଥା ମଧ୍ୟ ହୋଇଥିଲା । ଜଳପାନରେ ସମସ୍ତେ ଆପ୍ୟାୟିତ ହୋଇଥିଲେ । ମଧୁବାବୁ ଶେଷରେ ଛାତ୍ରସମାଜକୁ ଲକ୍ଷ୍ୟକରି କହିଥିଲେ, "ବୀରେନ୍ଦ୍ରକୁମାରଙ୍କ ଆଦର୍ଶ ସମସ୍ତ ଛାତ୍ରସମାଜକୁ ଉଦ୍‌ବୁଦ୍ଧ କରୁ । ସେ ଗୃହବର୍ଷ ବିଦେଶରେ ରହି ସ୍ୱଦେଶକୁ ଫେରିଲାପରେ ସ୍ୱଦେଶର ମୁଖ ଉଜ୍ଜ୍ୱଳ କରନ୍ତୁ, ଏହାହିଁ କାମନା । ତାଙ୍କୁ ମୋର ଆଶୀର୍ବାଦ ଜଣାଉଛି ।" ମଧୁବାବୁ ଛାତ୍ରମାନଙ୍କୁ ପୁଣି କହିଲେ, "ଛାତ୍ରମାନେ ଦେଶର ଆଶାର ସ୍ଥଳ । ସେମାନଙ୍କର ଶିକ୍ଷା ଓ ଚରିତ୍ର ଉନ୍ନତ ମୁଁ ଏକାନ୍ତ କାମନା କରେ ଏବଂ ସେମାନଙ୍କ ସଙ୍ଗେ ମିଶି ଉପଦେଶ ଦେବାକୁ ଏକାନ୍ତ ପ୍ରସ୍ତୁତ ଅଛି । ଯେ କେହି ଛାତ୍ର ଇଚ୍ଛାକଲେ ସେ ଅବାଧରେ ମୋର କୋଠିକୁ ଆସି ଦେଖା କରିପାରିବେ ।" ଛାତ୍ରମାନଙ୍କ ପ୍ରତି ତାଙ୍କର ସ୍ନେହ ଓ ସହାନୁଭୂତି ଥିବା ସର୍ବକ୍ଷେତ୍ରରେ ପ୍ରକାଶ ପାଇଥିଲା । ବହୁ ଛାତ୍ର ଏ ସୁଯୋଗକୁ ଅବହେଳା କରି ନ ଥିଲେ । ଯେଉଁମାନେ କଲେଜ ଛାଡ଼ି ଅଳ୍ପବୟସ ହେଲା ସାଧାରଣ ହିତକର କାର୍ଯ୍ୟରେ ମନ ବଳାଇଥିଲେ, ସେମାନେ ମଧୁବାବୁଙ୍କଠାରୁ ବହୁ ଉତ୍ସାହ ପାଇଛନ୍ତି । ତାଙ୍କର ସତ୍‌ସଙ୍ଗ, ସଦୁପଦେଶ, ଅକପଟ ସ୍ନେହ ଓ ସହାନୁଭୂତି ପାଇ ବହୁ ଛାତ୍ର ଉଚ୍ଚଶିକ୍ଷା ଲଭ କରିପାରିଛନ୍ତି ।

ସତ୍ୟବାଦୀ ବିଦ୍ୟାଳୟ ଓ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ପ୍ରଭୃତି ଶିକ୍ଷକମାନଙ୍କ ସହିତ ମଧୁବାବୁଙ୍କର ଭଲ ସମ୍ପର୍କ ଥିଲା । ମଧୁବାବୁ ବେଳେବେଳେ ସତ୍ୟବାଦୀ ଯାଇ ବିଦ୍ୟାଳୟ ଓ କର୍ମୀମାନଙ୍କର କାର୍ଯ୍ୟକଳାପ ଦେଖୁଥିଲେ । ଏଥିରେ ସେ ସନ୍ତୋଷ ଲଭ କରୁଥିଲେ ।

"ପ୍ରତିବର୍ଷ ଡିସେମ୍ବର ବା ଜାନୁଆରି ମାସରେ ସତ୍ୟବାଦୀ ବିଦ୍ୟାଳୟର ବାର୍ଷିକ ସମ୍ମିଳନୀ ହୁଏ । ବର୍ଷେ ମିଃ ମଧୁସୂଦନ ଦାସଙ୍କୁ ସଭାପତି ହେବାପାଇଁ ଅନୁରୋଧ କରାଯାଇଥିଲା । ତାଙ୍କୁ ସେତେବେଳେ ଜ୍ୱର ହୋଇଥିବାରୁ, ଅନୁରୋଧ ରକ୍ଷାକରି ପାରିଲେ ନାହିଁ । ଗୋପବନ୍ଧୁ ବାବୁ ଓ ନୀଳକଣ୍ଠ ବାବୁ ପ୍ରଭୃତି ଶିକ୍ଷକମାନେ ଗଞ୍ଜାମର ଓଡ଼ିଆଜାତିପ୍ରେମୀ ଓ ବିଶିଷ୍ଟ ନେତା ହରିହର ପଣ୍ଡା ଓକିଲଙ୍କୁ ସଭାପତି କଲେ । ହରିହର ବାବୁ ସତ୍ୟବାଦୀରେ ପହଞ୍ଚିଲେ, କିନ୍ତୁ ସମୟ ଅଭାବରୁ ଅଭିଭାଷଣ ଲେଖି ନଥିଲେ । ସଭା ପୂର୍ବରୁ ସେ ଅଭିଭାଷଣ ଲେଖି ସଭାକୁ ଗଲେ । ହରିହର ବାବୁଙ୍କ ସଭାପତିତ୍ୱରେ ସଭା ଆରମ୍ଭ ହେଲା । ପୁରୀ ଏମାରମଠ ମହନ୍ତ ମହାରାଜଙ୍କ ସହିତ ନିଜେ ମି. ଦାସ ଆସି ଅପ୍ରତ୍ୟାଶିତ ଭାବରେ ପହଞ୍ଚିଗଲେ । ତାଙ୍କ ଦେହରେ ଜ୍ୱର ଥାଏ । ସେ କହିଲେ, 'ପିଲାଙ୍କ

କଥା ମନେପଡ଼ିଲା, ଆଉ ସମ୍ଭାଳି ହେଲନାହିଁ ।' କାର୍ଯ୍ୟକ୍ରମ ମଧ୍ୟରେ ତାଙ୍କର ଗୋଟିଏ ବକ୍ତୃତା ମଧ୍ୟ ରଖି ଦିଆଗଲା । ସେ ସେଦିନ ଗୋଟିଏ ସୁନ୍ଦର ବକ୍ତୃତା ସେଇ ଜ୍ୱରରେ ଦେଇଥିଲେ । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ସେଦିନ ପିଲାଙ୍କ ମେଳରେ ବସି ଖାଇଲେ, ୨ଘଣ୍ଟାଠାରୁ ୪ଘଣ୍ଟା ପର୍ଯ୍ୟନ୍ତ ଶ୍ଳୋକାନ୍ତ ଏବଂ ୪ଟାଠାରୁ ୫-୩୦ ପର୍ଯ୍ୟନ୍ତ ଡୁଡୁ ମ୍ୟାଚ ହେଲା । ଶ୍ଳୋକାନ୍ତରେ ମି. ଦାସ ନିଜେ ରେଫରି ହୋଇଥିଲେ । ଶେଷକୁ ବନ୍ଧୁ ଗୁଡ଼ିକ ଓ ଭଦ୍ରବ୍ୟକ୍ତିଙ୍କ ମଧ୍ୟରେ ବସି ଗପ କଲାବେଳେ ମି. ଦାସ କହିଲେ, 'ଗୋପବନ୍ଧୁ, ନାଳନ୍ଦାଟିଏ ଗଢ଼ିଦେଲୁ ।' ଗୋପବନ୍ଧୁ ମୋତେ ଦେଖେଇ କହିଲେ, 'ମୁଁ ନୁହେଁ, ନୀଳକଣ୍ଠ' ।" (ଆତ୍ମଜୀବନୀ, ନୀଳକଣ୍ଠ ଦାସ, ପୃ: ୧୩୩)

**କଟକରେ ସମ୍ମିଳନୀର ବିଶେଷ ଅଧିବେଶନ : ମଧୁବାବୁ ସଭାପତି :** ଖ୍ରୀ: ୧୯୧୮ ସେପ୍ଟେମ୍ବର ୨୧ ଓ ୨୨ ତାରିଖ ଶନିବାର ଓ ରବିବାର ଦିନ କଟକ ମୁନିସିପାଲିଟି କଚେରି ହତା ମଧ୍ୟରେ ଥିଏଟର ପେଣ୍ଡାଲରେ ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ ହୋଇଥିଲା । ସମସ୍ତ ଅଞ୍ଚଳରୁ ଅଭ୍ୟର୍ଥନା ସମିତି ଗଠିତ ହୋଇପାରି ନଥିଲା କି ସ୍ୱେଚ୍ଛାସେବକ ସଂଗଠନ ମଧ୍ୟ କରାଯାଇ ନଥିଲା । ଓଡ଼ିଶାର ସବୁ ଅଞ୍ଚଳରୁ ପ୍ରତିନିଧିମାନେ ଆସିଥିଲେ । ସମ୍ମିଳନୀର କାର୍ଯ୍ୟନିର୍ବାହିକା ସମିତିର ସମ୍ପାଦକ ଶ୍ରୀ ବ୍ରଜସୁନ୍ଦର ଦାସ ନିଜ ବ୍ୟୟରେ ସମ୍ମିଳନୀର ସବୁ ଆୟୋଜନ କରିଥିଲେ ଏବଂ ନିଜେ ଅକ୍ଳାନ୍ତ ପରିଶ୍ରମ କରି ସବୁ କାର୍ଯ୍ୟ ତୁଲାଇଥିଲେ । ସମ୍ମିଳନୀର ସୃଷ୍ଟିକର୍ତ୍ତା ମଧୁବାବୁ ଏହି ଅଧିବେଶନରେ ସଭାପତି ହୋଇଥିବାରୁ ବିଶେଷ ଉତ୍ସାହ ଦେଖାଦେଇଥିଲା । ପ୍ରାୟ ପନ୍ଦର ଶହ ସଭ୍ୟ ଉପସ୍ଥିତ ହୋଇଥିଲେ । "ଗଞ୍ଜାମ ଓ ଅନ୍ୟାନ୍ୟ ସମସ୍ତ ଓଡ଼ିଆବାସୀ ପ୍ରଦେଶମାନ ତାଙ୍କୁ ଏକ ବାକ୍ୟରେ ସଭାପତି କାର୍ଯ୍ୟ ସମ୍ପନ୍ନ କରିବାକୁ ଆହ୍ୱାନ କରିଥିଲେ । ମଧୁବାବୁ କେବେ ଜାତୀୟ କାର୍ଯ୍ୟରେ ପଶ୍ଚାତ୍‌ପଦ ନୁହନ୍ତି । ନିଜର ସହୋଦର ଭାଇଙ୍କୁ ଯେଉଁଦିନ ହରାଇଲେ, ତହିଁ ପରଦିନ ତାଙ୍କୁ ଯେଉଁମାନେ ପାରଳା ଅଧିବେଶନରେ ଦେଖିଛନ୍ତି, ସେମାନେ ଜାଣନ୍ତି ସମ୍ମିଳନୀକୁ ମଧୁବାବୁ ନିଜ ପ୍ରାଣଠାରୁ ଅଧିକ ଭଲପାଆନ୍ତି ।" (ଉ. ଦୀ. ୧୮ । ୯ । ୧୯୧୮)

ଶାସନ ସଂସ୍କାର ରିପୋର୍ଟର ସୁପାରିସଗୁଡ଼ିକ ଅତି ଗୁରୁତ୍ୱପୂର୍ଣ୍ଣ ଥିବାରୁ ତାହାର ଆଲୋଚନାପାଇଁ ଉତ୍କଳ ସମ୍ମିଳନୀର ଏହି ବିଶେଷ ଅଧିବେଶନଟି ଅତି ଅଳ୍ପ ସମୟ ମଧ୍ୟରେ ବିନା ପ୍ରସ୍ତୁତିରେ ଆହ୍ୱାନ କରାଯାଇଥିଲା ।

"ଏହିପରି ଗୁରୁତର କାର୍ଯ୍ୟରେ ଓଡ଼ିଆଜାତିର ନେତା ସ୍ୱରୂପ ଦଣ୍ଡାୟମାନ ହେବାର ଯୋଗ୍ୟ ସେହି ଉତ୍କଳପ୍ରାଣ ମଧୁବାବୁଙ୍କ ଛଡ଼ା ଆଉ କିଏ ? (ଉ.ଦୀ ୨୮।୯।୧୯୧୮)

ମଧୁବାବୁ ଇଂରେଜୀରେ ଲିଖିତ ଏକ ଅଭିଭାଷଣ ପାଠ କରିଥିଲେ । ସୁଯୁକ୍ତିଦ୍ୱାରା ମଧୁବାବୁ ଶାସନ ସଂସ୍କାର ରିପୋର୍ଟର ପ୍ରଧାନ ପ୍ରଧାନ ସୁପାରିସଗୁଡ଼ିକ ବିଶଦଭାବରେ ବିଶ୍ଳେଷଣ କରିଥିଲେ । ଭାଷା ସୂତ୍ରରେ ଭାରତର ପ୍ରାଦେଶିକ ଶାସନ ଗଠନ ହେବାର ସମୀଚୀନତା ରିପୋର୍ଟରେ ଉପଲବ୍ଧି କରାଯାଇଥିଲେ ମଧ୍ୟ ଏହାକୁ କାର୍ଯ୍ୟରେ ପରିଣତ

କରିବାର କୌଣସି ସ୍ପଷ୍ଟ ସୂଚନା ଦେଇ ନ ଥିଲେ । ପୁଣି, ରିପୋର୍ଟରେ କୁହାଯାଇଥିଲା ଯେ ସରକାର ନିଜ କର୍ମଚାରୀଙ୍କଦ୍ୱାରା ଏ ବିଷୟରେ ହସ୍ତକ୍ଷେପ କରିବେନାହିଁ; ମାତ୍ର ସରକାର ଓ ଲୋକଙ୍କ ସମ୍ମତି ହେଲେ ସଂସ୍କାର ନୀତି କାର୍ଯ୍ୟରେ ପରିଣତହେବା ପରେ ଭାଷାସୂତ୍ରରେ ପ୍ରଦେଶ ଗଠନ କରାଯିବା ଉଚିତ । ଓଡ଼ିଶା ଓ ବେହାର ଏ ଦୁଇଟି ଅଞ୍ଚଳକୁ ଶୀଘ୍ର ଗୋଟିଏ ଗୋଟିଏ ସବ୍-ପ୍ରଭିନ୍‌ସ ବା ଉପପ୍ରଦେଶ କରିବା ଉଚିତ, ଏହା ମଧୁବାବୁ ସ୍ପଷ୍ଟଭାବରେ ସ୍ୱ ଅଭିଭାଷଣରେ ବ୍ୟକ୍ତକରି କହିଥିଲେ, "ଅବଶ୍ୟ, କେବଳ ଏତିକରେ ଓଡ଼ିଆ ଜାତିର ଆଶା ଓ ଆକାଙ୍‌କ୍ଷା ପୂରଣ ହୋଇଯିବନାହିଁ । ଆମ୍ଭେମାନେ ଏକ ସ୍ୱତନ୍ତ୍ର ପ୍ରାଦେଶିକ ଶାସନ ଅଧୀନରେ ରହିବାକୁ ଚାହୁଁ । ଯଦି ଆମ୍ଭମାନଙ୍କର ଟଙ୍କା ନଥାଏ, ତେବେ ଓଡ଼ିଆ-ଭାଷୀ ପ୍ରଦେଶରେ ଗୋଟିଏ ଲେଟ୍ ଗଭର୍ଣ୍ଣର ହେଉନ୍ତୁ । ଲୁଗାକୁ ଚାହିଁ କୋଟ୍ ହେଉ ବର୍ତ୍ତମାନ ଓଡ଼ିଆମାନେ ଭିନ୍ନ ଭିନ୍ନ ପ୍ରାଦେଶିକ ଶାସନ ଅଧୀନରେ ଅଛନ୍ତି । ସବୁଠାରେ ଓଡ଼ିଆଙ୍କ ସଂଖ୍ୟା କମ୍ । ସବୁଠାରେ ଓଡ଼ିଆଙ୍କ ଉପରେ ଆଉ ଗୋଟିଏ ଭାରତୀୟ ଜାତି ମଧ୍ୟବର୍ତ୍ତୀ ଶାସନକର୍ତ୍ତାରୂପେ ଥିବା ଫଳରେ ଇଂରେଜ ଶାସନର ଉପକାରିତା ଓଡ଼ିଆଙ୍କ କପାଳରେ ଏପର୍ଯ୍ୟନ୍ତ ଘଟିନାହିଁ । ମାନ୍ଦ୍ରାଜରେ ଓଡ଼ିଆଙ୍କ ଉପରେ ତେଲିଙ୍ଗାମାନେ ରାଜା, ଓଡ଼ିଶାରେ ବିହାରୀ, ବଙ୍ଗ ପ୍ରଦେଶରେ ବଙ୍ଗାଳୀ ଓ ମଧ୍ୟପ୍ରଦେଶରେ ମରହଟ୍ଟା । ସୁତରାଂ ସଂସ୍କାର ନୀତିର ଉଦ୍ଦେଶ୍ୟ ଭଲ ହେଲେହେଁ ଓଡ଼ିଆମାନେ ଏକତ୍ରିତ ନ ହେବାଯାଏ ଇଂରେଜ ଶାସନର ସୁଫଳ ସେମାନେ ପାଇବେନାହିଁ, ଏହା ଧ୍ରୁବ ସତ୍ୟ । ମଧ୍ୟବର୍ତ୍ତୀ ଶାସନକର୍ତ୍ତାଙ୍କ ଅପକାରିତା ଶାସନ-ସଂସ୍କାର-ନୀତି ପ୍ରବର୍ତ୍ତନ ପୂର୍ବରୁ ଓଡ଼ିଆମାନେ ଭୋଗ କରୁଛନ୍ତି, ସଂସ୍କାର ନୀତି ପ୍ରବର୍ତ୍ତନ ପରେ ମଧ୍ୟ ଭୋଗ କରିବେ । ବିହାର-ଓଡ଼ିଶା ଲେଟ୍ ଲାଟ୍‌ସାହେବଙ୍କ କାଉନସିଲ୍‌ରେ ସଭ୍ୟମାନଙ୍କର ସଂସ୍କାର ନୀତି ସମ୍ବନ୍ଧରେ ଚର୍ଚ୍ଚା ହେଉଥିବା ସମୟରେ ଓଡ଼ିଆମାନଙ୍କର ସବପ୍ରଭିନ୍‌ସ କଥା ଜଣେ ଓଡ଼ିଆ ସଭ୍ୟ ଉଠାଇଥିଲେ; ମାତ୍ର ଓଡ଼ିଆଙ୍କ ମଧ୍ୟବର୍ତ୍ତୀ ଶାସକଜାତି ମଧ୍ୟରୁ ଜଣେ ସଭାପତି ହୋଇଥିଲେ । ସେ ସେହି ବିଷୟ ଆଲୋଚନା କରିବାକୁ ଦେଲେନାହିଁ । ଏହି ତ ଓଡ଼ିଆଙ୍କ ଭାଗ୍ୟ ! ସମଗ୍ର ଭାରତ ଜାତି ଉଦାର ସଂସ୍କାର ନୀତି ପ୍ରବର୍ତ୍ତନର ଫଳସ୍ୱରୂପ ଗୋଟିଏ ଅଧେ ମନ୍ତ୍ରୀ ପାଇବେ; କିନ୍ତୁ ସମଗ୍ର ଭାରତର ମତ ଯେ ମନ୍ତ୍ରୀ ଗଭର୍ଣ୍ଣମେଣ୍ଟଙ୍କ କର୍ତ୍ତୃକ ମନୋନୀତ ନ ହୋଇ ବ୍ୟବସ୍ଥାପକ ସଭାର ବେସରକାରୀ ସଭ୍ୟମାନଙ୍କଦ୍ୱାରା ନିର୍ବାଚିତ ହେଉନ୍ତୁ ।"

ସଭାପତିଙ୍କ ଅଭିଭାଷଣରେ ଶାସନ ସଂସ୍କାର ସମୀକ୍ଷା ଉଚ୍ଚକୋଟୀର ହୋଇଥିଲେହେଁ ଓଡ଼ିଆଙ୍କ ଦାବୀ ଓ ଅନ୍ୟାନ୍ୟ ସମସ୍ୟା ସମ୍ବନ୍ଧରେ ବିସ୍ତୃତ ବିବରଣ ନଥିଲା ବୋଲି ଗଞ୍ଜାମର ଶ୍ରୀ ହରିହର ପଣ୍ଡା ପ୍ରଭୃତି ଆକ୍ଷେପ କରିଥିଲେ । ସାଧାରଣ ଭାବରେ ଭାରତର ସାମୂହିକ ଦୃଷ୍ଟିକୋଣରୁ ମଧୁବାବୁ ଏ ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ କରିଥିଲେ ମାତ୍ର । 'ଆଧୁନିକ ଭାରତ ଶାସନ' ସମ୍ପର୍କରେ ମଧୁବାବୁ ଅତି ସୁନ୍ଦର ମନ୍ତବ୍ୟ ପ୍ରକାଶ କରି କହିଥିଲେ, "ଆଧୁନିକ ଭାରତୀୟ ଶାସନକୁ ଏକ ପିରାମିଡ୍ ସଙ୍ଗେ ତୁଳନା କରାଯାଇପାରେ ଏବଂ ଶୀର୍ଷବିନ୍ଦୁ

ଉପରେ ଭର ଦେଇ ରହିଅଛୁ । ଏକ ବୈଦେଶିକ ଶ୍ୱେତାଙ୍ଗ ଗୋଷ୍ଠୀ ଭାରତୀୟ ସାମ୍ରାଜ୍ୟର ଭାର ବହନ କରି ରହିଅଛନ୍ତି । ଏହି ରାଜନୈତିକ ମାଧ୍ୟାକର୍ଷଣ ଶକ୍ତି ସେହିପରି ରଖାଯିବା ବ୍ୟବସ୍ଥା ହୋଇଛି । ସାମ୍ରାଜ୍ୟଭାର ବା ଗୃପ ଯେପରି ବେଶି ବ୍ୟାପକ ଅଂଶରେ ପଡ଼େ, ତାହାର ବ୍ୟବସ୍ଥା ମାତ୍ର କରାଯାଉଅଛି । ଏହି ସମସ୍ୟା ବଡ଼ ଜଟିଳ । ଯେଉଁମାନେ ଏହାର ସମାଧାନ ପାଇଁ ଚେଷ୍ଟାକରିବେ, ସେହିମାନେ ହିଁ ଏହାର ଗୁରୁତ୍ୱ କଳନା କରିପାରିବେ ।''

ମଧୁବାବୁ ନ୍ୟାୟପତି 'ପିସୋ'ଙ୍କ ନ୍ୟାୟ ଭଳି ଏମାନଙ୍କର ନ୍ୟାୟ ବୋଲି କୌତୁକରେ କହିଥିଲେ । ଜଣେ ଲୋକ ହତ୍ୟା ଅପରାଧରେ ମୃତ୍ୟୁଦଣ୍ଡ ପାଇଲା । ତାକୁ ଫାଶୀ ଦେବାକୁ ଗଲାବେଳେ ଫାଶୀଦେବା ପ୍ରହରୀ ଦେଖିଲା ଯେ ଯେଉଁ ଲୋକକୁ ହତ୍ୟା କରିଛି ବୋଲି ଦୋଷୀ ମୃତ୍ୟୁଦଣ୍ଡ ପାଉଛି, ସେ ବଞ୍ଚିଛି । ଏହା ଦେଖି ପ୍ରହରୀ ଅପରାଧୀକୁ ଫାଶୀ ନଦେଇ ପିସୋଙ୍କ ପାଖକୁ ପଠାଇଦେଲା । ପିସୋ ନ୍ୟାୟ ଦେଲେ ଯେ ପ୍ରହରୀ, ଅପରାଧୀ ଓ ତଥାକଥିତ ମୃତବ୍ୟକ୍ତି, ଏ ତିନି ଜଣଙ୍କୁ ଫାଶୀ ଦିଆଯିବ । ପ୍ରହରୀ ବିଚାରପତିଙ୍କ ଆଦେଶକୁ ଅମାନ୍ୟ କରିଥିବାରୁ ସେ ଫାଶୀ ପାଇବ । ଦୋଷୀକୁ ଦଣ୍ଡାଦେଶ ହୋଇଛି, ସେଥିପାଇଁ ଦୋଷୀ ଫାଶୀ ପାଇବ । ବଞ୍ଚିଥିବା ବ୍ୟକ୍ତି ବୃଥାରେ ଏ ଦୁଇଜଣଙ୍କର ଫାଶୀର କାରଣ ହୋଇଥିବାରୁ ସେ ମଧ୍ୟ ଫାଶୀ ପାଇବ । ଏ ବିଚିତ୍ର ହୁକୁମ ପ୍ରସଙ୍ଗ ବର୍ଣ୍ଣନାକରି ବିଷୟଟି ମଧୁବାବୁ ଭଲ ଭାବରେ ବୁଝାଇଥିଲେ । ଓଡ଼ିଆମାନେ ବୃଥାରେ ଦୁଃଖ ପାଉଥିବା ମନୋଭାବହିଁ ଏହି ଦୃଷ୍ଟାନ୍ତ ଅବତାରଣାର କାରଣ ବୋଲି ମନେହୁଏ ।

ମଧୁବାବୁ କହିଲେ ଯେ, ବିଦେଶୀ ଶାସକମାନେ ଏ ଦେଶର ଉନ୍ନତିପାଇଁ କାର୍ଯ୍ୟ କରୁନାହାନ୍ତି । ବର୍ତ୍ତମାନର ଶାସନପ୍ରଣାଳୀର ଉଚ୍ଚ ସରକାରୀ ହାକିମମାନେ, ଅର୍ଥାତ୍ ଆଇ. ସି. ଏସ୍. ଅଫିସରମାନେ ପୂର୍ବଭଳି କାର୍ଯ୍ୟ କରୁନାହାନ୍ତି । ପୂର୍ବେ ଏହି ଅଫିସରମାନେ ଓଡ଼ିଶା ସମ୍ବନ୍ଧରେ ବିଲାତ ସରକାରଙ୍କ ଅବଗତି ନିମନ୍ତେ ରିପୋର୍ଟ ପ୍ରକାଶ କରୁଥିଲେ; କିନ୍ତୁ ବର୍ତ୍ତମାନ ସେହି ଆଇ. ସି. ଏସ୍. ଅଫିସରମାନେ ଏ ମନୋଭାବ ପରିତ୍ୟାଗ କରିଥିବାରୁ ଓଡ଼ିଶା ସମ୍ବନ୍ଧରେ ବ୍ରିଟିଶ୍ ପାର୍ଲିଆମେଣ୍ଟର ସଭ୍ୟମାନେ କିଛି ଜାଣିପାରୁନାହାନ୍ତି । ଓଡ଼ିଶା ବୋଲି ଏକ ରାଜ୍ୟ ଥିବା ମଧ୍ୟ ବହୁ ପ୍ରବୀଣ ପାର୍ଲିଆମେଣ୍ଟ ସଭ୍ୟ ଜାଣୁନାହାନ୍ତି ।

ପଞ୍ଚାୟତ ପ୍ରଣାଳୀର ଉନ୍ନତି ସାଧନକରିବା ନିମନ୍ତେ ଶାସନ ସଂସ୍କାର କମିଟି ସୁପାରିସ୍ କରିଥିଲେ । ମଧୁବାବୁ ଏହା ଉଲ୍ଲେଖକରି କହିଥିଲେ, "ଏହି ଲୋକହିତକର ପ୍ରାଚୀନ ପ୍ରଣାଳୀର ଅବନତି ପାଇଁ ଭାରତରେ ଥିବା ବ୍ରିଟିଶ୍ ଅଫିସରମାନେ ଦାୟୀ । ପଞ୍ଚାୟତ ପ୍ରଣାଳୀ ପାଶ୍ଚାତ୍ୟ ଅନୁଷ୍ଠାନ ନୁହେଁ । ବର୍ତ୍ତମାନ ସୁଦ୍ଧା ସାମାଜିକ କ୍ଷେତ୍ରରେ ଏହି ପଞ୍ଚାୟତ ପନ୍ଥା ପ୍ରଚଳିତ ଅଛି; କିନ୍ତୁ ଫୌଜଦାରୀ ଓ ଦେବାନୀ ବିଷୟମାନଙ୍କ ଉପରୁ ଏମାନଙ୍କର କ୍ଷମତା କାଢ଼ି ନିଆଯାଇଛି ଏବଂ ଏହିସବୁ କ୍ଷମତା ପ୍ରଶାସନିକ ବିଭାଗର ଆଞ୍ଚଳିକ ପ୍ରତିନିଧିରୂପେ କାର୍ଯ୍ୟ କରୁଥିବା ଅଫିସରମାନେ ବ୍ୟବହାର କରୁଛନ୍ତି ।''

ଚଉକିଦାର ବ୍ୟବସ୍ଥା ସମ୍ବନ୍ଧରେ ମଧୁବାବୁ କହିଥିଲେ, "ବର୍ତ୍ତମାନ ଓଡ଼ିଶାରେ ଯେଉଁ ପ୍ରକାର ଚୌକିଦାର ପ୍ରଥା ପ୍ରଚଳିତ ଅଛି, ତାହା ପ୍ରତି ସମସ୍ତେ ଅସନ୍ତୁଷ୍ଟ । ଯେ କୌଣସି ଗ୍ରାମକୁ ଯାଆନ୍ତୁ ଏବଂ ଯେ କୌଣସି ଲୋକଙ୍କୁ ସେଠାରେ ପଚାରନ୍ତୁ, ପାଞ୍ଚମିନିଟ ଭିତରେ ଯେ କେହି ଜାଣି ପାରିବେ ଯେ, ଗ୍ରାମବାସୀଙ୍କ ଜୀବନରେ ଏହା ଏକ ଅଶ୍ରୁଖା ବ୍ରଣ ପରି । ଏହି ବିଭାଗରେ ଯେଉଁ ପରିବର୍ତ୍ତନ କରାଯାଇଛି, ତାହାଦ୍ୱାରା ବିଦେଶୀ ଶାସକ ସଂସ୍ଥାର କ୍ଷମତା କେବଳ ବୃଦ୍ଧି ପାଇଛି ।"

ମନ୍ତ୍ରୀମାନଙ୍କୁ ଯେଉଁ ସବୁ କ୍ଷମତା ଦେବାପାଇଁ ସଂସ୍କାର କମିଟି ସୁପାରିସ୍ କରିଛନ୍ତି, ତାହା ଆଦୌ ସନ୍ତୋଷଜନକ ନଥିବା ମଧୁବାବୁ କହିଥିଲେ । ମନ୍ତ୍ରୀଙ୍କ ହାତରେ ଯେଉଁ ବିଭାଗ ଦିଆଯାଉଛି, ତାହାର ପରିଚାଳନା ପାଇଁ ତାଙ୍କୁ ଦାୟୀ କରାଯାଉଥିଲେ ମଧ୍ୟ ପ୍ରକୃତ କ୍ଷମତା ତାଙ୍କ ହାତରେ ନାହିଁ । ଶାସନ ପ୍ରଣାଳୀକୁ ବିକାଶୋନ୍ମୁଖୀ କରିବା ଲକ୍ଷ୍ୟରେ କୌଣସି ନୀତି ଗ୍ରହଣକରିବା ଅଧିକାର ତାଙ୍କର ନାହିଁ । ବିଭାଗର କାର୍ଯ୍ୟ ଅସନ୍ତୋଷଜନକ ହେଲେ ସେଥିପାଇଁ ମନ୍ତ୍ରୀଙ୍କୁ ଦୋଷ ଦିଆଯାଉଛି ଏବଂ ହୁଏତ ପାଞ୍ଚବର୍ଷ ପରେ ବ୍ରିଟିଶ୍ ସରକାର କହିବେ, 'ପରୀକ୍ଷାରୁ ଜଣାଗଲା ଯେ ଭାରତୀୟମାନେ ମନ୍ତ୍ରୀରୂପେ କାର୍ଯ୍ୟ କରିବାକୁ ଅଯୋଗ୍ୟ ।' ଏ ଏକ ବଞ୍ଚନା ନୀତି ଓ ବୁଝାମଣା; ଅଥଚ ମନ୍ତ୍ରୀ ଏହି ପ୍ରସଙ୍ଗରେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ।

ସେ ପୁଣି କହିଥିଲେ, ଶାସନକ୍ଷେତ୍ରରେ ମନ୍ତ୍ରୀଙ୍କ ମନରେ ଯେଉଁ ପରିମାଣରେ ବିଶ୍ୱାସ, ଦକ୍ଷତା ଓ କ୍ଷମତା ଆବଶ୍ୟକ, ତାହା କେବଳ ନିର୍ବାଚନରୁ ମିଳିବ । ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍‌ର ମେମ୍ବର ଓ ମନ୍ତ୍ରୀମାନେ ବ୍ୟବସ୍ଥାପକ ସଭାଦ୍ୱାରା ନିର୍ବାଚିତ ହେବା ଆବଶ୍ୟକ । ଏହି ପ୍ରସଙ୍ଗରେ ମଧୁବାବୁ କେତେକ ପ୍ରସ୍ତାବର ସୂଚନା ସହିତ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ ମେମ୍ବର, ମନ୍ତ୍ରୀଙ୍କ କ୍ଷମତା ଓ ଶାସନ ପଦ୍ଧତି ସମ୍ବନ୍ଧରେ ପରାମର୍ଶ ମଧ୍ୟ ଦେଇଥିଲେ । ସେ କହିଥିଲେ ଯେ, ଆଇ. ସି. ଏସ୍. ଅଫିସରମାନେ ଗଣତନ୍ତ୍ର ଶାସନର ନୀତି ସମ୍ବନ୍ଧରେ ଅଜ୍ଞ ଏବଂ ସେମାନେ ପ୍ରାୟ ପଚିଶ ବର୍ଷ ହେଲା ଅଗଣତାନ୍ତ୍ରିକ ଶାସନ ଚଲାଇ ଆସିଛନ୍ତି । ଏମାନଙ୍କ ଭିତରେ ଯଦି ଗଭର୍ଣ୍ଣର ଓ ଏକ୍‌ଜିକ୍ୟୁଟିଭ୍ ମେମ୍ବର ନିଯୁକ୍ତ ହୁଅନ୍ତି, ତାହାହେଲେ ଏହା ଗଣତନ୍ତ୍ରବିରୁଦ୍ଧଚାର ଏହି ପ୍ରମାଣ ବୋଲିବାକୁ ହେବ । ଏହା ଭିତରେ ଜଣେ ଭାରତୀୟ କାଉନ୍‌ସିଲର ରହିଲେ ଏହି ଅଜ୍ଞତା ଅଧିକ ଘନୀଭୂତ କେବଳ ହେବ । ସେ କହିଥିଲେ ଯେ, ଆଇ. ସି. ଏସ୍. ଅଫିସରମାନଙ୍କୁ ଲୋକଙ୍କ ପଥପ୍ରଦର୍ଶକ ରୂପରେ ନିଯୁକ୍ତ କରାଯିବା ନିମନ୍ତେ ସଂସ୍କାର କମିଟି ଯେଉଁ ସୁପାରିସ୍ କରିଛନ୍ତି, ତାହା ଅନ୍ଧକୁ ଅନ୍ଧ ବାଟ କଢ଼ାଇବା ଭଳି ହେବ ସିନା !

ଓଡ଼ିଶାର ସମସ୍ୟା ସମ୍ବନ୍ଧରେ ଶାସନ ସଂସ୍କାର କମିଟିଙ୍କ ସୁପାରିସ୍ ଉପରେ ଆଲୋଚନାକରି ମଧୁବାବୁ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନର ଏକ ସଂକ୍ଷିପ୍ତ

ଇତିହାସ ଦେଇଥିଲେ । ସେ ପୁଣି କହିଥିଲେ ଯେ, ଓଡ଼ିଶା ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଯାଇ ନାହିଁ । ତେବେ ଏକ ଉପପ୍ରଦେଶ (Sub-Province)ର ଯେଉଁ ସୁପାରିସ୍ ହୋଇଛି ତାହାକୁ କାର୍ଯ୍ୟରେ ପରିଣତ କରିବାପାଇଁ ଯେଉଁ ପ୍ରଣାଳୀ ସୁପାରିସ କରାଯାଇଛି, ତାହା ସନ୍ତୋଷଜନକ ନୁହେଁ । କେବଳ ସରକାରୀ ଅଫିସରମାନଙ୍କଦ୍ୱାରା ଆଞ୍ଚଳିକ (ବା ପ୍ରାଦେଶିକ) ପୁନର୍ଗଠନ ନ ହୋଇ ଜନମତଦ୍ୱାରା ଏହା ହେବା ଉଚିତ ବୋଲି କମିଟି ସୁପାରିସ୍ କରିଥିଲେ । ମଧୁବାବୁ ଯୁକ୍ତି କରିଥିଲେ ଯେ, ବିହାରର ଏକ ଉପପ୍ରଦେଶ ହୋଇ ରହିବାକୁ ଓଡ଼ିଶା କେବେ ରାଜି ହେବନାହିଁ । ଏପରି କଲେ ଅଶାନ୍ତି ଓ ଆନ୍ଦୋଳନ ଦେଖାଦେବ ବୋଲି ସେ ମଧ୍ୟ ପ୍ରକାରାନ୍ତରେ ଧମକ ଦେଇଥିଲେ ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶର ସ୍ଥାନ ଦେଇ ତାହା ସହିତ ଗଞ୍ଜାମର ଓଡ଼ିଆ ଅଞ୍ଚଳକୁ ମିଶାଇ ଦେବାପାଇଁ ମଧୁବାବୁ ଦାବୀ କରିଥିଲେ; ମାତ୍ର ମଧୁବାବୁ ଏହି ଦାବୀରେ ଜୟପୁର ଓ ଅନ୍ୟାନ୍ୟ ପ୍ରଦେଶର ଓଡ଼ିଆ ଅଞ୍ଚଳର ଦାବୀକୁ ଉଲ୍ଲେଖକରି ନ ଥିବାରୁ ସମ୍ମିଳନୀରେ ସମାଲୋଚିତ ହୋଇଥିଲେ ।

ସଭାପତିଙ୍କ ଅଭିଭାଷଣଟି ଇଂରେଜୀରେ ଲିଖିତ ଓ ପଠିତ ହୋଇଥିବାରୁ ସମ୍ମିଳନୀ ମଣ୍ଡପରେ ଉପସ୍ଥିତ ବହୁ ଇଂରେଜୀ-ଅନଭିଜ୍ଞ ପ୍ରତିନିଧି ଦୁଃଖ ପ୍ରକାଶ କରିଥିଲେ । ଏପର୍ଯ୍ୟନ୍ତ ଉତ୍କଳ-ସମ୍ମିଳନୀର ସଭାପତି ଓଡ଼ିଆରେ ଭାଷଣ ଦେଉଥିଲେ । ମଧୁବାବୁ ଇଂରେଜୀରେ ଭାଷଣଦେବା ଆରମ୍ଭ କରିବାରୁ କେହି କେହି ଅସନ୍ତୁଷ୍ଟ ହୋଇଥିଲେ । ପ୍ରକୃତ କଥା ହେଲା, ଅଭିଭାଷଣର ଓଡ଼ିଆ ସଂସ୍କରଣ ପ୍ରସ୍ତୁତ କରିବାପାଇଁ ମଧୁବାବୁ ସମୟ ପାଇ ନ ଥିଲେ । ଶାସନସଂସ୍କାର ସମ୍ପର୍କୀୟ ଟୀକାଟିପ୍ପଣୀ ସମ୍ବଳିତ ଅଭିଭାଷଣକୁ ଇଂରେଜୀରେ ପ୍ରକାଶକଲେ ସରକାରଙ୍କ ଦୃଷ୍ଟି ଶୀଘ୍ର ଆକୃଷ୍ଟହେବା ସମ୍ଭାବନା ଥିବାରୁ ଇଂରେଜୀ ଭାଷା ମଧ୍ୟ ବ୍ୟବହାର କରାଯିବା ଆବଶ୍ୟକ ହେଲା ବୋଲି କେହି କେହି ଯୁକ୍ତି କରିଥିଲେ ।

ମଧୁବାବୁ କହିଥିଲେ, "What objects the authors of the reforms have in view in recommending a Sub-Province is not known. It is perhaps intended that the administration should be confined to the transferred subjects. If so, this will introduce complication which will be avioded by raising Orissa to the status of an administrative unit and annexing the Oriya tracts of Ganjam to it."

**ଉତ୍କଳ ସମ୍ମିଳନୀର ସମ୍ପାଦକ ପଦରୁ ଇସ୍ତଫା :** ଖ୍ରୀ: ୧୯୧୮ରେ ମଧୁବାବୁ ଉତ୍କଳ ସମ୍ମିଳନୀର ସମ୍ପାଦକ ନିର୍ବାଚିତ ହୋଇଥିଲେ; କିନ୍ତୁ ବର୍ଷ ପୂର୍ଣ୍ଣହେବା ପୂର୍ବରୁ

ସେ ସମ୍ପାଦକ ପଦରୁ ଇସ୍ତଫାଦେଲେ ଏବଂ ତାଙ୍କ ସ୍ଥାନରେ ବାବୁ ବ୍ରଜସୁନ୍ଦର ଦାସ ସମ୍ପାଦକ ମନୋନୀତ ହେଲେ । ବ୍ରଜସୁନ୍ଦର ଦାସ ମଧ୍ୟ ଜାନୁଆରୀ ୧୯୧୯ରେ ଇସ୍ତଫା ଦେବାରୁ ସମ୍ମିଳନୀର କାର୍ଯ୍ୟ ପ୍ରାୟ ଅଚଳ ହୋଇଯାଇଥିଲା କହିଲେ ଚଳେ ।

ମଧୁବାବୁ ସମ୍ମିଳନୀର ଇଂରେଜୀ ମୁଖପତ୍ର 'ଦି ଓଡ଼ିଆ'କୁ ଶାରୀରିକ ଅସୁସ୍ଥତା ଓ ବାର୍ଦ୍ଧକ୍ୟ ମଧ୍ୟରେ ସୁଚାରୁରୂପେ ପରିଚାଳିତ କରିଥିବାରୁ ତାଙ୍କୁ ସମ୍ମିଳନୀରେ ଧନ୍ୟବାଦ ଦିଆଯାଇଥିଲା । ଯେଉଁମାନେ ମଧୁବାବୁଙ୍କ ଇସ୍ତଫା ପରେ 'ଦି ଓଡ଼ିଆ' ସମ୍ବାଦପତ୍ରର ଭାର ଗ୍ରହଣ କରିଅଛନ୍ତି, ସେମାନଙ୍କୁ ବର୍ତ୍ତମାନ 'ଦି ଓଡ଼ିଆ' ଚଳାଇବାକୁ ଅନୁରୋଧ କରାଗଲା । ବାବୁ ବ୍ରଜସୁନ୍ଦର ଦାସ ସମ୍ମିଳନୀର ସମ୍ପାଦକ ଭାର ନେବାକୁ ଅନିଚ୍ଛୁକ ହୋଇ ଇସ୍ତଫା ପ୍ରଦାନ କରିଥିଲେ । ଇସ୍ତଫା ପ୍ରତ୍ୟାହାର କରିନେବାକୁ ତାଙ୍କୁ ଅନୁରୋଧ କରାଯାଇଥିଲା ଓ ସେ ମଧ୍ୟ ଅନୁରୋଧ ରକ୍ଷାକରିଥିଲେ ।

**ମଧୁବାବୁ 'ଦି ଓଡ଼ିଆ' ସମ୍ପାଦକତ୍ୱ ତ୍ୟାଗ କଲେ :** ଖ୍ରୀ: ୧୯୧୯ ଜାନୁଆରୀ ମାସରେ ମଧୁବାବୁ 'ଦି ଓଡ଼ିଆ' ସମ୍ବାଦପତ୍ରର ସମ୍ପାଦକତ୍ୱରୁ ଇସ୍ତଫା ଦେଇଥିବା କଥା ସେହି ମାସର ୮ତାରିଖ ସଂଖ୍ୟାରେ ପ୍ରକାଶ ପାଇଥିଲା । ବାବୁ ବ୍ରଜସୁନ୍ଦର ଦାସ 'ଉତ୍କଳ ସମ୍ମିଳନୀ'ର ସମ୍ପାଦକତ୍ୱରୁ ଇସ୍ତଫା ଦେଇଥିଲେ । ଉଭୟଙ୍କର ଇସ୍ତଫା ଅନୁଷ୍ଠାନର ଅର୍ଥାଭାବର କାରଣ ଥିବା ଜଣାଯାଇଥିଲା । ଉତ୍କଳରେ ଇଂରେଜୀ ପତ୍ରିକା ସେତେବେଳେ ଆଉ ନ ଥିଲା । ଉତ୍କଳ ସମ୍ମିଳନୀ ତରଫରୁ ଏ କାଗଜଟି ଇଂରେଜୀରେ ପ୍ରକାଶ ପାଇବାରୁ ଏହି ଅଭାବ ଦୂର ହୋଇଥିଲା । ଏବେ ଏହା ଏକାବେଳକେ ବନ୍ଦ ହେବାର ଆଶଙ୍କା ଥିବାରୁ ବହୁ ଲୋକ ଦୁଃଖିତ ହୋଇଥିଲେ ।

ମଧୁବାବୁ ତାଙ୍କ ଇସ୍ତଫାର କାରଣ ସ୍ୱରୂପ ମଧ୍ୟ କହିଥିଲେ ଯେ, ଯେଉଁ ଅର୍ଥ ବ୍ୟବସ୍ଥାର ପ୍ରତିଶ୍ରୁତି ତାଙ୍କୁ ଦିଆଯାଇଥିଲା, ତାହା ପୂରଣ ହୋଇ ନପାରିବାରୁ ସେ ସମ୍ପାଦକତ୍ୱରୁ ଇସ୍ତଫା ଦେଲେ । ଏହି କାଗଜର ପ୍ରିଣ୍ଟର ଓ ପ୍ରକାଶକ ଥିଲେ ବାବୁ ହରପ୍ରସାଦ ସିଂହ ।

ମଧୁବାବୁ ଇସ୍ତଫା ଦେବାପରେ ପରବର୍ତ୍ତୀ ସପ୍ତାହରେ ସମ୍ପାଦକଙ୍କ ନାମ ନଥାଇ କାଗଜଟି ପ୍ରକାଶ ପାଇଥିଲା । ଏଥିରେ କ୍ଷୋଭ ପ୍ରକାଶ କରି କେହି କେହି ଆକ୍ଷେପ କରିଥିଲେ ଯେ, ଜାତିର ଦାବୀକୁ ଉପସ୍ଥାପିତ ଓ ପ୍ରଚାର କରିବାପାଇଁ ଇଂରେଜୀରେ ଏକ କାଗଜ ପ୍ରକାଶ କରିବାର ଆବଶ୍ୟକତା ଅନୁଭବ କରି ଉତ୍କଳ ସମ୍ମିଳନୀର ପୃଷ୍ଠପୋଷକତାରେ 'ଦି ଓଡ଼ିଆ' ଏକ ସାପ୍ତାହିକ ରୂପେ ପ୍ରକାଶ ପାଉଥିଲା । ମଧୁବାବୁ ସମ୍ପାଦକ ମଧ୍ୟ ହୋଇଥିଲେ । ସର୍ବସାଧାରଣଙ୍କ ଚାନ୍ଦାରୁ ସଂଗୃହୀତ ଅର୍ଥରେ କାଗଜ ଚଳୁଥିଲା । ସମଗ୍ର ଜାତିର ଆଶୀର୍ବାଦ ଏହା ପ୍ରତି ଥିଲା । ଉତ୍କଳ ସମ୍ମିଳନୀ କାଗଜ ପ୍ରକାଶ ସମ୍ପର୍କରେ ଆର୍ଥିକ ସାହାଯ୍ୟ ଦେବାପାଇଁ କୁଆଡ଼େ ମଧୁବାବୁଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ସମ୍ମିଳନୀର ଏହି ପ୍ରତିଶ୍ରୁତି

ପାଳନ କରି ନ ପାରିବାରୁ ମଧୁବାବୁ ଇସ୍ତଫା ଦେଲେ ବୋଲି ଯାହା ସେ ବ୍ୟକ୍ତ କଲେ, ସେଥିରେ ଅନେକଙ୍କର ମନ ମାନିଲା ନାହିଁ । ଭାବି ଚିନ୍ତି ପରିକଳ୍ପନା ଅନୁସାରେ ଏ ଉଦ୍‌ଯୋଗଟି ଆରମ୍ଭ କରିବା ଉଚିତ ଥିଲା, ଏଥିରେ ସନ୍ଦେହ ନାହିଁ ।

'ଉତ୍କଳ ଦୀପିକା' ସମ୍ପାଦକୀୟ ସ୍ତମ୍ଭରେ ଇଂରେଜୀରେ ଏକ ମନ୍ତବ୍ୟ ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ, "The grand old man has laid down his arms. The young veteran to whom Orissa owes the special meeting of the Utkal Conference has laid aside his portfolio, and the 'The Oriya' is now to go rudderless.": "କୁଳବୃଦ୍ଧ ତାଙ୍କର ଅସ୍ତ୍ର ତ୍ୟାଗ କଲେ । ଉତ୍କଳ ସମ୍ମିଳନୀର ବିଶେଷ ସମ୍ମିଳନୀ ପାଇଁ ଯେଉଁ ଯୁବକ ନେତା ଦାୟୀ ସେ ମଧ୍ୟ ତାଙ୍କ ବିଭାଗକୁ ତ୍ୟାଗ କରିଛନ୍ତି ଏବଂ ବର୍ତ୍ତମାନ 'ଦି ଓଡ଼ିଆ' ନାବିକହୀନ ।"

କୁଳବୃଦ୍ଧ ମଧୁସୂଦନ ଓ ଯୁବକନେତା ବ୍ରଜସୁନ୍ଦର ଦାସ ଏ ଉଭୟଙ୍କର ଇସ୍ତଫାପତ୍ରକୁ ଏଥିରେ ଲକ୍ଷ୍ୟ କରାଯାଇଛି । ମଧୁବାବୁ ଇସ୍ତଫା ଦେବାପରେ ଯୁବକମାନେ 'ଦି ଓଡ଼ିଆ' କାଗଜକୁ ଚଳାଇବାର ଭାର ନେଇଥିଲେ ।

**ଉତ୍କଳ ସମ୍ମିଳନୀର ୧୪ଶ ଅଧିବେଶନ** : ଖ୍ରୀ: ୧୯୧୯ ଅପ୍ରେଲ ୧୯ ତାରିଖରେ କଟକରେ ମ୍ୟୁନିସିପାଲିଟି ବଗିଚା ମଧ୍ୟରେ ନିର୍ମିତ ଏକ ସୁସଜ୍ଜିତ ମଣ୍ଡପରେ ଉତ୍କଳ ସମ୍ମିଳନୀରେ ଚତୁର୍ଦ୍ଦଶ ଅଧିବେଶନ ବସିଥିଲା । ପ୍ରାୟ ତିନି ହଜାର ଦର୍ଶକ ଓ ପ୍ରତିନିଧି ଯୋଗ ଦେଇଥିଲେ । ବିଚ୍ଛିନ୍ନାଞ୍ଚଳରୁ ମଧ୍ୟ ବହୁ ପ୍ରତିନିଧି ଯୋଗ ଦେଇଥିଲେ । ସ୍କୁଲ ଓ କଲେଜର ଛାତ୍ରମାନେ ସ୍ୱେଚ୍ଛାସେବକ କାର୍ଯ୍ୟ କରିଥିଲେ । ମାନ୍ୟବର ପଣ୍ଡିତ ଗୋପବନ୍ଧୁ ଦାସ ଏ ଅଧିବେଶନରେ ସଭାପତି ହୋଇଥିଲେ ।

**ଆତ୍ମା ପ୍ରତି ବିଶେଷ ଧ୍ୟାନ ଦେବା ଉଚିତ** : ଖ୍ରୀ: ୧୯୧୮ ଜାନୁଆରୀ ୨୬ତାରିଖ ଶନିବାର ଦିନ କଟକର ପ୍ୟାରୀମୋହନ ଏକାଡେମୀ ପ୍ରାଙ୍ଗଣରେ ଏହି ଅନୁଷ୍ଠାନର ପ୍ରତିଷ୍ଠାତା ଓ ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସାମ୍ବତ୍ସରିକ ଶ୍ରାଦ୍ଧ ସଭା ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । ମଧୁବାବୁ କହିଥିଲେ, "ଆମ୍ଭେମାନେ ଆତ୍ମାପ୍ରତି ମନୋଯୋଗ ନ ଦେଇ କେବଳ ବାହ୍ୟ ଶରୀର ପ୍ରତି ମନୋଯୋଗ ସାଧାରଣତଃ ଦେଇଥାଉ । ଆମ୍ଭେମାନେ ଯେତେବେଳେ ହୃଦୟଙ୍ଗମ କରିପାରିବୁ ଯେ ଏହି ନଶ୍ୱର ଶରୀର ମଧ୍ୟରେ ଗୋଟିଏ ଅବିନାଶୀ ଆତ୍ମା ନିହିତ ଅଛି, ସେତେବେଳେ କୌଣସି ପାର୍ଥିବ ଅହଙ୍କାର ବା ଗର୍ବ ବା ଶୋକ ଆମ୍ଭମାନଙ୍କୁ ଭୟ ଦେଖାଇ ପାରିବ ନାହିଁ ।" ସେ ପୁଣି କହିଥିଲେ, "ଜନ୍ମ ସହିତ ଆତ୍ମା ସୀମାବଦ୍ଧ ହୁଏ ଓ ମୃତ୍ୟୁ ସହିତ ଆତ୍ମାର ନିଷ୍କୃତି ଲାଭହୁଏ ।

ସେଥିଯୋଗୁଁ ଧର୍ମ ସଂସ୍କାରକଙ୍କର ଜନ୍ମ ଉତ୍ସବ ଓ ମୃତ ମହାତ୍ମାମାନଙ୍କର ମୃତ୍ୟୁ ଉତ୍ସବ ଲକ୍ଷିତ ହୁଏ ।"

**ନିଖିଳ ଉତ୍କଳ ଛାତ୍ର-ସମ୍ମିଳନୀ** : ଉତ୍କଳ ସମ୍ମିଳନୀ ଅଧିବେଶନର ପ୍ରଥମ ଦିନ ଉତ୍କଳ ସମ୍ମିଳନୀ ମଣ୍ଡପରେ ଓଡ଼ିଶାର ସମସ୍ତ ଛାତ୍ରଙ୍କର ବାର୍ଷିକ ସମ୍ମିଳନୀର ଅଧିବେଶନ ବାବୁ ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ହୋଇଥିଲା । ଗତବର୍ଷ ଛାତ୍ରମାନଙ୍କ ମଧ୍ୟରେ କେତେକ ବିଷୟରେ ମତଭେଦ ଦେଖାଦେଇଥିଲା । ଏହି କାରଣରୁ ସେ ବର୍ଷ ଛାତ୍ର ସମ୍ମିଳନୀ ଦୁଇଭାଗ ହୋଇଯାଇଥିଲା ଏବଂ ବିଶୃଙ୍ଖଳା ମଧ୍ୟ ଦେଖା ଦେଇଥିଲା । ଏହି ବର୍ଷ ସମ୍ମିଳନୀ ମଣ୍ଡପରେ ଛାତ୍ରମାନଙ୍କ ଭିତରେ ମିଳାମିଶା ହୋଇଯିବାରୁ ଛାତ୍ରସମାଜର ଶକ୍ତି ବୃଦ୍ଧି ପାଇଲା ଏବଂ ପ୍ରବୀଣ ନେତାମାନେ ମଧ୍ୟ ସନ୍ତୋଷ ଲାଭକରିଥିଲେ । ଛାତ୍ରମାନଙ୍କ ଭିତରେ ଏ ମତଭେଦ ଦେଖି ମଧୁବାବୁ ବିଶେଷଭାବରେ ଚିନ୍ତିତ ହୋଇପଡ଼ିଥିଲେ । ସେ ୩୦-୪୦ ବର୍ଷ ହେବ ଓଡ଼ିଶାର ଛାତ୍ରମାନଙ୍କ ଉନ୍ନତି ନିମନ୍ତେ ନାନା ଭାବରେ ଚେଷ୍ଟା କରିଆସିଥିଲେ । ସେ ନିଜେ ବିଭିନ୍ନ ଛାତ୍ରସଂସ୍ଥା ସହିତ ଘନିଷ୍ଠଭାବରେ ସଂପୃକ୍ତ ଥିବାରୁ ଛାତ୍ରମାନଙ୍କର ଉନ୍ନତି ଦେଖିଲେ ତାଙ୍କର ହୃଦୟରେ ଆନନ୍ଦ ଜାତହେଉଥିଲା । ବର୍ତ୍ତମାନ ସମ୍ମିଳନୀ ମଣ୍ଡପରେ ଓଡ଼ିଶାର ଛାତ୍ର-ସମାଜ ପୁନର୍ବାର ଏକତା-ସୂତ୍ରରେ ବାନ୍ଧି ହୋଇଥିବା ଦେଖି ମଧୁବାବୁ ଆନନ୍ଦରେ ଅଭିଭୂତ ହୋଇପଡ଼ିଥିଲେ ।

## ୨୪ । ବିବିଧ ସମ୍ମିଳନୀରେ ଯୋଗଦାନ

**ଉତ୍କଳ ସାହିତ୍ୟ ସମାଜ ଗୃହର ଭିତ୍ତିସ୍ଥାପନ** "ଖ୍ରୀ: ୧୯୧୯ ଜୁଲାଇମାସ ୧୯ ତାରିଖ ପୂର୍ବାହ୍ନ ୮ ଘଣ୍ଟା ସମୟରେ 'ଉତ୍କଳ ସାହିତ୍ୟ ସମାଜ' ଗୃହର ଭିତ୍ତିସ୍ଥାପନ ସଭା ହୋଇଥିଲା । ସରକାରୀ ଓ ବେସରକାରୀ ଅନେକ ଭଦ୍ରବ୍ୟକ୍ତି ଉପସ୍ଥିତ ଥିଲେ । ଇଉରୋପୀୟ ଭଦ୍ରମହିଳା, କଲେଜର ପ୍ରିନ୍‌ସିପାଲ ଓ ଅଧ୍ୟାପକମାନେ ମଧ୍ୟ ଉପସ୍ଥିତ ଥିଲେ । ଆଳର ରାଜାସାହେବ ସଭାପତିରୂପେ ବରିତ ହୋଇଥିଲେ । ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ଓ ମାନ୍ୟବର ମଧୁସୂଦନ ଦାସ ମହୋଦୟମାନେ ସାହିତ୍ୟ ଓ ସାହିତ୍ୟ ସମାଜର ସାଧାରଣଙ୍କ ସହିତ ସମ୍ପର୍କ, ସାହିତ୍ୟ ସମାଜର ଭବିଷ୍ୟତ ଉନ୍ନତି ସମ୍ବନ୍ଧରେ ଅତ୍ୟନ୍ତ ହୃଦୟଗ୍ରାହୀ ବକ୍ତୃତାମାନ ପ୍ରଦାନ କରିଥିଲେ ।

"ମାନ୍ୟବର ମଧୁସୂଦନ ଦାସ କହିଥିଲେ ଯେ, କବିମାନଙ୍କର ଲେଖା ଏ ଦେଶର ଜନସାଧାରଣଙ୍କ ଶିକ୍ଷା ଓ ମନର ଅବସ୍ଥା ଓ ଚିନ୍ତାନୁରୂପ ହେବା ଉଚିତ; ମାତ୍ର ଦୁଃଖର ବିଷୟ ଆଧୁନିକ ଲେଖକମାନେ ବିଦେଶୀୟ ଚିନ୍ତା ଓ ଲେଖା ଅନୁକରଣ କରୁଥିବାରୁ

ଜନସାଧାରଣ ସେହି ଲେଖାର ଉପକାର ପାଇପାରୁନାହାନ୍ତି । ଆଉ ମଧ୍ୟ, ଆଜକାଲି ଲେଖାର ମୂଳରେ ଧର୍ମଭାବ ନାହିଁ ।''

ମଧୁବାବୁ ଉତ୍କଳ ସାହିତ୍ୟ ସମାଜର ଆରମ୍ଭରୁ 'ଅଭିଭାବକ ସଭ୍ୟ' ରୂପେ ଗୃହୀତ ହୋଇଥିଲେ । ସେ ସମାଜର ଆରମ୍ଭରୁ ଏହାର ଉନ୍ନତି ନିମନ୍ତେ ସବୁବେଳେ ସମାଜର କର୍ମକର୍ତ୍ତାମାନଙ୍କୁ ସହଯୋଗ କରୁଥିଲେ ଏବଂ ଏହି ଗୃହନିର୍ମାଣ କାର୍ଯ୍ୟରେ ମଧ୍ୟ ବିଶେଷ ଉତ୍ସାହ ପ୍ରଦାନ କରୁଥିଲେ । ସାହିତ୍ୟ ସମାଜ ଗୃହ ନିର୍ମାଣ କରିବାପାଇଁ ଆଳିରାଜ ଟ ୩୦୦୦ ଦାନ କରିଥିଲେ ।

ସଭାପତି ଆଳି ରାଜା ସ୍ୱ ଅଭିଭାଷଣରେ କହିଥିଲେ, "ଆଜି ଆମ୍ଭମାନଙ୍କର, ଆମ୍ଭମାନଙ୍କର କାହିଁକି ସମଗ୍ର ବ୍ରିଟିଶ୍ ସାମ୍ରାଜ୍ୟର ଗୋଟିଏ ସୁଦିବସ । ଯେଣୁ ବହୁକାଳରୁ ପ୍ରଜ୍ୱଳିତ ସମରାନଳ ଏବେ ନିର୍ବାପିତ ହୋଇଅଛି । ଦେଶେ ଦେଶେ ଆଜି ଶାନ୍ତି ସ୍ଥାପନର ସୁସମ୍ବାଦ ପ୍ରଚାରିତ ହୋଇଅଛି । × × ପ୍ରାଚୀନ ସାହିତ୍ୟ-ଭଣ୍ଡାରରୁ ମୁଁ କେତୋଟି ରତ୍ନ ଦର୍ଶନ କରିଅଛି ମାତ୍ର ଏବଂ ସେମାନଙ୍କ ଜ୍ୟୋତିରେ ମୁଗ୍ଧ ହୋଇଅଛି । ପ୍ରାଚୀନ ଉତ୍କଳ ସାହିତ୍ୟ ଶବ୍ଦଗୌରବରେ, ରସଲାବଣ୍ୟରେ ଓ ଭାବଗାମ୍ଭୀର୍ଯ୍ୟରେ ଅତୁଳନୀୟ ବୋଲି ଆମ୍ଭମାନଙ୍କ ଜାତୀୟ ଗୌରବ ଅକ୍ଷୁଣ୍ଣ ରହିଅଛି । 'ସାହିତ୍ୟ' ଶବ୍ଦର ଅର୍ଥ ଏହି ଯେ କୌଣସି ଭାଷାରେ ଅନୁପ୍ରାସ, ଆଦ୍ୟାନୁପ୍ରାସ, ପ୍ରାନ୍ତାନୁପ୍ରାସ, ଛେକାନୁପ୍ରାସ, ମଣ୍ଡୂକପ୍ଳୁତ, ଶାର୍ଦ୍ଦୂଳବିକ୍ରୀଡ଼ିତ, ସିହାବଲୋକନ ଏବଂ ଚକ୍ର ସିଂହାବଲୋକନ ଏହି ସମସ୍ତ ଯେଉଁ ଭାଷାରେ ଜନସାଧାରଣଙ୍କର ମନୋରଞ୍ଜନ କରିଛି, ତାହାକୁ ସେହି ଭାଷାର ସାହିତ୍ୟ ବୋଲି କୁହାଯାଏ । କାଳିଦାସଙ୍କ ଗ୍ରନ୍ଥରେ ଚିତ୍ର ରହିନାହିଁ, କିନ୍ତୁ ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରକାବ୍ୟ ପ୍ରବନ୍ଧ ରହିଅଛି । ହଣ୍ଟର୍ ସାହେବଙ୍କ ଇତିହାସରୁ ପ୍ରକାଶ ପ୍ରାଚୀନକାଳରେ ସୁକବିମାନେ ଯାହା ଗ୍ରନ୍ଥ କରିଯାଇଅଛନ୍ତି, ତହିଁରୁ ଆମ୍ଭେମାନେ ନାନା ଜ୍ଞାନ ପାଇବାର ଅଧିକାରୀ, ଯହିଁରେ ବିଜ୍ଞାନ, ପଦଲାଳିତ୍ୟ, ଗାମ୍ଭୀର୍ଯ୍ୟ, ଚତୁରତା, ନୀତି ପ୍ରଭୃତି ବିସ୍ତୃତ ଭାବରେ ବିଦ୍ୟମାନ ।

"ଆମ୍ଭର ପ୍ରାଚୀନ ସାହିତ୍ୟ ଭଣ୍ଡାରରେ ଯେତେ ଯେତେ ଅମୂଲ୍ୟ ମଣିମାଣିକ୍ୟ ଅଛି, ସେଗୁଡ଼ିକ ଏକତ୍ର ଦର୍ଶନକରିବା ତେଣିକି ଥାଉ ଏ ପର୍ଯ୍ୟନ୍ତ ସେଗୁଡ଼ିକର ସଂଗ୍ରହ ହୋଇପାରିନାହିଁ । ଆପଣମାନେ ଯେଉଁ ଗୃହ ନିର୍ମାଣ କାର୍ଯ୍ୟରେ ହାତ ଦେଇଛନ୍ତି, ତାହା ଭଗବାନଙ୍କ କୃପାରେ ସୁସମ୍ପନ୍ନ ହେଲେ ସାହିତ୍ୟ ସମାଜର ଉଦ୍ଦେଶ୍ୟ ସାଧିତ ହେବ । ଉତ୍କଳର ପ୍ରାଚୀନ ସାହିତ୍ୟ ଗ୍ରନ୍ଥମାନ ଏଠାରେ ସଂଗୃହୀତ ହୋଇ ନବ୍ୟ ଶିକ୍ଷିତମଣ୍ଡଳୀଙ୍କ-ଦ୍ୱାରା ଆଲୋଚିତ ହେଲେ, ଭବିଷ୍ୟତରେ ଅନେକ ସଫଳ ହେବ । ମୋହର ଏହି କାର୍ଯ୍ୟରେ ସମ୍ପୂର୍ଣ୍ଣ ସହାନୁଭୂତି ରହିଅଛି । ଆମ୍ଭମାନଙ୍କ ପୁରାତନ କବିମାନଙ୍କ ନିକଟରେ ମୁଁ ବିଶେଷ ଋଣୀ । ଯତ୍‌ସାମାନ୍ୟ ପୁରାତନ ସାହିତ୍ୟ ଚର୍ଚ୍ଚା କରି ନିଜକୁ ଧନ୍ୟ ଜ୍ଞାନ କରୁଅଛି । ମୁଁ ଆଶାକରେ ଏ ବିଷୟରେ ଆପଣମାନେ ବିଶେଷ ମନୋଯୋଗୀ ହେବେ । ପରିଶେଷରେ

ପ୍ରାଚୀନ ଉତ୍କଳୀୟ କବିଵର ଉପେନ୍ଦ୍ର ଭଞ୍ଜଙ୍କ 'ରସମଞ୍ଜରୀ'ରୁ କେତୋଟି ଧାଡ଼ି ଆବୃତ୍ତି କରି ମୁଁ ବର୍ତ୍ତମାନ ଭିତ୍ତି ସ୍ଥାପନରେ ଉଦ୍‌ଯୋଗୀ ହେଲି ।

"ବୋଲି ପ୍ରଦକ୍ଷିଣ କରି ହୋଇଲା ଅନ୍ତର
ବିଶ୍ୱକର୍ମାପୁରେ ରହି ଶ୍ରୀକୃଷ୍ଣ ଆଦର
ମଙ୍ଗଳ ଶୁଭଯୁଗରେ ଭିତ୍ତି ପକାଇଲେ
ଶୁକ୍ର ଆଦି ସୁରଗଣ ସୁଆଶିଷ ଦେଲେ ।"

ଉତ୍କଳର ଅମୂଲ୍ୟ ସାହିତ୍ୟ-ସମ୍ପଦର ରକ୍ଷଣାବେକ୍ଷଣ, ପ୍ରଚାର ଓ ଚର୍ଚ୍ଚାର ଆବଶ୍ୟକତା ସମ୍ବନ୍ଧରେ ସଭାପତି ଓ ବକ୍ତାମାନେ ବହୁ ପରାମର୍ଶ ଦେଇଥିଲେ ଏବଂ ଆଧୁନିକ ସାହିତ୍ୟର ଗତି ସମ୍ବନ୍ଧରେ ଆଲୋଚନା କରିଥିଲେ ।

ଯୋଗେଶ ବାବୁ କହିଥିଲେ—"ସାହିତ୍ୟ ଶବ୍ଦର ମୂଳ ଅର୍ଥ ସମୟକ୍ରମେ ପରିବର୍ତ୍ତିତ ହୋଇଯାଇଛି । କବି ଶବ୍ଦର ଅର୍ଥ ପଣ୍ଡିତ । ସମସ୍ତ ଲେଖକ କବି ନୁହନ୍ତି, କି ସମସ୍ତ ଲେଖା ସାହିତ୍ୟ ବା କବିତା ନୁହେଁ । କବିମାନଙ୍କର ସଂଖ୍ୟା ପୃଥିବୀର ଲୋକସଂଖ୍ୟା ତୁଳନାରେ ନିତାନ୍ତ କମ୍; ଅର୍ଥାତ୍ ଷୋଳପଣରେ ଏକ ପାହି ହେଲେ ମଧ୍ୟ ସେମାନଙ୍କର ଲେଖା ସଂସାରର ଲୋକମାନଙ୍କୁ ଚାଳିତ କରୁଅଛି ଓ ପ୍ରକୃତପକ୍ଷେ ସମାଜ ସେହିମାନଙ୍କଦ୍ୱାରା ଚାଳିତ ହେଉଅଛି ।"

**କଟକରେ ମହାଭାରତୀୟ ଖ୍ରୀଷ୍ଟିଆନ ସମ୍ମିଳନୀ :** ମଧୁବାବୁ ଦୁଇଥର ମହାଭାରତୀୟ ଖ୍ରୀଷ୍ଟିଆନ୍ ସମ୍ମିଳନୀର ସଭାପତି ହୋଇଥିଲେ । ଏହି ସମ୍ମିଳନୀ ସହିତ ଭାରତର ବହୁ ମୁଖିଆ ନେତା ସମ୍ପୃକ୍ତ ଥିଲେ । ସାର୍ କେ.ଟି. ପାଲ୍, ଏ.ସି. ବାନାର୍ଜୀ, ମି. କୋଟିଲିଙ୍ଗମ୍‌ଙ୍କପରି ବିଶିଷ୍ଟ ଭାରତୀୟ ନେତା ଏଥିରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଏମାନଙ୍କୁ ଓଡ଼ିଶାର ଏକ ଚିତ୍ର ଦେବା ଉଦ୍ଦେଶ୍ୟରେ କଟକରେ ଏହି ସମ୍ମିଳନୀର ଷଷ୍ଠ ଅଧିବେଶନ ବସାଇବାପାଇଁ ମଧୁବାବୁ ସ୍ଥିର କରିଥିଲେ । ଖ୍ରୀ: ୧୯୧୯ ଡିସେମ୍ବର ୨୯, ୩୦ ଓ ୩୧ ତାରିଖରେ ସମ୍ମିଳନୀର ଷଷ୍ଠ ବାର୍ଷିକ ଅଧିବେଶନ ମାନ୍ଦ୍ରାଜର ରାୟବାହାଦୁର ଶ୍ରୀ କୋଟିଲିଙ୍ଗମ୍‌ଙ୍କ ସଭାପତିତ୍ୱରେ କଟକରେ ଅନୁଷ୍ଠିତ ହୋଇଥିଲା । ସଭାପତି ସ୍ୱଭାଷଣରେ ମଧୁବାବୁଙ୍କୁ ବହୁତ ପ୍ରଶଂସା କରିଥିଲେ । ସମ୍ମିଳନୀର ଅଧିବେଶନକୁ ସର୍ବାଙ୍ଗସୁନ୍ଦର କରିବା ପାଇଁ ମଧୁବାବୁ ଓ କୁମାରୀ ଶୈଳବାଳା ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଅନ୍ୟାନ୍ୟ ପ୍ରଦେଶରୁ ବହୁ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ସେମାନେ ଓଡ଼ିଶା ସହିତ ଯେପରି ଘନିଷ୍ଠ ଭାବରେ ପରିଚିତ ହୋଇପାରିବେ, ସେଥିନିମନ୍ତେ ମଧୁବାବୁ ତତ୍ପର ଥିଲେ । ବିଦେଶାଗତ ଖ୍ରୀଷ୍ଟିଆନ୍ ଭାଇମାନଙ୍କୁ ଓଡ଼ିଶାର ଦେଶମିଶ୍ରଣ, ସ୍ୱତନ୍ତ୍ର ପ୍ରଦେଶ ପ୍ରଭୃତି ସମସ୍ୟା ସମ୍ବନ୍ଧରେ ମଧୁବାବୁ ବିବିଧ ଉପାୟରେ ଅବହିତ କରାଇଥିଲେ ।

**ଉତ୍କଳ ଛାତ୍ର ସମ୍ମିଳନୀରେ ସଭାପତିତ୍ୱ**—ଖ୍ରୀ: ୧୯୧୯ ଡିସେମ୍ବର ୨୬।୨୭ ତାରିଖରେ ପୁରୀରେ ଉତ୍କଳ ସମ୍ମିଳନୀର ୧୫ଶ ଅଧିବେଶନ ସମ୍ବଲପୁରର ଶ୍ରୀ ଚନ୍ଦ୍ରଶେଖର ବେହେରାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସେହି ସମୟରେ ମଧୁବାବୁ କଟକରେ ଭାରତୀୟ ଖ୍ରୀଷ୍ଟିଆନ୍ ସମ୍ମିଳନୀରେ ବ୍ୟାପୃତ ରହିଥିଲେ । ଏହା ସତ୍ତ୍ୱେ "ଦେଶପୂଜ୍ୟ" ମାନନୀୟ ମି: ଦାସ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଦିନ (୨୭ ତାରିଖ) ଉତ୍କଳ ଯୁବକ ସମ୍ମିଳନୀର ସପ୍ତମ ବାର୍ଷିକ ଅଧିବେଶନରେ ସଭାପତି ହୋଇଥିଲେ । ଏହି ଯୁବକ ସମ୍ମିଳନୀରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ଯୁବକ-ପ୍ରତିନିଧି ଯୋଗ ଦେଇଥିଲେ । ସମ୍ମିଳନୀ ମଣ୍ଡପରେ ଯୁବକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ମଧୁବାବୁ ତାଙ୍କ ସଭାପତି ଅଭିଭାଷଣରେ କହିଥିଲେ, "ପ୍ରତ୍ୟେକ ବ୍ୟକ୍ତି ନିଜକୁ ଯୁବକ ବୋଲି ଭାବିବା ଉଚିତ । ପାଶ୍ଚାତ୍ୟ ଶିକ୍ଷା ଓ ନବଶକ୍ତି ଯୁବକସମାଜକୁ ଆନ୍ଦୋଳିତ କରିଅଛି ସତ୍ୟ, ଏହା ସତ୍ତ୍ୱେ ଆମ୍ଭେମାନେ ଆମ୍ଭମାନଙ୍କର ପ୍ରାଚ୍ୟ ସ୍ୱଭାବକୁ ତ୍ୟାଗ ନ କରି ଶିକ୍ଷାର ଆଦର୍ଶ ପରିବର୍ତ୍ତନ କରିପାରୁଁ ।"

ଏହି ସମ୍ମିଳନୀରେ ଓଡ଼ିଶାରେ ଉପାଧ୍ୟୁତ୍ତର ଶ୍ରେଣୀ ଖୋଲିବାପାଇଁ ଦାବୀ ହୋଇଥିଲା । ବିଦ୍ୟାଳୟ ଓ କଲେଜମାନଙ୍କର ରାଜନୀତି ବିଜ୍ଞାନରେ ଶିକ୍ଷାଦାନ ସପକ୍ଷରେ ଓ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଦେବନାଗରୀ ଅକ୍ଷର ବ୍ୟବହାର ବିରୁଦ୍ଧରେ ମତ ପ୍ରକାଶ ପାଇଥିଲା । ସ୍କାଉଟ ସଂସ୍ଥା ଗଠନ ସପକ୍ଷରେ ମତ ହୋଇଥିଲା ।

**ରେଭେନ୍‌ସା କଲେଜରେ ଏମ୍. ଏ. ଓ ବି. ଏଲ୍. କ୍ଲାସ**—ରେଭେନ୍‌ସା କଲେଜରେ ଏମ୍. ଏ. ଓ ବି. ଏଲ୍. କ୍ଲାସ ଦୁଇଟି ଖୋଲିବାପାଇଁ ଲୋକେ ଦାବୀ କରୁଥାଆନ୍ତି । ପ୍ରଥମେ ପ୍ରତିବର୍ଷ ଉତ୍କଳ ସମ୍ମିଳନୀର କାର୍ଯ୍ୟ ନିର୍ବାହିକା ସମିତି ଓ ବିଷୟ ନିର୍ବାଚନ ବୈଠକମାନଙ୍କରେ ଏହାର ଆଲୋଚନା ହେଉଥିଲା । ସରକାର ଓ ବିଶ୍ୱବିଦ୍ୟାଳୟ ଏମ୍. ଏ. ପରୀକ୍ଷା ଦେବାର ଅନୁମତି ଦବାରୁ ଘରୋଇ ଭାବରେ କେତେଜଣ ଯୁବକ ଏମ୍. ଏ. ପାଶ୍ କରିଥିଲେ; କିନ୍ତୁ ବିଦ୍ୟାର୍ଥୀଙ୍କ ସଂଖ୍ୟା ସନ୍ତୋଷଜନକ ହୋଇ ନଥିଲା । ଏହି କାରଣରୁ ଏହି କ୍ଲାସ୍ ଦୁଇଟିକୁ ଏଠାରୁ ଉଠାଇ ଦେବାପାଇଁ ମଧ୍ୟ ପ୍ରସ୍ତାବ ହେଲା । କିନ୍ତୁ ଅସ୍ଥାୟୀ ଭାବେ ଉଠାଇଦେବା ସପକ୍ଷରେ ମଧୁବାବୁ ଥିଲେ । ସେ ଯୁକ୍ତି କରୁଥିଲେ, "ବର୍ତ୍ତମାନ ଏ ଦୁଇଟି କ୍ଲାସ ଖୋଲିଦେଲେ, କେତେକ ଅଧ୍ୟାପକ ନିଯୁକ୍ତି ପାଇବେ । ଆମ ଦେଶରେ ଅଧ୍ୟାପକ ହେବାଭଳି ଲୋକଙ୍କ ସଂଖ୍ୟା ଅତି ଅଳ୍ପ, ନାହାନ୍ତି କହିଲେ ଚଳେ । ପଡ଼ୋଶୀ ପ୍ରଦେଶମାନଙ୍କରୁ ଅଧ୍ୟାପକ ଆସିଲେ ଏହି ସବୁ ସ୍ଥାନ ୨୫ କି ୩୦ ବର୍ଷ ପର୍ଯ୍ୟନ୍ତ ସେମାନଙ୍କଦ୍ୱାରା ଅଧିକୃତ ହୋଇରହିବ । ଫଳରେ ଓଡ଼ିଶାବାସୀ ଏସବୁ ଚାକିରି ପାଇବାରୁ ବଞ୍ଚିତ ହେବେ । ଯଦି ସରକାର ବୃତ୍ତି ଦିଅନ୍ତେ, ତାହାହେଲେ ବହୁ ଯୁବକ ଓଡ଼ିଶାରୁ ଯାଇ କଲିକତାରେ ପଢ଼ନ୍ତେ; ପାଞ୍ଚଦଶବର୍ଷ ଭିତରେ

ଉପଯୁକ୍ତ ସଂଖ୍ୟାରେ ଏମ୍. ଏ. ଓ ବି. ଏଲ୍. ପାଶ କରିବାର ଲୋକ ବାହାରନ୍ତେ । ସେତିକବେଳେ କଟକରେ ଏମ୍. ଏ. ଓ ବି. ଏଲ୍. କ୍ଲାସ ଖୋଲିଲେ ବହୁ ଉପଯୁକ୍ତ ଓଡ଼ିଆ ଅଧ୍ୟାପକ ରୂପେ ନିଯୁକ୍ତ ହୋଇପାରିବେ ।" ସେ ଏହି କ୍ଲାସଗୁଡ଼ିକ ସ୍ଥାୟୀଭାବରେ ଉଠାଇଦେବା ପ୍ରସ୍ତାବ ବିରୋଧରେ ଥିଲେ । ମଧୁବାବୁଙ୍କ ଯୁକ୍ତିକୁ ଗ୍ରହଣକରି ସରକାର ପ୍ରସ୍ତାବ ଉଠାଇ ନେଇଥିଲେ ।

ଏତିକି କରି ମଧୁବାବୁ ନିଶ୍ଚିନ୍ତ ରହି ନ ଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟ ସିନେଟର ସଭ୍ୟ ଥିବାରୁ ଏ ପ୍ରସଙ୍ଗରେ ସେଠାରେ ଘରୋଇଭାବରେ ଆଲୋଚନା ମଧ୍ୟ କରୁଥିଲେ । ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ସାର୍ ଆଶୁତୋଷ । ତାଙ୍କର ଗୁରୁଙ୍କ ପ୍ରତି ବିଶେଷ ସମ୍ମାନ ଥିବାରୁ ସେ ଗୁରୁଙ୍କ ପ୍ରସ୍ତାବକୁ ପୂର୍ଣ୍ଣ ସମର୍ଥନ କରୁଥିଲେ । ପୁଣି ମଧୁବାବୁ ବେଙ୍ଗଲ କାଉନ୍‌ସିଲ୍‌ର ମେମ୍ବର ଥିବାରୁ ସରକାରୀ ମହଲରେ ମଧ୍ୟ ତାଙ୍କର ପ୍ରତିପତ୍ତି ଥିଲା । ଓଡ଼ିଆ ଛାତ୍ରଙ୍କୁ ଏମ୍. ଏ. ଓ ବି. ଏଲ୍. ଛାତ୍ରବୃତ୍ତି ଦେବା ସମ୍ବନ୍ଧରେ ସେ ସରକାର ଓ ବିଶ୍ୱବିଦ୍ୟାଳୟଙ୍କ ସହିତ ପତ୍ରାଳାପ କରିଥିଲେ । ସାର୍ ଆଶୁତୋଷ ମଧ୍ୟ ଏହା ସମର୍ଥନକରି ସରକାରଙ୍କୁ ଲେଖିଥିଲେ । ଫଳରେ ସରକାର ଖ୍ରୀ: ୧୯୦୯ ଠାରୁ ୧୯୧୯ ପର୍ଯ୍ୟନ୍ତ ପ୍ରତିବର୍ଷ ସାତଜଣଙ୍କ ପାଇଁ କଲିକତାରେ ଏ ଦୁଇ କ୍ଲାସରେ ପଢ଼ିବା ପାଇଁ ବୃତ୍ତି ଖଞ୍ଜିଦେଲେ । ବହୁ ମେଧାବୀ ଛାତ୍ର ଏ ବୃତ୍ତି ପାଇ କଲିକତାରେ ଏମ୍. ଏ. ବି. ଏଲ୍. ଡିଗ୍ରି ପାଇ ଫେରିଥିଲେ ଓ ଅଳ୍ପ କେତେ ବର୍ଷ ଭିତରେ ଶତାଧିକ ଏମ୍. ଏ. ବି. ଏଲ୍. ଯୋଗ୍ୟତାସମ୍ପନ୍ନ ଲୋକ ଓଡ଼ିଶାରେ ଡେପୁଟୀ କଲେକ୍ଟର ଓ ଅଧ୍ୟାପକ ପ୍ରଭୃତି ବଡ଼ ବଡ଼ ଚାକିରିରେ ରହିଲେ ଓ ବିଶିଷ୍ଟ ଓକିଲ ମଧ୍ୟ ହେଲେ ।

ଏହାଦ୍ୱାରା ଅନ୍ୟ ପ୍ରଦେଶରେ ଛାତ୍ରମାନଙ୍କ ସହ ପ୍ରତିଯୋଗିତା କରି କୃତିତ୍ୱ ଅର୍ଜନ କରିବା ସୁବିଧା ଓଡ଼ିଆ ଛାତ୍ରମାନେ ପାଇଲେ । ଦୃଷ୍ଟିଭଙ୍ଗୀରେ ସଂକୀର୍ଣ୍ଣତା ମଧ୍ୟ କ୍ରମେ ଲୋପପାଇଲା ।

ଇଂରେଜମାନେ ଖ୍ରୀ: ୧୮୦୩ରେ ଓଡ଼ିଶାକୁ ସେମାନଙ୍କର ଶାସନାଧୀନ କରିଥିଲେ ମଧ୍ୟ ଏହାର ୫୦-୬୦ ବର୍ଷ ପରେ ସୁଦ୍ଧା ସେମାନେ ଓଡ଼ିଶାର ସାମୂହିକ ଉନ୍ନତି ପାଇଁ କିଛି କରି ନ ଥିଲେ କହିଲେ ଚଳେ । ଉଦାସୀନତା ହିଁ ଏହାର ଏକ ପ୍ରଧାନ କାରଣ । ପୂର୍ବେ ମୁସଲମାନ ଓ ମରହଟ୍ଟା ଅମଳରେ ଯେଉଁ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତିତ ଥିଲା, ତାହା ମୋଟାମୋଟି ଭାବରେ ପ୍ରାୟ ୫୦ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା; ଅବଧାନଙ୍କର ଚାଟଶାଳୀ ଓ ସଂସ୍କୃତ ପଣ୍ଡିତଙ୍କ ଟୋଲ୍ ବା ସଂସ୍କୃତ ପାଠଶାଳା ପ୍ରଚଳିତ ଥିଲା ।

ଇଂରେଜ ପଦ୍ଧତିରେ ରାଜକାର୍ଯ୍ୟ ଚଳାଇବା ପାଇଁ ଯେଉଁ ଶିକ୍ଷା ଆବଶ୍ୟକ, ତାହା ଏଠାରେ ନ ଥିଲା । ଲୋକମାନଙ୍କର ମଧ୍ୟ ସେ ଦିଗରେ ବିଶେଷ ଆଗ୍ରହ ନ ଥିଲା ଏବଂ ସରକାରୀ ଉଦ୍ୟମ ଅତି କ୍ଷୀଣ ଥିଲା । ଏହା ଫଳରେ 'ବିଦେଶୀ'ଙ୍କ ପ୍ରଭାବ ଶାସନ

ପରିଚାଳନା କେନ୍ଦ୍ର ବା ଅଫିସମାନଙ୍କରେ ବିଶେଷଭାବରେ ବିଦ୍ୟମାନ ଥିଲା । ବଙ୍ଗ ସହିତ ଓଡ଼ିଶା ଯୋଡ଼ା ହୋଇଯିବାରୁ ଅଣ-ଓଡ଼ିଆ ସରକାରୀ ହାକିମମାନେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପ୍ରତି ସେତେ ଦୃଷ୍ଟି ଦେଉ ନ ଥିଲେ । ଓଡ଼ିଶା ପ୍ରତି ସରକାରଙ୍କ ଉଦାସୀନ ମାତକୁ କେତେକ ଉଚ୍ଚମନା ଇଂରେଜ ହାକିମ ବାରମ୍ବାର ସମାଲୋଚନା କରିବାରୁ ସରକାରଙ୍କ ମତିଗତି କ୍ରମେ ବଦଳିଲା, କିନ୍ତୁ ପ୍ରଗତିର ଗତି ମନ୍ଥର ଥିଲା । ଇଂରେଜୀ ଶିକ୍ଷା ଓ ତଥାକଥିତ 'ସ୍ୱଦେଶୀ' ଶିକ୍ଷା ପ୍ରତି ଲୋକଙ୍କର ମଧ୍ୟ ସେତେ ଆଦର ପ୍ରକାଶ ପାଇ ନଥିଲା । ପ୍ରଶାସନିକ କାର୍ଯ୍ୟର ପରିଚାଳନା ହିଁ ଇଂରେଜୀ ଶିକ୍ଷାର ମୂଳ ଉଦ୍ଦେଶ୍ୟ ହୋଇ ରହିଥିଲା ।

ଖ୍ରୀ: ୧୮୮୮ରେ ଏ କ୍ଷେତ୍ରରେ ବାଲେଶ୍ୱର ଜିଲା କଲେକ୍ଟର ମି. ହେନେରି ରିକେଟ୍‌ସ୍ ( Henery Ricketis )ଙ୍କ କାର୍ଯ୍ୟ ଉଲ୍ଲେଖଯୋଗ୍ୟ । ତାଙ୍କ ଅଫିସରେ ସେତେବେଳେ ଜଣେ ହେଲେ ଓଡ଼ିଆ ନ ଥିବା କଥା ସରକାରଙ୍କଠାରେ ସେ ଦାବୀ କରିଥିଲେ ଯେ ଓଡ଼ିଶାରେ ଓଡ଼ିଆ ସରକାରୀ କର୍ମଚାରୀଙ୍କ ସଂଖ୍ୟା ଯଥେଷ୍ଟ ପରିମାଣରେ ବୃଦ୍ଧି କରିବାକୁ ହେବ ଏବଂ ଏହି ଲକ୍ଷ୍ୟ ହାସଲ କରିବାପାଇଁ ବହୁ ସଂଖ୍ୟାରେ 'ଆଧୁନିକ ସ୍କୁଲ' ସ୍ଥାପନ କରିବାକୁ ହେବ । ରିକେଟ୍‌ସ୍‌ଙ୍କ ଆନ୍ତରିକ ଚେଷ୍ଟାରେ ଏ ଦିଗରେ ସରକାରଙ୍କ ଦୃଷ୍ଟି ପଡ଼ିଥିଲା ଏବଂ ଖ୍ରୀ: ୧୮୩୬ ବେଳକୁ ସବୁ ସରକାରୀ ଅଫିସରେ ଓଡ଼ିଆ କର୍ମଚାରୀଙ୍କ ସଂଖ୍ୟା ବୃଦ୍ଧି ପାଇଥିବା ଦେଖି ରିକେଟ୍‌ସ୍ ଖୁସି ହୋଇଥିଲେ । ସେ ସରକାରଙ୍କଠାକୁ ଲେଖିଥିଲେ, "ଏହି ଭୂମି କର୍ଷଣଯୋଗ୍ୟ । ଆମେ କେବଳ ଉପରଟି ଘଷି ଦେଇଥିଲୁ । ସେଥିରୁ ଭଲ ଫଳ ଫଳିଛି, ବର୍ତ୍ତମାନ ଆମ୍ଭମାନଙ୍କର ବହୁ ସଂଖ୍ୟକ ଉଚ୍ଚ-କୋଟୀର ଓଡ଼ିଆ ଅଫିସର ଅଛନ୍ତି × ×" (ଊନବିଂଶ ଶତାବ୍ଦୀର ଓଡ଼ିଶା) ।

କ୍ରମେ ଓଡ଼ିଶା ଡିଭିଜନ ଓ ଓଡ଼ିଶା ଗଡ଼ଜାତମାନଙ୍କରେ 'ଆଧୁନିକ ବିଦ୍ୟାଳୟ'-ମାନଙ୍କ ସଂଖ୍ୟା ବୃଦ୍ଧି ପାଇଲା । ଖ୍ରୀ' ୧୮୬୯ ପର୍ଯ୍ୟନ୍ତ ଶିକ୍ଷକମାନଙ୍କୁ ଟ୍ରେନିଂ ଦେବା ବ୍ୟବସ୍ଥା ନ ଥିଲା । ତାଲିମପ୍ରାପ୍ତ ଶିକ୍ଷକ ଅଭାବ ଯୋଗୁ ନୂତନ ସ୍କୁଲ ସ୍ଥାପନ ମଧ୍ୟ କଷ୍ଟକର ହେଉଥିଲା । ଏହି ବର୍ଷ କଟକରେ ନର୍ମାଲ ସ୍କୁଲ ସ୍ଥାପନପରେ କ୍ରମେ ତାଲିମପ୍ରାପ୍ତ ଶିକ୍ଷକ-ମାନଙ୍କ ସଂଖ୍ୟା ବୃଦ୍ଧି ପାଇଲା ଏବଂ ଏହା ସଙ୍ଗେ ସଙ୍ଗେ ଉଚ୍ଚ ସ୍କୁଲ ସ୍ଥାପନ ମଧ୍ୟ ବୃଦ୍ଧିପାଇଲା । କେବଳ କଟକ ଜିଲାରେ ଖ୍ରୀ: ୧୮୭୫ରେ ପ୍ରାୟ ୫୩୯ଟି ସରକାରୀ ମଞ୍ଜୁରୀପ୍ରାପ୍ତ ସ୍କୁଲ ଥିଲା ଏବଂ ଏଥିରେ ପ୍ରାୟ ୧୦,୯୧୬ ଛାତ୍ର ପଢ଼ୁଥିଲେ । ଖ୍ରୀ: ୧୮୮୫ ସରିକି ଛାତ୍ରସଂଖ୍ୟା ୬୫୦୦୦କୁ ବୃଦ୍ଧି ପାଇଥିଲା ।

ମାଧ୍ୟମିକ ସ୍କୁଲମାନଙ୍କର ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲା । ସମଗ୍ର ଓଡ଼ିଶାରେ ହାଇସ୍କୁଲ-ମାନଙ୍କରେ ସଂଖ୍ୟା ମଧ୍ୟ ଅଧିକ ହୋଇଥିଲା । କଟକରେ ଖ୍ରୀ: ୧୮୪୧ରେ ଜିଲାସ୍କୁଲ ସ୍ଥାପିତ ହୋଇଥିଲା ଓ ଏହାପରେ ଖ୍ରୀ: ୧୬୬୮ରେ ଏହାକୁ ସ୍କୁଲରେ ପରିଣତକରି ଏଥିରେ ଦୁଇଟି କଲେଜ ଶ୍ରେଣୀ ଯୁକ୍ତ କରାଇଥିଲା ରିବଂ ୧୮୭୮ରେ ପ୍ରଥମ ଶ୍ରେଣୀ କଲେଜକୁ ଉନ୍ନୀତ ହୋଇଥିଲା । ଖ୍ରୀ: ୧୮୬୬ର ଭୀଷଣ ଦୁଭିକ୍ଷ ( ନ'ଅଙ୍କ ଦୁର୍ଭିକ୍ଷ ) ପରେ ଓଡ଼ିଶାର

ସର୍ବାଙ୍ଗୀନ ଉନ୍ନତି ପ୍ରତି ସରକାର ଓ ସରକାରୀ ହାକମମାନଙ୍କ ଦୃଷ୍ଟି ପଡ଼ିଥିଲା । ଶିକ୍ଷା ଦିଗରେ ଉନ୍ନତି ଉଦ୍ୟମ ମଧ୍ୟ ନ'ଅଙ୍କ ଦୁର୍ଭିକ୍ଷର ଭୟାବହ ପରିଣତିର ଫଳ । ଦୁର୍ଭିକ୍ଷର ଦଶ ବର୍ଷପରେ ଖ୍ରୀ: ୧୮୭୮ରେ ମୟୂରଭଞ୍ଜର ମହାରାଜା ପୁଣ୍ୟଶ୍ଳୋକ କୃଷ୍ଣଚନ୍ଦ୍ର ଭଞ୍ଜ ୨୦,୦୦୦ ଟଙ୍କା ଦାନ କରିଥିଲେ ଏବଂ ତାଙ୍କର ଅନୁରୋଧମତେ ସରକାର କଟକ ଡିଭିଜନ୍‌ର କମିସନର ଟି.ଇ. ରେଭେନ୍‌ସାଙ୍କ ନାମ ଅନୁସାରେ 'ରେଭେନ୍‌ସା କଲେଜ'ସ୍ଥାପନକଲେ । କଲେଜିଏଟ୍ ହାଇସ୍କୁଲ ସହିତ ସଂଯୁକ୍ତ ଥିବା ଦୁଇଟି କଲେଜ ଶ୍ରେଣୀକୁ ସେଥିରୁ ବିଚ୍ଛିନ୍ନ କରିଦେଇ ଏହି ନୂତନ କଲେଜ ସହିତ ଯୁକ୍ତ କରିଦେଲେ ଏବଂ ଏହାର ତିନିବର୍ଷ ପରେ ( ଖ୍ରୀ: ୧୮୮୧ରେ ) ଏହି କଲେଜରେ ଆଇନ୍ ଶ୍ରେଣୀ ମଧ୍ୟ ଖୋଲିଲେ । କଲେଜ ସହିତ କଲେଜିଏଟ୍ ହାଇସ୍କୁଲଟି ଯୋଡ଼ା ହୋଇଥିଲା । ଖ୍ରୀ:୧୯୧୨ରେ କଲେଜ ବିଭାଗରୁ ଏହି ହାଇସ୍କୁଲକୁ କାଢ଼ି ନେଇ ସ୍ୱତନ୍ତ୍ର ସଂସ୍ଥା କରିଦିଆଗଲା ।

କଲେଜିଏଟ୍ ସ୍କୁଲଟି ପ୍ରଥମେ ବକ୍‌ସିବଜାରର ବଲାଇଭଗତ କୋଠି ର (ଯେଉଁ-ଠାରେ ବର୍ତ୍ତମାନ ସରକାରୀ ଛାପାଖାନାର ଏକ ଅଂଶ ଅଛି ) ବସୁଥିଲା । ଏହି ସ୍କୁଲରେ ସର୍ଭେ ସ୍କୁଲ ମଧ୍ୟ ହେଉଥିଲା । ଖ୍ରୀ:୧୯୧୫ରେ ଏହି ସର୍ଭେ ସ୍କୁଲ ଅଲଗା ହୋଇଗଲା ଏବଂ ଓଡ଼ିଶା ଇଞ୍ଜିନିଅରିଂ ସ୍କୁଲରେ ପରିଣତ ହେଲା ।

ପୁରୁଣା ରେଭେନ୍‌ସା କଲେଜ ବର୍ତ୍ତମାନର ଜିଲା ଜଜ୍‌କୋର୍ଟ କୋଠାରେ ହେଉଥିଲା । ପରେ ଏଠାରେ ଟ୍ରେନିଂ କଲେଜ ବସିଲା । କଲେଜିଏଟ୍ ସ୍କୁଲ ମଧ୍ୟ କେତେ କାଳ ବର୍ତ୍ତମାନର ରେଭେନ୍‌ସା ବାଳିକା ସ୍କୁଲ ଓ ସିଟି ହସ୍‌ପିଟାଲ ( ଜେଲ୍ ପଡ଼ିଶା ) ପୁରୁଣା ଅଦାଲତ କୋଠା ଯେଉଁ କୋଠିମାନଙ୍କରେ ଅଛି, ସେଠାରେ ବସୁଥିଲା । କଲେକ୍‌ଟର ଅଫିସ ନିକଟରେ ନୂଆ କୋଠା ତିଆରି ହେବା ପରେ କଲେଜିଏଟ୍ ସ୍କୁଲ ଏଠାକୁ ଉଠି ଆସିଲା । ଏହା ସହିତ ଏକ ଛାତ୍ରାବାସ ମଧ୍ୟ ନିର୍ମିତ ହେଲା ।

କଟକ ସହରର ପୂର୍ବାଞ୍ଚଳ ଚାଉଳିଆଗଞ୍ଜ ଅଞ୍ଚଳରେ ନୂତନ ଅଟ୍ଟାଳିକା ନିର୍ମିତ ହେବାପରେ ଖ୍ରୀ: ୧୯୨୨ରେ ରେଭେନ୍‌ସା କଲେଜ ନୂତନ ଅଟ୍ଟାଳିକାକୁ ଉଠିଗଲା । ଆଜି ପର୍ଯ୍ୟନ୍ତ ନିମଚଉଡ଼ିର ପୁରୁଣା କଲେଜ ଥିବା ଗଳିଟି 'ପୁରୁଣା କଲେଜ ଗଳି' ନାମରେ ପରିଚିତ ହୋଇଆସୁଛି । ଏହି ଗଳିରେ କଲେଜିଏଟ୍ ସ୍କୁଲ ଓ ତାହାର ହଷ୍ଟେଲ, କାଠଯୋଡ଼ି ହଷ୍ଟେଲ ଓ ଟ୍ରେନିଂ କଲେଜ ହଷ୍ଟେଲ ବର୍ତ୍ତମାନ ଅଛି ।

ରେଭେନ୍‌ସା କଲେଜରେ ବି. ଏଲ୍. ପଢ଼ିବାର ବ୍ୟବସ୍ଥା ମଧ୍ୟ ହୋଇଗଲା । ପୂର୍ବରୁ ଓଡ଼ିଶାର ଛାତ୍ରମାନଙ୍କୁ ବି. ଏଲ୍. ପଢ଼ିବାପାଇଁ କଲିକତା ଯିବାକୁ ପଡ଼ୁଥିଲା ।

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ, ରେଭେନ୍‌ସା କଲେଜ ସ୍ଥାପିତ ହେବାର ପ୍ରାୟ ୨୦ ବର୍ଷ ଭିତରେ କଲେଜରେ ଶିକ୍ଷାର ଅଗ୍ରଗତି ସନ୍ତୋଷଜନକ ହୋଇ ନ ଥିବା ଜଣାଯାଏ । ଖ୍ରୀ: ୧୮୯୫ରେ ଏଥିପାଇଁ ପ୍ରିନ୍‌ସପାଲଙ୍କୁ ଦାୟୀକରି ଓଡ଼ିଶାର ନେତାମାନେ

ସମାଲୋଚନା କରିଥିଲେ । କମିଶନର କୁକ୍‌ସାହେବ ଖ୍ରୀ: ୧୮୯୪-୯୫ର ବାର୍ଷିକ ପ୍ରଶାସନିକ ରିପୋର୍ଟରେ ରେଭେନ୍‌ସା କଲେଜ ସମ୍ବନ୍ଧରେ ଏହିପରି ମନ୍ତବ୍ୟ ପ୍ରକାଶ କରିଥିଲେ—"ଖ୍ରୀ: ୧୮୯୪ରେ କଲେଜରେ ୬୮ ଜଣ ଛାତ୍ର ବି. ଏ. ପଢ଼ୁଥିଲେ; କିନ୍ତୁ ୧୮୯୫ରେ ଏହି ସଂଖ୍ୟା ୫୧କୁ ଆସିଗଲା । ଏଥିରୁ ୨୧ ଜଣ ଛାତ୍ର ପରୀକ୍ଷା ଦେଇ ମାତ୍ର ୭ ଜଣ ଉତ୍ତୀର୍ଣ୍ଣ ହୋଇଥିଲେ । ଏଫ୍. ଏ.ରେ ୩୧ ଜଣ ପରୀକ୍ଷାର୍ଥୀଙ୍କ ଭିତରୁ ୫ ଜଣ ପାଶ୍ କରିଥିଲେ । ଏହି ଫଳ ଆଦୌ ସନ୍ତୋଷଜନକ ନୁହେଁ । କଲେଜର ଅଧ୍ୟକ୍ଷ ମି: ହାଲ୍‌ଓ୍ୱାର୍ଡ଼ ( Mr. Hallward ) ଜଣେ ଦକ୍ଷଲୋକ ଥିବାବେଳେ ଏହିପରି ଘଟିବାର କାରଣ ଜଣାଯାଉନାହିଁ । ତେବେ, ଅନୁଷ୍ଠାନରେ କିଛି ତ୍ରୁଟି ଥିବା ଅନୁମାନ କରାଯାଉଛି । ଯଦି ଏହି ବିପର୍ଯ୍ୟୟର ନିରାକରଣ ପାଇଁ କୌଣସି ଉପାୟ ଥାଏ, ତାହା-ହେଲେ ଏହାକୁ ଆବିଷ୍କାରକରି ପ୍ରୟୋଗ କରିବାକୁ ହେବ । ଓଡ଼ିଶା ଗୋଟିଏ ଡିଭିଜନ ମାତ୍ର । ଏହି କଲେଜଟି ଉଚ୍ଚଶିକ୍ଷାର ଏକମାତ୍ର ଅନୁଷ୍ଠାନ । ଓଡ଼ିଶା ଡିଭିଜନ ଉଚ୍ଚ ଶିକ୍ଷାରେ ଅନୁନ୍ନତ ।"

କୁକ୍ ସାହେବଙ୍କ ରିପୋର୍ଟ ଉପରେ ନିର୍ଭରକରି ମାନ୍ୟବର ମଧୁସୂଦନ ଦାସ ବଙ୍ଗ ବ୍ୟବସ୍ଥାପକ ସଭାରେ ଖ୍ରୀ: ୧୮୯୬ ଜୁଲାଇ ୧୮ ତାରିଖରେ ସରକାରଙ୍କୁ ଏକ ପ୍ରଶ୍ନ ପଚାରି ଏହି ରିପୋର୍ଟ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସରକାରଙ୍କ ତରଫରୁ ଉତ୍ତର ମିଳିଥିଲା ଯେ, ହାଲ୍‌ଓ୍ୱାର୍ଡ ଖ୍ରୀ: ୧୮୯୪ ଠାରୁ ୧୮୯୬ ଏ ତିନି ବର୍ଷ ପାଇଁ କେବଳ ଦାୟୀ । ଏହା ପୂର୍ବରୁ ତିନି ବର୍ଷର ଫଳାଫଳ ସହିତ ତୁଳନାକଲେ ଏହାଙ୍କ ଅମଳର ଫଳାଫଳ ଅଧିକ ଅନୁକୂଳ ଥିବା ଦେଖାଯିବ ।

ଏଫ୍: ଏ: ରେ ୧୮୯୪-୯୬ରେ ୧୦୨ ପରୀକ୍ଷାର୍ଥୀରୁ ୩୮ ଜଣ ପାଶ୍ କରିଥିଲେ । ୧୮୯୧-୯୩ରେ ୧୧୦ ଜଣ ପରୀକ୍ଷାର୍ଥୀରୁ ୩୭ ପାଶ୍ କରିଥିଲେ । ବି: ଏ: ରେ ୧୮୯୪-୯୬ରେ ୬୩ ପରୀକ୍ଷାର୍ଥୀର ୧୫ ଜଣ ଓ ୧୮୯୧-୯୩ରେ ୪୪ ପରୀକ୍ଷାର୍ଥୀରୁ ୧୦ ଜଣ ପାଶ୍ କରିଥିଲେ । ଏହି କାରଣରୁ ସରକାରଙ୍କ ଅନୁସନ୍ଧାନର ଆବଶ୍ୟକତା ଅନୁଭବ କରୁନାହାନ୍ତି ବୋଲି ସରକାରଙ୍କ ସଭ୍ୟ ଉତ୍ତର ଦେଇଥିଲେ ।

ପୂର୍ବେ ରେଭେନ୍‌ସା କଲେଜରେ ଝିଅମାନଙ୍କର ପାଠପଢ଼ା ପାଇଁ ବ୍ୟବସ୍ଥା ନ ଥିଲା । ସହଶିକ୍ଷା ପାଇଁ ଦାବୀ ହେଉଥିଲେ ମଧ୍ୟ ଛାତ୍ରୀଙ୍କ ସଂଖ୍ୟା ବେଶି ନ ଥିବାରୁ ସରକାର ଏଥିପ୍ରତି ଦୃଷ୍ଟି ଦେଉ ନ ଥିଲେ । ସାମାଜିକ କଟକଣା ମଧ୍ୟ ସହଶିକ୍ଷା ପ୍ରତି ଅନୁକୂଳ ନ ଥିଲା । ଏହି ଶତାବ୍ଦୀର ପ୍ରଥମ ଦଶକରେ ରେଭେନ୍‌ସାରେ ସହଶିକ୍ଷାର ପ୍ରଚଳନ ହୋଇଥିବା ଅନୁମାନ ହୁଏ ।

କଲେଜ ଆରମ୍ଭର ବହୁକାଳ ପର୍ଯ୍ୟନ୍ତ ୟୁରୋପୀୟମାନେ କେବଳ ଅଧ୍ୟକ୍ଷ ହେଉ-ଥିଲେ । ଭାରତୀୟମାନଙ୍କ ଭିତରେ ଅଧ୍ୟାପକ ବିପିନବିହାରୀ ଗୁପ୍ତ ବୋଧହୁଏ ପ୍ରଥମ ଅଧ୍ୟକ୍ଷ ଥିଲେ । ଓଡ଼ିଆଙ୍କ ଭିତରେ ଅଧ୍ୟାପକ ଶ୍ୟାମଚନ୍ଦ୍ର ତ୍ରିପାଠୀ ପ୍ରଥମ ଅଧ୍ୟକ୍ଷ ।

ପଣ୍ଡିତ ଗୋଦାବରୀଶଙ୍କ କଲେଜଶିକ୍ଷାବେଳକୁ ଏହି ଶତାବ୍ଦୀର ପ୍ରଥମ ପାଦରେ ରେଭେନ୍‌ସା କଲେଜରେ ଜଣେ ହେଲେ ଓଡ଼ିଆ ଅଧ୍ୟାପକ ନ ଥିଲେ । ସେ ଲେଖିଛନ୍ତି—"ମୋ ପଢ଼ିବାବେଳକୁ ରେଭେନ୍‌ସା କଲେଜରେ ଜଣେ ହେଲେ ଓଡ଼ିଆ ଅଧ୍ୟାପକ ନ ଥିଲେ, ସମସ୍ତେ ବଙ୍ଗାଳୀ । ସେମାନେ ପ୍ରାୟ ସମସ୍ତେ ବିଦ୍ୟା ଓ ଚରିତ୍ରରେ ଆଦର୍ଶ ବିବେଚିତ ହେଉଥିଲେ ।" ଏମାନଙ୍କ ଭିତରେ ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ (ରାୟ ବାହାଦୁର), ବିଦ୍ୟାନିଧି, ଗୋପାଳଚନ୍ଦ୍ର ଗାଙ୍ଗୁଲି, ବିଧୁବାବୁ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମଧୁବାବୁ ଓଡ଼ିଶାରେ ଓଡ଼ିଆଙ୍କ ଭିତରେ ପ୍ରଥମ ଏମ୍: ଏ: । ତାଙ୍କ ଭାଇ ଡେପୁଟି କଲେକ୍ଟର ଗୋପାଳବଲ୍ଲଭ ଦାସ ରେଭେନ୍‌ସା କଲେଜରୁ ଏମ୍: ଏ: ପାଶ୍ କରିଥିବା ପ୍ରଥମ ଓଡ଼ିଆ ( ୧୮୮୦-୮୧ ? )

ରେଭେନ୍‌ସା କଲେଜର ଇତିହାସ ଖ୍ରୀ: ୧୮୭୮ ଠାରୁ ଏହି ଶତାବ୍ଦୀର ବହୁକାଳ ପର୍ଯ୍ୟନ୍ତ ଓଡ଼ିଆ ଜାତୀୟ-ଜୀବନର ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । ସାମାଜିକ, ଆର୍ଥିକ, ରାଜନୈତିକ, ସାଂସ୍କୃତିକ, ପ୍ରଶାସନିକ—ପ୍ରତ୍ୟେକ କ୍ଷେତ୍ରରେ ରେଭେନ୍‌ସା କଲେଜର ଅଧ୍ୟାପକ ଓ ଛାତ୍ରମାନେ ଓଡ଼ିଶାର କର୍ଣ୍ଣଧାର ହୋଇଛନ୍ତି । ଏହି କାରଣରୁ ମଧୁବାବୁ ଏ ଶିକ୍ଷାନୁଷ୍ଠାନ ଉନ୍ନତି ପ୍ରତି ବିଶେଷ ଲକ୍ଷ୍ୟ ରଖିଥିଲେ । ପାଟନା ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍ ସଭାରେ କଟକର ରେଭେନ୍‌ସା କଲେଜର ଉନ୍ନତି ନିମନ୍ତେ ବିବିଧ ପ୍ରସ୍ତାବ ଦେଇଥିଲେ ।

**ଅନ୍ୟାନ୍ୟ କାର୍ଯ୍ୟାବଳୀ :** ମଧୁବାବୁଙ୍କ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଓଡ଼ିଶାର ବନ୍ୟାପ୍ରତିକାର, କେନାଲ ସମ୍ପ୍ରସାରଣ, ଦୁର୍ଭିକ୍ଷ ନିବାରଣ ସମ୍ବନ୍ଧରେ ଆଲୋଚନା କରି ବହୁ ପ୍ରସ୍ତାବ ଦେଇଥିଲେ । ଖ୍ରୀ: ୧୯୧୦ରେ ଭାରତୀୟ ଶାସନ ସଂସ୍କାର ସମ୍ପର୍କୀୟ ବିଭିନ୍ନ କମିଟିମାନଙ୍କରେ ମଧୁବାବୁ ଯୋଗଦେଇ ଅଂଶଗ୍ରହଣ କରିଥିଲେ ।

**ଗୋରୁ ମାଂସ ବିକ୍ରି ବିରୁଦ୍ଧରେ ସଭା :** ଖ୍ରୀ: ୧୯୨୦ ଜାନୁଆରି ୧୮ତାରିଖ ଦିନ କଟକର କାଣ୍ଟନ୍‌ମେଣ୍ଟ୍ ମାର୍କେଟ ନିକଟରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ମଧୁବାବୁ ଏଥିରେ ସଭାପତିତ୍ୱ କରିଥିଲେ । କର୍ତ୍ତୃପକ୍ଷ ଏହି ମାର୍କେଟ ନିକଟରେ ଗୋରୁମାଂସ ବିକ୍ରି କରିବାପାଇଁ ସ୍ଥାନ ନିରୂପଣ କରିଥିବାରୁ ଏହାଦ୍ୱାରା ହିନ୍ଦୁମାନଙ୍କର ଧର୍ମରେ ବ୍ୟାଘାତ ଘଟୁଥିବା ଯୁକ୍ତି ଦର୍ଶାଯାଇ ଏହା ଶୀଘ୍ର ବନ୍ଦ କରିବାପାଇଁ ସଭାରେ ପ୍ରସ୍ତାବ ଗୃହୀତ ହୋଇଥିଲା । ମଧୁବାବୁଙ୍କ ନେତୃତ୍ୱରେ ଏକ ପ୍ରତିନିଧିଦଳ ଲାଟଙ୍କୁ ଦେଖାକରି ଏହି ବିଷୟ ତାଙ୍କ ନିକଟରେ ପେଷ୍ କରିବାପାଇଁ ସଭାରେ ଏକ ପ୍ରସ୍ତାବ ମଧ୍ୟ ଗୃହୀତ ହୋଇଥିଲା । ଏହି ସଭାରେ ପ୍ରାୟ ୪-୫ ହଜାର ଲୋକ ଉପସ୍ଥିତ ଥିଲେ । ବହୁ ସଂଖ୍ୟାରେ ମୁସଲମାନ ଓ ଖ୍ରୀଷ୍ଟିଆନ୍ ମଧ୍ୟ ଯୋଗ ଦେଇଥିଲେ ଏବଂ ସଭାର ପ୍ରସ୍ତାବକୁ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ।

ଲାଟସାହେବଙ୍କଠାରେ ନିବେଦନ ମଧ୍ୟ ପେଶ୍ ହୋଇଥିଲା । ପୂର୍ବରୁ ସ୍ଥାନୀୟ ହିନ୍ଦୁ ଓ ମୁସଲମାନ ମୁଖ୍ୟବ୍ୟକ୍ତିମାନଙ୍କ ପରାମର୍ଶ ନେଇ ଗୋମାଂସ ବିକ୍ରୀ ଦୋକାନର ସ୍ଥାନ ନିର୍ଣ୍ଣୟ କରାଯାଇଥିବାରୁ ଏହା ବର୍ତ୍ତମାନ ଉଠାଇ ଦିଆଯାଇ ପାରିବ ନାହିଁ ବୋଲି ମାଜିଷ୍ଟ୍ରେଟ୍ କହିଲେ । ମଧୁବାବୁ ଏକଥା ଆଗରୁ ଜାଣି ନଥିବାରୁ ଆନ୍ଦୋଳନରେ ଯୋଗ ଦେଇଥିଲେ ବୋଲି ନିଜେ ଦୁଃଖ ପ୍ରକାଶ କରିଥିଲେ ।

**ମଧୁବାବୁଙ୍କ ଋଷ୍ଟ ଖଣ୍ଡନ :** ଖ୍ରୀ:୧୯୨୦ ଫେବୃଆରି ୧୫ ତାରିଖ ରବିବାର ଦିନ ମଧୁବାବୁ କଟକରୁ ପୁରୀ ଗଲେ । "କଟକରେ କିଏ ସ୍ୱର କରିଦେଲା କି ମଧୁବାବୁ ଚାଲିଗଲେ । ଗୃହେ ଗୃହେ ବଜାର ମଧ୍ୟରେ ସହର ତମାମ ଏ ଖବର ବ୍ୟାପିଗଲା । କିଛି ଶୁଣାନାହିଁ, ହଠାତ୍ ଏ ଘଟନା ହେଲା କିପରି ? ଯେ ଶୁଣିଲା ତାର ବିସ୍ମୟ ଏବଂ ବେଦନା । କେତେ ସ୍କୁଲ କଲେଜ ପିଲା ଓ ସାଧାରଣ ଲୋକ ମଧୁବାବୁଙ୍କ ଘରଠାକୁ ଦଉଡ଼ିଲେ । ଏ ଖବର ମିଛ ହେବ ବୋଲି କେତେ ଦିଅଁ ଦେବତାଙ୍କୁ ଭୋଗ ଯାଚିଲେ । ସନ୍ଧ୍ୟା ବେଳାତକ ଗୁରିଆଡ଼େ ଏହି ଚହଳ ପଡ଼ିଲା । ଶେଷକୁ ତଥ୍ୟ ମିଳିଲା ଯେ ମଧୁବାବୁ ଏଠାରୁ ପୁରୀକୁ ଚାଲିଗଲେ । କବି କହିଛନ୍ତି—ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।

"ମଧୁବାବୁଙ୍କୁ ଲୋକେ କେତେ ସ୍ନେହ, ଭକ୍ତି, ଆଦର କରନ୍ତି, ତାହା ରବିବାର ଦିନ ଦୁଇଚାରି ଘଣ୍ଟା ମଧ୍ୟରେ କଟକରେ ସଫା ଦେଖାଗଲା । ଆଉ ଅଧିକ ଦୂର ଏ ମିଥ୍ୟା ଦୁଃସମ୍ବାଦ ନ ଯାଇଛି ରକ୍ଷା । ଆମ୍ଭମାନଙ୍କର ବିଶ୍ୱାସ, ଓଡ଼ିଆଙ୍କ କୁଳବୃଦ୍ଧଙ୍କର ଏଥିରେ ଗୋଟିଏ ଋଷ୍ଟ ଖଣ୍ଡନ ହୋଇଗଲା ।" (ସାପ୍ତାହିକ 'ସମାଜ' ୨୧ । ୨ । ୧୯୨୦)

**ସ୍ମୃତିରକ୍ଷାର ତାତ୍ପର୍ଯ୍ୟ** : ଖ୍ରୀ: ୧୯୨୦ ଏପ୍ରେଲ ୪ ତାରିଖ ଦିନ ବର୍ଗୀୟ-ସମ୍ମିଳନୀ ମଣ୍ଡପରେ ସ୍ୱର୍ଗୀୟ ଗୌରୀଶଙ୍କର ରାୟ (ଉତ୍କଳ ଦୀପିକା ଓ କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରତିଷ୍ଠାତା ଓ ସମ୍ପାଦକ )ଙ୍କ ସ୍ମୃତିସଭା ଅନୁଷ୍ଠିତ ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । ସେ ସ୍ୱ ଭାଷଣରେ ସ୍ମୃତିରକ୍ଷାର ତାତ୍ପର୍ଯ୍ୟ ବୁଝାଇଥିଲେ ଏବଂ ଏ ସମ୍ପର୍କରେ ଏକ ପ୍ରସ୍ତାବର ସୂଚନା ଦେଇଥିଲେ । "ଯୋଗ୍ୟ ଲୋକଙ୍କର ସ୍ମୃତି ଛବି କିମ୍ବା ଘର ବା ମନ୍ଦିର ନିର୍ମାଣରେ ପ୍ରକୃତ ରୂପେ ରକ୍ଷା ହୁଏ ନାହିଁ । ଏପରି ଭାବରେ ସ୍ମୃତି ରକ୍ଷା କରିବାକୁ ହେବ ଯେ ସେହି ସ୍ମୃତିଦ୍ୱାରା ଦେଶର ଭାବି ଯୁବକମାନେ ସେହି ମୃତ ମହାତ୍ମାଙ୍କ ଆଦର୍ଶ ଜୀବନୀ ଦୃଷ୍ଟିରେ ନିଜର ଜୀବନ ଏବଂ ଚରିତ୍ର ଗଠନ କରିବେ ।" ସଭାସ୍ଥ ଭଦ୍ରମଣ୍ଡଳୀ ଏହି ସୂଚନାଟିକୁ ଆନନ୍ଦ ସହ ସ୍ୱାଗତ କରିଥିଲେ ।

**ଦେଶମିଶ୍ରଣ କାର୍ଯ୍ୟ ମଧୁବାବୁଙ୍କ ପରାମର୍ଶ ମତେ ହେଉ :** ଖ୍ରୀ: ୧୯୨୦ ମଇ ମାସ ୧୨ ତାରିଖ ଦିନ ପୁରୀ ମୁକାମରେ ଉତ୍କଳ ସମ୍ମିଳନୀ କାଉନ୍‌ସିଲର ଏକ ବୈଠକ ହୋଇଥିଲା । ଲାଟଙ୍କ ବ୍ୟବସ୍ଥାପକ ସଭା ଓ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଶାସନ ସଂସ୍କାର କମିଟି ସୁପାରିସ୍‌ମତେ ଓଡ଼ିଶାକୁ ଯେଉଁ ସଂଖ୍ୟାରେ ସ୍ଥାନ ଦିଆଯାଇଛି,

ସେଥିରେ କନ୍‌ଫରେନ୍‌ସ ଦୁଃଖ ପ୍ରକାଶ କରିଥିଲେ ଏବଂ ବିଶ୍ୱାସ କରିଥିଲେ ଯେ ଫ୍ରେଞ୍ଚାଇଜ୍ କମିଟି (Franchise Committee) ରିପୋର୍ଟରେ ଲୋକ ସଂଖ୍ୟା, ଭୋଟଦାତାଙ୍କ ସଂଖ୍ୟା ଏବଂ ସ୍ଥାନୀୟ ଅବସ୍ଥା ଅନୁସାରେ ମେମ୍ବର ସଂଖ୍ୟା ବଣ୍ଟନ କରିବା ପାଇଁ ଯେଉଁ ନିୟମ ସୁପାରିସ୍ କରିଛନ୍ତି, ବେହାର, ଆସାମ ଓ ସିନ୍ଧୁପ୍ରଦେଶ ପ୍ରଭୃତିଙ୍କ ସମ୍ବନ୍ଧରେ ଉକ୍ତ ନିୟମ ଯେପରି ଭାବରେ ପାଳିତ ହୋଇଅଛି, ଓଡ଼ିଶା ପକ୍ଷରେ ସେପରି ହୋଇନାହିଁ । ଓଡ଼ିଶାକୁ ଯଥୋଚିତ ସଂଖ୍ୟକ ପ୍ରତିନିଧି ସୁପାରିସ୍ ନ ହେବା ପର୍ଯ୍ୟନ୍ତ ଓଡ଼ିଶାର ସମସ୍ୟା ପୂରଣ ହୋଇ ପାରିବ ନାହିଁ କି ଓଡ଼ିଶାର ଲୋକମାନେ ଏ ସମ୍ବନ୍ଧରେ ମିଳିମିଶି କାର୍ଯ୍ୟ କରିବାର ଆଶା କରାଯାଉନାହିଁ ।

ଅନ୍ୟ ଏକ ପ୍ରସ୍ତାବ ହେଲା—"ଉତ୍କଳଭାଷୀ ଅଞ୍ଚଳମାନଙ୍କରେ ଏକୀକରଣ ସମ୍ବନ୍ଧରେ ଅଧିକ ଆନ୍ଦୋଳନ ଓ ଆଲୋଚନା କାର୍ଯ୍ୟ ମାନ୍ୟବର ମି. ଏମ୍.ଏସ୍. ଦାସ, ସି. ଆଇ.ଇ.ଙ୍କ ପରାମର୍ଶମତେ କରାଯାଉ ।" ଓଡ଼ିଶା ସମସ୍ୟା ସମ୍ବନ୍ଧରେ ବିଲାତରେ ଆନ୍ଦୋଳନ ଓ ଆଲୋଚନା କରିବା ଉଦ୍ଦେଶ୍ୟରେ ସେଠାକୁ ପ୍ରତିନିଧି ପଠାଇବା ନିମନ୍ତେ କାଉନ୍‌ସିଲ ପକ୍ଷରୁ ଅତିଶୀଘ୍ର ଅର୍ଥ ସଂଗ୍ରହ କରାଯିବା ପାଇଁ ମଧ୍ୟ ପ୍ରସ୍ତାବ କରାଯାଇଥିଲା ।

କାଉନ୍‌ସିଲର ସେକ୍ରେଟେରୀ ମି. ଦାସ କାଉନ୍‌ସିଲର ନିର୍ଦ୍ଧାରଣମାନଙ୍କର ନକଲ କର୍ତ୍ତୃପକ୍ଷମାନଙ୍କ ନିକଟକୁ ପଠାଇ ଦେଇଥିଲେ ।

**ବହି ପ୍ରକାଶ ପାଇଁ ସାହାଯ୍ୟ :** 'ଦି ଓଡ଼ିଆ ମୁଭ୍‌ମେଣ୍ଟ' ନାମକ ଇଂରେଜୀ ବହିଟି ଶ୍ରୀ ନିରଞ୍ଜନ ପଟ୍ଟନାୟକ ଓ ଶ୍ରୀ ଚକ୍ରଧର ପ୍ରଧାନ ରଚନା କରିଥିଲେ । ଏଥିରେ ଉତ୍କଳ ସମ୍ମିଳନୀ, ଦେଶମିଶ୍ରଣ ପ୍ରଭୃତି ବହୁ ଜ୍ଞାତବ୍ୟ ବିଷୟରେ ପ୍ରକାଶିତ ହୋଇଥିଲା । ଏହାର ମୁଦ୍ରଣଖର୍ଚ୍ଚ ମାନ୍ୟବର ମଧୁବାବୁ ବହନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ଏବଂ ଟ ୩୦୦ ମଧ୍ୟ ଦେଇଥିଲେ । ଖର୍ଚ୍ଚକୁ ଦାନ ଟଙ୍କା ନିଅଣ୍ଟ ପଡ଼ିବାରୁ ଲେଖକଦ୍ୱୟଙ୍କ ଭିତରୁ ଜଣେ ଅବଶିଷ୍ଟ ଟଙ୍କା ନିଜେ ଦେଇଥିଲେ ।

**ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ନିର୍ବାଚିତ :** ଖ୍ରୀ: ୧୯୨୦ ନଭେମ୍ବର ୩୦ ତାରିଖ ଦିନ ମ୍ୟୁନିସିପାଲିଟିମାନଙ୍କ ପକ୍ଷରୁ ଯେଉଁ ନିର୍ବାଚନ ହୋଇଥିଲା, ସେଥିରେ ମଧୁବାବୁ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ । ମି. ଦାସ ୧୭୯୫ ଭୋଟ ପାଇଥିବା ସ୍ଥଳେ, ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ମି. ବି. ଏନ୍. ମିଶ୍ର ୮୬, ବାବୁ ଉମେଶଚନ୍ଦ୍ର ରାୟ ୧୦, ବାବୁ ଗଣେଶପ୍ରସାଦ ଦାସ ୮ଟି ଭୋଟ ପାଇଥିଲେ ।

## ୬୭ । ଚକ୍ରଧରପୁର ସମ୍ମିଳନୀ ଓ ତାର ଫଳାଫଳ

**ଚକ୍ରଧରପୁର ଉତ୍କଳ ସମ୍ମିଳନୀ ଅଧିବେଶନ :** ଉତ୍କଳ ସମ୍ମିଳନୀର ଚକ୍ରଧରପୁର ଅଧିବେଶନ (ଖ୍ରୀ: ୧୯୨୦)ରେ ମାନ୍ୟବର ମି. ଦାସ ସଭାପତି ହେବାର ପ୍ରସ୍ତାବ ହୋଇଥିଲା; କିନ୍ତୁ ସମ୍ମିଳନୀ ଅଧିବେଶନର ସମସ୍ତ ଡିସେମ୍ବର ମାସ ଶେଷ ଆଡ଼କୁ ଘୁଞ୍ଚେଇ ଦେବାରୁ ମଧୁବାବୁ ସଭାପତି ହେବାକୁ ଅନିଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ସେହି ସମୟରେ ନାଗପୁରରେ କଂଗ୍ରେସ ଅଧିବେଶନ ହେବାର ସ୍ଥିର ହୋଇଥିଲା । ସେଠାକୁ ବହୁ ଓଡ଼ିଆ ନେତା ପ୍ରତିନିଧି ହୋଇ ଯିବାର ସମ୍ଭାବନା ଥିବାରୁ କଂଗ୍ରେସ ଅଧିବେଶନ ସରିବା ସଙ୍ଗେ ସଙ୍ଗେ ଚକ୍ରଧରପୁରଠାରେ ସମ୍ମିଳନୀର ଅଧିବେଶନ ହେବା ସ୍ଥିର କରାଯାଇଥିଲା ।

ମଧୁବାବୁ ସମ୍ମିଳନୀରେ ଯୋଗଦେଇ ନଥିଲେ । ଖ୍ରୀ: ୧୯୨୦ ଡିସେମ୍ବର ମାସର ୩୦, ୩୧ ତାରିଖ ଓ ୧୯୨୧ ଜାନୁଆରୀ ୧ ତାରିଖ—ଏ ତିନିଦିନ ସିଂହଭୂମି ଜିଲ୍ଲାର ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ଷୋଡ଼ଶ ଅଧିବେଶନ ହୋଇଥିଲା । ଶ୍ରୀ ଜଗବନ୍ଧୁ ସିଂହ ସଭାପତି ହୋଇଥିଲେ । ପଣ୍ଡିତ ଗୋପବନ୍ଧୁ ଦାସ ପ୍ରମୁଖ କଂଗ୍ରେସ ନେତାମାନେ ନାଗପୁର କଂଗ୍ରେସ ଅଧିବେଶନରେ ଯୋଗଦେଇ ଚକ୍ରଧରପୁରରେ ପହଞ୍ଚିଲେ ଏବଂ ଉତ୍କଳ ସମ୍ମିଳନୀ ଅଧିବେଶନରେ ଯୋଗ ଦେଇଥିଲେ । ବିଷୟ ନିର୍ବାଚନ କମିଟିର ୬୧ ଜଣ ସଭ୍ୟ ଉପସ୍ଥିତ ଥିଲେ । ପ୍ରକାଶ୍ୟ ଅଧିବେଶନ ପାଇଁ କେତେଗୁଡ଼ିଏ ପ୍ରସ୍ତାବର ଚଠା ହୋଇଥିଲା । ପ୍ରଥମ ପ୍ରସ୍ତାବରେ ଲୋକମାନ୍ୟ ତିଲକଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରା-ଯାଇଥିଲା । ଦ୍ୱିତୀୟ ପ୍ରସ୍ତାବରେ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ନୂତନ ଭାବରେ ନିରୂପିତ ହୋଇଥିଲା । ସମ୍ମିଳନୀର ବର୍ତ୍ତମାନ ଯେଉଁ ଉଦ୍ଦେଶ୍ୟ ଥିଲା, ତାହାକୁ କାଳୋପଯୋଗୀ କରିବା ଉଦ୍ଦେଶ୍ୟରେ କେତେକ ପରିବର୍ତ୍ତନ ଆବଶ୍ୟକ ହେଉଥିବା ପ୍ରସ୍ତାବରେ ଦର୍ଶା-ଯାଇଥିଲା । ଏହି ପ୍ରସ୍ତାବଟି ପଣ୍ଡିତ ଗୋପବନ୍ଧୁ ଦାସ ଆଗତ କରିଥିଲେ ।

ପ୍ରସ୍ତାବଟି ହେଉଛି, "ସମ୍ମିଳନୀର ବର୍ତ୍ତମାନ ଯେଉଁ ଉଦ୍ଦେଶ୍ୟ ନିରୂପିତ ହୋଇ-ଅଛି, ତାହା ସ୍ଥିର ରଖି ଭାରତ ଜାତୀୟ ମହାସମିତି (କଂଗ୍ରେସ)ର ଯେଉଁ ଉଦ୍ଦେଶ୍ୟ ଓ ଆକାଂକ୍ଷା, ତାହା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷାରୂପେ ଗୃହୀତ ହେଉ ।"

ଏହି ପ୍ରସ୍ତାବକୁ ବିରୋଧକରି ବାବୁ ବ୍ରଜସୁନ୍ଦର ଦାସ କହିଲେ, "ସମ୍ମିଳନୀର ନିୟମାନୁସାରେ ଏପରି ପ୍ରସ୍ତାବ ବର୍ତ୍ତମାନ ଆଗତ କରାଯାଇ ନପାରେ । ସମ୍ମିଳନୀର ଉଦ୍ଦେଶ୍ୟ ପରିବର୍ତ୍ତନ କରି ତାହାକୁ ଭାରତ ଜାତୀୟ ମହାସଭାର ଅନୁଗାମୀ କରାଇବାକୁ ହେଲେ ଜାତୀୟ ମହାସମିତିର ସ୍ଥିରୀକୃତ ପନ୍ଥା, ଅର୍ଥାତ୍ ଅସହଯୋଗ ନୀତି ଅବଲମ୍ବନ କରିବାକୁ ହେବ; ମାତ୍ର ଉତ୍କଳ ଦେଶରେ ଏହି ଅସହଯୋଗ ନୀତି ଉଚିତ ଆନ୍ଦୋଳନ ହୋଇ ନ ଥିବାରୁ ବର୍ତ୍ତମାନ ଏ ବିଷୟ ଆଲୋଚନା କରିବା ଉଚିତ ନୁହେଁ । କଟକ,

ପୁରୀ, ବାଲେଶ୍ୱର ଓ ସିଂହଭୂମିର ବହୁ ସଭ୍ୟ ବ୍ରଜବାବୁଙ୍କୁ ସମର୍ଥନ କରିଥିଲେ; କିନ୍ତୁ ଭୋଟରେ ପଣ୍ଡିତ ଦାସଙ୍କ ପ୍ରସ୍ତାବ ସପକ୍ଷରେ ବେଶୀ ଭୋଟ ହେବାରୁ ପ୍ରସ୍ତାବଟି ଗୃହୀତ ହୋଇଯାଇଥିଲା ।

ଏହାପରେ ଗଡ଼ଜାତମାନଙ୍କର ଉନ୍ନତି ନିମନ୍ତେ ଉପାୟ ନିରୂପଣ କରିବା ଉଦ୍ଦେଶ୍ୟରେ ଏକ କମିଟି ଗଠନ କରିବା, ଦୁର୍ଭିକ୍ଷ ଅନୁସନ୍ଧାନ କମିଟିର ରିପୋର୍ଟକୁ ଗ୍ରହଣ କରିବା ପ୍ରଭୃତି କେତେକ ପ୍ରସ୍ତାବ ମଧ୍ୟ ଗ୍ରହଣ କରାଯାଇଥିଲା ।

ଅନ୍ୟ ଏକ ପ୍ରସ୍ତାବରେ କୁହାଯାଇଥିଲା ଯେ, "ଭାରତ ଜାତୀୟ ମହାସମିତିର ପ୍ରକୃତି ଏବଂ ଗଠନ ବଦଳାଇବାକୁ ନିଯୁକ୍ତ ହୋଇଥିବା ସବ୍‌କମିଟି ତାଙ୍କ ରିପୋର୍ଟରେ ଭାଷାସୂତ୍ରରେ କଂଗ୍ରେସ ପ୍ରଦେଶ ଗଠନର ଯେ ବିଧାନ ଗ୍ରହଣ କରିଅଛନ୍ତି, ଏ ସମ୍ମିଳନୀ ତାହା ସର୍ବାନ୍ତଃକରଣରେ ସମର୍ଥନ କରୁଅଛନ୍ତି ।" ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଏ ପ୍ରସ୍ତାବ ଆଗତ କରିଥିଲେ ଏବଂ ପଣ୍ଡିତ ନୀଳକଣ୍ଠ ଦାଶ ସମର୍ଥନ କରିଥିଲେ । ପ୍ରସ୍ତାବଟି ଗୃହୀତ ହୋଇଥିଲା ।

ପ୍ରକାଶ୍ୟ ଅଧିବେଶନରେ ଏହି ସବୁ ପ୍ରସ୍ତାବ ଅଧିକ ଭୋଟରେ ଗୃହୀତ ହୋଇଥିଲା । ପ୍ରସ୍ତାବ ସପକ୍ଷରେ ପଣ୍ଡିତ ଗୋପବନ୍ଧୁ ଦାଶ, ପଣ୍ଡିତ ନୀଳକଣ୍ଠ ଦାଶ, ବାବୁ ଲାଲମୋହନ ପଟ୍ଟନାୟକ... ପତି, ବାବୁ ଚନ୍ଦ୍ରଶେଖର ବେହେରା, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ଓ ବିପକ୍ଷରେ ବାବୁ ବ୍ରଜସୁନ୍ଦର ଦାସ, ବାବୁ ମୁକୁନ୍ଦପ୍ରସାଦ ଦାସ, ବାବୁ ଚିନ୍ତାମଣି ଆଚାର୍ଯ୍ୟ, ବାବୁ ବିଶ୍ୱନାଥ କର, ବାବୁ ଶିଶିରଚନ୍ଦ୍ର ଘୋଷ, ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀ ପ୍ରଭୃତି ଥିଲେ । ପ୍ରବଳ ଯୁକ୍ତିତର୍କ ହୋଇଥିଲା ।

କଂଗ୍ରେସର ଉଦ୍ଦେଶ୍ୟ ଓ ଆକାଂକ୍ଷାକୁ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷା ରୂପେ ଗ୍ରହଣ କରାଯିବା ପ୍ରସ୍ତାବ ଗୃହୀତ ହୋଇଯିବା ପରେ ଓଡ଼ିଶାର ନେତାଙ୍କର ମଧ୍ୟରେ ଏ ପର୍ଯ୍ୟନ୍ତ ଚାଲି ଆସିଥିବା ଏକତା ଭାଙ୍ଗିଗଲା; ଏମାନେ ଦୁଇ ଦଳରେ ବିଭକ୍ତ ହୋଇଗଲେ । ଦଳେ ସହଯୋଗ କଲେ, ଅପର ଦଳ ଅସହଯୋଗ କଲେ । ଫଳରେ ଉତ୍କଳ ସମ୍ମିଳନୀର ଜାତୀୟ ରୂପରେ ବାଧା ସୃଷ୍ଟି ହେଲା; ଉତ୍କଳ ସମ୍ମିଳନୀ ଆଉ ମିଳନପୀଠ ଓ ମାତୃପୂଜାର ମଣ୍ଡପ ହୋଇ ରହିପାରିଲା ନାହିଁ ।

ମଧୁବାବୁଙ୍କ ପ୍ରାଣରେ ଏ ବିଭେଦ ବିଶେଷ ଆଘାତ ଦେଇଥିଲା । ତାଙ୍କର ପ୍ରାଣର ସମ୍ମିଳନୀର ଏ ଦୁରବସ୍ଥା ହେବ ବୋଲି ସେ କଳ୍ପନା କରିନଥିଲେ । ପ୍ରକୃତରେ ଚକ୍ରଧରପୁର ସମ୍ମିଳନୀହିଁ ଓଡ଼ିଆ ଜାତୀୟ ମିଳନପୀଠର ଶେଷ ଅଧିବେଶନ । ଏହାପରେ ଉତ୍କଳ ସମ୍ମିଳନୀର ଅଧିବେଶନ ନିୟମିତ ଭାବେ ହୋଇପାରିବ ନାହିଁ ଏବଂ ସର୍ବସମ୍ମତ ଭାବେ ଆଉ ଜାତୀୟ ସମସ୍ୟାର ଆଲୋଚନା କରିବାପାଇଁ ବିଶେଷ ଅବକାଶ ମଧ୍ୟ ମିଳିନାହିଁ । ପୂର୍ବର ସୌହାର୍ଦ୍ଦ୍ୟ ଓ ଶକ୍ତି ସମ୍ମିଳନୀ ହରାଇ ବସିଲା । କେବଳ 'କାମଚଲା' ସମ୍ମିଳନୀ ହିଁ ମୂଳ ପ୍ରେରି

ରୂପେ ରହିଲା; କିନ୍ତୁ ଏତିକି ଆଶ୍ୱାସନାର କଥା ଯେ, ଉଭୟ ଗୋଷ୍ଠୀ ରାଜନୈତିକ ଦୃଷ୍ଟିକୋଣରୁ ସବୁ ବିଷୟର ବିଚାର କରୁଥିଲେ ମଧ୍ୟ ଓଡ଼ିଆମାନଙ୍କର ଜାତୀୟ ସମସ୍ୟାର ସମାଧାନପାଇଁ ବେଳେ ବେଳେ ଏକତ୍ରିତ ହେଉଥିଲେ । ଏହି ପ୍ରସ୍ତାବରେ ଅସହଯୋଗ ନୀତିର ଗନ୍ଧ ନାହିଁ ବୋଲି ନୀତିର ପ୍ରାଧାନ୍ୟ ହିଁ ପ୍ରକାଶ ପାଇଥିଲା ।

ସମ୍ମିଳନୀର ଚକ୍ରଧରପୁର ଅଧିବେଶନର ପ୍ରଧାନ ଆଲୋଚନାର ବିଷୟ ଥିଲା, "ସମ୍ମିଳନୀକୁ ତାହାର ଉଦ୍ଦେଶ୍ୟ ଓ ଆକାଂକ୍ଷାକୁ ସ୍ଥିର ରଖି, ଭାରତ ଜାତୀୟ ମହାସଭାର ଅନୁବର୍ତ୍ତୀ କରିବା ।" କଂଗ୍ରେସର ଶକ୍ତି କ୍ରମେ ବୃଦ୍ଧି ପାଉଥିବାରୁ ଏବଂ ଭାରତର ମୁଖ୍ୟ ସମସ୍ୟା ସ୍ୱାଧୀନତା ସମ୍ବନ୍ଧରେ ଏହାର ଆଭିମୁଖ୍ୟ ବହୁଜନାଦୃତ ଥିବାରୁ ଏହି ସର୍ବଭାରତୀୟ ଅନୁଷ୍ଠାନ ସହିତ ଉତ୍କଳ ସମ୍ମିଳନୀ ସମ୍ପର୍କ ରଖିବା ଉଚିତ ବୋଲି କେହି କେହି କହୁ-ଥିଲେ । ବିଶେଷତଃ, କଂଗ୍ରେସ ଭାଷାଭିତ୍ତିରେ ପ୍ରଦେଶ ଗଠନ ନୀତିକୁ ଗ୍ରହଣ କରି ନିଜ ସଙ୍ଗଠନଭିତରେ ଏହାକୁ କାର୍ଯ୍ୟରେ ପରିଣତ କରିସାରିଥିବାରୁ ଏହା ସହିତ ଘନିଷ୍ଠତା ରକ୍ଷାକରିବା ଆବଶ୍ୟକ, ଏହା କେହି କେହି ଉପଲବ୍ଧି କରୁଥିଲେ । କେତେଜଣ କହୁ-ଥିଲେ, ଉତ୍କଳ ସମ୍ମିଳନୀ ଯେଉଁ ଲକ୍ଷ୍ୟରେ ସ୍ଥାପିତ ହୋଇଥିଲା, ତାହା କଂଗ୍ରେସ ଗ୍ରହଣ କରି କାର୍ଯ୍ୟରେ ପରିଣତ କରିସାରିଛି, ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠନ କରିଛି ଏବଂ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏହାର ଅନ୍ତର୍ଭୁକ୍ତ କରିଛି । ଏହାହିଁ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ । ଅବଶ୍ୟ, ସରକାର ଏହାକୁ ଗ୍ରହଣ କରିବେ କି ନାହିଁ ତାହା ସ୍ଥିର ହୋଇ ନଥିଲେ ମଧ୍ୟ ଉତ୍କଳ କଂଗ୍ରେସ କମିଟି ମାଧ୍ୟମରେ ସ୍ୱତନ୍ତ୍ର ପ୍ରଦେଶ ଓ ଦେଶମିଶ୍ରଣ ସମ୍ପର୍କରେ ଆନ୍ଦୋଳନ କରାଯାଇ ପାରିବ । ଏହି କାରଣରୁ ଏମାନେ କହୁଥିଲେ, ଉତ୍କଳ ସମ୍ମିଳନୀକୁ କଂଗ୍ରେସର ଉତ୍କଳଶାଖାରେ ପରିଣତ କରାଯାଉ । ଏସବୁ ପ୍ରସଙ୍ଗ ପ୍ରକାଶ୍ୟ ଓ ଓ ଘରୋଇ ଭାବରେ ଆଲୋଚିତ ହୋଇଥିଲା; କିନ୍ତୁ ଅସହଯୋଗୀ ଓ ସେମାନଙ୍କ ସମର୍ଥକଙ୍କ ସଂଖ୍ୟା ବେଶି ହେବାରୁ ଅଧିବେଶନରେ ପଣ୍ଡିତ ଗୋପବନ୍ଧୁ ଦାଶଙ୍କଦ୍ୱାରା ଆଗତ ପ୍ରସ୍ତାବ ଗୃହୀତ ହୋଇଯାଇଥିଲା ।

ଜାତୀୟ କଂଗ୍ରେସର ଉଦ୍ଦେଶ୍ୟ ଓ ଆକାଙ୍କ୍ଷାକୁ ଭିତ୍ତିକରି ପ୍ରସ୍ତୁତ ପ୍ରସ୍ତାବ ଉତ୍କଳ ସମ୍ମିଳନୀରେ ଗୃହୀତ ହେବା ପରେ ଅସହଯୋଗୀମାନଙ୍କର ସମ୍ମିଳନୀରେ ଯେ ଜୟହେଲା, ଏଥିରେ ସନ୍ଦେହ ନାହିଁ । ସମ୍ମିଳନୀର ଅସହଯୋଗ ନୀତି ଗ୍ରହଣ ସଙ୍ଗେ ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ନେତୃତ୍ୱର ଦ୍ୱାର ଖୋଲିଗଲା ଏବଂ ମଧୁବାବୁଙ୍କ ଓଡ଼ିଶାରେ ସର୍ବମୟ ନେତୃତ୍ୱ କ୍ରମେ ହ୍ରାସ ପାଇଲା । ଏହାର ସ୍ପଷ୍ଟ ପ୍ରମାଣ ସଭାମଞ୍ଚରେ ମିଳିଥିଲା । ମଞ୍ଚରେ "ମହାତ୍ମା ଗାନ୍ଧିକି ଜୟ", "ଗୋପବନ୍ଧୁ ବାବୁଙ୍କୀ ଜୟ" ଏହି ଧ୍ୱନି ବହୁବାର ଶୁଣାଯାଇଥିଲା ।

ସମ୍ମିଳନୀର ନିର୍ବାଚନ ଓ ବାତାବରଣକୁ ଅନୁଧ୍ୟାନ କରି ଜଣେ କେହି ଅତି ଦୁଃଖ ପ୍ରକାଶ କରି ଲେଖିଥିଲେ—

"ବର୍ତ୍ତମାନ ଭାରତବର୍ଷର ଚରମପନ୍ଥୀମାନଙ୍କ ମଧ୍ୟରୁ କେତେକଙ୍କ ମଧ୍ୟରେ ଅସହଯୋଗ ନୀତିର ସ୍ରୋତ ପ୍ରବାହିତ ହେଉଥିବା ବେଳେ ଆମ ଉତ୍କଳର କେତେକଙ୍କ- ଠାରେ ସେ ସ୍ରୋତର ଧକ୍‌କା ଯେ ନ ବାଜିଛି, ଏପରି ନୁହେଁ । ତେଣୁ ଷେତ୍ରବିଶେଷରେ ତାହାର ଫଳାଫଳ ନିର୍ଭର କରିବ । ମହାତ୍ମା ଗାନ୍ଧି ଯେଉଁ ଅସହଯୋଗ ନୀତିର ଜନ୍ମଦାତା, ତାହାର ଅର୍ଥ ସେ ଯେପରି ବୁଝିଛନ୍ତି, ଯେଉଁମାନେ ଗାନ୍ଧିଙ୍କର ଅସହଯୋଗ ନୀତିର ଶିଷ୍ୟ ହେବାକୁ ବସିଛନ୍ତି, ଆମ୍ଭେମାନେ ସେମାନଙ୍କୁ ଥରେ ପଚାରୁଁ, ସେମାନେ ନିଜର ଅନ୍ତର ଆଡ଼କୁ ଅନାଇଁ କହିପାରିବେ କି ସେମାନେ କେତେ ଦୂର ପାଳନ କରୁଅଛନ୍ତି ?

"ଆଜକୁ ୧୬ ବର୍ଷ ହେଲା ଉତ୍କଳ ସମ୍ମିଳନୀର ଗତି ବିଭିନ୍ନ ପ୍ରକାର ଥିଲା । ବର୍ତ୍ତମାନ ତାହାକୁ ଯେଉଁ ମାର୍ଗରେ ଚଳାଇବାକୁ ହେଲା, ତଦ୍ଦ୍ୱାରା ଉତ୍କଳ ସମ୍ମିଳନୀର ଅସ୍ତିତ୍ୱ ଲୋପ ପାଇବାକୁ ବସିଲା ବୋଲି କହିଲେ ଚଳେ । ଯେଉଁ ଜିନିଷ ତୁମେ ଗଢ଼ିନାହଁ ସେ ଜିନିଷ ଭାଙ୍ଗିବାର କି ଅଧିକାର ଅଛି ? ଯେଉଁମାନେ ଉତ୍କଳ ସମ୍ମିଳନୀର ସ୍ରଷ୍ଟା, ଯେଉଁମାନେ ଉତ୍କଳ ସମ୍ମିଳନୀର ଜନ୍ମଦାତା, ସେମାନେ ସମ୍ମିଳନୀର ବର୍ତ୍ତମାନ ଦୁରବସ୍ଥା ଦେଖି ଅବଶ୍ୟ ଲୋତକ ବିସର୍ଜନ କରିବେ । ବର୍ତ୍ତମାନ ସମ୍ମିଳନୀର କାଣ୍ଡକାରଖାନାରୁ ଜଣାଯାଉଛି, ତାହା ଜାତୀୟ ସମ୍ମିଳନୀ ନୁହେଁ, ତାହା ମାତୃପୂଜାର ସ୍ଥାନ ନୁହେଁ; ତାହା କେତେକ ଖେୟାଲ୍‌ବାଜ୍ ଆତ୍ମପ୍ରାଧାନ୍ୟ ପ୍ରୟାସୀ ବ୍ୟକ୍ତିଙ୍କର ଲୀଳାଭୂମି ହୋଇଅଛି ।

"ଏଥର ସମ୍ମିଳନୀରେ ଯେଉଁ ଘଟଣାମାନ ଘଟିଅଛି, ତାହା ଆଦ୍ୟପ୍ରାନ୍ତ ବିଚାର କଲେ ଦେଖାଯିବ ଯେ କେବଳ କପଟତା, ଧୂର୍ତ୍ତତା, ହାମବଡ଼ାପଣିଆର ଅବତାରଣା ଭିନ୍ନ ଆଉ କିଛି ନାହିଁ ।

"ଏଥର ସମ୍ମିଳନୀର ସଭାପତି ବାବୁ ଜଗବନ୍ଧୁ ସିଂହ ଯେ କେବଳ ନାମମାତ୍ର ସଭାପତି ଥିଲେ, ତାହା ସମସ୍ତେ ସ୍ୱୀକାର କରିବେ । କେହି ଏ କଥା ପ୍ରକାଶ୍ୟ ଭାବରେ ସ୍ୱୀକାର କରୁ ବା ନ କରୁ ତାହାର ଅନ୍ତରାତ୍ମା ନିଶ୍ଚୟ ଏରୂପ ସାକ୍ଷ୍ୟ ଦେବ । ଆମ୍ଭେମାନେ ଏପର୍ଯ୍ୟନ୍ତ ବୁଝିଥିଲୁ, ସଭାପତି ସଭାର ମାଲିକ ଓ ତାଙ୍କର ପ୍ରତ୍ୟେକ ବିଷୟରେ ଶେଷ ମୀମାଂସାର ଅଧିକାର ଅଛି । ସଭାରେ ସଭାପତିଙ୍କୁ କୌଣସି ପ୍ରଶ୍ନ କରାଗଲେ, ତାହାର ଉତ୍ତର ସଭାପତି ଦେବା କର୍ତ୍ତବ୍ୟ; କିନ୍ତୁ ଉତ୍କଳ ସମ୍ମିଳନୀର ଗତ ଅଧିବେଶନରେ ସେ ନିୟମର ବ୍ୟତିକ୍ରମ ଦେଖାଯିବା ଦୁଃଖର କଥା । ବାବୁ ଗୋପବନ୍ଧୁ ଦାସ ସଭାପତିଙ୍କର ଚଳନ୍ତିପ୍ରତିମା ସ୍ୱରୂପ ସମସ୍ତ କାର୍ଯ୍ୟ ନିର୍ବାହ କରୁଥିବାର ସ୍ପଷ୍ଟ ପ୍ରକାଶ ପାଇଲା । ଏହି କାରଣରୁ ଆମ୍ଭେମାନେ ଅନୁମାନ କରୁ ଯେ ଏଥର ଉତ୍କଳ ସମ୍ମିଳନୀ ଜାତୀୟ ସମ୍ମିଳନୀ ନଥିଲା । ଏଥର ସମ୍ମିଳନୀ ଗୋପବନ୍ଧୁ ବାବୁ ଓ ତାଙ୍କର ଶିଷ୍ୟବର୍ଗଙ୍କର ସମ୍ମିଳନୀ ଥିଲା ।

"ଗୋପବନ୍ଧୁ ବାବୁଙ୍କ ତାଙ୍କର ଶିଷ୍ୟବର୍ଗ ମହାତ୍ମା ଗାନ୍ଧିଙ୍କର ଉତ୍କଳାବତାର ବା ଉତ୍କଳ ସଂସ୍କରଣରେ ପରିଣତ କରିସାରିଅଛନ୍ତି ବୋଲି ଆମ୍ଭେମାନେ ମନେକରୁ । ତା

ନହେଲେ ଉତ୍କଳ ସମ୍ମିଳନୀ ମଣ୍ଡପରେ "ମହାତ୍ମା ଗାନ୍ଧିଙ୍କ ଜୟ", "ଗୋପବନ୍ଧୁ ବାବୁଙ୍କ ଜୟ" ଏ ଜୟଧ୍ୱନି ଉଠି ନଥାନ୍ତା ବା ଗୋପବନ୍ଧୁ ବାବୁ ଏଥିର ପ୍ରତିବାଦ ନକରି ନୀରବରେ ଏକଥା ଶୁଣି ଆପଣାକୁ ଗୌରବାନ୍ୱିତ ମନେକରି ନଥାନ୍ତେ । କାହିଁ ମହାତ୍ମା ଗାନ୍ଧି, କାହିଁ ଗୋପବନ୍ଧୁ ବାବୁ !

"ଉତ୍କଳ ସମ୍ମିଳନୀର ଏଥର ପ୍ରଧାନ ଆଲୋଚନାରେ କଥା ଥିଲା, ଉତ୍କଳ ସମ୍ମିଳନୀକୁ ତାହାର ଉଦ୍ଦେଶ୍ୟ ଓ ଆକାଙ୍କ୍ଷା ସ୍ଥିର ରଖି ଭାରତ ଜାତୀୟ ମହାସଭାର ଅନୁବର୍ତ୍ତୀ କରିବା । ଏ ପ୍ରସ୍ତାବ ବାବୁ ଗୋପବନ୍ଧୁ ଦାଶ ଆଗତ କରିଥିଲେ । ବିଷୟ ନିର୍ବାଚନ କମିଟିରେ ଏ ପ୍ରସ୍ତାବ ବାବୁ ଗୋଦାବରୀଶ ମିଶ୍ର ଆଗତ କରିଥିଲେ । ବହୁ ବାଦାନୁବାଦ ପରେ ଭୋଟ ନେବାରେ ପ୍ରସ୍ତାବ ସପକ୍ଷରେ ଅଧିକ ଭୋଟ ଉଠିବାରୁ ସେ ପ୍ରସ୍ତାବ ଗୃହୀତ ହେଲା ଓ ସମ୍ମିଳନୀମଣ୍ଡପରେ ଗୋପବନ୍ଧୁ ବାବୁ ଏ ପ୍ରସ୍ତାବ ଆଗତ କରିଥିଲେ ଓ ନୀଳକଣ୍ଠ ଦାଶ, ଲିଙ୍ଗରାଜ ପଣ୍ଡା, ଲାଲମୋହନ ପଣ୍ଡା... 

ଓ ନୀଳକଣ୍ଠ ଦାଶ, ଲାଲମୋହନ ପତି, ଚନ୍ଦ୍ରଶେଖର ବେହେରା ଓ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ପ୍ରଭୃତି ବ୍ୟକ୍ତିମାନେ ଏ ପ୍ରସ୍ତାବ ସମର୍ଥନ କରିଥିଲେ । ଏ ପ୍ରସ୍ତାବ ମଧ୍ୟରେ ଅସହଯୋଗନୀତିର ଗନ୍ଧ ନାହିଁ ବୋଲି ଗୋପବନ୍ଧୁ ବାବୁଙ୍କ ଉକ୍ତିରୁ ପ୍ରକାଶ ପାଇଲା; କିନ୍ତୁ ବକ୍ତୃତା ମଧ୍ୟରେ ଯେତେ କଥା ବ୍ୟକ୍ତ ହେଲା, ସେଥିରେ ଅସହଯୋଗ ନୀତି ଛଡ଼ା ଆଉ କିଛି ନଥିଲା । ଏହାକୁ କଥାରେ ଗୁରୁଗିରିଦ୍ୱାରା ଆତ୍ମପ୍ରତାରଣା, ଦେଶବାସୀର ପ୍ରତାରଣା, ଜାତିର ପ୍ରତାରଣା ଭିନ୍ନ ଆଉ କଣ କୁହାଯିବ ? ଏ ପ୍ରସ୍ତାବ ବିରୁଦ୍ଧରେ ବ୍ରଜସୁନ୍ଦର ଦାସ, ଚିନ୍ତାମଣି ଆଚାର୍ଯ୍ୟ, ବିଶ୍ୱନାଥ କର, ମୁକୁନ୍ଦ ପ୍ରସାଦ ଦାସ, ଶିଶିରଚନ୍ଦ୍ର ଘୋଷ, ମହନ୍ତ ରାଧାକାନ୍ତ ଗୋସ୍ୱାମୀ ପ୍ରଭୃତି ଆପତ୍ତି କରିଥିଲେ । ଭୋଟରେ ଅବଶ୍ୟ ବ୍ରଜସୁନ୍ଦର ବାବୁଙ୍କ ପ୍ରସ୍ତାବ ରଦ୍ଦ ହେଲା ।

"ଏ ସମ୍ପର୍କରେ ଜଗବନ୍ଧୁ ବାବୁ ବ୍ରଜସୁନ୍ଦର ବାବୁଙ୍କ ନିକଟକୁ ଯେ ପତ୍ର ଲେଖିଥିଲେ, ତାହା ଯଦି ବ୍ରଜସୁନ୍ଦରବାବୁ ପ୍ରକାଶ କରନ୍ତେ, ତାହାହେଲେ ସେଥିରୁ ଜଗବନ୍ଧୁ ବାବୁଙ୍କର କେତେଦୂର ସତ୍‌ସାହସ ଅଛି, ତାହାର ଯଥେଷ୍ଟ ପରିଚୟ ମିଳନ୍ତା ।" (ଉତ୍କଳ ଦୀପିକା ୮।୧।୧୯୨୧)

ପତ୍ର ଲେଖକଙ୍କ ମନ୍ତବ୍ୟର କେତେକାଂଶ ତୀବ୍ର ହୋଇଥିଲେ ମଧ୍ୟ ଏଥିର ମର୍ମ ସ୍ପଷ୍ଟ । ଅଣ-ଅସହଯୋଗୀମାନେ ଅସହଯୋଗୀମାନଙ୍କର ଏ ପ୍ରତିପତ୍ତିରେ ବିଚଳିତ ହୋଇପଡ଼ିଥିଲେ । ସେମାନେ ଭାବୁଥିଲେ "ଉତ୍କଳ ସମ୍ମିଳନୀ"ର ଅକାଳ ମୃତ୍ୟୁ ହେଲା ।

ମଧୁବାବୁ ଓଡ଼ିଶାର ଏପର୍ଯ୍ୟନ୍ତ ସର୍ବମାନ୍ୟ ଅଦ୍ୱିତୀୟ ନେତା ଥିଲେ । ତାଙ୍କର ପରାମର୍ଶ, ଇଙ୍ଗିତ ଓ ସାହଚର୍ଯ୍ୟ ବିନା ଓଡ଼ିଶାର ଜନହିତକର କୌଣସି କାର୍ଯ୍ୟ ସରକାରୀ ଓ ବେସରକାରୀ କ୍ଷେତ୍ରରେ ହେଉ ନ ଥିଲା କହିଲେ ଚଳେ । ଉତ୍କଳ ସମ୍ମିଳନୀ ଓ ସମ୍ମିଳନୀ ବାହାରେ ଯାବତୀୟ ଜାତୀୟ କାର୍ଯ୍ୟର କର୍ଣ୍ଣଧାର ଥିଲେ ମଧୁବାବୁ । ବାର୍ଦ୍ଧକ୍ୟ ଯୋଗୁ ସେ

ସମ୍ମିଳନୀରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ଇଚ୍ଛା କରୁ ନ ଥିଲେ ମଧ୍ୟ ତାଙ୍କୁ କେନ୍ଦ୍ର ଛାଡ଼ୁ ନଥିଲେ । ଗୋପବନ୍ଧୁବାବୁ ଓ ତାଙ୍କର ସହକର୍ମୀମାନେ ମଧ୍ୟ ଅସହଯୋଗ ଆନ୍ଦୋଳନର ପୂର୍ବ ପର୍ଯ୍ୟନ୍ତ ମଧୁବାବୁଙ୍କୁ ଛାଡ଼ି ନଥିଲେ, ତାଙ୍କୁ ଏକଚ୍ଛତ୍ର ନେତାରୂପେ ମାନୁଥିଲେ । ମଧୁବାବୁଙ୍କର ମଧ୍ୟ ସେମାନଙ୍କ ପ୍ରତି ଶ୍ରଦ୍ଧା ଥିଲା ।

ଓଡ଼ିଶାରେ ନିଖିଳ ଭାରତ କଂଗ୍ରେସର ବିଧିବଦ୍ଧ ଶାଖା ଗଠିତ ହେବା ବହୁପୂର୍ବରୁ ଗତ ଶତାବ୍ଦୀରେ କଂଗ୍ରେସର ବାଲ୍ୟାବସ୍ଥାରୁ ଉତ୍କଳ ସଭା ଓ ଓଡ଼ିଶା ଆସୋସିଏସନ୍ ଓଡ଼ିଶାରେ କଂଗ୍ରେସର ଶାଖାରୂପେ ଗୃହୀତ ହୋଇଥିଲା । ପ୍ରତିବର୍ଷ ଓଡ଼ିଶା ଆସୋସିଏସନ୍ ପ୍ରାକୃତିକ ଉତ୍କଳରୁ ପ୍ରତିନିଧି ମନୋନୀତ କରୁଥିଲେ ଏବଂ ଏମାନଙ୍କ ଭିତରୁ କେତେଜଣ ବିଭିନ୍ନ କଂଗ୍ରେସ ଅଧିବେଶନରେ ଯୋଗ ଦେଉଥିଲେ । ଗଞ୍ଜାମରୁ ପାରଳାଖିମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ପିତୃବ୍ୟ ଶ୍ରୀ ପଦ୍ମନାଭ ନାରାୟଣ ଦେବ, ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଏକାଧିକ ଥର କଂଗ୍ରେସ ଅଧିବେଶନରେ ପ୍ରତିନିଧି ସ୍ୱରୂପ ଯୋଗ ଦେଉଥିଲେ । ମଧୁବାବୁ ଓ ଗୌରୀଶଙ୍କର ରାୟ ଉତ୍କଳ ସଭାର ମୁଖ୍ୟ ନେତା ଥିଲେ ଏବଂ ବହୁତ ଥର କଂଗ୍ରେସ ଅଧିବେଶନକୁ ପ୍ରତିନିଧି ହୋଇ ଯାଇଥିଲେ ।

'ନିବେଦନ'ରୁ 'ଦାବୀ' ଅବସ୍ଥା ଆସିବା ପରେ ବହୁ ଚରମପନ୍ଥୀ ନେତା କଂଗ୍ରେସରୁ ଓହରିଗଲେ । କଂଗ୍ରେସର ପ୍ରଭାବ କ୍ରମଶଃ ଭାରତବର୍ଷରେ ବୃଦ୍ଧି ପାଇବାକୁ ଲାଗିଲା । ପ୍ରତ୍ୟେକ ପ୍ରଦେଶ ଏକ ମଣ୍ଡଳୀରୂପେ ଗୃହୀତ ହୋଇଥିବାରୁ ଓଡ଼ିଶାରୁ ସ୍ୱତନ୍ତ୍ର ଭାବରେ ପ୍ରତିନିଧି ଯିବା ସୁବିଧା ନଥିଲା । ପୁଣି ବଙ୍ଗ, ବିହାର ଓ ଓଡ଼ିଶା, ମାନ୍ଦ୍ରାଜ, ମଧ୍ୟପ୍ରଦେଶରେ ଓଡ଼ିଆମାନେ ସଂଖ୍ୟାଲଘୁ ଥିବାରୁ ସେମାନଙ୍କୁ ପ୍ରତିନିଧି ହେବାପାଇଁ ସୁବିଧା ମିଳୁ ନଥିଲା । ଭାଷାଭିତ୍ତିରେ ପ୍ରଦେଶ ଗଠନ ନୀତି ଖ୍ରୀ: ୧୯୨୦ରେ କଂଗ୍ରେସ ଗ୍ରହଣ କରିବା ପରେ ପ୍ରାକୃତିକ ଓଡ଼ିଶାରୁ ଲୋକେ ସ୍ୱତନ୍ତ୍ର ଭାବରେ ପ୍ରତିନିଧି ହୋଇଯିବା ସୁବିଧା ହୋଇଗଲା ଏବଂ ସ୍ୱତନ୍ତ୍ର ଭାବରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କ ପାଇଁ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ଗଠିତ ହୋଇ ଓଡ଼ିଆମାନଙ୍କର ପ୍ରତିନିଧିମୂଳକ ଅନୁଷ୍ଠାନରୂପେ କାର୍ଯ୍ୟ କଲା ।

ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ପରିଚାଳିତ ହେବା ଦିନରୁ କଂଗ୍ରେସର ପ୍ରଭାବ ବହୁଗୁଣରେ ବର୍ଦ୍ଧିତ ହୋଇଯାଇଥିଲା । ମହାଭାରତୀୟ ଚେତନା ଜାଗ୍ରତ ହୋଇ ଏହି ବିରାଟ ଦେଶକୁ ଏକତାପାଶରେ ବାନ୍ଧିବାକୁ ସମର୍ଥ ହୋଇଥିଲା । କଂଗ୍ରେସରେ ପ୍ରଦେଶମାନଙ୍କର ବିଭିନ୍ନ ସମସ୍ୟା ଆଲୋଚିତ ହୋଇ ପାରିବ ବୋଲି କଂଗ୍ରେସ ପ୍ରସ୍ତାବ ଗ୍ରହଣ କରିବା ପରେ ଓଡ଼ିଶା ଦେଶମିଶ୍ରଣ ଦାବୀକୁ କଂଗ୍ରେସ ନିଜ ହାତରେ ନେବା ସମ୍ଭାବନା ଥିବା କଂଗ୍ରେସନେତାମାନେ ଅନୁଭବ କରିଥିଲେ ।

ଏପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ନିଜ ସ୍ୱାତନ୍ତ୍ର୍ୟ ରକ୍ଷାକରି ଆସିଥିଲା । ସେଠାରେ ଭାରତୀୟ ପ୍ରସଙ୍ଗ ପ୍ରାୟ ଆଲୋଚିତ ହେଉ ନଥିଲା କହିଲେ ଚଳେ । କଂଗ୍ରେସ ନେତାମାନେ

ଖ୍ରୀ: ୧୯୧୮ଠାରୁ କହୁଥିଲେ ଯେ କଂଗ୍ରେସପରି ମହାଭାରତୀୟ ଅନୁଷ୍ଠାନ ସହିତ ନମିଶିଲେ ଓଡ଼ିଆ ଏକଘରିଆ ହୋଇ ଅନ୍ଧାର କୋଣରେ ପଡ଼ିରହିଥିବ ଏବଂ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଦାବୀ ପ୍ରତି ଭାରତୀୟ ଜନସାଧାରଣଙ୍କର ସାହାଯ୍ୟ ଓ ସହାନୁଭୂତି ପାଇବା ସମ୍ଭବ ହେବନାହିଁ; କିନ୍ତୁ କେହି କେହି ଏହି ଯୁକ୍ତିକୁ ଗ୍ରହଣ କରୁ ନଥିଲେ ଏବଂ ସେମାନେ କହୁଥିଲେ, "ଓଡ଼ିଆମାନେ ଦକ୍ଷିଣରେ ଆନ୍ଧ୍ର, ଉତ୍ତରରେ ବିହାର ଓ ବଙ୍ଗ ଓ ପଶ୍ଚିମରେ ମଧ୍ୟପ୍ରଦେଶ ସହିତ ଦ୍ୱନ୍ଦ୍ୱରେ ସମକକ୍ଷ ହୋଇପାରିବେ ନାହିଁ; କାରଣ ପ୍ରତିପକ୍ଷମାନଙ୍କ ସଂଖ୍ୟା ଓଡ଼ିଆମାନଙ୍କଠାରୁ ବହୁତ ବେଶି । ଏହି ହେତୁ ଉତ୍କଳ ସମ୍ମିଳନୀ ନିଜ ଗୋଡ଼ରେ ଠିଆହୋଇ ଦାବୀ ହାସଲକରିବାପାଇଁ ଚେଷ୍ଟା କରିବା ଉଚିତ ।"

ଉତ୍କଳ ସମ୍ମିଳନୀରେ ଭାରତ ପ୍ରସଙ୍ଗ ଆଲୋଚନା ହେବାର ଆବଶ୍ୟକତା ସମ୍ବନ୍ଧରେ କଂଗ୍ରେସର କଲିକତା ଅଧିବେଶନ (ଖ୍ରୀ: ୧୯୨୦) ପୂର୍ବରୁ ଉତ୍କଳ ସମ୍ମିଳନୀର ନେତା-ମାନଙ୍କ ଭିତରୁ କେହି କେହି ଅନୁଭବ କରୁଥିଲେ । ସମ୍ମିଳନୀର ମଞ୍ଜୁଷା ଶାଖା କମିଟି ଏହି ପ୍ରସଙ୍ଗ ଉତ୍ଥାପନ କରି ସମ୍ମିଳନୀର ସମ୍ପାଦକ ଶ୍ରୀ ଜଗବନ୍ଧୁ ସିଂହଙ୍କଠାକୁ ପ୍ରସ୍ତାବ ପଠାଇଥିଲେ । ଖ୍ରୀ: ୧୯୧୯ରେ ଉତ୍କଳ ସମ୍ମିଳନୀର ପୁରୀ ବିଶେଷ ଅଧିବେଶନରେ ଶ୍ରୀ ଚନ୍ଦ୍ରଶେଖର ବେହେରା ନିଜର ସଭାପତି ଅଭିଭାଷଣରେ ଉତ୍କଳ ସମ୍ମିଳନୀରେ ଭାରତୀୟ ସମସ୍ୟାମାନଙ୍କର ଆଲୋଚନା ହେବା ଉଚିତ ବୋଲି କହିଥିଲେ ।

ଖ୍ରୀ: ୧୯୨୦ଠାରୁ ସମଗ୍ର ଭାରତ ବର୍ଷରେ ସ୍ୱାଧୀନତା ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥିଲା । ସେହି ବର୍ଷ ସେପ୍ଟେମ୍ବର ମାସରେ କଲିକତା ବିଶେଷ ଅଧିବେଶନରେ ଅସହଯୋଗ ନୀତି ଧାର୍ଯ୍ୟହେବା ପରେ ସେହି ବର୍ଷ ଶେଷକୁ ନାଗପୁର ଅଧିବେଶନରେ ଏହା ଅନୁମୋଦିତ ହୋଇଥିଲା । କଲିକତା ଅଧିବେଶନରେ ଅସହଯୋଗ ନୀତିକୁ ବହୁ ନେତା ସମର୍ଥନ କରିନଥିଲେ; କିନ୍ତୁ ନାଗପୁର ଅଧିବେଶନରେ ଏହି ବିରୋଧୀମାନେ ପୁଣି ସମର୍ଥକ ହୋଇଯାଇଥିଲେ । ଫଳରେ ଅସହଯୋଗର ବନ୍ୟା ସମଗ୍ର ଦେଶକୁ ପ୍ଲାବିତ କରିଦେଇଥିଲା ।

ଅସହଯୋଗ ଆନ୍ଦୋଳନ ସମଗ୍ର ଦେଶରେ ନୂତନ ପ୍ରେରଣା, ଦିଗ୍‌ଦର୍ଶନ, କର୍ମ-ପ୍ରବଣତା ଓ ସର୍ବସ୍ୱତ୍ୟାଗର ଭାବ ଜାଗ୍ରତ କରିପାରିଥିଲା । କଂଗ୍ରେସ ଗଣ-ଆନ୍ଦୋଳନ ରୂପ ଧାରଣ କରିଥିବା ଯୋଗୁ ଏହାର ପ୍ରଭାବ ଅଦ୍ୱିତୀୟ ଥିଲା । ମହାତ୍ମା ଗାନ୍ଧି ଓ ତାଙ୍କ ସହକର୍ମୀମାନେ ଅପୂର୍ବ ତ୍ୟାଗ ସ୍ୱୀକାର କରି ଦେଶସେବା କରୁଥିବାରୁ ଲୋକେ ସେମାନଙ୍କୁ ବେଶି ଶ୍ରଦ୍ଧା ଓ ମାନ୍ୟ କରୁଥିବା ସ୍ୱାଭାବିକ । ଗୋପବନ୍ଧୁ ବାବୁ ଦେଶପାଇଁ ମନପ୍ରାଣ ଢାଳି ଦେଇଥିଲେ । ଦେଶସେବା କ୍ଷେତ୍ରରେ ସେ ପ୍ରଥମେ ମଧୁବାବୁଙ୍କ ତ୍ୟାଗ ଓ କାର୍ଯ୍ୟକଳାପ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ ଏବଂ ମଧୁବାବୁଙ୍କୁ ଅତିମାନ୍ୟ କରୁଥିଲେ ଓ ନେତାରୂପେ ଗ୍ରହଣ କରୁଥିଲେ । ଉତ୍କଳର ସର୍ବଶ୍ରେଷ୍ଠ ଜାତୀୟ ଅନୁଷ୍ଠାନ ଉତ୍କଳ ସମ୍ମିଳନୀକୁ କଂଗ୍ରେସର ଅନୁଗାମୀ କରିପାରିଥିବାରୁ ଗୋପବନ୍ଧୁ ବାବୁ ଓ ତାଙ୍କ ସହକର୍ମୀମାନଙ୍କ ସମ୍ମାନ

ଅସହଯୋଗୀ ଗୋଷ୍ଠୀରେ ବିଶେଷ ବୃଦ୍ଧି ପାଇଥିଲା । ଏହି କାରଣରୁ ସମ୍ମିଳନୀ ମଣ୍ଡପରେ କଂଗ୍ରେସବାଲାମାନେ "ଗୋପବନ୍ଧୁ ଦାର୍ଶଙ୍କୀ ଜୟ" ବୋଲି ଧ୍ୱନି ଦେଇଥିଲେ । ମହାତ୍ମା ଗାନ୍ଧି ଭାରତରେ ସେତେବେଳେ ସର୍ବୋଚ୍ଚ ନେତାରୂପେ ଉଦୟ ହୋଇ ସାରିଥିଲେ । ଯେଉଁ ପୀଠରେ ଉତ୍କଳ ସମ୍ମିଳନୀ କଂଗ୍ରେସପନ୍ଥୀ ରୂପ ଧାରଣ କରିଛି, ସେହି ପୀଠକୁ ଉତ୍କଳର କଂଗ୍ରେସପନ୍ଥୀମାନେ 'ଜୟସ୍ଥଳ' ବୋଲି ବିବେଚନା କରିବା ଅସ୍ୱାଭାବିକ ନୁହେଁ । ଏହି କାରଣରୁ କଂଗ୍ରେସପନ୍ଥୀମାନେ "ମହାତ୍ମା ଗାନ୍ଧି କୀ ଜୟ" ଧ୍ୱନି କରିଥିଲେ । ଚକ୍ରଧରପୁର ସମ୍ମିଳନୀଠାରୁ ଗୋପବନ୍ଧୁ ବାବୁଙ୍କ ନେତୃତ୍ୱ ଉତ୍କଳରେ ଦୃଢ଼ଭାବରେ ପ୍ରତିଷ୍ଠା ଲାଭକଲା । ସେ ପ୍ରଧାନ ଜାତୀୟ ନେତାରୂପେ ଖ୍ୟାତି ଲାଭ କରିଥିଲେ ।

ଉତ୍କଳ ସମ୍ମିଳନୀର 'ମୃତ୍ୟୁ' ପାଇଁ ମଧୁବାବୁ ଆଦୌ ଦାୟୀ ନୁହନ୍ତି । ସମଗ୍ର ଭାରତରେ ଯେଉଁ ନୂତନ ପ୍ରେରଣା ଓ ଉନ୍ମାଦନାର ସ୍ରୋତ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ପ୍ରବାହିତ ହେଉଥିଲା, ତାକୁ ବାଧା ଦେବାପାଇଁ ଭାରତର କେହି ନେତା ସମର୍ଥ ନଥିଲେ; ଚେଷ୍ଟା କରି ମଧ୍ୟ ସେମାନେ ବିଫଳ ହୋଇଥିଲେ । ଏହା କାଳର ଗତି । ଏହାକୁ ମଧୁବାବୁ ରୋକି ପାରି ନଥାନ୍ତେ । ସେ ଅସହଯୋଗ ନୀତି ଓ କାର୍ଯ୍ୟପନ୍ଥାକୁ ସମର୍ଥନ କରୁ ନଥିଲେ । ଏହା ବିରୁଦ୍ଧରେ ସେ ମତବ୍ୟକ୍ତ କରୁଥିଲେହେଁ ଏଥିରେ କୃତକାର୍ଯ୍ୟ ହୋଇ ପାରି ନଥିଲେ ।

ଯଦି ଚକ୍ରଧରପୁର ଉତ୍କଳ ସମ୍ମିଳନୀରେ ଗୃହୀତ ହୋଇଥିବା ପ୍ରସ୍ତାବକୁ ମଧୁବାବୁ ଗ୍ରହଣ କରିନେଇ ଥାଆନ୍ତେ, ତାହାହେଲେ ସେ ଜଣେ କଂଗ୍ରେସପନ୍ଥୀ ଅସହଯୋଗୀରୂପେ ଗଣ୍ୟ ହୋଇଥାଆନ୍ତେ; ହୁଏତ ତାଙ୍କର ଖ୍ୟାତି ବିଶେଷ ଭାବରେ ବୃଦ୍ଧି ପାଇଥାଆନ୍ତା ଏବଂ ଭାରତରେ ସେ ଜଣେ ଅଗ୍ର ଶ୍ରେଣୀର କଂଗ୍ରେସ ନେତା ହୋଇପାରିଥାଆନ୍ତେ; ସେହି ସମୟରେ କଂଗ୍ରେସର ଯେଉଁ ଉଚ୍ଚ ମର୍ଯ୍ୟାଦା ଓ ମୋହ ଥିଲା, ସେଥିରେ ସେ ମଧ୍ୟ ଭାଗୀ ହୋଇ ପାରିଥାଆନ୍ତେ; କିନ୍ତୁ ତାଙ୍କୁ ନିଜର ମତକୁ ଜଳାଞ୍ଜଳି ଦେବାକୁ ପଡ଼ିଥାଆନ୍ତା । ତେବେ, ମଧୁବାବୁ ତିନି ବର୍ଷ ପରେ ଖ୍ରୀ: ୧୯୨୪ରେ "ଉତ୍କଳ ରାଜନୈତିକ ସମ୍ମିଳନୀ"ରେ ଯୋଗଦେଇ କଂଗ୍ରେସ ସଭ୍ୟଶ୍ରେଣୀଭୁକ୍ତ ହୋଇଥିଲେ । ଅବଶ୍ୟ, ଏ ସମୟକୁ ଅସହଯୋଗ ନୀତିକୁ କଂଗ୍ରେସ ସ୍ଥଗିତ ରଖିଥିଲା । ମଧୁବାବୁ ଅସହଯୋଗ ଉପାୟରେ ସ୍ୱରାଜ୍ୟ ପ୍ରାପ୍ତି ଲକ୍ଷ୍ୟକୁ ସମର୍ଥନ କରୁ ନଥିଲେ, କି ଭାରତରେ ବ୍ରିଟିଶ ରାଜତ୍ୱର ଲୋପ ଚାହୁଁ ନଥିଲେ ।

ଅସହଯୋଗ ନୀତି ଯୋଗୁ ଭାରତର ସବୁ ପ୍ରଦେଶରେ ନେତୃତ୍ୱରେ ଦୁଇଟି ଲେଖାଏଁ ଦଳ ସୃଷ୍ଟି ହୋଇଥିଲା । ଓଡ଼ିଶାରେ ତାହାହିଁ ହେଲା; ଓଡ଼ିଶାର ନେତୃତ୍ୱ ଦୁଇଭାଗ ହୋଇଗଲା ।

## ୬୭ । ମଧୁବାବୁଙ୍କ ମନ୍ତ୍ରିତ୍ୱ

ଖ୍ରୀ: ୧୯୨୧ ଅପ୍ରେଲ ୨୨ ତାରିଖରେ ମଧୁବାବୁ ବିହାର-ଓଡ଼ିଶା ଲାଟଙ୍କଦ୍ୱାରା ପ୍ରଦେଶର ଜଣେ ମନ୍ତ୍ରୀରୂପେ ନିଯୁକ୍ତ ହେଲେ । ଜାନୁଆରୀ ମାସ ୪ ତାରିଖରେ ମଧୁବାବୁ ମନ୍ତ୍ରୀରୂପେ କାର୍ଯ୍ୟଭାର ଗ୍ରହଣ କରିବା ନିମନ୍ତେ କଟକରୁ ପାଟନା ପ୍ରସ୍ଥାନ କଲେ ।

ତାଙ୍କୁ ବିଦାୟ ଦେବା ନିମନ୍ତେ କଟକ ସହରର ବହୁ ଗଣ୍ୟମାନ୍ୟ ଭଦ୍ରବ୍ୟକ୍ତି ଓ କେତେଜଣ ଇଉରୋପୀୟ ରାଜକର୍ମଚାରୀ କଟକ ରେଲଷ୍ଟେସନରେ ଉପସ୍ଥିତ ଥିଲେ । ବିଦାୟ ସମୟରେ ମଧୁବାବୁ କଥା ପ୍ରସଙ୍ଗରେ କହିଥିଲେ—“ଶରୀରରେ ପ୍ରାଣ ଥିବାଯାଏ ଦେଶର ସେବା କରିବାକୁ ମୁଁ ଯେଉଁ ପ୍ରତିଜ୍ଞା କର୍ମମୟ ଜୀବନର ଆରମ୍ଭରୁ କରିଛି, ତାହା ମୋ ପ୍ରତି ଜନସାଧାରଣଙ୍କର ଏହି ସ୍ନେହ ପ୍ରଦର୍ଶନ ଦ୍ୱାରା ଅଧିକ ଦୃଢ଼ ହେବ ।” ଓଡ଼ିଆଜାତି ମଧୁବାବୁଙ୍କର ଏ ବାଣୀରେ ବିଶ୍ୱାସ ରଖିଥିଲା ।

ମନ୍ତ୍ରୀ ମଧୁବାବୁଙ୍କୁ ସ୍ୱାୟତ୍ତଶାସନ ଓ ସ୍ୱାସ୍ଥ୍ୟ ଏହି ଦୁଇଟି ବିଭାଗର ଦାୟିତ୍ୱ ଦିଆଯାଇଥିଲା । ପ୍ରଥମ ବର୍ଷରେ ସେ ବିହାର-ଓଡ଼ିଶା ମ୍ୟୁନିସିପାଲିଟି ଆଇନର ଚିଠା ପ୍ରଣୟନ କରିଥିଲେ ଏବଂ ପରବର୍ଷ ଖ୍ରୀ: ୧୯୨୨ରେ ଏହି ଚିଠା ବ୍ୟବସ୍ଥାପକ ସଭାରେ ଆଇନ୍‌ରୂପେ ଗୃହୀତ ହୋଇଥିଲା ।

**କଟକରେ ସମ୍ବର୍ଦ୍ଧନା ସଭା** ବିହାର-ଓଡ଼ିଶା ପ୍ରଦେଶର ନବନିଯୁକ୍ତ ଲାଟ ଓ ମନ୍ତ୍ରୀମାନଙ୍କୁ ସାଦର ସମ୍ଭାଷଣ ଓ ଜନସାଧାରଣଙ୍କର ଆସ୍ଥା ଥିବା ବିଷୟ ଜଣାଇବା ନିମନ୍ତେ ଖ୍ରୀ: ୧୯୨୧ ଜାନୁଆରି ୮ ତାରିଖରେ କଟକ ଟାଉନ୍‌ହଲ୍ ପଡ଼ିଆରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ପ୍ରାୟ ୪-୫ ଶହ ଜଣ ଯୁବକ, ଆଇନଜ୍ଞ, କଲେଜଛାତ୍ର ଏହି ସଭା ନ କରାଇଦେବା ପାଇଁ ଚେଷ୍ଟା କରିଥିଲେ । ଗୋଳମାଳ ମଧ୍ୟ ହୋଇଥିଲା । ଏହି ବାଧା ଉପୁଜିବାରୁ ସଭା ବାହାରେ ନ ହୋଇ ଟାଉନ୍‌ହଲ୍ ଭିତରେ ହୋଇଥିଲା । ମଧୁବାବୁ ମନ୍ତ୍ରିତ୍ୱ ଗ୍ରହଣ କରିଥିବାରୁ ଅସନ୍ତୋଷ ପ୍ରକାଶ କରିବା ଏହି ବାଧାର ଉଦ୍ଦେଶ୍ୟ ଥିଲା । ଛାତ୍ରମାନେ ଗାନ୍ଧିଟୋପି ଧାରଣ କରିଥିଲେ । ଅସହଯୋଗ ବାର୍ତ୍ତା ସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ଅସନ୍ତୁଷ୍ଟ ଛାତ୍ର ଓ ଯୁବକମାନେ ବାଲେଶ୍ୱରର ମୁକ୍ତାର ଶ୍ରୀ ମୁକୁନ୍ଦ ପ୍ରସାଦ ଦାସଙ୍କ ସଭାପତିତ୍ୱରେ ଟାଉନହଲ୍ ପଡ଼ିଆରେ ସମ୍ବର୍ଦ୍ଧନା ସଭାର ନିର୍ଦ୍ଧାରିତ ସମୟରେ ଏକ ସ୍ୱତନ୍ତ୍ର ସଭା କରିଥିଲେ; କିନ୍ତୁ ପରେ କେତେକ ପୁରୁଣା ଲୋକଙ୍କ ଉପଦେଶ ଶୁଣି ସଭା ଭଙ୍ଗ କରି ଚାଲିଗଲେ । ଗଲାବେଳେ ସେମାନଙ୍କ ମଧ୍ୟରୁ କେହି କେହି କହି ଗଲେ, “ତୁମେ ବୁଢ଼ାମାନେ କଣ କରୁଛ କର, ପରେ ଦେଖାଯିବ ।” ଏହା ପରେ ମଧ୍ୟ ବହୁ ଲୋକ ଟାଉନ୍‌ହଲ ଭିତରେ ହେଉଥିବା ସଭାରେ ଉପସ୍ଥିତ ଥିଲେ । କଟକର ପ୍ରୌଢ଼ ଓକିଲବାବୁ କଲ୍ପତରୁ ଦାସ ସଭାପତି ହୋଇଥିଲେ ।

ନିମ୍ନଲିଖିତ ପ୍ରସ୍ତାବଗୁଡ଼ିକ ସର୍ବସମ୍ମତିକ୍ରମେ ଏହି ସଭାରେ ଗୃହୀତ ହୋଇଥିଲା ।

(୧) "କଟକର ଜନସାଧାରଣଙ୍କ ଏହି ସଭା ବିହାର-ଓଡ଼ିଶା ପ୍ରଦେଶରେ ସର୍ବପ୍ରଥମେ ଜଣେ ଭାରତୀୟଙ୍କୁ ଗଭର୍ଣ୍ଣରରୂପେ ନିଯୁକ୍ତ କରିବାକୁ ଆନନ୍ଦ ପ୍ରକାଶ କରୁଅଛନ୍ତି ଏବଂ ମାନ୍ୟବର ଲର୍ଡ଼ ସଚ୍ଚିଦାନନ୍ଦ ସିଂହ ଲାଟରୂପେ ନିଯୁକ୍ତ ହୋଇଥିବାରୁ ତାଙ୍କୁ ସମ୍ମାନ ସମ୍ଭାଷଣ ଜଣାଇ ଆନନ୍ଦ ପ୍ରକାଶ କରୁଅଛନ୍ତି ଓ ଆଶା କରୁଅଛନ୍ତି କି ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କ ରାଜତ୍ୱ ଆରମ୍ଭରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରତି କ୍ରମାଗତ ଯେ ଉଦାସୀନତା ପ୍ରଦର୍ଶିତ ହୋଇ ଆସୁଅଛି ତାହା ଲର୍ଡ଼ ସିଂହଙ୍କ ଅମଳରେ ଦୂର ହେବ ।"

(୨) "ଭାରତୀୟ ନୂତନ ଶାସନ ଆଇନାନୁସାରେ ଶାସନ କାର୍ଯ୍ୟରେ ସ୍ୱାୟତ୍ତଶାସନ ଓ ସ୍ୱାସ୍ଥ୍ୟ ବିଭାଗ ନିମନ୍ତେ ମାନ୍ୟବର ମି. ଏମ୍. ଏସ. ଦାସ ସି. ଆଇ. ଇ. ମନ୍ତ୍ରୀ ନିଯୁକ୍ତ ହୋଇଥିବାରୁ ସେଥିନିମନ୍ତେ ଏ ସଭା ଆନନ୍ଦ ପ୍ରକାଶ କରୁଅଛନ୍ତି ଓ ଓଡ଼ିଶାରେ ଯେସବୁ ଅଭାବ ମୋଚନ ନିମନ୍ତେ ମିଃ ଦାସ ତାଙ୍କର ଜୀବନ ଉତ୍ସର୍ଗ କରିଥିଲେ, ସେହିସବୁ ଅଭାବ ବର୍ତ୍ତମାନ ତାଙ୍କଦ୍ୱାରା ବିଦୂରିତ ହୋଇ ପାରିବ ବୋଲି ଏହି ସଭା ଆଶା କରୁଛନ୍ତି ।"

(୩) "କଟକର ଜନସାଧାରଣ ନବନିଯୁକ୍ତ ମନ୍ତ୍ରୀମାନଙ୍କୁ ଜଣାଇ ଅଛନ୍ତି ଯେ, ଦେଶରେ ବର୍ତ୍ତମାନ ଯେ ଅସନ୍ତୋଷ-ଅଗ୍ନି ଜଳୁଅଛି, ସେଥି ନିମନ୍ତେ ଗଭର୍ଣ୍ଣମେଣ୍ଟ ପ୍ରଧାନତଃ ଦାୟୀ । ସ୍ଥାନୀୟ ଓ ସାଧାରଣ ଅଭାବମାନ ଦୂରୀଭୂତ ନହେବା ପର୍ଯ୍ୟନ୍ତ ଏହି ଅସନ୍ତୋଷ-ଅଗ୍ନି ଲିଭିବ ନାହିଁ—ଉଭୟ ସରକାର ଓ ଜନସାଧାରଣଙ୍କୁ ଲଣ୍ଡଭଣ୍ଡ କରିଦେବ ।"

ସଭାରେ ଗୃହୀତ ହୋଇଥିବା ପ୍ରସ୍ତାବଗୁଡ଼ିକ ଆପତ୍ତିଜନକ ହୋଇ ନଥିବାରୁ ଶାନ୍ତି ବିରାଜିଥିବା ସମ୍ଭବ । ବିଶେଷତଃ, ଓଡ଼ିଶାର ଅଭାବ ଅସୁବିଧା ଦୂର କରିବାପାଇଁ ଉଦ୍ୟମ କରିବାକୁ ମଧୁବାବୁଙ୍କୁ ଯେଉଁ ନିବେଦନ କରାଗଲା, ତାହା ଓଡ଼ିଆଙ୍କ ସ୍ୱତନ୍ତ୍ର ଓ ସର୍ବପ୍ରଧାନ ସମସ୍ୟା ଥିବାରୁ ସଭାରେ ଅସନ୍ତୋଷର ତୀବ୍ରତା ହ୍ରାସ ପାଇଥିବା ମନେହୁଏ । ବିରୁଦ୍ଧବାଦୀ-ମାନଙ୍କୁ ସଭାର ଆବାହକମାନେ ପ୍ରସ୍ତାବମାନଙ୍କର ଚିଠା ଦେଖାଇଥିଲେ । ଏଥିରେ ଆପତ୍ତି କରିବାର ବିଶେଷ କାରଣ ନ ଥିବାରୁ ଅଯଥା ଅଶାନ୍ତି ସୃଷ୍ଟି କରିବା ଅନୁଚିତ ମନେକରି ବିରୁଦ୍ଧବାଦୀମାନଙ୍କ ଭିତରେ ଥିବା ମୁଖିଆମାନେ ଅଶାନ୍ତି ସୃଷ୍ଟି ନକରି ସଭାସ୍ଥଳରୁ ଚାଲିଯାଇଥିଲେ । ଏହାପରେ ସଭା ଶାନ୍ତିପୂର୍ଣ୍ଣ ଭାବରେ ଚାଲିଥିଲା ।

ମଧୁବାବୁ ଅସହଯୋଗ ନୀତିକୁ ମାନ୍ୟକରି ମନ୍ତ୍ରିତ୍ୱ ଗ୍ରହଣ କରି ନଥିଲେ ବିରୁଦ୍ଧ-ବାଦୀମାନେ ଯେ ଆନନ୍ଦିତ ହୋଇଥାଆନ୍ତେ, ଏଥିରେ ସନ୍ଦେହ ନାହିଁ । ମଧୁବାବୁ ଓଡ଼ିଶା ଓ ଭାରତର ଜଣେ ଉଚ୍ଚସ୍ତରର ନେତା ଥିବାରୁ ସେ ଯଦି ଅସହଯୋଗ ନୀତିକୁ ଗ୍ରହଣ କରିଥାଆନ୍ତେ, ତାହାହେଲେ ଓଡ଼ିଶାର ମର୍ଯ୍ୟାଦା ବିଶେଷ ଭାବରେ ବୃଦ୍ଧି ପାଇଥାଆନ୍ତା ଏବଂ ଭାରତୀୟ ସ୍ତରରେ ମଧ୍ୟ ଓଡ଼ିଶାର ମର୍ଯ୍ୟାଦା ବୃଦ୍ଧି ପାଇପାରନ୍ତା ବୋଲି ବିରୁଦ୍ଧବାଦୀ-ମାନେ କହୁଥିଲେ ।

ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ହେବା ପୂର୍ବରୁ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ଅସହଯୋଗ ନୀତିକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆନ୍ଦୋଳନ ଆରମ୍ଭ କରିସାରିଥିଲା । ଅବଶ୍ୟ ପୂର୍ବରୁ କଂଗ୍ରେସର ଲକ୍ଷ୍ୟ ଓ କାର୍ଯ୍ୟପ୍ରଣାଳୀ ସହଯୋଗ ନୀତି ଉପରେ ପ୍ରତିଷ୍ଠିତ ଥିଲା । ବ୍ରିଟିଶ ସାମ୍ରାଜ୍ୟ ଭିତରେ ଭାରତ ଥାଇ କ୍ରମୋନ୍ନତି ମାର୍ଗରେ ସ୍ୱାୟତ୍ତଶାସନ ବା ପ୍ରଜାତନ୍ତ୍ର ଶାସନ ପାଇବା ଲକ୍ଷ୍ୟ କଂଗ୍ରେସ ଘୋଷଣା କରିଥିଲା; କିନ୍ତୁ ହିଂସାଶୂନ୍ୟ ଓ ଶାନ୍ତିପୂର୍ଣ୍ଣ ପନ୍ଥାରେ ପୂର୍ଣ୍ଣ ସ୍ୱରାଜ୍ୟ ଲାଭକରିବା ନିମନ୍ତେ କର୍ଯ୍ୟପ୍ରଣାଳୀ ରଚନା କରିବାକୁ ନାଗପୁରଠାରେ ଖ୍ରୀ: ୧୯୨୦ରେ କଂଗ୍ରେସ ଅଧିବେଶନରେ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ପଣ୍ଡିତ ମଦନମୋହନ ମାଲବ୍ୟ ପ୍ରଭୃତି କଂଗ୍ରେସର କେତେଜଣ ବିଶିଷ୍ଟ ନେତା ଏହି ଲକ୍ଷ୍ୟ ଓ କାର୍ଯ୍ୟପ୍ରଣାଳୀର ବିରୋଧ କରିଥିଲେ । ପଣ୍ଡିତ ମାଲବ୍ୟ ପ୍ରସ୍ତାବ କରିଥିଲେ ଯେ, ବ୍ରିଟିଶ ଶାସନାଧୀନରେ ରହି ସ୍ୱରାଜ୍ୟ ପାଇବା ନିମନ୍ତେ କଂଗ୍ରେସ ଯତ୍ନବାନ ହେଉ; କିନ୍ତୁ ବହୁମତରେ ମାଲବ୍ୟଙ୍କ ପ୍ରସ୍ତାବ କଂଗ୍ରେସରେ ପରିତ୍ୟକ୍ତ ହୋଇ ପୂର୍ଣ୍ଣ ସ୍ୱରାଜ୍ୟ କଂଗ୍ରେସର ଲକ୍ଷ୍ୟ ଥିବା ଘୋଷିତ ହେଲା ଏବଂ ଏହାକୁ ହାସଲ କରିବା ନିମନ୍ତେ କାର୍ଯ୍ୟପନ୍ଥା ମଧ୍ୟ ନିର୍ଣ୍ଣୀତ ହୋଇଗଲା ।

ନାଗପୁରର ଏହି ଅଧିବେଶନରେ ମତ ପ୍ରକାଶ ପାଇଥିଲା ଯେ, ବ୍ରିଟିଶ ସରକାର ଭାରତୀୟମାନଙ୍କର ବିଶ୍ୱାସ ହରାଇଛନ୍ତି । ଏହି କାରଣରୁ ଭାରତୀୟମାନେ ସ୍ୱରାଜ୍ୟ ସ୍ଥାପନ କରିବାପାଇଁ ଦୃଢ଼ପ୍ରତିଜ୍ଞ ହୋଇଅଛନ୍ତି । ଏହା ମଧ୍ୟ ପ୍ରସ୍ତାବ ଆକାରରେ କଂଗ୍ରେସ ଜଣାଇଦେଲା । ପଞ୍ଜାବର ଜାଲିଆନାୱାଲାବାଗ୍ ଅତ୍ୟାଚାର ପରେ ଭାରତୀୟମାନଙ୍କର ଇଂରେଜ ଶାସନ ପ୍ରତି ଆଉ ଆସ୍ଥା ରହିଲାନାହିଁ । ନାଗପୁର ଅଧିବେଶନ ପୂର୍ବରୁ କଲିକତାରେ କଂଗ୍ରେସର ଯେଉଁ ବିଶେଷ ଅଧିବେଶନ ହୋଇଥିଲା, ସେଥିରେ ଅହିଂସାତ୍ମକ ଅସହଯୋଗ ଉପାୟ ଦ୍ୱାରା ସ୍ୱରାଜ୍ୟପ୍ରାପ୍ତି କଂଗ୍ରେସର ଲକ୍ଷ୍ୟ ଥିବା ଘୋଷିତ ହୋଇଥିଲା । କଂଗ୍ରେସର ନାଗପୁର ଅଧିବେଶନ ଏବଂ କଲିକତା ଅଧିବେଶନରେ ଘୋଷିତ ହୋଇଥିବା ଲକ୍ଷ୍ୟ ଓ ନୀତିକୁ ଗ୍ରହଣ କରିନେଇ ଲକ୍ଷ୍ୟ ହାସଲ ନିମନ୍ତେ କର୍ମପନ୍ଥା ମଧ୍ୟ ସ୍ଥିର କରା-ହୋଇଥିଲା । ସରକାରଙ୍କ ସହିତ ଅସହଯୋଗ ଓ କର ବନ୍ଦର କାର୍ଯ୍ୟକ୍ରମ ଗୃହୀତ ହୋଇ-ଥିଲା । ଏଥିରେ ଏହି କେତୋଟି ନିର୍ଦ୍ଧାରଣ ଗୁରୁତ୍ୱପୂର୍ଣ୍ଣ ଥିଲା ।

(କ) ୧୬ ବର୍ଷରୁ ନ୍ୟୂନ ବୟସ୍କ ଛାତ୍ରମାନଙ୍କ ପିତା ଓ ଅଭିଭାବକମାନେ ସରକାରଙ୍କ ପରିଚାଳିତ ବା ସରକାରୀ ସାହାଯ୍ୟପ୍ରାପ୍ତ ବିଦ୍ୟାଳୟମାନଙ୍କରୁ ନିଜ ପିଲାମାନଙ୍କୁ ଉଠାଇ ଆଣି ଏମାନଙ୍କୁ ଜାତୀୟ ବିଦ୍ୟାଳୟରେ ଶିକ୍ଷା ଦେବାର ବ୍ୟବସ୍ଥା କରନ୍ତୁ ।

(ଖ) ୧୬ ବର୍ଷରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀମାନେ ସରକାରୀ ବିଦ୍ୟାଳୟ ଓ ସରକାରୀ ସାହାଯ୍ୟପ୍ରାପ୍ତ ବିଦ୍ୟାଳୟ ବର୍ଜନକରି ଅସହଯୋଗ ନୀତି ପ୍ରଚାର କାର୍ଯ୍ୟରେ ବ୍ରତୀ ହୁଅନ୍ତୁ ଅଥବା ଜାତୀୟ ବିଦ୍ୟାଳୟମାନଙ୍କରେ ଅଧ୍ୟୟନ କରନ୍ତୁ ।

(ଗ) ସରକାରୀ ବିଦ୍ୟାଳୟଗୁଡ଼ିକୁ ଜାତୀୟ ବିଦ୍ୟାଳୟରେ ପରିଣତ କରିବାପାଇଁ ବିଦ୍ୟାଳୟମାନଙ୍କର ପରିଚାଳକ ଓ ମାଲିକମାନଙ୍କୁ ଅନୁରୋଧ କରାଯାଉ ।

(ଘ) ଓକିଲମାନେ ଓକିଲାତି ତ୍ୟାଗ କରିବାକୁ କ୍ରମେ କ୍ରମେ ଅଧିକ ଚେଷ୍ଟା କରନ୍ତୁ । ମକଦ୍ଦମାମାନେ କଚେରିକୁ ନଯାଇ ଯେପରି ଆପଣା ଭିତରେ ଆପୋଷରେ ବିବାଦ ନିଷ୍ପତ୍ତି କରନ୍ତି, ସେ ଦିଗରେ ଓକିଲ ଓ କର୍ମୀମାନେ ପ୍ରଚାର କରନ୍ତୁ ।

(ଙ) ଭାରତକୁ ଆର୍ଥିକ କ୍ଷେତ୍ରରେ ସ୍ୱାବଲମ୍ବୀ କରିବା ଉଦ୍ଦେଶ୍ୟରେ ଲୋକେ ଓ ବ୍ୟବସାୟୀମାନେ ବିଦେଶୀ ଜିନିଷ ବର୍ଜନ କରନ୍ତୁ ଏବଂ ବିଦେଶୀ ବାଣିଜ୍ୟ ସମ୍ପର୍କ କ୍ରମେ ତ୍ୟାଗ କରନ୍ତୁ । ହାତବୁଣା ଲୁଗା ଓ ହାତକଟା ସୂତାର ବ୍ୟବହାର କରିବା ଦିଗରେ ଉଦ୍ୟମ ହେଉ ।

(ଚ) ଅସହଯୋଗ ନୀତିର ବହୁଳ ପ୍ରଚାରପାଇଁ ପ୍ରତ୍ୟେକ ଗ୍ରାମରେ କମିଟି ସ୍ଥାପିତ ହେଉ । (ଛ) କଂଗ୍ରେସ ନୀତି ପ୍ରଚାର ଉଦ୍ଦେଶ୍ୟରେ ଏକ ଜାତୀୟ ସେବାଦଳ ଗଠନ କରାଯାଉ । (ଜ) କାଉନ୍‌ସିଲ୍ ବର୍ଜନ କରିବାକୁ ଓ ସରକାରୀ ଚାକିରିରୁ ଇସ୍ତଫା ଦେବା ନିମନ୍ତେ ସମ୍ପୃକ୍ତ ବ୍ୟକ୍ତିମାନଙ୍କୁ ଅନୁରୋଧ କରାଯାଉ ।

ମଧୁବାବୁ କଂଗ୍ରେସର ଅସହଯୋଗ ନୀତି ଯଥା—କଚେରୀ, ଅଫିସ, ଓକିଲାତି ପ୍ରଭୃତି ବର୍ଜନକରିବା ନୀତି ସହିତ ଏକମତ ନଥିଲେ । ସ୍କୁଲ୍ କଲେଜ ଛାଡ଼ି ଛାତ୍ରମାନେ ଆନ୍ଦୋଳନ କରିବା କାର୍ଯ୍ୟକ୍ରମକୁ ମଧ୍ୟ ସେ ଆପତ୍ତି କରୁଥିଲେ । ଜାତୀୟ ବିଦ୍ୟାଳୟ ସ୍ଥାପନ ନୀତିକୁ ସେ ସମର୍ଥନ କରୁଥିଲେ; କିନ୍ତୁ ସରକାରୀ ଓ ଅନ୍ୟାନ୍ୟ ବିଦ୍ୟାଳୟ-ମାନଙ୍କରୁ ଛାତ୍ରମାନଙ୍କୁ ବାହାର କରି ଆଣିବା କାର୍ଯ୍ୟକୁ ସେ ପସନ୍ଦ କରୁନଥିଲେ ।

ସେ ଦେଶୀୟ ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନର ବୃଦ୍ଧି ଓ ବହୁଳ ବ୍ୟବହାର ସପକ୍ଷରେ ଥିଲେ; କିନ୍ତୁ ବିଦେଶୀ ବର୍ଜନକୁ ଏକ ରାଜନୈତିକ ଅସ୍ତ୍ରରୂପେ ବ୍ୟବହାର କରିବା ତାଙ୍କର ମତ ନଥିଲା ।

ଆଇନ ଅମାନ୍ୟ, କର ବନ୍ଦ ପ୍ରଭୃତି ବିଷୟରେ ମଧ୍ୟ ତାଙ୍କର ଆପତ୍ତି ଥିଲା । ଏହାକୁ କାର୍ଯ୍ୟକାରୀ କରିବାକୁ ଗଲାବେଳେ ଯେଉଁ ସାବଧାନତା ଆବଶ୍ୟକ, ତାହା ବର୍ତ୍ତମାନର ଦେଶର ଅବସ୍ଥାରେ ଆଶା କରିବା ସମ୍ଭବ ନୁହେଁ ବୋଲି ସେ ମତ ଦେଇଥିଲେ । ଏହାଦ୍ୱାରା ଦେଶରେ ବିଶୃଙ୍ଖଳା ଓ ଅରାଜକତା ଦେଖାଦେବ ଏବଂ ବିଶୃଙ୍ଖଳା ଓ ଅରାଜକତା ଥରେ ଦେଖାଦେଲେ, ଏହାକୁ ଆୟତ୍ତ କରିବା ସହଜ ହେବନାହିଁ ବୋଲି ମଧ୍ୟ ସେ କହୁଥିଲେ ।

ଓଡ଼ିଶା ଓ କଂଗ୍ରେସର ସମ୍ବନ୍ଧ ବିଷୟରେ ତାଙ୍କର ସ୍ପଷ୍ଟ ମତ ଥିଲା । ଖଣ୍ଡବିଖଣ୍ଡିତ ଅନୁନ୍ନତ ଓଡ଼ିଶାର ଦାବୀ ନିଖିଳ ଭାରତ ପୀଠରେ ଗୃହୀତ ହେବାର ଆଶା ସେ ଦେଖୁନଥିଲେ । ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସମ୍ପର୍କରେ ପ୍ରତିବେଶୀ ବଙ୍ଗାଳୀ, ବିହାରୀ, ତେଲୁଗୁ ଓ ହିନ୍ଦୀଭାଷାଭାଷୀମାନେ ଯେଉଁ ଆପତ୍ତି ଓ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି, ତାହା

ବିରୁଦ୍ଧରେ ଯୁଦ୍ଧକରି ଦାବୀ ହାସଲ କରିବା ଓଡ଼ିଆଙ୍କ ପକ୍ଷରେ ସେତେ ସହଜ ନୁହେଁ, ଏହା ତାଙ୍କର ବିଶ୍ୱାସ ଥିଲା । ପ୍ରତିପକ୍ଷମାନଙ୍କର ଶକ୍ତି କଂଗ୍ରେସରେ ଓ କଂଗ୍ରେସ ବାହାରେ ଓଡ଼ିଆଙ୍କ ଅପେକ୍ଷା ବେଶୀ ଥିବାରୁ କଂଗ୍ରେସରେ ଓଡ଼ିଶାର ସ୍ୱାତନ୍ତ୍ର୍ୟ ରକ୍ଷା ହେବା ବା ଓଡ଼ିଶା ବିଶିଷ୍ଟ ସ୍ଥାନ ଅଧିକାର କରିବା ସମ୍ଭବ ନୁହେଁ ବୋଲି ସେ ବାରମ୍ବାର କହୁଥିଲେ । ପ୍ରତିପକ୍ଷମାନେ ଓଡ଼ିଆମାନଙ୍କଠାରୁ ଏକ ଶତାବ୍ଦୀ ଆଗେଇ ଯାଇଛନ୍ତି । ରାଜନୈତିକ କାରଣରୁ ଓଡ଼ିଶା ଶହେବର୍ଷ ହେଲା ହୀନବଳ ହୋଇ ପଡ଼ିରହିଛି । ଶିକ୍ଷା, ଅର୍ଥ, ବାଣିଜ୍ୟ, ଶାସନ ପ୍ରଭୃତି ସବୁ କ୍ଷେତ୍ରରେ ଓଡ଼ିଆମାନେ ପଛରେ ପଡ଼ିଛନ୍ତି । ବର୍ତ୍ତମାନର ବର୍ଜ୍ଜନ ନୀତି ଏ ଦୁର୍ବଳ ଜାତିକୁ ଆହୁରି ଦୁର୍ବଳ କରିଦେବ ଓ ଓଡ଼ିଆଙ୍କ ପ୍ରଗତିର ବେଗ ବ୍ୟାଘାତ ପ୍ରାପ୍ତହେବ ବୋଲି ତାଙ୍କର ମତ ଥିଲା । ଓଡ଼ିଶାରେ ଓକିଲଙ୍କ ସଂଖ୍ୟା ଅଳ୍ପ, ଶିକ୍ଷାନୁଷ୍ଠାନ ସଂଖ୍ୟା ଅଳ୍ପ, ଶାସନ କ୍ଷେତ୍ରରେ ଓଡ଼ିଆଙ୍କ ସଂଖ୍ୟା ନଗଣ୍ୟ । ଓଡ଼ିଶାଦେଶରେ ବିଦେଶୀମାନେ ହିଁ ବଳୀୟାନ୍ ହୋଇ ରହିଛନ୍ତି । ବର୍ଜ୍ଜନନୀତି ଏହି ଦୁର୍ବଳତାକୁ ବହୁଗୁଣରେ ବୃଦ୍ଧି କରିଦେବ, ଏହା ସେ ସ୍ପଷ୍ଟ ଭାବରେ ବ୍ୟକ୍ତ କରୁଥିଲେ । ଆଗେ ଓଡ଼ିଆମାନେ ନିଜ ଜାତିକୁ ଦୃଢ଼ଭିତ୍ତିରେ ଗଠନ କରନ୍ତୁ ଏବଂ ଏହା ହୋଇଗଲେ ମହାଭାରତୀୟ ପୀଠରେ ସେମାନଙ୍କର ଆଦର ଓ ଶକ୍ତି ଆପେ ଆପେ ବୃଦ୍ଧି ପାଇବ ବୋଲି ସେ ଦୃଢ଼କଣ୍ଠରେ କହୁଥିଲେ ।

ଓଡ଼ିଶାର ବହୁ ନିଷ୍ଠାପର କଂଗ୍ରେସ ନେତାଙ୍କର ମଧ୍ୟ ଏହିପରି ଚିନ୍ତାଧାରା ଥିଲା; କିନ୍ତୁ ମହାଭାରତୀୟ ସ୍ତରରେ ଯେଉଁ ଆନ୍ଦୋଳନ ହେଉଛି, ସେଥିରେ ଓଡ଼ିଆମାନେ ଯୋଗ ନଦେଲେ ସେମାନେ ହୁଏତ ପଛରେ ପଡ଼ିଯିବେ, ଏହି ଆଶଙ୍କା ସେମାନଙ୍କର ଥିଲା ।

କଂଗ୍ରେସ ସହିତ ମଧୁବାବୁଙ୍କର ଏହି ମତଭେଦ ମୌଳିକ ବୋଲି ମଧ୍ୟ କୁହାଯାଇପାରେ । ବ୍ରିଟିଶ ରାଜତ୍ୱ ଭିତରେ ସ୍ୱରାଜ୍ୟ ପ୍ରାପ୍ତିକୁ ସେ ପସନ୍ଦ କରୁଥିଲେ । କାରଣ ସେ ବିଶ୍ୱାସ କରୁଥିଲେ ଯେ ବ୍ରିଟିଶ ରାଜତ୍ୱ ଭିତରେ ଭାରତ ସ୍ୱରାଜ୍ୟ ପାଇ ରହିଲେ ଭାରତର ଉନ୍ନତିର ଗତି ଦ୍ରୁତ ହେବ ।

ମଧୁବାବୁ କାଉନ୍‌ସିଲ୍ ବର୍ଜ୍ଜନ ନୀତିକୁ ବିରୋଧ କରୁଥିଲେ ଏବଂ ଗ୍ରହଣ ମଧ୍ୟ କରି ନଥିଲେ । ସେ ସରକାରଙ୍କ ମନ୍ତ୍ରିତ୍ୱ ଗ୍ରହଣ କରିବାରୁ ଅସହଯୋଗୀମାନଙ୍କର ତୀବ୍ର ସମାଲୋଚନାର ପାତ୍ର ହୋଇଥିଲେ । ଏହି ସମାଲୋଚନା ସମୟ ସମୟରେ ଅତି ନିମ୍ନସ୍ତରକୁ ମଧ୍ୟ ସ୍ପର୍ଶ କରିଥିଲା । ଉଚ୍ଚସ୍ତରୀୟ ସମାଲୋଚନା ପୀଠରୁ ସ୍ଖଳିତ ହୋଇ ଓଡ଼ିଶାର କେତେକ କଂଗ୍ରେସ ନେତା ଓ ପତ୍ରିକା ମଧ୍ୟ ମଧୁବାବୁଙ୍କ ଭଳି ସର୍ବମାନ୍ୟ ନେତାଙ୍କ ପ୍ରତି କଟୂକ୍ତି କରୁଥିଲେ ଏବଂ ସମୟ ସମୟରେ ଅସମ୍ମାନଜନକ ବ୍ୟବହାର ମଧ୍ୟ ପ୍ରଦର୍ଶନ କରୁଥିଲେ ।

ମଧୁବାବୁ ମନ୍ତ୍ରୀ ହେବାର ଅଳ୍ପ କେତେ ଦିନ ପରେ ଓଡ଼ିଶାରେ ମନ୍ତ୍ରିତ୍ୱ ଗ୍ରହଣ ବିରୁଦ୍ଧରେ କେତେକ ବେନାମୀ ଛପା ପ୍ରଚାରପତ୍ର ବଣ୍ଟାଯାଇଥିଲା । ଏଥିରେ ଉଗ୍ରପନ୍ଥୀ

ରାଜନୈତିକ କର୍ମୀମାନଙ୍କର ହାତ ଥିବା କେହି କେହି ଅନୁମାନ କରିଥିଲେ । ଏହି ପ୍ରକାରେ କେତେକ ଶିରୋନାମା ଏହି ପ୍ରଚାରପତ୍ରମାନଙ୍କରେ ଥିଲା— (୧) "ଅଶୀ ବରଷରେ ମଧୁବାବୁ ମନ୍ତ୍ରୀ—ସ୍ୱପ୍ନ କି ସତ୍ୟ?" (୨) "ପାଇବେ ବର୍ଷରେ ଷାଠିଏ ହଜାର—କାହାଠାରୁ?" × × "ଆମର ଅନ୍ନକଷ୍ଟିଆ ପୁରୀଆ ଭାଇ, ଧୋଇଆ କଟକୀ, ସମ୍ବଲପୁରିଆ, ଜରୁଆ ବାଲେଶ୍ୱରିଆ ଭାଇ । ଆମର ହିସାବରେ ସରକାରଙ୍କର ତ ପାଣି ।"

ଏହି ପ୍ରଚାରପତ୍ରମାନଙ୍କରେ ମଧୁବାବୁଙ୍କ ମନ୍ତ୍ରିତ୍ୱ ଗ୍ରହଣ କାର୍ଯ୍ୟକୁ ନାପସନ୍ଦ କରାଯାଇ ଥିଲା ଏବଂ ସେ ଶୀଘ୍ର ଇସ୍ତଫା ଦିଅନ୍ତୁ ବୋଲି ଦାବୀ କରାଯାଇଥିଲା । କଂଗ୍ରେସ ଅସହଯୋଗ ଓ ବର୍ଜ୍ଜନ ନୀତି ଗ୍ରହଣ କରିସାରିଥିବାରୁ କଂଗ୍ରେସ ମତାବଲମ୍ବୀଙ୍କ ପକ୍ଷରୁ ଏପରି ପ୍ରଚାର ହେଉଥିବା କେହି କେହି ଅନୁମାନ କରୁଥିଲେ । ମଧୁବାବୁଙ୍କ ପରି ବିଶିଷ୍ଟ ନେତା କଂଗ୍ରେସର ନୀତିକୁ ଗ୍ରହଣ କରିନେଇଥିଲେ ଭାରତରେ ଓଡ଼ିଶାର ଗୌରବ ବିଶେଷ ଭାବରେ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଏହି ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନର ଗତି ପ୍ରଖର ହୋଇପାରିଥାଆନ୍ତା ବୋଲି କଂଗ୍ରେସ ଲୋକେ ଭାବିବା ସ୍ୱାଭାବିକ । ମଧୁବାବୁ ଦେଶର ସଙ୍କଟସନ୍ଧିବେଳେ ମନ୍ତ୍ରିତ୍ୱ ଗ୍ରହଣ କରିବାଦ୍ୱାରା ସରକାରଙ୍କ ଦମନ ନୀତିକୁ ସମର୍ଥନ କରିବାକୁ ବାଧ୍ୟ ହେବେ ଏବଂ ସରକାରଙ୍କ 'ଦମନ ନୀତି ଓ ଅତ୍ୟାଚାର'ରେ ବାଧ୍ୟ ହୋଇ ଅଂଶୀଦାର ହେବେ, ଏହା ତାଙ୍କର ବହୁ ହିତାକାଙ୍‌କ୍ଷୀ ବନ୍ଧୁ ମଧ୍ୟ ଚାହୁଁ ନଥିଲେ । ତେବେ ଅବହେଳିତ ଓଡ଼ିଶାର ଜଣେ ମନ୍ତ୍ରୀ ହେବେ, ଏହା କେହି କେବେ କଳ୍ପନା କରି ନଥିଲେ । ସେତେବେଳର ଓଡ଼ିଆମାନଙ୍କର ଅଧୋଗତି ଓ ଶାସନ କ୍ଷେତ୍ରରେ ଅସହାୟ ଅବସ୍ଥା ଦୃଷ୍ଟିରୁ ବହୁ ଓଡ଼ିଆ ଭାବୁଥିଲେ ଯେ ଜଣେ ଓଡ଼ିଆ ମନ୍ତ୍ରୀରୂପେ ନିଯୁକ୍ତ ହେବାଦ୍ୱାରା ଜାତିର ଅସ୍ତିତ୍ୱକୁ ସ୍ୱୀକୃତ କରାଗଲା ବୋଲି ଭାବିବାକୁ ହେବ । ପୁଣି ଓଡ଼ିଆଙ୍କ ଭିତରେ ମନ୍ତ୍ରୀ ହେବା ଭଳି କେହି ଯୋଗ୍ୟ ବ୍ୟକ୍ତି ନାହାନ୍ତି ବୋଲି ବାହାର ଲୋକଙ୍କ ମନରେ ଯେଉଁ ଧାରଣା ଥିଲା, ତାହା ଏତେ ଦିନକେ ଦୂର ହେଲା । ଓଡ଼ିଆ ଲୋକଙ୍କର ଗୌଣ ମନୋଭାବବି ମଧ୍ୟ କେତେକାଂଶରେ ଦୂର ହୋଇଯାଇଥିଲା ।

ମଧୁବାବୁ ଓଡ଼ିଶାର ସର୍ବପ୍ରଥମ ଓଡ଼ିଆ ମନ୍ତ୍ରୀ । ସେ ପ୍ରଥମ ଏମ୍. ଏ., ପ୍ରଥମ ବିଲାତଯାତ୍ରୀ, ପ୍ରଥମ ଏମ୍. ଏ. ବି. ଏଲ୍. ପାଶ୍ କରିଥିବା ଓକିଲ, ପ୍ରଥମ ସି. ଆଇ. ଇ. ଉପାଧିଧାରୀ । ଶିଳ୍ପ କ୍ଷେତ୍ରରେ ମଧ୍ୟ ସେ ପ୍ରଥମ ଯୌଥ କାରବାରର ଉଦ୍‌ଯୋକ୍ତା ଓ ପ୍ରଥମ କମ୍ପାନୀ-ସ୍ଥାପୟିତା । ପୁଣି, ମୃତକଳ୍ପ ଓଡ଼ିଆ ଜାତିର ପିଣ୍ଡରେ ସେ ପ୍ରାଣ ସଞ୍ଚାର କରିଥିଲେ । ଦେଶପାଇଁ ତାଙ୍କର ତ୍ୟାଗ ଅତୁଳନୀୟ । ଦେଶପାଇଁ ସେ ଦାଣ୍ଡର ଭିକାରି ହୋଇଯାଇଥିଲେ । ଏପରି ଜଣେ ଶୀର୍ଷ ଶ୍ରେଣୀର ଦେଶସେବକଙ୍କ ପ୍ରତି କଟୂକ୍ତି ଓ ବ୍ୟଙ୍ଗୋକ୍ତି ଅବାଞ୍ଛନୀୟ ବୋଲି ବହୁ ଚିନ୍ତାଶୀଳ ଲୋକ କହୁଥିଲେ । ମତ ବିରୋଧ ହେଲେ ସମାଲୋଚନା ଅନାବଶ୍ୟକ ନୁହେଁ; ତେବେ ଏହା ମର୍ଯ୍ୟାଦା ସୀମା ଲଙ୍ଘନକରିବା ଉଚିତ

ନୁହେଁ । ଏହି ଦୃଷ୍ଟିରୁ ବିରୁଦ୍ଧ ମତବାଦୀଙ୍କ ଅଯଥା ସମାଲୋଚନାକୁ ବହୁ ଲୋକ ସମର୍ଥନ କରୁ ନଥିଲେ ।

ଏହି ପ୍ରଶ୍ନପତ୍ରକୁ ଲକ୍ଷ୍ୟ କରି "ଉତ୍କଳ ଦୀପିକା" ଲେଖିଥିଲେ—"ଏହି ଆଜ୍ଞାପତ୍ର କାହା ଆଜ୍ଞାରେ ବାହାରିଲା ? ଏ କଥା ମନରେ ଖେଳୁ ଖେଳୁ ପିଲାଦିନର ଗୋଟିଏ ନୀତିକଥା ଗପ ମନେପଡ଼ିଗଲା । ବିଲୁଆ ପହଞ୍ଚିଲା ଅଙ୍ଗୁର ଗଛ ମୂଳେ । ଦେଖିଲା ଲାଲ ଟହଟହ ଅଙ୍ଗୁର ଫଳ ପାଚିଛି । ବିଲୁଆ ପାଟିରୁ ଲାଳ ବୋହିପଡ଼ିଲା । ଫଳ ଖାଇବାକୁ ଗଛ ଉପରକୁ ଉହୁଁକିଲା । ୨।୪ ଉହୁଁକା ମାରି ବିଚରା ଥକିଲା । ଦେଖିଲା, ତା' କପାଳକୁ ଏପରି ଲାଲ ଟହଟହ ପାଚିଲା ଅଙ୍ଗୁର ମିଳିବାର ନୁହେଁ ! କଣ କରିବ ! ବିଚରା ମନକୁ ବୋଧ ଦେବାକୁ କହିଲା, 'ଦୂର୍ କର, ଏହି ଖଟା ଅଙ୍ଗୁରଗୁଡ଼ାକ କିଏ ଖାଉଛି !' ନୀତିକଥା ଗପ ତେଣିକି ଯାଉ ।

"ମଧୁବାବୁ ତ ନନ୍-କୋଅପରେସନ୍ (ଅସହଯୋଗ) ବାଇଦ ଆଦ୍ୟରୁ ବଜାଇ ନାହାନ୍ତି । ସେ ତ ଜାଣିଶୁଣି ମ୍ୟୁନିସିପାଲିଟି ତରଫରୁ ନିର୍ବାଚନ ଲଢ଼ିଲେ ଓ ଅନ୍ୟାନ୍ୟ ପ୍ରାର୍ଥୀମାନଙ୍କ ତୁଳନାରେ ଖୁବ୍ ବେଶି ଭୋଟପାଇ ଷ୍ଟାନିଙ୍ଗ୍ କାଉନ୍‌ସିଲ୍‌ରେ ମେମ୍ବର ନିର୍ବାଚିତ ହେଲେ । ସେତେବେଳେ ତ ମଧୁବାବୁ କାହିଁକି ମେମ୍ବର ହେବାକୁ ଚେଷ୍ଟା-କଲେ ବା ହେଲେ, ଏପରି କଥା କାହା ମୁହଁରୁ ଶୁଣାଯାଉ ନଥିଲା । କାଲି ତୁମେ ସମସ୍ତେ ମଧୁବାବୁଙ୍କୁ ଓଡ଼ିଶାର ବରପୁତ୍ର ବୋଲି ଧେଣ୍ଡ଼ୁରା ପିଟୁଥିଲ । ନୂତନ ଶାସନ ପଦ୍ଧତିର ଆଇନରେ ମନ୍ତ୍ରୀମାନଙ୍କୁ ଲାଟମାନେ ନିର୍ବାଚିତ ସଭ୍ୟ ମଧ୍ୟରୁ ମନୋନୀତ କରିନେବେ, ଏପରି ତ ଆଇନ ହେଲା । ନୂତନ ଲାଟ ଓଡ଼ିଶାର ବରପୁତ୍ରଙ୍କୁ ମନୋନୀତ କଲେ— ଏଥିରେ ମଧୁବାବୁଙ୍କର କି ପାପ ବା ମହାପାପ ହେଲା ? ପ୍ରଜାଙ୍କ ପଇସା ନେଇ ରାଜାଙ୍କର ବା ଗଭର୍ଣ୍ଣମେଣ୍ଟଙ୍କର ପାଣ୍ଠି ହୁଏ—କିଏ ନ ଜାଣେ ? ବାଦଶାହି ଅମଳରେ ବି ଏହା ହେଉଥିଲା, ସମସ୍ତେ ଜାଣୁଥିଲେ । ଏବେ ସେ ବିଷୟ ଆମ୍ଭେମାନେ ସ୍ପଷ୍ଟକରି କହୁଅଛେ— ଏତିକି ଭିନ୍ନ । ମନେକର ମଧୁବାବୁଙ୍କୁ ମନ୍ତ୍ରୀ ନକରି ଆଉଜଣେ କେହି ଓଡ଼ିଆକୁ,ବଙ୍ଗାଳୀକୁ ବା ବିହାରୀକୁ ଲାଟ ମନ୍ତ୍ରୀ ମନୋନୀତ କରିଥାନ୍ତେ । ସେ ଯେଉଁ ଷାଠିଏ ହଜାର ଟଙ୍କା ନିଅନ୍ତା ଏହି ଧୋପ୍ପା କଟକୀ ବା ସମ୍ବଲପୁରିଆ ଧୋପ୍ପା ବା ପୁରୀ ଝାଡ଼କସ୍ତା ବା ବାଲେଶ୍ୱରୀ ଜରୁଆ ଭାଇମାନଙ୍କର ପଇସାରୁ ତ ନିଅନ୍ତା ? ମଧୁବାବୁଙ୍କ ପକେଟକୁ ଷାଠିଏ ହଜାରଟା ଗଲା ବୋଲି ଏଡ଼େ ଦୁଃଖ କିଆଁ ? ଏତେ ଶୋଚନା କିଆଁ ?

"ମହାତ୍ମା ଗାନ୍ଧି ଯେ ନନ୍-କୋଅପରେସନ୍ ବ୍ରତ ଧାରଣ କରିଅଛନ୍ତି, ସେ ବଡ଼ କଠୋର ବ୍ରତ । ହୋ ହୋ, ଶୋ ଶୋ ହାତତାଳିମରା ପିଲାଳିଆ ବ୍ରତ ନୁହେଁ । ତାଙ୍କର କଠୋର ବ୍ରତ ପାଳିବାକୁ ସେହି ଏକା ଉପଯୁକ୍ତ । ଏପରି କେତେଜଣ ଲୋକ ଆମ ଭିତରୁ ବାହାରିବେ ? ଗୋଟିଏ ନନ୍-କୋଅପରେସନ୍ ବତାସ ଏକ୍ଷଣି ବହୁଛି ବୋଲି ସମସ୍ତେ

ସେଥିରେ ଉଡ଼ିବାକୁ ବସିଛନ୍ତି । ତୁମେ ଆମେ ତ ନଗଣ୍ୟ, କୃଅବେଙ୍ଗ । ମହାତ୍ମା ଗାନ୍ଧିଙ୍କ ପରି ଯେଉଁମାନେ ମୁଖିଆ ମୁଖିଆ ଲୋକ ଆଜିକାଲି ବାହାରିଛନ୍ତି, ସେମାନେ ତ କହୁଛନ୍ତି, ଏ କଠୋର ବ୍ରତ କାର୍ଯ୍ୟରେ ପରିଣତ ହେବା ସହଜ ନୁହେଁ । ସେ କଥା ଯାଉ ।

"ଯେଉଁ ମଧୁବାବୁଙ୍କୁ ତୁମେମାନେ G.O.M. of Orissa (Grand Old Man of Orissa) ବୋଲି ମୁଣ୍ଡରେ ମୁଣ୍ଡେଇଥିଲ, ତାଙ୍କୁ ତ ଲାଟ ମନ୍ତ୍ରୀ କରିନେଲେ । ତାଙ୍କଠାରୁ ଯେ ଉପକାର ପାଇବାର ଆଶା କରୁଛେଁ, ସେ ଯଦ୍ୟପି ସେପରି କିଛି କାର୍ଯ୍ୟ ନ କରନ୍ତି, କିମ୍ବା ଜନସାଧାରଣଙ୍କ ଅନିଷ୍ଟକାରୀ କୌଣସି କାର୍ଯ୍ୟ ସରକାର କଲେ ସେ ୬୦, ୦୦୦ ଲୋଭରେ ଯଦି ଟିକିଏ ଆପତ୍ତି ନ କରି କାର୍ଯ୍ୟରୁ ଇସ୍ତଫା ନ ଦେଇ ଚୁପ୍ ହୋଇ ରହନ୍ତି, ସେତେବେଳେ ତାଙ୍କ ନାମରେ ଚଲାପତ୍ର ବା ଆଙ୍କପତ୍ର ଚଳାଇଲେ ବା ଅନ୍ୟ ପ୍ରକାରେ ତାଙ୍କର ଅମନୁଷ୍ୟତା ପ୍ରକାଶ କଲେ ଯୁକ୍ତିସଙ୍ଗତ ଓ ସୁନ୍ଦର ଦିଶିବ । ନଈ ନ ଦେଖୁଣୁ ଲଙ୍ଗଳା କାହିଁକି ?

"ଏ ସଂସାରରେ ଚାକର କିଏ ନୁହେଁ ? ଖୋଦ୍ ରାଜା ସମ୍ରାଟ୍‌ଙ୍କଠାରୁ ମେହେନ୍ତର ପର୍ଯ୍ୟନ୍ତ ସମସ୍ତେ ଚାକର । ରାଜା ପ୍ରଜାଙ୍କ ଚାକର । ଯେ ଓକିଲ ମୋକ୍ତାରି କରୁଛି, ସେ ମହକିଲର ଚାକର । ଯେ ଡାକ୍ତରି କରୁଛି, ସେ ରୋଗୀର ଚାକର । ଯେ ମୂଲିଆଗିରି କରୁଛି, ସେ ମୁନିବର ଚାକର । ଯେ ଦୋକାନଦାରୀ କରୁଛି, ସେ ଗ୍ରାହକର ଚାକର । ରୁଷିଆରେ ଯେଉଁ ବଲସେଭିକ୍ ଦଳ ବାହାରି ସଂସାରର ଲୋକମାନଙ୍କୁ ଏକ କରିଦେବାକୁ ବସିଅଛନ୍ତି, ସେମାନେ ସମାଜର ଚାକର । ଏ ଚାକର-ମୁନିବ ଭାବ ସଂସାରରେ ସର୍ବତ୍ର ବିଦ୍ୟମାନ । ସଂସାର ଥିବାଯାକ ଏହି ଭାବ ଥିବ । ମହାତ୍ମା ଗାନ୍ଧି କ ଉପଦେଶ ଦେଉଅଛନ୍ତି ? ସମାଜର ଚାକର ହୁଅ, ଦେଶର ଚାକର ହୁଅ, ଆତ୍ମ ତ୍ୟାଗକର, ତେବେ ସମାଜକୁ ଓଲଟାଇପାର । କେବଳ ହୋ ହୋ, ଶୋ ଶୋ କରି ତାଳି ମାରିଲେ କୌଣସି ଫଳ ନାହିଁ, ଶେଷରେ ଲୋକହସା ହେବ ।" (ଉ.ଦୀ. ୧୫।୧।୧୯୨୧)

**ଅସହଯୋଗ ନିଷ୍ଫଳ ହେବ** : ପାଟଣାରୁ କଟକକୁ ମନ୍ତ୍ରୀ ମାନ୍ୟବର ମଧୁସୂଦନ ଦାସ ଅପ୍ରେଲ ୧୯୨୧ରେ ଆସିଥିଲେ । ସେ ମନ୍ତ୍ରୀ କାଏଦାରେ ଚଳୁ ନଥିଲେ । ମନ୍ତ୍ରୀ ହେବା ପୂର୍ବରୁ ସେ ଯେଉଁ ପୋଷାକ ଓ ଯେଉଁ ଢଙ୍ଗରେ ଚଳୁଥିଲେ, ଏବେ ମଧ୍ୟ ସେହିପରି ଭାବରେ ଚଳୁଥିଲେ । ବହୁ ଲୋକ ତାଙ୍କୁ ଦେଖାକରୁଥିଲେ । ମନ୍ତ୍ରୀ ମଧୁବାବୁଙ୍କୁ ଅସହଯୋଗ ନୀତି ସମ୍ବନ୍ଧରେ ନାନା ଲୋକେ ନାନା ପ୍ରଶ୍ନ କରୁଥିଲେ । ମଧୁବାବୁ ମତ ବ୍ୟକ୍ତ କରୁଥିଲେ, "ଅସହଯୋଗଦ୍ୱାରା କୌଣସି ଫଳ ହେବନାହିଁ ଏବଂ ଏହି କାରଣରୁ ସରକାର ଏ ସମ୍ବନ୍ଧରେ କୌଣସି ପ୍ରତିବନ୍ଧକ ବ୍ୟବସ୍ଥା କରିନାହାନ୍ତି । ସରକାରଙ୍କର ବିଶ୍ୱାସ ଯେ, ଲୋକେ ଏପରି ନାଚ ନାଚ ଥକପଡ଼ି ଆପେ ଆପେ ନିରସ୍ତ ହେବେ ।"

ମଧୁବାବୁ ମନ୍ତ୍ରୀ ହେବା ପରେ ପରେ ଓଡ଼ିଶାର ବିଭିନ୍ନ ଜିଲ୍ଲା ପରିଦର୍ଶନରେ ବାହାରିଥିଲେ । ଖ୍ରୀଃ ୧୯୨୧ ଅପ୍ରେଲରେ କଟକ ଓ ପୁରୀ ପରିଦର୍ଶନ କରିଥିଲେ । ପୁରୀ ଗସ୍ତବେଳେ ମଧୁବାବୁ ଅସହଯୋଗ ବିରୁଦ୍ଧରେ ପ୍ରଚାର କରୁଥିଲେ ବୋଲି 'ସମାଜ' ଅଭିଯୋଗ କରି ଲେଖିଥିଲେ, "ମନ୍ତ୍ରୀ ମଧୁବାବୁ ବର୍ତ୍ତମାନ ପୁରୀରେ ଅସହଯୋଗ ବିରୁଦ୍ଧରେ ଗୁପ୍ତ ପ୍ରଚାର ଆରମ୍ଭ କରିଛନ୍ତି । ସେ ଇତି ମଧ୍ୟରେ ପୁରୀର କେତେକ ସେବକଙ୍କ ପାଖକୁ ଯାଇ ଅସହଯୋଗ ନ କରିବାପାଇଁ ପରାମର୍ଶ ଦେଇଥିଲେ । ମାତ୍ର କେହି କେହି ଜବାବ ଦେଇଥିଲେ ଯେ, 'ଆପଣ ତ ଅସହଯୋଗର ପ୍ରଥମ କର୍ତ୍ତା । ଆପଣ ଉତ୍କଳ ସମ୍ମିଳନୀ କରି ହାତକଟା ସୂତାର ଲୁଗା ପିନ୍ଧା, ଚରଖା, ଦେଶୀଲୁଗା ବ୍ୟବହାର, ମାଦକଦ୍ରବ୍ୟ ସେବନ-ନିଷେଧ ଓ ପଞ୍ଚାୟତ ବିଚାର କଥା ପ୍ରଚାର କରୁଥିଲେ । ଲୋକମାନଙ୍କୁ ଏକ ମେଳ କରିବାଲାଗି 'ପ୍ରଜାପ୍ରତିନିଧି ସଭା' 'ସମ୍ମିଳନୀ' ପ୍ରଭୃତି ସୃଷ୍ଟି କରିଥିଲେ । ଆମ୍ଭମାନଙ୍କୁ ସେହି ଗଛରେ ଚଢ଼ାଇଦେଇ, ଆମ୍ଭେମାନେ ଫଳ ତୋଳିବାକୁ ହାତ ବଢ଼ାଇବା ବେଳକୁ ଆପଣ ଅନ୍ୟ ଗଛରେ ଚଢ଼ି ଆମ୍ଭମାନଙ୍କୁ ଓହ୍ଲାଇ ଆସିବାକୁ ଡାକୁଛନ୍ତି । ଆମ୍ଭେମାନେ ଏତେବେଳେ କଣ କରିବୁ ଏବଂ ଆପଣଙ୍କ କେଉଁ କଥାକୁ ବିଶ୍ୱାସ କରିବୁଁ ?' ଆମ୍ଭେମାନେ ଆଶାକରୁ, ଏ ଉତ୍ତରରେ ମଧୁବାବୁ ଠିକଏ ଥଣ୍ଡା ପଡ଼ିଥିବେ" । ("ମଧୁବାବୁଙ୍କ ଗୋଇନ୍ଦାଗିରି"—ସମାଜ—୧୬ । ୪ । ୨୧)

'ସମାଜ' ସେତେବେଳେ ଅସହଯୋଗ ଆନ୍ଦୋଳନର ମୁଖପତ୍ର ଥିଲା କହିଲେ ଚଳେ । ଉତ୍କଳରେ ଅସହଯୋଗ ଆନ୍ଦୋଳନର ବ୍ୟାପକ ପ୍ରଚାର ଓ ପ୍ରୟୋଗ ପାଇଁ 'ସମାଜ'ର ଦାନ ଅତୁଳନୀୟ । 'ସମାଜ', 'ଉତ୍କଳ ଦୀପିକା' ଓ 'ଆଶା'ର ମତାମତକୁ ସରକାର ଓ ଜନସାଧାରଣ ମାନ୍ୟ କରୁଥିଲେ । 'ସମାଜ' ସହିତ ପଣ୍ଡିତ ଗୋପବନ୍ଧୁ ସମ୍ପୃକ୍ତ ଥିବାରୁ ଏହାର ଯଥେଷ୍ଟ ପ୍ରତିପତ୍ତି ଥିଲା । ଏହାର ମତକୁ ଜନସାଧାରଣ ଅଭ୍ରାନ୍ତ ବୋଲି ମନେ କରୁଥିଲେ । ମଧୁବାବୁଙ୍କ ପ୍ରତି ବ୍ୟକ୍ତିଗତ ଭାବରେ ଗୋପବନ୍ଧୁ ବାବୁଙ୍କର ଓ 'ସମାଜ'ର ଯଥେଷ୍ଟ ସମ୍ମାନ ଥିଲା; କିନ୍ତୁ ବର୍ତ୍ତମାନର ଦେଶ ସଂକ୍ରାନ୍ତ ବିବିଧ ସମସ୍ୟା ସମ୍ବନ୍ଧରେ ମତଭେଦ ଥିବାରୁ ମନ୍ତ୍ରୀ ମଧୁବାବୁଙ୍କର କେତେକ କାର୍ଯ୍ୟ ଓ କଥାକୁ 'ସମାଜ' ସମର୍ଥନ କରିପାରୁନଥିଲା । ସମ୍ବାଦର ଶିରୋନାମାଟି ଯେ ବିଦ୍ରୂପସୂଚକ ଏଥିରେ ସନ୍ଦେହ ନାହିଁ ।

"ମଧୁବାବୁଙ୍କ ଗୋଇନ୍ଦାଗିରି" ଶିରୋନାମାଟି ବହୁ ଶିକ୍ଷିତ ଲୋକଙ୍କଦ୍ୱାରା ସମାଲୋଚିତ ହୋଇଥିଲା । ଓଡ଼ିଶାରେ ମଧୁବାବୁ, ଗୋପବନ୍ଧୁ ଓ 'ସମାଜ'—ଏ ତିନିଙ୍କର ମର୍ଯ୍ୟାଦା ଅଦ୍ୱିତୀୟ ଥିଲା । ଏ ଶିରୋନାମା ମଧୁବାବୁଙ୍କ ପ୍ରତି ପ୍ରୟୋଗ କରିବା ଅସୁନ୍ଦର ହେଲା । ଗୋପବନ୍ଧୁ ବାବୁଙ୍କ 'ସମାଜ'ରେ ଏହା ପ୍ରକାଶ ପାଇଥିବାରୁ ଗୋପବନ୍ଧୁ ବାବୁ ଓ 'ସମାଜ'ର ମର୍ଯ୍ୟାଦାରେ ହାନି ଘଟିଲା ବୋଲି ବହୁ ବିଶିଷ୍ଟ ବ୍ୟକ୍ତି କହୁଥିଲେ ।

'ସମାଜ' ୧୩।୪।୨୧ରେ ନଜର 'ଅସାବଧାନତା' ବୁଝିପାରି ଦୁଃଖିତ ହୋଇଥିଲେ ଏବଂ 'ସମ୍ପାଦକୀୟ ଅସାବଧାନତା' ଶିରୋନାମାରେ ଲେଖିଥିଲେ—"ଅସହଯୋଗ ସମ୍ବନ୍ଧେ ମନ୍ତ୍ରୀ ମାନ୍ୟବର ମଧୁବାବୁଙ୍କର ପୁରୀ ପଣ୍ଡାମାନଙ୍କ ସଙ୍ଗେ ଯେ କଥୋପକଥନ ହୋଇଥିଲା, ତହିଁର ସାରମର୍ମ ଗଲଥର ସମାଜରେ ବାହାରିଥିଲା; ମାତ୍ର ସେ ପ୍ରସଙ୍ଗରେ ଯେ ଶିରୋନାମା ଦିଆଯାଇଥିଲା, ତାହା ସଙ୍ଗତ ଓ ରୁଚିସମ୍ପନ୍ନ ନଥିବାର ଆମ୍ଭେମାନେ ସ୍ୱୀକାର କରୁଅଛୁ ଓ ସେଥିଲାଗି ଦୁଃଖ ପ୍ରକାଶ କରୁଅଛୁଁ । ଆମ୍ଭମାନଙ୍କ ପତ୍ରପ୍ରେରକ ଯେ ଶିରୋନାମା ଦେଇଥିଲେ, ଆମ୍ଭମାନଙ୍କ ରୁଚି ଏବଂ ସମାଜ ନୀତିର ତାହା ଅନୁକୂଳ ନୁହେଁ । କିନ୍ତୁ କାର୍ଯ୍ୟରେ ତରତର ହୋଇ ତହିଁର ପରିବର୍ତ୍ତନ କରିବାକୁ ଆମ୍ଭମାନଙ୍କର ନଜର ପଡ଼ିପାରି ନଥିଲା । ସେ ଯାହାହେଉ, ମଧୁବାବୁ ଦ୍ୱାରେ ଦ୍ୱାରେ ବର୍ତ୍ତମାନ ସହଯୋଗ ଶିକ୍ଷା ପ୍ରଚାରର ଉଦ୍ୟମ କରୁଛନ୍ତି । ତାଙ୍କର ସହଯୋଗରେ ବିଶ୍ୱାସ ଥିଲେ ସେ ତାହା କରିପାରନ୍ତି; ମାତ୍ର ତାଙ୍କ କଥାଦ୍ୱାରା ଚିରଦିନ ଲୋକଙ୍କ ମନରେ ସେ ଯେଉଁ ଧାରଣା ଦେଇଆସିଅଛନ୍ତି, ଲୋକେ ତାହା ଭୁଲିବେ କିପରି ? ଆଜି ମଧୁବାବୁଙ୍କର ନୂଆ ଢଙ୍ଗରଙ୍ଗ ଦେଖି ପୁରୀ ପଣ୍ଡାଏ ଯେବେ କହନ୍ତି କି 'ଭିନ୍ନେ ଆଜ ତୋ ରୀତରେ' ସେଥିରେ ଦୋଷ ଦେବାର କିଏ ଅଛି ?"

**ସ୍ୱାୟତ୍ତଶାସନ ଓ ସଂଯମତା :** ଖ୍ରୀ: ୧୯୨୧ ଏପ୍ରେଲ ୭୩ ତାରିଖରେ କଟକରେ ମାନନୀୟ ମି: ଦାସ ସଙ୍ଗୀ ମନ୍ତ୍ରୀ ଖାଁବାହାଦୁର ଫକରୁଦ୍ଦିନ୍‌ଙ୍କ ସ୍ନେହସମ୍ଭାଷଣ ଉପଲକ୍ଷେ ଏକ ଉଦ୍ୟାନ ମିଳନ ନିଜ କୋଠି ହତା ଭିତରେ କରିଥିଲେ । ସହରର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ସେଠାରେ ଉପସ୍ଥିତ ହୋଇଥିଲେ ।

**ସ୍ୱାୟତ୍ତଶାସନ ଆଇନ୍‌ର ସଂଶୋଧନର ସୂଚନା :** ୨୬ ତାରିଖ ଦିନ ମଧୁବାବୁ କଟକ ମ୍ୟୁନିସିପାଲିଟି ସଭ୍ୟମାନଙ୍କୁ ନିମନ୍ତ୍ରଣ କରି ଏକ ସଭା କରାଇଥିଲେ । ଏହି ସଭାରେ "ସ୍ୱରାଜ୍ୟ ଶାସନ", "ଆତ୍ମଶାସନ" ଓ "ଦାୟିତ୍ୱପୂର୍ଣ୍ଣ ଶାସନ" ସମ୍ବନ୍ଧରେ ସେ ଏକ ଶିକ୍ଷାପୂର୍ଣ୍ଣ ବକ୍ତୃତା ଦେଇଥିଲେ । ସରକାର ମ୍ୟୁନିସିପାଲିଟି ଆଇନର ପରିବର୍ତ୍ତନ କରିବାପାଇଁ ମନସ୍ଥ କରିଥିବାରୁ ସେ ମ୍ୟୁନିସିପାଲିଟି କମିଶନରମାନଙ୍କଠାରୁ ସେହି ସମ୍ପର୍କରେ ପରାମର୍ଶ ଲୋଡ଼ିଥିଲେ ।

ମଧୁବାବୁ ସଭାରେ ମ୍ୟୁନିସିପାଲିଟିର ଉନ୍ନତି ସମ୍ବନ୍ଧରେ କହିଥିଲେ, "ଆତ୍ମଶାସନ କ୍ଷମତା ପାଇବା ପୂର୍ବରୁ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ସଂଯମତା ଶିକ୍ଷା କରିବା ଉଚିତ । ତାହା ନ କଲେ ଶିଶୁ ହାତରେ ଖଣ୍ଡାଟିଏ ଦେଲେ ସେ ଯେପରି ତାହା ବ୍ୟବହାର କରି ନଜାଣି ସେଥିରେ ଯାହା ତାହା କାଟିପକାଏ, ଜନସାଧାରଣ ମଧ୍ୟ ସଂଯମତା ଅଭାବରେ ସେହିପରି କ୍ଷମତାର ଅପବ୍ୟବହାର କରିବାର ଆଶଙ୍କା ରହିଛି × × ।" କଟକ ମ୍ୟୁନିସିପାଲିଟିର ଉନ୍ନତି ଲକ୍ଷ୍ୟରେ ଓକିଲ ସର୍ବଶ୍ରୀ କଳ୍ପତରୁ ଦାସ, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ସୁରେଶଚନ୍ଦ୍ର ଚକ୍ରବର୍ତ୍ତୀ, ପ୍ରମଥନାଥ ରାଏ, ଦୁର୍ଗାଚରଣ ଦାସଗୁପ୍ତ, ଶରତ୍‌ଚନ୍ଦ୍ର ପାଲ,

ମୌଲଭୀ ଅବଦୁଲ ମଜିଦ୍, ମି. ଗ୍ରଣ୍ଟି ପ୍ରଭୃତି ନୂଆ ଓ ପୁରୁଣା ମ୍ୟୁନିସିପାଲିଟି ସଭ୍ୟମାନେ ଭାଷଣ ଦେଇ କଟକ ମ୍ୟୁନିସିପାଲିଟିର ବିଭିନ୍ନ ଅଭାବ ଅସୁବିଧା ସମ୍ବନ୍ଧରେ ଆଲୋଚନା କରିଥିଲେ । ଏହି ସଭାରେ ମ୍ୟୁନିସିପାଲିଟିର ନୂଆ ଓ ପୁରୁଣା ପ୍ରାୟ ସବୁ ସଭ୍ୟ ଉପସ୍ଥିତ ଥିଲେ । ସଭା ଶେଷରେ ମନ୍ତ୍ରୀ ମଧୁବାବୁ ଯେଉଁ ଉତ୍ତର ଦେଲେ, ସେଥିରେ ମ୍ୟୁନିସିପାଲିଟିର ଅଭାବ ଅସୁବିଧା ଦୂରହେବା ବିଷୟରେ ସ୍ପଷ୍ଟ ଆଶ୍ୱାସନା ବାଣୀ ନଥିବାରୁ କେହି କେହି ଦୁଃଖିତ ହୋଇଥିଲେ । ଏହି ସମ୍ପର୍କରେ "ବୁଢ଼ୀମା'ର ମନକଥା" ଶିରୋନାମାରେ ଜଣେ କେହି 'ଉତ୍କଳ ଦୀପିକା'ରେ ଏହିପରି ଲେଖିଥିଲେ—

"ଆରେ ପୁଅ, ତୁମ ଭିତରେ ମଧୁବାବୁ ( Honourable Mr. M. S. Das, C.I.E. ) ସବୁରିଠାରୁ ବଡ଼ ପାଠୁଆ, ବୟସରେ ମଧ୍ୟ ବୁଢ଼ା । ତାଙ୍କୁ ଗଭର୍ଣ୍ଣମେଣ୍ଟ ମନ୍ତ୍ରୀ କରିଥିବା ଦେଖି ମୁଁ ବଡ଼ ଖୁସି ହୋଇଛି । ମୁଁ ମନେ ମନେ ଭାବୁଛି, ସେ ଯେମନ୍ତ କାହାକୁ ଡର ଭୟ ନରଖି ସବୁ ବିଷୟରେ ହକ୍‌କଥା କହିବାକୁ ଅଣ୍ଟାଭିଡ଼ି ବାହାରିଥାଆନ୍ତି, ତୁମମାନଙ୍କ ଦୁଃଖ ସୁଖ ସରକାରରେ ଜଣାଇ ସବୁକଥା ବୁଝିବେ । ସେ ତ ଅଳ୍ପଦିନ ହେଲା ମନ୍ତ୍ରୀଶାଢ଼ୀ ବାନ୍ଧିଛି, କଣ କରିବ ଜଣାଯାଉ ନାହିଁ । ହେଲେହେଁ, ଗୋପେଇଁଖିଆ ବଳଦ ମୁହଁରୁ ଜଣାପଡ଼େ । ସେଦିନ ଟାଉନ୍ ଚଉପାଢ଼ୀରେ ଆତ୍ମଶାସନର ଉନ୍ନତି କରିବାପାଇଁ ସେ ନୂଆ ପୁରୁଣା କମିଶନରମାନଙ୍କୁ ଡକାଇ ନେଇ ଯେଉଁ ଦୁଇଗୁରି ପଦ ଉପଦେଶ କଥା କହିଲେ, ସେଥିରୁ ତମେମାନେ କିଛି ଶିଖିଲ କି ?

"ସେ ତ ପ୍ରଥମେ ଆପଣାକୁ ମନ୍ତ୍ରୀ ବୋଲି ନ କହି ଲୋକଙ୍କର ଚାକର ବୋଲି କହି ସମସ୍ତଙ୍କ ମନକୁ ବେଶ୍ ତରଳେଇ ଦେଲେ; କିନ୍ତୁ ଏ କଅଁଳ କଥା ପଛେ ପଛେ ସମସ୍ତଙ୍କୁ ପିଲାତଳେ ପକେଇ ଦେଇ ମୁରବିଆନା ଢଙ୍ଗରେ ଉପଦେଶ ଦେଲେ କି 'ପିଲାଟିଏ ହାତରେ ଖଣ୍ଡାଟିଏ ଦେଲେ ସେ ଭଲମନ୍ଦ କିଛି ନବୁଝି ଯାହାଆଗରେ ଦେଖିବ ତାହା କାଟି-ପକେଇବ । ସେହିପରି ତେମେ ପିଲାଗୁଡ଼ାକ 'ସ୍ୱରାଜ୍ୟ' 'ସ୍ୱରାଜ୍ୟ' ପାଟି କରୁଛ, ସ୍ୱରାଜ୍ୟ ଖଣ୍ଡା ପାଇଲେ କଣ ଚଳେଇ ପାରିବ ? ବଡ଼ ହୁଅ, ବୁଦ୍ଧି ଶୁଦ୍ଧି ହେଉ; ଏକ୍ଷଣି ଇଂରେଜ ହାକିମ-ମାନଙ୍କଠାରୁ ସ୍ୱରାଜ୍ୟ କିପରି ଚଳେଇ ଜାଣିବ ଶିଖ ।' ଇଂରେଜମାନେ ଏ ଦେଶ ପ୍ରଥମେ ଅଧିକାର କଲାଦିନୁ ଯେଉଁ 'ବୋଲି' ଧରିଥିଲେ, ଏ ତ ସେହି 'ବୋଲି' । ଇଂରେଜ ହାକିମମାନଙ୍କ ମୁହଁରୁ ଦେହେ ଦେଢ଼ଶହ ବରଷ ହେଲା ଏହି ବୋଲି ଶୁଣିଆସୁଥିଲ । ଏବେ ତମର ଭିତରୁ ଯେ ବଡ଼ ପାଠୁଆ ଓ ବୁଢ଼ା ସେ ମନ୍ତ୍ରୀ ହୋଇ ମଧ୍ୟ ସେହି ବୋଲି ଧଇଲେ । ମଧୁବାବୁ ହୁଅନ୍ତୁ ବା ଆଉ କେହି ହୁଅନ୍ତୁ, ହାକିମ ଗାଦିରେ ବସିଲେ ସମସ୍ତେ ବିରକ୍ତି ( bureaucracy ) ପାଲଟିଯାଇ ଅଖାଦ୍ୟ ହୋଇଯାଆନ୍ତି । କେହି ସୁଖାଦ୍ୟ ଡିମିରିକାସି ( democracy ) ହେବା ଦେଖାଯାଏ ନାହିଁ × × ।"

( ଉତ୍କଳ ଦୀପିକା, ୧୦ । ୫ । ୨୧ )

ଏହି ବ୍ୟଙ୍ଗ ଗଳ୍ପରେ ପତ୍ର ଲେଖକ 'ମନ୍ତ୍ରୀ ମଧୁବାବୁ' ଓ 'ବେସରକାରୀ ବ୍ୟକ୍ତି ମଧୁବାବୁ' ଭିତରେ ବର୍ତ୍ତମାନ ଦେଖାଦେଇଥିବା ପ୍ରଭେଦକୁ ଅତି ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି । ପ୍ରକୃତରେ ଅନେକ ଲୋକଙ୍କ ମନରେ ଏହି ଆଶଙ୍କା ହୋଇଥିଲା । ତେବେ ମଧୁବାବୁ ଯାହା ଉଚିତ ମନେକରିଛନ୍ତି ତାହା କେବେ ଲୁଚାଇ ନାହାନ୍ତି; ନିଜର ମତକୁ ସେ ନିର୍ଭୀକଭାବରେ ବ୍ୟକ୍ତ କରିଛନ୍ତି । ତାଙ୍କର ଅଳ୍ପ ସମୟର ମନ୍ତ୍ରିତ୍ୱ କାଳରେ ସେ ନିଜେ ମନ୍ତ୍ରୀ ଥାଇ ବିଦେଶୀ ସରକାରଙ୍କୁ ଯେପରି ନିର୍ଭୀକ ସମାଲୋଚନା କରିଛନ୍ତି ସେଥିରୁ ସେ ଏହି ମନ୍ତ୍ରୀଦାୟିତ୍ୱ ପରୀକ୍ଷା ସ୍ୱରୂପ ନେଇଥିବା ସ୍ପଷ୍ଟ ହେଉଛି ।

**ଜିଲାବୋର୍ଡମାନଙ୍କର ଅନ୍ତଃସାରଶୂନ୍ୟ ସ୍ୱାଧୀନତା** ବିହାର - ଓଡ଼ିଶା ପ୍ରଦେଶରେ କେତେକ ଜିଲ୍ଲାରେ ଖ୍ରୀ: ୧୯୨୧ ରେ ହଇଜା ଓ ଅନ୍ୟାନ୍ୟ ସଂକ୍ରାମକ ରୋଗ ବ୍ୟାପିଥିଲା । ସେହି ଜିଲ୍ଲା ଲୋକମାନଙ୍କର ଦୁଃଖର ଆଶୁ ପ୍ରତିକାରପାଇଁ "ଭଡ଼ାଘର-ମାନଙ୍କରେ ଏଲୋପାଥିକ ଡିସ୍‌ପେନ୍‌ସାରିମାନ ଖୋଲିବାପାଇଁ ଆଦେଶ ଦିଆଯାଉ" ବୋଲି ଜଣେ ବେସରକାରୀ ସଭ୍ୟ ବିହାର-ଓଡ଼ିଶା ବ୍ୟବସ୍ଥା ସଭାରେ ପ୍ରସ୍ତାବ ଆଗତ କରିଥିଲେ । ମନ୍ତ୍ରୀ ମାନ୍ୟବର ମି: ଦାସ ଏହି ପ୍ରସ୍ତାବକୁ ବିରୋଧ କରିଥିଲେ । ସେ କାରଣ ଦର୍ଶାଇ କହିଥିଲେ, "ଜିଲ୍ଲାବୋର୍ଡମାନଙ୍କୁ ଆଦେଶ ଦିଆଯାଉ —ଏହି ପଦଟି ଆଇନସଙ୍ଗତ ନୁହେଁ । ଏପରି ଆଦେଶ ଦେବାଦ୍ୱାରା ଜିଲ୍ଲାବୋର୍ଡମାନଙ୍କର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରାଯିବ ।" ମି: ଦାସଙ୍କର ଏହି ଯୁକ୍ତିକୁ ସର୍ବସାଧାରଣ ଗ୍ରହଣ କରିନଥିଲେ । ପ୍ରକୃତପକ୍ଷେ, ଜିଲ୍ଲାବୋର୍ଡର ସ୍ୱାଧୀନତା ବୋଲି କିଛି ନଥିଲା । ପ୍ରତ୍ୟେକ କାର୍ଯ୍ୟ ଓଡ଼ିଶା ଡିଭିଜନର କମିଶନରଙ୍କଦ୍ୱାରା ଅନୁମୋଦିତ ହେଉଥିଲା ଏବଂ କମିଶନର ମଧ୍ୟ ଜିଲ୍ଲାବୋର୍ଡ କାର୍ଯ୍ୟରେ ହସ୍ତକ୍ଷେପ କରୁଥିଲେ ।

ମି: ଦାସଙ୍କର ଏ ଉକ୍ତିକୁ ସମାଲୋଚନା କରି "Look at the Picture" ଶୀର୍ଷକ ଇଂରେଜୀ ଲେଖାରେ ବୋମ୍ବେର 'କ୍ରନିକଲ' ( Chronicle ) ସମ୍ବାଦପତ୍ରରେ ଏହି ମର୍ମରେ ମତ ପ୍ରକାଶ ପାଇଥିଲା ।

"ମାନ୍ୟବର ମିଷ୍ଟର୍ ମଧୁସୂଦନ ଦାସ ଓଡ଼ିଶାରେ 'ଉଦାରନୀତି' (Liberalism)ର ଜଣେ ଜାଜ୍ୱଲ୍ୟମାନ ନେତା ଏବଂ ସେ ଲର୍ଡ ସିଂହଙ୍କ ସରକାରରେ ମନ୍ତ୍ରିପଦକୁ ଉନ୍ନୀତ ହୋଇଅଛନ୍ତି । ସରକାରୀ ଶାସନ କଳର ଅଂଶରୂପେ ଏହି ମନ୍ତ୍ରୀ ଆଙ୍ଗ୍ଲୋ-ଭାରତୀୟ ଚାକରିଆଙ୍କ ନିଜସ୍ୱ ବିଶିଷ୍ଟ ଗୁଣ ଆତ୍ମଦକ୍ଷତାକୁ ବର୍ତ୍ତମାନ ଅନୁକରଣ କରିସାରିଛନ୍ତି । ମି: ଦାସ ଏ ବିଷୟରେ ବହିର୍ଭୂତ ନୁହନ୍ତି । ଗତ ମଙ୍ଗଳବାର ଦିନ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ସେ ତାଙ୍କ ମନୋଭାବକୁ ପ୍ରକାଶ କରିଛନ୍ତି । ଜଣେ ମାନ୍ୟବର ସଭ୍ୟ ପ୍ରସ୍ତାବକଲେ ଯେ ଜରୁରୀ ଆବଶ୍ୟକ ହେବା ସ୍ଥାନମାନଙ୍କରେ ଜିଲ୍ଲାବୋର୍ଡମାନେ ପକ୍‌କା ଘର ନଥିବା ସ୍ଥଳେ ମାଗଣାରେ ମିଳିଲେ ଅସ୍ଥାୟୀ ଘର ନେଇ, ବା ଭଡ଼ାକୁ ଘର

ନେଇ, ସେଠାରେ ଦାତବ୍ୟ ଚିକିତ୍ସାଳୟ ଖୋଲିବାକୁ ସରକାର ନିର୍ଦ୍ଦେଶ ଦିଅନ୍ତୁ × × । ମାନ୍ୟବର ମନ୍ତ୍ରୀ ଏହି ପ୍ରସ୍ତାବକୁ ବିରୋଧ କରିଥିଲେ । ସେ ଯୁକ୍ତି କରିଥିଲେ ଯେ ତାଙ୍କ ଦେଶର ଲୋକେ ଡିଷ୍ଟ୍ରିକ୍ଟବୋର୍ଡ଼ ଚଳାଇବାକୁ ଅସମର୍ଥ ନୁହନ୍ତି । ଯଦି ମିଃ ଦାସଙ୍କର ଏପରି ବିଶ୍ୱାସ ଅଛି, ତାହାହେଲେ ସେ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରିତ୍ୱରୁ ଇସ୍ତଫା ଦେଇ ଏହି ପ୍ରଦେଶ ଉପରୁ ଏହି ବ୍ୟୟବହୁଳ ବିଭାଗର ଭାର ଲାଘବ କରୁନାହାନ୍ତି କାହିଁକି ?"

**ମନ୍ତ୍ରୀ ମଧୁବାବୁଙ୍କର ପୁରୀ ଜିଲ୍ଲା ଗସ୍ତ** ଖ୍ରୀଃ ୧୯୨୧ ସେପ୍ଟେମ୍ବର ମାସରେ ମାନ୍ୟବର ମିଃ ଦାସ ପୁରୀ ଜିଲ୍ଲା ଗସ୍ତରେ ଯାଇଥିଲେ । ଭୁବନେଶ୍ୱରଠାରୁ ବାହାରି ନିମାପଡ଼ା ପର୍ଯ୍ୟନ୍ତ ଯିବା ରାସ୍ତାରେ ଲୋକମାନେ ବିଭିନ୍ନ ସ୍ଥାନରେ ପକ୍କା ସଡ଼କ ପାଇଁ ଦାବୀ କରି ତାଙ୍କୁ ଆବେଦନ କରିଥିଲେ । ମଧୁବାବୁ ଉତ୍ତରରେ କହିଥିଲେ ଯେ, ଟଙ୍କା ଅଭାବରୁ ସରକାର ଏ କାର୍ଯ୍ୟ ବର୍ତ୍ତମାନ କରିପାରିବା ସମ୍ଭବ ନୁହେଁ । 'ସମାଜ' ଏହି ଉତ୍ତର ଉପରେ ଟିପ୍ପଣୀ କରି ଲେଖିଥିଲେ—"ଶୁଣାଯାଏ, ତାଙ୍କ ମତରେ ସେ ସଡ଼କ ପକ୍କା ହେବା ଦରକାର ନୁହେଁ । ସଡ଼କ ପକ୍କା ହେଲେ ଅନେକ ଟଙ୍କା ଖର୍ଚ୍ଚ ହେବ । ସରକାରଙ୍କର ବର୍ତ୍ତମାନ ଆୟ ବ୍ୟୟ ନେଇ ଯେପରି ଟାଣଓଟରା ଲାଗିଛି, ସେଥିରେ ଏ ସଡ଼କବ୍ୟୟ ବୋଝ ଉପରେ ନଳିତା ବିଡ଼ା ହୋଇପାରେ । ବାସ୍ତବିକ୍ କଥା, ମନ୍ତ୍ରୀମାନଙ୍କ ଦରମା ଗୋଟିଏ ଶକ୍ତ ବୋଝ । ଏହା ଲୋକଙ୍କ ଉପରେ ନଗଦ ଲଦା ହୋଇଛି × ×।" (ସମାଜ, ୧।୧୦।୨୧) । 'ସମାଜ'ଙ୍କ ମୃଦୁ କଟାକ୍ଷ ମନ୍ତ୍ରୀ ମଧୁବାବୁଙ୍କ ଦରମାକୁ ଲକ୍ଷ୍ୟ କରିଥିବା ସ୍ପଷ୍ଟ । ବହୁ ଲୋକ ମଧୁବାବୁଙ୍କଠାରୁ କାର୍ଯ୍ୟକାରୀ ଅନୁକୂଳ ଆଦେଶ ଆଶା କରୁଥିଲେ । ପ୍ରକୃତରେ ମନ୍ତ୍ରୀଙ୍କର ବିଶେଷ କ୍ଷମତା ନଥିଲା । ମଧୁବାବୁ ଇଚ୍ଛା-କଲେ ମଧ୍ୟ ଏହି ସବୁ କାର୍ଯ୍ୟ ଲାଟ, ମନ୍ତ୍ରିମଣ୍ଡଳ ଓ ଲାଟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ (Executive Council)ର ଅନୁମୋଦନ ବିନା କରିପାରନ୍ତେ ନାହିଁ । ଯେଉଁମାନେ ମଧୁବାବୁ ଦରମା ସକାଶେ ମନ୍ତ୍ରିତ୍ୱ ଗ୍ରହଣ କରିଛନ୍ତି ବୋଲି ସମାଲୋଚନା କରୁଥିଲେ, ସେମାନଙ୍କ ଯୁକ୍ତିରେ କିଛି ସାର ଥିବା ମଧୁବାବୁଙ୍କ ଏ 'ଅସହାୟତା' ପ୍ରକାଶରୁ ଜଣା-ଯାଉଥିଲା । ଏହି ସବୁ ଘଟଣା ଓ ଉକ୍ତି ମନ୍ତ୍ରୀ ମଧୁବାବୁଙ୍କ ମର୍ଯ୍ୟାଦାକୁ ଲୋକଚକ୍ଷୁରେ କେତେକାଂଶରେ କ୍ଷୁଣ୍ଣ କରିଥିଲା ।

**ମନ୍ତ୍ରୀଙ୍କ ଦାୟିତ୍ୱ** : ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଖ୍ରୀଃ ୧୯୨୧ର ବଜେଟ ଆଲୋଚନାବେଳେ ସ୍ୱାସ୍ଥ୍ୟ ଓ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ମଧୁବାବୁ ମନ୍ତ୍ରୀଙ୍କ ଦାୟିତ୍ୱ, କ୍ଷମତା ଓ ଉପାୟ କିପରି ଖଣ୍ଡିତ, ତାହା ବ୍ୟକ୍ତ କରିଥିଲେ । ଖ୍ରୀଃ ୧୯୨୨ରେ ବଜେଟ୍ ଆଲୋଚନାବେଳେ ମଧ୍ୟ ଏହି ପ୍ରସଙ୍ଗରେ ସେ କଟୁ ସମାଲୋଚନା କରିଥିଲେ । ଏହି ସମାଲୋଚନା ଜଣେ 'ବେସରକାରୀ' ଓ 'ସ୍ୱାୟତ୍ତ ବିଭାଗ ମନ୍ତ୍ରୀ' କରିଥିବାରୁ ସରକାର ନିଶ୍ଚିତ ଭାବରେ ନିନ୍ଦିତ ହୋଇଥିଲେ । ସରକାରଙ୍କ ପକ୍ଷେ ଏହା ଅପ୍ରୀତିକର ହୋଇଥିଲା ।

ମଧୁବାବୁ ସରକାରୀ କର୍ମଚାରୀ ନଥିଲେ ଏବଂ ବେସରକାରୀ ସଭ୍ୟଭାବରେ ସେ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ । ଲାଟ ତାଙ୍କୁ ବେସରକାରୀ ସଭ୍ୟମାନଙ୍କ ମଧ୍ୟରୁ ମନ୍ତ୍ରୀରୂପେ ନିଯୁକ୍ତ କରିଥିଲେ । ସେ ମନ୍ତ୍ରୀ ଥିଲେ ମଧ୍ୟ "ସରକାରୀ କର୍ମଚାରୀ" ଅର୍ଥାନୁସାରେ ସରକାରୀ କର୍ମଚାରୀ ନଥିଲେ । ସେ "ବେସରକାରୀ ସଭ୍ୟ" ହେଲେ ମଧ୍ୟ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିବାରୁ ତାଙ୍କର କେତେକ ଦାୟିତ୍ୱ ଥିଲା ଏବଂ ତାଙ୍କର କାର୍ଯ୍ୟକଳାପ ପାଇଁ ସମୂହ ଭାବରେ ସରକାର ଦାୟୀ ରହୁଥିଲେ । ଏହି ଦୃଷ୍ଟିରେ ସେ ସରକାରୀ କଳର ଜଣେ ଅଂଶୀଦାର ଥିଲେ । ଏହି ହେତୁ 'ମନ୍ତ୍ରୀ'ଙ୍କ ସମାଲୋଚନାମୂଳକ ଉକ୍ତି ସରକାରଙ୍କ ପକ୍ଷରେ ଅତ୍ୟନ୍ତ ମର୍ଯ୍ୟାଦାହାନିକର ହୋଇଥିଲା । ଏଥିରେ ବିହାର-ଓଡ଼ିଶା ସରକାର ବିଶେଷ ଭାବରେ ବିଚଳିତ ହୋଇପଡ଼ିଥିଲେ ।

"ସାଧାରଣ ମେଡ଼ିକାଲ ବିଭାଗ ଓ ସ୍ୱାସ୍ଥ୍ୟ ବିଭାଗ, ଏ ଦୁଇ ବିଭାଗର ପରିଚାଳନା ନିମନ୍ତେ 'ସ୍ଥାନୀୟ ସ୍ୱାୟତ୍ତଶାସନ' ବିଭାଗର ମନ୍ତ୍ରୀ ଦାୟୀ ଅଟନ୍ତି । ପୁଣି ମ୍ୟୁନିସିପାଲିଟି କାଉନ୍‌ସିଲ, ବୋର୍ଡ଼ ଓ ସ୍ୱାୟତ୍ତଶାସନ ନିମନ୍ତେ ଗଠିତ ଅନ୍ୟାନ୍ୟ ସ୍ଥାନୀୟ ବିଭାଗମାନଙ୍କ ନିମନ୍ତେ ସେ ଦାୟୀ ଅଟନ୍ତି । ଉକ୍ତ ବିଭାଗମାନଙ୍କର ପରିଚାଳନାର ଭାର ସାଧାରଣ ଲୋକମାନଙ୍କୁ ଦିଆଯାଇଛି । ସେମାନଙ୍କ ଉପରେ ଜଣେ ମନ୍ତ୍ରୀ ନିଯୁକ୍ତ ହୋଇ ଏହାକୁ ପରିଚାଳନା କରୁଛନ୍ତି । ସାଧାରଣ ଲୋକେ ସ୍ୱାୟତ୍ତଶାସନ କରିବାକୁ ସମର୍ଥ ହେବେ କି ନାହିଁ, ତାହା ପରୀକ୍ଷା କରିବା ନିମନ୍ତେ ଏହି ବ୍ୟବସ୍ଥା ହୋଇଛି । ଲୋକସାଧାରଣଙ୍କୁ ସ୍ୱାୟତ୍ତଶାସନ ସମ୍ବନ୍ଧରେ ଅଧିକ କ୍ଷମତା ଦିଆଯିବ କି ନାହିଁ, ତାହା ଏହି ପରୀକ୍ଷାର ଫଳାଫଳ ଉପରେ ନିର୍ଭର କରିବ" ବୋଲି ମନ୍ତ୍ରୀ ମଧୁବାବୁ କହୁଥିଲେ ।

ସେ ପୁଣି କହିଥିଲେ, "ମନ୍ତ୍ରୀଙ୍କ ଉପରେ ଏହି ବିଭାଗରେ ଯେଉଁ ଦାୟିତ୍ୱ ଦିଆ-ଯାଇଅଛି, ସେ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଉଛି । କେଉଁ ମତଟି ଠିକ୍ ତାହା ବିଚାର କରିବାର ସ୍ଥଳ ଏହି ଗୃହ ନୁହେଁ । ବିଲାତ ପାର୍ଲିଆମେଣ୍ଟ କେବଳ ଏହାର ବିଚାର କରିପାରିବେ । କାଉନ୍‌ସିଲ ଓ ଜନସାଧାରଣ ସ୍ଥୂଳଭାବରେ ଏହି କେତେକ ବିଷୟ ଜାଣିବା ଆବଶ୍ୟକ—ଏକରେ, ସ୍ୱାୟତ୍ତଶାସନରେ ମନ୍ତ୍ରୀଙ୍କ ଦାୟିତ୍ୱ କିପରି ଓ କେତେ ଦୂର । ଦୁଇରେ, ଦାୟିତ୍ୱ ନିର୍ବାହ କରିବା ନିମନ୍ତେ ତାଙ୍କର କି ସୁଯୋଗ ଅଛି ଓ ତାଙ୍କ କାର୍ଯ୍ୟ ସାଧନରେ କି କି ପ୍ରକାର ପ୍ରତିବନ୍ଧକ ଅଛି । ତିନରେ, ତାହାଙ୍କର ଦାୟିତ୍ୱ ସନ୍ତୋଷଜନକ-ଭାବେ ନିର୍ବାହ କରିବା ନିମନ୍ତେ ଯଥେଷ୍ଟ ଭାବରେ କ୍ଷମତା, ଉପାୟ ଓ ସୁବିଧା ସେ ପାଇଛନ୍ତି କି ନାହିଁ । ଏହି ଦୃଷ୍ଟିରୁ ପରୀକ୍ଷା କଲେ ମନ୍ତ୍ରୀଙ୍କର ପ୍ରକୃତ କାର୍ଯ୍ୟକାରୀ କ୍ଷମତା ଅଳ୍ପ ଥିବା ସ୍ପଷ୍ଟ ହେବ ।" ଏହାହିଁ ସେ ତାଙ୍କର ଭାଷଣରେ ଦୃଷ୍ଟାନ୍ତ ସମର୍ଥିତ ଯୁକ୍ତିଦ୍ୱାରା ବ୍ୟକ୍ତ କରିଥିଲେ ।

ପୁଣି ମଧୁବାବୁ କହିଥିଲେ, "ପ୍ରଥମେ ମନ୍ତ୍ରୀ କି ପ୍ରକାର ଦାୟୀ, ତାହା ଦେଖାଯାଉ । ସେ ପ୍ରଦେଶ ମଧ୍ୟରେ ସାଧାରଣଙ୍କର ସ୍ୱାସ୍ଥ୍ୟ ନିମନ୍ତେ ଦାୟୀ । ତାଙ୍କଠାରୁ

ଆଶା କରାଯାଏ ଯେ, ସେ ପ୍ରଦେଶରେ ଏହି ୩୫ କୋଟି ଲୋକଙ୍କର ସ୍ୱାସ୍ଥ୍ୟ ରକ୍ଷା କରିବେ । ଏହି ଉଦ୍ଦେଶ୍ୟରେ ଏହି ଲୋକସଂଖ୍ୟାକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ— (୧) ଯେଉଁମାନେ ବିଳାତି ଚିକିତ୍ସା ପସନ୍ଦ କରନ୍ତି; କିନ୍ତୁ ଏମାନଙ୍କର ସଂଖ୍ୟା ଅତି କମ୍, ନଗଣ୍ୟ କହିଲେ ଚଳେ । (୨) ବହୁ ଲୋକ ବିଳାତି ଚିକିତ୍ସା ଓ ବିଳାତି ପଦ୍ଧତିର ସ୍ୱାସ୍ଥ୍ୟରକ୍ଷାକୁ ପସନ୍ଦ କରନ୍ତି ନାହିଁ । ସାଧାରଣ ଲୋକେ ସାଧାରଣ କବିରାଜୀ ଚିକିତ୍ସାକୁ ପସନ୍ଦ କରନ୍ତି । ପୁଣି, ପାଶ୍ଚାତ୍ୟ ଚିକିତ୍ସାରେ ପାରଦର୍ଶିତା ଅର୍ଜନ କରିଥିବା କେତେଜଣ ଚିକିତ୍ସକ ମଧ୍ୟ କେତେକାଳ ହେଲା କବିରାଜୀ ଓ ୟୁନାନୀ ଚିକିତ୍ସା ପ୍ରତି ଦୃଷ୍ଟି ଦେଇଅଛନ୍ତି । ପାଶ୍ଚାତ୍ୟ ଚିକିତ୍ସା ଓ ଦେଶୀୟ ଚିକିତ୍ସାକୁ ତୁଳନା କରି ଏ ଦୁଇ ଭିତରେ ଥିବା ଉତ୍କର୍ଷ ଓ ଅପକର୍ଷ ଓ ଫଳାଫଳ ସମ୍ବନ୍ଧରେ ମୁଁ କିଛି କହିବାକୁ ଯାଉନାହିଁ; କିନ୍ତୁ ଚିକିତ୍ସାରେ ରୋଗୀର ଚିକିତ୍ସକ ଉପରେ ବିଶ୍ୱାସ ଗୋଟିଏ ପ୍ରଧାନ କଥା । ଏହି ବିଶ୍ୱାସ ରୋଗୀର ଆରୋଗ୍ୟ ପକ୍ଷେ ବଡ଼ ଫଳଦାୟକ ହୁଏ । ଔଷଧର ଗୁଣ ଓ ଚିକିତ୍ସା ଉପରେ ବିଶ୍ୱାସ ଯେ ଆରୋଗ୍ୟ ପକ୍ଷେ ବିଶେଷ ଉପକାରୀ, ଏହା ସମସ୍ତେ ସ୍ୱୀକାର କରନ୍ତି । ଏହି କାରଣରୁ ଇଉରୋପୀୟମାନେ ଔଷଧମାନଙ୍କ ନାମକରଣ ସମୟରେ କ୍ଲାସିକ୍ ନାମ ବ୍ୟବହାର କରନ୍ତି ଏବଂ ଚିକିତ୍ସକଙ୍କ-ଠାରେ ରୋଗୀର ବିଶ୍ୱାସ ତୁଟି ନ ଯିବା ଉଦ୍ଦେଶ୍ୟରେ ମଧ୍ୟ କେତେକ ପ୍ରଥା ଅବଲମ୍ବନ କରନ୍ତି । ଭାରତବାସୀଙ୍କ ଧର୍ମବିଶ୍ୱାସ ବଡ଼ ପ୍ରବଳ । ସେମାନଙ୍କ ପକ୍ଷେ ରୋଗୀର ବିଶ୍ୱାସ ରୋଗ ଉପଶମ ପକ୍ଷେ ବିଶେଷ କାର୍ଯ୍ୟକାରୀ । ପୁନଶ୍ଚ ଦେଶୀୟ ଚିକିତ୍ସା ମଧ୍ୟ ଅଳ୍ପ ଖର୍ଚ୍ଚରେ ମିଳେ । ଏ ଦେଶରେ ବିଳାତି ଶିକ୍ଷା ପ୍ରାୟ ଶତାଧିକ ବର୍ଷ ପୂର୍ବରୁ ଆରମ୍ଭ ହୋଇଅଛି । ସରକାର ମଧ୍ୟ ବରାବର ବିଶେଷ ପରିମାଣରେ ଡାକ୍ତରୀ ଚିକିତ୍ସାର ବୃଦ୍ଧି କରିଆସୁଅଛନ୍ତି । ହଜାର ହଜାର ଡାକ୍ତର ମଧ୍ୟ ହୋଇଯାଇଅଛନ୍ତି । ଏହା ସତ୍ତ୍ୱେ ଦେଶୀୟ ଚିକିତ୍ସା ଏଯାବତ୍ ଜୀବିତ ଅଛି । ଏହି ଚିକିତ୍ସାରେ ବହୁଲୋକ ବିଶ୍ୱାସ କରନ୍ତି । ପ୍ରାୟ ପ୍ରତି ଗ୍ରାମରେ କବିରାଜ କିମ୍ବା ହକିମ୍ (ୟୁନାନୀ ଚିକିତ୍ସକ) ଅଛନ୍ତି । ଚିକିତ୍ସକ ହିସାବରେ ବେଶି ଖ୍ୟାତି ନଥିବା କବିରାଜକୁ ମଧ୍ୟ ଗ୍ରାମବାସୀମାନେ ସମ୍ପୂର୍ଣ୍ଣ ବିଶ୍ୱାସ କରନ୍ତି ଏବଂ ସେ ସ୍ଥାନରେ ଡାକ୍ତର ପ୍ରବେଶ କରିପାରନ୍ତି ନାହିଁ ।" ପୁଣି ସେ କହିଥିଲେ, "ଗ୍ରାମମାନଙ୍କରେ ଏପରି ଦେଶୀୟ ଚିକିତ୍ସାହିଁ ବିଶେଷ ଆଦୃତ ହେଉଛି ।" ସେ ଏହାର କାରଣ ମଧ୍ୟ ବିଶ୍ଳେଷଣ କରିଥିଲେ— ଦେଶୀୟ ଚିକିତ୍ସାରେ ଗ୍ରାମଲୋକଙ୍କର ବିଶ୍ୱାସ ଅଛି । ସେମାନଙ୍କ ପକ୍ଷେ ତାହା ମଧ୍ୟ ସୁବିଧାଜନକ ଏବଂ ଅଳ୍ପ ବ୍ୟୟରେ ଏହି ଚିକିତ୍ସା ମଧ୍ୟ ସେମାନଙ୍କୁ ମିଳେ । ୩୫ କୋଟି ଲୋକଙ୍କ ସ୍ୱାସ୍ଥ୍ୟରକ୍ଷାର ବ୍ୟବସ୍ଥା କରିବାକୁ ଗଲେ ଏହି ସୁଯୋଗ ଓ ସୁବିଧାଗୁଡ଼ିକୁ ଅବଜ୍ଞା କରିବା କଦାଚ ଉଚିତ ନୁହେଁ । ସରକାର ବିଦେଶୀ ଚିକିତ୍ସାକୁ ଯେତିକି ସହାନୁଭୂତି ଦେଖାଉଛନ୍ତି, ସେତିକି ଦେଶୀୟ ଚିକିତ୍ସା ପ୍ରତି ଦେଖାଇଲେ ଲୋକେ ତାହା ସହଜରେ ଆଦର କରିବେ । ବିଦେଶୀୟ ଚିକିତ୍ସା ସମ୍ବନ୍ଧରେ ଜନସାଧାରଣ ଅନଭିଜ୍ଞ ଥିବାରୁ ଏହି ଚିକିତ୍ସା ପ୍ରଣାଳୀକୁ ସରକାର ସ୍ଥାୟୀ କରିବା କଦାଚ ସମ୍ଭବପର ନୁହେଁ ।"

କବିରାଜ ଓ ଡାକ୍ତରଙ୍କ ଚାଲିଚଳନକୁ ତୁଳନା କରି ସେ କହିଥିଲେ, "ଲୋକେ କବିରାଜଙ୍କୁ ବେଶି ପସନ୍ଦ କରନ୍ତି । ଡାକ୍ତରମାନେ ଗ୍ରାମର ଲୋକଙ୍କ ସହିତ ମିଳାମିଶି ଚଳି ନପାରୁଥିବାରୁ ଏପରି ଘଟୁଛି ।" ଉଦାହରଣ ଦେଇ ପୁଣି ସେ କହିଥିଲେ, "କବିରାଜମାନେ ଗାଁମାନଙ୍କରେ ରୋଗୀଙ୍କ ଘରେ ଖାଇବା ଓ ରହିବାପାଇଁ ଅସୁବିଧା ବୋଧ କରନ୍ତି ନାହିଁ; କିନ୍ତୁ ଡାକ୍ତରମାନେ ସେପରି ଚଳି ପାରନ୍ତି ନାହିଁ । କବିରାଜଙ୍କ ଆହାର ଓ ପରିଧାନର ବ୍ୟବସ୍ଥା ଗ୍ରାମବାସୀମାନେ କରନ୍ତି, ଅର୍ଥାତ୍ ଲୋକଙ୍କ ଅର୍ଥରେ ଏହା ଚଳେ; କିନ୍ତୁ ଡାକ୍ତରମାନଙ୍କପାଇଁ ସରକାରଙ୍କୁ ହାତରୁ ଖର୍ଚ୍ଚ କରିବାକୁ ହୁଏ । ଡାକ୍ତରମାନେ ସହରାଞ୍ଚଳରେ କେବଳ ଆବଦ୍ଧ ହୋଇ ରହୁଛନ୍ତି ଏବଂ ଏ ପର୍ଯ୍ୟନ୍ତ ଅଧିକାଂଶ ଡାକ୍ତର ଆତ୍ମନିର୍ଭରଶୀଳ ହୋଇପାରି ନାହାନ୍ତି । ସହରମାନଙ୍କରେ ମାଗଣାରେ ଔଷଧ ଓ ଡାକ୍ତରୀ ପରାମର୍ଶ ମିଳୁଥିବା ଯୋଗୁ ଲୋକେ ଡାକ୍ତରୀଚିକିତ୍ସା ଗ୍ରହଣ କରୁଛନ୍ତି ମାତ୍ର ।"

ସେ ପୁଣି କହିଥିଲେ, "ସଂକ୍ରାମକ ରୋଗର ଚିକିତ୍ସା ସବୁଠାରେ ସହଜ ନୁହେଁ । କଲେରାରେ ସାଲାଇନ୍ ଇଞ୍ଜେକ୍‌ସନ ଡାକ୍ତରଙ୍କ ବ୍ୟବସ୍ଥାନୁସାରେ ହୁଏ; କିନ୍ତୁ ମଫସଲରେ ଏହାର ପ୍ରୟୋଗ ଅତ୍ୟନ୍ତ କଠିନ । ଡାକ୍ତର ଅଭାବହିଁ ଏହାର ପ୍ରଧାନ କାରଣ । ମୁଁ କେବେ ବିଶ୍ୱାସ କରିପାରୁନାହିଁ ଯେ ଆମ୍ଭେମାନେ ପ୍ରତି ଗ୍ରାମ ସକାଶେ ଯଥେଷ୍ଟ ଟଙ୍କା ଓ ଡାକ୍ତର ଯୋଗାଇପାରିବୁ ।"

କେତେ କେତେ ଗାଁର ସ୍କୁଲ ଶିକ୍ଷକ ଓ ଟିକାଦାରମାନଙ୍କୁ କଲେରା ପ୍ରତିଷେଧକ ବ୍ୟବସ୍ଥା ଓ ଚିକିତ୍ସା ସମ୍ବନ୍ଧରେ ଉପଯୁକ୍ତ ଶିକ୍ଷା ଦେଇ ଏହି କାର୍ଯ୍ୟରେ ନିଯୁକ୍ତକଲେ ଭଲ ହେବ ବୋଲି କହିବାରୁ ମଧୁବାବୁ ଉତ୍ତରରେ କହିଲେ, "ମୋ ମତରେ ଗାଁ ବୈଦ୍ୟଙ୍କୁ ଏ ବିଷୟରେ କେତେକ ଶିକ୍ଷା ଦେଇ ନିଯୁକ୍ତ କଲେ ଅଧିକ ଫଳ ହେବ ।"

ସେ କହିଥିଲେ, "ସରକାର ପ୍ରତିବର୍ଷ ଡାକ୍ତରଖାନା ତିଆରି ପାଇଁ ଲକ୍ଷ ଲକ୍ଷ ଟଙ୍କା ବରାଦ କରୁଥିଲେ ମଧ୍ୟ ଡାକ୍ତର ମିଳୁନାହାନ୍ତି । ଫଳରେ ଏତେ ଟଙ୍କା ଖର୍ଚ୍ଚ କରି ଲୋକଙ୍କ ସ୍ୱାସ୍ଥ୍ୟର କୌଣସି ପ୍ରକାର ଉନ୍ନତି ସାଧିତ ହୋଇପାରି ନାହିଁ, ନିକଟ ଭବିଷ୍ୟତରେ ମଧ୍ୟ କେବେ ହୋଇପାରିବ ବୋଲି ମୋର ବିଶ୍ୱାସ ନୁହେଁ ।" ବିଦେଶୀ ଶାସନର କର୍ତ୍ତୃତ୍ୱ ହିଁ ଏଥିନିମନ୍ତେ ଦାୟୀ ବୋଲି ସେ କହିଥିଲେ । "ଏ ଦେଶର ଶାସନଭାର ବର୍ତ୍ତମାନ ବିଦେଶୀ ଲୋକଙ୍କ ହାତରେ ଅଛି । ସେମାନେ ମୂଳରୁ ଆମ୍ଭମାନଙ୍କ ଦେଶର ଚିକିତ୍ସା ପ୍ରଣାଳୀ ବୁଝିନାହାନ୍ତି ବା ବୁଝିବାପାଇଁ ଚେଷ୍ଟା କରିନାହାନ୍ତି । ନିଜ ଦେଶର ଚିକିତ୍ସା ପ୍ରଣାଳୀରେ ସେମାନଙ୍କର ବିଶ୍ୱାସ ଅଛି ଏବଂ ତାହାର ପ୍ରସାର କରିବାପାଇଁ ବହୁତ ସମୟ ଓ ପ୍ରଚୁର ଅର୍ଥ ନଷ୍ଟ କରୁଛନ୍ତି ।" ଗ୍ରାମରେ ହେଉ କି ସହରରେ ହେଉ ଡାକ୍ତରଖାନା ବସାଇବାଦ୍ୱାରା କେତେକ ସାହେବ ଓ ବଡ଼ଲୋକଙ୍କର କେବଳ ଲାଭ ହେଉଛି ବୋଲି ସେ ଦୃଢ଼ କଣ୍ଠରେ କହିଥିଲେ ଏବଂ ଗରିବଙ୍କ ଚିକିତ୍ସାପାଇଁ ବିଶେଷ ଧ୍ୟାନ ଦେବାକୁ ହେବ ବୋଲି ମତ ବ୍ୟକ୍ତ

କରିଥିଲେ । "ମଫସଲର ଗରିବ ଜନସାଧାରଣଙ୍କ କଥା କେହି ବୁଝୁନାହାନ୍ତି ଓ ସରକାର ମଧ୍ୟ ମୂଳରୁ ସେମାନଙ୍କୁ ନଜରରେ ଅଣିନାହାନ୍ତି; କିନ୍ତୁ ଏହି ସାଧାରଣ ଲୋକଙ୍କୁ ନେଇ ଦେଶ ଗଢ଼ା । ତେଣୁ ସେମାନଙ୍କ ସ୍ୱାସ୍ଥ୍ୟର ଉନ୍ନତି ହେଲେ ଦେଶର ସ୍ୱାସ୍ଥ୍ୟର ଉନ୍ନତି ହେଲି ବୋଲି କହିବାକୁ ହେବ । ସେମାନଙ୍କର ସ୍ୱାସ୍ଥ୍ୟର ଉନ୍ନତି କରିବାହିଁ ମନ୍ତ୍ରୀମାନଙ୍କର କର୍ତ୍ତବ୍ୟ ।"

ଏଥିପାଇଁ ଆବଶ୍ୟକ ହେଉଥିବା ଧନ, ଜନ ଓ ମନ ବିଷୟରେ ମନ୍ତ୍ରୀ ମଧୁବାବୁ ମତବ୍ୟକ୍ତ କରିଥିଲେ ଯେ, "ଆମ ଦେଶରେ ଏଥିପାଇଁ ଯଥେଷ୍ଟ ଧନ ନାହିଁ, କି ଜନ ନାହିଁ, କି ମନ ନାହିଁ । ଡାକ୍ତରଖାନା ପାଇଁ ଯଥେଷ୍ଟ ଅର୍ଥ ନାହିଁ, ଡାକ୍ତରଖାନା ଚଳାଇବା ପାଇଁ ଯଥେଷ୍ଟ ଡାକ୍ତର ମଧ୍ୟ ନାହାନ୍ତି, ସାଢ଼େ ତିନିକୋଟି ଲୋକଙ୍କୁ ଚିକିତ୍ସା କରିବାପାଇଁ ଏ ଧରଣର ଡାକ୍ତରଙ୍କ ସଂଖ୍ୟା ନିତାନ୍ତ କମ୍ ଏବଂ ଏତେ ଏତେ ଟଙ୍କା ଦେଇ ଏପରି ଏତେ ଚିକିତ୍ସକ ରଖିବା ନିତାନ୍ତ ବ୍ୟୟସାଧ୍ୟ ଓ ଅନାବଶ୍ୟକ ।"

ସ୍ୱାସ୍ଥ୍ୟ ପାଇଁ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ଼ରେ ବ୍ୟବସ୍ଥା ଥିଲେ ମଧ୍ୟ ଗରିବ ଲୋକେ ଏଥିରୁ କିଛି ସୁବିଧା ପାଉନାହାନ୍ତି, କେବଳ ବଡ଼ ବଡ଼ ହାକିମହୁକୁମା ଓ ବଡ଼-ଲୋକେ ସୁବିଧା ପାଉଛନ୍ତି ବୋଲି ମନ୍ତ୍ରୀ କହିଥିଲେ । ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ଼ରେ ସ୍ୱାସ୍ଥ୍ୟର ବ୍ୟବସ୍ଥାକୁ ଲକ୍ଷ୍ୟକରି ସେ କହିଥିଲେ, "ମ୍ୟୁନିସିପାଲିଟିରେ ଯେଉଁ ସ୍ୱାସ୍ଥ୍ୟର ବ୍ୟବସ୍ଥା ରହିଛି, ସେଥିରେ ସାଧାରଣଙ୍କର କିଛି ଉପକାର ହେଉନାହିଁ । ମ୍ୟୁନିସିପାଲିଟି କାର୍ଯ୍ୟରୁ ଦେଖାଯାଏ, କେବଳ ସାହେବମାନଙ୍କ ପଡ଼ା ବା ବାଡ଼ିଘର ସଫା ଥାଏ, ତାହା ବ୍ୟତୀତ ଦେଶୀ ଲୋକଙ୍କ ବାସସ୍ଥାନ ସବୁ କୁତ୍ସିତ ଓ ଅପରିଷ୍କାର ହୋଇ ପଡ଼ିରହିଥାଏ ।"

ମଧୁବାବୁ ଏଥିପାଇଁ ଏ ଅନୁଷ୍ଠାନ ଦୁଇଟିର ସର୍ବମୟକର୍ତ୍ତା ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କୁ ଦାୟୀ କରିଥିଲେ । "ଏସବୁ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡ଼ର ହାକିମ ତ ଜିଲ୍ଲା ମାଜିଷ୍ଟ୍ରେଟ୍, ସେଥିରେ ସାଧାରଣ ଲୋକଙ୍କ ଅବସ୍ଥା କିଏ କାହିଁକି ବୁଝିବ ? ଜିଲ୍ଲାବୋର୍ଡ଼ ତରଫରୁ ଯେଉଁସବୁ ବ୍ୟବସ୍ଥା ଅଛି, ସେସବୁ ବଡ଼ଲୋକଙ୍କ ପାଇଁ; କିନ୍ତୁ ଗରିବ ଗ୍ରାମୀଲୋକ ଏଥିପାଇଁ ଅଧିକାଂଶ ଟଙ୍କା ଦିଅନ୍ତି; ମାତ୍ର ସେମାନଙ୍କର ଏଥିରେ ଭାଗ ନାହିଁ । ଗରିବ ଲୋକେ କିଛି ସୁବିଧା ଉପଭୋଗ କରିପାରନ୍ତିନାହିଁ । ଯେବେ କେହି ଭାଗ ଲୋଡ଼ିଲା, ତେବେ ମାଲିମକଦ୍ଦମା କରି ତାକୁ ଜବତ କରିଦିଆଯାଏ । ଆଉ ଜିଲ୍ଲା ବୋର୍ଡ଼ ଓ ଲୋକାଲ୍ ବୋର୍ଡ଼କୁ ସାଧାରଣ ପକ୍ଷରୁ ମନୋନୀତ ହୋଇଥିବା ସଭ୍ୟମାନେ ନାମକୁ ମାତ୍ର ସଭ୍ୟ ହୋଇ ଥାଆନ୍ତି । ସେମାନଙ୍କର କୌଣସି କ୍ଷମତା ନାହିଁ ବା ସେମାନଙ୍କ କଥା କେହି ଶୁଣନ୍ତି ନାହିଁ । ତେଣୁ ସେମାନେ ସାଧାରଣଙ୍କ ଉପକାରପାଇଁ ମଧ୍ୟ ମୁଣ୍ଡ ଘୂରାନ୍ତି ନାହିଁ । × ×"

ମନ୍ତ୍ରୀଭାବରେ ତାଙ୍କର ବାରମାସ କାର୍ଯ୍ୟ କରି ମନ୍ତ୍ରୀକାର୍ଯ୍ୟ ସମ୍ବନ୍ଧରେ ନିଜର ଯେଉଁ ଅଭିଜ୍ଞତା ଜନ୍ମିଛି, ତାହା ସେ ପ୍ରକାଶ କରି ନିଃସଙ୍କୋଚରେ କହିଲେ, "ଏହି

ବିଭାଗର ମନ୍ତ୍ରୀ ସରକାରଙ୍କଦ୍ୱାରା ମନୋନୀତ ନ ହୋଇ ଲୋକସାଧାରଣଙ୍କ ପ୍ରତିନିଧିମାନଙ୍କ-ଦ୍ୱାରା ମନୋନୀତ ହେବା ଉଚିତ । କେହି କେହି କହନ୍ତି, ଲାଟ ଯାହାକୁ ମନ୍ତ୍ରୀ ବୋଲି ମନୋନୀତ କରିବେ, ସେ ସରକାରଙ୍କ ଭକ୍ତ ହେବେ ଏବଂ ଲୋକସାଧାରଣଙ୍କ ସ୍ୱାସ୍ଥ୍ୟର ହାନି କରି ବିଶ୍ୱାସଘାତକ ଆଚରଣ କରିବେ, କିନ୍ତୁ ମୋର ବିଶ୍ୱାସ, କୌଣସି ଲୋକ ବିଶ୍ୱାସ-ଘାତକତା କରି ଦୁଇ ମାସ ଲୁଚି ରହିନପାରେ । ପ୍ରତି ସପ୍ତାହକୁ ସପ୍ତାହ ଜିଲ୍ଲା ବୋର୍ଡ, ମ୍ୟୁନିସିପାଲିଟିର ପ୍ରସ୍ତାବ ଓ ନିର୍ଦ୍ଧାରଣ ସବୁ ଏ ଅଫିସକୁ (ମନ୍ତ୍ରୀଙ୍କ ଅଫିସକୁ) ଆସୁଛି । ବୋର୍ଡର ଦେଶୀ ମେମ୍ବରମାନେ ହାକିମ ବା ମେଜେଷ୍ଟ୍ରରଙ୍କୁ ସନ୍ତୁଷ୍ଟ କରିବାପାଇଁ ଗ୍ରେଟ ଗୋରା କର୍ମଚାରୀମାନଙ୍କ କଥା ଅନୁସାରେ ଲୋକଙ୍କ ସ୍ୱାସ୍ଥ୍ୟର ହାନି କରୁଛନ୍ତି । ଏ ସବୁ ବିଷୟର ପୁନର୍ବିଚାର କରି ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ବୋର୍ଡର ଦେଶୀ ସଭ୍ୟ-ମାନଙ୍କୁ ଉପଦେଶ ଦେବାକୁ ପଡ଼ୁଛି ।"

ମନ୍ତ୍ରୀ ମନୋନୟନ ସମ୍ବନ୍ଧରେ ସେ କହିଲେ, "ଲୋକଙ୍କ ବିରୋଧୀ ଅଥଚ ତାଙ୍କର ଭକ୍ତ, ଏପରି ଲୋକଙ୍କୁ ସରକାର ମନ୍ତ୍ରୀରୂପେ ନିଯୁକ୍ତ କରିବେ ବୋଲି ମୁଁ ଅବଶ୍ୟ କହୁନାହିଁ । ସରକାର ଭଲ ଲୋକ ମନୋନୀତ କରିପାରନ୍ତି, ମାତ୍ର କାଉନ୍‌ସିଲ୍ (ବ୍ୟବସ୍ଥାପକ ସଭା)ର ମେମ୍ବରମାନେ ଉକ୍ତ ବ୍ୟକ୍ତିର ପୂର୍ବାପର ଜାଣି ନଥିବାରୁ ଏବଂ ସୁବିଧା ଅସୁବିଧା ବୁଝି ନଥିବାରୁ ଅନେକ ସମୟରେ ଭଲ ଲୋକ ସୁଦ୍ଧା କାଉନ୍‌ସିଲ ସଭ୍ୟମାନଙ୍କର ଅସହ୍ୟ ହୋଇପାରେ । ତେଣୁ ସାଧାରଣ ସ୍ୱାସ୍ଥ୍ୟ ଓ ଜିଲ୍ଲା ବୋର୍ଡ ପ୍ରଭୃତି ସ୍ୱାୟତ୍ତଶାସନ ଯେଉଁ ମନ୍ତ୍ରୀଙ୍କ ଅଧୀନରେ ରହିବ, ସେ କାଉନ୍‌ସିଲ୍ ସଭ୍ୟମାନଙ୍କଦ୍ୱାରା ମନୋନୀତ ହେବା ସର୍ବଦା ବାଞ୍ଛନୀୟ ।"

ପୁଣି ସେ ସ୍ପଷ୍ଟଭାବରେ କହିଥିଲେ, "ମନ୍ତ୍ରୀଙ୍କ କାର୍ଯ୍ୟ ଗୁରୁତର; କିନ୍ତୁ ତାଙ୍କ ହାତରେ ଟଙ୍କା ନାହିଁ । ଯେଉଁ ଲୋକଙ୍କୁ ନେଇ ସେ କାମ କରିବେ ଏବଂ ଯାହାଙ୍କ ଲାଗି କାମ କରିବେ, ସେମାନେ ଏକ ଆଡ଼ୁ ଦେଖିଲେ ଏମାନେ ଅନ୍ୟ ଆଡ଼ୁ ଦେଖୁଛନ୍ତି ।" ମନ୍ତ୍ରୀଙ୍କ ଅସୁବିଧା ମଧ୍ୟ ସେ ବ୍ୟକ୍ତ କରିଥିଲେ । "ସାଧାରଣ ସ୍ୱାସ୍ଥ୍ୟ ବିଷୟରେ ସକଳ ଶ୍ରେଣୀର ଲୋକଙ୍କ ସହାୟତା ଓ ସହାନୁଭୂତି ଆବଶ୍ୟକ । ମ୍ୟୁନିସିପାଲିଟି ଓ ଜିଲ୍ଲା ବୋର୍ଡ ମେମ୍ବରମାନେ ଦେଶର ଅନ୍ୟାନ୍ୟ ସାଧାରଣଙ୍କ ମଧ୍ୟରେ ଜାତୀୟଭାବ ଓ ଜାତୀୟତା ଗଠନ ନିମନ୍ତେ ଉତ୍ସାହ ଓ ଆଗ୍ରହ ନ ଜନ୍ମାଇଲେ ମନ୍ତ୍ରୀଙ୍କର ଏ ବିଭାଗର କାର୍ଯ୍ୟ ସାଧିତ ହୋଇପାରିବ ନାହିଁ ।"

ଲୋକଙ୍କ ଅଭାବ ଦୂରକରିବା ଦିଗରେ ଆନ୍ତରିକତା ଆବଶ୍ୟକ ଥିବା କଥା ସେ କହିଥିଲେ । "ଲୋକଙ୍କ ଉପକାର କରିବାକୁ ହେଲେ ସେମାନଙ୍କ ଅଭାବ ବୁଝିବାକୁ ହେବ ଏବଂ ସେମାନଙ୍କ ହିତ ସକାଶେ ମନପ୍ରାଣ ଢାଳି ଦେବାକୁ ହେବ । ଖାଲି ରୁଟିନ୍ ବଜାଇ ଲଫାପାର ଦୋରବସ୍ତ ରଖି କାମ କରିବାଦ୍ୱାରା ତାହା ହୋଇପାରିବ ନାହିଁ ।

କିନ୍ତୁ ଏପରି ଲୋକ ବାଛି ସାଧାରଣ ସ୍ୱାସ୍ଥ୍ୟ ବିଭାଗର କାର୍ଯ୍ୟ ପରିଚାଳନା କରିବାପାଇଁ ମନ୍ତ୍ରୀଙ୍କ କ୍ଷମତା ନାହିଁ ।

ସରକାରଙ୍କ ମନୋନୀତ ମନ୍ତ୍ରୀଙ୍କର ପ୍ରକୃତ କ୍ଷମତା ନଥିବା ପ୍ରସଙ୍ଗକୁ ବିଶ୍ଳେଷଣ କରି ସେ କହିଲେ, "ସରକାରୀ ଶାସନ ବିଭାଗ ଦୁଇ ଭାଗରେ ବିଭକ୍ତ ହୋଇ ଗୋଟିଏ ବିଭାଗ ମନ୍ତ୍ରୀଙ୍କ ଅଧୀନରେ ରହିଲା । ଲୋକେ ବିଚାରନ୍ତି, ମନ୍ତ୍ରୀ ଏଥିରେ ସର୍ବେସର୍ବା ଏବଂ ସେ 'ଗଣ୍ଡଭେରିବ ପକ୍ଷୀ' ପରି ଦୁଇଟା ହାତୀ ଗୋଡ଼ରେ ଧରିପାରନ୍ତି ଓ କେତୋଟି ବଡ଼ ବଡ଼ ଜନ୍ତୁଙ୍କୁ ଥଣ୍ଟରେ ଟାଣିନେଇ ପାରନ୍ତି । ମାତ୍ର ମନ୍ତ୍ରୀଙ୍କର ପ୍ରକୃତରେ ସେପରି କ୍ଷମତା ନାହିଁ । ସେ ଗଣ୍ଡଭେରିବ ନୁହନ୍ତି—ସେ ପେଚା । ବଡ଼ ବଡ଼ ହାତୀଙ୍କୁ ଧରିବା ଦୂରେ ଥାଉ, ଗୋଟିଏ ଝିଟିପିଟି ସୁଦ୍ଧା ଧରିବାକୁ ତାଙ୍କର କ୍ଷମତା ନାହିଁ ।

"ଏ ପ୍ରକାର ମନ୍ତ୍ରୀ ମଧ୍ୟ ପୃଥିବୀରେ କେବେ କେଉଁଠାରେ ସ୍ୱାଧୀନଭାବରେ କାର୍ଯ୍ୟ କରିଥିବାର ଜଣାଯାଇନାହିଁ । ଲୋକେ ମନେକରୁଛନ୍ତି ଯେ ମୁଁ ମନ୍ତ୍ରୀ ଥିବାରୁ ସିଭିଲ୍-ସର୍ଜନ ଆଦି ବଡ଼ ବଡ଼ କର୍ମଚାରୀଙ୍କୁ ବାହାର କରିଦେଇ ମୋ ନିଜ ଇଚ୍ଛାରେ ଏ କାର୍ଯ୍ୟ ଚଳାଇବି; ମାତ୍ର ମୋତେ ସେ କ୍ଷମତା ଦିଆଯାଇ ନାହିଁ ।

ମଧୁବାବୁ ନିଜ କର୍ତ୍ତବ୍ୟରେ ହେଳା କରିନଥିବା ବିଷୟରେ କହିଥିଲେ, "ଏ ଅସୁବିଧା ସତ୍ତ୍ୱେ ମୋ କର୍ତ୍ତବ୍ୟରୁ ମୁଁ କେବେ ବିଚଳିତ ହୋଇନାହିଁ । ମୁଁ ଯେ ବର୍ଷକୁ କେବଳ ୬୪ ହଜାର ଟଙ୍କାର ମୋହରେ ପଡ଼ି ସବୁକଥାରେ 'ହଁଜୀ' 'ହଁଜୀ' ମାରି ଚାଲିବି, ତାହା ମୋର ପ୍ରକୃତ ନୁହେଁ । ମୋ ପ୍ରତି ଅର୍ଥ ଅତି ତୁଚ୍ଛ ପଦାର୍ଥ । ମୁଁ ତାକୁ ଧୂଳି ଜ୍ଞାନ କରେ ଓ ତାକୁ ଯେ କୌଣସି ସମୟରେ ଫିଙ୍ଗିଦେଇପାରେ ।"

ମନ୍ତ୍ରୀ ଦରମା ପାଇବା ଉଚିତ ନୁହେଁ ବୋଲି ମଧୁବାବୁ ନିଜ ମତ ବ୍ୟକ୍ତ କରିଥିଲେ । "ମୋ ମତରେ ମନ୍ତ୍ରୀ ଦରମା ପାଇବା ଉଚିତ ନୁହେଁ । ମୁଁ ଏହା ଏକାଧିକ ଥର ଲୋକଙ୍କ ଆଗରେ ବ୍ୟକ୍ତ କରିଛି । କାର୍ଯ୍ୟଭାର ଗ୍ରହଣ କରି ଏ କାର୍ଯ୍ୟର ଗୁରୁତ୍ୱ ବେଶ୍ ବୁଝିପାରିଅଛି । ଏ ବିଭାଗର ମନ୍ତ୍ରୀ ଆଇନ୍ ଜାଣିବା ଦରକାର, ଚିକିତ୍ସାଶାସ୍ତ୍ର ଜାଣିବା ଉଚିତ ଓ ପ୍ରାଣପଣେ ଖଟିବା ଆବଶ୍ୟକ । ମୋ ଅପେକ୍ଷା ଅଧିକ କ୍ଷମତାଶାଳୀ ଲୋକ ଦେଖିଲେ, ଏ କାର୍ଯ୍ୟକୁ ତାଙ୍କ ଉପରେ ନ୍ୟସ୍ତକରି ମୁଁ ମୋର ପୂର୍ବ କାର୍ଯ୍ୟକ୍ଷେତ୍ରକୁ ଫେରିଯିବାକୁ ପ୍ରସ୍ତୁତ ଅଛି । ଆସନ୍ତା ବର୍ଷ ବଜେଟ ବିଚାର ବେଳେ ମୁଁ ଅବୈତନିକ ମନ୍ତ୍ରୀ ରହିବାପାଇଁ ପ୍ରସ୍ତାବ କରିବି । ଏଥି ମଧ୍ୟରେ ମୋତେ ସାହାଯ୍ୟ କରିବା ନିମନ୍ତେ ୨୩ ଜଣ କର୍ମଚାରୀ ଦେବା ପାଇଁ ବଡ଼ଲାଟଙ୍କ ପାଖରେ ପ୍ରସ୍ତାବ କରିବି । ସେମାନଙ୍କ ଦରମା ମୁଁ ଘରୁ ଦେବି ।"

"ସର୍ବଶେଷରେ ମୋର ଏକାନ୍ତ ପ୍ରାର୍ଥନା ଯେ ଦେଶର ଶିକ୍ଷିତ ଲୋକମାନେ କୃଷକମାନଙ୍କ କଥା ମନେରଖନ୍ତୁ । କୃଷକମାନେ ଦେଶର ଶକ୍ତି, ସେମାନେ ଜାତିର ଧ୍ରୁବତାରା । ସେମାନଙ୍କ ଉପରେ ନଜର ରଖି ଶାସନବୋଇତ ଚଳାଇଲେ ସମସ୍ତ ପ୍ରକାର ଶାନ୍ତି ସୁଖ ମିଳିବ ।"

ପରବର୍ଷ ବଜେଟ ଆଲୋଚନା ବେଳେ ମଧ୍ୟ ମନ୍ତ୍ରୀ ମଧୁବାବୁ ଏହି ପ୍ରସଙ୍ଗ ଉଠାଇ ଥିଲେ । ସେ କହିଥିଲେ ଯେ, "ଚିକିତ୍ସା ବିଭାଗର ଆଇ. ଏମ୍. ଏସ. (I. M.S.) ଅଫିସର ମାନେ ଯୁକ୍ତ ବିଭାଗର ଲୋକ । ଅଣ-ଯୁକ୍ତ ବିଭାଗୀୟ ଅଫିସରମାନେ ସେମାନଙ୍କ ଅଧୀନରେ କାମକରୁଥିବା ଆଇ. ଏମ୍. ଏସ୍. ଡାକ୍ତରମାନଙ୍କୁ ଶାସନ କରିବାକୁ ଅକ୍ଷମ । ପୁଣି ଏହି ଡାକ୍ତରମାନେ ଗ୍ରାମଲୋକଙ୍କ ସହିତ କିପରି ବ୍ୟବହାର କରିବାକୁ ହେବ, ତାହା ଜାଣନ୍ତି ନାହିଁ । ମନ୍ତ୍ରୀଙ୍କ ଦରମା ହ୍ରାସ କିମ୍ବା ବୃଦ୍ଧି ବ୍ୟବସ୍ଥାପକ ସଭାରେ ଭୋଟଦ୍ୱାରା ହୋଇ-ପାରିବ; କିନ୍ତୁ ଏହି ଆଇ. ଏମ୍. ଏସ୍. ଡାକ୍ତରଙ୍କ ଦରମା ବ୍ୟବସ୍ଥାପକ ସଭାରେ ଭୋଟଦ୍ୱାରା କମ୍ ବେଶି ହୋଇପାରିବ ନାହିଁ । ସ୍ୱାସ୍ଥ୍ୟ ବିଭାଗରେ ଯେଉଁ ସବୁ ଭୁଲ ଭ୍ରାନ୍ତି ଘଟେ, ତାହା ଆଇ. ଏମ୍. ଏସ୍. ଅଫିସରମାନଙ୍କ ତ୍ରୁଟି ଯୋଗୁଁ ଘଟେ; କିନ୍ତୁ ଏହି ଅଫିସରମାନଙ୍କ ଉପରେ ବ୍ୟବସ୍ଥାପକ ସଭାର କିମ୍ବା ମନ୍ତ୍ରୀଙ୍କର କୌଣସି କ୍ଷମତା ନାହିଁ; ମାତ୍ର ବିଭାଗୀୟ ସମସ୍ତ ପ୍ରକାର ଦୋଷ ନିମନ୍ତେ ମନ୍ତ୍ରୀଙ୍କୁ ଦାୟୀ କରାଯାଏ ।" ସେ କହିଲେ ଯେ, "ଜଣେ ସିଭିଲସର୍ଜନଙ୍କୁ ବଦଳି କିମ୍ବା ବରଖାସ୍ତ କରିବାର ଅଧିକାର ମନ୍ତ୍ରୀଙ୍କର ନାହିଁ; କିନ୍ତୁ ଜଣେ ସିଭିଲ୍ ସର୍ଜନ୍ ମନ୍ତ୍ରୀଙ୍କ ଆଦେଶ ଲଂଘନ କଲେ ମନ୍ତ୍ରୀ କଣ କରି ପାରିବେ ?"

ମନ୍ତ୍ରୀଙ୍କର କ୍ଷମତାର ଅଭାବ ଅସୁବିଧା ଓ ସେହି କାରଣରୁ ତାଙ୍କର ଦୟନୀୟ ଅବସ୍ଥା ମଧୁବାବୁ ଅତି ଚମତ୍କାର ଭାବରେ ପ୍ରମାଣ ସହି ବୁଝାଇଥିଲେ । ଦେଶରେ ଜନ-ସାଧାରଣଙ୍କ ଉପରେ ମଧୁବାବୁଙ୍କର ଏ ସ୍ପଷ୍ଟୋକ୍ତି ଓ ସରକାରୀ କଳର ଜ୍ୱଳନ୍ତ ଚିତ୍ର ବିଶେଷ ରେଖାପାତ କରିଥିଲା ।

ଶାସନ ସଂସ୍କାର ନୀତି ଯେ ଗୋଟିଏ ତାମସା ସ୍ୱରୂପ ହୋଇଅଛି, ତାହା ମଧୁବାବୁ ଅତି ସ୍ପଷ୍ଟଭାବରେ ପ୍ରକାଶ କରି କହିଛନ୍ତି, "ଏପରି ଶାସନନୀତିଦ୍ୱାରା କୌଣସି ପ୍ରକାର ଉପକାର ସାଧିତ ହୋଇପାରିବ ବୋଲି କେହି କସ୍ମିନ୍‌କାଳେ ବିଶ୍ୱାସ କରି ପାରିବେ ନାହିଁ ।

ସିଭିଲ୍ ହସ୍‌ପିଟାଲ୍‌ର ଇନ୍‌ସ୍‌ପେକ୍ଟର ଜେନେରାଲ୍ (ଡାକ୍ତର ବିଭାଗର ସର୍ବୋଚ୍ଚ କର୍ମଚାରୀ) ମିଃ ହାମାଣ୍ଡ ( Mr. Hammand ) ଓ ସରକାରଙ୍କ ଚିଫ୍ ସେକ୍ରେଟେରୀ ମନ୍ତ୍ରୀ ମିଃ ଦାସଙ୍କ ମତକୁ ସମର୍ଥନ କରିନଥିଲେ ।

ମଧୁବାବୁ ବିହାର-ଓଡ଼ିଶା ସରକାରଙ୍କ ସ୍ଥାନୀୟ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀଥାଇ ସରକାରୀ କଳକୁ ବ୍ୟବସ୍ଥାପକ ସଭା ଗୃହରେ ଯେପରି ଭାବରେ ସମାଲୋଚନା କଲେ, ତାହା ସମଗ୍ର ଭାରତବର୍ଷରେ ଚହଳ ପକାଇ ଦେଇଥିଲା । ମନ୍ତ୍ରିତ୍ୱ ତ୍ୟାଗକରିବା ପରେ କେହି ଏପରି ସମାଲୋଚନା କଲେ ତାହାକୁ ସ୍ୱାଭାବିକ ଘଟଣାରୂପେ ଲୋକେ ଧରିନେଇଥାଆନ୍ତି ଏବଂ ଏହି ସମାଲୋଚନାର କଟୁତ୍ୱ ଅନୁସାରେ ଏହାର ମୂଲ୍ୟାମୂଲ୍ୟ ବିଚାର କରାଯାଇଥାଏ । କିନ୍ତୁ ମନ୍ତ୍ରୀ ଥିବାବେଳେ ମନ୍ତ୍ରୀଙ୍କର ଏଭଳି ସମାଲୋଚନାକୁ ଆତ୍ମସମାଲୋଚନା ବୋଲି କୁହାଯାଇଥାଏ ଏବଂ ମନ୍ତ୍ରୀ ଥାଇ ସରକାରଙ୍କୁ ଏପରି ସମାଲୋଚନା କରିବା ନୀତିବିରୁଦ୍ଧ

ବୋଲି ମଧ୍ୟ ମତ ପ୍ରକାଶ ପାଇଥାଏ । ତେବେ, ମଧୁବାବୁଙ୍କ ପ୍ରତିଷ୍ଠା ଓ ଅଭିଜ୍ଞତା ଦୃଷ୍ଟିରୁ ତାହାଙ୍କର ଏ ସମାଲୋଚନା ଭାରତରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ବିଶେଷତଃ, ସରକାରଙ୍କ ସମାଲୋଚକମାନେ ଓ ବିଧାନସଭାମାନଙ୍କର ବିରୋଧୀ ଦଳର ସଭ୍ୟମାନେ ଏହାକୁ ଦୃଷ୍ଟାନ୍ତ ସ୍ୱରୂପ ଉଦ୍ଧାରକରି ଶାସନ ସଂସ୍କାରରେ ଦିଆଯାଇଥିବା ସ୍ୱାୟତ୍ତଶାସନ ପ୍ରକୃତରେ "ସ୍ୱାୟତ୍ତ" ନ ହୋଇ ଅନ୍ତଃସାରଶୂନ୍ୟ ଥିବା ଦର୍ଶାଉଥିଲେ ଏବଂ ଜଣେ ମନ୍ତ୍ରିତ୍ୱ ଅନୁଭୂତିର ସ୍ୱୀକାରୋକ୍ତିକୁ ଅକାଟ୍ୟ ପ୍ରମାଣରୂପେ ଉପସ୍ଥାପିତ କରିଥିଲେ ।

ମଧୁବାବୁ 'ସ୍ୱାୟତ୍ତଶାସନ', 'ସାଧାରଣ ଲୋକଙ୍କ ଅଧିକାର', 'ମନ୍ତ୍ରୀଙ୍କ ଦାୟିତ୍ୱ' ପ୍ରଭୃତିର ଅନ୍ତଃସାରଶୂନ୍ୟତାକୁ ଅତି ଚମତ୍କାର ଅଥଚ ସ୍ପଷ୍ଟଭାବରେ ବ୍ୟକ୍ତ କରିଥିଲେ । ଏକରେ, ମନ୍ତ୍ରୀ ପ୍ରଦେଶର ଲୋକସାଧାରଣଙ୍କର ସ୍ୱାସ୍ଥ୍ୟୋନ୍ନତି ନିମନ୍ତେ ଦାୟୀ ହେଲେ ମଧ୍ୟ ଏ କାର୍ଯ୍ୟ ତୁଲାଇବା ପାଇଁ ତାଙ୍କୁ ଯଥେଷ୍ଟ କ୍ଷମତା ଦିଆଯାଇନାହିଁ । ଦୁଇରେ, ଉପଯୁକ୍ତ ଲୋକଙ୍କୁ ବାଛି-କାମ କରିବାର କ୍ଷମତା ମଧ୍ୟ ମନ୍ତ୍ରୀଙ୍କୁ ଦିଆଯାଇନାହିଁ । ତିନିରେ, ସରକାରଙ୍କ ଶାସନ ବିଭାଗ ଦୁଇ ଭାଗରେ ବିଭକ୍ତ ହୋଇ ଗୋଟିଏ ଭାଗ ମନ୍ତ୍ରୀଙ୍କ ହାତରେ ରହିଥିବାରୁ ଲୋକେ ବିଚାରୁଥିଲେ ଯେ ମନ୍ତ୍ରୀ ଏଠାରେ ସର୍ବେସର୍ବା; କିନ୍ତୁ ପ୍ରକୃତରେ ମନ୍ତ୍ରୀଙ୍କର ଏଭଳି କ୍ଷମତା ନଥିଲା । ଚାରିରେ, ସମଗ୍ର ପୃଥିବୀରେ ଏଭଳି କ୍ଷମତାଶୂନ୍ୟ ମନ୍ତ୍ରୀ ନାହାନ୍ତି । ଜଣେ "ସ୍ୱାୟତ୍ତ ଶାସନ" ମନ୍ତ୍ରୀଙ୍କ ଏହି ସ୍ୱୀକାରୋକ୍ତି ବ୍ରିଟିଶ୍ ସରକାର ଭାରତକୁ ଯେଉଁ ଅନ୍ତଃସାରଶୂନ୍ୟ କ୍ଷମତା ଦେଇଥିଲେ, ତାହାର ନଗ୍ନରୂପ ପ୍ରକାଶ କରିଦେଇଥିବାରୁ ଦେଶର ସବୁ ଶ୍ରେଣୀର ଲୋକେ କ୍ଷୁବ୍ଧ ହୋଇଥିଲେ ଏବଂ ସମାଲୋଚକ-ମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

ଏତେ ଅସୁବିଧା ସତ୍ତ୍ୱେ ମଧୁବାବୁ ଯେଉଁ ଦାୟିତ୍ୱ ନେଇଥିଲେ, ତାହାକୁ ତୁଲାଇବା ପାଇଁ ସେ ଯଥାସାଧ୍ୟ ଚେଷ୍ଟା କରିଥିବା ବ୍ୟକ୍ତ କରିଥିଲେ । ସୀମିତ ପରିସର ଭିତରେ ସେ ନିଜର କର୍ତ୍ତବ୍ୟ ନିଷ୍ଠାର ସହିତ ପାଳନ କରିଥିଲେ, ଏହା ନିଶ୍ଚିତ । ତାହାର ସମାଲୋଚକ-ମାନେ ମଧ୍ୟ ଏହା ସ୍ୱୀକାର କରିଛନ୍ତି ।

ମଧୁବାବୁ ଟଙ୍କାକୁ ଲୋଭକରି ମନ୍ତ୍ରିତ୍ୱ ଗ୍ରହଣ କରି ନଥିବା ସ୍ପଷ୍ଟ ଭାବରେ କହିଛନ୍ତି । "ଅର୍ଥ ମୋ ପ୍ରତି ଅତି ତୁଚ୍ଛ ପଦାର୍ଥ । ମୁଁ ତାକୁ ଧୂଳିପରି ଜ୍ଞାନ କରେ; ଯେକୌଣସି ସମୟରେ ଫିଙ୍ଗି ଦେଇପାରେ ।" ସେ ଟଙ୍କା ଲୋଭରେ ମନ୍ତ୍ରିତ୍ୱ ଗ୍ରହଣ କରିଛନ୍ତି ଏବଂ ସ୍ୱାଧୀନତା ଆନ୍ଦୋଳନ ଅତି ତୀବ୍ର ଆକାର ଧାରଣ କରିଥିବା ବେଳେ ବିଦେଶୀ ସରକାରଙ୍କୁ ସାହାଯ୍ୟ କରୁଛନ୍ତି ବୋଲି ତାଙ୍କୁ ଦେଶହିତାକାଙ୍କ୍ଷୀମାନଙ୍କ ମଧ୍ୟରୁ ବହୁଲୋକ ସମାଲୋଚନା କରୁଥିଲେ । ଏମାନଙ୍କ ଭିତରେ ତାଙ୍କର ବନ୍ଧୁ ସହକର୍ମୀ ମଧ୍ୟ ଥିଲେ । କଂଗ୍ରେସ ପନ୍ଥୀମାନେ ଉଗ୍ରଭାବରେ ସଭାସମିତିରେ ତାଙ୍କୁ ଆକ୍ରମଣ କରୁଥିଲେ । ଦେଶମିଶ୍ରଣ ଓ ପ୍ରଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ତାଙ୍କର ଆପ୍ରାଣ ଚେଷ୍ଟାକୁ ଲୋକଙ୍କୁ ସ୍ମରଣ କରାଇ

ତାଙ୍କର ପୂର୍ବର ଭକ୍ତମାନଙ୍କ ଭିତରୁ କେହି କେହି ବର୍ତ୍ତମାନ ତାଙ୍କର ପତନ ଘଟିଛି ବୋଲି ମଧ୍ୟ କ୍ଷୋଭ ପ୍ରକାଶ କରୁଥିଲେ । ଏମାନଙ୍କ ଯୁକ୍ତିକୁ ଖଣ୍ଡନ କରିବା ପାଇଁ ମଧୁବାବୁ ବ୍ୟବସ୍ଥାପକ ସଭାରେ ପୂର୍ବୋକ୍ତ ମନ୍ତବ୍ୟ ପ୍ରକାଶ କରିଥିବା ଅନୁମିତ ହୁଏ ।

ସରକାରଙ୍କ କୋଷରୁ ବେତନ ନନେଇ ମନ୍ତ୍ରୀ ହେବା ମାର୍ଗକୁ ମଧୁବାବୁ ପସନ୍ଦ କରୁଥିବା ବିଷୟ ଏହାର ବର୍ଷକ ଆଗରୁ ସେ ବ୍ୟବସ୍ଥାପକ ସଭାରେ ବ୍ୟକ୍ତ କରିଥିଲେ । ଏବେ ମଧ୍ୟ ସେହି କଥାକୁ ପୁନର୍ବାର ବ୍ୟକ୍ତ କରିଥିଲେ; କିନ୍ତୁ ମନ୍ତ୍ରିମଣ୍ଡଳର ତାଙ୍କର ସହମନ୍ତ୍ରୀମାନେ ଏହାକୁ ସମର୍ଥନ କରି ନଥିଲେ । ନିର୍ଦ୍ଧାରିତ କ୍ଷମତା ଭିତରେ କାର୍ଯ୍ୟକରି ଯେତିକି ସାଧାରଣଙ୍କ ପାଇଁ ସୁବିଧା ଉଠାଇ ପାରିହେବ ତାହା କରିବାପାଇଁ ସେମାନେ ମତବ୍ୟକ୍ତ କରୁଥିଲେ । ବ୍ରିଟିଶ ସରକାର କାଳକ୍ରମେ ଏ କ୍ଷମତା ପରିସର ବୃଦ୍ଧି କରିବେ ବୋଲି ମଧ୍ୟ ସେମାନଙ୍କର ବିଶ୍ୱାସ ଥିଲା ।

ମଧୁବାବୁ ବେସରକାରୀ ମନ୍ତ୍ରୀଙ୍କୁ "ପେଡ଼ୃ" ସହିତ ତୁଳନା କରିଥିବା ପ୍ରସଙ୍ଗ ଭାରତର ବିଭିନ୍ନ ପ୍ରଦେଶରେ ପ୍ରଚାରିତ ହୋଇଥିଲା ଏବଂ ସ୍ୱାଧୀନତାକାମୀମାନେ ଏହାକୁ ସ୍ୱଭାଷଣମାନଙ୍କରେ ବାରମ୍ବାର ଉଦ୍ଧାର କରୁଥିଲେ । ମଧୁବାବୁଙ୍କ ସ୍ପଷ୍ଟୋକ୍ତି ବ୍ରିଟିଶ୍ ସରକାରଙ୍କ "ସ୍ୱାୟତ୍ତଶାସନ ଅଧିକାର ପ୍ରଦାନ" ସପକ୍ଷର ସବୁ ଯୁକ୍ତିକୁ ଅକାମୀ କରିଦେଇଥିଲା ଏବଂ ଏହା ପ୍ରକୃତରେ ଅଧିକାର ନୁହେଁ, ଏକ ଛଳନା ମାତ୍ର; ଏହା ସମସ୍ତେ ବୁଝିପାରିଲେ । ଏହି ନିର୍ଭୀକ ଓ ସ୍ପଷ୍ଟ ସମାଲୋଚନାମୂଳକ ଭାଷଣ ଯୋଗୁଁ ମଧୁବାବୁ ସମସାମୟିକ ଭାରତରେ ଜଣେ ବିଚକ୍ଷଣ ନିର୍ଭୀକ ଓ ସର୍ବପ୍ରଥମ ସରକାର ସମାଲୋଚକ ମନ୍ତ୍ରୀରୂପେ ଖ୍ୟାତିଲାଭ କରିଥିଲେ । ଏଥିରେ ଓଡ଼ିଆମାନେ ମଧ୍ୟ ବିଶେଷ ଭାବରେ ଗୌରବ ଅନୁଭବ କରିଥିଲେ । ମଧୁବାବୁ ମନ୍ତ୍ରିତ୍ୱ ଗ୍ରହଣ କଲାବେଳେ ତାଙ୍କ ବିରୋଧରେ ଯେଉଁ ତୀବ୍ର ସମାଲୋଚନା ଓ ବିଦ୍ରୂପର ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା ତାହା କେତେକ ପରିମାଣରେ ହ୍ରାସ ପାଇଯାଇଥିଲା । ମଧୁବାବୁ ମନ୍ତ୍ରିତ୍ୱ ତ୍ୟାଗ କରିବା ପରେ ଏହି ପ୍ରତିକୂଳ ବାୟୁମଣ୍ଡଳ ଲୋପପାଇ ଯାଇଥିଲା ।

## ୬୮ । ମଧୁବାବୁଙ୍କ ମନ୍ତ୍ରିତ୍ୱ ତ୍ୟାଗ

**ମନ୍ତ୍ରୀ ମଧୁବାବୁଙ୍କ ତ୍ୟାଗସ୍ୱୀକାର :** ଖ୍ରୀ: ୧୯୨୩ର ପ୍ରାରମ୍ଭରେ ମାନ୍ୟବର ମନ୍ତ୍ରୀ ମଧୁସୂଦନ ଦାସ ଘୋଷଣା କଲେ ଯେ ସେ ବିନା ବେତନରେ ଏହି ବର୍ଷଟି ମନ୍ତ୍ରୀକାର୍ଯ୍ୟ ନିର୍ବାହ କରିବେ । ସରକାରଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବା ସରକାରଙ୍କ ପକ୍ଷରୁ ବାରମ୍ବାର ଘୋଷଣା କରିଯାଉଥିବା ଦୃଷ୍ଟିରୁ ମଧୁବାବୁ ଏହି ତ୍ୟାଗ ଘୋଷଣା କରିଥିଲେ । ବିନା ବେତନରେ ମନ୍ତ୍ରୀମାନେ କାମ କରିବା ଉଚିତ ବୋଲି ମଧୁବାବୁ

ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଏକାଧିକ ବାର ମତ ବ୍ୟକ୍ତ କରିଥିଲେ । ଅନ୍ୟ ମନ୍ତ୍ରୀମାନେ ମଧ୍ୟ ଏହି ବର୍ଷ ନିଜ ନିଜ ବେତନରୁ ଏକହଜାର ଟଙ୍କା ହ୍ରାସ କରିଦେଇଥିଲେ ।

ମାସକୁ ୫୦୦୦ ଟଙ୍କାର ମୋହ ତୁଟାଇବା କିଛି ସହଜ କି ସାଧାରଣ କଥା ନୁହେଁ । ବିଶେଷତଃ, ମଧୁବାବୁଙ୍କ ଆର୍ଥିକ ଅବସ୍ଥା ମଧ୍ୟ ସେତେବେଳେ ଆଦୌ ସନ୍ତୋଷ-ଜନକ ନଥିଲା । ଉତ୍କଳ ଟାନେରୀ ଯୋଗୁଁ ସେ ଲକ୍ଷାଧିକ ଟଙ୍କା ଋଣ କରିଥିଲେ; ସେ ଋଣରେ ବୁଡ଼ିଯାଇଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବାର୍ଷିକ ପ୍ରାୟ ଷାଠିଏ ପଞ୍ଚଷଠି ହଜାର ଟଙ୍କା ତ୍ୟାଗକରିବା ଏକ ମହାନ୍ ତ୍ୟାଗ, ଏଥିରେ ସନ୍ଦେହ ନାହିଁ । ମଧୁବାବୁ ଟଙ୍କା ଲୋଭରେ ମନ୍ତ୍ରିତ୍ୱ ଗ୍ରହଣ କରିଛନ୍ତି ବୋଲି ଯେଉଁ ଭ୍ରାନ୍ତ ସମାଲୋଚନା ହେଉଥିଲା, ତାହା ଏହି ଘୋଷଣା ଫଳରେ ବହୁଳାଂଶରେ ଦୂର ହୋଇଯାଇଥିଲା । ମଧୁବାବୁ ବିଧାନସଭାରେ ସ୍ପଷ୍ଟଭାବରେ ବ୍ୟକ୍ତ କରିଥିଲେ ଯେ ସେ ଅର୍ଥକୁ ଧୂଳିତୁଲ୍ୟ ଜ୍ଞାନ କରନ୍ତି ଏବଂ ଯେ କୌଣସି ମୁହୂର୍ତ୍ତରେ ତାହା ଫୋପାଡ଼ି ଦେଇ ପାରନ୍ତି । ମଧୁବାବୁଙ୍କ କଥା ଓ କାର୍ଯ୍ୟ ଭିତରେ ପ୍ରଭେଦ ନ ଥିବା ଏହି ବେତନ ତ୍ୟାଗର ଘୋଷଣା ପ୍ରମାଣିତ କରିଛି ।

**ମନ୍ତ୍ରିତ୍ୱ ତ୍ୟାଗ :** ଖ୍ରୀ: ୧୯୨୩ ବଜେଟ ଅଧିବେଶନବେଳେ ମଧୁବାବୁ ବିହାର-ଓଡ଼ିଶା ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ ଏବଂ ତାଙ୍କ ଇସ୍ତଫାକୁ ଲାଟସାହେବ ଗ୍ରହଣ କରିନେଇଥିଲେ । ମଧୁବାବୁ ଲାଟସାହେବ ହ୍ୱିଲର୍ (Sir Henry Wheeler)ଙ୍କ ଠାକୁ ଏକ ପତ୍ର ଲେଖି ଜଣାଇଥିଲେ ଯେ, ସେ ବିନା ବେତନରେ ମନ୍ତ୍ରୀରୂପେ କାର୍ଯ୍ୟ କରିବାକୁ ଓ ତାହା ସଙ୍ଗେ ଓକିଲାତି କରି ଜୀବିକା ନିର୍ବାହ କରିବାକୁ ଚାହାନ୍ତି । ଏଥିନିମନ୍ତେ ସେ ଲାଟଙ୍କ ଅନୁମତି ମାଗିଥିଲେ । ଲାଟ ମଧୁବାବୁଙ୍କ ଉଭୟ ପ୍ରାର୍ଥନାକୁ ଗ୍ରହଣ ନକରିବାରୁ ସେ ମନ୍ତ୍ରିତ୍ୱରୁ ଇସ୍ତଫା ଦେଲେ ଏବଂ ଲାଟସାହେବ ଏହି ଇସ୍ତଫାକୁ ଗ୍ରହଣ କରିନେଇଥିଲେ ।

ପ୍ରାୟ ବର୍ଷକ ତଳେ ଖ୍ରୀ: ୧୯୨୨ ଫେବୃଆରି ୨୧ ତାରିଖରେ ମନ୍ତ୍ରୀ ମି: ଦାସ ଏହି ସମ୍ପର୍କରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ କହିଥିଲେ, "ଯେଉଁ ଅନୁଷ୍ଠାନରେ ସବୁ କର୍ମୀ ଅବୈତନିକ, ସେଥିରେ ବେତନଭୋଗୀ ମନ୍ତ୍ରୀ ରହିବାଦ୍ୱାରା ତାହାର ସାମ୍ୟ ଓ ଐକ୍ୟ ନଷ୍ଟ ହୋଇଯାଉଛି । ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ଅବୈତନିକ ହେବା ଉଚିତ ।" ସେ ପୁଣି କହିଥିଲେ, "ଏହି ପଦବୀକୁ ଅବୈତନିକରେ ପରିଣତ କରିବାକୁ ହେଲେ, ବର୍ତ୍ତମାନର ଅଫିସ୍‌କଲରେ କେତେକ ପରିବର୍ତ୍ତନ ଓ ପୁନର୍ଗଠନ ଆବଶ୍ୟକ । ବର୍ତ୍ତମାନର ବ୍ୟବସ୍ଥାକୁ ପରିବର୍ତ୍ତନ କରିବା ମୋର ଇଚ୍ଛା ନୁହେଁ; କିନ୍ତୁ ଜଣେ ବା ଦୁଇଜଣ ଅତିରିକ୍ତ ଅଫିସର ଦେବାପାଇଁ ଲାଟସାହେବଙ୍କୁ ଆବେଦନ କରିବି ଏବଂ ଏମାନଙ୍କ ବେତନ ମୋ

ନିଜ ହାତରୁ ଦେବ, ଏହା ମୋର ଇଚ୍ଛା । ମୁଁ ଆଶା କରୁଛି, ଭଗବାନ ସହାୟ ହେଲେ, ଆସନ୍ତା ବର୍ଷ ବଜେଟ ଆଲୋଚନା ଅଧିବେଶନରେ ସ୍ୱାୟତ୍ତଶାସନ ବିଭାଗରେ ଜଣେ ଅବୈତନିକ ମନ୍ତ୍ରୀ ରହିବା ସମ୍ବନ୍ଧରେ ଏକ ଯୋଜନା ଉପସ୍ଥାପିତ କରିପାରିବି ।"

ଏଥିରୁ ଜଣାଯାଉଛି ଯେ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ଅବୈତନିକ ହେବା ବିଷୟରେ ସେ ବହୁ ଦିନରୁ ଚିନ୍ତା କରୁଥିଲେ । ଏହାର ସୂଚନା ଖ୍ରୀ: ୧୯୨୧ରୁ ମଧ୍ୟ ମିଳୁଥିଲା ।

ଖ୍ରୀ: ୧୯୨୧ ରେ ବିହାର ଓ ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲର ଅଧିବେଶନରେ କେତେଜଣ ବେସରକାରୀ ସଭ୍ୟ ମନ୍ତ୍ରୀମାନଙ୍କର ଦରମା ହ୍ରାସ କରିବା ପାଇଁ ଦାବୀକରି ପ୍ରସ୍ତାବ ଦେଇଥିଲେ । ସାର ଗଣେଶଦତ୍ତ ସିଂହ (ମନ୍ତ୍ରୀ) ପ୍ରସ୍ତାବ କରିଥିଲେ ଯେ ମନ୍ତ୍ରୀମାନଙ୍କ ଦରମା ପାଞ୍ଚହଜାର ଟଙ୍କା ସ୍ଥଳେ ଏକହଜାର ଟଙ୍କା ହେଉ । ଏହି ପ୍ରସ୍ତାବ ଉପରେ ଏକାଧିକ ସଂଶୋଧନ ପ୍ରସ୍ତାବ ଆସିଥିଲା । ମି: ମଧୁସୂଦନ ଦାସ ମନ୍ତ୍ରୀଙ୍କ ଦରମାହ୍ରାସ ସପକ୍ଷରେ ନଥିଲେ; କିନ୍ତୁ ସେ କହୁଥିଲେ, ଦରମା ନନେଇ ମନ୍ତ୍ରୀମାନେ କାମ କରନ୍ତୁ, ଯଦି ମନ୍ତ୍ରୀମାନେ ଦରମା ନେବେ ତାହାହେଲେ ସେମାନଙ୍କ ମର୍ଯ୍ୟାଦା ଅନୁଯାୟୀ ଦରମା ଦିଆଯାଉ, କିନ୍ତୁ ଦରମା କମାଇଦେବାଦ୍ୱାରା ମନ୍ତ୍ରୀମାନଙ୍କ ମର୍ଯ୍ୟାଦାହାନି ହେବ ଏବଂ ଏହାର କୁପ୍ରଭାବ ଶାସନ-କ୍ଷେତ୍ରରେ ପଡ଼ିବ । ବ୍ୟବସ୍ଥାପକସଭା ଗଣେଶଦତ୍ତ ସିଂହଙ୍କ ପ୍ରସ୍ତାବକୁ ଗ୍ରହଣ କରି ନଥିଲେ ।

ଏହାର ଦୁଇ ବର୍ଷ ପରେ ଖ୍ରୀ: ୧୯୨୩ରେ ସାର୍ ଗଣେଶଦତ୍ତ ସିଂହ ପୁଣି ଥରେ ବଜେଟ ଅଧିବେଶନବେଳେ ବ୍ୟବସ୍ଥାପକ ସଭାରେ ମନ୍ତ୍ରୀଙ୍କ ବେତନ ଟ ୫୦୦୦ ସ୍ଥଳେ ଟ୪୦୦୦ ହେବା ଦାବୀ କରି ପ୍ରସ୍ତାବ ଆଣିଥିଲେ । ମନ୍ତ୍ରୀମାନଙ୍କ ଭିତରେ ଏହାର ବହୁ ଆଲୋଚନା ହୋଇଥିଲା । ମଧୁବାବୁ କହିଲେ ଯେ ସେ ପୂରା ବେତନ କିମ୍ବା ବିନା ବେତନରେ କାମ କରିବେ ସିନା, ହ୍ରାସକୃତ ବେତନ ତାଙ୍କପକ୍ଷେ ଗ୍ରହଣୀୟ ନୁହେଁ; କିନ୍ତୁ ମଧୁବାବୁଙ୍କ ଯୁକ୍ତିକୁ ବ୍ୟବସ୍ଥାପକ ସଭା ଗ୍ରହଣ କରିନଥିଲେ । ମନ୍ତ୍ରିମଣ୍ଡଳର ଆଉ ଜଣେ ମନ୍ତ୍ରୀ ସାର୍ ଫକରୁଦ୍ଦିନ ମଧୁବାବୁଙ୍କୁ ଘରୋଇ ଭାବରେ ଆଶ୍ୱାସନା ଦେଲେ ଯେ ସେ ନିଜେ ଦରମା କମାଇଦେବା ସପକ୍ଷରେ ନୁହଁନ୍ତି; କିନ୍ତୁ ବ୍ୟବସ୍ଥାପକ ସଭାରେ ଫକରୁଦ୍ଦିନ ଦରମାକାଟ ପ୍ରସ୍ତାବକୁ ଗ୍ରହଣ କରିନେଲେ । ମଧୁବାବୁ ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ନଥିଲେ ମଧ୍ୟ ଫକରୁଦ୍ଦିନଙ୍କ ଏହି କାର୍ଯ୍ୟକୁ ସେ ପସନ୍ଦ କରି ନ ଥିଲେ ଏବଂ ଏହାକୁ ସହଯୋଗୀ ମନ୍ତ୍ରୀଙ୍କର ବିଶ୍ୱାସଭଙ୍ଗ ସ୍ୱରୂପ ବିବେଚନା କଲେ । ତାଙ୍କ ମନରେ ବନ୍ଧୁଙ୍କ ପ୍ରତି ଦୁଃଖ ଜାତ ହୋଇଥିଲା ଏବଂ ସେ ବ୍ୟଥିତ ହୋଇଥିଲେ ମଧ୍ୟ କେବଳ ବନ୍ଧୁଙ୍କ ମର୍ଯ୍ୟାଦାରକ୍ଷା ନିମନ୍ତେ ସେ ବ୍ୟବସ୍ଥାପକସଭାରେ ବନ୍ଧୁଙ୍କ ଘୋଷଣାକୁ ସମର୍ଥନ କରିଥିଲେ ।

ଏହା ପରେ ମଧୁବାବୁ ତାଙ୍କର ପୂର୍ବ ମତକୁ ବଜାୟ ରଖିବା ନିମନ୍ତେ ମନ୍ତ୍ରିପଦରୁ ଇସ୍ତଫା ଦେଲେ । ଇସ୍ତଫା ନଦେବା ପାଇଁ ବନ୍ଧୁମାନଙ୍କର ଓ ଲାଟସାହେବଙ୍କ ଅନୁରୋଧକୁ ସେ ରକ୍ଷା କରି ନଥିଲେ ।

ସେତେବେଳକୁ ମଧୁବାବୁଙ୍କ ବୟସ ୭୫ ବର୍ଷ । ୭୫ ବର୍ଷ ବୟସରେ ତାଙ୍କର ରୋଜଗାରର ପନ୍ଥା ମଧ୍ୟ ପ୍ରଶସ୍ତ ନଥିଲା । ନିଜର ଆର୍ଥିକ ଅବସ୍ଥା ମଧ୍ୟ ଅସ୍ୱଚ୍ଛଳ ହୋଇଯାଇଥିଲା । ଦେଣାର ପରିମାଣ ମଧ୍ୟ କମ୍ ନଥିଲା । ଆଉ ଦୁଇ ତିନିବର୍ଷ ମନ୍ତ୍ରୀରୂପେ ରହିଯାଇଥିଲେ, ହୁଏତ ଋଣରୁ ମୁକ୍ତ ହେବାର କିଛି ଆଶା ଥିଲା । ମାସିକ ୫୦୦୦ ଟଙ୍କାର ଲୋଭ ସେ ନିଜର ସୁପ୍ରତିଷ୍ଠିତ ନୀତି ପାଇଁ ଏକ ମୁହୂର୍ତ୍ତିରେ ତ୍ୟାଗକରି ନିର୍ବିକାର ଚିତ୍ତରେ ସ୍ୱସ୍ଥାନକୁ ଫେରିଆସିଲେ । ମଧୁବାବୁ ସ୍ୱହସ୍ତରେ ଇସ୍ତଫାପତ୍ର ଲେଖି ଲାଟ-ସାହେବଙ୍କଠାରେ ଦାଖଲ କରିଥିଲେ । ମଧୁବାବୁ କାଟ ହାରରେ ଦରମା ନେବାକୁ ରାଜି ଥିବା ଘୋଷଣା କରିବା ପରେ ଇସ୍ତଫା ଦେବା ଘଟନା ଉଚ୍ଚ କର୍ମଚାରୀ ଓ ବନ୍ଧୁମାନଙ୍କ ମହଲରେ ଆଲୋଡ଼ନ ସୃଷ୍ଟି କରିଥିଲା । ତାଙ୍କର ନିକଟତମ ଲୋକେ ମତଦେଲେ ଯେ ମଧୁବାବୁ ସ୍ୱନୀତି ସହିତ ବନ୍ଧୁ ମନ୍ତ୍ରୀଙ୍କ ଆଚରଣକୁ ମିଶାଇ ଏହାର ବିଚାର କରିଥିଲେ ଏବଂ ଉଭୟଙ୍କୁ ସମଭାବରେ ଦେଖିଥିଲେ ।

ଏହାର କିଛିଦିନ ପରେ ମଧୁବାବୁ ନିଜର ଆର୍ଥିକ ଦୁରବସ୍ଥା ଚାପରେ ପଡ଼ି ବାଧ୍ୟହୋଇ କୋର୍ଟରେ ଦେବାଳିଆ ଘୋଷଣା ଦରଖାସ୍ତ ଦେଇଥିଲେ ।

**ଲାଟଙ୍କୁ ଚିଠି : ମନ୍ତ୍ରୀ ଓ ମନ୍ତ୍ରିତ୍ୱର ରୂପରେଖ** ମଧୁବାବୁ ମନ୍ତ୍ରୀ ଥିବାବେଳେ ତାଙ୍କର ମନ୍ତ୍ରୀ ଓ ମନ୍ତ୍ରିତ୍ୱ ସମ୍ବନ୍ଧରେ ଯେଉଁ ତିକ୍ତ ଅଭିଜ୍ଞତା ହୋଇଥିଲା, ତାହା ସେ ଏକାଧିକବାର ବ୍ୟବସ୍ଥାପକ ସଭାରେ ସ୍ପଷ୍ଟଭାବରେ ବ୍ୟକ୍ତ କରିପାରିଥିଲେ । ସେ ମନ୍ତ୍ରିତ୍ୱ ତ୍ୟାଗ କରିବା ଅଳ୍ପପୂର୍ବରୁ ବିହାର-ଓଡ଼ିଶା ପ୍ରଦେଶର ଲାଟ ମାନ୍ୟବର ସାର୍ ହେନେରି ହୁଇଲର୍‌ଙ୍କଠାକୁ ଖ୍ରୀ: ୧୯୨୩ର ବଜେଟ ଅଧିବେଶନ ଭିତରେ ଫେବୃଆରି ୭-୮ ତାରିଖରେ ଏକ ଚିଠି ପଠାଇଥିଲେ । ସେହି ଚିଠିରେ ମଧୁବାବୁ ଲେଖିଥିଲେ—

"ସ୍ୱାୟତ୍ତଶାସନ ସଂସ୍ଥାମାନଙ୍କର ଶାସନ, ଚିକିତ୍ସା, ସ୍ୱାସ୍ଥ୍ୟ, ରାସ୍ତାଘାଟ, ଜନଶିକ୍ଷା ପ୍ରଭୃତିର କାର୍ଯ୍ୟକଳାପଦ୍ୱାରା ଶାସନ ସଂସ୍କାରର ସଫଳତା ନିର୍ଣ୍ଣୟ କରିବାକୁ ହେବ; କିନ୍ତୁ ଏଗୁଡ଼ିକର ଶାସନଭାର ଜିଲ୍ଲାବୋର୍ଡ଼ ଓ ମୁନିସିପାଲିଟିଙ୍କୁ ହସ୍ତାନ୍ତର କରାଯାଇଛି । ଶାସନ ସଂସ୍କାରର ପରୀକ୍ଷା ସମୟରେ ଏହି ବିଭାଗମାନଙ୍କୁ ଉଠାଇ ଦିଆଯାଇଥିଲା ସେତେବେଳର ଅବସ୍ଥାକୁ ମୁହୂର୍ତ୍ତେ ଅନୁଧ୍ୟାନ କଲେ ଏଗୁଡ଼ିକର ପ୍ରାଧାନ୍ୟ ସହଜେ ଜଣାପଡ଼ିବ ।

"ନୂତନ ମ୍ୟୁନିସିପାଲ ଆଇନ୍ ଅନୁସାରେ ମ୍ୟୁନିସିପାଲିଟିର ପରିଚାଳନା ପାଇଁ ସମ୍ପୂର୍ଣ୍ଣରୂପେ ମ୍ୟୁନିସିପାଲ ବୋର୍ଡ଼ଙ୍କୁ ଦାୟୀ କରାଯାଇଛି । ବର୍ତ୍ତମାନ ଏହି ବ୍ୟବସ୍ଥାପକ କାଉନ୍‌ସିଲ ଗୃହରେ ଯେଉଁ ଆଇନଟି ବିଚାର ପାଇଁ ଅଛି, ସେଥିରେ ଗ୍ରାମାଞ୍ଚଳର ଶାସନ ପାଇଁ ଜିଲ୍ଲା ବୋର୍ଡ଼ଙ୍କୁ ଦାୟୀ କରାଯାଇଛି । ଯେଉଁସବୁ ଦାୟିତ୍ୱ ଲୋକଙ୍କର ହାତରେ ନ୍ୟସ୍ତ କରାଯାଇଛି, ସେହି ଦାୟିତ୍ୱକୁ ଦକ୍ଷତା ସହକାରେ ତୁଲାଇବା ପାଇଁ ଉପଯୁକ୍ତ ଦାୟିତ୍ୱଜ୍ଞାନ ଲୋକମାନଙ୍କଠାରେ ବିକାଶ ଲାଭ କରିନାହିଁ । ଏହି ଅବୈତନିକ ସଂସ୍ଥାମାନଙ୍କର ସଭ୍ୟହେବା

ଅର୍ଥ ରାଜା ଓ ଦେଶପ୍ରତି କର୍ତ୍ତବ୍ୟ ପାଳନକରିବା ନିମନ୍ତେ ତ୍ୟାଗ ସ୍ୱୀକାରକରିବା । ନୂତନ ଆଇନ ଅନୁସାରେ ଯେଉଁ ନୂତନ ସ୍ୱାୟତ୍ତଶାସନ ସଂସ୍ଥାଗୁଡ଼ିକ ଗଠିତ ହେବ, ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀଙ୍କ ନିର୍ଦ୍ଦେଶ ଓ ପରାମର୍ଶ ସେମାନଙ୍କର ସର୍ବଦା ଆବଶ୍ୟକ ହେବ । ସମଗ୍ର ପ୍ରଦେଶର ଅବୈତନିକ କର୍ମୀମାନଙ୍କ ଉପରେ ମନ୍ତ୍ରୀଙ୍କ ପ୍ରଭାବ ପଡ଼ିବ, ଯଦି ସେ ନିଜେ ଅବୈତନିକ କର୍ମୀ ହେବେ । ହଜାର ହଜାର ଅବୈତନିକ କର୍ମୀମାନଙ୍କ ଉପରେ ଜଣେ ବେତନଭୋଗୀ ରାଜକର୍ମଚାରୀ ପ୍ରଭୁତ୍ୱ ବିସ୍ତାର କରିବା ସଙ୍ଗତ ନୁହେଁ । ସେ କେବେ ଏହି କର୍ମୀମାନଙ୍କର ମାନ୍ୟ ପାଇ ପାରିବେ ନାହିଁ । ଫଳରେ ଲୋକଙ୍କ ମନରେ ଦେଶାତ୍ମବୋଧ ଓ ଦେଶହିତକର ଭାବ ଜାଗ୍ରତ କରାଇବା ସେମାନଙ୍କ ପକ୍ଷେ ସମ୍ଭବ ହୋଇ ପାରିବ ନାହିଁ । ପୁଣି ଲୋକଙ୍କଠାରେ ଯୋଜନାଗୁଡ଼ିକ ଉପହାସଯୋଗ୍ୟ କେବଳ ହେବ । ଯଦି ଶାସନ ସଂସ୍କାର ନିଶ୍ଚିତଭାବେ ସଫଳ ହେବା ଚାହାଁନ୍ତି, ତାହାହେଲେ ସ୍ୱାୟତ୍ତଶାସନର ମନ୍ତ୍ରୀ କୌଣସି ବେତନ ନେବା ଉଚିତ ନୁହେଁ; ସେ ଜଣେ ଅବୈତନିକ କର୍ମୀହେବା ଉଚିତ ।

"ଭାରତରେ ଲୋକସାଧାରଣଙ୍କର ସକ୍ରିୟ ସହାନୁଭୂତି ଓ ସହଯୋଗ ମିଳିବାର ପ୍ରଧାନ ଉପାୟ ହେଲା ବ୍ୟକ୍ତିଗତ ପ୍ରଭାବ । ଅବୈତନିକ ଭାବରେ କାର୍ଯ୍ୟକଲେ, ବ୍ୟକ୍ତିଗତ ପ୍ରଭାବ ଉପାର୍ଜ୍ଜନ ହୋଇପାରିବ । ଭାରତରେ ଗାନ୍ଧିଙ୍କର ଯେଉଁ ବ୍ୟକ୍ତିଗତ ପ୍ରଭାବ ଦେଖା-ଯାଉଛି, ତାହା ତାଙ୍କର ଅବୈତନିକ କାର୍ଯ୍ୟର ଫଳ ଥିବା ଦୃଢ଼ଭାବରେ ପ୍ରମାଣିତ କରି-ସାରିଛି ।

"ଶାସନସଂସ୍କାରର ଅଗ୍ରଗତିରେ ଅସହଯୋଗ ଆନ୍ଦୋଳନ ଏକ ପ୍ରଧାନ ପ୍ରତିବନ୍ଧକ । ଅସହଯୋଗୀମାନେ ଅନିଷ୍ଟକର ଜାଲ ବିସ୍ତାର କରିବାରେ କୃତକାର୍ଯ୍ୟ ହୋଇଛନ୍ତି । ଗାନ୍ଧି ଓ ସି. ଆର୍. ଦାସ ( ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ )ଙ୍କ ଭଳି ଅଳ୍ପ ସଂଖ୍ୟକ କେତେ ଜଣଙ୍କର ବ୍ୟକ୍ତିଗତ ପ୍ରଭାବ ସେମାନଙ୍କର ତ୍ୟାଗର ଫଳ । ଏହି ବିରୋଧୀ ଶକ୍ତି ସହିତ ଆମ୍ଭମାନଙ୍କୁ ଲଢ଼େଇ କରିବାକୁ ହେବ; କିନ୍ତୁ ଜଣେ ବେତନଭୋଗୀ ସ୍ୱାୟତ୍ତଶାସନ ବିଭାଗର ମନ୍ତ୍ରୀ ପକ୍ଷରେ ଏଥିରେ ଜୟଲାଭ କରିବାର ସୁଯୋଗ ନାହିଁ । ଦେଶାତ୍ମବୋଧର ଉଦ୍‌ବୁଦ୍ଧ ହୋଇଥିବା ଲୋକ ଆମ୍ଭମାନଙ୍କର ଆବଶ୍ୟକ । ସ୍ୱାୟତ୍ତଶାସନରେ କାର୍ଯ୍ୟ କରୁଥିବା ଅବୈତନିକ କର୍ମୀମାନେ ଏହି କ୍ଷେତ୍ରରେ ମୂଲ୍ୟବାନ୍ ପ୍ରତିରୋଧଶକ୍ତି ହୋଇପାରିବେ; କିନ୍ତୁ ଏହି ସମଗ୍ର ସଂଗଠନର ସାମ୍ୟ ଜଣେ ବେତନଭୋଗୀ ମନ୍ତ୍ରୀ ନଷ୍ଟ କରିଦେବେ ।

"ବ୍ୟବସ୍ଥାପକ ସଭାରେ, ସମ୍ବାଦପତ୍ରରେ ଓ ଅନ୍ୟାନ୍ୟ ସ୍ଥାନରେ ମନ୍ତ୍ରୀଙ୍କର ଦରମା ସମ୍ବନ୍ଧରେ ଯେଉଁସବୁ ସମାଲୋଚନା ହେଉଛି, ସେଥିରୁ ଜଣାଯାଉଛି ଯେ ଜନସାଧାରଣ ସ୍ୱାୟତ୍ତଶାସନ ବିଭାଗରେ ଜଣେ ଅବୈତନିକ ମନ୍ତ୍ରୀ ଚାହୁଁଛନ୍ତି ।

"ଜୀବିକା ନିର୍ବାହ କରିବା ପାଇଁ ମୋତେ ଓକିଲାତି କରିବାକୁ ଅନୁମତି ଦେଲେ ମୁଁ ବିନା ବେତନରେ କାମ କରିବାକୁ ସମ୍ମତ ଅଛି । ମନ୍ତ୍ରୀ ଦାୟିତ୍ୱ ତୁଲାଇବାରେ ମୋର

ଓକିଲାତିକୁ ମୁଁ କୌଣସି ପ୍ରକାର ହସ୍ତକ୍ଷେପ କରିବାକୁ ଦେବିନାହିଁ । ଯଦି ସାଧାରଣ ଭାବରେ ଚଳିବା ପାଇଁ ମୋର ଅନ୍ୟ ଉପାୟ ଥାଆନ୍ତା, ତାହାହେଲେ ମୁଁ କେବେ ଓକିଲାତି କରିବା ପାଇଁ ଅନୁମତି ଲୋଡ଼ି ନ ଥାନ୍ତି । ମୁଁ ପ୍ରାୟ ୪୦ ବର୍ଷ ହେଲା ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରୁଛି । ମୁଁ ଓଡ଼ିଆ ଜାତିର ସର୍ବପ୍ରଥମ ଗ୍ରାଜୁଏଟ ହୋଇଥିବା ଯୋଗୁଁ ମୋର ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରିବା ଅର୍ଥ, ସବୁ ସାଧାରଣ ଆନ୍ଦୋଳନକୁ ଆର୍ଥିକ ସାହାଯ୍ୟ ଦାନକରିବା । ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରିବାରେ ମୋର ଅଧିକାଂଶ ସମୟ ଯାଇ-ଥିବାରୁ ଓକିଲାତି କରିବା ପାଇଁ ମୁଁ ବେଶି ସମୟ ପାଇପାରିନାହିଁ ।

"ଜଣେ ଓକିଲ ଓକିଲାତି କାମ କରି ମଧ୍ୟ ମନ୍ତ୍ରୀ ହୋଇପାରେ, ଏଥିରେ କୌଣସି ଅସଙ୍ଗତି ନାହିଁ । ଜଣେ ଜମିଦାର ଲାଟଙ୍କ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ (ଲାଟଙ୍କ କାର୍ଯ୍ୟକାରୀ ପରିଷଦ)ର ସଭ୍ୟ ହୋଇଥିବା ନଜିର ଅଛି । ଏହି ପ୍ରଦେଶର ଏକ୍‌ଜିକ୍ୟୁଟିଭ କାଉନ୍-ସିଲ୍‌ରେ ଦରଭଙ୍ଗାର ମହାରାଜା ସର୍ବପ୍ରଥମ ଭାରତୀୟ ସଭ୍ୟ । ମୁଁ ଖବରକାଗଜରେ ପଢ଼ିଲି ଯେ ଯୁକ୍ତ ପ୍ରଦେଶର ଏକ୍‌ଜିକ୍ୟୁଟିଭ କାଉନସିଲ୍‌ରେ ମହାବାଦର ନବାବ ଜଣେ ଅବୈତନିକ ସଭ୍ୟରୂପେ ମନୋନୀତ ହୋଇଅଛନ୍ତି । ଜମିଦାରଙ୍କୁ ତାଙ୍କ ଜମିଦାରୀର ବିଷୟ ଦେଖିବାକୁ ହେଉଛି । ସେ ମକଦ୍ଦମାମାନଙ୍କରେ ଜଣେ ପକ୍ଷ ରହୁଛନ୍ତି ଏବଂ କୋର୍ଟରେ ସାକ୍ଷ୍ୟ ମଧ୍ୟ ଦେଉଛନ୍ତି । ଯଦି ଜଣେ ଏକ୍‌ଜିକ୍ୟୁଟିଭ କାଉନସିଲର ସଭ୍ୟ ପକ୍ଷରେ ଏହା ସବୁ ଅସମ୍ମାନଜନକ ନୁହେଁ, ତାହାହେଲେ ଜଣେ ଓକିଲ ମନ୍ତ୍ରୀଙ୍କ ପକ୍ଷରେ ଓକିଲାତି କରିବା କୌଣସିମତେ ଅସମ୍ମାନଜନକ ବୋଲି ଭାବୁନାହିଁ ।

ମଧୁବାବୁ ଲେଖିଥିଲେ, "ଓକିଲାତି ବ୍ୟବସାୟ ଏକ ସମ୍ମାନଜନକ ବ୍ୟବସାୟ । ଏହିହେତୁ ପ୍ରାଦେଶିକ ଓ କେନ୍ଦ୍ର ସରକାର ସେମାନଙ୍କର ଏକ୍‌ଜିକ୍ୟୁଟିଭ୍ କାଉନ-ସିଲ୍‌ମାନଙ୍କର ଓକିଲାତି କରୁଥିବା ଆଇନଜ୍ଞମାନଙ୍କୁ ନିଯୁକ୍ତ କରୁଛନ୍ତି । ଚାକିରି ପୂରିଗଲା ପରେ ଏମାନେ ପୁଣି ଓକିଲାତି କରୁଛନ୍ତି । ଏହାଦ୍ୱାରା ମନ୍ତ୍ରିତ୍ୱର ମର୍ଯ୍ୟାଦା କ୍ଷୁଣ୍ଣ ହେଉଥିବା ତେବେ ପ୍ରମାଣିତ ହେଉନାହିଁ । ଜଣେ ଜମିଦାର ମନ୍ତ୍ରୀ ହେଲେ ସ୍ୱ ଜମିଦାରୀ ସଂକ୍ରାନ୍ତ ମାଲିମକଦ୍ଦମାରେ ସେ ଜଡ଼ିତ ହେବାକୁ ବାଧ୍ୟ ହେବେ । ଏହାଦ୍ୱାରା ସରକାରଙ୍କ ପକ୍ଷେ ଅଡ଼ୁଆ ପରିସ୍ଥିତି ସୃଷ୍ଟି ହୋଇପାରେ, କିନ୍ତୁ ଯାହାର ଓକିଲାତି ଏକମାତ୍ର ଜୀବିକା, ସେ ମନ୍ତ୍ରୀ ହୁଅନ୍ତୁ କି ଏକ୍‌ଜିକ୍ୟୁଟିଭ୍ କାଉନସିଲ୍‌ର ସଭ୍ୟ ହୁଅନ୍ତୁ, ତାଙ୍କ ଯୋଗୁଁ ଏପରି ଅଡ଼ୁଆ ପରିସ୍ଥିତି ସୃଷ୍ଟି ହେବା ସମ୍ଭବ ନୁହେଁ ।"

ସେ ପୁଣି ଲେଖିଥିଲେ, "ସ୍ୱାୟତ୍ତଶାସନ ଏକ ହସ୍ତାନ୍ତର ବିଭାଗ । ଏହି ବିଭାଗର ଶାସନ ଲୋକଙ୍କୁ ହସ୍ତାନ୍ତର କରାଯାଇଛି । ମନ୍ତ୍ରୀ ବ୍ୟବସ୍ଥାପକ ସଭାର ଜଣେ ନିର୍ବାଚିତ ସଭ୍ୟ । ମନ୍ତ୍ରୀରୂପେ ନିଯୁକ୍ତ ହେବାପରେ ମାନ୍ୟବର ଲାଟ ସାହେବଙ୍କ ସହିତ ତାଙ୍କର ନୂତନ ସମ୍ପର୍କ ସୃଷ୍ଟି କରୁଛି; କିନ୍ତୁ ତାଙ୍କ ଉପରେ ନ୍ୟସ୍ତ ହେଉଥିବା ଏ ସମ୍ପର୍କ ଜନ-

ସାଧାରଣ ଓ ବ୍ୟବସ୍ଥାପକ ସଭା ପ୍ରତି ତାଙ୍କର ଯେଉଁ ଦାୟିତ୍ୱ ଅଛି, ସେଥିରୁ ତାଙ୍କୁ ମୁକ୍ତ କରି ହେଉନାହିଁ । ଭାରତ ଆଇନର ଦଫା ୮୦-(ଖ)ରେ ଅଛି 'ମନ୍ତ୍ରୀ ଜଣେ ଅଫିସର ବୋଲି ଧରାଯିବେ ନାହିଁ ଏବଂ ମନ୍ତ୍ରୀରୂପେ ନିଯୁକ୍ତ ହେଲେ ତାଙ୍କୁ ସରକାରୀ ଅଫିସର ବୋଲି ଧରାଯିବ ନାହିଁ ।' ଭାରତ ଆଇନର ଦଫା-୧୨୪ରେ ସରକାରୀ ହାକିମଙ୍କ ଉପରେ କେତେକ କଟକଣା ଜାରି ହୋଇଛି । ଏହା ଭିତରେ ଭେଟି(Presents) ଅନ୍ତର୍ଭୁକ୍ତ । କିନ୍ତୁ ହାଇକୋର୍ଟରେ ଓକିଲାତି କରୁଥିବା ଓକିଲଙ୍କ ଫିସ୍ ଏଥିର ଅନ୍ତର୍ଭୁକ୍ତ ନୁହେଁ । ଏହି କାରଣରୁ ଓକିଲାତି କଲେ ମଧ୍ୟ ମନ୍ତ୍ରୀ ପକ୍ଷେ ଏହା ଆଇନବିରୋଧୀ ନୁହେଁ ।''

ସେ ପୁଣି ଲେଖିଥିଲେ, ''ବ୍ୟବସ୍ଥାପକ ସଭାମାନଙ୍କରେ ଅନୁପସ୍ଥିତ ରହିବ ନାହିଁ ବୋଲି ପ୍ରତିଶ୍ରୁତି ଦେଉଅଛି । ମୋର ଓକିଲାତି ବ୍ୟବସାୟକୁ ମୋର ମନ୍ତ୍ରୀ କାର୍ଯ୍ୟରେ କୌଣସି ପ୍ରକାର ହସ୍ତକ୍ଷେପ କରିବାକୁ ଦେବନାହିଁ । ମୋର ଜୀବିକା ନିର୍ବାହ ନିମନ୍ତେ କେବଳ ଓକିଲାତି କରୁଛି ବୋଲି ଭାବିବ । ଯଦି ମୋର ସାଧାରଣ ସୁଖସ୍ୱାଚ୍ଛନ୍ଦ୍ୟ ଟିକିଏ ଊଣା ହୋଇଯାଏ, ତେବେ ସୁଦ୍ଧା ମୁଁ ଦୁଃଖିତ ହେବନାହିଁ । କାରଣ, ଏ ତ୍ୟାଗଦ୍ୱାରା ମୁଁ ଦେଶର ଲୋକମାନଙ୍କୁ ଓ ସରକାରଙ୍କୁ ପରସ୍ପରର ଅତି ନିକଟକୁ ଟାଣି ଆଣିବ । ଏହି ଲାଭ ତୁଳନାରେ ମୋର ତ୍ୟାଗ ବେଶି ହେବନାହିଁ । ଏହାଦ୍ୱାରା ଦେଶର ସରକାରଙ୍କ ପ୍ରତି ଅସହଯୋଗ ମନୋଭାବ ଲୋପ ପାଇବ ଏବଂ ମ୍ୟୁନିସିପାଲିଟି, ଜିଲ୍ଲାବୋର୍ଡ଼ ଓ ଓକିଲଙ୍କ ମଧ୍ୟରେ ସହଯୋଗ ମନୋଭାବର ଉଦ୍ରେକ ହେବ । ଜଣେ ଓକିଲାତି କରୁଥିବା ଓକିଲ ମନ୍ତ୍ରୀ ହେଲେ ଯୋଜନା ଭିତରେ ସାମ୍ୟ ଓ ମୈତ୍ରୀ ସ୍ଥାପନ କରିବାରେ ସେ ସାହାଯ୍ୟ କରିପାରିବେ ।''

ସ୍ୱାୟତ୍ତଶାସନ ମନ୍ତ୍ରୀଙ୍କର ଆଇନ ଓ ଚିକିତ୍ସାଶାସ୍ତ୍ର ସମ୍ବନ୍ଧରେ ଜ୍ଞାନ ଥିବା ଆବଶ୍ୟକ ବୋଲି କହି ମଧୁବାବୁ ପ୍ରକୃତ କାର୍ଯ୍ୟକ୍ଷେତ୍ରରୁ ଏହାର ଦୃଷ୍ଟାନ୍ତ ଦେଇଥିଲେ ।

ତାଙ୍କୁ ବିନା ବେତନରେ ମନ୍ତ୍ରିତ୍ୱ କରିବା ସଙ୍ଗେ ଓକିଲାତି କରିବାକୁ ଅନୁମତି ଦେବାପାଇଁ ସେ ଯେଉଁସବୁ ଯୁକ୍ତି କରିଥିଲେ, ଲାଟସାହେବ ତାହା ସହିତ ଏକମତ ହୋଇ ନଥିଲେ; କିନ୍ତୁ ଏ ସମ୍ପର୍କରେ ମଧୁବାବୁଙ୍କ ସହ ଆଉ ଥରେ ଆଲୋଚନା କରିବେ ବୋଲି ମଧୁବାବୁଙ୍କୁ ଉତ୍ତରରେ ଜଣାଇଥିଲେ । ମଧୁବାବୁ ଲାଟଙ୍କ ସହିତ ଆଉ ଆଲୋଚନା କରିନାହାନ୍ତି ।

ମଧୁବାବୁଙ୍କ ମନ୍ତ୍ରିତ୍ୱ ତ୍ୟାଗପତ୍ର ଲାଟ ସାହେବ ଗ୍ରହଣ କରିବା ପୂର୍ବରୁ ମଧୁବାବୁଙ୍କ ସହିତ ଲାଟଙ୍କର ଆଲୋଚନା ମଧ୍ୟ ହୋଇଥିଲା । ବ୍ୟବସ୍ଥାପକ ସଭାରେ ଯେଉଁଦିନ ଲାଟ ବକ୍ତୃତା ଦେଇଥିଲେ, ତାହାର ପୂର୍ବଦିନ ମନ୍ତ୍ରୀ ମିଃ ଦାସ ବ୍ୟବସ୍ଥାପକ ସଭାରେ ଆଲୋଚନା ପ୍ରସଙ୍ଗରେ ତାଙ୍କର ଇସ୍ତଫା ପ୍ରଦାନ ସଂକଳ୍ପର ସୂଚନା ମଧ୍ୟ ଦେଇଥିଲେ । କେତେ ଜଣ ସଭ୍ୟ ମଧୁବାବୁଙ୍କ ସହିତ ଏକମତ ହୋଇନଥିଲେ ଏବଂ ତାଙ୍କ ଯୁକ୍ତିକୁ ଅବାସ୍ତବ ବୋଲି ସମାଲୋଚନା ମଧ୍ୟ କରିଥିଲେ ।

**ମାନ୍ୟବର ଗଭର୍ଣ୍ଣରଙ୍କ ଉତ୍ତର** : ମଧୁବାବୁଙ୍କ ଚିଠିର ଉତ୍ତରରେ ଲାଟ ସାର୍ ହେନରି ହ୍ୱିଲର୍ ଖ୍ରୀ: ୧୯୨୩ ଫେବୃଆରି ୧୧ ତାରିଖରେ ଲେଖିଥିଲେ—"ଆପଣଙ୍କର ୭।୮ ତାରିଖର ପତ୍ର ପାଇଛୁ । ଏଥିରେ ଆପଣଙ୍କୁ ଓକିଲାତି କରିବାକୁ ଅନୁମତି ମିଳିଲେ ବିନା ବେତନରେ ମନ୍ତ୍ରୀ କାର୍ଯ୍ୟ ଚଳାଇବା ପାଇଁ ଆପଣ ପ୍ରସ୍ତୁତ ଥିବା ଲେଖିଛନ୍ତି ଏବଂ ଏହା ସପକ୍ଷରେ ଯୁକ୍ତି ମଧ୍ୟ ଦେଇଛନ୍ତି । ଆପଣ ଏହା ସପକ୍ଷରେ ଯେଉଁ ସବୁ ଯୁକ୍ତି ଦେଇଛନ୍ତି, ତାହା ସହିତ ମୁଁ ଏକମତ ହୋଇପାରୁନାହିଁ । ମୋର ମନରେ ଧାରଣା ହୋଇଛି ଯେ କାର୍ଯ୍ୟକ୍ଷେତ୍ରରେ ଏହା ବିରୁଦ୍ଧରେ ଗୁରୁତର ଆପତ୍ତି ହେବ । କାର୍ଯ୍ୟକ୍ଷେତ୍ରରେ ଏ ଦୁଇଟି କାର୍ଯ୍ୟ ଆପଣ କପରି ସୁଚାରୁରୂପେ ଚଳାଇ ପାରିବେ, ତାହା ମୁଁ ଦେଖିପାରୁନାହିଁ । ଦ୍ୱିତୀୟତଃ, ଯେଉଁ ବିଚାରାଳୟଗୁଡ଼ିକ ସରକାରଙ୍କ ଅଧୀନରେ ଚାଲୁଛି, ସେଠାରେ ସରକାରଙ୍କର ଜଣେ ମନ୍ତ୍ରୀ ଓକିଲାତି କରିବା ଏକାବେଳକେ ଅସମ୍ଭବ ବୋଲି ମନେହେଉଛି । ପୂର୍ବରୁ ଏହାର କୌଣସି ନଜିର ଥିବା ମୁଁ ଜାଣିନାହିଁ । ଯଦି ଆପଣ ଇଚ୍ଛାକରନ୍ତି, ତାହାହେଲେ ଆପଣଙ୍କ ସହିତ ଏ ବିଷୟରେ ମୁଁ ଆଲୋଚନା କରନ୍ତି; କିନ୍ତୁ ଆପଣଙ୍କ ପ୍ରସ୍ତାବକୁ ଗ୍ରହଣ କରିବାପାଇଁ ମୁଁ କୌଣସି ବାଟ ଦେଖୁନଥିବା ଦୁଃଖର ସହିତ ଜଣାଉଛି ।" (ମର୍ମାନୁବାଦ)

ମାନ୍ୟବର ମନ୍ତ୍ରୀ ମଧୁବାବୁ ଲାଟସାହେବଙ୍କ ସହ ଆଉ ଆଲୋଚନା କରିନାହାନ୍ତି ବୋଲି ବ୍ୟବସ୍ଥାପକ ସଭାରେ ଲାଟ ଜଣାଇଥିଲେ ।

**ଲାଟସାହେବଙ୍କୁ ମଧୁବାବୁଙ୍କର ମନ୍ତ୍ରିତ୍ୱ ତ୍ୟାଗପତ୍ର**—ପାଟନା, ୮।୩।୧୯୨୩

"ମହାମାନ୍ୟବର, ମୁଁ ବିଶ୍ୱାସ କରୁଛି ଯେ ମନ୍ତ୍ରୀଙ୍କ ଦରମା ହ୍ରାସ ସମ୍ବନ୍ଧରେ ଯେଉଁ ପ୍ରସ୍ତାବ ହେଲା, ତାହାର ଫଳାଫଳ ଆପଣଙ୍କୁ ଜଣାଇ ଦିଆଯାଇଥିବ । ମୁଁ ଯେଉଁ ଭାଷଣ ଦେଇଥିଲି, ତାହାର ନକଲ ମଧ୍ୟ ଆପଣଙ୍କ ନିକଟକୁ ପଠାହୋଇଥିବ ।

"ଦରମା କମାଇ ଦେବାପାଇଁ ଯେଉଁ ପ୍ରସ୍ତାବ ହୋଇଥିଲା ତାହାକୁ ଗ୍ରହଣ କରିବାକୁ ମୁଁ ବାଧ୍ୟ ହୋଇଥିଲି; କାରଣ, ମୋର ସହଯୋଗୀ ମନ୍ତ୍ରୀ ଏପରି କାଟ ହାରରେ ଦରମା ନେବାପାଇଁ ରାଜି ଥିବା ପ୍ରକାଶ କରିଥିଲେ ଏବଂ ମୁଁ ତାଙ୍କ ପଥରେ ଏକ ବାଧା ବୋଲି ସେ ଅନୁଭବ କରିଥିଲେ । ତାଙ୍କର ମର୍ଯ୍ୟାଦାର ଉନ୍ନତି ପାଇଁ ମୁଁ ଏହି ପ୍ରସ୍ତାବକୁ ଗ୍ରହଣ କରିବାକୁ ସମ୍ମତ ହେଲି । ବର୍ତ୍ତମାନ ମୋହର ସହଯୋଗୀ ମନ୍ତ୍ରୀଙ୍କ ସ୍ଥିତି ଦୃଢ଼ ହୋଇଯାଇଥିବାରୁ ମୁଁ ସ୍ୱାୟତ୍ତଶାସନ ମନ୍ତ୍ରୀ ପଦରୁ ଇସ୍ତଫା ଦେଉଛି । ମୁଁ ବର୍ତ୍ତମାନ ସୁଦ୍ଧା ବିଶ୍ୱାସ କରେ ଯେ ମନ୍ତ୍ରିପଦଟି ଅବୈତନିକ ହେବା ଉଚିତ; କିନ୍ତୁ ଆପଣ ମୋର ପ୍ରସ୍ତାବକୁ ଗ୍ରହଣ ନ କରିବାରୁ ମୁଁ ଏ ପଦରେ ଆଉ ରହିବା ଉଚିତ ନୁହେଁ ବୋଲି ଭାବୁଛି ।

"ଯଥା ବ୍ୟବସ୍ଥା ଅବଲମ୍ବନ କରି ମୋତେ ଏ ଦାୟିତ୍ୱରୁ ଅବ୍ୟାହତି ଦେବାପାଇଁ ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି । ସେହି ବ୍ୟବସ୍ଥା ହେବା ପର୍ଯ୍ୟନ୍ତ ମୁଁ କାର୍ଯ୍ୟ ତୁଲାଉଥିବି ।

"ଆପଣଙ୍କ ମତ ସହିତ ମୁଁ ଅସମ୍ମତ ଥିବା ସତ୍ତ୍ୱେ ଆପଣ ମୋର ମତକୁ ଯେପରି ଧୀରସ୍ଥିର ଓ ସଦସ୍ୟଭାବରେ ତାକୁ ବିଚାର କରିଛନ୍ତି ସେଥିପାଇଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ଏ ଦେଶକୁ ଶାସନ କରିବାପାଇଁ ଭଗବାନ ଆପଣଙ୍କୁ ନିଯୁକ୍ତ କରିଛନ୍ତି । ଯଦି ଏହି ଦେଶର ସ୍ୱାର୍ଥ ନିମନ୍ତେ ମୋର କିଛି କାର୍ଯ୍ୟ କରିବା ଆବଶ୍ୟକ ବୋଲି ଆପଣ ମନେକରନ୍ତି, ତାହାହେଲେ ଆପଣଙ୍କ ଆଦେଶ ପାଇବା ମାତ୍ରେ ବେସରକାରୀ ଭାବରେ ସେ କାର୍ଯ୍ୟ କରିବା ପାଇଁ ମୁଁ ସବୁବେଳେ ପ୍ରସ୍ତୁତ ଅଛି ।" (ମର୍ମାନୁବାଦ)

**ମନ୍ତ୍ରିତ୍ୱ ତ୍ୟାଗର ଫଳାଫଳ**—ମଧୁବାବୁ ମନ୍ତ୍ରିତ୍ୱରୁ ଇସ୍ତଫା ଦେବା ଫଳରେ ଜନସମାଜରେ ତାଙ୍କର ସମ୍ମାନ ବୃଦ୍ଧି ପାଇଥିଲା । ମନ୍ତ୍ରୀ ଅବୈତନିକ ଭାବରେ କାର୍ଯ୍ୟ କରିବା ଉଚିତ ବୋଲି ଯେଉଁ ନୀତି ସେ ବ୍ୟକ୍ତ କଲେ, ତାହା ନିଜେ ପାଳନକରି ସେ ଏକ ଆଦର୍ଶ ସ୍ଥାପନ କଲେ ସତ୍ୟ, କିନ୍ତୁ ତାଙ୍କୁ ବହୁ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥିଲା । ଏହି କାରଣରୁ ସବୁ ଶ୍ରେଣୀର ଲୋକେ ତାଙ୍କ ସାହସ, ତ୍ୟାଗ, ନୀତି ଓ ନିର୍ଲିପ୍ତ-ତାର ପ୍ରଶଂସା କରିଥିଲେ । ଅବଶ୍ୟ, ସେ ଯେଉଁ ଆଦର୍ଶ ଦେଖାଇଲେ, ତାହା ପାଳନ କରିବା ସମସ୍ତଙ୍କ ପକ୍ଷେ ସମ୍ଭବ ନଥିଲା ।

ମନ୍ତ୍ରିତ୍ୱ ତ୍ୟାଗ କରିବାଦ୍ୱାରା ତାଙ୍କର ଶୋଚନୀୟ ଆର୍ଥିକ ଅବସ୍ଥା ଅଧିକ ଶୋଚନୀୟ ହୋଇପଡ଼ିଲା ।

ଇସ୍ତଫାଦାନ ଫଳରେ ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ମଧୁବାବୁଙ୍କର ସମ୍ମାନ ବୃଦ୍ଧି ପାଇଥିଲା; କିନ୍ତୁ 'ଅସହଯୋଗୀ' ରାଜନୀତି କ୍ଷେତ୍ରରେ ଏହାର ବିଶେଷ ପ୍ରଭାବ ପଡ଼ି ନଥିବା ମନେହୁଏ । କଂଗ୍ରେସ ରାଜନୀତିକ ନେତାମାନେ ତାଙ୍କର ଆଦର୍ଶକୁ ବିଦେଶୀ ଶାସନର ସମାଲୋଚନା କଲାବେଳେ ମୁହୁର୍ମୁହୁଃ ବ୍ୟବହାର କରୁଥିଲେ ମଧ୍ୟ ମଧୁବାବୁ ଅସହଯୋଗ ଓ ଆଇନଅମାନ୍ୟର ବିରୋଧୀ ଥିବା ହେତୁ ତାଙ୍କଠାରୁ ରାଜନୀତି କ୍ଷେତ୍ରରେ ସେମାନେ ଦୂରରେ ରହୁଥିଲେ ।

ମନ୍ତ୍ରିତ୍ୱ ତ୍ୟାଗପରେ ସାଧାରଣ କ୍ଷେତ୍ରରେ ଲୋକଙ୍କର ଅଭାବ ଅସୁବିଧା ଦୂର କରିବାପାଇଁ ମଧୁବାବୁ ଆଉ ବିଶେଷ ସୁବିଧା ପାଇଲେ ନାହିଁ । ସରକାରୀ ମହଲ ଓ ସହଯୋଗୀମାନେ ମଧ୍ୟ ତାଙ୍କଠାରୁ କରଛଡ଼ା ହୋଇ ରହିଲେ । ପ୍ରଚଳିତ ରାଜନୀତି କ୍ଷେତ୍ରରେ ମଧୁବାବୁ 'ନ ନୀରଂ ନ ତୀରଂ' ଅବସ୍ଥାରେ ରହିଲେ । ସରକାରୀ ସମର୍ଥକ ଓ କର୍ମଚାରୀମାନେ ମନ୍ତ୍ରୀ ମଧୁବାବୁଙ୍କ କଟୁ ସମାଲୋଚନା ସହ୍ୟ କରିପାରୁନଥିଲେ । ତେଣୁ ସେ ମନ୍ତ୍ରିତ୍ୱରୁ ଇସ୍ତଫାଦେବାରୁ ସେମାନେ ଏକ କଣ୍ଟକ ଗଲା ବୋଲି ଭାବିଲେ । ଫଳରେ ମଧୁବାବୁ ଇସ୍ତଫାଦାନ ପରେ ସରକାରଙ୍କ ପୂର୍ବପରି ସହଯୋଗ ମଧ୍ୟ ପାଇଲେ ନାହିଁ ।

କଂଗ୍ରେସ ରାଜନୀତଜ୍ଞମାନେ ତାଙ୍କର ମନ୍ତ୍ରିତ୍ୱ ତ୍ୟାଗ ଓ ତାହାର କାରଣକୁ ସ୍ୱାଗତ କରୁଥିଲେ ମଧ୍ୟ ( ସେ କଂଗ୍ରେସର ଅସହଯୋଗ ଓ ଆଇନ ଅମାନ୍ୟ ନୀତିର ବିରୋଧୀ ଥିବାରୁ ) ତାଙ୍କୁ 'ନିଜ'ର ଲୋକ ବୋଲି ଭାବିପାରୁନଥିଲେ ।

ମନ୍ତ୍ରିତ୍ୱ ତ୍ୟାଗପରେ ମଧୁବାବୁ କେତେକାଂଶରେ ନିଃସ୍ପୃହ ହୋଇପଡ଼ିଥିଲେ । କେବଳ ତାଙ୍କର ପୂର୍ବ ଗୌରବ ଓ ତ୍ୟାଗ ତାଙ୍କୁ ରାଜନୀତି କ୍ଷେତ୍ରରେ ବଞ୍ଚାଇ ରଖିଥିଲା । ତାଙ୍କର ମନ୍ତ୍ରିତ୍ୱ ତ୍ୟାଗଦ୍ୱାରା ଓଡ଼ିଶା ବିଶେଷ କ୍ଷତିଗ୍ରସ୍ତ ହେଲା । ମଧୁବାବୁ ଓଡ଼ିଆଙ୍କ ଭିତରେ ପ୍ରଥମ ମନ୍ତ୍ରୀ । ତାଙ୍କ ଭଳି ଜଣେ ଯୋଗ୍ୟ ଦେଶଭକ୍ତ ମନ୍ତ୍ରୀ ହୋଇଥିବାରୁ "ଅନୁନ୍ନତ" ଓଡ଼ିଆମାନେ ଗର୍ବ ଅନୁଭବ କରୁଥିଲେ । ଶାସନକ୍ଷେତ୍ରରେ ମଧୁବାବୁଙ୍କ ସ୍ଥାନ ସମ୍ୟକ୍‌ଭାବେ ପୂରଣ ହେବାର ଆଶା ନଥିବାରୁ ଲୋକେ ଦୁଃଖିତ ହୋଇଥିଲେ । ମନ୍ତ୍ରିତ୍ୱ ତ୍ୟାଗ ପରେ ମଧୁବାବୁ ବିହାରର ପାଟନା ସହରରେ ରହି ଓକିଲାତି କରିଥିଲେ ।

**ଆଉ ଜଣେ ଓଡ଼ିଆ ମନ୍ତ୍ରୀ ହୁଅନ୍ତୁ ବୋଲି ଦାବୀ** ମଧୁବାବୁ ମନ୍ତ୍ରିପଦ ତ୍ୟାଗ ସମ୍ବନ୍ଧରେ "ଉତ୍କଳ ଦୀପିକା" ମନ୍ତବ୍ୟ ପ୍ରକାଶକରି ମଧୁବାବୁଙ୍କ ସ୍ଥାନରେ ଆଉ ଜଣେ ଓଡ଼ିଆଙ୍କୁ ମନ୍ତ୍ରୀରୂପେ ନିଯୁକ୍ତ କରିବା ପାଇଁ ଲାଟଙ୍କଠାରେ ଦାବୀ କରିଥିଲେ । ବିହାର ଓଡ଼ିଶା ପ୍ରଦେଶର ମନ୍ତ୍ରୀ ଶ୍ରୀଯୁକ୍ତ ମଧୁସୂଦନ ଦାସ ମହାଶୟ ପଦ ତ୍ୟାଗ କରିଛନ୍ତି । ଦାସ ମହାଶୟ ଅବୈତନିକ ଭାବରେ ମନ୍ତ୍ରୀପଦରେ କାର୍ଯ୍ୟକରି ଜୀବିକା ନିର୍ବାହ ପାଇଁ ଓକିଲାତି କରିବା ସକାଶେ ପ୍ରାଦେଶିକ ଗଭର୍ଣ୍ଣର ମହୋଦୟଙ୍କର ଅନୁମତି ପ୍ରାର୍ଥନା କରିଥିଲେ । ଗଭର୍ଣ୍ଣର ତାଙ୍କର ପ୍ରାର୍ଥନାରେ ସମ୍ମତି ପ୍ରଦାନ ନ କରିବାରୁ ଦାସ ମହୋଦୟ ମନ୍ତ୍ରିପଦ ତ୍ୟାଗ କଲେ ବୋଲି ବର୍ତ୍ତମାନ ସାଧାରଣରେ ପ୍ରକାଶ ପାଇଅଛି । ମାତ୍ର ତାଙ୍କର ପଦତ୍ୟାଗ ସମ୍ବନ୍ଧରେ ଏହି କାରଣ ଯଥେଷ୍ଟ ବୋଲି ମନେହେଉନାହିଁ । ପ୍ରକୃତ କାରଣ ବୋଧହୁଏ ନିଗୂଢ଼ତମ ବୋଲି ବିଜ୍ଞବ୍ୟକ୍ତିମାନେ ଆଶଙ୍କା କରନ୍ତି । ତାହା ଅବଶ୍ୟ ସମୟରେ ଜଣାପଡ଼ିବ; ମାତ୍ର ଗଭର୍ଣ୍ଣରଙ୍କ ପାଖରେ ଓଡ଼ିଶାବାସୀ ଜଣେ ମନ୍ତ୍ରୀ ଥିବା ହେତୁ ଓଡ଼ିଶାର ଲୋକମାନେ ଯେଉଁ ଗୌରବ ଅନୁଭବ କରୁଥିଲେ, ସେଥିରୁ ଓଡ଼ିଶା ବର୍ତ୍ତମାନ ବଞ୍ଚିତ ହୋଇଅଛି । ଦାସଙ୍କ ବଦଳରେ ଅନ୍ୟ ଜଣେ ଉପଯୁକ୍ତ ଓଡ଼ିଆଙ୍କୁ ଉକ୍ତ ପଦରେ ନିଯୁକ୍ତ କରିବାପାଇଁ ମାନନୀୟ ଗଭର୍ଣ୍ଣରଙ୍କର ସୁବିଚାର ପ୍ରାର୍ଥନା କରୁଅଛୁଁ ।

"ବର୍ତ୍ତମାନ ସରକାରଙ୍କ ପ୍ରେରିତ ପତ୍ରରୁ ଅବଗତ ହେଲୁଁ ଯେ ଶିକ୍ଷାମନ୍ତ୍ରୀ ମାନ୍ୟବର ଖାଁ ବାହାଦୂର ସୟଦ୍ ମହମ୍ମଦ ଫକରୁଦ୍ଦିନ୍ ଅସ୍ଥାୟୀଭାବରେ ମିଃ ଦାସଙ୍କଠାରୁ କାର୍ଯ୍ୟଭାର ଗ୍ରହଣ କରିଅଛନ୍ତି ।" (ଉ: ଦୀ: ୧୭-୩-୨୩)

ମଧୁବାବୁ ମନ୍ତ୍ରିତ୍ୱ ତ୍ୟାଗକରି ଯେଉଁ ଆଦର୍ଶ ଦେଖାଇଲେ, ତାହା ତାଙ୍କର ତଥା-କଥିତ ବିରୋଧମତବାଦୀମାନେ ମଧ୍ୟ କ୍ରମେ ସ୍ୱୀକାର କରିବାକୁ ଲାଗିଲେ । ମଧୁବାବୁଙ୍କୁ କଂଗ୍ରେସ ସଙ୍ଗଠନର ସଭ୍ୟ କରିନେବା ଏହାର ଏକ ନିଦର୍ଶନ । "ସମାଜ" ମଧ୍ୟ ଏହାକୁ

କିଛି କାଳ ପରେ ସ୍ୱୀକାର କରିଛି । ଖ୍ରୀଃ ୧୯୨୭ରେ, ଅର୍ଥାତ୍ ମଧୁବାବୁ ମନ୍ତ୍ରିତ୍ୱରୁ ଇସ୍ତଫା ଦେବାର ୪ବର୍ଷ ପରେ, ବିହାର-ଓଡ଼ିଶା ସରକାରଙ୍କ ମନ୍ତ୍ରୀ ମାନ୍ୟବର ଶ୍ରୀ ଗଣେଶଦତ୍ତ ସିଂହଙ୍କ ବିରୁଦ୍ଧରେ ବ୍ୟବସ୍ଥାପକ ସଭାରେ ଏକ ଅନାସ୍ଥା ପ୍ରସ୍ତାବ ଆସିଥିଲା । କେତେ ଜଣ ସଭ୍ୟ ମନ୍ତ୍ରୀଙ୍କ ବିରୁଦ୍ଧରେ ପ୍ରିୟପ୍ରୀତି ତୋଷଣ ପ୍ରଭୃତି ଅଭିଯୋଗ କରି ତାଙ୍କର ଇସ୍ତଫା ଦାବୀ କରିଥିଲେ । ଶ୍ରୀ ସିଂହ ଏହି ଅଭିଯୋଗରେ ଉତ୍ତର ନ ଦେଇ ସଭାଗୃହରେ ତୁନି ହୋଇ ବସିରହିଲେ ଏବଂ ଉତ୍ତର ଛଳରେ ଯାହା କହିଲେ, ସେଥିରେ କାହାର ମନ ମାନିଲା ନାହିଁ । ଅଧିକାଂଶ ବେସରକାରୀ ସଭ୍ୟ ମନ୍ତ୍ରୀଙ୍କ ବିରୁଦ୍ଧରେ ଭୋଟ ଦେଲେ । ମନ୍ତ୍ରୀଙ୍କ କାର୍ଯ୍ୟକଳାପକୁ ନାପସନ୍ଦ କରି 'ସମାଜ' ମଧୁବାବୁଙ୍କ ମନ୍ତ୍ରିତ୍ୱ ତ୍ୟାଗ ପ୍ରସଙ୍ଗର ଅବତାରଣା କରିଥିଲେ । "ମନ୍ତ୍ରମୁଗ୍ଧ ମନ୍ତ୍ରୀ" ଶିରୋନାମାରେ ସମାଜ ୧୭।୯।୧୯୨୭ରେ ସମ୍ପାଦକୀୟ ସ୍ତମ୍ଭରେ ଅନାସ୍ଥା ପ୍ରସ୍ତାବ ସପକ୍ଷରେ ମତ ଦେଇ କହିଥିଲେ—" × × ଅଧିକାଂଶ ବେସରକାରୀ ମେମ୍ବର ତାଙ୍କଠାରେ ଅବିଶ୍ୱାସ-ପ୍ରକାଶ କରି ଭୋଟ ଦେଲେ । ଗଣେଶ ଦତ୍ତଙ୍କର କିନ୍ତୁ ସେଥିରେ ସୁବିଚାର ଆସିଲା ନାହିଁ । ଓଡ଼ିଶାର ମଧୁବାବୁ ମନ୍ତ୍ରୀ ଥିଲାବେଳେ ସେ ସ୍ୱାଧୀନଭାବରେ ତାଙ୍କ ମତ ବ୍ୟକ୍ତ କରୁଥିଲେ ଏବଂ ଦରମା ସମ୍ପର୍କରେ ସମାଲୋଚନା ହେବାରୁ ସେ ମନ୍ତ୍ରୀପକ୍ଷରେ ତାହା ଅପମାନ ବୋଲି ନିଜେ ବିଚାର କରି ଇସ୍ତଫା ଦେଇଦେଲେ । ଏହି ଗଣେଶଦତ୍ତ ସିଂହ ସେତେବେଳେ ମେମ୍ବର ଥାଇ କେତେ କଟୂ ସମାଲୋଚନା କରିଛନ୍ତି; ମଧୁବାବୁଙ୍କ ପ୍ରତି କେତେ କଟାକ୍ଷ କରିଛନ୍ତି; ପ୍ରକାରାନ୍ତରେ ତାଙ୍କର ଇସ୍ତଫା ମଧ ଦାବୀ କରିଥିଲେ । ମଧୁବାବୁ ମାନୀଲୋକ । ସେ ମୁହୂର୍ତ୍ତେ ଅପେକ୍ଷା କଲେନାହିଁ, ମାନରେ ଟିକେ ବାଧା ପଡ଼ିବାରୁ ଇସ୍ତଫା ଦେଇ ଗୁଡ଼ିଆସିଲେ । ତାଙ୍କ ଅନ୍ତେ ତାଙ୍କର ଗାଦୀରେ ମନ୍ତ୍ରୀ ଗଣେଶଦତ୍ତ ସିଂହ ଯାଇ ବସିଛନ୍ତି । × ×" ମଧୁବାବୁଙ୍କ ମନ୍ତ୍ରିତ୍ୱ ତ୍ୟାଗର ଗୌରବର ସ୍ୱୀକୃତି ଏଥିରୁ ସ୍ପଷ୍ଟ ହେଉଛି ।

**ପ୍ରାଦେଶିକ ବ୍ୟବସ୍ଥାପକ ସଭା ନିର୍ବାଚନ** : ଖ୍ରୀଃ ୧୯୨୩ରେ ବର୍ଷ ଶେଷ ଆଡ଼କୁ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭା ସଭ୍ୟପଦ ପାଇଁ ପୁନର୍ବାର ନିର୍ବାଚନ ହୋଇଥିଲା । ମଧୁବାବୁଙ୍କ ସଭ୍ୟକାଳ ପୂରିଯାଉଥିବାରୁ ସେ ଓଡ଼ିଶା ମ୍ୟୁନିସିପାଲିଟିମାନଙ୍କ ତରଫରୁ ପ୍ରାର୍ଥୀ ହୋଇଥିଲେ । ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ବାରିଷ୍ଟର ଶ୍ରୀ ବିଶ୍ୱନାଥ ମିଶ୍ର । ମଧୁବାବୁ ଓଡ଼ିଶା ପାଇଁ ଯେଉଁସବୁ ଲୋକହିତକର କାର୍ଯ୍ୟ କରିଛନ୍ତି, ସେ ସବୁ ବର୍ଣ୍ଣନା କରି ତାଙ୍କ ପକ୍ଷରୁ ପ୍ରଚାରପତ୍ର ବିତରଣ କରାଯାଇଥିଲା ଏବଂ ସେଥିରେ ଏହି ସବୁ ପ୍ରଧାନ ଯୁକ୍ତି ତାଙ୍କ ସପକ୍ଷରେ ଥିଲା ।

(୧) "ଓଡ଼ିଶାରେ ମାଲେରିଆ ରୋଗର ଯେପରି ପ୍ରାଦୁର୍ଭାବ ଦେଖାଯାଇଥିଲା, ତହିଁର ଶୀଘ୍ର କୌଣସି ପ୍ରତିକାର ହୋଇ ନପାରିବାର ସମ୍ଭାବନା ଥିଲା । ମଧୁବାବୁ ମନ୍ତ୍ରୀ ଥିବାବେଳେ ଓଡ଼ିଶାର ବହୁ ସ୍ଥାନ ଭ୍ରମଣ କରି ପ୍ରତିକାରର ବ୍ୟବସ୍ଥା କରିଥିଲେ । ଚିକିତ୍ସା ଶାସ୍ତ୍ରରେ ତାଙ୍କର କିଛି ଜ୍ଞାନ ଥିବାରୁ ସେ ମଫସଲ ଅଞ୍ଚଳରେ ଚିକିତ୍ସକ ନଥିବା ସ୍ଥାନ-

ମାନଙ୍କରେ ପ୍ରତିଶୋଧ ଓ ପ୍ରତିକାରରର ବ୍ୟବସ୍ଥା କରିପାରିଥିଲେ । ମାଟିଲେରିଆ ଓଡ଼ିଶାର ଜୀବନମରଣ ସମସ୍ୟା ହୋଇଥିବାରୁ ମଧୁବାବୁଙ୍କ ପରି ଦେଶସେବକଙ୍କୁ ଲୋକଙ୍କର ଅଧିକ ସେବା କରିବା ପାଇଁ ସୁବିଧା ଦିଆଯିବା ଉଚିତ । ସାଧାରଣତଃ କେହି କେହି ସଭ୍ୟ ବ୍ୟବସ୍ଥାପକ ସଭାରେ କେବଳ ବକ୍ତୃତା ଦେବା ତାଙ୍କର କର୍ତ୍ତବ୍ୟ ବୋଲି ଭାବୁଥିଲେ । କିନ୍ତୁ ମଧୁବାବୁ ବ୍ୟବସ୍ଥାପକ ସଭାରେ ବକ୍ତୃତା ଦେବା ସଙ୍ଗେ ସଙ୍ଗେ ବାହାରେ ସହର ଓ ଗ୍ରାମାଞ୍ଚଳରେ ମଧ ବକ୍ତୃତା ଦେଉଥିଲେ ଏବଂ ଚିକିତ୍ସା ଓ ପ୍ରତିକାରର ବ୍ୟବସ୍ଥା କରୁଥିଲେ । ଓଡ଼ିଶାର ବାକ୍‌ଶକ୍ତିହୀନ ରୋଗବ୍ୟାଧି-ପ୍ରପୀଡ଼ିତ ଲକ୍ଷ ଲକ୍ଷ ଲୋକଙ୍କ ସକାଶେ ସରକାରଙ୍କଠାରୁ ସେ ପ୍ରତିକାରର ବ୍ୟବସ୍ଥା କରିପାରିଥିଲେ । ଭବିଷ୍ୟତରେ ମଧ ମଧୁବାବୁ ଏ ଦିଗରେ ଯେତେ ପରିମାଣରେ ଚେଷ୍ଟା କରିପାରିବେ, ତାହା ଅନ୍ୟମାନଙ୍କ ପକ୍ଷରେ ସମ୍ଭବ ନୁହେଁ ।"

(୨) "ମଧୁବାବୁ ନୂତନ ସ୍ୱାୟତ୍ତଶାସନ ଆଇନର କର୍ତ୍ତା ଏବଂ ଏହି ଆଇନଯୋଗୁଁ ଲୋକସାଧାରଣଙ୍କର କ୍ଷମତା ବହୁତ ବୃଦ୍ଧି ପାଇଛି । ଲୋକଙ୍କୁ ସ୍ୱାୟତ୍ତଶାସନରେ ଅନୁପ୍ରାଣିତ କରିବା ଭଳି ବିବିଧ ବ୍ୟବସ୍ଥା ମଧୁବାବୁ ଆଇନରେ ରଖିଥିଲେ । ଏ କ୍ଷେତ୍ରରେ ତାଙ୍କର ଗଭୀର ଅଭିଜ୍ଞତା ଥିବାରୁ ଲୋକାଲବୋର୍ଡ଼, ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲିଟିମାନେ ତାଙ୍କଠାରୁ ଉପଯୁକ୍ତ ପରାମର୍ଶ ପାଇବାର ସୁବିଧା ଅଛି ।"

(୩) "ଓଡ଼ିଶାରେ ବନ୍ଦୋବସ୍ତ ଚାଲୁଥିଲାବେଳେ ମଧୁବାବୁ ଜମିଦାର ଓ ପ୍ରଜା ଉଭୟଙ୍କର ଉପକାର ହେବାଭଳି ବ୍ୟବସ୍ଥା ନିମନ୍ତେ ଉପଯୁକ୍ତ ପରାମର୍ଶ ଦେଇପାରୁଥିଲେ ଏବଂ ଏବେ ଦେଇପାରିବେ । ଓଡ଼ିଶାର ଭୂରାଜସ୍ୱ, ଜମିଦାର ସ୍ୱତ୍ୱ, ପ୍ରଜାସ୍ୱତ୍ୱ ପ୍ରଭୃତି ବିଷୟରେ ତାଙ୍କର ବହୁ ଅଭିଜ୍ଞତା ଅଛି । ଜମିଦାରମାନଙ୍କୁ ପ୍ରଜା ବିରୁଦ୍ଧରେ ବା ପ୍ରଜା-ମାନଙ୍କୁ ଜମିଦାରଙ୍କ ବିରୁଦ୍ଧରେ ଏଣୁତେଣୁ କହି ମତାଇବା ପ୍ରକୃତି ତାଙ୍କର ନଥିଲା ବା ନାହିଁ । ଜମିଦାର ଓ ପ୍ରଜାଙ୍କ ଭିତରେ ସଦ୍‌ଭାବ ପ୍ରତିଷ୍ଠା ପାଇଁ ସେ ସବୁବେଳେ ଚେଷ୍ଟା କରୁଥିଲେ ଓ କରୁଛନ୍ତି । ଏହାଦ୍ୱାରା ଉଭୟ ଗୋଷ୍ଠୀର ହିତ ସାଧନ ସମ୍ଭବ ବୋଲି ସେ ଭାବୁଛନ୍ତି ଏବଂ ସେହି ଦୃଷ୍ଟିରେ କାର୍ଯ୍ୟ ମଧ କରୁଥିଲେ ଓ କରୁଛନ୍ତି । ସ୍ୱ ସ୍ୱତ୍ୱର ବିରୋଧ ହେଲେ କେହି ସନ୍ତୁଷ୍ଟ ହେବେ ନାହିଁ, କି କାହାର ହିତ ସାଧନ ହୋଇ ପାରିବନାହିଁ । ଦେଶ କାଳ ପାତ୍ର ବିବେଚନାରେ ଜମିଦାର ଓ ପ୍ରଜାଙ୍କ ବିରୁଦ୍ଧ ସ୍ୱତ୍ୱ ମଧ୍ୟରେ ସାମଞ୍ଜସ୍ୟ ରକ୍ଷା ପାଇଁ ସେ ସବୁବେଳେ ଚେଷ୍ଟା କରୁଛନ୍ତି ଏବଂ କରିବେ ବୋଲି ଲୋକେ ମଧ ଆଶା କରୁଛନ୍ତି ।"

ଓଡ଼ିଶାରେ ମଧୁବାବୁଙ୍କର ସେତେବେଳେ ଯେପରି ପ୍ରତିପତ୍ତି ଥିଲା, ସେଥିରେ ସେ ଯେ ନିଶ୍ଚୟ ଜୟଯୁକ୍ତ ହେବେ, ଏଥିରେ ସନ୍ଦେହ ନଥିଲା । ତେବେ ମଧୁବାବୁ ପ୍ରାଦେଶିକ ବ୍ୟବସ୍ଥାପକ ସଭାକୁ ପ୍ରାର୍ଥୀ ନ ହୋଇ କେନ୍ଦ୍ର ବ୍ୟବସ୍ଥାପକ ସଭାକୁ ପ୍ରାର୍ଥୀ ହେବା ଉଚିତ । ବୋଲି ପୁରୀର କେତେକ ବିଶିଷ୍ଟ ଭଦ୍ରବ୍ୟକ୍ତି ମତବ୍ୟକ୍ତ କରିଥିଲେ । ସେହି ସମୟରେ କେନ୍ଦ୍ର ସଭାକୁ ମଧ ପ୍ରତିନିଧି ନିର୍ବାଚନ ହେବାର ଥିଲା ।

ମଧୁବାବୁଙ୍କ ପ୍ରାର୍ଥିତ୍ୱ ଓ ଏହି ନିର୍ବାଚନ ସମ୍ବନ୍ଧରେ "ଓଡ଼ିଶା ମ୍ୟୁନିସିପାଲିଟି-ମାନଙ୍କର ଭୋଟର ଭାଇମାନଙ୍କ ପ୍ରତି ନିବେଦନ" ଶୀର୍ଷକ ଏକ ଲେଖା "ଉତ୍କଳ ଦୀପିକା"ର ଖ୍ରୀ: ୧୯୬୩ ନଭେମ୍ବର ୩ ତାରିଖରେ ପ୍ରକାଶ ପାଇଥିଲା। ନିବେଦକମାନେ ହେଲେ—୧. ଶ୍ରୀ ମହନ୍ତ ଗଦାଧର ରାମାନୁଜ ଦାସ (ମହନ୍ତ, ଏମାରମଠ, ମ୍ୟୁନିସିପାଲିଟି କମିଶନର; ପୁରୀ); ୨. ଶ୍ରୀ ମହନ୍ତ ଗୋବିନ୍ଦ ରାମାନୁଜ ଦାସ (ଉତ୍ତରପାର୍ଶ୍ୱ ମହନ୍ତ ପୁରୀ); ୩. ଶ୍ରୀ ମହନ୍ତ ବାସୁଦେବ ଗିରି(ମହନ୍ତ, ଲକ୍ଷ୍ମୀଭଦ୍ର ମଠ, ପୁରୀ); ୪. ପଣ୍ଡିତ ସଦାଶିବ ମିଶ୍ର (କାବ୍ୟକଣ୍ଠ ମହାମହୋପାଧ୍ୟାୟ, ମହୋପଦେଶକ, ସଭାପତି, ମୁକ୍ତିମଣ୍ଡପ ପଣ୍ଡିତ ସଭା, ପୁରୀ); ୫. ଶ୍ରୀ ଜଗବନ୍ଧୁ ସିଂହ, ଓକିଲ (ମ୍ୟୁନିସିପାଲିଟି କମିଶନର, ପୁରୀ), ୬. ଶ୍ରୀ ଦିବ୍ୟସିଂହ ପାଣିଗ୍ରାହୀ, ଓକିଲ, ପୁରୀ; ୭. ଶ୍ରୀ ଉପେନ୍ଦ୍ର କର, ମୁକ୍ତ୍ୟାର, ମ୍ୟୁନିସିପାଲ କମିଶନର, ପୁରୀ; ୮. ଶ୍ରୀ ମିଛୁ ମିଶ୍ର, ଜମିଦାର ମ୍ୟୁନିସିପାଲ କମିଶନର, ପୁରୀ, ୯. ଶ୍ରୀ ଶ୍ରୀଧର ଖୁଣ୍ଟିଆ, ମ୍ୟୁନିସିପାଲ କମିଶନର, ପୁରୀ; ୧୦. ଶ୍ରୀ ହନୁମାନ ଖୁଣ୍ଟିଆ, ଜମିଦାର ପୁରୀ; ୧୧. ଶ୍ରୀ ଶିରୀଶଚନ୍ଦ୍ର ଘୋଷ, ଜମିଦାର, ମ୍ୟୁନିସିପାଲ କମିଶନର, ପୁରୀ, ୧୨. ଶ୍ରୀ ଗଗଗଚନ୍ଦ୍ର ଦାସଗୁପ୍ତ, ଡାକ୍ତର ପୁରୀ; ୧୩. ଶ୍ରୀ ସୋମନାଥ ଶାସ୍ତ୍ରୀ, କବିରାଜ, ପୁରୀ; ୧୪. ଶ୍ରୀ ବୈଦ୍ୟନାଥ ସିଂହ ମୁକ୍ତ୍ୟାର, ମ୍ୟୁନିସିପାଲ କମିଶନର, ପୁରୀ। ସେମାନେ ଲେଖିଥିଲେ—

"ଭାଇମାନେ, ତିନିବର୍ଷ ପୂରିଲା। ପୁଣି ଭୋଟଦେବା ସମୟ ଆସିଲା। ପୁଣି କାଉନ୍‌ସିଲକୁ ପ୍ରତିନିଧି ପଠାଇବା ଆବଶ୍ୟକ ପଡ଼ିଲା। କାହାକୁ ଭୋଟ ଦେବା ? ଅବଶ୍ୟ ପ୍ରତିନିଧିମାନେ ଯାଇ କଣ କରିଛନ୍ତି, କଣ ନକରିଛନ୍ତି ତାହା ଆପଣମାନେ ବୁଝିପାରିଥିବେ। କିଏ ଆମ୍ଭମାନଙ୍କ ସ୍ୱାର୍ଥ ରକ୍ଷାପାଇଁ କଣ କରିବେ, ତାହା ଫଳରେ ଜଣାପଡ଼ିବ। ବର୍ତ୍ତମାନ ପ୍ରତିନିଧି ବାଛିବା ସମୟ। କାହାକୁ ପଠାଇଲେ ବେଶି କାର୍ଯ୍ୟ ହେବାର ଆଶା ତାହା ଦେଖିବା ଆମ୍ଭମାନଙ୍କର ଉଚିତ। ଏହି ଲକ୍ଷ୍ୟ ରଖି ଆମ୍ଭେମାନେ ଆପଣମାନଙ୍କୁ କେତେଗୋଟି କଥା ବନ୍ଧୁଭାବରେ କହୁଅଛୁ। ଭୋଟଦେବା ପୂର୍ବରୁ ଆପଣମାନେ ତାହା ବିଚାର କରିବେ, ପଛେ ଯାହାକୁ ମନ ମାନିବ ତାହାକୁ ଭୋଟ ଦେବେ।

"ବର୍ତ୍ତମାନ ମ୍ୟୁନିସିପାଲିଟିମାନଙ୍କ ତରଫରୁ ଦୁଇଜଣ କାଉନ୍‌ସିଲ୍‌କୁ ଯିବାକୁ ଇଚ୍ଛା ପ୍ରକାଶ କରୁଥିବାର ଜଣାପଡ଼ୁଅଛି. (୧) ଶ୍ରୀଯୁକ୍ତ ବିଶ୍ୱନାଥ ମିଶ୍ର, ବାରିଷ୍ଟର, (୨) ଶ୍ରୀଯୁକ୍ତ ମଧୁସୂଦନ ଦାସ, ଓକିଲ।

"ମଧୁବାବୁ ବହୁକାଳ ହେଲା ବହୁତ ଥର ପ୍ରାଦେଶିକ କାଉନ୍‌ସିଲ୍ ଯାଇ ତାଙ୍କ ବାଳ ପାଚିଗଲାଣି। ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ମନ୍ତ୍ରିପଦ ମଧ୍ୟ ଗ୍ରହଣକରି କାର୍ଯ୍ୟ କରିଥିଲେ। ସେ ଏବେ ମନ୍ତ୍ରିପଦ ଛାଡ଼ି ଓଡ଼ିଶାରୁ ଯାଇ ପାଟନାରେ ଓକିଲାତି କରୁଛନ୍ତି। ପ୍ରାଦେଶିକ ସଭାରେ ଏତେଥର ସଭ୍ୟ ହୋଇ ସେ ଯାହା କରିବାର କରିସାରିଛନ୍ତି। ଆଉ ଅଧିକ କଣ ତାଙ୍କଠାରୁ ଆଶା କରାଯାଏ ? ଭାରତ ବ୍ୟବସ୍ଥାପକ ସଭାକୁ ଯିବା ତାଙ୍କ ପକ୍ଷରେ ଉଚିତ।

"ଓଡ଼ିଶା ଦେଶମିଶ୍ରଣ ପ୍ରଶ୍ନ ସେ ସଭାରେ ନିଷ୍ପତ୍ତି ହେବ । ମଧୁବାବୁ ଉତ୍କଳ ସମ୍ମିଳନୀର ଜନ୍ମଦାତା । ଉତ୍କଳ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଓଡ଼ିଆ ଦେଶ ମିଶ୍ରଣ । ସେତକ କରି-ପାରିଲେ ମଧୁବାବୁ ତାଙ୍କ ଜୀବନରେ ଗୋଟାଏ କାର୍ଯ୍ୟ କଲେ ବୋଲି ତାଙ୍କ ମନରେ ସାନ୍ତ୍ୱନା ହେବ ଏବଂ ଦେଶବାସୀ ତାଙ୍କଠାରେ ଋଣୀ ରହିବେ । 'ଉତ୍କଳ ଦୀପିକା'ଙ୍କ ମତାନୁସାରେ ମାଲେରିଆ ବିନାଶ କରିବାଲାଗି ମଧୁବାବୁ ଆଦୌ ବ୍ୟସ୍ତହେବା ଉଚିତ ନୁହେଁ । ଉତ୍କଳର ପ୍ରଧାନ ମାଲେରିଆ ଉତ୍କଳର ଅଙ୍ଗଚ୍ଛେଦ । ଆମ୍ଭେମାନେ ଅନୁରୋଧ କରୁ, ମଧୁବାବୁ ଦେଶମିଶ୍ରଣ କରାଇପାରିଲେ ଉତ୍କଳରୁ ମାଲେରିଆ ଗଲା ବୋଲି ବୁଝାଯିବ । ସୁତରାଂ ମଧୁବାବୁ ଆଉ ପ୍ରାଦେଶିକ ସଭାକୁ ସଭ୍ୟ ହେବାପାଇଁ ଲଣ୍ଡଭଣ୍ଡ ନ ହୋଇ ଉପର ପାହାଚକୁ ଯାଆନ୍ତୁ । ସେଠାରେ ତାଙ୍କର ଉପସ୍ଥିତି ଆବଶ୍ୟକ ।

"ମଧୁବାବୁ ଯୁବକମାନଙ୍କୁ ସ୍ଥାନ ଛାଡ଼ିଦେବା ଉଚିତ । ସେ ଅନେକ ସମୟରେ କହନ୍ତି ଯେ କେହି ଯୁବକବାହାରୁ ନାହାନ୍ତି; ମାତ୍ର ଯେତେବେଳେ କେହି ଯୁବକ ବାହାରିବ, ସେତେବେଳେ ସେ ତାର ପ୍ରତିଦ୍ୱନ୍ଦୀ ହେବା ଅସୁନ୍ଦର । ନୂତନ ଯୁବକମାନେ ଆଉ କାର୍ଯ୍ୟ ଶିଖିବେ କପରି ? ମଧୁବାବୁ କଣ ସବୁବେଳେ ବସିଥିବେ ? ତାଙ୍କ ପଛକୁ ଲୋକ ତିଆରି ହେବେ କେଉଁଦିନ ? କେବଳ ମଧୁବାବୁ ଗଲେ ଯେ ଆମ୍ଭମାନଙ୍କୁ ସ୍ୱର୍ଗର ଚନ୍ଦ୍ର ଆଣିଦେବେ, ଆଉ କେହି କିଛି କରିପାରିବେ ନାହିଁ, ଏକଥା ବୁଝାଯାଇ ନପାରେ ।

"କାହିଁ ବନ୍ଦୋବସ୍ତ ତ ବନ୍ଦ ହେଲନାହିଁ, ଚୌକିଦାରି ଟିକସ ତ ଉଠିଲା ନାହିଁ ? ମଧୁବାବୁ ତ କାଉନ୍‌ସିଲରେ ଥିଲେ ? ଆମ୍ଭେମାନେ ମଧୁବାବୁଙ୍କର ନିନ୍ଦା କରୁନାହୁଁ । ପ୍ରକୃତ କଥାକହିଲେ ମଧୁବାବୁ ସ୍ୱୀକାର କରିବେ । ମଧୁବାବୁ କିଛି କରିପାରିବେ ନାହିଁ ବୋଲି ମନ୍ତ୍ରିପଦ ଛାଡ଼ିଦେଲେ । ତାଙ୍କ କାଉନ୍‌ସିଲ ବକ୍ତୃତା ଯେ ପଢ଼ିଥିବ ସେ ବୁଝି ପାରିଥିବ ଯେ ମଧୁବାବୁ ନିରାଶ ହୋଇ ମନ୍ତ୍ରିପଦ ଛାଡ଼ିଲେ । ତେବେ ଆଉ କେଉଁ ଆଶା ଭରସାରେ ସେ ପୁଣି ସଭ୍ୟ ହେବାକୁ ପ୍ରାର୍ଥୀ ହେବେ ?

"ବିଶ୍ୱନାଥ ମିଶ୍ର ଜଣେ ଯୁବକ ବାରିଷ୍ଟର । ବଳବୟସ ଅଛି । ଭାରତ ଲାଟ-ସଭାରେ ସେ ସଭ୍ୟ ଥିଲେ । ତାଙ୍କ ହାତରେ ଅବଶ୍ୟ ଶେଷ ମୀମାଂସା ନଥିଲା । ଲୁଣ ଟିକସ ବୃଦ୍ଧିବେଳେ ଖ୍ରୀ: ୧୯୨୨ ସାଲରେ ବହୁତ ଲଢ଼ି ତାହା ରଦ୍ଦ କରାଇଥିଲେ । ୧୯୨୩ ସାଲରେ ମଧ୍ୟ ବହୁତ ଲଢ଼ିଥିଲେ । ଫଳ ନହେଲା, ସେ କଣ କରିବେ ? ଜଣକଦ୍ୱାରା ବା କଣ ହୋଇପାରେ ? ତେବେ ତାଙ୍କ କର୍ତ୍ତବ୍ୟ ସେ କରିଥିଲେ, ଫଳ ନହେଲା ଆମ କପାଳ । ବିଶ୍ୱନାଥ ମିଶ୍ରେ ବଡ଼ ଉଦ୍‌ଯୋଗୀ ପୁରୁଷ । ସେ ଯାଇ ଗୁଡ଼ାଏ ଲଢ଼ିପାରିବେ ବୋଲି ଆଶା କରାଯାଏ । ଯେବେ ସେ ଯିବାପାଇଁ ପ୍ରାର୍ଥୀ ହେଉଅଛନ୍ତି, ଏଥର ଯାଆନ୍ତୁ । ତାଙ୍କୁ ଏଥର ପରୀକ୍ଷା କରାଯାଉ । ମଧୁବାବୁ ତାଙ୍କ ସାଙ୍ଗେ ଠିଆହେବା ଅସୁନ୍ଦର ହେବ । ଏ ସମସ୍ତ ବିଷୟ ଆଲୋଚନା କଲାପରେ ଭୋଟ ଦେବେ । ଅନୁରୋଧ ଉପରୋଧରେ

ପଡ଼ିବେ ନାହିଁ । ଲୋକ ଦେଖି ବାଛ । ଲୋକପ୍ରତିନିଧି ବାଛି ନପାରିଲେ ଠକିଯିବ। ପଛରେ ବ୍ୟସ୍ତ ହେଲେ କିଏ ଶୁଣିବ ? ସେ ଥରେ ଗଲେ ତାଙ୍କ କାର୍ଯ୍ୟକଳାପ ଆଲୋଚନା କରନ୍ତୁ । ସେ ଯଦି ଅପକାର କଲେ, ତାଙ୍କୁ କହନ୍ତୁ ଯେ ସେ ଆଉ ଭୋଟ ପାଇବେନାହିଁ । ତେବେ ଯାଇ ପ୍ରତିନିଧିମାନଙ୍କ ମନରେ ଭୟ ହେବ । ସେ ଲୋକପ୍ରତିନିଧି ହୋଇ ସରକାର ପକ୍ଷରେ ହୁଁ ମାରିବାକୁ ସାହସ କରିବେ ନାହିଁ । ଲୋକେ ଆପଣା କ୍ଷମତା ବୁଝିପାରିବେ । ଭୋଟର ଭାଇମାନେ, ଏକଥା ଆଚ୍ଛା ରୂପେ ବୁଝି ଭୋଟ ଦେବେ ।''

ପରେ ଏହି ନିବେଦନ ପତ୍ରରୁ କେତେଜଣ ନିଜର ନାମ ପ୍ରତ୍ୟାହାର କରି ନେଇଥିବା ଜଣାଯାଏ । ମଧୁବାବୁଙ୍କୁ ଏମାନେ ସମର୍ଥନ କରି ନଥିଲେ ମଧ୍ୟ ତାଙ୍କ ପ୍ରତିଷ୍ଠି ଓ ଯୋଗ୍ୟତା ସମ୍ବନ୍ଧରେ ତାଙ୍କ ବିରୁଦ୍ଧରେ କିଛି କହିନାହାନ୍ତି । 'ଉତ୍କଳ ଦୀପିକା' ମଧୁବାବୁଙ୍କ ସପକ୍ଷରେ ମତ ବ୍ୟକ୍ତକରି କେତେକ ଲେଖା ପ୍ରକାଶ କରିଥିଲେ । ଗୋଟିଏ ଲେଖା ଭିତରେ ଲେଖିଥିଲେ—''ଓଡ଼ିଶାରେ ମଧୁବାବୁ କଣ କରିଛନ୍ତି, ତାହା ଓଡ଼ିଶାର ଅଛାଆଁ ମୂଳକ ଗଡ଼ଜାତର ପିଲା ମଧ୍ୟ ବୋଲୁଛି—ପାଠ ପଢ଼ିବ, ପାଠ ପଢ଼ିବ, ମଧବାବୁ ସଙ୍ଗେ ଲଢ଼ିବ ।

ଏହି ବର୍ଷ ଉତ୍ତର-କଟକ ନିର୍ବାଚନ ମଣ୍ଡଳୀରୁ ମଧୁପୁରର ରାଜା, ଦକ୍ଷିଣ କଟକରୁ ଶ୍ରୀ ଲକ୍ଷ୍ମୀଧର ମହାନ୍ତି ଓ ଦକ୍ଷିଣ ବାଲେଶ୍ୱରରୁ ଶ୍ରୀଯୁକ୍ତ ଭାଗବତ ପ୍ରସାଦ ମହାପାତ୍ର ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ । ଓଡ଼ିଶା ମ୍ୟୁନିସିପାଲିଟି ନିର୍ବାଚନ ମଣ୍ଡଳୀରୁ ମଧୁବାବୁ ନିର୍ବାଚିତ ହୋଇଥିଲେ ।

## ୨୯ । ମଧୁବାବୁଙ୍କର କଂଗ୍ରେସରେ ଯୋଗଦାନ

ଖ୍ରୀ: ୧୯୨୪ ଫେବୃଆରି ମାସ ୨୦ ତାରିଖ ଦିନ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ପଣ୍ଡିତ ଗୋପବନ୍ଧୁ ଦାଶ ପ୍ରମୁଖ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ଦାବୀକରି ମଧୁବାବୁ ଏକ ବକ୍ତୃତା ଦେଇଥିଲେ । ସେ କହିଥିଲେ—''ସବୁ ସରକାରଙ୍କ କର୍ତ୍ତବ୍ୟ ହେଉଛି ଆଇନ ଓ ଶୃଙ୍ଖଳା ରକ୍ଷାକରିବା ଓ ତାକୁ ଅବ୍ୟାହତ ରଖିବା । ଆଇନ, ବିଧି ଓ ଶୃଙ୍ଖଳାଭଙ୍ଗକାରୀଙ୍କ ନିମନ୍ତେ ଜେଲ୍ ରହିଛି । ମଦ୍ୟପ ଓ ମଦ୍ୟପୀଙ୍କ କାର୍ଯ୍ୟକଳାପ ପରି ଯାହାଙ୍କର କାର୍ଯ୍ୟକଳାପ ସେମାନଙ୍କ ପାଇଁ ମଧ୍ୟ ଏହି ଜେଲ୍ ରହିଛି ।''

ଏହି ପ୍ରସଙ୍ଗରେ ସେ ଓଡ଼ିଶାର ଗୋପବନ୍ଧୁ ବାବୁଙ୍କ କଥା ଉଠାଇଥିଲେ । ଗୋପବନ୍ଧୁ ବାବୁଙ୍କୁ ମଧୁବାବୁ ''ମୋର ପ୍ରିୟ ବନ୍ଧୁ'' ବୋଲି ଭାଷଣରେ କହିଥିଲେ ।

ଗୋପବନ୍ଧୁଙ୍କ ସମ୍ବନ୍ଧରେ ସେ କହିଥିଲେ ଯେ ତାଙ୍କର ଚରିତ୍ର, ଆଗ୍ରହ, ବ୍ୟବହାର ଓଡ଼ିଶାରେ ସର୍ବତ୍ର ଲୋକେ ଜାଣନ୍ତି; ଏହି ଗୃହରେ ଥିବା ଓଡ଼ିଆ ସଭ୍ୟମାନେ ମଧ୍ୟ ଜାଣନ୍ତି । ଏହି ସଭାରେ ଯେତେ ସଭ୍ୟ ଅଛନ୍ତି, ସେମାନଙ୍କ ଅପେକ୍ଷା ସେ ଗୋପବନ୍ଧୁଙ୍କୁ ବେଶିଭାବରେ ଭଲକରି ଜାଣନ୍ତି । ସେ କହିଥିଲେ, "ଏ ଯୁବକର ଜୀବନ ଗଠନ କରିବାରେ ମୁଁ ଅଂଶ ଗ୍ରହଣ କରିଥିବାରୁ ନିଜକୁ ଗୌରବାନ୍ୱିତ ଓ ସମ୍ମାନିତ ମନେକରୁଛି । ମୁଁ ତାଙ୍କୁ ଏହି ବ୍ୟବସ୍ଥାପକ କାଉନ୍‌ସିଲ୍‌କୁ ଅଣାଇବାରେ ସାହାଯ୍ୟ କରିଛି, ଅଣାଇଛି ମଧ୍ୟ । ତାଙ୍କପାଇଁ ଭୋଟ ମଧ୍ୟ ସଂଗ୍ରହ କରେଇଦେଇଛି । ଏହି ଚରିତ୍ରବାନ ଲୋକକୁ ଖଲାସ କରିଦେଲେ ତାଙ୍କ ପ୍ରଭାବରେ ଲୋକେ ଶୃଙ୍ଖଳାଭଙ୍ଗ କରିବେ, ଆଇନ ଅମାନ୍ୟ କରିବେ ବୋଲି ସରକାର ଆଶଙ୍କା କରୁଛନ୍ତି । ଏହାର ଅର୍ଥ କଣ ? ଜଣେ ଭଦ୍ରଲୋକ କଣ ରାଷ୍ଟ୍ରରେ ଅରାଜକତା ସୃଷ୍ଟି କରିପାରେ ? ଏହାର ଅର୍ଥ, ସରକାର ଯେଉଁ ସମାଜ ବ୍ୟବସ୍ଥା ପ୍ରତିଷ୍ଠା କରିଛନ୍ତି, ତାହା ଭଲ ନୁହେଁ । ସମାଜ ବିଦେଶୀ ଶାସନଛତ୍ର ତଳେ ରହି ଭ୍ରଷ୍ଟ ହୋଇଯାଉଛି ।" ଏ ସମ୍ପର୍କରେ ଏକ ଉପମା ଦେଇ ସେ କହିଥିଲେ, "ପୃଥିବୀ ଗର୍ଭରେ ବିସ୍ଫୋରକ ଦ୍ରବ୍ୟ ରହିଛି ବୋଲି, ତୁମେ ପୃଥିବୀରୁ ଅଗ୍ନିକୁ ନିର୍ବାସିତ କରିଦେଇ ପାରିବ ନାହିଁ । ମୁଁ ଗୃହେଁ ନିରାପଦ ଦିଆସିଲି—ଯେଉଁଥିରେ କି ଅଗ୍ନି ବିସ୍ଫୋରିତ ହେବାର ଆଶଙ୍କା ନାହିଁ । ଜଣେ ଚରିତ୍ରବାନ୍ ବ୍ୟକ୍ତିଦ୍ୱାରା ଲୋକଙ୍କର ବ୍ୟାପକ ଅନିଷ୍ଟ ହେବାର ଆଶଙ୍କା କରାଯାଇପାରେ କି ? ଏହି ଚରିତ୍ରବାନ୍ ଲୋକ ପାଖରୁ ଗ୍ରାମବାସୀମାନେ ଦୂରକୁ ପଳାଇ ଯିବେ ନାହିଁ; ତାଙ୍କ ଚାରିପଟେ ସେମାନେ ଘେରି ରହିବେ; କିନ୍ତୁ ଜଣେ ଗୋରା ସାହେବଙ୍କୁ ଦେଖିଲେ ଗ୍ରାମବାସୀମାନେ ଡରି ତାଙ୍କ ନିକଟରୁ ପଳାଇଯିବେ । ଏହା ଏକାବେଳକେ ସତ୍ୟ । ଏଥିରୁ କଣ ବୁଝାଯିବ ? ଲୋକଙ୍କୁ ଶାସନ କରିବାପାଇଁ ସରକାର ଦାୟିତ୍ୱ ନେଇଛି; କିନ୍ତୁ ଏ ଲୋକଙ୍କର ପ୍ରକୃତି ଓ ଚାଲିଚଳଣି ସରକାର ଜାଣିବାକୁ ଅକ୍ଷମ । ଯେଉଁ ଶାସନ ସମ୍ବିଧାନ ସହିତ ଓକିଲମାନେ ସମ୍ପୃକ୍ତ ରହି କାର୍ଯ୍ୟ କରନ୍ତି, ମୁଁ ସେ ସମ୍ବିଧାନ କଥା କହୁନାହିଁ । ଲୋକସାଧାରଣଙ୍କ ହୃଦୟରୁ ଯେଉଁ ଭାବ ପ୍ରକାଶିତ ହେଉଛି, ସେହି ସମ୍ବିଧାନ କଥା ମୁଁ କହୁଛି । ଏହା ମାନବିକ ସମ୍ବିଧାନ । ରାଜନୈତିକ ସମ୍ବିଧାନ ପରି ମାନବିକ ସମ୍ବିଧାନରେ ମଧ୍ୟ ଶାସନତାନ୍ତ୍ରିକ ଭିତ୍ତି ଓ ମୌଳିକ ସତ୍ତା ରହିଛି । ଶାସନତାନ୍ତ୍ରିକ ବିଧିବିଧାନ ସବୁ ଲୋକଙ୍କର ଉପକାର ପାଇଁ ପ୍ରଣୀତ ହୋଇଛି । ମନୁଷ୍ୟର ନୈତିକ, ଶାରୀରିକ, ବୌଦ୍ଧିକ ଶକ୍ତିର ପୂର୍ଣ୍ଣ ବିକାଶ ହେଲେ ସେ ସର୍ବାଙ୍ଗୀନ ପରିପୂର୍ଣ୍ଣତାର ଅଧିକାରୀ ହୁଏ । ସେତେବେଳେ ତାହାର ସ୍ୱାଧୀନ ଓ ନିଜସ୍ୱ ମାନବିକ ବିଧିବିଧାନ ରହେ ।" ହିନ୍ଦୁଶାସ୍ତ୍ରରୁ ଉଦାହରଣ ଦେଇ ସେ କହିଲେ ଯେ, "ନୃସିଂହ ଓ ଗଣେଶଙ୍କ ଆକୃତିରୁ ଜଣାଯାଉଛି ଯେ ଏଥିରେ ମନୁଷ୍ୟ ଓ ପଶୁର ଆକୃତିର କେତେକାଂଶ ଯୋଡ଼ା ହୋଇଛି, ଏଥିରେ ଗଠନର ସାମଞ୍ଜସ୍ୟ ନାହିଁ । ଏହି ମୂର୍ତ୍ତିମାନଙ୍କ ଗଠନରେ

ଦେଖାଯାଉଥିବା ସାମଞ୍ଜସ୍ୟହୀନତା ଯଦି ଶାସନ ବିଧାନରେ ଦେଖାଯାଏ, ତାହାହେଲେ ଏଥିପାଇଁ ଲୋକେ ଦାୟୀ ହେବେନାହିଁ ।''

ସେ ପୁଣି କହିଥିଲେ, ''ବ୍ରିଟିଶ୍ ଶାସନରେ ଲୋକଙ୍କ ଅବସ୍ଥାର ଅବନତି ଘଟୁଛି, ଏହା ସତ୍ୟ କଥା । ଏହା ପୂର୍ବରୁ ଭାରତରେ କଣ ଏପରି ଜନବିକ୍ଷୋଭ ଘଟି ନଥିଲା ? ଚୈତନ୍ୟଙ୍କ ସମୟରେ କଣ ଜନବିପ୍ଲବ ନଥିଲା ? ଏହି ସତ୍ପୁରୁଷଙ୍କୁ ସହସ୍ର ସହସ୍ର ଲୋକ ଘେରି ରହି ନଥିଲେ କି ? ସେହି ଜନବିକ୍ଷୋଭରେ ଆମେମାନେ କଣ ବିକ୍ଷୋଭକାରୀଙ୍କ ସେବାରେ ଲାଗି ନଥିଲୁ ? ଯେଉଁ ହଜାର ହଜାର ଲୋକ ଚୈତନ୍ୟ-ଦେବଙ୍କୁ ଘେରି ରହିଥିଲେ, ସେମାନଙ୍କ ଉପରେ ତାଙ୍କର କୌଣସି ମନ୍ଦ ପ୍ରଭାବ ପଡ଼ିଥିଲା କି ? ଏହି ଲୋକମାନଙ୍କଦ୍ୱାରା ଦେଶର କିଛି ଅନିଷ୍ଟ ଘଟିଛି କି ? ଏହା ଆଇନଶୃଙ୍ଖଳା ପ୍ରତି ବିପଦଜନକ ହୋଇଛି କି ?''

ସେ ସରକାରଙ୍କୁ ଲକ୍ଷ୍ୟକରି କହିଥିଲେ, ''ଯଦି ସରକାର ଭାବୁଥାନ୍ତି ଯେ ଏହି ସଜ୍ଜନ (ଗୋପବନ୍ଧୁ)ଙ୍କ ସମ୍ପର୍କରେ ଲୋକେ ଆସୁଥିବାରୁ ସେହି ବ୍ୟକ୍ତି ଏକ ବିପଦର ଉତ୍ସ, ତାହାହେଲେ ବୁଝିବାକୁ ହେବ ଯେ, ଜନବିକ୍ଷୋଭର କାରଣ ସେହି ବ୍ୟକ୍ତି ନୁହନ୍ତି, ଜନବିକ୍ଷୋଭ ନିମନ୍ତେ ଅନ୍ୟ ପ୍ରକୃତ ସ୍ୱତନ୍ତ୍ର କାରଣ ବିଦ୍ୟମାନ ଅଛି । ଜନସାଧାରଣଙ୍କ-ଠାରୁ ଅନୁସନ୍ଧାନ କରି ଏହି କାରଣ ବୁଝିବାକୁ ହେବ । ଲୋକେ ପ୍ରକୃତରେ କଣ ଚାହାଁନ୍ତି ତାହା ଜାଣିବାକୁ ହେବ ।'' ସେ ପୁଣି କହିଥିଲେ, ''ସରକାର ରାଜନୈତିକ ବନ୍ଦୀମାନଙ୍କୁ ଶୀଘ୍ର ଖଲାସ କରିଦେବା ଉଚିତ ବୋଲି କାଉନ୍ସିଲର ସଭ୍ୟମାନଙ୍କର ଇଚ୍ଛା । ଲୋକେ ମଧ୍ୟ ଏହାହିଁ ଚାହାଁନ୍ତି । ସରକାର ଯାହା ଇଚ୍ଛା ତାହା କରନ୍ତୁ, ମୋର ବ୍ୟକ୍ତିଗତ କାମନା ଓ ଅନୁଭୂତି ସରକାରଙ୍କ ଆଗରେ ପ୍ରକାଶ କଲି । ଏହାର ପ୍ରତିଧ୍ୱନି ଏହି ଗୃହର କାନ୍ଥର ବାହାରପଟୁ ମଧ୍ୟ ସେ ଶୁଣିପାରିବେ ।''

ସେ ପୁଣି କହିଥିଲେ, ''ଯେଉଁମାନେ କୌଣସି ବେଆଇନ କାର୍ଯ୍ୟ କରିନାହାନ୍ତି ଓ ଆଇନଶୃଙ୍ଖଳା ଭଙ୍ଗ କରି ନାହାନ୍ତି, ସେମାନଙ୍କୁ ମୁକ୍ତ କରିଦେବା ସମ୍ପର୍କରେ ସରକାର ସୁବିଚାର କରିବା ଉଚିତ । ସରକାର ପକ୍ଷ କେବଳ ପୋଲିସ ଲାଠି ସାହାଯ୍ୟରେ ଲୋକଙ୍କୁ ଦବେଇ ଦବାକୁ ଚାହାନ୍ତି ।'' ମଧୁବାବୁ ପୁଣି ଜୋର୍ ଦେଇ କହିଥିଲେ, ''ମନୁଷ୍ୟ ପ୍ରକୃତି ଓ ଚରିତ୍ରକୁ ଆମେ ପ୍ରକୃତ ଭାବରେ ଅଧ୍ୟୟନ କରିବାକୁ ଚାହୁଁ । ଏହା କରିପାରିଲେ ଲୋକଙ୍କୁ ଜବତ୍ କରିବା ସମ୍ଭବ ନୁହେଁ । ଯେକୌଣସି ଲୋକକୁ ତୁମେ ଯେତେବେଳେ ଇଚ୍ଛାକରିବ ମାରିପାର, ଫାଶି ଦେଇ ହତ୍ୟା କରିପାର, ସୈନିକମାନଙ୍କ ହାତରେ ବୋମା ଓ ଗୁଳିଦ୍ୱାରା ତାଙ୍କୁ ଧ୍ୱଂସ କରିଦେଇପାର, ଜଣେ ଭଲ ପୁଲିସ୍ ଇନ୍ସପେକ୍ଟର ଜେନେରାଲ୍‌ଙ୍କଦ୍ୱାରା ନରହତ୍ୟା କରାଇପାର; କିନ୍ତୁ ଏ ଦମନନୀତିଦ୍ୱାରା ଲୋକଙ୍କ ମନକୁ ତୁମେ ଜୟ କରିପାରିବ ନାହିଁ । ଯେତେ ବିପଦର ସମ୍ମୁଖୀନ ହେଲେ ମଧ୍ୟ ଲୋକେ ଜାଗ୍ରତ ହେବେ, ବିପ୍ଳବ କରିବେ । ଲୋକେ ତୁମ ବିରୁଦ୍ଧରେ ଉଠିଲେ, ତୁମେ ତାଙ୍କୁ ସମ୍ଭାଳି

ପାରିବ ନାହିଁ । ଘୂର୍ଗେସରେ ଜନବିକ୍ଷୋଭ ଯେପରି ଜନବିପ୍ଳବର ଆକାର ଧାରଣ କରିଥିଲା, ସେହିପରି ଶକ୍ତିଶାଳୀ ବିପ୍ଳବ ହେବ । ଏହାଦ୍ୱାରା କୌଣସି ବ୍ୟକ୍ତିବିଶେଷ ଧ୍ୱଂସ ହେବ ନାହିଁ, ଏହା ତୁମର ବୈଧାନିକ ଶକ୍ତିକୁ ଧ୍ୱଂସ କରିଦେବ, ଶାସନ ବିଧାନକୁ ଧ୍ୱଂସ କରିଦେବ ।"

ସେ ପୁଣି କହିଲେ, "ଯଦି ସରକାର ପ୍ରକୃତରେ ଲୋକଶାସନ ଚାହାନ୍ତି, ତାହାହେଲେ ସେମାନେ ଏ ଦେଶର ଲୋକଙ୍କ ପ୍ରକୃତି, କାମନା ପ୍ରଭୃତି ନିରୂପଣ କରିବା ଉଚିତ । ଲୋକଚରିତ ଓ ବିପ୍ଳବବାଦୀ ଗୋଷ୍ଠୀର ଆଶା ଆକାଂକ୍ଷା ମଧ୍ୟ ଜାଣିବା ଉଚିତ ।"

ଜନବିକ୍ଷୋଭ ପ୍ରତି ସରକାରଙ୍କ ମନୋଭାବକୁ ନାପସନ୍ଦକରି ସେ କହିଲେ—"ସରକାର ଭାରତର ଏ ଜନବିକ୍ଷୋଭ ପ୍ରତି ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ, କି ସମାଧାନ କରିବାକୁ ଚାହାନ୍ତି ନାହିଁ । ଭାରତୀୟଙ୍କ ମନକୁ ବୁଝିବା ନିମନ୍ତେ ମଧ୍ୟ ଚାହାନ୍ତି ନାହିଁ । ଭାରତୀୟ ହୃଦୟକୁ ସ୍ପର୍ଶ ନ କରି କେବଳ ଆଇନଶୃଙ୍ଖଳା ରକ୍ଷା କରିବାକୁ ସରକାର ଚାହାଁନ୍ତି । ଏହାର ଫଳ ହେଉଛି, ଦେଶରେ ଆଇନ ଭଙ୍ଗକରିବା ଓ ବେଆଇନ୍ କାର୍ଯ୍ୟ କରିବା । ଆଇନ ଅମାନ୍ୟ ନିମନ୍ତେ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟି କରିବା । ସରକାର ଯାହା ସୃଷ୍ଟି କରିଛନ୍ତି, ତାହାର ଲୋପସାଧନ କରିବାକୁ ଯାଉଛନ୍ତି । ତୁମେହିଁ ଦେଶରେ ବିଶୃଙ୍ଖଳା ସୃଷ୍ଟି କରୁଛ, ପୁଣି ନିଜେ ସୃଷ୍ଟି କରିଥିବା ବିଶୃଙ୍ଖଳା ଦମନ କରିବାକୁ କହୁଛ । ଥରେ ସ୍କଟଲଣ୍ଡର ଜଣେ ଲୋକ ଶାଶୁଘରେ ପଶି ତାଙ୍କ ପୁଅ ଓ ବୋହୂଙ୍କ ମଧ୍ୟରେ "ମନୋମାଳିନ୍ୟ ଦେଖି କହିଲା 'ତୁମେ ଦୁହେଁ କଳିକର, ତୁମ କଳି ଭାଙ୍ଗିବା ପାଇଁ ମୁଁ ଆସିଛି ।'' ଏହା କହି ମଧୁବାବୁ ଦୃଢ଼ ଭାବରେ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ଦାବୀ କରିଥିଲେ ।

ମଧୁବାବୁଙ୍କ ସ୍ପଷ୍ଟ, ନିର୍ଭୀକ ଓ ନିରପେକ୍ଷ ମନ୍ତବ୍ୟ ଜାତୀୟତାବାଦୀ ସଭ୍ୟମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା । ବୈଠକପରେ ବହୁ ବନ୍ଧୁ ଏହି ବୃଦ୍ଧ ନେତାଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ଏ ଅସ୍ଥିକଙ୍କାଳସାର ଶରୀର ଭିତରେ ଯେ ଜାତୀୟତା ବହ୍ନି ସର୍ବଦା ପ୍ରଜ୍ଜ୍ୱଳିତ ହେଉଛି, ତାହାର ସ୍ପଷ୍ଟ ପ୍ରମାଣ ମିଳିଥିଲା । ଭାରତର ବହୁ ଅଞ୍ଚଳରେ ମଧ୍ୟ ବିଭିନ୍ନ ମତବାଦର ନେତାମାନେ ତାହାଙ୍କୁ ପ୍ରଶଂସା କରିଥିଲେ । ତାଙ୍କ ଭାଷଣରେ ପ୍ରକଟିତ ମୌଳିକ ଦୃଷ୍ଟିଭଙ୍ଗୀ ସବୁ ସଭ୍ୟଙ୍କୁ ଚମତ୍କୃତ କରିଥିଲା । "ଭାରତର ଲୋକଙ୍କ ହୃଦୟ ସ୍ପର୍ଶ ନ କରି କେବଳ ଆଇନ ଓ ଶୃଙ୍ଖଳା ରକ୍ଷାକରିବାକୁ ସରକାର ଚାହାନ୍ତି । ଏହାର ଫଳ ହେଉଛି, ଦେଶରେ ଆଇନ ଭାଙ୍ଗିବା, ବେଆଇନ କାର୍ଯ୍ୟକରିବା ଓ ଆଇନ ଅମାନ୍ୟ କରିବା ପାଇଁ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟି କରିବା । "ସରକାର ଯାହା ସୃଷ୍ଟି କରିଛନ୍ତି ତାହାର ଲୋପ ସାଧନ କରିବାକୁ ଯାଉଛନ୍ତି । ତୁମେ ହିଁ ଦେଶରେ ବିଶୃଙ୍ଖଳା ସୃଷ୍ଟି କରୁଛ । ପୁଣି ତୁମେ ହିଁ ଏହି ନିଜ ସୃଷ୍ଟ ବିଶୃଙ୍ଖଳାକୁ ଦମନ କରିବାକୁ ଚାହୁଁଛ, ଏ

ଦମନ ନୀତିଦ୍ୱାରା ଲୋକଙ୍କ ମନକୁ ଚିରେ ଜୟ କରି ପାରିବ ନାହିଁ ।" ଶାସନ ଓ ଶାସିତର ସଂପର୍କ ଏହି କେତୋଟି ପଂକ୍ତିରେ ସୂତ୍ରରୂପେ ପ୍ରକାଶ ଲାଭ କରିଛି । ଏହି ଶାସନନୀତି ସବୁ ଯୁଗରେ ସର୍ବତ୍ର ପ୍ରଯୁଜ୍ୟ । ଏହି ଶାଶ୍ୱତ ତତ୍ତ୍ୱକୁ ମଧୁବାବୁ ତାଙ୍କର ବିଚକ୍ଷଣ ଓ ଅତୁଳନୀୟ ପ୍ରକାଶଭଙ୍ଗୀରେ ରୂପ ଦାନ କରିଛନ୍ତି । ସେ ସରକାରଙ୍କ ସମର୍ଥକ ବୋଲି ପରିଚିତ ହେଉଥିଲେ ମଧ୍ୟ ବିଧାନସଭା ଭିତରେ ଓ ବାହାରେ ସରକାରଙ୍କ ଅନ୍ୟାୟର ନିର୍ଭୀକ ଓ ସ୍ପଷ୍ଟ ସମାଲୋଚନା କରୁଥିଲେ ଏବଂ ସମାଧାନ ପନ୍ଥାର ସୂଚନା ମଧ୍ୟ ଦେଉଥିଲେ ।

କେହି କେହି କହୁଥିଲେ ଯେ ମଧୁବାବୁ ବେଳକାଳ ଉଣ୍ଡି କଂଗ୍ରେସଲୋକଙ୍କ 'ବାହାବା' ନେବାପାଇଁ ଏ କୌଶଳଟି କରିଥିଲେ । ଅସହଯୋଗ ଓ ଆଇନ ଅମାନ୍ୟ ଆନ୍ଦୋଳନ ପରେ କଂଗ୍ରେସଲୋକେ ମଧୁବାବୁ ସରକାରଙ୍କ ସମର୍ଥକ ଥିବାରୁ ତାଙ୍କୁ ସମାଲୋଚନା କରୁଥିଲେ ଏବଂ ତାଙ୍କୁ ସଭାସମିତିରେ କଠୋରଭାବରେ ଆକ୍ରମଣ ମଧ୍ୟ କରୁଥିଲେ; କିନ୍ତୁ କୁଳବୃଦ୍ଧ ଏଥିରେ ଦବି ଯାଇନଥିଲେ । ସେ ଯାହା କରୁଛନ୍ତି ଓ କହୁଛନ୍ତି ତାହା ନିଜ ସ୍ୱାର୍ଥଦୃଷ୍ଟିରୁ ନହୋଇ ଦେଶହିତକର ଦୃଷ୍ଟିରେ ହେଉଥିବା ଯୋଗୁଁ ତାଙ୍କର ଆତ୍ମବିଶ୍ୱାସ ତାଙ୍କୁ ନୈତିକ ବଳ ଦାନ କରୁଥିଲା । ସମଗ୍ର ଜୀବନ ଦେଶପାଇଁ ଉତ୍ସର୍ଗ କରିଦେଇଥିବାରୁ ସେ କାହାର ନିନ୍ଦା କି ପ୍ରଶଂସାରେ ଭାସି ଯାଉନଥିଲେ କି ଦବି ଯାଉନଥିଲେ । ରାଜନୀତି କ୍ଷେତ୍ରରେ ରାଜନୈତିକ ବ୍ୟକ୍ତିର ଜୀବନରେ ଏହିପରି ନିନ୍ଦା-ସ୍ତୁତିର ଅବକାଶ ବହୁତ ଘଟିଥାଏ । ଆତ୍ମବିଶ୍ୱାସ ଓ ନୈତିକ ଧୈର୍ଯ୍ୟ ଏହାଙ୍କ ଗତିର ଦିଗକୁ ସ୍ଥିରକରି ରଖିଥାଏ । ମଧୁବାବୁ ନିଜ ଦୀର୍ଘ ଜୀବନରେ ବହୁ ନିନ୍ଦା ଓ ସ୍ତୁତି ଶୁଣିଛନ୍ତି, ବହୁ ଅପ୍ରୀତିକର ଘଟଣାର ଶିକାର ହୋଇଛନ୍ତି; କିନ୍ତୁ କୌଣସି ସମୟରେ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିନାହିଁ । କଂଗ୍ରେସ ଲୋକଙ୍କ ଆକ୍ରମଣରେ ମଧ୍ୟ ସେ ବିଚଳିତ ହୋଇପଡ଼ି ନଥିଲେ । ନିନ୍ଦାରୁ ପ୍ରଶଂସା ପାଇବା ଅବସ୍ଥାକୁ ଆସିବା ଲକ୍ଷ୍ୟ ରଖି ସେ ଗୋପବନ୍ଧୁ ଓ ଅନ୍ୟାନ୍ୟ ରାଜନୈତିକ ବନ୍ଦୀଙ୍କ ମୁକ୍ତି ଦାବୀ କରିଥିଲେ ବୋଲି ଯେଉଁ ମତ ପ୍ରକାଶ ପାଉଥିଲା; ତାହା ଯଥାର୍ଥ ନୁହେଁ । ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ଦାବୀ କରିବା ପାଇଁ ସେତେବେଳେ ଯଥେଷ୍ଟ କାରଣ ଥିଲା । ଅସହଯୋଗ ଓ ଆଇନଅମାନ୍ୟ ଆନ୍ଦୋଳନର ତୀବ୍ରତା ହ୍ରାସ ପାଇଯାଇଥିଲା । ଉଗ୍ର ରାଜନୀତି କ୍ଷେତ୍ରରେ କ୍ଳାନ୍ତି ଓ ଶ୍ରାନ୍ତିର ଛାୟା ଦେଖା ଦେଇସାରିଥିଲା । ଏହାହିଁ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତକରିବାର ପ୍ରକୃଷ୍ଟ ସମୟ । ପୁଣି ସେ ସମୟରେ ମାତ୍ର ଅଳ୍ପ ସଂଖ୍ୟକ ରାଜନୈତିକ ନେତା ଓ କର୍ମୀ ଜେଲ ଭିତରେ ଥିଲେ ।

ମଧୁବାବୁଙ୍କ ସହିତ ଶ୍ରୀ ଜଗବନ୍ଧୁ ସିଂହ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ମଧ୍ୟ ବିଧାନ ସଭାରେ ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଦାବୀ କରିଥିଲେ । ପ୍ରାଦେଶିକ ବ୍ୟବସ୍ଥାପକ ସଭାରେ ସେହିଦିନ ରାଜନୈତିକ ବନ୍ଦୀମାନଙ୍କ ମୁକ୍ତି ସମ୍ବନ୍ଧରେ ଆଲୋଚନାର ଅବକାଶ

ମିଳିବାରୁ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିଦେବା ପାଇଁ ପ୍ରଦେଶର ବିଭିନ୍ନ ସଭ୍ୟ ଦାବୀ କରିଥିଲେ ।

ଗୋପବନ୍ଧୁବାବୁଙ୍କ ସମ୍ବନ୍ଧରେ ସରକାରଙ୍କ ପକ୍ଷରୁ ହାମାଣ୍ଡ୍ ସାହେବ ଅତି କଟୁ-ସମାଲୋଚନା କରିଥିଲେ । ମଧୁବାବୁ ନିଜ ଭାଷଣରେ ପଣ୍ଡିତ ଗୋପବନ୍ଧୁଙ୍କୁ ବହୁ ପ୍ରଶଂସା କରିଥିଲେ । ଏହା ସେ ସମୟରେ ବିଧାନସଭାରେ ଓ ବାହାରେ ଆଲୋଚ୍ୟ ବିଷୟ ହୋଇଥିଲା ।

ଏହି ବର୍ଷ (ଖ୍ରୀ: ୧୯୨୩) ଜୁନ ମାସ ଶେଷଆଡ଼କୁ ପଣ୍ଡିତ ଗୋପବନ୍ଧୁ ଦାଶ ଓ ଶ୍ରୀ ଭାଗୀରଥି ମହାପାତ୍ର ହଜାରିବାଗ ଜେଲରୁ ଏକ ସଙ୍ଗରେ ଖଲାସ ହୋଇଥିଲେ । ସେହି ସମୟରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଆନୁକୂଲ୍ୟରେ "ଉତ୍କଳ ପ୍ରାଦେଶିକ ରାଜନୈତିକ ସମ୍ମିଳନୀ"ର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ ଏବଂ କଂଗ୍ରେସରେ ସଭ୍ୟ ମଧ୍ୟ ହୋଇଥିଲେ । ଏହି ଘଟନାକୁ ଲକ୍ଷ୍ୟକରି କେହି କେହି କହିଥିଲେ, "ମଧୁବାବୁ ବ୍ୟବସ୍ଥାପକ ସଭାର ବଜେଟ ଅଧିବେଶନବେଳୁ କଂଗ୍ରେସରେ ଯୋଗଦେବା ପାଇଁ ମନରେ ପାଞ୍ଚୁଥିଲେ ଏବଂ କଂଗ୍ରେସ ରାଜନୀତିରେ ପଶିବା ପାଇଁ ନିଜ ପଥ ସୁଗମ କରିବା ଲକ୍ଷ୍ୟରେ ଗୋପବନ୍ଧୁଙ୍କର ପ୍ରଶଂସା ଗାଇଥିଲେ ।" କିନ୍ତୁ ଏହା ଠିକ୍ ବୋଲି ମନେ ହୁଏନାହିଁ । ଗୋପବନ୍ଧୁଙ୍କ ସମ୍ବନ୍ଧରେ ସେ କିଛି ଅତ୍ୟୁକ୍ତି କରିନାହାନ୍ତି କି ଯୁକ୍ତିହୀନ ଦାବୀ କରିନାହାନ୍ତି; ଯାହା ସତ୍ୟ ଓ ଦେଶପକ୍ଷେ ହିତକର ତାହାହିଁ କରିଛନ୍ତି ।

**ମଧୁବାବୁ କଂଗ୍ରେସର ସଭ୍ୟ ହେଲେ :** ଖ୍ରୀ: ୧୯୨୪ରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଓଡ଼ିଶା ନିମନ୍ତେ ପ୍ରାଦେଶିକ ସମ୍ମିଳନୀର ଆବଶ୍ୟକତା ଅନୁଭବ କରି କଟକରେ ଏପରି ଏକ ସମ୍ମିଳନୀ ଆହ୍ୱାନ କରିଥିଲେ । ଖ୍ରୀ: ୧୯୨୪ ଜୁନ୍ ମାସ ୨୮।୨୯ ତାରିଖରେ ସମ୍ମିଳନୀ ବସିଥିଲା । ପ୍ରଥମରୁ ସ୍ଥିର ହୋଇଥିଲା ଯେ ବିଭିନ୍ନ ଜିଲ୍ଲାର ପ୍ରତିନିଧିସଂଖ୍ୟା ନିର୍ଦ୍ଦିଷ୍ଟ ନଥାଇ କଂଗ୍ରେସ ସଭ୍ୟ ପ୍ରତିନିଧି ହୋଇ ପାରିବେ ଏବଂ ପ୍ରତିନିଧି ହେବାପାଇଁ କୌଣସି ବିଶେଷ ଚାନ୍ଦା ନଦେଇ ସମ୍ମିଳନୀରେ ଯୋଗଦେଇ ପାରିବେ । ବହୁସଂଖ୍ୟକ କଂଗ୍ରେସ ଲୋକ ସମାଗମ ଓ ବିଭିନ୍ନ ସମସ୍ୟାର ବହୁଳ ଆଲୋଚନାହିଁ ଏହି କୋହଳ କଟକଣାର ଲକ୍ଷ୍ୟ ଥିଲା । ଏଥିପାଇଁ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଅଧିନାୟକତ୍ୱରେ ଏକ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା । ପ୍ରଥମେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କୁ ସଭାପତି ହେବାପାଇଁ ଅନୁରୋଧ କରାଯାଇଥିଲା । ଶାରୀରିକ ଅସୁସ୍ଥତାବଶତଃ ସେ ଅସମ୍ମତ ହେବାରୁ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କୁ ଅନୁରୋଧ କରାଗଲା । ସେ ସମ୍ମତ ହେଲେ । ପଣ୍ଡିତ ଗୋପବନ୍ଧୁ ଦାସ ଓ ଶ୍ରୀ ଭାଗୀରଥି ମହାପାତ୍ର କନିକା ଆନ୍ଦୋଳନ ସମ୍ପର୍କରେ ଜେଲଦଣ୍ଡ ପାଇଥିଲେ । ସେମାନେ ଜୁନ୍ ମାସ ୨୬ ତାରିଖରେ ହଜାରିବାଗ ଜେଲରୁ ଖଲାସ

ହେଉଥିବା ସମ୍ବାଦ ମିଳିବାରୁ ସମ୍ମିଳନୀରେ ଯୋଗଦାନ କରିବାକୁ ସେମାନଙ୍କୁ ସୁବିଧା ଦେବା ଉଦ୍ଦେଶ୍ୟରେ ଜୁନ୍ ମାସ ୨୮ ଓ ୨୯ ତାରିଖରେ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା। କଟକ ମ୍ୟୁନିସିପାଲିଟି ହତାଭିତରେ ନିର୍ମିତ ଏକ ସ୍ୱତନ୍ତ୍ର ମଣ୍ଡପରେ ସମ୍ମିଳନୀ ବସିଥିଲା। ଅଭ୍ୟର୍ଥନା ସମିତି ଚାନ୍ଦା ୫୯ ଟଙ୍କା ରଖାଯାଇଥିଲା। ପ୍ରାୟ ୭୫ ଜଣ ଅଭ୍ୟର୍ଥନା ସମିତିର ସଭ୍ୟ ହୋଇଥିଲେ। ମଫସଲ ଓ ସହରରୁ ଚାଉଳ, ଟଙ୍କା ପ୍ରଭୃତି ଚାନ୍ଦା ସ୍ୱରୂପ ମିଳିଥିଲା। ପ୍ରାୟ ଦୁଇଶହ ଯୁବକ ସ୍ୱେଚ୍ଛାସେବକ ହୋଇଥିଲେ। ଗୋଟିଏ ଖଦୀ ଓ ଶିଳ୍ପ ପ୍ରଦର୍ଶନୀ ଏବଂ ଏକ ମହିଳା ସମ୍ମିଳନୀ ମଧ୍ୟ ଏହା ସଙ୍ଗେ ଅନୁଷ୍ଠିତ ହୋଇଥିଲା।

ଏହି ପ୍ରାଦେଶିକ ସମ୍ମିଳନୀରେ କଟକ ଓ ଅନ୍ୟାନ୍ୟ ସ୍ଥାନର ବହୁ କଂଗ୍ରେସ ଓ ବେକଂଗ୍ରେସ ନେତୃସ୍ଥାନୀୟ ବ୍ୟକ୍ତି ପ୍ରତିନିଧି, ଅଭ୍ୟର୍ଥନା ସମିତି ସଭ୍ୟ ବା ଅତିଥି ହିସାବରେ ଯୋଗ ଦେଇଥିଲେ। ସର୍ବଶ୍ରୀ ବିଶ୍ୱନାଥ ଦାଶ, ଶଶିଭୂଷଣ ରଥ, ଲିଙ୍ଗରାଜ ପାଣିଗ୍ରାହି, ନିରଞ୍ଜନ ପଟ୍ଟନାୟକ, ପଣ୍ଡିତ ଗୋପବନ୍ଧୁ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ଜଗବନ୍ଧୁ ସିଂହ, ଗୋପାଳଚନ୍ଦ୍ର ପ୍ରହରାଜ, ଗଣେଶଲାଲ ପଣ୍ଡିତ, ଜାନକୀନାଥ ବସୁ, ଲକ୍ଷ୍ମୀଧର ମହାନ୍ତି, ସତ୍ୟନାରାୟଣ ସେନଗୁପ୍ତ, ଚୌଧୁରୀ ନରହରି ଦାସ ଓ ମଧୁବାବୁ ପ୍ରଭୃତି ସମ୍ମିଳନୀରେ ଯୋଗ ଦେଇଥିଲେ। କଲିକତାର 'ଅମୃତ ବଜାର ପତ୍ରିକା'ର ଶ୍ରୀ ପୀୟୂଷକାନ୍ତି ଘୋଷ ଓ ବିଖ୍ୟାତ ଗାୟକ ଶ୍ରୀ ଦିଲ୍ଲୀପକୁମାର ରାୟ ମଧ୍ୟ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ।

"ସଭାପତି ଆସିବା ପୂର୍ବରୁ ଉତ୍କଳର ବୟୋବୃଦ୍ଧ ଭକ୍ତରାଜନ ମଧୁବାବୁ କଂଗ୍ରେସ ଆବେଦନ ପତ୍ରରେ ସ୍ୱାକ୍ଷର କରି ପ୍ରତିନିଧିଭାବରେ ସଭାରେ ଯୋଗ ଦେଇଥିଲେ।" (ପ୍ରାଦେଶିକ ସମ୍ମିଳନୀ ସଭା ବିବରଣୀ ପୁସ୍ତିକା : ପୃ. ୮) ଏହି ସମ୍ମିଳନୀରେ ବିବିଧ ସମସ୍ୟା ଉପରେ ପ୍ରସ୍ତାବମାନ ଗୃହୀତ ହୋଇଥିଲା। ଦେଶମିଶ୍ରଣ ପ୍ରସ୍ତାବରେ କୁହାଯାଇଥିଲା—"ବଙ୍ଗଳା, ଛୋଟନାଗପୁର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶମାନଙ୍କରେ ଓଡ଼ିଆଭାଷୀମାନେ ବହୁକାଳରୁ ଶାସନସୂତ୍ରରେ ଭିନ୍ନ ଓ ବିଚ୍ଛିନ୍ନ ହୋଇ ରହିଥିବାରୁ ଉତ୍କଳ ଜାତିର ସର୍ବନାଶ ହୋଇଅଛି। ସମଗ୍ର ଉତ୍କଳଭାଷୀ ପ୍ରଦେଶ ଏକ ଶାସନାଧୀନ ନହେବା ପର୍ଯ୍ୟନ୍ତ ଉତ୍କଳ ଜାତୀୟତାର ପୂର୍ଣ୍ଣବିକାଶ ହୋଇପାରିବ ନାହିଁ, ଅତଏବ ସମସ୍ତ ଓଡ଼ିଆଭାଷୀଙ୍କ ମଧ୍ୟରେ ଜାତୀୟତା ଭାବ ଜାଗ୍ରତ ରଖିବା ନିମନ୍ତେ ସର୍ବପ୍ରକାର ଉପାୟ ବିଧାନ ଉଦ୍ଦେଶ୍ୟରେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗୋଟିଏ ସ୍ଥାୟୀ କମିଟି ଗଠିତ ହେଉ ଏବଂ ଏହି ସମ୍ପର୍କରେ ଭାରତ ଜାତୀୟ ମହାସମିତିର ଭାଷାସୂତ୍ରରେ ପ୍ରଦେଶ ଗଠନ କରିବା ନୀତି ଏପର୍ଯ୍ୟନ୍ତ ଏ ପ୍ରଦେଶ ସମ୍ପର୍କରେ କାର୍ଯ୍ୟରେ ପରିଣତ ହୋଇ ନ ଥିବାରୁ ଏହି ସମ୍ମିଳନୀ ଗଭୀର ଆକ୍ଷେପ କରୁଅଛନ୍ତି ଏବଂ ନିଖିଳ ଭାରତ ଜାତୀୟ ସମିତିକୁ ଅନୁରୋଧ କରୁଅଛନ୍ତି ଯେ, ସେ ଏ ପ୍ରସଙ୍ଗରେ ମୀମାଂସା ଭାର ମହାତ୍ମା ଗାନ୍ଧିଙ୍କ ଉପରେ ଅର୍ପଣ କରନ୍ତୁ।"

ଏହି ସଭାରେ ଅଭ୍ୟର୍ଥନା ସମିତିର ସଭାପତି ଶ୍ରୀ ଗୋପବନ୍ଧୁ ଚୌଧୁରୀ "ଦେଶମିଶ୍ରଣ" ସମ୍ପର୍କରେ କଂଗ୍ରେସର ମନୋଭାବକୁ ସ୍ପଷ୍ଟ କରିଦେଇଥିଲେ । ସେ କହିଥିଲେ— "ଉତ୍କଳରେ ଆଜି ଗୋଟିଏ ସମସ୍ୟା ଅଛି । ସେହିଟି ହେଲା, ତାର ବିଚ୍ଛିନ୍ନ ଅବସ୍ଥା ଯୋଗୁ ତାର ଜାତୀୟ ଜୀବନର ଉନ୍ନତିରେ ବାଧା । ଅନେକଗୁଡ଼ିଏ ସରକାରୀ ପ୍ରଦେଶରେ ଖଣ୍ଡ ଖଣ୍ଡ ହୋଇ ଉତ୍କଳ ପ୍ରଦେଶଟି ଅଛି । ସେଥିପାଇଁ ଅନେକ ଅସୁବିଧା ହେଉଛି । ଅବଶ୍ୟ କଂଗ୍ରେସ ଭାଷାସୂତ୍ରରେ ପ୍ରଦେଶମାନ ଗଠନ କରିଛି; କିନ୍ତୁ ଏପର୍ଯ୍ୟନ୍ତ ନିଖିଳ ଭାରତ କଂଗ୍ରେସ କମିଟି ତରଫରୁ ଆନ୍ଧ୍ରୋତ୍କଳ ସୀମାନିର୍ଦ୍ଦେଶ ଇତ୍ୟାଦି ସମ୍ପୂର୍ଣ୍ଣ ହୋଇନଥିବାରୁ କଂଗ୍ରେସ କାର୍ଯ୍ୟରେ ନାନା ବାଧା ଘଟୁଅଛି; କିନ୍ତୁ ସ୍ୱରାଜ୍ୟ ହେବା ପୂର୍ବରୁ ଗୋଟିଏ ଶାସନାଧୀନରେ ସମସ୍ତ ଓଡ଼ିଆଭାଷୀ ଏକତ୍ର ହେବା ସମ୍ଭବ ନୁହେଁ । ଏ ସରକାରଙ୍କ ନିଦ ପାଟିରେ ଭାଙ୍ଗେନାହିଁ । "ଚେଇଁ ଶୋଇବ ଯିଏ, ତାକୁ ଉଠାଇବ କିଏ ?" ଜାତିଟାକୁ ଏକାଠି କରିଦେଲେ କାଳେ ଜାତିଟା ଉଠିପଡ଼ିବ, ସେହି ଭୟରେ ଏତିକ ସରକାର କରିବନାହିଁ । ତେବେ କୌଣସି ବିଶେଷ ଅନ୍ୟାୟର ପ୍ରତିକାର ପାଇଁ ଯେପରି ବଙ୍ଗବିଚ୍ଛେଦ ସମୟରେ ତୁମୂଳ ଆନ୍ଦୋଳନ, ବେରସାଦ (ଗୁଜୁରାଟ)ରେ କର ବନ୍ଦ, ନାଗପୁର ବା ଅକାଳୀ ସତ୍ୟାଗ୍ରହ ବା ତାଞ୍ଜୋରରେ ମିରଣାଦାରମାନଙ୍କ ଟିକସ ବନ୍ଦ ହୋଇଥିଲା, ସେହିପରି କିଛି ନ କରିବା ପର୍ଯ୍ୟନ୍ତ ଏ ସରକାରଙ୍କର ଜ୍ଞାନୋଦୟ ହେବ ନାହିଁ । ସେ ଯାହାହେଉ, ବର୍ତ୍ତମାନ ଏପରି ଭାବରେ ଲୋକମତ ଗଢ଼ିବାକୁ ହେବ, ଯେପରି କି ସ୍ୱରାଜ୍ୟ ସଂଗ୍ରାମ ଖୁବ୍ ଦ୍ରୁତଗତିରେ ଚାଲିବା ସଙ୍ଗେ ସଙ୍ଗେ ଏ ବିଶିଷ୍ଟ ଅନ୍ୟାୟର ପ୍ରତିକାର କରିବା ପାଇଁ ଉତ୍କଳ ସତ୍ୟାଗ୍ରହ କରିବାକୁ ପ୍ରସ୍ତୁତ ହେବ ।"

ଏଥିରୁ ସ୍ପଷ୍ଟ ହେଉଛି ଯେ ଉତ୍କଳ କଂଗ୍ରେସ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଅତି ତୀବ୍ରଭାବରେ ଆନ୍ଦୋଳନ କରିବାକୁ ପ୍ରସ୍ତୁତ ଥିଲେ । ମଧୁବାବୁ ଏହି 'ତୀବ୍ରତା' ବା 'ସତ୍ୟାଗ୍ରହ'ର ପକ୍ଷପାତୀ ନଥିଲେ ମଧ୍ୟ କଂଗ୍ରେସର ପ୍ରତିପତ୍ତି ଦୃଷ୍ଟିରୁ ଏ ଦିଗରେ କିଛି ହୋଇପାରେ ବୋଲି ଆଶା କରିଥିଲେ । କଂଗ୍ରେସ 'ଅସହଯୋଗ' ନୀତିକୁ ସ୍ଥଗିତ ରଖିବାରୁ ସେ ପୁଣି କଂଗ୍ରେସକୁ ଫେରି ଆସିବାକୁ ମନ ବଳାଇଥିଲେ । ଏହି କାରଣରୁ ସେ ପ୍ରାଦେଶିକ ସମ୍ମିଳନୀରେ ଯୋଗଦେଇ କଂଗ୍ରେସ ସଭ୍ୟ ହୋଇଥିଲେ । ମଧୁବାବୁ ଏହା ପୂର୍ବରୁ ପଣ୍ଡିତ ଗୋପବନ୍ଧୁ ଦାଶ, ଶ୍ରୀ ଭଗୀରଥି ମହାପାତ୍ର ପ୍ରଭୃତି କନିକା ଆନ୍ଦୋଳନରେ ଜେଲଦଣ୍ଡ ଭୋଗକରୁଥିବା ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିଦେବାପାଇଁ ସରକାରଙ୍କଠାରେ ବ୍ୟବସ୍ଥାପକ ସଭାରେ ଦାବୀ କରିଥିଲେ ।

ମଧୁବାବୁଙ୍କ ଉତ୍କଳ ଟାନେରୀ ସମ୍ପର୍କରେ ମଧ୍ୟ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା— "ଓଡ଼ିଶାରେ ପ୍ରତିଷ୍ଠିତ ମଧୁବାବୁଙ୍କ ଉତ୍କଳ ଟାନେରୀକୁ ଯୌଥ କରିବାରରେ ପରିଣତ କରି ଏହାକୁ ଉତ୍କଳବାସୀ ବିଦେଶୀଙ୍କ ହାତରୁ ରକ୍ଷାକରି ଦେଶର ଉପକାର କରିପାରିବେ ।

ଏଥିପାଇଁ ଏ ସମ୍ମିଳନୀ ଉତ୍କଳ ଟାନେରୀ ଯୌଥ-କମ୍ପାନୀ ପ୍ରତି ସହାନୁଭୂତି ପ୍ରକାଶ କରୁଛନ୍ତି ଓ ଦେଶବାସୀ ଏଥିରେ ସାହାଯ୍ୟ କରିବେ ବୋଲି ଆଶା କରନ୍ତି ।"

ପ୍ରାଦେଶିକ ରାଜନୈତିକ ସମ୍ମିଳନୀରେ କଂଗ୍ରେସର ଅସହଯୋଗ ନୀତି ଉପରେ ପ୍ରତିଷ୍ଠିତ କାର୍ଯ୍ୟକ୍ରମକୁ ସମର୍ଥନ କରି ଏକ ପ୍ରସ୍ତାବ ଆଗତ ହୋଇଥିଲା । ମଧୁବାବୁଙ୍କ ସହକର୍ମୀ ଶ୍ରୀ ବିଶ୍ୱନାଥ ଦାସ ପ୍ରଭୃତି କେତେକ ବିଶିଷ୍ଟ ନେତା "ଅସହଯୋଗ ନୀତି ଉପରେ ପ୍ରତିଷ୍ଠିତ" ବିଷୟକୁ ସମର୍ଥନ କରି ନଥିଲେ; କିନ୍ତୁ ପ୍ରସ୍ତାବଟି ବହୁ ମତରେ ଗୃହୀତ ହୋଇଯାଇଥିଲା ।

ଚଉଦଟି ପ୍ରସ୍ତାବ ମଧ୍ୟରୁ କେବଳ ପଞ୍ଚମ ପ୍ରସ୍ତାବଟି ବ୍ୟତୀତ ସମସ୍ତ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ପଞ୍ଚମ ପ୍ରସ୍ତାବରେ ଥିଲା—"ଏହି ସମ୍ମିଳନୀ ମହାତ୍ମା ଗାନ୍ଧିଙ୍କଦ୍ୱାରା ପ୍ରବର୍ତ୍ତିତ ଅସହଯୋଗର ନୀତି, କାର୍ଯ୍ୟକ୍ରମ ଓ କଂଗ୍ରେସର ଗଠନମୂଳକ କାର୍ଯ୍ୟରେ ବିଶ୍ୱାସ ଥିବାର ଘୋଷଣା କରୁଅଛନ୍ତି ଏବଂ ଅସହଯୋଗ ନୀତି ଉପରେ ପ୍ରତିଷ୍ଠିତ କଂଗ୍ରେସ କାର୍ଯ୍ୟକ୍ରମରୁ କ୍ରମେ କ୍ରମେ କାର୍ଯ୍ୟରେ ପରିଣତ କରିବାପାଇଁ ଏହି ପ୍ରଦେଶସ୍ଥ କଂଗ୍ରେସ ପ୍ରତିଷ୍ଠାତାମାନେ ପ୍ରତ୍ୟେକ ସଭ୍ୟଙ୍କୁ ପରାମର୍ଶ ଦେଉଛନ୍ତି ।" ଏହି ପ୍ରସ୍ତାବଟି ଶ୍ରୀ ନିରଞ୍ଜନ ପଟ୍ଟନାୟକ ଆଗତ କରିଥିଲେ ଏବଂ ପଣ୍ଡିତ ନୀଳକଣ୍ଠ ଦାସ ଅନୁମୋଦନ କରିଥିଲେ । ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ସଂଶୋଧନ ଆଗତ କଲେ ଯେ ପ୍ରସ୍ତାବରୁ "ଅସହଯୋଗ ନୀତି ଉପରେ ପ୍ରତିଷ୍ଠିତ" ଏହି କଥା ଉଠାଇ ଦିଆଯାଉ । ସଂଶୋଧନ ସପକ୍ଷରେ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର, ମିଷ୍ଟର ମଧୁସୂଦନ ଦାସ, ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ ଓ ଶ୍ରୀଯୁକ୍ତ ଶଶିଭୂଷଣ ରଥ କହିଥିଲେ । ମାତ୍ର ମୂଳ ପ୍ରସ୍ତାବଟି ବହୁ ମତରେ ଗୃହୀତ ହୋଇଯାଇଥିଲା । ("ପ୍ରାଦେଶିକ ସମ୍ମିଳନୀର କାର୍ଯ୍ୟ ବିବରଣୀ" ପୁସ୍ତିକା)

ଏକାକୀ ମଧୁବାବୁ ଯେ ଏହି ପ୍ରସ୍ତାବକୁ ବିରୋଧ କରିଥିଲେ ତାହା ନୁହେଁ, ଶ୍ରୀ ବିଶ୍ୱନାଥ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ମଧ୍ୟ ତାଙ୍କ ସଙ୍ଗେ ଥିଲେ । ଏହି ସମ୍ମିଳନୀ ପରେ ମଧୁବାବୁ ଆଉ କଂଗ୍ରେସ ସହିତ ସମ୍ପର୍କ ରଖି ନାହାନ୍ତି । ଅବଶ୍ୟ, ସେତେବେଳେ ସକ୍ରିୟ ରାଜନୀତିରେ ଯୋଗଦେବା ଭଳି ଶାରୀରିକ ଶକ୍ତି ଓ ବୟସ ତାଙ୍କର ନଥିଲା । ସେତେବେଳକୁ ସେ ୭୬ ବର୍ଷ ବୟସର ବୃଦ୍ଧ । କେବଳ ଅଦମ୍ୟ ମାନସିକ ଶକ୍ତି ଓ ଉତ୍ସାହବଳରେ ସେ ଏ ସମ୍ମିଳନୀରେ ଯୋଗ ଦେଇଥିଲେ । ଉତ୍କଳ ଟାନେରୀକୁ ରକ୍ଷା କରିବାରେ କଂଗ୍ରେସ ନେତାମାନେ କିଛି କରିପାରିବେ ବୋଲି ତାଙ୍କର ମଧ୍ୟ ଆଶା ଥିଲା । ପଣ୍ଡିତ ଗୋପବନ୍ଧୁ ଦାସ ଓ କଟକ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଏ କ୍ଷେତ୍ରରେ କେତେକ ସାହାଯ୍ୟ ମଧ୍ୟ କରିଥିଲେ ଏବଂ ଅଂଶ କ୍ରୟ କରିବାପାଇଁ ଦେଶବାସୀଙ୍କୁ ନିବେଦ କରିଥିଲେ । ଚୌଧୁରୀ ମହାଶୟ ପ୍ରାଥମିକ ଡିରେକ୍ଟର ବୋର୍ଡ଼ର ସଭ୍ୟ ମଧ୍ୟ ହୋଇଥିଲେ ।

ରାଜନୀତି ବ୍ୟତୀତ ସମ୍ମିଳନୀ ଦେଶର ଆର୍ଥିକ ପରିସ୍ଥିତି ସମ୍ବନ୍ଧରେ ବିଚାରକରି ଉତ୍କଳ ଟାନେରି ସମ୍ବନ୍ଧରେ ଯେଉଁ ସହଯୋଗ ଓ ସହାନୁଭୂତିପୂର୍ଣ୍ଣ ପ୍ରସ୍ତାବ ଗ୍ରହଣ କରିଥିଲେ ତାହା ମଧୁବାବୁଙ୍କ କାର୍ଯ୍ୟର ପୂର୍ଣ୍ଣ ସମର୍ଥନ ଜ୍ଞାପନ କରୁଛି । ଋଷିପ୍ରତିମ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ରଙ୍କ ସଭାପତିତ୍ୱରେ ବସିଥିବା ସମ୍ମିଳନୀରେ ଏହି ପ୍ରସ୍ତାବଟି ଗୃହୀତ ହୋଇଥିବାରୁ ଏଥିପ୍ରତି ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସହୃଦୟତା ମଧ୍ୟ ପ୍ରକାଶ ପାଇଛି । ଜାତୀୟ ଶିଳ୍ପାନୁଷ୍ଠାନ ଗଠନ ଓ ପ୍ରସାର କ୍ଷେତ୍ରରେ ମଧୁବାବୁ ଓ ପ୍ରଫୁଲ୍ଲଚନ୍ଦ୍ର ବାବୁ ଉଭୟେ ସହଧର୍ମୀ । ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ "ବେଙ୍ଗଲ କେମିକାଲ ଓ ଫାର୍ମାସ୍ୟୁଟିକାଲ୍ ଓ୍ୱାର୍କସ୍" ପୂର୍ବ-ଭାରତରେ ଯେପରି ନୂତନ ଆଦର୍ଶ ସୃଷ୍ଟି କରିଥିଲା; ମଧୁବାବୁଙ୍କ ଟାନେରି ସେହିପରି ଆଦର୍ଶ ସୃଷ୍ଟି କରିଥିଲା ଏବଂ ଏହି କ୍ଷେତ୍ରରେ ଟାନେରି ଅଗ୍ରଜ ।

ମଧୁବାବୁଙ୍କର ଗାନ୍ଧିଙ୍କ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଥିଲା; କିନ୍ତୁ ଗାନ୍ଧିଙ୍କ ଅସହଯୋଗ ନୀତିକୁ ମଧୁବାବୁ ପସନ୍ଦ କରୁନଥିଲେ ଏବଂ ଏଥିରେ ତାଙ୍କର ବିଶ୍ୱାସ ମଧ୍ୟ ନଥିଲା । ଅସହଯୋଗ ଓ ଆଇନଭଙ୍ଗଦ୍ୱାରା ଦେଶରେ ଅରାଜକତା ବ୍ୟାପିବା ସଙ୍ଗେ ସଙ୍ଗେ ଦେଶର ଆର୍ଥିକ, ସାମାଜିକ ଓ ରାଜନୈତିକ କ୍ଷତି ମଧ୍ୟ ଘଟିବ - ମଧୁବାବୁଙ୍କର ଏହି ମତ ଥିଲା । ସେହି କାରଣରୁ ଅସହଯୋଗ ନୀତି ଉପରେ ପ୍ରତିଷ୍ଠିତ କଂଗ୍ରେସକୁ ସେ ଗ୍ରହଣ କରିପାରି-ନଥିଲେ । ଏହିଠାରୁ ମଧୁବାବୁଙ୍କର କଂଗ୍ରେସ ସହିତ ସମ୍ପର୍କ ଛିନ୍ନ ହୋଇଥିଲା; କିନ୍ତୁ ଗାନ୍ଧିଜୀ କିମ୍ବା କଂଗ୍ରେସବାଲାଙ୍କୁ ସେ ଘୃଣା କରୁନଥିଲେ । କଂଗ୍ରେସର ସଂଗଠନ ଶକ୍ତି, କର୍ମୀମାନଙ୍କର ଦେଶପାଇଁ ତ୍ୟାଗ, ନିଷ୍ଠା ଓ କଷ୍ଟସହିଷ୍ଣୁତାକୁ ସେ ପ୍ରଶଂସା କରୁଥିଲେ । ଏହା ତାଙ୍କ ମହନୀୟ ଚରିତ୍ରର ଏକ ଜ୍ୱଳନ୍ତ ନିଦର୍ଶନ ।

ମଧୁବାବୁ ଖ୍ରୀ: ୧୯୦୩ରେ ଉତ୍କଳ ସମ୍ମିଳନୀ ଆରମ୍ଭକରିବା ପୂର୍ବରୁ କଂଗ୍ରେସ ସହିତ ସମ୍ପର୍କ ରଖିଥିଲେ । ଅବଶ୍ୟ ସେତେବେଳେ ସରକାରଙ୍କ ସହ ସହଯୋଗ ନୀତି ଉପରେ ନିର୍ଭରକରି କଂଗ୍ରେସର ମତାମତ ପ୍ରକାଶ ପାଉଥିଲା । ପ୍ରକୃତରେ ଏହି ସମୟରେ କଂଗ୍ରେସର ମୂଳ ସମ୍ବଳ ଥିଲା, ଆନ୍ଦୋଳନ ମୁଖ୍ୟ ଅଂଶ ଗ୍ରହଣ କରି ପାରିନଥିଲା । ଖ୍ରୀ: ୧୯୦୨ରେ ବଙ୍ଗ ପ୍ରାଦେଶିକ କଂଗ୍ରେସ ଅଧିବେଶନରେ ଦେଶମିଶ୍ରଣ ପ୍ରତି ବଙ୍ଗ ପ୍ରାଦେଶିକ କଂଗ୍ରେସ ଓ ବଙ୍ଗ ନେତାମାନଙ୍କର ଅପ୍ରତ୍ୟାଶିତ ଉଦାସୀନତା ପ୍ରକାଶ ପାଇଥିଲା । ସେଥିରେ ମଧୁବାବୁ ବିଶେଷଭାବରେ କ୍ଷୁବ୍ଧ ହୋଇଥିଲେ ଏବଂ ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ଅନୁଷ୍ଠାନର ଆବଶ୍ୟକତା ତୀବ୍ରଭାବରେ ଅନୁଭବ କରି ପରବର୍ତ୍ତୀ ଉତ୍କଳ ସମ୍ମିଳନୀ ସ୍ଥାପନ କରିଥିଲେ ।

ଭାରତ ଜାତୀୟ କଂଗ୍ରେସର ବଙ୍ଗ ପ୍ରାଦେଶିକ ଅଧିବେଶନରେ ଓଡ଼ିଶାର ପ୍ରତିନିଧି ସ୍ୱରୂପ ମଧୁବାବୁ ଯୋଗ ଦେଇଥିଲେ । ଓଡ଼ିଶା ବଙ୍ଗ ପ୍ରଦେଶରେ ମିଶି ରହିଥିବାରୁ ଓଡ଼ିଶାରୁ ପ୍ରତିନିଧି ଯିବା ସ୍ଥିର ହୋଇଥିଲା । ନିଖିଳ ଭାରତ କଂଗ୍ରେସ ଅଧିବେଶନମାନଙ୍କୁ ମଧ୍ୟ ଓଡ଼ିଶାର ପ୍ରତିନିଧି ଯାଉଥିଲେ । ପ୍ରାଦେଶିକ ଶାଖା ସମ୍ମିଳନୀରେ ଯୋଗଦେଇ

ମଧୁବାବୁ ଓଡ଼ିଶାର ମୁଖ୍ୟ ଦାବୀ ଦେଶମିଶ୍ରଣକୁ ସମର୍ଥନକରି ଏକ ପ୍ରସ୍ତାବ ଏହି ପ୍ରାଦେଶିକ ବୈଠକରେ ଆଣିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ ଏବଂ ନିର୍ଦ୍ଦିଷ୍ଟ ରୂପରେ ଏକ ପ୍ରସ୍ତାବ ମଧ୍ୟ ବିଷୟ- ନିର୍ବାଚନ ସଭାରେ ସେ ଉପସ୍ଥାପିତ କରିଥିଲେ । ମଧୁବାବୁ ଆଶା କରିଥିଲେ ଯେ ତାଙ୍କର ବନ୍ଧୁ (ସାର୍) ଶ୍ରୀ ସୁରେନ୍ଦ୍ର ନାଥ ବାନାର୍ଜୀ ଏହି ପ୍ରସ୍ତାବକୁ ସମର୍ଥନ କରିବେ । କିନ୍ତୁ ସୁରେନ୍ଦ୍ର ବାବୁ କୁଆଡ଼େ ଏହାର ବିରୋଧ କଲେ ଏବଂ ଫଳରେ ଏ ପ୍ରସ୍ତାବ ଆଉ ଆସି ପାରିଲା ନାହିଁ । କଂଗ୍ରେସଦ୍ୱାରା ଦେଶମିଶ୍ରଣ ଲକ୍ଷ୍ୟ ସାଧିତ ହେବା ଆଶା ନଥିବା ଦେଖି ମଧୁବାବୁ ଚିନ୍ତିତ ହୋଇ ପଡ଼ିଲେ । ଦେଶମିଶ୍ରଣ ସମସ୍ୟା ସହିତ ବଙ୍ଗ, ବିହାର, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ଏ ଚାରି ପ୍ରଦେଶ ସଂପୃକ୍ତ ଥିବାରୁ ଏଥିପ୍ରତି ଏଠାର ଅଣଓଡ଼ିଆ ନେତାମାନଙ୍କ ସମର୍ଥନ ପାଇବା ସମ୍ଭବ ନଥିଲା । ପୁଣି, ଏହି ପ୍ରଦେଶର ନେତାମାନଙ୍କର କଂଗ୍ରେସ ଭିତରେ ବେଶି ପ୍ରଭାବ ଥିଲା । ଖଣ୍ଡ-ବିଖଣ୍ଡିତ ଓଡ଼ିଆ ଅଞ୍ଚଳର ପ୍ରତିନିଧିମାନେ ଏମାନଙ୍କ ମତ ବିରୁଦ୍ଧରେ କିଛି କରିପାରିବା ଅସମ୍ଭବ ଥିଲା । ଏ ଅବସ୍ଥା ଦେଖି ମଧୁବାବୁ ଓଡ଼ିଶାପାଇଁ ଏକ ସ୍ୱତନ୍ତ୍ର ସଂସ୍ଥାର କଳ୍ପନା କରିଥିଲେ । ଏହି କଳ୍ପନା ଉତ୍କଳ ସମ୍ମିଳନୀରେ ରୂପାୟିତ ହୋଇଥିଲା ।

ବଙ୍ଗ ପ୍ରଦେଶରେ ସ୍ୱଦେଶୀ ଆନ୍ଦୋଳନ ହେବା ପୂର୍ବରୁ ମଧୁବାବୁ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଶାରେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ ଓ "ସ୍ୱଦେଶୀ ପ୍ରତିଜ୍ଞା" ପତ୍ରରେ ସ୍ୱାକ୍ଷର ମଧ୍ୟ ସଂଗ୍ରହ କରୁଥିଲେ । ସ୍ୱଦେଶୀ ବାର୍ତ୍ତା ପ୍ରଚାର ଓ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର ହିଁ ଏହାର ଉଦ୍ଦେଶ୍ୟ ଥିଲା । ଖ୍ରୀ: ୧୯୦୩ ଡିସେମ୍ବର ଶେଷବେଳାକୁ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହୋଇଥିଲା । ଖ୍ରୀ: ୧୯୦୪ର ପ୍ରାରମ୍ଭରୁ ସମ୍ମିଳନୀର ଉଦ୍ଦେଶ୍ୟ ସାଧନ ଦିଗରେ ସମ୍ମିଳନୀର କର୍ମକର୍ତ୍ତାମାନେ କାର୍ଯ୍ୟ ଆରମ୍ଭକରି ଦେଇଥିଲେ । "ସ୍ୱଦେଶୀ" ବ୍ୟବହାର ସମ୍ମିଳନୀର କର୍ମ-ଯୋଜନାର ଅନ୍ତର୍ଭୁକ୍ତ ଥିଲା । ମଧୁବାବୁ ନିଜେ ପ୍ରଚାରରେ ମଧ୍ୟ ସାହାଯ୍ୟ କରୁଥିଲେ । କୃଷି, ବାଣିଜ୍ୟ ଓ ସ୍ୱଦେଶୀ ଦ୍ରବ୍ୟପ୍ରତି ବିଶେଷ ଧ୍ୟାନଦେଇ ଏହାକୁ କାର୍ଯ୍ୟକାରୀ କରିବାକୁ ହେବ ବୋଲି ସେ ସମସ୍ତଙ୍କୁ ବୁଝାଉଥିଲେ । ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର କରିବା ନିମନ୍ତେ ସଂକଳ୍ପବଦ୍ଧ ରହିବା ଆବଶ୍ୟକଥିବା ଅନୁଭବ କରି ଏକ ସ୍ୱଦେଶୀ ପ୍ରତିଜ୍ଞାପତ୍ର ସମ୍ମିଳନୀ ପକ୍ଷରୁ ପ୍ରଚାର କରି ମଧୁବାବୁ ସେଥିରେ ସ୍ୱାକ୍ଷର ସଂଗ୍ରହ କରାଉଥିଲେ । ନିଜେ ମଧ୍ୟ ସ୍ୱାକ୍ଷର ସଂଗ୍ରହ କରୁଥିଲେ । ସେ ଏ ସମ୍ପର୍କରେ ବିଭିନ୍ନ ସ୍ଥାନରେ ସଭା ସମିତି ମଧ୍ୟ କରୁଥିଲେ । ସେହି ସମୟରେ (ଖ୍ରୀ: ୧୯୦୪) ମଧୁବାବୁ ପୁରୀରେ ଏକ ସାଧାରଣସଭା କରିଥିଲେ । ଏହାର ପ୍ରଭାବ ଛାତ୍ର ଓ ଲୋକଙ୍କ ଉପରେ କିପରି ଭାବରେ ପଡ଼ିଥିଲା, ତାହା ଅନୁଭବୀ ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ ଦାସ ନିଜ ଆତ୍ମଜୀବନୀରେ ପ୍ରକାଶ କରିଛନ୍ତି । ସେତେବେଳେ ନୀଳକଣ୍ଠବାବୁ ପୁରୀ ଜିଲ୍ଲାସ୍କୁଲର ଛାତ୍ର ଥିଲେ । ଏହି ସ୍ୱଦେଶୀ ପ୍ରଚାର ଖ୍ରୀ: ୧୯୦୫ରେ ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନର ଦୁଇବର୍ଷ ପୂର୍ବର ଘଟଣା ।

"ପୁରୀରେ ଜଗନ୍ନାଥବଲ୍ଲଭ ମଠରେ ଏକ ବିରାଟ ସଭା ହୋଇଥିଲା । ସହରର ବହୁ ଭଦ୍ରବ୍ୟକ୍ତି ଓ ସ୍କୁଲଛାତ୍ର ଉପସ୍ଥିତ ଥିଲେ । ସ୍ୱଦେଶୀ ସମ୍ବନ୍ଧରେ ମଧୁବାବୁ ଏକ ଆବେଗପୂର୍ଣ୍ଣ ବକ୍ତୃତା କରିଥିଲେ । ସମସ୍ତେ ତାଙ୍କ ବକ୍ତୃତା ଶୁଣି ତନ୍ମୟ ହୋଇ ଯାଇଥିଲେ । ମଧୁବାବୁ ଏକ ମଲାଟବନ୍ଧା ଖାତାରେ ସ୍ୱଦେଶୀ ପ୍ରତିଜ୍ଞାପତ୍ର ରଖି ଧରିଥିଲେ । ସଭା ଶେଷବେଳକୁ ସେ ଖାତାରେ ସ୍ୱାକ୍ଷର ସଂଗ୍ରହ ଆରମ୍ଭ ହେଲା । ସେଇ ଖାତାର ପ୍ରଥମ ପୃଷ୍ଠାରେ ବାହାରିଲା ଗୋଟିଏ ନିବେଦନ । ତାହାର ମର୍ମ ହେଉଛି, ସମସ୍ତେ ସ୍ୱଦେଶୀ ଜିନିଷ ବ୍ୟବହାର କରିବା ପାଇଁ ସଂକଳ୍ପ କରନ୍ତୁ । ସେହି ସଂକଳ୍ପଟି ଅନ୍ୟ ପୃଷ୍ଠାରେ ମୂଳରୁ ଲେଖାଥିଲା । ଯେତେଦୂର ମନେଅଛି, ତାର ମର୍ମ ହେଉଛି, ମୁଁ ପ୍ରାଣପଣେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବି । ବିଶେଷରେ ସ୍ୱଦେଶୀ ଲୁଗା ଛଡ଼ା ଆଉ କିଛି କେବେ ପିନ୍ଧିବି ନାହିଁ ।' ଏଭଳି କିଛି ମନେ ଅଛି । ସେହି ଖାତା ବୁଲିଗଲା । କେହି ଦସ୍ତଖତ କରିବାକୁ ସାହସ କଲେନାହିଁ । ସେ ହେଉଛି ଇଂରେଜ ଅମଳ । ସେତେବେଳେ ଇଂରେଜଙ୍କ ପ୍ରତିପତ୍ତିର ବେଳ । ଲର୍ଡ଼ କର୍ଜ୍ଜନଙ୍କ ପରି ଦଣ୍ଡା ଲୋକ ସେତେବେଳେ ଗଭର୍ଣ୍ଣର ଜେନେରାଲ୍ । ସାହସ କରି ସ୍ୱଦେଶୀ ପ୍ରତିଜ୍ଞାପତ୍ରରେ ଦସ୍ତଖତ କରୁଛି କିଏ ? ହୁଏତ ଆଜି ଲୋକେ ଏହାର ତାତ୍ପର୍ଯ୍ୟ ଅନୁମାନରେ ବୁଝିପାରିବେ ନାହିଁ । ସଭାରେ ପୁଲିସ ରହିଛି । ଇଂରେଜ ଭୟରେ ଲୋକେ ଥରୁଥାନ୍ତି । ଲୁଗା ସହିତ ସବୁ ବ୍ୟବହାର୍ଯ୍ୟ ମାଲ ହେଉଛି ଇଂରେଜୀ । ଯେହେତୁ ସବୁ ସାହେବଙ୍କର, ତେଣୁ ସବୁ ସରକାରଙ୍କର । ସ୍ୱଦେଶୀ ବ୍ୟବହାର ସଂକଳ୍ପ କଲେ, ସରକାରଙ୍କ ବିରୋଧୀ ହେବାକୁ ହେବ । ଏ କଥାରେ ଯେ ସତ୍ୟ ନଥିଲା, ତା ନୁହେଁ । ବିଶେଷତଃ ପୁଲିସ ଓ ସରକାରୀ କର୍ମଚାରୀମାନେ ଏହାହିଁ ମନେ କରୁଥିଲେ । ପୁଲିସ ଏଥିରେ ବ୍ୟସ୍ତ । ଅନ୍ୟ କର୍ମଚାରୀ ଏଥିରେ ସଙ୍କୁଚିତ । ସଂକଳ୍ପକରି ତହିଁରେ ଦସ୍ତଖତ କରିବା ଏଡ଼େ ସହଜ କଥା ନଥିଲା ।

"ସ୍ପଷ୍ଟ ମନେ ଅଛି, ଏ ପ୍ରତିଜ୍ଞାପତ୍ର ବୁଲି ବୁଲି ଆମ ପାଖକୁ ଆସିଲା । ଆମେ ସେତେବେଳେ ସ୍କୁଲଛାତ୍ର । ସେ ଖାତାରେ ପ୍ରଥମେ ଦସ୍ତଖତ କଲେ ନଗେନ୍ଦ୍ରନାଥ ରକ୍ଷିତ, ତା'ପରେ ଦସ୍ତଖତ କରିଥିଲି ମୁଁ ନିଜେ । ଆମକୁ ଦେଖି କେତେ ଜଣ ଯୁବକ, ବିଶେଷରେ ସ୍କୁଲଛାତ୍ର ଦସ୍ତଖତ କଲେ । ଆଉ କେହି ସ୍ୱାଧୀନଚେତା ଯୁବକ ଦସ୍ତଖତ କରିଥିବେ, ମୋର ଆଜି ମନେ ନାହିଁ; କିନ୍ତୁ ଯେତେଦୂର ମନେଅଛି, କର୍ମଚାରୀ ତ କର୍ମଚାରୀ, ଓକିଲମାନେ ମଧ୍ୟ ଦସ୍ତଖତ କରିବାପାଇଁ ଡରିଗଲେ । ଅବଶ୍ୟ ଅନେକ ଓକିଲ, ମୁକ୍ତାର ସଭାରେ ଅନୁପସ୍ଥିତ ଥିଲେ । ଗୋପବନ୍ଧୁବାବୁ ସେଦିନ କଟକରେ ଥାନ୍ତି । ମାତ୍ର ମନେଅଛି, ଶେଷକୁ ମଧୁବାବୁଙ୍କର ଶେଷ ଓ କରୁଣ ଦୃଷ୍ଟି । ସେ ଯାହାହେଉ, ସେଇଦିନଠାରୁ ପୁରୀ ଜିଲ୍ଲା ସ୍କୁଲ ବୋର୍ଡ଼ିଂରେ ଥିବା ନଗେନ୍ଦ୍ରନାଥ ରକ୍ଷିତ ଓ ମୁଁ ଦୁହେଁ ସ୍ୱଦେଶୀ ବସ୍ତ୍ରାଦି ଛଡ଼ା ଅନ୍ୟ କିଛି ବ୍ୟବହାର କରିନାହୁଁ । ବିଦେଶୀ ବର୍ଜ୍ଜନ ଓ ସ୍ୱଦେଶୀ ବସ୍ତ୍ର ପରିଧାନ

ସେହି ଦିନଠାରୁ ଆରମ୍ଭ କରିଥିଲି । ଏହି ଆରମ୍ଭ ମୂଳରେ ଥିଲି ଗୋଟିଏ ସଂକଳ୍ପ ଓ ସେଇ ସଂକଳ୍ପକୁ ଘେନି ଗୋଟିଏ ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର ।" (ପଣ୍ଡିତ ନୀଳକଣ୍ଠ ଦାସ, ଆତ୍ମଜୀବନୀ, ପୃ. ୭୧-୭୨)

ମଧୁବାବୁ ନିଖିଳ ଭାରତ କଂଗ୍ରେସର ନିମ୍ନଲିଖିତ ବାର୍ଷିକ ଅଧିବେଶନମାନଙ୍କରେ ଯୋଗ ଦେଇଥିବା ଜଣାଯାଏ ।

ଖ୍ରୀ: ୧୮୮୫—କଲିକତା, ୧୮୮୬—କଲିକତା, ୧୮୮୭—ମାନ୍ଦ୍ରାଜ, ୧୮୮୮—ଆଲ୍ଲାହାବାଦ, ୧୮୮୯—ବୋମ୍ବେ, ୧୮୯୦—କଲିକତା, ୧୮୯୧—ନାଗପୁର, ୧୮୯୪—ମାନ୍ଦ୍ରାଜ, ୧୮୯୫—ପୁନା, ୧୮୯୬—କଲିକତା, ୧୮୯୫—ବନାରସ, ୧୮୯୭—ଅମରୌତି, ୧୮୯୮—ମାନ୍ଦ୍ରାଜ, ୧୮୯୯—ଲକ୍ଷ୍ନୌ, ୧୯୦୧—କଲିକତା, ୧୯୧୦—ଆଲ୍ଲାହାବାଦ ଓ ୧୯୧୨—ପାଟନା । ଅନ୍ୟାନ୍ୟ ବର୍ଷମାନଙ୍କର ଅଧିବେଶନରେ ଅନ୍ୟ କାର୍ଯ୍ୟ ଯୋଗୁଁ ଯୋଗଦେବା ତାଙ୍କ ପକ୍ଷେ ସମ୍ଭବ ହୋଇନଥିଲା । ମହାତ୍ମା ଗାନ୍ଧିଙ୍କ ଅସହଯୋଗ ନୀତିକୁ କଂଗ୍ରେସ ଗ୍ରହଣକରିବା ପରେ ସେ ଆଉ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗଦେବାପାଇଁ ଆଗ୍ରହୀ ହୋଇନଥିବା ଦେଖାଯାଏ । ସେ ଅସହଯୋଗର ସମର୍ଥକ ନଥିଲେ । କଂଗ୍ରେସ ସହଯୋଗ ନୀତିରେ ବିଶ୍ୱାସ କରୁଥିବା ପର୍ଯ୍ୟନ୍ତ ଅନ୍ୟାନ୍ୟ ଭାରତୀୟ ଉଦାରପନ୍ଥୀମାନଙ୍କ ପରି ସେ କଂଗ୍ରେସରେ ଯୋଗ ଦେଉଥିଲେ ।

**ଦେଶମିଶ୍ରଣ ପ୍ରତିଜ୍ଞା :** ମଧୁବାବୁଙ୍କର 'ପ୍ରତିଜ୍ଞା' ପ୍ରତି ବିଶେଷ ଆଦର ଥିଲା । 'ସ୍ୱଦେଶୀ ପ୍ରତିଜ୍ଞା' ପରି 'ଦେଶମିଶ୍ରଣ ପ୍ରତିଜ୍ଞା' 'ଉପବାସ' ଓ 'ଦେଶପାଇଁ ପାଞ୍ଚ ମିନିଟ୍' ତାଙ୍କର ମସ୍ତିଷ୍କରୁ ଉଦ୍‌ଭବ ହୋଇଥିଲା ।

ଖ୍ରୀ: ୧୯୧୨ରେ ଉତ୍କଳ ସମ୍ମିଳନୀରେ "ପାର୍ଶ୍ୱ ପରିବର୍ତ୍ତିନ ଏକାଦଶୀ" ଦିନ ମଧୁବାବୁଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ମଣ୍ଡପରେ ପ୍ରତିନିଧିମାନେ ପ୍ରତିଜ୍ଞା କରିଥିଲେ—"ଆମ୍ଭ ଓଡ଼ିଆମାନଙ୍କର ଜାତୀୟ ପାର୍ଶ୍ୱପରିବର୍ତ୍ତନ ହେବା ପର୍ଯ୍ୟନ୍ତ ଆମ୍ଭେମାନେ ପ୍ରତିବର୍ଷ ପାର୍ଶ୍ୱପରିବର୍ତ୍ତିନ ଏକାଦଶୀ ଦିନ ଏକତ୍ରିତ ହୋଇ ଉପବାସକରି ଈଶ୍ୱରଙ୍କ ନିକଟରେ ଆମ୍ଭ ଦୁଃଖ ଜଣାଉଥିବା, ଯେପରି କି ଗଭର୍ଣ୍ଣମେଣ୍ଟ ଆମ୍ଭର ନ୍ୟାଯ୍ୟ ପ୍ରାର୍ଥନା ଗ୍ରହଣକରି ଆମ୍ଭମାନଙ୍କୁ ପୃଥକ୍ ଶାସନ ବା ଯେକୌଣସି ଏକ ଶାସନାଧୀନରେ ରଖିଦେବେ ।" ଏହି ପ୍ରତିଜ୍ଞା ପ୍ରାୟ ଦୁଇବର୍ଷ ପାଳିତ ହୋଇଥିବା ଜଣାଯାଏ । ଏହା ପରେ ଜାତି 'ବ୍ରତଭଙ୍ଗ' ହୋଇପଡ଼ିଲା । ଏହା ଯେ ଜାତୀୟ ମାନସିକ ଦୃଢ଼ତାର ଅଭାବର ପରିଚୟ, ଏଥିରେ ସନ୍ଦେହ ନାହିଁ ।

## ୩୦ । ଶେଷ ଦଶନ୍ଧି (୧)

ମଧୁବାବୁ ଜୀବନରେ ଶେଷ ଦଶନ୍ଧରେ କାଯ୍ଝିକ ପରିଶ୍ରମ ଆବଶ୍ୟକ ହେଉଥିବା କାମ ବେଶି କରିପାରୁନଥିଲେ । ଲେଖାପଢ଼ା କରିବା ଓ ପରାମର୍ଶ ଦେବା କ୍ଷେତ୍ରରେ ତାଙ୍କର ମାନସିକ ଶକ୍ତି ଯଥେଷ୍ଟ ଥିଲା । ସ୍ମରଣଶକ୍ତି ଓ ମନ ମଧ୍ୟ ସତେଜ ଥିଲା ।

ଏହି ସମୟରେ ତାଙ୍କର ଆର୍ଥିକ ଅବସ୍ଥା ସନ୍ତୋଷଜନକ ନଥିଲା । ସେ ଋଣ-ଭାରରେ ନଇଁପଡ଼ିଥିଲେ ଏବଂ ଏହି କାରଣରୁ ମାନସିକ ଅଶାନ୍ତି ମଧ୍ୟ ଭୋଗ କରୁଥିଲେ । ଟାନେରି ଯୋଗୁଁ ସେ ଯେଉଁ ଆର୍ଥିକ କ୍ଷତି ସହିଲେ, ତାହା ଆଉ ପୂରଣ ହେବାର ଆଶା ନଥିଲା । ଟାନେରିକୁ ମଧ୍ୟ ରକ୍ଷା କରିବାଭଳି ଆର୍ଥିକ ଶକ୍ତି ତାଙ୍କର ନଥିଲା । ଏଥିରେ ସେ ବେଳେବେଳେ ହତାଶ ହୋଇପଡ଼ି କହୁଥିଲେ, "ଦେଶ ମୋତେ ଚହ୍ନିଲା ନାହିଁ, ମଧୁ ଦାସ ଫକୀର ହୋଇଗଲା ।" ବହୁ ଚିନ୍ତାଶୀଳ ଲୋକ ମଧୁବାବୁଙ୍କ ଏହି ଅବସ୍ଥା ଯୋଗୁଁ ବ୍ୟଥିତ ହେଉଥିଲେ । ଆର୍ଥିକ ଓ ମାନସିକ ଦୁର୍ଗତି ଭିତରେ ଗତି କରୁଥିଲେ ମଧ୍ୟ ମଧୁବାବୁ କାହାର ସାହାଯ୍ୟପ୍ରାର୍ଥୀ ହୋଇନାହାନ୍ତି । ଏହା ତାଙ୍କର ମାନସିକ ଓ ନୈତିକ ବଳିଷ୍ଠତା ପ୍ରମାଣିତ କରୁଛି । ବହୁ ଭଦ୍ରବ୍ୟକ୍ତି ତାଙ୍କଦ୍ୱାରା ଉପକୃତ ହୋଇଛନ୍ତି । ଥିଲାବେଳେ ତାଙ୍କର ଆର୍ଥିକ ସାହାଯ୍ୟରେ ବହୁ ବିପଦରୁ ରକ୍ଷା ପାଇଛନ୍ତି । ବହୁଲୋକ ତାଙ୍କର ଆର୍ଥିକ ସାହାଯ୍ୟ ଯୋଗୁଁ ନିଜର ଜୀବିକା ଉପାର୍ଜ୍ଜନର ପନ୍ଥା ସୁଗମ ସୁପ୍ରତିଷ୍ଠିତ କରିପାରିଛନ୍ତି ମଧ୍ୟ; କିନ୍ତୁ ନଥିଲାବେଳେ ଏହି ଉପକୃତ ଲୋକଙ୍କ ଭିତରୁ ଅତି କ୍ୱଚିତ୍ ଲୋକ ତାଙ୍କୁ ସହାନୁଭୂତି ଦେଖାଇଛନ୍ତି । ଶୁଣାଯାଏ, ମଧୁବାବୁଙ୍କର ଗୁଣମୁଗ୍ଧ କେତେ ଜଣ ରାଜା, ଜମିଦାର ତାଙ୍କର ଆର୍ଥିକ ଦୁରବସ୍ଥା କିଛି ଅଂଶରେ ଦୂର କରିବାପାଇଁ, ଦରକାର ଥାଉ କି ନଥାଉ, କେତେକ ଆଇନଗତ ବିଷୟରେ ତାଙ୍କର ପରାମର୍ଶ ନେଉଥିଲେ ଏବଂ ଏହି ବାବଦକୁ କିଛି ଅର୍ଥ ତାଙ୍କୁ ଦେଉଥିଲେ । ଏମାନଙ୍କ ଭିତରେ ପାରଳାଖେମୁଣ୍ଡିର ଜମିଦାର ରାଜା ଶ୍ରୀ କୃଷ୍ଣଚନ୍ଦ୍ର ନାରାୟଣ ଦେବ ଓ କନିକାର ଜମିଦାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ସହିତ ମଧୁବାବୁଙ୍କର ବିଶେଷ ସଦ୍‌ଭାବ ଥିଲା ।

ମଧୁବାବୁ ଏହି ଶେଷ ଦଶନ୍ଧରେ ଦେଶମିଶ୍ରଣ, ସ୍ୱତନ୍ତ୍ର ପ୍ରଦେଶ ବିଷୟରେ ବିଭିନ୍ନ ସଭା ଓ କମିଟିରେ ଯୋଗଦେଇ ମୂଲ୍ୟବାନ ପରାମର୍ଶ ଦେଇଛନ୍ତି ଏବଂ ବିଭିନ୍ନ ସ୍ଥାନରେ ବକ୍ତୃତା ଦେଇଛନ୍ତି ।

**ଫିଲିପ୍-ଡଫ୍ କମିଟିର ଅନୁସନ୍ଧାନ :** ଖ୍ରୀ: ୧୯୧୯ରେ ମଣ୍ଟେଗୁ-ଚେମ୍‌ସଫୋର୍ଡ଼ ଶାସନ ସଂସ୍କାର ରିପୋର୍ଟରେ ଓଡ଼ିଶାକୁ ଏକ ସବ୍ ପ୍ରଭିନ୍‌ସ ( ଉପପ୍ରଦେଶ ) କରିବା

ପାଇଁ ସୁପାରିସ୍ ହୋଇଥିଲା । ଶାସନ ସଂସ୍କାର ପ୍ରବର୍ତ୍ତିତ ହେବାପରେ ପ୍ରସ୍ତାବିତ ଉପ-ପ୍ରଦେଶର ସୀମା ନିର୍ଦ୍ଧାରଣ କରାଯିବ ବୋଲି ମଧ୍ୟ ସୁପାରିସ୍ ହୋଇଥିଲା । ଖ୍ରୀ: ୧୯୨୨ରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଓଡ଼ିଶା ଦେଶମିଶ୍ରଣ ଦାବୀକରି ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ମାନ୍ଦ୍ରାଜର ଓଡ଼ିଆ ଅଞ୍ଚଳର ଅଧିବାସୀମାନଙ୍କର ଦେଶମିଶ୍ରଣ ସମ୍ବନ୍ଧରେ ଏ ଅଞ୍ଚଳର ଅଧିବାସୀମାନଙ୍କର ମତାମତ ସଂଗ୍ରହକରି ସୁପାରିସ କରିବା ନିମନ୍ତେ ଭାରତ ସରକାର ଫିଲିପ୍ (C. L. Philip I.C.S.) ଓ ଡଫ (A. C. Duff I.C.S.) ଙ୍କୁ ନେଇ ଏକ ଅନୁସନ୍ଧାନ କମିଟି ନିଯୁକ୍ତ କରିଥିଲେ । ମି. ଫିଲିପ୍ ଆଗେ ଓଡ଼ିଶା ଡିଭିଜନର କମିଶନର ଥିଲେ । ମି. ଡଫ୍ ଆଇ. ସି. ଏସ୍. ମାନ୍ଦ୍ରାଜରେ ଜଣେ ଉଚ୍ଚ ଅଫିସର ଥିଲେ । ଏମାନେ ଖ୍ରୀ: ୧୯୨୪ ଜାନୁଆରୀରେ ମାନ୍ଦ୍ରାଜର ଗଞ୍ଜାମ ଜିଲ୍ଲା ଓ ଭିଶାଖାପାଟଣା ଜିଲ୍ଲାରେ ଅନୁସନ୍ଧାନ ଆରମ୍ଭକଲେ । କମିଟି ଆଗରେ ଲୋକମତ ଉପସ୍ଥାପିତ କରିବା ସମ୍ପର୍କରେ ବିଭିନ୍ନ ସ୍ଥାନରେ ନେତାମାନଙ୍କୁ କୁଳବୃଦ୍ଧ ମଧୁବାବୁ ବରାବର ପରାମର୍ଶ ଦେଉଥିଲେ । ସେତେବେଳକୁ ତାଙ୍କର ବୟସ ପ୍ରାୟ ୭୬ । ଏ ବୟସରେ ମଧ୍ୟ ସେ ଏ କ୍ଷେତ୍ରରେ ବହୁ ପରିଶ୍ରମ କରୁଥିଲେ ।

**ଶ୍ରମର ମର୍ଯ୍ୟାଦା** : ଖ୍ରୀ: ୧୯୨୪ ଫେବୃଆରୀ ୧୭ ତାରିଖରେ ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ରାଜଧାନୀ ପାଟନାଠାରେ ବିହାର ଯୁବ ଅନୁଷ୍ଠାନ (Bihar Young Men's Association ) ପ୍ରକୋଷ୍ଠରେ "ଶ୍ରମର ମର୍ଯ୍ୟାଦା" (Dignitiy of Labour ) ସମ୍ବନ୍ଧରେ ଇଂରେଜୀରେ ଏକ ଚମତ୍କାର ଭାଷଣ ଦେଇଥିଲେ । ଏ ସଭାରେ ବିହାରର ବହୁ ବିଶିଷ୍ଟ ନେତା, ଯୁବକ ଓ ଛାତ୍ର ଉପସ୍ଥିତ ଥିଲେ । ଏଭଳି ଏକ ତଥ୍ୟ ଓ ସତ୍‌ପରାମର୍ଶପୂର୍ଣ୍ଣ ବକ୍ତୃତା କ୍ୱଚିତ ଶୁଣାଯାଇଛି ବୋଲି ଲୋକେ ମତବ୍ୟକ୍ତ କରିଥିଲେ । ବକ୍ତୃତାଟି ଭାରତର ବିଭିନ୍ନ ପ୍ରଦେଶର ପତ୍ରିକାମାନଙ୍କରେ ଉଚ୍ଚ ପ୍ରଶଂସିତ ହୋଇଥିଲା ।

ଏହି ବକ୍ତୃତାରେ ସେ ଅସହଯୋଗ ଆନ୍ଦୋଳନ, ବିଶ୍ୱବିଦ୍ୟାଳୟ ଉପାଧିର ମୂଲ୍ୟ, ହାତ ଓ ଜମି, ଜମି ଓ ସରକାର, ଭୂମିହୀନ ଅସ୍ପୃଶ୍ୟ ଜନସମାଜ, ଯୌଥ କାରବାର ଅର୍ଥନୈତିକ ଦାସତ୍ୱ ପ୍ରଭୃତି ବହୁ ବିଷୟରେ ଗୁରୁତ୍ୱପୂର୍ଣ୍ଣ ମତ ବ୍ୟକ୍ତ କରିଥିଲେ । ପ୍ରସଙ୍ଗ-କ୍ରମେ ଶିଳ୍ପୋନ୍ନତି କ୍ଷେତ୍ରରେ ତାଙ୍କର କାର୍ଯ୍ୟକଳାପ, ଉତ୍କଳ ଟାନେରି, ଗୋବଧ ନିରୋଧ ପ୍ରଭୃତି ବିଷୟରେ କେତେଗୁଡ଼ିଏ ମୌଳିକ ଚିନ୍ତା ପ୍ରକାଶ କରିଥିଲେ ।

'ହାତ ଓ ଜମି' ସମ୍ବନ୍ଧରେ ମଧୁବାବୁ କହିଥିଲେ, "ପ୍ରଜାର ହାତ ଓ ଜମିଦାରର ଜମି ହେଉଛି ସେମାନଙ୍କର ସମ୍ପତ୍ତି । ଜମିର କର୍ଷଣ ହେଉଛି କୃଷି ଏବଂ ହସ୍ତର କର୍ଷଣ ହେଉଛି ଶିଳ୍ପ । ପ୍ରକୃତି ମନୁଷ୍ୟକୁ ମସ୍ତିଷ୍କ ଓ ହସ୍ତ ଏ ଦୁଇଟି ଦାନ କରିଛି । ମସ୍ତିଷ୍କର ନିର୍ଦ୍ଦେଶ ଅନୁସାରେ ହସ୍ତ କାମ କରୁଛି । ସମଗ୍ର ଜନସଂଖ୍ୟାର ଶତକଡ଼ା ୯୮ ଲୋକ

ଜମିରେ କାମ କରୁଛନ୍ତି । କୃଷି ଓ ଶିଳ୍ପରେ କାମ କରୁଥିବା ସମସ୍ତେ କାରିଗର । ଶିଳ୍ପରେ କାମ କରୁଥିବା ଲୋକର ମସ୍ତିଷ୍କ ହେଉଛି ନିର୍ଦ୍ଦେଶକ; କିନ୍ତୁ କୃଷିରେ ଏପରି ନୁହେଁ । ମସ୍ତିଷ୍କର ନିର୍ଦ୍ଦେଶ ଏଥିରେ ଆବଶ୍ୟକ ହୁଏନାହିଁ । ଆମ ଦେଶରେ କୃଷିରୁ ଉତ୍ପାଦିତ ଶସ୍ୟର ଅଧିକାଂଶ ଭାଗ ସରକାର ରାଜସ୍ୱ ସ୍ୱରୂପ ନେଇ ଯାଉଛନ୍ତି; କିନ୍ତୁ, ଇଂଲଣ୍ଡରେ ଭୂରାଜସ୍ୱ ନାହିଁ । ବର୍ତ୍ତମାନ କେତେକ ପ୍ରଦେଶରେ ରାଜସ୍ୱ ବନ୍ଦୋବସ୍ତ ହେଉଛି । ଇଂଲଣ୍ଡର ଅର୍ଥନୈତିକ ନୀତି ଏଠାରେ ସରକାର ପ୍ରୟୋଗ କରୁଛନ୍ତି; କିନ୍ତୁ ଇଂଲଣ୍ଡରେ ଭୂରାଜସ୍ୱ ନଥିବା ବିଷୟ ପ୍ରତି ଲକ୍ଷ୍ୟରଖି ଏ ଦେଶରେ ଭୂରାଜସ୍ୱ ନୀତି ଧାର୍ଯ୍ୟ ହେବା ଉଚିତ । ବର୍ତ୍ତମାନ ଓଡ଼ିଶାରେ ବନ୍ଦୋବସ୍ତ ଚାଲିଛି । ପ୍ରତ୍ୟେକ ଗ୍ରାମରେ ବନ୍ଦୋବସ୍ତ ହାକିମମାନେ ଜମି ମାପିବାରେ ଲାଗିଛନ୍ତି; କିନ୍ତୁ, ଓଡ଼ିଶାର ଲକ୍ଷ ଲକ୍ଷ ଲୋକ ଓଡ଼ିଶା ବାହାରେ ବିଦେଶୀ ମୂଳଧନରେ ପ୍ରତିଷ୍ଠିତ ଓ ପରିଚାଳିତ କଳକାରଖାନା-ମାନଙ୍କରେ କାମ କରୁଛନ୍ତି । ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କର ସର୍ବପ୍ରଥମ କଳକାରଖାନାଗୁଡ଼ିକ ଓଡ଼ିଶାରେ ଆରମ୍ଭ ହୋଇଥିଲା । ଇଂରେଜ ସରକାରଙ୍କ ରାଜତ୍ୱରେ ଓଡ଼ିଶା ଏକ ଶତାବ୍ଦୀରୁ ବେଶିକାଳ ରହିଥିଲେ ମଧ୍ୟ ସରକାର ଗୋଟିଏ ହେଲେ କଳକାରଖାନା ବସାଇବାରେ ଲୋକଙ୍କୁ ସାହାଯ୍ୟ କରିନାହାନ୍ତି ।''

ଭୂମିହୀନ ଅସ୍ପୃଶ୍ୟ ଜାତିର ଲୋକଙ୍କ ସମ୍ବନ୍ଧରେ ମଧୁବାବୁ କହିଥିଲେ, ''ପୂର୍ବେ ଓ ବର୍ତ୍ତମାନ ମଧ୍ୟ ଆମ ଜନସମାଜରେ ଏକ ଅଂଶ ଭୂମିହୀନ ହୋଇ ରହିଛନ୍ତି । ପ୍ରଦେଶର ପରମ୍ପରା ଅନୁସାରେ ଏମାନଙ୍କର ଜମି ନାହିଁ ଏବଂ ଏମାନଙ୍କ ଭିତରୁ ଅଧିକାଂଶ ଅସ୍ପୃଶ୍ୟ ଜାତିର ଲୋକ । ଏମାନେ ଅସ୍ପୃଶ୍ୟ ଥିବାରୁ ଗ୍ରାମର ବାହାରେ ବାସ କରୁଛନ୍ତି ଏବଂ ଫଳରେ ଗ୍ରାମବାସୀମାନଙ୍କର ସାମାଜିକ ଓ ନୈତିକ ପ୍ରଭାବ ଏମାନଙ୍କ ଉପରେ ପଡ଼ୁନାହିଁ । ଏମାନଙ୍କର ଏହି ବିଚ୍ଛିନ୍ନ ବସବାସ ଯୋଗୁଁ ଏମାନେ ସାମାଜିକ ଅପରାଧୀ ରୂପେ ଜୀବନ ଯାପନ କରିବାକୁ ବାଧ୍ୟ ହେଉଛନ୍ତି ।''

ଶିଳ୍ପୋନ୍ନତି ଓ ଦେଶର ଶାନ୍ତି ଶୃଙ୍ଖଳା ବିଷୟରେ ସେ କହିଥିଲେ, ''ମୁଁ ଜର୍ମାନୀ ପରିଦର୍ଶନ କରିବାବେଳେ ସେଠାରେ ଏକ ବାଣିଜ୍ୟ ସାମ୍ରାଜ୍ୟର ଭିତ୍ତି ସ୍ଥାପନ ହୋଇଥିବାର ଦେଖିଥିଲି । ଜର୍ମାନ ସରକାର ସବୁ ଶ୍ରେଣୀର ସ୍ତ୍ରୀ ଓ ପୁରୁଷଙ୍କଠାରୁ କର ଆଦାୟ କରୁଛନ୍ତି । ବାଣିଜ୍ୟ ସାମ୍ରାଜ୍ୟରେ ଶାନ୍ତିଭଙ୍ଗର ଆଶଙ୍କା ନଥିବାରୁ ସେହିଠାରେ ପୋଲିସର ଆବଶ୍ୟକତା ନାହିଁ । ଲୋକଙ୍କ ଚଳନ୍ତି ସମ୍ପତ୍ତି ନିଲାମକରି ବକେୟା ଟିକସ ଆଦାୟ କରିବାପାଇଁ କର୍ମଚାରୀ ନାହାନ୍ତି, କି କୌଣସି ଲୋକଙ୍କ ବିରୁଦ୍ଧରେ ବ୍ୟକ୍ତିଗତ ଭାବେ ପ୍ରତିଶୋଧ ନେବା ମନୋଭାବ ନାହିଁ; କିନ୍ତୁ ଭାରତରେ ଲୋକଙ୍କ ଦୈନନ୍ଦିନ ଜୀବନ, ଏଠାରୁ ହଜାର ହଜାର ମାଇଲ ଦୂରରେ ବିଦେଶରେ ରହୁଥିବା ବିରାଟ କଳକାରଖାନା-ମାନଙ୍କ ଡାଇରେକ୍ଟରମାନଙ୍କଦ୍ୱାରା ନିୟନ୍ତ୍ରିତ ହେଉଛି ।''

ଆର୍ଥିକ ସ୍ୱାୟତ୍ତଶାସନ ବିଷୟରେ ମଧୁବାବୁ କହିଥିଲେ—"ଭାରତର ଉନ୍ନତି ନିମନ୍ତେ ପ୍ରଥମ ପଦକ୍ଷେପ ହେଉଛି, ଧନ, ଜନ, ମନ ଉପରେ ପ୍ରତିଷ୍ଠିତ ଆର୍ଥିକ ସ୍ୱାୟତ୍ତଶାସନ । ଏ କ୍ଷେତ୍ରରେ ଧନିକ ସମ୍ପ୍ରଦାୟଙ୍କ ଆନ୍ତରିକ ସହଯୋଗ ରହିବା ଆବଶ୍ୟକ । ମହାଜନୀ ଅପେକ୍ଷା ଶିଳ୍ପ କାରଖାନାରେ ମୂଳଧନ ବିନିଯୋଗ କରିବା ଶ୍ରେୟ । ଶିଳ୍ପ କାରଖାନାଦ୍ୱାରା ଦେଶର ଉନ୍ନତି ନିଶ୍ଚିତ । ଏଥିପାଇଁ ଆବଶ୍ୟକ ତ୍ୟାଗ । ଧନିକ ସମ୍ପ୍ରଦାୟ ଦେଶପାଇଁ ଏ ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତହେବା ଉଚିତ । କ୍ଷତିର ଆଶଙ୍କା ଥିଲେ ମଧ୍ୟ ଦେଶପାଇଁ ସେମାନଙ୍କୁ ଏତିକି ତ୍ୟାଗ ସହିବାକୁ ପଡ଼ିବ ।"

'ଶିଳ୍ପରେ ବିଫଳତା' ସମ୍ବନ୍ଧରେ ସେ କହିଥିଲେ, "ବଙ୍ଗ ପ୍ରଦେଶରେ ବଙ୍ଗଭଙ୍ଗ ସମୟରେ ଶିଳ୍ପଉନ୍ନତି ଆରମ୍ଭ ହୋଇଥିଲା; କିନ୍ତୁ ସେତେବେଳେ ଲୋକେ ରାଜନୈତିକ ଅନ୍ୟାୟ ଯୋଗୁ ସରକାରଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ଜାତୀୟ ଜୀବନରେ ଐକ୍ୟଭଙ୍ଗ ଉଦ୍ଦେଶ୍ୟରେ ବ୍ରିଟିଶ ସରକାର ଏହି ପ୍ରଦେଶ ଭଙ୍ଗ କରିଛନ୍ତି ବୋଲି ଲୋକେ ଭାବୁଥିଲେ । ରକ୍ତ ସମ୍ପର୍କ, ପ୍ରାଚୀନ ଇତିହାସ, ଜନ୍ମଗତ ପରମ୍ପରା ଲୋକଙ୍କର ଜାତୀୟ ଜୀବନକୁ ଗଠନ କରୁଛି । ତୁମେ ରାଜନୈତିକ ତରବାରିଦ୍ୱାରା ଏହାକୁ ଖଣ୍ଡ-ବିଖଣ୍ଡ କରିଦେଇ ଜାତୀୟ ଭିତ୍ତିର ମୂଳକୁ ତୁମେ ହଲାଇ ଦେଉଛ । ଏହି ଅନ୍ୟାୟ ବିରୁଦ୍ଧରେ ଲୋକେ ଆନ୍ଦୋଳନ ଆରମ୍ଭ କଲେ । ପ୍ରବଳ ବାତ୍ୟା ସମୁଦ୍ର ଉପରେ ପ୍ରବାହିତ ହେବାକ୍ଷଣି ସମଗ୍ର ସମୁଦ୍ର କମ୍ପୁଛି, ପ୍ରତ୍ୟେକ ଜଳବିନ୍ଦୁ ଉତ୍ତାଳ ତରଙ୍ଗ ସୃଷ୍ଟି କରିବାରେ ଯୋଗ ଦେଉଛି । ଏହି ଉତ୍ତାଳ ତରଙ୍ଗ ପୋତର ଦେହରେ ଆଘାତ ଦେଇ ଏହା ସହିତ ଏହାର ଯାତ୍ରୀ ଓ ପଣ୍ୟକୁ ସଲିଳସମାଧି କରିଦେଉଛି । ଏହି ସମୟରେ ସମୁଦ୍ର ତାର ଐକ୍ୟ ଓ ଧ୍ୱଂସକାରୀ ଶକ୍ତିର ଏକ ଦର୍ଶନଯୋଗ୍ୟ ଚିତ୍ର ପ୍ରଦାନ କରୁଛି; କିନ୍ତୁ ଅତଳ ଜଳରେ ଲୁକ୍କାୟିତ ରତ୍ନଭଣ୍ଡାରର ଅନ୍ୱେଷଣ କରିବା ପାଇଁ ଏ ପ୍ରକୃଷ୍ଟ ସମୟ ନୁହେଁ । ଏହି ସମୟର ଶିଳ୍ପୋନ୍ନତି ଚେଷ୍ଟା ଏକ ରାଜନୈତିକ ବ୍ୟାପାର ଥିଲା । ସଭାମଞ୍ଚରେ ବକ୍ତୃତା ଦେଉଥିବା ନେତାମାନେ ଏହାର ପ୍ରଧାନ ଉଦ୍ୟୋକ୍ତା ଥିଲେ । ବକ୍ତୃତା ଲୋକଙ୍କ ମନରେ ଦେଶାତ୍ମବୋଧ ଭାବ ଜାଗ୍ରତ କରାଇ ପାରିଥିଲା ଏବଂ ଏହା ଫଳରେ ଧନୀ ସମ୍ପ୍ରଦାୟ ଶିଳ୍ପ ଉଦ୍ୟୋଗ-ମାନଙ୍କରେ ଧନ ବିନିଯୋଗ କରିଥିଲେ କିନ୍ତୁ ଉତ୍ତେଜନାବଶରୁ ଜାତି ତାହାର ବିଗ୍ଭର ବୁଦ୍ଧିର ଭାରସାମ୍ୟ ହରାଇଲା । ଜାତିର ଆର୍ଥିକ ଉନ୍ନତି ପାଇଁ ବିଗ୍ଭରବୁଦ୍ଧି ଆବଶ୍ୟକ । ଏହି ଆନ୍ଦୋଳନଟି ରାଜନୈତିକ ଯୁଦ୍ଧର ପକ୍ଷମାନଙ୍କର ବ୍ୟବସ୍ଥିତି ମାତ୍ର । ବଙ୍ଗଭଙ୍ଗ ଉଠାଇନେବା ସଙ୍ଗେ ସଙ୍ଗେ ରାଜନୈତିକ ବାତ୍ୟାର ଅବସାନ ଘଟିଲା ଏବଂ ଶିଳ୍ପ ଉଦ୍ୟମଗୁଡ଼ିକ ହତାଦର ଅବସ୍ଥାରେ ପଡ଼ିରହିଲା । ଶେଷରେ, ସେଗୁଡ଼ିକ ମଧ୍ୟ ବନ୍ଦ ହୋଇଗଲା । ଏଥିରେ ଅଂଶୀଦାରମାନଙ୍କର ଆର୍ଥିକ କ୍ଷତି ହେଲା । ଅବଶ୍ୟ, ସେମାନେ ଅଳ୍ପ କେତେକ ପରିମାଣରେ ଅଭିଜ୍ଞତା ଅର୍ଜନ କଲେ । ହେଲେହେଁ, ଯୌଥ କାରବାର ଉପରୁ ଲୋକଙ୍କ ବିଶ୍ୱାସ ତୁଟିଗଲା । ଫଳରେ ଯୌଥ କାରବାର ଉଦ୍ୟମ ପଥରେ ଏହା

ଏକ ବଳିଷ୍ଠ ପ୍ରତିବନ୍ଧକ ହୋଇ ଠିଆହେଲା ।'' ଏ ସମ୍ପର୍କରେ ନିଜର ଉତ୍କଳ ଟାନେରୀର ଇତିହାସ ସଂକ୍ଷେପରେ ବର୍ଣ୍ଣନାକରି ତାହାର ଉନ୍ନତି ପାଇଁ ସେ ଯେଉଁ ପରିଶ୍ରମ ଓ ଧନବ୍ୟୟ କରିଥିଲେ; ତାହା ବର୍ଣ୍ଣନା କରିଥିଲେ ।

ମଧୁବାବୁ ତାଙ୍କ ଭାଷଣରେ ''ଆର୍ଥିକ ଦାସତ୍ୱ'' ସମ୍ବନ୍ଧରେ ଏକ ବିଶ୍ଳେଷଣାତ୍ମକ ବର୍ଣ୍ଣନା ଦେଇଥିଲେ । ଏ ଦେଶରେ ଶିଳ୍ପୋନ୍ନତି ପ୍ରତି ସରକାରୀ ହାକିମମାନଙ୍କ ଅନାଦର ଥିବା କଥା ଅବତାରଣା କରି ଏକ ଉଦାହରଣ ଦେଇ ସେ କହିଥିଲେ—''ପ୍ରତିବର୍ଷ ଜର୍ମାନୀକୁ ଭାରତରୁ ମଲା ପଶୁର ଚମଡ଼ା ବହୁ ପରିମାଣରେ ଯାଉଛି । ୟୁରୋପର ପ୍ରଥମ ମହାଯୁଦ୍ଧର ବହୁ ପୂର୍ବରୁ ଭାରତବର୍ଷର ଆର୍ଥିକ ଅବସ୍ଥା ଉପରେ ଜର୍ମାନୀକୁ ଏହି ଚମଡ଼ା ରପ୍ତାନିର ବିଶେଷ ପ୍ରଭାବ ଥିବା ତାହା ମୁଁ ବୁଝିପାରିଲି । ଚିଠିପତ୍ର ଲେଖି ଓ କେନ୍ଦ୍ର ବ୍ୟବସ୍ଥାପକ ସଭାଗୃହରେ ପ୍ରଶ୍ନ ପଚାରି ଏଥିପ୍ରତି ମୁଁ ସରକାରୀ ହାକିମମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲି; କିନ୍ତୁ ବେସରକାରୀ ସଭ୍ୟଙ୍କ ପରାମର୍ଶକୁ ସରକାର ପକ୍ଷ ବରାବର ଘୃଣା ଚକ୍ଷୁରେ ଦେଖୁଥିବା ହେତୁ ଏଥି ପ୍ରତି ଦୃଷ୍ଟି ଦେଲେ ନାହିଁ । ମଲାପଶୁର ଚମଡ଼ା କଷ କରିବା ପ୍ରଣାଳୀ ଜର୍ମାନ୍ ଲୋକଙ୍କଠାରୁ ଶିକ୍ଷା-କରିବା ଉଚିତ ବୋଲି ମୁଁ ଅନୁଭବ କରିଥିଲି । ଏହି କାରଣରୁ ମୁଁ ଉତ୍କଳ ଟାନେରୀରେ ଦୁଇଜଣ ଜର୍ମାନ କାରିଗରଙ୍କୁ ନିଯୁକ୍ତ କରିଥିଲି । ଯୁଦ୍ଧ ଆରମ୍ଭ ହୋଇଯିବାକ୍ଷଣି ଏହି ଦୁଇଜଣଯାକ ଗିରଫ୍ ହୋଇଗଲେ । ପ୍ରତିଦିନ ପ୍ରତ୍ୟୁଷରେ ଜଗନ୍ନାଥ ମନ୍ଦିର ଓ ଅନ୍ୟାନ୍ୟ ମନ୍ଦିରମାନଙ୍କରେ ତୂରୀ, ଭେରୀ, ମର୍ଦ୍ଦଳ ଓ ଢୋଲର ମିଶ୍ରିତ ଶବ୍ଦ ତୁମେ ଶୁଣୁଥିବ । ଏଥିରେ ବେଶୀ ସଂଗୀତ ନାହିଁ; କାରଣ ଦେବତାମାନଙ୍କୁ ଉଠାଇବା ହେଉଛି ଏହାର ଉଦ୍ଦେଶ୍ୟ । ହିନ୍ଦୁଦେବତା ଓ ସିମିଲା ପାହାଡ଼ ଶିଖରରେ ବାସ କରୁଥିବା ବେସରକାରୀ ଦେବତାମାନଙ୍କ ଭିତରେ ବିଶେଷ ସାମ୍ୟ ଅଛି ।''

ଏହା ପରେ ସେ କହିଲେ, 'ଯୁଦ୍ଧର କମାଣ ଧ୍ୱନିଦ୍ୱାରା ଭାରତୀୟ ସରକାରଙ୍କ ନିଦ ଭାଙ୍ଗିଲା । ଭାରତର ଚମଡ଼ାରେ ଜର୍ମାନୀ ୪ କୋଟି ୮୦ ଲକ୍ଷ ଜୋତା ତିଆରି କରୁଥିବା ଭାରତସରକାର ଦେଖିପାରି ଚମଡ଼ା ରପ୍ତାନି ଉପରେ ଶତକଡ଼ା ୧୫ ଭାଗ ଶୁଳ୍କ ବସାଇଲେ; କିନ୍ତୁ, ବ୍ରିଟିଶ୍ ସାମ୍ରାଜ୍ୟ ଭିତରେ କାରଖାନାରେ ଯେଉଁ ଚମଡ଼ା ବ୍ୟବହାର କରିବେ, ତାହା ଉପରେ ଶୁଳ୍କର ଶତକଡ଼ା ଦଶଭାଗ ଛାଡ଼ ଦେବା ଘୋଷଣା କଲେ ଏବଂ ଭାରତ ବ୍ୟତୀତ ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ୟ ସବୁ ରାଜ୍ୟ ଏହି ସୁବିଧା ଭୋଗ କରିବେ ବୋଲି ସରକାର କହିଲେ । ଏହାଦ୍ୱାରା ଏହି ବ୍ୟବସାୟରେ ଭାରତ ଲାଭବାନ୍ ନ ହୋଇ ବ୍ରିଟିଶ ସାମ୍ରାଜ୍ୟର ଅନ୍ୟମାନେ ଲାଭବାନ୍ ହେଲେ । ବର୍ଷକୁ ପ୍ରାୟ ୧୨ କୋଟି ଟଙ୍କାର ଚମଡ଼ା କେବଳ କଲିକତାରୁ ଜର୍ମାନୀକୁ ରପ୍ତାନି ହୁଏ ।''

ମଧୁବାବୁ କହିଥିଲେ, ''ଅର୍ଥନୈତିକ ମାଧ୍ୟାକର୍ଷଣ ଶକ୍ତିର ଦିଗକୁ ପରିବର୍ତ୍ତନ କରିବାକୁ ହେବ, ଏ ସମ୍ବନ୍ଧରେ ଲୋକଙ୍କୁ ବୁଝାଇବାକୁ ହେବ । ଦେଶର ସମୃଦ୍ଧି ପକ୍ଷେ

ବର୍ତ୍ତମାନର ଅର୍ଥନୈତିକ ମାଧ୍ୟାକର୍ଷଣର ଧାରା ଅନୁକୂଳ ନୁହେଁ । ସମଗ୍ର ଦେଶଟି ବର୍ତ୍ତମାନର ଶାସନଚକ୍ରରେ ବନ୍ଧା ହୋଇ ରହିଛି । ଚକ୍ର ଘୂରିବା ସଙ୍ଗେ ସଙ୍ଗେ ତାହାର ଗତି ବୃଦ୍ଧି ପାଉଛି ଏବଂ ଏହି ଚକ୍ରରେ ବନ୍ଧା ହୋଇଥିବା ହାତ ଶ୍ରମିକର ଯନ୍ତ୍ରଣା ମଧ୍ୟ ବୃଦ୍ଧି ପାଉଛି । ଜମିରେ କାମ କରୁଥିବା ହାତର ମଧ୍ୟ ସେହି ଅବସ୍ଥା । ଏହି ହାତ ମଧ୍ୟ ଶାସନଚକ୍ରରେ ବନ୍ଧା ହୋଇଛି । ବର୍ତ୍ତମାନ ସବୁ ଧନ ଜମିରେ ବିନିଯୋଗ ହେଉଛି । ଯାହା ପାଖରେ ଧନ ଅଛି, ସେ ତାକୁ ଜମିରେ ପୋତି ଦେଉଛି ବା ଜମି କିଣାରେ ବ୍ୟୟ କରୁଛି । ଏହାର ପରିବର୍ତ୍ତନ ଆବଶ୍ୟକ । ଲୋକଙ୍କୁ ବୁଝାଇବାକୁ ହେବ ଯେ ଧନ ଏକ ଶକ୍ତି । ଧନକୁ ଶକ୍ତିରେ ପରିଣତ କରିବାକୁ ହେଲେ ଧନ ବିନିଯୋଗ ନିଜ କର୍ତ୍ତୃତ୍ୱାଧୀନରେ ରହିବା ଆବଶ୍ୟକ ।"

ଏହି ସମ୍ପର୍କରେ ଲୋକେ କିପରି କେଉଁଠାରେ ଧନ ବିନିଯୋଗ କରୁଛନ୍ତି, ଏହା-ଦ୍ୱାରା ଭଲ ହେଉଛି କି ମନ୍ଦ ହେଉଛି, ସେ ତାହା ବୁଝାଇଥିଲେ । ସେ ପରାମର୍ଶ ଦେଇଥିଲେ ଯେ ହିନ୍ଦୁ ଓ ମୁସଲମାନ ଏ ଉଭୟ ସମ୍ପ୍ରଦାୟ ଚମଡ଼ା ବ୍ୟବସାୟ ସହିତ ସମ୍ପୃକ୍ତ ଥିବାର ଉଭୟ ସଂପ୍ରଦାୟର ବିଶିଷ୍ଟ ଲୋକଙ୍କୁ ନେଇ ଯଦି ଏକ କମିଟି ଗଠନକରି ଏହାଙ୍କଦ୍ୱାରା ଏହି ଶିଳ୍ପ ସମ୍ବନ୍ଧରେ ବିଶେଷ ତଥ୍ୟ ସଂଗ୍ରହ ଓ ପର୍ଯ୍ୟାଲୋଚନା କରାଯାଆନ୍ତା, ତାହାହେଲେ ଏହି ବ୍ୟବସାୟର ଉନ୍ନତି ସମ୍ଭବ ହୁଅନ୍ତା । ଏହାଦ୍ୱାରା ବ୍ୟବସାୟର ଉନ୍ନତି ହେବା ସଙ୍ଗେ ସଙ୍ଗେ ମଧ୍ୟ ଚମଡ଼ା ଲୋଭରେ ବୁଢ଼ା ହଡ଼ା ଗୋରୁ ହଣା ହେବା କମିଯାଆନ୍ତା ।"

ମଧୁବାବୁ ଶିଳ୍ପୋନ୍ନତି ସହିତ ସ୍ୱାଧୀନତା କିପରି ଅଙ୍ଗାଙ୍ଗୀଭାବେ ଜଡ଼ିତ ତାହା ଏହି ସମ୍ମିଳନୀରେ ବୁଝାଇଥିଲେ । ବଙ୍ଗଭଙ୍ଗ ସମୟରେ ବଙ୍ଗ ପ୍ରଦେଶରେ ଦେଖା-ଦେଇଥିବା ଶିଳ୍ପୋନ୍ନତି ତିଷ୍ଠି ନ ପାରିବାର କାରଣ ନିର୍ଦ୍ଦେଶକରି ମଧୁବାବୁ ଯାହା କହିଛନ୍ତି, ତାହା ମଧ୍ୟ ପ୍ରତ୍ୟେକ ରାଜନୈତିକ ନେତା ଓ ଶିଳ୍ପପତିଙ୍କର ଅନୁଧ୍ୟାନର ବିଷୟ ହୋଇଥିଲା । ମଧୁବାବୁ ଏ କ୍ଷେତ୍ରରେ ଅନ୍ୟକୁ ଉତ୍ତମ, ବାସ୍ତବ ଓ ମୂଲ୍ୟବାନ୍ ଉପଦେଶ ଦେଇଥିଲେ ମଧ୍ୟ ନିଜ ବେଳକୁ ତାହା କେତେକାଂଶରେ ଭୁଲିଯାଇଥିଲେ କହିଲେ ଚଳେ । ଶିଳ୍ପ ଉଦ୍ୟମର ସୁକ୍ଷ୍ମ ବ୍ୟୟପ୍ରତି ସେ ବିଶେଷ ଧ୍ୟାନ ଦେଇ ନ ଥିବାରୁ ତାଙ୍କର ଉଦ୍ୟମ-ଗୁଡ଼ିକ ଦୁରବସ୍ଥା ଭୋଗ କରି ସଢ଼ି ସଢ଼ି ମରିଯାଇଛି ।

**ମହାତ୍ମାଜୀଙ୍କ ଟାନେରୀ ପରିଦର୍ଶନ** ମହାତ୍ମା ଗାନ୍ଧିଙ୍କ ସହିତ ଉତ୍କଳ ଟାନେରୀର ଆର୍ଥିକ ଅବସ୍ଥା ସମ୍ବନ୍ଧରେ ଆଲୋଚନା କରିବାପାଇଁ ମଧୁବାବୁ ଖ୍ରୀ: ୧୯୨୫ରେ ଅହମଦାବାଦ ଯାଇଥିଲେ । ମଧୁବାବୁଙ୍କ ନିମନ୍ତ୍ରଣକ୍ରମେ ମହାତ୍ମା ଗାନ୍ଧୀ ଉତ୍କଳ ଭ୍ରମଣବେଳେ ତାଙ୍କ ଘରେ ତାଙ୍କର ଅତିଥି ହୋଇଥିଲେ । ଖଦୀ, ଚରଖା, ଟାନେରୀ ପ୍ରଭୃତି ବହୁ ସ୍ୱଦେଶୀ ଶିଳ୍ପ ସମ୍ବନ୍ଧରେ ମହାତ୍ମାଙ୍କ ସହିତ ସେ ଆଲୋଚନା

କରିଥିଲେ । ( ଏହାର ବିସ୍ତୃତ ବିବରଣୀ "ଉତ୍କଳ ଟାଇମ୍ସ" ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି । )

**"ଦେଶବନ୍ଧୁ ଜଣେ ଆଦର୍ଶ ନେତା ଥିଲେ"** : ଖ୍ରୀ: ୧୯୨୫ ଜୁନ୍ ମାସ ୧୬ ତାରିଖ ମଙ୍ଗଳବାର ଦିନ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ପରଲୋକ ଗମନ କଲେ । କଟକରେ ୧୮ ତାରିଖ ଗୁରୁବାର ଦିନ ଟାଉନ ହଲ୍‌ରେ ଏକ ଶୋକସଭା ହୋଇଥିଲା । ବାରିଷ୍ଟର ବିଶ୍ୱନାଥ ମିଶ୍ର ସଭାପତି ହୋଇଥିଲେ । ବାବୁ ମଧୁସୂଦନ ଦାସ, ବିଶ୍ୱନାଥ କର, ନୀଳକଣ୍ଠ ଦାସ, ରାଜକୃଷ୍ଣ ବୋଷ ପ୍ରଭୃତି ଭାଷଣ ଦେଇଥିଲେ । ମଧୁବାବୁ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଅପୂର୍ବ ପ୍ରତିଭା ଓ ଦେଶପାଇଁ ତାଙ୍କର ତ୍ୟାଗର ପ୍ରଶଂସା କରି ସେ ଜଣେ ଆଦର୍ଶ ଦେଶସେବକ ଓ ନେତା ଥିଲେ ବୋଲି କହିଥିଲେ ।

**ସାର୍ ସୁରେନ୍ଦ୍ରନାଥଙ୍କ ବିୟୋଗରେ ଶୋକସଭା** ଖ୍ରୀ: ୧୯୨୫ ଅଗଷ୍ଟ ୬ ତାରିଖରେ ବିଖ୍ୟାତ ନେତା ସାର୍ ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କର କଲିକତାରେ ବିୟୋଗ ହୋଇଥିଲା । ୧୨ ତାରିଖ ଦିନ କଟକ ଟାଉନ୍‌ହଲ୍‌ରେ ଏକ ଶୋକ ସଭା ହୋଇଥିଲା । ମଧୁସୂଦନ ଦାସ ସଭାପତି ହୋଇଥିଲେ ।

ମଧୁବାବୁ ସ୍ୱ ଭାଷଣରେ କହିଥିଲେ—"ସୁରେନ୍ଦ୍ରନାଥଙ୍କ ସହିତ ମୋର ବହୁ ଦିନରୁ ବିଶେଷ ଜଣାଶୁଣା ଥିଲା । ସେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ଅନେକ ସମୟରେ ମୁଁ ତାଙ୍କର ସହକର୍ମୀ ଥିଲି । ସୁରେନ୍ଦ୍ରନାଥ ନଥିଲେ ବର୍ତ୍ତମାନ ବଙ୍ଗବାସୀମାନେ ଯେଉଁଭଳି ଉନ୍ନତି କରିଅଛନ୍ତି, ତାହା କଦାଚ ସମ୍ଭବ ହୋଇପାରି ନଥାନ୍ତା । ଆଧୁନିକ ବଙ୍ଗର ରାଜନୈତିକ କ୍ଷେତ୍ରରେ ଯେଉଁ ଉନ୍ନତି ସାଧିତ ହୋଇଅଛି, ସେ ସମସ୍ତର ମୂଳକର୍ତ୍ତା ହେଉଛନ୍ତି ସାର ସୁରେନ୍ଦ୍ରନାଥ । ଶେଷ ସମୟକୁ ସେ ବଙ୍ଗ ପ୍ରଦେଶର ମନ୍ତ୍ରିତ୍ୱ ଗ୍ରହଣ କରିବାରୁ ଅନେକେ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଥିଲେ ; ମାତ୍ର ସେ ମନ୍ତ୍ରିତ୍ୱ ଗ୍ରହଣ କରି ନଥିଲେ କଲିକତାର କର୍ପୋରେସନ୍‌ରେ ସି. ଆର. ଦାସ (ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ) ମେୟର ହୋଇପାରି ନଥାନ୍ତେ, କି ସେ ଯେଉଁ ଉନ୍ନତିମୂଳକ କାର୍ଯ୍ୟଗୁଡ଼ିକ କରିଥିଲେ, ତାହା ହୋଇପାରି ନ ଥାଆନ୍ତା । ସାର୍ ସୁରେନ୍ଦ୍ରନାଥ ମନ୍ତ୍ରୀ ହୋଇ ମ୍ୟୁନିସିପାଲ୍ ଆଇନ୍ ପରିବର୍ତ୍ତନ କରିଥିବାରୁ ଆଜି ତାହାର ଫଳରେ କଲିକତା କର୍ପୋରେସନ୍‌ରେ ଭାରତବାସୀ ମାଲିକ ହୋଇ ପାରିଛନ୍ତି । ଆଧୁନିକ ବଙ୍ଗର ସର୍ବବିଧ ଉନ୍ନତିର ମୂଳକର୍ତ୍ତା ଥିଲେ ସାର୍ ସୁରେନ୍ଦ୍ରନାଥ ।"

ଏହି ସଭାରେ ଛାତ୍ରମାନେ ବହୁସଂଖ୍ୟାରେ ଯୋଗ ଦେଇନଥିବାରୁ ମଧୁବାବୁ ଦୁଃଖ ପ୍ରକାଶ କରିଥିଲେ । ସେଦିନ ଫୁଟବଲ ମ୍ୟାଚ୍ ଥିବାରୁ ବହୁ ଛାତ୍ର ଖେଳ ଦେଖିବାକୁ ଚାଲିଯାଇଥିଲେ । ମଧୁବାବୁ ଏହାକୁ ଲକ୍ଷ୍ୟ କରି କହିଥିଲେ, "ଏହା ବାସ୍ତବିକ୍ ବଡ଼ ଦୁଃଖର ବିଷୟ । ସାର୍ ସୁରେନ୍ଦ୍ରନାଥଙ୍କୁ ଏକ ସମୟରେ କଲେଜ ଛାତ୍ରମାନେ

ଦେବତା ପର ପୂଜା କରୁଥିଲେ । ଏଭଳି ଜଣେ ମହାପୁରୁଷଙ୍କ ଶୋକସଭା ସମୟରେ ଆମ୍ଭମାନଙ୍କ ଦେଶର ଭାବୀ ଆଶା ଭରସା ଯୁବକସମାଜ ଫୁଟବଲ୍ ଖେଳରେ ମାତ୍ର ଯୋଗ ନଦେବା ବଡ଼ ଦୁଃଖର ବିଷୟ ।"

**ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନ :** ଉତ୍କଳ ସାହିତ୍ୟ ସମାଜର ଷଂଷଷ୍ଠ ବାର୍ଷିକ ଅଧିବେଶନ ଖ୍ରୀ: ୧୯୨୫ ସେପ୍ଟେମ୍ବର ୧୨ ତାରିଖରେ କଟକ ଟାଉନହଲ୍‌ରେ ଅନୁଷ୍ଠିତ ହୋଇଥିଲା । ମଧୁବାବୁ ସଭାପତି ହୋଇଥିଲେ । ମାତୃଭାଷାର ଓ ସାହିତ୍ୟର ଉନ୍ନତି ସମ୍ବନ୍ଧରେ ମଧୁବାବୁ ବହୁତ କଥା ବୁଝାଇଥିଲେ ।

**ସ୍ୱରାଜ୍ୟ ଦଳକୁ ସମର୍ଥନ :** ଖ୍ରୀ: ୧୯୨୫ରେ ବିହାର-ଓଡ଼ିଶା କାଉନ୍‌ସିଲରୁ ୩ ଜଣ ପ୍ରତିନିଧି କାଉନ୍‌ସିଲ୍ ଅଫ୍ ଷ୍ଟେଟକୁ ନିର୍ବାଚିତ ହେବା ନିମନ୍ତେ ନିର୍ବାଚନ ହୋଇଥିଲା । ଏଥର ଓଡ଼ିଶାରୁ କେହି ପ୍ରତିନିଧି ଠିଆହୋଇ ନଥିଲେ । ବିହାରରୁ ୭ ଜଣ ପ୍ରାର୍ଥୀ ଥିଲେ । ସେଥିରୁ ବାବୁ ମହେନ୍ଦ୍ର ପ୍ରସାଦ, ବାବୁ ଅନୁଗ୍ରହନାରାୟଣ ସିଂହ ଓ ବାବୁ ଶ୍ରୀକୃଷ୍ଣ ସିଂହ କଂଗ୍ରେସର ସ୍ୱରାଜ୍ୟ ଦଳ ପକ୍ଷରୁ ପ୍ରାର୍ଥୀ ହୋଇଥିଲେ । ମଧୁବାବୁ, ରାୟବାହାଦୁର ଜାନକୀନାଥ ବୋଷ, ବାବୁ ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ଗୋପବନ୍ଧୁ ଦାସ ଓ ଅନ୍ୟ କେତେ ଜଣ ବିଶିଷ୍ଟ ବ୍ୟକ୍ତି ଏହି ତିନିଙ୍କ ସପକ୍ଷରେ ଏକ ପ୍ରଚାରପତ୍ର ବାଣ୍ଟିଥିଲେ ଏବଂ ତିନିଙ୍କ ଭିତରୁ ଅନୁଗ୍ରହ ବାବୁ ଓ ମହେଶ ପ୍ରସାଦ ନିର୍ବାଚିତ ହୋଇଥିଲେ ।

**ମଧୁବାବୁ କଂଗ୍ରେସର ପ୍ରାର୍ଥୀ ? :** କଂଗ୍ରେସର ସ୍ୱରାଜ୍ୟ ଦଳ ତରଫରୁ ପ୍ରାର୍ଥୀ ମନୋନୟନର ଉଦ୍ୟମ ହୋଇଥିଲା । ସ୍ୱରାଜ୍ୟ ଦଳର ପ୍ରାର୍ଥୀମାନଙ୍କ ବିପକ୍ଷରେ ଲଢ଼ିବାପାଇଁ ବିଭିନ୍ନ ଦଳର ସଂଯୋଗରେ ଏକ ସମ୍ମିଳିତ ଦଳ ଗଠିତ ହୋଇଥିଲା । ମଧୁବାବୁ, ବ୍ରଜସୁନ୍ଦର ଦାସ ଓ ଭୁବନାନନ୍ଦ ଦାସ ଏହି ସମ୍ମିଳିତ ଦଳରେ ଯୋଗ ଦେଇଥିଲେ; କିନ୍ତୁ ପରେ ମଧୁବାବୁ କଂଗ୍ରେସ ପକ୍ଷରୁ କାଉନ୍‌ସିଲକୁ ଯିବାପାଇଁ ନିଜର ଅଭିପ୍ରାୟ ଜଣାଇବାରୁ "ସମାଜ" ଆନନ୍ଦ ପ୍ରକାଶ କରି "ସମ୍ବାଦ ଓ ସଙ୍କେତ" ସ୍ତମ୍ଭରେ ୨୪ । ୪ । ୨୬ରେ ଲେଖିଥିଲେ—

"ଆମ୍ଭେମାନେ ଶୁଣି ଅତ୍ୟନ୍ତ ଖୁସି ହୋଇଅଛୁ ଯେ, ଓଡ଼ିଶାର କୁଳବୃଦ୍ଧ ମାନନୀୟ ମଧୁବାବୁ କଂଗ୍ରେସ ପକ୍ଷରୁ କାଉନ୍‌ସିଲ ବା ଆସେମ୍ବ୍ଲିକୁ ଛିଡ଼ାହେବା ଲାଗି ପ୍ରାଦେଶିକ କଂଗ୍ରେସ କମିଟିକୁ ଅଭିପ୍ରାୟ ଜଣାଇଛନ୍ତି । ମଧୁବାବୁ କାର୍ଯ୍ୟରେ ସ୍ୱରାଜୀ, ଗତଥର ସମାଜର ଅଗ୍ରଲେଖାରେ ଏହା ସ୍ପଷ୍ଟ ବୁଝାଇ ଦିଆଯାଇଛି । ସେ କଂଗ୍ରେସ ତରଫରୁ କାଉନ୍‌ସିଲକୁ ଯିବା ଓଡ଼ିଶା ପକ୍ଷରେ ଗୌରବର ବିଷୟ ହେବ । କଂଗ୍ରେସର ସର୍ତ୍ତ ସ୍ୱୀକାର କରି ନିର୍ବାଚନ ଲଢ଼ିଲେ, ଦେଶର ସବୁ ଶ୍ରେଣୀର ଲୋକେ ସୁଖୀ ହେବେ ଏବଂ ଅକୁଣ୍ଠିତ ଭାବରେ ତାଙ୍କୁ ସମର୍ଥନ କରିବେ । ଘଟଣା ବିଶେଷରେ ତାଙ୍କ ସହିତ କାହାର

କାହାର ମତଭେଦ ହେଲେ ସୁଦ୍ଧା ସେ ଯେ ଉତ୍କଳର ଜଣେ କୃତୀ ପୁରୁଷ, ନିଜ ବୁଦ୍ଧି, ବିବେକ ଓ ବିଚାର ଅନୁସାରେ ଦେଶସେବାରେ ଆପଣାର ଶକ୍ତି, ସମୟ, ସମ୍ପଦ ବ୍ୟୟକରି ଆଜି ଏ ବୃଦ୍ଧ ବୟସରେ ପଥର ଭିକାରୀରୂପେ ଛିଡ଼ା ହୋଇଛନ୍ତି, ଏହା କେହି ଅସ୍ୱୀକାର କରିପାରିବେ ନାହିଁ । ମଧୁବାବୁ ସେକାଳର ରାଜନୀତି କ୍ଷେତ୍ରରେ ଖେଳାଳି । ଓଡ଼ିଶାରେ ସେତେବେଳେ ତାଙ୍କର ସେପରି କେହି ସହକର୍ମୀ ନ ଥିଲେ । ସେ କାହାରଠାରୁ ପରାମର୍ଶ ପାଇନାହାନ୍ତି କି ସମାଲୋଚନା ସହି ନାହାନ୍ତି । ସୁତରାଂ ଏକଶିଂଘା ଷଣ୍ଢ ପରି ଯେଉଁଆଡ଼େ ଯେତେବେଳେ ବିଚାରିଛନ୍ତି, ଠେଲିପେଲି ଚାଲିଯାଇଛନ୍ତି । ଭଲ କରିଛନ୍ତି, ଭୁଲ କରିଛନ୍ତି । ଯେ ଯାହା କହନ୍ତୁ, ଓଡ଼ିଶାର ନବ ଜାତୀୟ ଜାଗରଣ ମୂଳରେ ତାଙ୍କ ଶକ୍ତି ଓ ସ୍ୱାର୍ଥ ତ୍ୟାଗ ବହୁ ପରିମାଣରେ ରହିଅଛି । ବହୁ କାଳ ଏକାଦିକ୍ରମେ ଗୋଟିଏ ରୀତି ଓ ଢଙ୍ଗରେ ଚାଲିଆସି ଦେଶର ବର୍ତ୍ତମାନ ଓ ସାଧାରଣ ଜୀବନର ପରିବର୍ତ୍ତିତ ଅବସ୍ଥାନୁସାରେ ସେ ନିଜର ଅଭ୍ୟାସ, ବ୍ୟବହାର ଓ ନୀତି ହଠାତ୍ ବଦଳାଇ ନପାରିବାରେ କିଛି ଆଶ୍ଚର୍ଯ୍ୟ ନାହିଁ । ସେଥିଲାଗି ଆମ୍ଭମାନଙ୍କର ତାଙ୍କ ପ୍ରତି କେବେହେଲେ ଭକ୍ତି ଊଣା ହୋଇନାହିଁ । ସେ କାଳର ଢଙ୍ଗରେ ବଢ଼ି ସୁଦ୍ଧା ଘଟଣା ବିଶେଷରେ ସେ ସରକାରଙ୍କୁ ଯେପରି ସାହସ ଓ ସ୍ୱାଧୀନତା ସହକାରେ କର୍କଶ ପୌରୁଷ ବାକ୍ୟମାନ ଶୁଣାଇଚନ୍ତି, ତାହା ଯେ କୌଣସି ସମୟରେ ଯେ କୌଣସି ରାଜନୀତିଙ୍କ ପକ୍ଷେ ଅତୀବ ପ୍ରଶଂସା ଓ ଗୌରବର ବିଷୟ ହେବ । ଏପରିକି, ସରକାରଠାରୁ ବେତନ ପାଇ ମନ୍ତ୍ରୀ ଥିଲବେଳେ ସରକାର ଶାସନ ଯନ୍ତ୍ରର ଭିତର ରହସ୍ୟ ସେ ଯେପରି ନିର୍ଭୀକ ଓ ନିରପେକ୍ଷ ଭାବରେ ପ୍ରକାଶ କରିଥିଲେ, ଅନ୍ୟ କୌଣସି ପ୍ରଦେଶର କୌଣସି ମନ୍ତ୍ରୀ ସେପରି କହିନାହାନ୍ତି । ଦେଶବନ୍ଧୁ ଚିତ୍ତରଞ୍ଜନ ଶାସନ ସଂସ୍କାରର ଦୋଷ ଦେଖାଇବାକୁ ଯାଇ ଥରେ ମନ୍ତ୍ରୀ ମଧୁବାବୁଙ୍କ ଉକ୍ତିରୁ ପ୍ରମାଣ ଦର୍ଶାଇ-ଥିଲେ । ମଧୁବାବୁ ବୟସରେ ପରିପକ୍ୱ, ଅଭିଜ୍ଞତାରେ ପ୍ରବୀଣ, ସରକାର ସମ୍ପର୍କରୁ ବିମୁକ୍ତ, ସଂଗ୍ରାମ ନୀତିରେ ଧୁରନ୍ଧର । ଭାରତ ଜାତୀୟ ମହାସଭା ଦେଶର ଲୋକସାଧାରଣଙ୍କ ପକ୍ଷରୁ କାଉନ୍ସିଲରେ ସରକାର ସଙ୍ଗେ ଯେ ଲଢ଼େଇ କରିବାକୁ ଆୟୋଜନ କରୁଅଛି, ସେଥିରେ ସେ ଯୋଗଦେବା ତାଙ୍କ ପରିଣତ ବୟସ ଓ ପ୍ରବୀଣତାର ଉପଯୋଗୀ ହେବ; ଓଡ଼ିଶାରେ ଯେ ରାଜନୈତିକ ଜୀବନ ଅଙ୍କୁର ଆସୁଛି ତାହାର ବଳ ବୃଦ୍ଧି ହେବ ଏବଂ ଭାରତୀୟ ରାଜନୀତି କ୍ଷେତ୍ରରେ ଓଡ଼ିଶାର ଗୌରବ ଅଧିକ ହେବ । ସେ ବଡ଼ଲାଟ ସଭାକୁ ଗଲେ ଦେଶର ଅନ୍ୟାନ୍ୟ ପ୍ରତିଷ୍ଠିତ ନେତାଙ୍କ ସଙ୍ଗେ ସମାନସ୍କନ୍ଧ ଭାବରେ ସଂଗ୍ରାମରେ ଜଣେ ସେନାପତିରୂପେ ପରିଗଣିତ ହୋଇ ଭାରତର ଜାତୀୟ କାର୍ଯ୍ୟରେ ସହାୟତା କରିବେ । ଆମ୍ଭେମାନେ ଆଶାକରୁ ଯେ, ସେ କଂଗ୍ରେସ ଦଳଭୁକ୍ତ ହେବାକୁ ଯେଉଁ ଇଚ୍ଛା ବଳାଇଛନ୍ତି, ତାହା ନିଶ୍ଚୟ କରିବେ ଏବଂ ତାଙ୍କ ଶକ୍ତି, ସାମର୍ଥ୍ୟ ଓ ସ୍ୱଦେଶସେବା ଦୃଷ୍ଟିରେ ପ୍ରାଦେଶିକ କଂଗ୍ରେସ କମିଟି ତାଙ୍କୁ ସାଦରେ ଗ୍ରହଣ କରିବେ । ଯେତେଦୂର ସମ୍ଭବ ଏହାଦ୍ୱାରା

ଓଡ଼ିଶାର କାଉନ୍‌ସିଲ ଓ ଆସେମ୍ବ୍ଲି ମେମ୍ବରଙ୍କ ମଧ୍ୟରେ ମତ ଓ ଦଳଭେଦ ରହିବ ନାହିଁ । ସମସ୍ତେ ଏକ ମତ ଓ ଏକ ଦଳର ହୋଇଯିବେ ।"

ମଧୁବାବୁ ଖ୍ରୀ: ୧୯୨୫ ଠାରୁ ଟାନେରି ସମ୍ପର୍କୀୟ ମକଦ୍ଦମା ଓ ନିଜ 'ଦେବାଳିଆ' ସମ୍ପର୍କୀୟ ମକଦ୍ଦମାରେ ବ୍ୟାପୃତ ଥିଲେ । ନିଲମ ଓ ଦେବାଳିଆ ମକଦ୍ଦମାରେ ତାଙ୍କୁ ଆହୁରି ଦୁଇବର୍ଷରୁ ଅଢ଼େଇବର୍ଷ କାଳ ଲିପ୍ତ ରହିବାକୁ ପଡ଼ିଥିଲା । ବୃଦ୍ଧ ଏଥିରେ ଚିନ୍ତିତ ହୋଇ ପଡ଼ିଥିବା ସ୍ୱାଭାବିକ । ଏହି ଅବସ୍ଥାରେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ଭଳି ମାନସିକ ଅବସ୍ଥା ତାଙ୍କର ନଥିଲା । ସେ ନିର୍ବାଚନରେ ପ୍ରାର୍ଥୀ ହେବାପାଇଁ ପ୍ରଥମେ ମନ ବଳାଇଥିଲେ; କିନ୍ତୁ ପରେ ଅବସ୍ଥା ଦୃଷ୍ଟିରେ ସେ ଆଉ ପ୍ରାର୍ଥୀ ହୋଇ ନାହାନ୍ତି । ମଧୁବାବୁ ସ୍ୱରାଜ୍ୟ ଦଳ ପକ୍ଷରୁ ପ୍ରାର୍ଥୀ ହେବାପାଇଁ ନିଜର ଅଭିପ୍ରାୟ ଜଣାଇ ଥିବାରୁ "ସମାଜ" ଯେଉଁ ସମର୍ଥନ ଜଣାଇଛନ୍ତି, ସେଥିରେ ଅତିରଞ୍ଜିତ କି ଅତ୍ୟୁକ୍ତି କିଛି ନାହିଁ ।

**କୋଠା ନିଲାମ ନୋଟିସ :** ପୂର୍ବରୁ ମଧୁବାବୁ ଉତ୍କଳ ଟାନେରି ସମ୍ପର୍କରେ କିଛି ଟଙ୍କା ପାରଳାଖିମୁଣ୍ଡିର ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କଠାରୁ ଋଣ କରିଥିଲେ । ପାରଳା ରାଜା ଡିଗ୍ରୀ ପାଇଥିଲେ । ଏହି ଡିଗ୍ରୀକୁ ଶୈଳବାଳାଙ୍କ ଭାଇ ଶ୍ରୀ ଚନ୍ଦ୍ର କିଶୋର ହାଜରା କିଣି ନେଇଥିଲେ । କଟକରେ ମଧୁବାବୁଙ୍କ ଘରେ ତାଙ୍କ କୁଟୁମ୍ବଙ୍କ ସହ ହାଜରା ରହୁଥିଲେ ଏବଂ ଶ୍ରୀ ଅନାମଚନ୍ଦ୍ର ଦାସ ମଧ୍ୟ ମଧୁବାବୁଙ୍କ ଆଶ୍ରୟରେ ତାଙ୍କ କୋଠାରେ ରହୁଥିଲେ । ମଧୁବାବୁଙ୍କ ସମ୍ପତ୍ତି ନିଲାମବେଳେ ମଧୁବାବୁ ରହୁଥିବା କୋଠା ଓ ଅନ୍ୟାନ୍ୟ ଚଳନ୍ତି ଅଚଳନ୍ତି ସମ୍ପତ୍ତି ନିଲାମରେ ଉଠିଥିଲା । ହାଜରାଙ୍କ ନୋଟିସ୍ ଅନୁସାରେ ଖ୍ରୀ: ୧୯୨୫ ଅକ୍ଟୋବର ୧୫ ତାରିଖରେ ସମ୍ପତ୍ତି ନିଲାମ ହେବା ସ୍ଥିର ହୋଇଥିଲା । "ଉତ୍କଳ ଦୀପିକା"ରେ ପ୍ରକାଶିତ ନୋଟିସ୍‌ରୁ ତାଙ୍କ ସମ୍ପତ୍ତି ସମ୍ବନ୍ଧରେ କେତେକ ତଥ୍ୟ ମିଳୁଛି ।

ନ ୨୯୬ମ୍ବର ଜାରୀଜାରି, ସନ ୧୯୨୫ ମସିହା, ଇଃ ସବ୍‌ଜଜ୍ ଅଦାଲତ, କଟକ— ଶ୍ରୀ ଶ୍ରୀ ଶ୍ରୀ ରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କଠାରୁ ଖରିଦଦାର ସି. କେ. ହାଜରା, ତ:—ମି. ଏମ୍. ଏସ୍. ଦାସ ।

ଡିଗ୍ରୀଦାରଙ୍କ ପାଉଣା ଟଙ୍କା ସକାଶେ ଦେଣାଦାରଙ୍କର ନିମ୍ନଲିଖିତ ସମ୍ପତ୍ତିମାନ ତା ୧୫ । ୧୦ । ୨୫ ରିଖରେ ନିଲାମ ହେବ ।

୧ । ସଃ କଟକ ଖାସମାହାଲ ଇଲାକାଧୀନ ଭୋଲାମିଆଁ ବଜାର, ମୌଃ—ପାଟପୁର ଅନ୍ତର୍ଗତ ଓ ନ ୧୨୫ମ୍ବର ଖାତା, ବାଃ ମିଶନ ରୋଡ଼ରେ ଥିବା ପଚ୍ଛାଇ ରଯ୍ୟତି ଏ୪-୪୭୯୬ ଡ. କୁ ଜମା ଟ୧୩୫ ଓ ତହିଁ ଉପରେ ଥିବା ଦେଣାଦାରଙ୍କ ଦୋମହଲା କୋଠା ଓ ତହିଁର ତଳିଜମି ଓ ବଗିଚା ଓ ଗାଡ଼ିଖାନା ଓ ବାଜେ ଘର ଇତ୍ୟାଦି ଯାହା କି

ଉକ୍ତ ଜମି ଉପରେ ଅବସ୍ଥିତ ଅଛି, ସର୍ବପ୍ରକାର ସ୍ୱତ୍ୱ ସହିତ ନିଲମ ହେବ । ଅ: ମୂ: ୫୩୦୦୦ଙ୍କା ।

୬ । ସ: କଟକ, ପ୍ର: କଟକ, ହାବେଲୀମୌଜା ତୁଳସୀପୁର ୯ । ୯ । ୧୯୬୫ ତାରଖେ ଅନାମଚନ୍ଦ୍ର ଦାସ ଓଗେର ଏକ୍‌ଜିକଉଟରମାନଙ୍କଠାରୁ ଦେଣାଦାର ଖରିଦ ଭୋଗ ଦଖଲୀ । ପକ୍‌କାକୋଠା ଓ ତହିଁର ତଳଜମି ୪୦-୩୧୬୭ ଖ: କୁ ଜମା ୫୦ ୪୮୭ ପାଇ । ସର୍ବପ୍ରକାର ସ୍ୱତ୍ୱ ନିଲମ ହେବ । ଅ: ମୂଲ୍ୟ ୫ ୬୦୦୦ଙ୍କା ।

**ଦେବାଳିଆ ଘୋଷଣା** : ମଧୁବାବୁଙ୍କର ଦୁଇଟି ବ୍ୟବସାୟ ପ୍ରତିଷ୍ଠାନ ଉତ୍କଳ ଟାନେରୀ ଓ ଉତ୍କଳ ଅଳଙ୍କାର କାରଖାନା କ୍ରମାଗତ କ୍ଷତିରେ ଚାଲିବାରୁ ତାଙ୍କର ବହୁତର ଆର୍ଥିକ କ୍ଷତି ଘଟିଥିଲା । ସେ ବିଭିନ୍ନ ସୂତ୍ରରେ ବ୍ୟକ୍ତିଗତ ଭାବରେ ଧାର ଉଧାର ମଧ୍ୟ କରିଥିଲେ । ମହାଜନମାନଙ୍କର ମକଦ୍ଦମାର ରାୟ ଅନୁସାରେ ( ୧୯୬୬ର ୭୬ ନଂ ଏକ୍‌ଜିକ୍ୟୁସନ୍ କେସ୍ ବା ଡିଗ୍ରିଜାରି ମକଦ୍ଦମା ସବ୍‌ଜଜ୍ କୋର୍ଟ ) ଟାନେରୀଟି ନିଲମ ହେଲା । କୋର୍ଟଙ୍କ କ୍ଷମତାପ୍ରାପ୍ତ ଅଫିସର ସରକାରୀ ମୂଲ୍ୟ ୫୬,୫୦,୦୦୦ ନିରୂପଣ କରିଥିଲେ; କିନ୍ତୁ ପରେ ୫୬୫,୦୦୦ରେ ବିକ୍ରୀ ହେବାରୁ ପ୍ରାୟ ୫୧,୮୫,୦୦୦ ଟଙ୍କା ଧାର ରହିଲା । ଏତେ ଟଙ୍କା ପରିଶୋଧ କରିବାର ଶକ୍ତି ୭୮ ବର୍ଷ ବୟସର ବୃଦ୍ଧଙ୍କର ନଥିବାରୁ ସେ ବାଧ୍ୟହୋଇ ତାଙ୍କୁ ଦେବାଳିଆ (Insolvent) ଘୋଷଣା କରିବା ନିମନ୍ତେ ୧୯୭୬ ମାର୍ଚ୍ଚ ୬୧ ତାରିଖରେ କୋର୍ଟରେ ଦରଖାସ୍ତ କଲେ । ଯଦି କୋର୍ଟ ଅଫିସର ଯେଉଁ ମୂଲ୍ୟ ନିର୍ଦ୍ଧାରଣ କରିଥିଲେ, ସେଥିକରେ ଟାନେରୀଟି ବିକ୍ରୀ ହୋଇପାରିଥାନ୍ତା, ତାହାହେଲେ ମଧୁବାବୁ ଋଣମୁକ୍ତ ହୋଇଯାଇଥାନ୍ତେ ଏବଂ ତାଙ୍କୁ ଦେବାଳିଆ ଘୋଷଣାପାଇଁ ଦରଖାସ୍ତ କରିବାକୁ ପଡ଼ିନଥାନ୍ତା । ସେହି ବର୍ଷ (ଖ୍ରୀ: ୧୯୬୭) ଅଗଷ୍ଟ ୪ ତାରିଖରେ କୋର୍ଟ ତାଙ୍କ ଦେବାଳିଆ ଦରଖାସ୍ତ ମଞ୍ଜୁର କରି ତାଙ୍କୁ ଦେବାଳିଆ ଘୋଷଣା କଲେ । ତାଙ୍କର ଋଣର ପରିମାଣ ପ୍ରାୟ ୫ ୧,୮୦,୦୦୦ ଓ ସମ୍ପତ୍ତିର ମୂଲ୍ୟ ୫୧୯୫୬୪ ଥିବା ସ୍ଥିର ହୋଇଥିଲା । ମଧୁବାବୁଙ୍କ କଟକ କୋଠା, ପୁସ୍ତକାଗାର, ନିଜପତ୍ର ସବୁ ନିଲମରେ ବିକ୍ରୀ ହୋଇଗଲା ।

ଡିକ୍ରୀ ଧନ ଆଦାୟ ପାଇଁ କଟକସ୍ଥିତ ତାଙ୍କର ଘର ନିଲମ ଉଠିଲା । କଟକରେ କେହି ନିଲମ ଡାକଲେ ନାହିଁ, କାରଣ ଏହା ମଧୁବାବୁଙ୍କ ଘର । ଯଦି କେହି ନିଲମ ଡାକେ ତାହାହେଲେ ମଧୁବାବୁ ବାସହୀନ ହୋଇଯିବେ, ଏହି ଆଶଙ୍କା ହିତାକାଙ୍କ୍ଷୀ ବନ୍ଧୁମାନଙ୍କ ମନରେ ଜାଗ୍ରତ ହୋଇଥିଲା । କେତେଜଣ ଓକିଲଙ୍କ ପରାମର୍ଶରେ ଘରଟି କୁମାରୀ ଶୈଳବାଳା ଦାସଙ୍କ ନାମରେ ନିଲମ ଡାକିବା ଠିକ୍ ହେଲା । ସେ ଅନୁସାରେ ନିଲମ ମଧ୍ୟ ହେଲା ଏବଂ ଶୈଳବାଳା ଦାସ ଏହାର ମାଲିକ ହେଲେ । ମଧୁବାବୁ ଖ୍ରୀ: ୧୯୩୧ ଜାନୁଆରି ୧ ତାରିଖରେ "ଦେବାଳିଆ" ଘୋଷଣାରୁ ମୁକ୍ତ ହେଲେ ।

ମଧୁବାବୁ ସେହି ଘରେ ମୃତ୍ୟୁପର୍ଯ୍ୟନ୍ତ ବସବାସ କରୁଥିଲେ । ସେ କୁଆଡ଼େ "ପର ଘରେ" ରହିବା ପସନ୍ଦ ନକରି ମିସ୍ ଦାସଙ୍କୁ ମାସିକ ଦୁଇଶହ ଟଙ୍କା ଘରଭଡ଼ା ଦେଉଥିଲେ ।

ମଧୁବାବୁ ଈଶ୍ୱରବିଶ୍ୱାସୀ ଥିଲେ । ଦେବାଳିଆ ହେବା ଦୁଃଖ ମଧ୍ୟ "ଈଶ୍ୱରକୃତ" ବୋଲି ସେ ଭାବୁଥିଲେ ଏବଂ ଏହି କାରଣରୁ ସେ ବିଶେଷ ଭାବରେ ବିଚଳିତ ହୋଇ ପଡ଼ୁନଥିଲେ । ସେ ଏହାକୁ ଲକ୍ଷ୍ୟକରି ବେଳେ ବେଳେ କହୁଥିଲେ, "ସବୁ ଦୁଃଖ ଈଶ୍ୱରକୃତ, ଏଥିରେ ବିଚଳିତ ହେବା ଠିକ୍ ନୁହେଁ ।"

ମଧୁବାବୁଙ୍କ ସମ୍ପତ୍ତି ନିଲାମବେଳେ ଓଡ଼ିଶାରେ ବିଷାଦର ଛାୟା ଖେଳି ଯାଇଥିଲା । ବୃଦ୍ଧାବସ୍ଥାରେ ସେ ଏପରି ଦୁଃଖର ସମ୍ମୁଖୀନ ହେବେ ବୋଲି କେହି କଳ୍ପନା ମଧ୍ୟ କରୁନଥିଲେ । ମିତବ୍ୟୟିତା ପ୍ରତି ଅନାଦରହିଁ ଏହି ବିଖ୍ୟାତ ନେତାଙ୍କର ଏ ଚରମ ଆର୍ଥିକ ଦୁରବସ୍ଥାର କାରଣ ବୋଲି ତାଙ୍କର ବହୁ ବନ୍ଧୁ କହୁଥିଲେ । ସେ ନିଜ ହାତରେ ନିଜକୁ ଗଢ଼ିଥିଲେ । ଜୀବନର ଯାବତୀୟ ସୁଖ-ଦୁଃଖ ସେ ଭୋଗ କରିଥିଲେ । ଅଳ୍ପ ବୟସରେ ବିପତ୍ନୀକ ହୋଇଥିଲେ ମଧ୍ୟ ଆଉ ପୁନର୍ବାର ବିବାହ କରିନାହାନ୍ତି । ନିଜର ସନ୍ତାନସନ୍ତତି ମଧ୍ୟ କେହି ନ ଥିଲେ । ହାଜରା ପରିବାରର ଲୋକଙ୍କ ସହ ସ୍ୱଗୃହରେ ଚଳୁଥିଲେ । ସେ ଜୀବନରେ ପାଞ୍ଚ ସାତ ଲକ୍ଷ ଟଙ୍କା ରୋଜଗାର କରିଥିଲେ ଓ ଅମୀର ଭଳି ଚଳୁଥିଲେ । କିନ୍ତୁ ବ୍ୟବସାୟରେ ପଶି ବ୍ୟୟରେ ସମତା ରକ୍ଷାକରି ନ ପାରିବାରୁ ଶେଷ ଅବସ୍ଥାରେ ତାଙ୍କୁ ଏ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଥିଲା ।

ଖ୍ରୀ: ୧୯୨୭ରେ ଦେବାଳିଆ ବୋଲି ଘୋଷିତ ହେବାପରେ ତାଙ୍କୁ ହାଇକୋର୍ଟରେ ଓକିଲାତି କରିବା ପାଇଁ ଅନୁମତି ଦଆଯିବା ସକାଶେ ମଧୁବାବୁ ହାଇକୋର୍ଟରେ ଦରଖାସ୍ତ କରିଥିଲେ । ଏ ଦରଖାସ୍ତ ମଞ୍ଜୁର ହୋଇଥିଲା । ଏହା ଫଳରେ ସେ "ଦେବାଳିଆ" ଅବସ୍ଥାରେ ମଧ୍ୟ ଓକିଲାତି କରି ଚଳୁଥିଲେ, ପରମୁଖାପେକ୍ଷୀ ହୋଇ ନ ଥିଲେ । ଏ ବୃଦ୍ଧ ବୟସରେ ତାଙ୍କର ସ୍ୱାଧୀନ ଭାବରେ ଜୀବିକା ନିର୍ବାହ କରିବାପାଇଁ ଦୃଢ଼ ସଂକଳ୍ପ ଦେଖାଯାଇଥିଲା ଏବଂ ମୃତ୍ୟୁ ପର୍ଯ୍ୟନ୍ତ କାହାରି ଆର୍ଥିକ ସାହାଯ୍ୟ ଉପରେ ନିର୍ଭର କରି ନ ଥିଲେ ।

ଦେବାଳିଆ ଅବସ୍ଥା ତାଙ୍କ ଜୀବନର ଅତି ଦୁଃଖଦାୟକ ଅଧ୍ୟାୟ । ସେ ଅର୍ଥରେ ଦେବାଳିଆ ହୋଇଥିଲେ ମଧ୍ୟ ମନରେ ଦେବାଳିଆ ହୋଇ ନ ଥିଲେ । ଅତି ବୃଦ୍ଧାବସ୍ଥା ଯୋଗୁଁ ସେ ଆର୍ଥିକ ଦୁର୍ଗତିରୁ ମୁକ୍ତିଲାଭ କରିପାରି ନ ଥିଲେ ।

ଏହାପରେ ମଧ୍ୟ ମଧୁବାବୁ ଓଡ଼ିଶାର ଜାତୀୟ କାର୍ଯ୍ୟାବଳୀରେ ଯଥାସାଧ୍ୟ ପରିଶ୍ରମ କରିଛନ୍ତି । ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସମ୍ପର୍କୀୟ ଯାବତୀୟ କାର୍ଯ୍ୟରେ ସେ ଯୁବକସୁଲଭ ଉତ୍ସାହରେ କାର୍ଯ୍ୟ କରୁଥିଲେ ଏବଂ ଏ କ୍ଷେତ୍ରରେ ନେତାମାନେ ମଧ୍ୟ ତାଙ୍କର ପରାମର୍ଶ, ନିର୍ଦ୍ଦେଶ ଓ ଉପଦେଶ ବରାବର ଲୋଡ଼ୁଥିଲେ ।

**"ପୃଥିବୀର ଦୃଷ୍ଟିକୁ ଉତ୍କଳକୁ ଆଣିବା ମୋର ବ୍ରତ"** : ଖ୍ରୀ: ୧୯୨୭ର ଶେଷାର୍ଦ୍ଧରେ ଉତ୍କଳ ଯୁବକ ସମ୍ମିଳନୀର ବାର୍ଷିକ ଅଧିବେଶନକୁ ମଧୁବାବୁ ଏକ ବାର୍ତ୍ତା ପ୍ରେରଣ କରିଥିଲେ । ଯୁବକମାନେ "ଉତ୍ସାହ ଓ ପ୍ରେରଣା" ସମ୍ବନ୍ଧରେ ଦୁପଦ ଲେଖିବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ । ମଧୁବାବୁ ଏ ଦୁଇଟି ବିଷୟ ସମ୍ବନ୍ଧରେ କଟକରୁ ୨୮ ତାରିଖ ସେପ୍‌ଟେମ୍ବରରେ ଏହି ବାର୍ତ୍ତା ପଠାଇଥିଲେ—"ଜାତୀୟ ମନୋଭାବର ଉନ୍ନତ ଏହିସବୁ ସମ୍ମିଳନୀମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ । ସଂଘ ଓ ଜାତି ମଧ୍ୟରେ ବିଦ୍ୟମାନ ଥିବା ପ୍ରଭେଦ ଚିହ୍ନିବା ନିମନ୍ତେ ଆମର ଯୁବକମାନଙ୍କୁ ଶିକ୍ଷା ଦେବାକୁ ହେବ । ଯେତେବେଳେ ଦଳେ ଲୋକ - କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ଏକ ସଂଗଠିତ ସମିତି ଗଠନ କରନ୍ତି, ସେତେବେଳେ ସେମାନେ ଗୋଟିଏ ସଂଘ ବା କମ୍ପାନୀ ବା ସିଣ୍ଡିକେଟ୍, ଏପରିକି ଏକ ବେଆଇନ ସଭା ମଧ୍ୟ ଗଠନ କରନ୍ତି । ଏହିସବୁ ସ୍ଥାନରେ ସେମାନେ ନିଜର ସାମୂହିକ ଲକ୍ଷ୍ୟରୁ ପ୍ରେରଣା ପାଆନ୍ତି । ଏହିପରି ସଂଘର ସଭ୍ୟମାନଙ୍କର ନାମ, ସଂଘ ଗଠନର ତାରିଖ, ଆପଣମାନେ ଜାଣିପାରିବେ; କିନ୍ତୁ ଗୋଟିଏ ଜାତି କେବେ ସଂଗଠିତ ହୋଇପାରେ ନାହିଁ; କେବେ ଗୋଟିଏ ଜାତି ଗଠିତି ହେଲା ତାହା ଆମ୍ଭେମାନେ କହି ପାରିବା ନାହିଁ । ଜାତିର ଇତିହାସ ଅଛି, ଏଥିରେ ବର୍ତ୍ତମାନର ଲୋକଙ୍କର ପୂର୍ବପୁରୁଷମାନଙ୍କର କାର୍ଯ୍ୟାବଳୀର ବିବରଣ ଲିପିବଦ୍ଧ ହୋଇଛି । ତୁମ୍ଭେ ଗୋଟିଏ ଜାତିକୁ ସୃଷ୍ଟି କରିପାରିବ ନାହିଁ । ଗୋଟିଏ ଜାତୀୟ ସମ୍ମେଳନର ମୁଖ୍ୟ ଉଦ୍ଦେଶ୍ୟ ହେଲା, ଆମର ପୂର୍ବପୁରୁଷମାନଙ୍କର କାର୍ଯ୍ୟାବଳୀରୁ ଓ ଜାତୀୟ ଇତିହାସରୁ ପ୍ରେରଣା ପାଇବା । ପ୍ରତ୍ୟେକ ଯୁବକକୁ ଅନୁଭବ କରିବାକୁ ହେବ, ତାହା ପଛରେ ତାହାର ପୂର୍ବପୁରୁଷମାନେ ଓ ତାହା ଆଗରେ ତାହାର ବଂଶଧରମାନେ ଠିଆ ହୋଇଛନ୍ତି । ତାହାର ଜୀବନର ଲକ୍ଷ୍ୟ ହେଲା, ଭୂତ ଓ ଭବିଷ୍ୟତକୁ ଯୋଡ଼ି ସମତାପନ୍ନ ଏକ ଜାତି ଗଠନ କରିବା ।

"ଜାତି ଇତିହାସ ଜାତିର ନିର୍ଝର
ତହିଁ ବହେ ସଦା ଜାତି ପ୍ରାଣଧାର । ୧ ।
ସେହି ଧାରୁ ନୀର ପିଏ ଯେଉଁ ନର,
ନିଷ୍ଟେ ହେବ ସେହି ଜାତି କର୍ମବୀର । ୨ ।
କଳ କଳ ରବେ ଧାଇଁଛି ସେ ଧାର ।
ଅତୀତ ଗୌରବ ଗାଇ ନିରନ୍ତର । ୩ ।
ନାଚଇ ଉଦୟେ ଭାବୀ ଉନ୍ନତିର
ଯେହ୍ନେ ଚନ୍ଦ୍ରୋଦୟେ ନାଚେ ରତ୍ନାକର । ୪ ।

"ମୁଁ ଓଡ଼ିଆ ଜାତିର ପ୍ରଥମ ଏମ୍. ଏ., ପ୍ରଥମ ଓଡ଼ିଆ ଓକିଲ, ପ୍ରଥମ ଓଡ଼ିଆ ଆଡ୍‌ଭୋକେଟ, ୟୁରୋପ ପରିଦର୍ଶନରେ ପ୍ରଥମ ଓଡ଼ିଆ, ପ୍ରାଦେଶିକ ବ୍ୟବସ୍ଥାପକ ସଭା ଓ

ଭାଇସ୍‌ରାୟଙ୍କ ବ୍ୟବସ୍ଥାପକ ସଭାରେ ପ୍ରଥମ ଓଡ଼ିଆ ସଭ୍ୟ, ପ୍ରଥମ ଓଡ଼ିଆ ମନ୍ତ୍ରୀ ଓ ମନ୍ତ୍ରିତ୍ୱ ତ୍ୟାଗ କରିବାରେ ପ୍ରଥମ ଭାରତୀୟ । ମୋର ଜାତି ଅତି ଅନୁନ୍ନତ ହେଲେ ମଧ୍ୟ ଅନ୍ୟ ଜାତିର କୌଣସି ପ୍ରଥମ ଗ୍ରାଜୁଏଟ୍ ମୋପରି ଏତେ କାମ ସ୍ୱଜାତି ପାଇଁ କରିନାହିଁ । ବଙ୍ଗର ପ୍ରଥମ ଗ୍ରାଜୁଏଟ୍ ଡେପୁଟି ମାଜିଷ୍ଟ୍ରେଟ୍ ହେଲେ, ପେନ୍‌ସନ୍ ପାଇଲେ, ଏହି ଅବସ୍ଥାରେ ସ୍ୱର୍ଗାରୋହଣ କଲେ । ମୋର ବର୍ତ୍ତମାନ ୮୦ ବର୍ଷ ବୟସ । କୋର୍ଟ ମୋତେ ଦେବାଳିଆ ବୋଲି ଘୋଷଣା କରିଛି । ମୋତେ ୮୦ ବର୍ଷ ହୋଇଥିଲେ ମଧ୍ୟ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ମୋର ଜୀବନର ଯେଉଁ ବ୍ରତ ଥିଲି ତାହା ବର୍ତ୍ତମାନ ସୁଦ୍ଧା ସେହିପରି ଅଛି । ମୋର ବ୍ରତ ଥିଲି, ପୃଥିବୀର ଦୃଷ୍ଟିକୁ ଉତ୍କଳକୁ ଆଣିବା । ଉତ୍କଳ ଟାନେରୀ ମୋତେ ଦେବାଳିଆ କରିଦେଇ ଥିଲେହେଁ ଉତ୍କଳକୁ ସମଗ୍ର ସଭ୍ୟ ଜଗତର ପ୍ରଶଂସା ଆଣିଦେଇଛି । ଉତ୍କଳର ଉନ୍ନତି ଗ୍ରାଜୁଏଟମାନଙ୍କର ଲକ୍ଷ୍ୟ ହେବା ଉଚିତ । ଯଦି ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ଏହିସବୁ କାର୍ଯ୍ୟ କରିପାରିଲି, ତାହାହେଲେ ପରବର୍ତ୍ତୀ ବଂଶଧରମାନେ, ଯଦି ଜଣେ ବ୍ୟକ୍ତିରୂପେ ନୁହେଁ, ଏକ ଜାତିର ଜଣେରୂପେ ନିଜର ଦାୟିତ୍ୱ ହୃଦୟଙ୍ଗମ କରନ୍ତି, ତାହାହେଲେ ସେମାନେ ଏ ଦିଗରେ ବହୁତ କାର୍ଯ୍ୟ କରିପାରିବେ ।" ( ମର୍ମାନୁବାଦ )

**ମହାତ୍ମା ଗାନ୍ଧିଙ୍କ କଟକ ଆଗମନ ଓ ମଧୁବାବୁଙ୍କ ସହିତ ଆଲୋଚନା :** ମହାତ୍ମା ଗାନ୍ଧି ଖ୍ରୀ: ୧୯୨୭ ନଭେମ୍ବର ମାସ ୧୮ ତାରିଖ ଦିନ କଟକରେ ପହଞ୍ଚିଲେ ଏବଂ ବାବୁ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଘରେ ରହିଥିଲେ । ସେଦିନ ଗାନ୍ଧିଜୀଙ୍କର ମୌନଦିବସ ଥିଲା; ଶରୀର ମଧ୍ୟ ଟିକିଏ ଅସୁସ୍ଥ ଥିଲା । ଏହି କାରଣରୁ ବେଶି ଲୋକ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଯାଇ ନଥିଲେ । କେବଳ ମଧୁବାବୁଙ୍କ ସହିତ ୬ଟା ପରେ (ମୌନତା ଭଙ୍ଗ ପରେ) ଅଳ୍ପ ସମୟ କଥାବାର୍ତ୍ତା ହୋଇଥିଲେ । ଖଦଡ଼ ପ୍ରଚାରହିଁ ମହାତ୍ମାଙ୍କର ଓଡ଼ିଶା ଗସ୍ତର ଲକ୍ଷ୍ୟ ଥିବାରୁ ସେ ଅନ୍ୟ ବିଷୟରେ ଧ୍ୟାନ ଦେବାକୁ ବେଶି ସମୟ ପାଇ ନଥିଲେ ।

**ଗୋପବନ୍ଧୁଙ୍କ ମୃତ୍ୟୁରେ ମଧୁବାବୁଙ୍କ ଶୋକବାର୍ତ୍ତା** ଖ୍ରୀ: ୧୯୨୮ ଜୁନ୍ ମାସ ୧୭ ତାରିଖ ଦିନ ଉତ୍କଳମଣି ଗୋପବନ୍ଧୁଙ୍କର ମୃତ୍ୟୁ ହୋଇଥିଲା । ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ ମଧୁବାବୁ ମ୍ରିୟମାଣ ହୋଇ ପଡ଼ିଥିଲେ । ଏକ ବାର୍ତ୍ତାରେ ସେ କହିଥିଲେ—"ସାଧାରଣ ଜୀବନରେ ତାଙ୍କ ସହିତ ମୋର ଯେ ସଦ୍‌ଭାବ ଥିଲା, ଏବେ ସେ ସବୁ ସୁଖସ୍ମୃତି ମନେପଡ଼େ । କେତେ ବର୍ଷ ହେଲି ଆମ୍ଭେ ଦୁହେଁ ଏକାଠେଇଁ ବସି କଥାବାର୍ତ୍ତା ହୋଇନାହୁଁ; ଓଡ଼ିଶାର ଭବିଷ୍ୟତପାଇଁ ଏକତ୍ର ବିଚାର କରିନାହୁଁ । ଆମ୍ଭମାନଙ୍କର ଜୀବନ ଅଲଗା ହେଲେ କଣ ହେବ, ଆମ୍ଭମାନଙ୍କର ମତଦ୍ୱୈଧ ଥିଲେ କଣ ହେବ, ଗୋପବନ୍ଧୁଙ୍କର ଜୀବନୀ ମହତ୍ତ୍ୱ, ଏହା ଉତ୍କଳର ଜାତୀୟ ସମ୍ପଦ । ମୋର ଆଶା ସେ ଯେଉଁ କାର୍ଯ୍ୟ ବାକି ରଖିଛନ୍ତି, ତାଙ୍କର ବନ୍ଧୁମାନେ ତାକୁ ଚଳାଇବେ ।

ପରଲୋକଗତ ନେତାଙ୍କର କାର୍ଯ୍ୟ ଚଳାଇବାହିଁ ତାଙ୍କ ପକ୍ଷେ ଶ୍ରେଷ୍ଠ ସମ୍ମାନ । ସେ ଯେତେବେଳେ କର୍ତ୍ତବ୍ୟରେ ଲଗିଛନ୍ତି ଭଗବାନ ତାଙ୍କୁ ସେହି ସମୟରେ ନେଇଗଲେ । ମୋର ଆଶା, ଉତ୍କଳବାସୀ ପଣ୍ଡିତ ଗୋପବନ୍ଧୁଙ୍କର ଯଥାର୍ଥ ସମ୍ମାନ କରିବେ ।''

ଗୋପବନ୍ଧୁ ବାବୁଙ୍କ ସାଧାରଣ ସେବା କ୍ଷେତ୍ରରେ ପ୍ରବେଶ ବେଳୁ ମଧୁବାବୁ ତାଙ୍କୁ ସାହାଯ୍ୟ କରି ଆସିଥିଲେ । ଉତ୍କଳ ସମ୍ମିଳନୀ, ଶ୍ରମ ସଙ୍ଗଠନ, ବନବିଦ୍ୟାଳୟର ସଙ୍ଗଠନ ପ୍ରଭୃତି ବିଷୟରେ ମଧୁବାବୁ ଗୋପବନ୍ଧୁ ବାବୁଙ୍କୁ ବହୁ ପ୍ରକାର ସାହାଯ୍ୟ କରିଥିଲେ ଓ ପରାମର୍ଶ ଦେଇଥିଲେ ।

ଗୋପବନ୍ଧୁ ଦାସ ଖ୍ରୀ: ୧୯୦୬ରେ କଲିକତାରୁ ବି.ଏଲ୍. ପାସ୍ କରି ଓଡ଼ିଶାକୁ ଫେରିଥିଲେ । ସ୍ୱାଧୀନ ଭାବରେ ଜୀବିକା ଅର୍ଜ୍ଜନ କରିବାପାଇଁ ସେ ଓକିଲାତି ପଢ଼ିଥିଲେ; କିନ୍ତୁ ତାଙ୍କର ମନ ସେଥିରେ ନ ଥିଲା । ଓକିଲାତିର କେତେକ ଦିଗର ବାୟୁମଣ୍ଡଳକୁ ସେ ପସନ୍ଦ କରୁନଥିଲେ । କଲିକତାରେ ବି. ଏଲ୍. ପରୀକ୍ଷା ଦେଇ ସେ କଟକ ଆସିଥିଲେ । ସେତେବେଳେ ନୀଳଗିରି ଷ୍ଟେଟ୍‌ର ନୂତନ ପ୍ରତିଷ୍ଠିତ ହାଇସ୍କୁଲର ପ୍ରଧାନଶିକ୍ଷକ ପଦ ଶୂନ୍ୟ ହୋଇ ଯାଇଥିଲା । ଶ୍ରୀ ଉମାଚରଣ ଦାସ ( ରାୟବାହାଦୂର ) ପ୍ରଧାନଶିକ୍ଷକ ଥିଲେ; କିନ୍ତୁ ସେ ଡେପୁଟି କଲେକ୍ଟର ଚାକିରି ପାଇଯିବାରୁ ଶିକ୍ଷକତା ଛାଡ଼ିଦେଲେ । ଗୋପବନ୍ଧୁ ସେଠାରେ ପ୍ରଧାନଶିକ୍ଷକ ହେଲେ । ସେ ଛଅ ମାସ ଶିକ୍ଷକତା କରିବାପରେ ସେଠାରୁ ଚାଲିଆସି ପୁରୀ ଓ କଟକରେ ଓକିଲାତି କଲେ ।

ସେହି ସମୟରେ ମୟୂରଭଞ୍ଜ ଷ୍ଟେଟ୍ ସମେତ ଅନ୍ୟାନ୍ୟ ଗଡ଼ଜାତମାନଙ୍କରେ ଚାକିରିରେ ଅଣ-ଓଡ଼ିଆଙ୍କ ସଂଖ୍ୟା ବେଶି ନଥିଲା । ଉପଯୁକ୍ତ ଯୋଗ୍ୟତାସମ୍ପନ୍ନ ଓଡ଼ିଆ ମିଳୁ ନଥିବାରୁ ଏ ଅବସ୍ଥା ଉପୁଜିଥିଲା । ଯେଉଁମାନେ ଉଚ୍ଚ ଶିକ୍ଷାଲାଭ କରୁଥିଲେ, ସେମାନେ ସରକାରୀ ଚାକିରିକୁ ପସନ୍ଦ କରୁଥିଲେ । ଉପଯୁକ୍ତ ଓଡ଼ିଆ ଯୁବକ ମିଳିଲେ ନିଜ ଷ୍ଟେଟ୍‌ରେ ନିଯୁକ୍ତ ଦେବାପାଇଁ ମୟୂରଭଞ୍ଜ ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ ମଧୁବାବୁଙ୍କୁ କହିଥିଲେ । ମଧୁବାବୁ ଗୋପବନ୍ଧୁ ବାବୁଙ୍କୁ ଏଥିପାଇଁ ଉପଯୁକ୍ତ ମଣି ମୟୂରଭଞ୍ଜ ଷ୍ଟେଟରେ ଚାକିରି କରିବାପାଇଁ ତାଙ୍କୁ ପରାମର୍ଶ ଦେଇଥିଲେ ଏବଂ ଏହାର ବ୍ୟବସ୍ଥା ମଧ୍ୟ କରିଦେଇଥିଲେ । ଗୋପବନ୍ଧୁ ଖ୍ରୀ: ୧୯୧୦ରେ ମୟୂରଭଞ୍ଜ ଷ୍ଟେଟ୍‌ର ଓକିଲ ରୂପେ ଯୋଗ ଦେଇଥିଲେ । ସେଠାରେ ସେ ଖୁବ୍ ଖ୍ୟାତି ଲାଭ କରିଥିଲେ; କିନ୍ତୁ ଚାକିରିରେ ଆଉ ମନ ନ ଲାଗିବାରୁ ଖ୍ରୀ: ୧୯୧୨ରେ ଗୋପବନ୍ଧୁ ବାବୁ ଚାକିରି ଛାଡ଼ି ଚାଲିଆସିଲେ ଏବଂ ପୁଣି ଓକିଲାତି ଆରମ୍ଭକଲେ ।

ଗୋପବନ୍ଧୁବାବୁ ଜେଲ୍‌ରେ ଥିବାବେଳେ ତାଙ୍କୁ ଓ ଅନ୍ୟାନ୍ୟ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିଦେବା ନିମନ୍ତେ ମଧୁବାବୁ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଦାବୀକରି ଯେଉଁ ଭାଷଣ ଦେଇଥିଲେ, ସେଥିରେ ଗୋପବନ୍ଧୁ ବାବୁଙ୍କ ନିର୍ମଳ ଚରିତ୍ର,

ତ୍ୟାଗ ଓ ନେତୃତ୍ୱର ଅତି ଉଚ୍ଚ ପ୍ରଶଂସା କରିଥିଲେ ଏବଂ ତାଙ୍କୁ ସେ ନିଜ ହାତରେ ଗଢ଼ିଥିବା ପ୍ରକାଶ କରିଥିଲେ । ସେ ଗୋପବନ୍ଧୁଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ । ରାଜନୈତିକ ମତବାଦ ଓ କାର୍ଯ୍ୟକ୍ଷେତ୍ରରେ ଉଭୟଙ୍କର ଦୃଷ୍ଟିକୋଣ ସମାନ ନଥିଲେ ମଧ୍ୟ ଏ ଦୁହିଁଙ୍କ ଭିତରେ ସ୍ନେହ ସୌହାର୍ଦ୍ଦ୍ୟର ଅଭାବ ନଥିଲା ।

ଗୋପବନ୍ଧୁ ବାବୁଙ୍କ ମୃତ୍ୟୁର ଦୁଇ ତିନି ବର୍ଷ ପୂର୍ବରୁ ମଧୁବାବୁ ତାଙ୍କଠାକୁ ( ଇଂରେଜୀରେ ) ଏକ ଚିଠି ପଠାଇଥିଲେ ।

(ଇଂରେଜୀରୁ ଅନୁବାଦ) "ମୋର ପ୍ରିୟ ଗୋପବନ୍ଧୁ, ଓଡ଼ିଶାର ଆର୍ଥିକ ଅବସ୍ଥା ବିଷୟରେ ମୁଁ କେତେକ ଲେଖା ଏଥି ସଙ୍ଗେ ଯୋଡ଼ି ପଠାଇଲି । ଏସବୁର ଯେଉଁଭଳି ସଦ୍‌ବ୍ୟବହାର ହୋଇପାରେ ତୁମେ ତାହାର ସ୍ୱଚ୍ଛନ୍ଦ ବ୍ୟବହାର କରିପାର । ଲୋକଙ୍କ ଅର୍ଥର ଭାରକେନ୍ଦ୍ର ବଦଳାଇବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା ହେଉଛି ବଡ଼ କାର୍ଯ୍ୟ ।

ମୁଁ ତୁମର ସ୍ୱାସ୍ଥ୍ୟପାଇଁ ବଡ଼ ବ୍ୟାକୁଳ । ମୁଁ ବଡ଼ ହତାଶ ହୋଇପଡ଼ିଲିଣି । ଯେକୌଣସି ଦିନ ସଂସାରରୁ ବିଦାୟ ନେଇ ଚାଲିଯାଇପାରେ । ତୁମେ ତ ଏକମାତ୍ର ଲୋକ ଯାହାଙ୍କୁ କି ମୋର ମୃତ୍ୟୁଶଯ୍ୟା ନିକଟରେ ତୁମ ସହ ଭଗବତ୍ ପ୍ରାର୍ଥନା କରିବାକୁ କାମନା କରୁଛି । ତୁମ ସ୍ୱାସ୍ଥ୍ୟର ଯତ୍ନ ନିଅ ।

ଓଡ଼ିଶା ବଡ଼ ହତଭାଗ୍ୟ । ଯଦି ଆଶୁତୋଷ (ସାର୍ ଆଶୁତୋଷ ମୁଖୋପାଧ୍ୟାୟ) ବଞ୍ଚିଥାନ୍ତେ, ତେବେ ସେ ଟାନେରୀକୁ ଏକ ଅଭିନବ ବସ୍ତୁ କରିଦେଇଥାନ୍ତେ । ବ୍ୟକ୍ତିଗତ ଭାବରେ ମୋଠାରେ ତାଙ୍କର ସ୍ନେହ ଥିଲା । ତାଙ୍କର ମୃତ୍ୟୁରେ ଭାଇଠାରୁ ବଳି ଅଧିକ ଜଣକୁ ହରାଇଲି ।

ମୁଁ ଏକା ଏକା ଦେଶରେ ସାଧାରଣ ଜୀବନ ଆରମ୍ଭ କରିଥିଲି ଏବଂ ମୁଁ ଯେ ଭୁଲ୍ କରିଛି ଏହା ସ୍ୱାଭାବିକ; କିନ୍ତୁ ମୋର ଆଶା, ତୁମେ ବିଶ୍ୱାସ କରିଥିବ ଯେ ଦେଶର ସ୍ୱାର୍ଥ ଛଡ଼ା ଅନ୍ୟ କିଛି ମୋ ଭାବନାର ନିୟାମକ ନଥିଲା ।"

ତୁମର ସ୍ନେହ ସମ୍ବୃଦ୍ଧନର

ଏମ୍. ଏସ୍. ଦାସ

"ମୁଁ 'ସମାଜ' ପାଇଁ ମୋର ନିଜ ଦସ୍ତଖତରେ ଖଣ୍ଡେ ଚିଠି ଏଥି ସହିତ ପଠାଉଛି । ତାହାର ସାଙ୍ଗରେ ତୁମ ଚିଠି ଗୁନ୍ଥିଦେଇଛି । ଦେଖିବ, ସେତକ ନିଶ୍ଚୟ ଯେପରି ପ୍ରକାଶ ପାଏ ।"

ଉତ୍କଳ ଟାନେରୀର ଅବସ୍ଥା କ୍ରମଶଃ ଖରାପ ହେଉଥିବାରୁ ମଧୁବାବୁ ଚିନ୍ତିତ ହୋଇ-ପଡ଼ିଥିଲେ । ଶେଷରେ ଟାନେରୀକୁ ଏକ ଲିମିଟେଡ୍ କମ୍ପାନୀରେ ପରିଣତ କରିବାପାଇଁ ସେ

ଯେଉଁ ଉଦ୍ୟମ କରିଥିଲେ, ସେଥିରେ ଗୋପବନ୍ଧୁ ଦାଶଙ୍କ ସକ୍ରିୟ ସହଯୋଗ ଆବଶ୍ୟକ ବୋଲି ସେ ଭାବୁଥିଲେ । ଗୋପବନ୍ଧୁ ଜଣେ ଅକପଟ ଦେଶସେବକ ଥିବାରୁ ସେ ନିର୍ମଳ ଚିତ୍ତରେ ତାଙ୍କୁ ସାହାଯ୍ୟ କରିବେ ବୋଲି ମଧୁବାବୁଙ୍କର ବିଶ୍ୱାସ ଥିଲା । ବିଶେଷତଃ, ମହାତ୍ମା ଗାନ୍ଧି ଏକାଧିକବାର ଟାନେରି ସମ୍ବନ୍ଧରେ ଅନୁସନ୍ଧାନ କରି ତାଙ୍କର ଆଶୀର୍ବାଦ ଜଣାଇଥିବାରୁ ଗୋପବନ୍ଧୁ ବାବୁ ତାଙ୍କ ସହକର୍ମୀମାନଙ୍କ ସାହାଯ୍ୟରେ ଏ ଦିଗରେ କିଛି କରିପାରିବେ, ଏହି ଆଶା ମଧୁବାବୁଙ୍କର ଥିଲା । ମଧୁବାବୁ ବୁଝିଥିଲେ ଯେ, ଓଡ଼ିଶାରେ ଗୋପବନ୍ଧୁ ଦାଶ ସ୍ୱ ପ୍ରତିଷ୍ଠାବଳରେ ଜଣେ ଲବ୍ଧପ୍ରତିଷ୍ଠ ନେତା । ତାଙ୍କପ୍ରତି ଗୋପବନ୍ଧୁଙ୍କର ପ୍ରଗାଢ଼ ସ୍ନେହ ଓ ଭକ୍ତି ଥିବାରୁ ସେ ଓଡ଼ିଶାର ସେବାକ୍ଷେତ୍ରରେ ତାଙ୍କର ଉପଯୁକ୍ତ ଉତ୍ତରାଧିକାରୀ ହେବେ, ଏହି ବିଶ୍ୱାସ ତାଙ୍କର ଥିଲା । ଏହି ଭାବ ମଧୁବାବୁ ଗୋପବନ୍ଧୁଙ୍କଠାକୁ ଲେଖିଥିବା ଏଚ ଠିରୁ ସ୍ପଷ୍ଟ ହେଉଛି ।

"ସମାଜ" ସାହାଯ୍ୟରେ ଟାନେରି କମ୍ପାନୀର ଅଂଶ କିଣିବା ନିମନ୍ତେ ଓଡ଼ିଶାର ଜନସାଧାରଣଙ୍କୁ ନିବେଦନ କରି ଏକ ଲେଖା ପ୍ରକାଶ କରିବାପାଇଁ ମଧୁବାବୁ ଗୋପବନ୍ଧୁଙ୍କୁ ଜଣାଇଥିଲେ । ଟାନେରି ସମ୍ବନ୍ଧରେ ମଧୁବାବୁଙ୍କର ଏକ ଲେଖା ତାଙ୍କର ଚିଠି ସହିତ ପଠାହୋଇଥିବା ଜଣାଯାଏ । ଗୋପବଂଧୁ ବାବୁ ଏହି ଲେଖା ସହ ନିଜ ଦସ୍ତଖତରେ ଏକ ସ୍ୱତନ୍ତ୍ର ନିବେଦନ ମଧ୍ୟ ପ୍ରକାଶ କରିଥିଲେ ।

**ସାଇମନ୍ କମିସନ୍‌ଙ୍କ ଆଗରେ ସାକ୍ଷ୍ୟ ପ୍ରଦାନ :** ସାର୍ ଜନ୍ ସାଇମନ୍‌ଙ୍କ ଅଧ୍ୟକ୍ଷତାରେ ଖ୍ରୀ: ୧୯୨୭ରେ ଗଠିତ ଭାରତ ଶାସନ ସଂସ୍କାର କମିସନ; ଖ୍ରୀ: ୧୯୨୮ରେ ବିଭିନ୍ନ ସଂସ୍କାର ବିଷୟରେ ଭାରତୀୟମାନଙ୍କର ମତାମତ ସଂଗ୍ରହ କରିବାପାଇଁ ଭାରତକୁ ଆସିଥିଲେ । ଖ୍ରୀ: ୧୯୨୭ ଡିସେମ୍ବର ମାସରେ ମାନ୍ଦ୍ରାଜର ନିଖିଳ ଭାରତ କଂଗ୍ରେସର ବାର୍ଷିକ ଅଧିବେଶନ ବସିଥିଲା । ଏଠାରେ ଭାଷାସୂତ୍ରରେ ପ୍ରଦେଶ ଗଠନ କରାଯିବା ସକାଶେ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ପ୍ରଥମେ ସିନ୍ଧୁ, କର୍ଣ୍ଣାଟ, ଆନ୍ଧ୍ର ଏବଂ ଉତ୍କଳ ପ୍ରଦେଶ ପୃଥକ୍ କରି ଶାସନ କାର୍ଯ୍ୟାଳୟ ସ୍ଥାପନ କରାଯାଇପାରେ ବୋଲି ଏହି ପ୍ରସ୍ତାବରେ କୁହାଯାଇଥିଲା । ଏହି ପ୍ରସ୍ତାବ ଫଳରେ କଂଗ୍ରେସର ସାଙ୍ଗଠନିକ କ୍ଷେତ୍ରରେ ଉତ୍କଳ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ନିର୍ଦ୍ଦିଷ୍ଟ ରୂପରେଖ ଲାଭ କରିବାର ଆଶା ଥିଲେ ମଧ୍ୟ ସରକାରୀ କ୍ଷେତ୍ରରେ ଏହା ସହଜ ନ ଥିଲା । ସାଇମନ କମିସନ୍ ଯେଉଁ ତଦନ୍ତ କରୁଥିଲେ, ସେଥିରେ ଉତ୍କଳର ସମସ୍ୟା ସମ୍ବନ୍ଧରେ ସେମାନଙ୍କୁ ଅବହିତ କରାଇବା ନିତାନ୍ତ ଆବଶ୍ୟକ ଥିଲା; କିନ୍ତୁ କଂଗ୍ରେସ ସେହି ମାନ୍ଦ୍ରାଜ ଅଧିବେଶନରେ ସାଇମନ କମିଶନକୁ ବର୍ଜ୍ଜନ କରିଥିବାରୁ ଉତ୍କଳ କଂଗ୍ରେସ ଏ ସମ୍ବନ୍ଧରେ ବର୍ଜ୍ଜନନୀତିକୁ କାର୍ଯ୍ୟରେ ପ୍ରୟୋଗ କଲେ । ସେତେବେଳେ ସମଗ୍ର ଭାରତରେ କଂଗ୍ରେସର ସାଇମନ୍ କମିଶନ ବର୍ଜ୍ଜନ ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥିଲା ।

**ଓଡ଼ିଶାରେ ପୂର୍ଣ୍ଣ ହରତାଳ :** କଂଗ୍ରେସର ନିର୍ଦ୍ଧାରଣ ଅନୁସାରେ ସାଇମନ୍ କମିଶନ୍‌ର ପ୍ରତିବାଦ ସ୍ୱରୂପ ଓଡ଼ିଶାରେ ଖ୍ରୀ: ୧୯୨୮ ଫେବୃୟାରୀ ୩ତାରିଖରେ ସର୍ବତ୍ର ହରତାଳ ପାଳିତ ହୋଇଥିଲି । କଟକର କଦମରସୁଲରେ ଲକ୍ଷ୍ମୀନାରାୟଣ ସାହୁଙ୍କ ସଭାପତିତ୍ୱରେ ଏକ ବିରାଟ ସଭା ହୋଇଥିଲି । ସାଇମନ୍ କମିଶନଙ୍କ ସଙ୍ଗେ କୌଣସି ପ୍ରକାରେ ଓ କମିଶନଙ୍କ କାର୍ଯ୍ୟରେ କୌଣସି ଅବସ୍ଥାରେ ସହଯୋଗ ନକରିବା ଲାଗି ପ୍ରସ୍ତାବ ଗୃହୀତ ହୋଇଥିଲି । ପୁଣି ପ୍ରସ୍ତାବରେ କୁହାଯାଇଥିଲି ଯେ ଷ୍ଟେଟ୍ କାଉନସିଲ, ବଡ଼ଲାଟ ସଭା ଓ ଗ୍ରେଟଲାଟ ସଭା ପ୍ରଭୃତିକୁ ଯାଇଥିବା ବେସରକାରୀ ସଭ୍ୟମାନେ ରୟଲ କମିଶନ (ସାଇମନ୍ କମିସନ) ସମ୍ପର୍କରେ ଲାଟସଭାମାନଙ୍କରେ ଯେପରି କୌଣସି କମିଟି ଗଢ଼ା ନ ଯାଏ, ତତ୍ପ୍ରତି ଦୃଷ୍ଟି ରଖି ଯଥାସାଧ୍ୟ ଅସହଯୋଗ କରିବେ । ଏ ସଭାରେ ପଣ୍ଡିତ ଗୋପବନ୍ଧୁ ଦାଶ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ରାଜକୃଷ୍ଣ ବୋଷ ପ୍ରମୁଖ ଅଂଶଗ୍ରହଣ କରିଥିଲେ । ସାଇମନ୍ କମିଶନ ପ୍ରତି ବିରକ୍ତି ପ୍ରକାଶ କରିବା ଉଦ୍ଦେଶ୍ୟରେ ଆସେମ୍ବ୍ଲି ଓ କାଉନ୍‌ସିଲର ମେମ୍ବରମାନେ ସ୍ୱ ସ୍ୱ ପରିଷଦରେ ଯୋଗ ନଦେବାକୁ କଂଗ୍ରେସ ସ୍ଥିର କରିଥିଲି; କିନ୍ତୁ ବଡ଼ଲାଟ ସଭାର ସ୍ୱରାଜ୍ୟ ଦଳର କଂଗ୍ରେସ ମେମ୍ବରମାନେ ଏହା ମାନି ଚଳି ପାରିଲେ ନାହିଁ ।

ଓଡ଼ିଶା ଅଣକଂଗ୍ରେସ ନେତାମାନଙ୍କ ଭିତରୁ ଦଳେ 'ଓଡ଼ିଶା ଲିବରାଲ୍ ଲିଗ୍' (Orissa Liberal League) ନାମରେ ଏକ ନୂତନ ଦଳ ଗଠନ କରି ସାଇମନ୍ କମିସନ୍ ସହ ସହଯୋଗ କରିବାକୁ ସ୍ଥିର କରିଥିଲେ ।

"ଓଡ଼ିଶା ଓ ସାଇମନ୍ କମିଶନ୍" ଶୀର୍ଷକ ସମ୍ପାଦକୀୟରେ 'ସମାଜ' ଲେଖିଥିଲେ, "ଭାରତର ଶାସନସୁଧାର ବିଷୟରେ ସାଇମନ୍ କମିସନ୍ କିଛି କରିବ ନାହିଁ ବୋଲି ଓଡ଼ିଶାରେ ସମସ୍ତଙ୍କ ଧାରଣା । ଯେଉଁମାନେ ସରକାରଙ୍କ ଇଙ୍ଗିତ ଅନୁସାରେ ଚାଲିବାକୁ ସବୁବେଳେ ତିଆରି, ସେମାନେ ସୁଦ୍ଧା ଏହା କହୁଛନ୍ତି । ତେବେ ସେମାନେ ସାଇମନ୍ କମିସନ ସଙ୍ଗେ ଅସହଯୋଗ କରିବେ କି ? ଏକଥା ପଚାରିବାବେଳକୁ ସେମାନଙ୍କର ଜବାବ ଯେ, 'ସାଇମନ୍ କମିସନ ସଙ୍ଗେ ଅସହଯୋଗ କଲେ ଦେଶମିଶ୍ରଣ କିପରି ହେବ ?' × ×" (ଖ୍ରୀ: ୧୯୨୮ ଫେବୃୟାରି ୮ତାରିଖ)

ପ୍ରକୃତରେ ଏହି ଧାରଣାର ବଶବର୍ତ୍ତୀ ହୋଇ ଅଣକଂଗ୍ରେସ ନେତାମାନେ ସାଇମନ କମିସନଙ୍କୁ ବର୍ଜ୍ଜନ କରିନଥିଲେ । 'ସମାଜ' କଂଗ୍ରେସର ସମର୍ଥନକାରୀ ସାପ୍ତାହିକ । ଏହାର ଯଥେଷ୍ଟ ପ୍ରଭାବ ମଧ୍ୟ ପ୍ରାକୃତିକ ଓଡ଼ିଶାରେ ଥିବାରୁ ଅଣକଂଗ୍ରେସୀ ନେତାମାନେ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସମ୍ପର୍କୀୟ ବିଷୟରେ କମିସନ ସହିତ ସହଯୋଗ କରିବା କ୍ଷେତ୍ରରେ ବହୁ ବାଧାବିଘ୍ନ ଉପୁଜିପାରେ ବୋଲି ଆଶଂକା କରୁଥିଲେ; କିନ୍ତୁ ଶେଷରେ

ଅଣକଂଗ୍ରେସୀ ନେତାମାନେ ଏ ସମ୍ପର୍କରେ ଯଥାସାଧ୍ୟ ଚେଷ୍ଟାକରି ସ୍ମାରକପତ୍ର ଓ ସାକ୍ଷ୍ୟ ପ୍ରଦାନ କରି ଓଡ଼ିଶାର ଦାବୀ କମିସନ୍‌ଙ୍କଠାରେ ଉପସ୍ଥାପିତ କରିପାରିଥିଲେ ।

କମିସନଙ୍କ ଓଡ଼ିଶା ତଦନ୍ତ ସମୟରେ ତାଙ୍କୁ ସ୍ୱାଗତ ଜଣାଇବାପାଇଁ ବେକଂଗ୍ରେସୀ ନେତାମାନେ ଉଦ୍‌ଯୋଗୀ ହୋଇଥିଲେ; କିନ୍ତୁ କଂଗ୍ରେସପନ୍ଥୀମାନେ ହରତାଲ ପାଳନ କରିଥିଲେ ଓ କମିସନଙ୍କୁ କଳାପତାକା ପ୍ରଦର୍ଶନ କରିଥିଲେ । ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶାର ସମସ୍ୟା ସ୍ୱତନ୍ତ୍ର ଥିବାରୁ ଏ କ୍ଷେତ୍ରରେ ବର୍ଜ୍ଜନ ଆନ୍ଦୋଳନ ଅନାବଶ୍ୟକ ଓ କ୍ଷତିକାରକ ହେବ ବୋଲି ମଧୁବାବୁ ଓ ଅନ୍ୟାନ୍ୟ ବେକଂଗ୍ରେସୀ ନେତା-ମାନେ କହୁଥିଲେ । କଂଗ୍ରେସର ବିରୋଧ ସତ୍ତ୍ୱେ ସାଇମନ୍ ଓଡ଼ିଶାରେ ଅଭ୍ୟର୍ଥନା ପାଇଥିଲେ ଏବଂ ଓଡ଼ିଶାର ଅସୁବିଧା ପ୍ରତି ଅବହିତ ହୋଇଥିଲେ । ସେ ସମୟରେ ପାଟନାରେ ଥିବା ଓଡ଼ିଆ ନେତାମାନଙ୍କ ସହିତ ମଧୁବାବୁ ଘନ ଘନ ପରାମର୍ଶ କରି ସାକ୍ଷ୍ୟର ରୂପରେଖ ସମ୍ବନ୍ଧରେ ଆଲୋଚନା କରିଥିଲେ । ପାଟନାରେ ଓଡ଼ିଆମାନଙ୍କ ତରଫରୁ କମିସନଙ୍କୁ ଅଭ୍ୟର୍ଥନା କରାଯାଇଥିଲା । କନିକା ରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜ ଓ ରାୟବାହାଦୂର ଲକ୍ଷ୍ମୀଧର ମହାନ୍ତି ବିହାର ଓଡ଼ିଶା ସରକାରଙ୍କଦ୍ୱାରା ମନୋନୀତ ହୋଇ କମିସନଙ୍କ ଆଗରେ ସାକ୍ଷ୍ୟ ଦେଇଥିଲେ ।

ସାଇମନ କମିସନଙ୍କୁ ଅଭ୍ୟର୍ଥନା କରିବା ଓ ତାଙ୍କ ଆଗରେ ସାକ୍ଷ୍ୟ ପ୍ରଦାନକରିବା ବିଷୟରେ ମଧ୍ୟ ମଧୁବାବୁଙ୍କ ସହ ଓଡ଼ିଆ ନେତାମାନେ ଘନିଷ୍ଠ ସମ୍ପର୍କ ସ୍ଥାପନ କରିଥିଲେ ଏବଂ ତାଙ୍କର ପରାମର୍ଶ ଅନୁସାରେ ବିଭିନ୍ନ ସ୍ମାରକପତ୍ରରେ ଯେପରି ଐକ୍ୟ ରକ୍ଷିତ ହେବ ସେଥିପ୍ରତି ଦୃଷ୍ଟି ଦିଆଯାଇଥିଲା । ଉତ୍କଳ ସମ୍ମିଳନୀ କମିଟି ତରଫରୁ ସର୍ବଶ୍ରୀ ବ୍ରଜସୁନ୍ଦର ଦାସ, ଗୋପାଳଚନ୍ଦ୍ର ପ୍ରହରାଜ, ବାରିଷ୍ଟର ବିଶ୍ୱନାଥ ମିଶ୍ର, ଭିକାରିଚରଣ ପଟ୍ଟନାୟକ ପ୍ରମୁଖ କମିସନଙ୍କୁ ଭେଟିଥିଲେ ଏବଂ ସ୍ମାରକପତ୍ର ଦେଇଥିଲେ । ସ୍ୱତନ୍ତ୍ରଭାବରେ ମଧୁବାବୁ କମିସନଙ୍କୁ ସ୍ୱାଗତ କରିଥିଲେ ଏବଂ ଏକ ପତ୍ର ଦେଇଥିଲେ ।

ସାଇମନ୍ କମିସନ ଓଡ଼ିଶା ଓ ସିନ୍ଧୁ ଏ ଦୁଇଟି ସ୍ୱତନ୍ତ୍ର ପ୍ରଦେଶ ହେବାପାଇଁ ସୁପାରିସ୍ କରିଥିଲେ । ମଧୁବାବୁ ଓ ଅନ୍ୟାନ୍ୟ ବେକଂଗ୍ରେସୀ ନେତାମାନଙ୍କର କମିସନ ସମ୍ପର୍କରେ ଯେଉଁ ଉଦ୍ୟମ ଓ କମିସନଙ୍କ ସହିତ ଯେଉଁ ସହଯୋଗ କରିଥିଲେ, ଏହି ସୁପାରିସ୍ ତାହାର ଫଳ । ବେକଂଗ୍ରେସୀ ନେତାମାନେ ସହଯୋଗ କରି ନଥିଲେ ସାଇମନ୍ କମିସନ ହୁଏତ ଓଡ଼ିଶା ସମସ୍ୟା ସମ୍ବନ୍ଧରେ ଏକାବେଳକେ ଅନ୍ଧାରରେ ରହିଯାଇଥାନ୍ତେ ।

ଓଡ଼ିଶା ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ସହିତ ମାନ୍ଦ୍ରାଜ, ବଙ୍ଗ, ବିହାର ଓ ମଧ୍ୟପ୍ରଦେଶ ଜଡ଼ିତ । ସେମାନେ କେହି ଓଡ଼ିଶା ପାଇଁ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ

ନଥିଲେ । ମହାଭାରତୀୟ ରାଜନୀତି କ୍ଷେତ୍ରରେ ଏବଂ କେନ୍ଦ୍ର ଓ ପ୍ରାଦେଶିକ ସରକାର-ମାନଙ୍କରେ ପ୍ରତିବେଶୀମାନଙ୍କର ଅଧିକ ପ୍ରତିପତ୍ତି ଥିବାରୁ ସେମାନଙ୍କଠାରୁ ନ୍ୟାୟ ଆଶା କରିବା ବୃଥା । ଏହି କାରଣରୁ ଓଡ଼ିଶା ମହାଭାରତୀୟ ସ୍ରୋତରେ ଭାସି ନଯାଇ ନିଜ ସ୍ୱାର୍ଥ-ସିଦ୍ଧି ଓ ସ୍ୱାର୍ଥରକ୍ଷା ପାଇଁ କମିସନଙ୍କ ସହ ସହଯୋଗ କରିବା ଉଚିତ, ଏହା ମଧୁବାବୁ କହୁଥିଲେ । ଓଡ଼ିଶାବାସୀ ଅସହଯୋଗ କଲେ କମିସନ ହୁଏତ ଓଡ଼ିଶାର ଦାବୀ ସମ୍ବନ୍ଧରେ କିଛି ସୁପାରସ୍ କରି ନପାରନ୍ତି ଏବଂ ତାହାଦ୍ୱାରା ବହୁକାଳ ପର୍ଯ୍ୟନ୍ତ ଓଡ଼ିଶାବାସୀ ଯେଉଁ ଅନ୍ଧାରରେ ଥିଲେ, ପୁଣି ସେହି ଅନ୍ଧାରରେ ପଡ଼ିରହିବେ, ଏହା ମଧ୍ୟ ସେ କହୁଥିଲେ । କମିସନଙ୍କୁ ସ୍ୱାଗତ କରି ତାଙ୍କ ନିକଟରେ ସ୍ମାରକପତ୍ର ଦେବା ସମ୍ପର୍କରେ ମଧୁବାବୁ ପ୍ରତ୍ୟକ୍ଷ ଭାବରେ କାର୍ଯ୍ୟ କରିଥିଲେ ।

କମିସନ ଓଡ଼ିଶାକୁ ଆସିବା ପ୍ରଥମେ ସ୍ଥିର ହୋଇଥିଲା; କିନ୍ତୁ କଂଗ୍ରେସର ବର୍ଜ୍ଜନ ଆନ୍ଦୋଳନ ଭୟରେ କମିସନ ଓଡ଼ିଶାକୁ ଆସିବା ଉଚିତ ନୁହେଁ ବୋଲି ବେକଂଗ୍ରେସୀ ନେତାମାନେ ସିଦ୍ଧାନ୍ତ କରିଥିଲେ । ଫଳରେ, କମିସନ ଓଡ଼ିଶାକୁ ଆସିଲେନାହିଁ ; କିନ୍ତୁ ଓଡ଼ିଶା ସମ୍ବନ୍ଧରେ ଅନୁସନ୍ଧାନାଦି କାର୍ଯ୍ୟ ପାଟନାରେ ହୋଇଥିଲା । ଓଡ଼ିଶା ନିମନ୍ତେ କମିସନ ତରଫରୁ ମି: ଅଟ୍‌ଲି ( Mr. Atlee )ଙ୍କ ଅଧିକାୟକତ୍ୱରେ ଏକ ସବ୍‌କମିଟି ଗଠିତ ହୋଇଥିଲା । ସେଥିରେ ଅଟ୍‌ଲି ଥିଲେ ଚେୟାରମ୍ୟାନ, ସାର୍ ସାରବର୍ଦ୍ଧୀ (ବଙ୍ଗ), କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଏମ୍. ଏଲ୍. ଏ. ଓ ଶ୍ରୀ ଲକ୍ଷ୍ମୀଧର ମହାନ୍ତି ଏମ୍.ଏଲ୍.ଏ ସଭ୍ୟ ଥିଲେ । ଓଡ଼ିଶା ଡେପୁଟେସନର ନେତା ଥିଲେ ବାବୁ ବ୍ରଜସୁନ୍ଦର ଦାସ । ସେ ଓଡ଼ିଶା ଜାତୀୟ ପଗଡ଼ି ପିନ୍ଧି ସବ୍‌କମିଟି ବୈଠକରେ ଯୋଗଦେଇ ଡିସେମ୍ବର ମାସରେ ସାକ୍ଷ୍ୟ ଦେଇଥିଲେ ।

ବାବୁ ବ୍ରଜସୁନ୍ଦର ଦାସ ପ୍ରମୁଖ ସାକ୍ଷ୍ୟରେ ଦାବୀ କରିଥିଲେ ଯେ, "ସମଗ୍ର ଓଡ଼ିଆଭାଷୀ ରାଜ୍ୟକୁ ସ୍ୱତନ୍ତ୍ର ପ୍ରଦେଶ କରି ଏକ ଶାସନାଧୀନରେ ରଖିବା ନିମନ୍ତେ ଅର୍ଥ ଅକୁଳାନ ନ ହୁଏତ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯାଉ । ତାହା ହୋଇ ନପାରିଲେ, ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରି ବିହାର-ଓଡ଼ିଶା, ବଙ୍ଗଦେଶ ବା ମାନ୍ଦ୍ରାଜ ଯେଉଁଠାରେ ଇଚ୍ଛା ସେଠାର ଲୋକଙ୍କ ସହିତ ରଖାଯାଉ । କେବଳ ଓଡ଼ିଶାପାଇଁ ଓଡ଼ିଆମାନଙ୍କ ମଧ୍ୟରୁ ବାଛି ଜଣେ ମନ୍ତ୍ରୀ ନିଯୁକ୍ତ କରାଯାଉ । ସମ୍ମିଳିତ ଓଡ଼ିଶା ଶାସନ ପ୍ରଣାଳୀ ଉନ୍ନତ ଧରଣର କରି ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରେ ଉଚ୍ଚ ଧରଣର ନହେଲେ ମଧ୍ୟ ବର୍ତ୍ତମାନପାଇଁ ଚଳିବ ।" (ସମାଜ ୧୯ । ୧୨ । ୨୮)

ଏହି ଦାବୀ ସହିତ କେତେକ କଂଗ୍ରେସ ନେତା ଏକମତ ହୋଇ ନଥିଲେ ମଧ୍ୟ ସମସ୍ତେ ସ୍ୱତନ୍ତ୍ର ପ୍ରଦେଶ ସମ୍ବନ୍ଧୀୟ ଦାବୀକୁ ସମ୍ପୂର୍ଣ୍ଣଭାବେ ସମର୍ଥନ କରୁଥିଲେ ।

**"ମୁଁ ମୋ ଅବସ୍ଥା ଦୃଷ୍ଟିରେ ଦେଶପାଇଁ ବହୁତର ଖୁଦ ଗଣ୍ଡିଏ ଦେଇଛୁ"** ଖ୍ରୀ: ୧୯୨୮ ନଭେମ୍ବର ୧୦ ତାରିଖ ଶନିବାର ଦିନ ସନ୍ଧ୍ୟାରେ କଟକ ଟାଉନହଲରେ ଗୋଟିଏ ବଡ଼ ସାଧାରଣ ସଭା ହୋଇଥିଲା । ସବୁ ଦଳ ଓ ସବୁ ମତର ଲୋକେ ଯୋଗ ଦେଇଥିଲେ । କେବଳ ଲୋକଙ୍କ ହୃଦୟରେ ଦେଶମିଶ୍ରଣ ଭାବ ଜାଗ୍ରତ କରିବାପାଇଁ ଏ ପ୍ରକାର ସଭା ପ୍ରୟୋଜନ ହୋଇଥିଲା । ବାବୁ ବ୍ରଜସୁନ୍ଦର ଦାସ, ମଧୁପୁର ରାଜାସାହେବ ପ୍ରଭୃତି କେତେକ ଭଦ୍ରବ୍ୟକ୍ତି ଓ କେତେ ଜଣ କଂଗ୍ରେସ ନେତା ଏହି ସଭା ଆହ୍ୱାନ କରିଥିଲେ ।

କୁଳବୃଦ୍ଧ ମଧୁସୂଦନ ଦାସ ସଭାପତି ହୋଇଥିଲେ । ତାଙ୍କ ନାମ ମଧୁପୁର ରାଜାସାହେବ ପ୍ରସ୍ତାବ କରିଥିଲେ, ଶ୍ରୀ ବୈକୁଣ୍ଠନାଥ ଦେ ଅନୁମୋଦନ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ସମର୍ଥନ କରିଥିଲେ । ଏହି ସଭାରେ ମଧୁବାବୁ ଯେଉଁ ବକ୍ତୃତା ଦେଇଥିଲେ ତାହାର ମର୍ମ ହେଲା—

"ଉତ୍କଳ ଦେଶମିଶ୍ରଣ ଆନ୍ଦୋଳନ ପାଇଁ ମୁଁ ଜୀବନର ବହୁକାଳରୁ ବ୍ୟାକୁଳ । ଖାଲି ବ୍ୟାକୁଳ ନୁହେଁ, ମୋ ଅବସ୍ଥାକୁ ଚାହିଁ କାର୍ଯ୍ୟ କରିଛୁ । ଏଥିପାଇଁ ଧନ ଲୋଡ଼ା । ମୁଁ ମୋ ଅବସ୍ଥା ଦୃଷ୍ଟିରେ ବହୁତର ଖୁଦ ଗଣ୍ଡିଏ ଦେଇଛୁ । ମୁଁ ପରଠାରୁ ମାଗି ଦେଶକାର୍ଯ୍ୟ କରିବା ଜାଣେନାହିଁ । ଅନେକେ ମତେ ଚାକିରି ଲୋଭରେ ମନ୍ତ୍ରୀ ହୋଇଥିଲି ବୋଲି ସମାଲୋଚନା କରନ୍ତି; କିନ୍ତୁ ମୁଁ କଣ ଚାକିରି କରିଥିଲି ? ସେତେବେଳର ବିହାର ଲାଟ ଲର୍ଡ଼ ସତ୍ୟେନ୍ଦ୍ର-ପ୍ରସନ୍ନ ସିଂହ ମତେ ବାରମ୍ବାର ମନ୍ତ୍ରୀ ହେବାପାଇଁ ଅନୁରୋଧ କଲେ । ମୁଁ (ସ୍ୱର୍ଗୀୟ) ସାର୍ ଆଶୁତୋଷ ମୁଖର୍ଜୀଙ୍କୁ ପଚାରିଲି । ସେ କହିଲେ—'ମନ୍ତ୍ରୀ ହୋଇ ଆଇନଗୁଡ଼ିକ ବଦଳାଇ ଲୋକଙ୍କ ହାତକୁ ଅଧିକାର ଆଣ ।' ମୁଁ ତେଣୁ ମନ୍ତ୍ରୀ ହେଲି । ଯେଉଁ ମ୍ୟୁନିସିପାଲିଟିରେ ଆପଣମାନେ ଅଛନ୍ତି, ତାର ପରିଚାଳନା ପାଇଁ ମୁଁ ନୂଆ ଆଇନ କଲି । ଆଜି ତାରି ବଳରେ ଆପଣମାନେ ଜଣେ ଚେୟାରମ୍ୟାନଙ୍କୁ ତଡ଼ିପାରିଲେ । ମୁଁ ଚାକିରି ଲୋଭ କରି ରହିନଥିଲି । ଲାଟ ସାର୍ ହ୍ୱିଲର୍ ୧୯୨୨ ନଭେମ୍ବର ୧୧ତାରିଖରେ ବିଲାତରେ ଗୋଟିଏ ବକ୍ତୃତାରେ ମୋର ସ୍ୱାଧୀନ ଭାବ ବିଷୟରେ ଅନେକ କଥା କହିଥିଲେ ।"

ତାପରେ ମଧୁବାବୁ ଉତ୍କଳମାତାର ଦଶା ବର୍ଣ୍ଣନା କରି କହିଲେ—ଉତ୍କଳର ଅବସ୍ଥା ଏଇଆ —

ମା' ମା' ବୋଲି                    କେତେ ମୁଁ ଡାକିଲି
ନ ଶୁଣିଲି କଣ୍ଠସ୍ୱର,
ତୁଣ୍ଡ ଫିଟୁନାହିଁ                    ମୁଣ୍ଡ ହାଲୁନାହିଁ
ନେତ୍ରୁ ବହେ ଅଶ୍ରୁଧାର ।

ଦେଶମିଶ୍ରଣ ପନ୍ଥା ବିଷୟରେ ସେ କହିଲେ, "ସରକାରଠାରେ ବହୁତ ଧନ ଆବେଦନ ନିବେଦନ ହେଲଣି । ଆଉ ଦରକାର ନାହିଁ । ଏଣିକି ପନ୍ଥା ପରମେଶ୍ୱରଙ୍କୁ ପ୍ରାର୍ଥନା । ସେ ଗାଇଥିଲେ—

ଶୁଣରେ ଶୁଣରେ ଶୁଣ ଭାଇମାନେ
ଏ ଘୀନହୀନ ବିନତି,
ଆମ ପାପ ହେତୁ ମାତାଙ୍କ ଦୁର୍ଦ୍ଦଶା
ମୋ ଜାତିର ଅଧୋଗତି ।

ଆମର ପାପ ଦୂର ନହେଲେ ଜାତିର ଉନ୍ନତି ଓ ମା'ଙ୍କ ଦୁର୍ଦ୍ଦଶା ଦୂରହେବ-ନାହିଁ । ସମସ୍ତେ 'ଜୟ ଜଗନ୍ନାଥ' ବୋଲି ଡାକନ୍ତୁ ।

କୋଟିଏ ଓଡ଼ିଆ ଗୋଟିଏ ସ୍ୱରରେ
ଡାକ ଜୟ ଜଗନ୍ନାଥ,
ଅନ୍ଧାର ଘୁଞ୍ଚିବ ନିଶ୍ଚୟ ଦେଖିବ
ଜାତିର ଉନ୍ନତି ପଥ ।
ସୁଦର୍ଶନ ଚକ୍ର ଗରଜି ଉଠିବ
ବଳୟାରବାହୁ କରେ
ମାତାଙ୍କ ଶ୍ରୀଅଙ୍ଗ ପୂର୍ବବତ ହେବ
ଶତ୍ରୁ ପଳାଇବେ ଡରେ ।

ସେହି ଭଗବାନଙ୍କୁ ସ୍ମରଣ କର । ଆଉ ସରକାରଠାରେ ଆଶା ରଖ ନାହିଁ × × ।

"ଦେଶମିଶ୍ରଣ ବିଷୟରେ ଅନେକେ ଅନେକ ପ୍ରକାର କହୁଛନ୍ତି—ଯାହା ଉତ୍କଳ ଆଗେ ଥିଲା ସେ ସବୁ ମିଳିଲେ ନବା, ନହେଲେ ନାହିଁ; ମାତ୍ର ମୁଁ କହେ, ଯାହା ପାଉଛ ନିଅ, ପୁଣି ଅନ୍ୟମାନଙ୍କୁ ଆଣିବାକୁ ଉଦ୍ୟମ କର ।" × × (ସମାଜ ୧୪ । ୧୧ । ୨୮)

ଏହି ସଭାରେ ମଧୁବାବୁ ଯେଉଁ ପଦାବଳୀ ଆବୃତ୍ତି କଲେ, ସେଗୁଡ଼ିକ ସେ ନିଜେ ନିଜେ ସେହି ମୁହୂର୍ତ୍ତରେ ମନରେ ରଚନା କରି ବୋଲିଥିଲେ । ସ୍ୱଦେଶ ପ୍ରେମ ସମ୍ବନ୍ଧୀୟ ବହୁ ଉଦ୍ଦୀପନାମୂଳକ ଗୀତ ମଧୁବାବୁ ରଚନାକରି ବିଭିନ୍ନ ସମୟରେ ଲୋକଙ୍କୁ ଉଦ୍‌ବୁଦ୍ଧ କରିଛନ୍ତି । ଜଗନ୍ନାଥ ଓ ସୁଦର୍ଶନଚକ୍ରର ବିଷୟ ଅବତାରଣା କରି ସେ ଓଡ଼ିଶାର ଜନସମାଜର ହୃଦୟ ତନ୍ତ୍ରୀକୁ ସ୍ପର୍ଶ କରିପାରିଥିଲେ । ସେ ଖ୍ରୀଷ୍ଟିଆନ୍ ହେଲେ ମଧ୍ୟ ଜଗନ୍ନାଥ ବା ପରମେଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ଉପଦେଶ ଦେଇଥିଲେ ଏବଂ ଏଥିରେ ତାଙ୍କର ଉଦାର ମନୋଭାବ ପ୍ରକାଶ ପାଇଛି ।

ଦେଶମିଶ୍ରଣ ଓ ନିଜ ପ୍ରଦେଶ ସମ୍ବନ୍ଧରେ "ଯାହା ପାଉଛ ନିଅ, ପୁଣି ଅନ୍ୟ-ମାନଙ୍କୁ ଆଣିବାକୁ ଉଦ୍ୟମ କର" ମତକୁ "ପୂର୍ଣ୍ଣାଙ୍ଗ ସ୍ୱତନ୍ତ୍ର ପ୍ରଦେଶ ନ ହେଲେ

ବିକଳାଙ୍ଗ ପ୍ରଦେଶ ଗ୍ରହଣୀୟ ନୁହେଁ" ବୋଲି ଯେଉଁମାନେ କହୁଥିଲେ, ସେମାନେ ଗ୍ରହଣ କରିନଥିଲେ । ଏ ସମ୍ବନ୍ଧରେ କଟକ ଓ ଉପାନ୍ତ ଅଞ୍ଚଳର ବହୁ ସ୍ଥାନରେ ସଭା ସମିତି ବସି ବିରୁଦ୍ଧ ମତ ପ୍ରକାଶ ପାଇଥିଲା ଏବଂ ନେତାମାନଙ୍କ ଭିତରେ, ଏହି ମତାନ୍ତର ନେଇ ମନାନ୍ତର ମଧ୍ୟ ଦେଖାଦେଇଥିଲା । ପାରଲାଖିମୁଣ୍ଡି ଓ ଜୟପୁର ଅଞ୍ଚଳ ଯଦି ନ ଆସେ ତେବେ ଯୁକ୍ତ ପ୍ରଦେଶ ଗ୍ରହଣୀୟ ବୋଲି ଉତ୍ତର-ଓଡ଼ିଶାର ଓ ଦକ୍ଷିଣ-ଓଡ଼ିଶାର କେତେକ ନେତା କହୁଥିବା ଓ ଏ ସମ୍ପର୍କରେ କାର୍ଯ୍ୟ କରୁଥିବା ଦେଖାଯିବାରୁ ଏ ଅଞ୍ଚଳର ନେତାମାନେ କ୍ଷୁବ୍ଧ ଥିଲେ । ଏମାନଙ୍କୁ ଓଡ଼ିଶାର କେନ୍ଦ୍ର କେନ୍ଦ୍ର ପ୍ରଭାବଶାଳୀ ନେତା ସମର୍ଥନ କରୁଥିଲେ । 'ସମାଜ' ପୂର୍ଣ୍ଣାଙ୍ଗ ଓଡ଼ିଶାର ଦାବୀ ପୂରଣ ନ ହେଲେ ବିକଳାଙ୍ଗ ପ୍ରଦେଶ ଗ୍ରହଣୀୟ ନୁହେଁ ବୋଲି ଦାବୀ କରୁଥିଲେ ଏବଂ ଏହାଦ୍ୱାରା ଜୟପୁର ଓ ପାରଲା-ଖିମୁଣ୍ଡିର ଲୋକେ ବିଶେଷ ଭାବରେ ଉତ୍ସାହିତ ହୋଇଥିଲେ । ପରେ ପାରଲାଖିମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଏ ଦୁଇ ଅଞ୍ଚଳର ଦାବୀ ଓଡ଼ିଆ ନେତାମାନେ ସରକାରଙ୍କ-ଠାରେ ଦୃଢ଼ଭାବରେ ଉପସ୍ଥାପିତ କରି କୃତକାର୍ଯ୍ୟ ହୋଇଥିଲେ ।

## ୩୧ । ଶେଷ ଦଶନ୍ଧି (୨)

**ଦେଶ ମିଶ୍ରଣ ତଦନ୍ତ ଓ ମଧୁବାବୁ :** ଖ୍ରୀ: ୧୯୨୯ ମାର୍ଚ୍ଚ ୨୧ ତାରିଖ ଦିନ ବଡ଼ଲାଟଙ୍କ ସଭାରେ ପଣ୍ଡିତ ନୀଳକଣ୍ଠ ଦାସ (ସଭ୍ୟ)ଙ୍କ ପ୍ରଶ୍ନର ଉତ୍ତରରେ ଭାରତ ସରକାର କହିଥିଲେ, "ଭାରତ ସରକାର ସାଇମନ କମିସନ୍ ଆଗରେ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ଉଦ୍ଦେଶ୍ୟରେ ଗୋଟିଏ ମେମୋରାଣ୍ଡମ୍ ଦେଇଛନ୍ତି; କିନ୍ତୁ ସରକାର ଏ ବିଷୟରେ କୌଣସି ସୁପାରିସ୍ କରିନାହାନ୍ତି, କି ଓଡ଼ିଶା ପ୍ରଦେଶ ଗଠନପାଇଁ ନିକଟରେ ସରକାର କୌଣସି ବ୍ୟବସ୍ଥା କରୁନାହାନ୍ତି । ଅବଶ୍ୟ, ଓଡ଼ିଆ ପ୍ରତିନିଧିମାନେ ସାଇମନ୍ କମିସନ୍ ଆଗରେ ନିବେଦନ କରିଅଛନ୍ତି ।"

'ଭାରତୀୟ ସର୍ବଦଳ ସମ୍ମିଳନୀ' ପକ୍ଷରୁ ନିଯୁକ୍ତ ନେହେରୁ କମିଟି (ପଣ୍ଡିତ ମୋତିଲାଲ ନେହେରୁ) ଭାରତୀୟ ଶାସନ ସଂସ୍କାର ସମ୍ବନ୍ଧରେ ଯେଉଁ ରିପୋର୍ଟ ଦେଲେ, ସେଥିରେ ଓଡ଼ିଶା ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶର ସୁପାରିସ୍ ରହିଲାନାହିଁ । ସାଇମନ୍ କମିସନ୍‌ର କେନ୍ଦ୍ର କମିଟି ମଧ୍ୟ ଓଡ଼ିଶା ସମ୍ବନ୍ଧରେ ନୀରବ ରହିଲେ । ଏହା ଓଡ଼ିଶାର କଂଗ୍ରେସ ଲୋକ ଓ ବେକଂଗ୍ରେସ ଲୋକ ଉଭୟଙ୍କ ଭିତରେ ହତାଶା ସୃଷ୍ଟି କରିଥିଲା; କିନ୍ତୁ ପ୍ରକୃତରେ କହିବାକୁ ଗଲେ ଓଡ଼ିଶାର ଏ ସମସ୍ୟା ସମ୍ପର୍କରେ ଓଡ଼ିଆ-ମାନଙ୍କର କର୍ତ୍ତବ୍ୟ ଶେଷ ହୋଇନଥିଲା ।

"ଓଡ଼ିଶାର ଯେଉଁ କର୍ମୀମାନେ ପୂର୍ଣ୍ଣ ସ୍ୱରାଜ୍ୟ ଲାଗି ଶାନ୍ତ-ଯୁଦ୍ଧରେ ଜୀବନ ଢାଳି ଦେବାକୁ ସ୍ଥିର କରିଛନ୍ତି, ଏ ସମସ୍ୟାର ନିଷ୍ପତ୍ତି ନ ହେଲେ ସେମାନେ ଦେଖିବେ ଯେ

ଭାରତ ପୂର୍ଣ୍ଣ ସ୍ୱରାଜ୍ୟ ପ୍ରତିଷ୍ଠା କଲେ ସୁଦ୍ଧା ଓଡ଼ିଶାକୁ ଅଳ୍ପାଧିକ ଭାବରେ ପରାଧୀନ ହୋଇ ରହିବାକୁ ହେବ । କାରଣ, ପ୍ରକୃତରେ ବୁଝିବାକୁ ଗଲେ ବର୍ତ୍ତମାନ ଓଡ଼ିଶା ବୋଲି ଏକ ପ୍ରଦେଶ ନାହିଁ । ଓଡ଼ିଶା କେତେକାଳ ବଙ୍ଗଦେଶର ପାଦତଳେ ରହିଲା; ବର୍ତ୍ତମାନ ବିହାର ସହିତ ଗୁନ୍ଥା ହୋଇଛି । ଯେଉଁ ଓଡ଼ିଶା ଆଶ୍ରୟ ନିମନ୍ତେ କେତେବେଳେ କାହା ପାଦତଳ ଖୋଜୁଛି ସେ ମଧ୍ୟ ପୂର୍ଣ୍ଣ ଉତ୍କଳ ଜନନୀ ନୁହନ୍ତି । ଉତ୍କଳ ଜନନୀ ଛିନ୍ନଭିନ୍ନ ହୋଇ ପଡ଼ି-ରହିଛନ୍ତି । ଖଣ୍ଡେ ମାନ୍ଦ୍ରାଜ ପ୍ରଦେଶରେ, ଖଣ୍ଡେ ବଙ୍ଗ ପ୍ରଦେଶରେ, ଖଣ୍ଡେ ମଧ୍ୟପ୍ରଦେଶରେ ରହିଛି । ବାକି କେତେକ ଓଡ଼ିଆଭାଷୀ ଅଞ୍ଚଳ ଓଡ଼ିଶା ନାମରେ ବିହାର ସହିତ ମିଶି ଏକ ପ୍ରଦେଶର ଅନ୍ତର୍ଗତ ହୋଇ ରହିଛି । ଏପରି ଖଣ୍ଡେ ଭୂଖଣ୍ଡକୁ ନେଇ ତାକୁ ନିଜର ପୂର୍ଣ୍ଣାଙ୍ଗିନୀ ଉତ୍କଳ ଜନନୀ ମନେକରି ସନ୍ତୁଷ୍ଟ ରହିବା ଯେ କିପରି ଅସଙ୍ଗତ ଓ ଭାରତର ପ୍ରକୃତ ସ୍ୱରାଜ୍ୟପ୍ରାପ୍ତି ପଥରେ ଅନ୍ତରାୟ, ତାହା ସହଜରେ ବୁଝାଯାଏ । ସୁତରାଂ ସମଗ୍ର ଓଡ଼ିଆ ଜାତିକୁ ନିଜ ଗୋଡ଼ରେ ଠିଆ କରିବାକୁ ଚେଷ୍ଟା କରିବାରେ ନିୟୁକ୍ତିକରି ଯଦି ସ୍ୱରାଜ୍ୟ ଯୁଦ୍ଧରେ ଆତ୍ମବଳି ଦିଆଯାଏ, ତାହାହେଲେ ନିଜ ସନ୍ତାନମାନଙ୍କର ଆତ୍ମବଳିର ଯଥାର୍ଥ ଲାଭ ଉତ୍କଳ ଜନନୀଙ୍କୁ ମିଳିବ ନାହିଁ ।''

''ସମାଜ'' ଏପରି ମନ୍ତବ୍ୟ କରି ଉପସଂହାରରେ କହିଛନ୍ତି—''ଓଡ଼ିଆ ଜାତି ନିଜର ସ୍ୱତନ୍ତ୍ର ପ୍ରଦେଶ ସମସ୍ୟା ସମ୍ପର୍କରେ ଏକ ହୋଇ କାର୍ଯ୍ୟରେ ନ ଲାଗିଲେ ତାଙ୍କର ଜାତୀୟ ଆକାଂକ୍ଷା ପୂର୍ଣ୍ଣହେବା ଅସମ୍ଭବ ।'' (୨୭।୨।ଖ୍ରୀ:୧୯୩୦, ସମ୍ପାଦକୀୟ) ।

ଏହିପରି ଅବସ୍ଥାରେ ପଡ଼ି ଓଡ଼ିଆ ନେତାମାନେ ହତୋତ୍ସାହ ହୋଇ ପଡ଼ିଥିଲେ । ତେବେ, ଏ କ୍ଷେତ୍ରରେ ହିମାଳୟ ଭଳି ପ୍ରତିବନ୍ଧକ ହାବୁଡ଼ିବ ବୋଲି ସେମାନେ ଆଗରୁ ଜାଣିଥିବାରୁ କେବଳ ସଂଘ ଶକ୍ତିବଳରେ ଏହି କାର୍ଯ୍ୟ ସଫଳ ହେବ ବୋଲି ସେମାନେ ସ୍ଥିର କରିଥିଲେ । ଏଥିରେ କଂଗ୍ରେସ ନେତାଙ୍କ ଅସହଯୋଗ ମନୋଭାବ ନିରୁତ୍ସାହର ବାତାବରଣ ସୃଷ୍ଟି କରିଥିଲା; କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସ ପ୍ରମୁଖ ବହୁ କଂଗ୍ରେସ ନେତା ଏ କ୍ଷେତ୍ରରେ ଅସହଯୋଗ ମନୋଭାବ ସମ୍ପୃକ୍ତ ଭାବରେ ଓଡ଼ିଆ ଜାତି ପକ୍ଷେ କ୍ଷତିକାରକ ବୋଲି ଭାବୁଥିଲେ । ''ସମାଜ''ଙ୍କ ମନ୍ତବ୍ୟ ଏହାର ସ୍ପଷ୍ଟ ସୂଚନା ଦେଉଛି । ମଧୁବାବୁ ବାରମ୍ବାର ଏକଥା ଆଗରୁ କହୁଥିଲେ ଓ ''ସମାଜ''ଙ୍କ ଅନୁକୂଳ ମନ୍ତବ୍ୟରେ ତାଙ୍କର ମତ ଓ କାର୍ଯ୍ୟର ସ୍ୱୀକୃତି ସ୍ୱରୂପ ହୋଇଥିବାରୁ ସେ କେତେକାଂଶରେ ଆଶ୍ୱସ୍ତ ହୋଇଥିଲେ ।

ସାଇମନ କମିସନ୍ ତଦନ୍ତ କରି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ଆବଶ୍ୟକତା ସମ୍ବନ୍ଧରେ ସୂଚନା ଦେଇଥିଲେ । ପ୍ରଥମ ଗୋଲ୍ ଟେବୁଲ୍ ବୈଠକରେ ପାରଳାଖେମୁଣ୍ଡିର ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ ଭାରତୀୟ ଜମିଦାର ସଂଘ ପକ୍ଷରୁ ସଭ୍ୟ ମନୋନୀତ ହୋଇ ଯୋଗ ଦେଇଥିଲେ । ପାରଳା ରାଜା ଇଂଲଣ୍ଡ ଯିବା ପୂର୍ବରୁ ଓ ସେଠାରେ

ଥିବାବେଳେ ମଧ୍ଯ ମଧୁବାବୁଙ୍କ ସହ ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସମ୍ବନ୍ଧରେ ପରାମର୍ଶ କରୁଥିଲେ ।

**ଚିତ୍ରପଟ ଉନ୍ମୋଚନ** : ଖ୍ରୀ: ୧୯୩୧ ଏପ୍ରେଲ ମାସରେ କଟକ ଉତ୍କଳ ସଂଘର ପୂର୍ବତନ ସଭାପତି ସ୍ୱର୍ଗୀୟ ପ୍ରିୟନାଥ ଚଟାର୍ଜିଙ୍କର ଚିତ୍ର ଉତ୍କଳଖାନା ଲାଇବ୍ରେରୀରେ ଉନ୍ମୋଚିତ ହୋଇଥିଲା । ଏଥିନିମନ୍ତେ ଲାଇବ୍ରେରୀରେ ଏକ ସଭା ମଧୁବାବୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ପ୍ରିୟବାବୁ ବହୁ ପୁରାତନ ଉତ୍କଳ ଥିଲେ । ମଧୁବାବୁଙ୍କ ସହିତ ତାଙ୍କର ସମ୍ପର୍କ ଘନିଷ୍ଠ ଓ ବନ୍ଧୁତ୍ୱପୂର୍ଣ୍ଣ ଥିଲା । ପ୍ରିୟନାଥ ବାବୁ ମିଷ୍ଟଭାଷୀ, ପରୋପକାରୀ, ସଚ୍ଚା ଉତ୍କଳ ଥିଲେ । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ ମଧୁବାବୁ ଯୁବକ ଉତ୍କଳ ବନ୍ଧୁମାନଙ୍କୁ ଉପଦେଶ ଦେଇଥିଲେ ।

ପାଟନା ହାଇକୋର୍ଟର ଭୂତପୂର୍ବ ଚିଫ୍ ଜଷ୍ଟିସ୍ ଡସନ୍ ମିଲର୍‌ଙ୍କ ଗୋଟିଏ ଚିତ୍ର ମଧୁବାବୁ ଦାନ କରିଥିଲେ । ଏହି ଚିତ୍ରଟି ଅପ୍ରେଲ ୯ ତାରିଖରେ କଟକ ଉତ୍କଳ ସଂଘ ଲାଇବ୍ରେରୀ ହଲରେ ଚିଫ୍‌ଜଷ୍ଟିସ୍ ସାର୍ କୁଟ୍‌ନି ଟିରେଲ୍ ଉନ୍ମୋଚନ କରିଥିଲେ ।

**ସମ୍ବର୍ଦ୍ଧନା ପ୍ରସ୍ତାବକୁ ମଧୁବାବୁଙ୍କ ନାପସନ୍ଦ** : ଖ୍ରୀ: ୧୯୩୧ରେ ମଧୁବାବୁ ଓକିଲାତି କରିବା ୫୦ ବର୍ଷ ପୂର୍ଣ୍ଣ ହୋଇଯିବାରୁ କଟକ ଉତ୍କଳସଂଘ ତାଙ୍କୁ ଏକ ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ସମ୍ବର୍ଦ୍ଧନା କରିବା ନିମିତ୍ତ ବିଚାର କରି ମଧୁବାବୁଙ୍କ ସମ୍ମତି ଆଣିବାପାଇଁ ତାଙ୍କଠାକୁ ଯାଇଥିଲେ । ସେତେବେଳକୁ ତାଙ୍କର ବୟସ ୮୩ । ସେ କୋର୍ଟକୁ କମ୍ବା ବାହାରକୁ ବୁଲିବାପାଇଁ ମଧ୍ଯ ଆଉ ଯାଉନଥିଲେ । ପ୍ରତିଦିନ ଘର ଓ ଘର ସାମନାରେ ଥିବା ବଗିଚା ଭିତରେ ଅଳ୍ପ ଅଳ୍ପ ବୁଲାବୁଲି କରୁଥିଲେ । ସେ ଏ ପ୍ରସ୍ତାବକୁ ଗ୍ରହଣ କଲେନାହିଁ । ତାଙ୍କର ଅସମ୍ମତିର କାରଣ ଦାର୍ଶନିକ ଭିତ୍ତି ଉପରେ ପ୍ରତିଷ୍ଠିତ ଥିଲା । ମାନବ ଜୀବନର ଲକ୍ଷ୍ୟକୁ ବିଶ୍ଳେଷଣ କରି ସେ ଅତି ଉଚ୍ଚକୋଟୀର ଉତ୍ତର ଦେଇଥିଲେ ।

"ମୋ ଜୀବିତାବସ୍ଥାରେ ମୋ ସମ୍ବନ୍ଧରେ ଫକୀର (ଫକୀରମୋହନ ସେନାପତି), ଗୋଦାବରୀଶ (ଗୋଦାବରୀଶ ମିଶ୍ର), ବଲ (ନନ୍ଦକିଶୋର ବଳ), ମେହେର (ଗଙ୍ଗାଧର ମେହେର) ପଦ୍ୟ ଲେଖିଛନ୍ତି । ମୁଁ ତ ଦୁର୍ବଳଚିତ୍ତ; ଏଥିରେ ମୁଁ ପ୍ରଶଂସିତ ହେଲି ବୋଲି ଅନୁଭବ କରୁଛି; କିନ୍ତୁ ପ୍ରକୃତରେ ଏପରି ହେବା ଉଚିତ ନୁହେଁ । ଯେଉଁ ଯୁଗରେ ଜଣେ ବ୍ୟକ୍ତି ଜନ୍ମଗ୍ରହଣ କରିଛି, ସେହି ଯୁଗରେ ଇତିହାସରେ ତାହାର ସ୍ଥାନ ନିର୍ଣ୍ଣିତ ହେବା ଉଚିତ ନୁହେଁ । ଲୋକେ ତାଙ୍କୁ ଦେଖୁଛନ୍ତି, ଚିହ୍ନିଛନ୍ତି, ତାଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିଛନ୍ତି । ହୁଏତ, ତାଙ୍କୁ ଦେଖି ଚିହ୍ନି ଘୃଣା କରିଛନ୍ତି, କି ପ୍ରଶଂସା କରିଛନ୍ତି, କି ପୂଜା କରିଛନ୍ତି । ତାଙ୍କର ଦୋଷ ଦୁର୍ବଳତା କି ସଦ୍‌ଗୁଣକୁ ସେ ଆଖି ଆଗରେ ଦେଖୁଛନ୍ତି, ଅନୁଭବ କରୁଛନ୍ତି । ଫଳରେ ଘୃଣା, ପ୍ରଶଂସା, ଈର୍ଷା ପ୍ରଭୃତିଦ୍ୱାରା ଲୋକଙ୍କ ଦୃଷ୍ଟି

କଳୁଷିତ ହୋଇଯାଉଛି । ଏଥିରେ ମନୁଷ୍ୟର ପ୍ରକୃତ ମୂଲ୍ୟାୟନ ସମ୍ଭବ ନୁହେଁ । ପରବର୍ତ୍ତୀ ଯୁଗର ଲୋକେ କେବଳ ଏହି ମୂଲ୍ୟାୟନ୍ ଠିକ୍‌ଭାବରେ କରିପାରିବେ । ନେତାର ସ୍ୱଯୁଗର ଲୋକଙ୍କର ଚକ୍ଷୁ ଯେଉଁସବୁ କାରଣରୁ କଳୁଷିତ ହୋଇଥାଏ, ତାହା ଏମାନଙ୍କ ପକ୍ଷେ ସମ୍ଭବ ନୁହେଁ । ଏମାନେ ତାଙ୍କର ସମ୍ପର୍କରେ ଆସିନାହାନ୍ତି, କି ଘୃଣା କି ପ୍ରଶଂସାଦ୍ୱାରା କଳୁଷିତ ହୋଇଥିବା ଚକ୍ଷୁରେ ତାଙ୍କୁ ଦେଖିନାହାନ୍ତି । ସେମାନେ ବିଚାର କରି ଦେଖିବେ, ଏହି ଲୋକଟି ଉପରେ ଜାତି କି ଗୁରୁଦାୟିତ୍ୱ ନ୍ୟସ୍ତ କରିଥିଲା, ତାକୁ କି କ୍ଷମତା ଅର୍ପଣ କରିଥିଲା, ବିପଦ ଓ ଧ୍ୱଂସ ସମ୍ମୁଖରେ ତାହାର ନେତୃତ୍ୱକୁ ଗ୍ରହିଥିଲା କି ନାହିଁ, ବିଶ୍ୱାସ ରଖିଥିଲା କି ନାହିଁ, ଏହାଙ୍କ ନିଷ୍ପତ୍ତି ଉପରେ ଜାତିର ଇତିହାସର ଗତି ନିର୍ଭର କରୁଥିଲା କି ନାହିଁ । ଏସବୁ ବିଷୟ ପରବର୍ତ୍ତୀ ଯୁଗରେ ଲୋକଙ୍କଦ୍ୱାରା ନିର୍ଣ୍ଣିତ ନ ହେବା ପର୍ଯ୍ୟନ୍ତ କୌଣସି ଲୋକର ଇତିହାସରେ ସ୍ଥାନ ନିର୍ଣ୍ଣୟ କରିବା ଅନୁଚିତ ।”

**“ସମାଜ ସଂଗଠନରେ ନାରୀର ବିଶିଷ୍ଟ ସ୍ଥାନ ରହିଛି”** : ଖ୍ରୀ: ୧୯୩୧ ଅଗଷ୍ଟ ମାସ ୯ ତାରିଖରେ ଉତ୍କଳ ନାରୀ ସମ୍ମିଳନୀର ବାଲେଶ୍ୱର ଅଧିବେଶନକୁ ମଧୁବାବୁ ଏକ ବାର୍ତ୍ତା ପଠାଇଥିଲେ । ସେ ଲେଖିଥିଲେ—“ଆସନ୍ତା କାଲି ସମ୍ମିଳନୀ ବସିବ । ଓଡ଼ିଆ ଜାତି ଓ ସମାଜର ସ୍ୱାର୍ଥର ଉନ୍ନତି ଲକ୍ଷ୍ୟରେ ଓଡ଼ିଆ ମହିଳାମାନଙ୍କର କର୍ତ୍ତବ୍ୟ ଓ କର୍ମପନ୍ଥା ନିର୍ଣ୍ଣୟ କରିବା ପାଇଁ ଏ ସମ୍ମିଳନୀ ବସୁଛି । ଏହି ଉପଲକ୍ଷ୍ୟେ ମୋର ପରାମର୍ଶ କାମନା କରିଥିବାରୁ ମୁଁ ଆନନ୍ଦିତ ; କିନ୍ତୁ ସମ୍ମିଳନୀର ଭୋର ଆଲୋଚନାଯୋଗ୍ୟ କୌଣସି ପରାମର୍ଶ ଦେବାକୁ ମୁଁ ନିଜକୁ ଅଯୋଗ୍ୟ ମନେକରୁଛି । ଓଡ଼ିଶାରେ ପୁରୁଷର ସେବା କରିବାପାଇଁ କେବଳ ସ୍ତ୍ରୀ ସୃଷ୍ଟି ହୋଇଛି ଏବଂ ସମାଜର ସଂଗଠନରେ ସ୍ତ୍ରୀକୁ ବିଶିଷ୍ଟ କର୍ତ୍ତବ୍ୟ ଭଗବାନ ଦେଇନାହାନ୍ତି, ଏହି ଧାରଣାରେ ଓଡ଼ିଶାର ପୁରୁଷମାନେ ସ୍ତ୍ରୀମାନଙ୍କ ପ୍ରତି ବ୍ୟବହାର ଦେଖାନ୍ତି । ଯେ କୌଣସି ପୁରୁଷର ପରାମର୍ଶ ଅସଙ୍ଗତ । ବର୍ତ୍ତମାନର ରାଜନୈତିକ ଆନ୍ଦୋଳନରେ ଅଳ୍ପ ସଂଖ୍ୟକ ମହିଳା ଯୋଗ ଦେଇଛନ୍ତି । ମହିଳା ପୁରୁଷର ରାଜନୈତିକ ଜୀବନରେ ସାହାଯ୍ୟ କରୁଛି । ନାରୀ ପୁରୁଷର ଗାର୍ହସ୍ଥ୍ୟ ଜୀବନରେ କିମ୍ବା ରାଜନୈତିକ ଜୀବନରେ ସାହାଯ୍ୟ କରୁଥିଲେ ମଧ୍ୟ ତାହାର ସ୍ଥାନ ନିମ୍ନରେ ।

“ସ୍ତ୍ରୀ ଓ ପୁରୁଷ ଉଭୟେ ନାରୀସୃଷ୍ଟିରେ ଦୈବର ଲକ୍ଷ୍ୟକୁ ପାସୋରି ଦେଉଛନ୍ତି । ୟୁରୋପୀୟ ଜାତିର ବର୍ତ୍ତମାନ ଉନ୍ନତ ଅବସ୍ଥା ପାଇଁ କିଏ ଦାୟୀ, ମାତା କି ପିତା, ଏହା ଆପଣମାନେ ଅନୁସନ୍ଧାନ କରିବା ଉଚିତ୍ ଏବଂ ଏହା ପରେ ଆପଣଙ୍କର କର୍ତ୍ତବ୍ୟ ଓ କାର୍ଯ୍ୟକ୍ରମ ସ୍ଥିର କରିବେ । ଆପଣଙ୍କ ସମ୍ମିଳନୀର ଆଲୋଚନାରେ ଭଗବାନ ସହାୟ ହୁଅନ୍ତୁ, ଏହାହିଁ ମଧୁସୂଦନ ଦାସର ଆନ୍ତରିକ ପ୍ରାର୍ଥନା ।” (ଇଂରେଜୀରୁ ମର୍ମାନୁବାଦ)

ଏ ବାଣୀ ନାରୀ ସମ୍ମିଳନୀରେ ବିଶେଷ ଉତ୍ସାହ ଓ ଆନନ୍ଦ ସୃଷ୍ଟି କରିଥିଲା ।

**ଓଡ଼ିଶା ସୀମା କମିଟି : ଓଡୋନେଲ୍ କମିଟି ଖ୍ରୀ: ୧୯୩୧ :** ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ କରିବାପାଇଁ ଭାରତ ସଚିବଙ୍କ ଅନୁମୋଦନକ୍ରମେ ବଡ଼ଲାଟ ଖ୍ରୀ: ୧୯୩୧ ସେପ୍ଟେମ୍ବର ୮ ତାରିଖରେ ସାର୍ ଓଡ଼ୋନେଲ୍ (Sir S. O'donnel)ଙ୍କ ଅଧ୍ୟକ୍ଷତାରେ ଓଡ଼ିଶା ସୀମା ନିର୍ଦ୍ଧାରଣ କମିଟି (Orissa Boundary Committee) ନିଯୁକ୍ତ କଲେ । ଏଥିରେ ବୋମ୍ବେର ମି: ଏଚ୍.ଏମ୍. ମେହେଟା ଓ ଆସାମର ମି: ତରୁଣରାମ ଫୁକନ ସଭ୍ୟ ରହିଥିଲେ । ପାରଳାର ରାଜା ଓଡ଼ିଆଙ୍କ ସ୍ୱାର୍ଥ ରକ୍ଷା ପାଇଁ, ଶ୍ରୀ ସଚ୍ଚିଦାନନ୍ଦ ସିଂହ ବିହାରର ସ୍ୱାର୍ଥରକ୍ଷା ପାଇଁ ଓ ସି. ଭି. ଏସ୍. ନରସିଂହ ରାଜୁ ଆନ୍ଧ୍ରମାନଙ୍କ ସ୍ୱାର୍ଥପାଇଁ ସହଯୋଗୀ ସଭ୍ୟ (Associate Member) ରୂପେ ନିଯୁକ୍ତ ହୋଇଥିଲେ । ଏହି କମିଟି ଭିନ୍ନ ସ୍ଥାନ ଭ୍ରମଣ କରି ସାକ୍ଷ୍ୟ ଗ୍ରହଣ କରିଥିଲେ । ଓଡ଼ିଶା ତରଫରୁ ଯେଉଁସବୁ ସ୍ମାରକପତ୍ର ଦିଆଯାଇଥିଲା, ସେଥିରୁ ଅଧିକାଂଶ ମଧୁବାବୁଙ୍କ ଦୃଷ୍ଟିକୁ ଅଣାଯାଇଥିଲା ଏବଂ ତାଙ୍କ ପରାମର୍ଶକ୍ରମେ ପରିବର୍ତ୍ତନ ଓ ପରିବର୍ଦ୍ଧନ କରାଯାଇଥିଲା ।

ଓଡ଼ୋନେଲ୍ କମିଟିର ସଭାପତି ସାର୍ ଓଡ଼ୋନେଲ୍ କଟକରେ ପଦାର୍ପଣ କରିବା ମାତ୍ରେ ଓଡ଼ିଆଜାତି ପକ୍ଷରୁ ମଧୁବାବୁ ତାଙ୍କୁ ସମ୍ବର୍ଦ୍ଧନା କରି ଇଂରେଜୀରେ ଏକ କ୍ଷୁଦ୍ର ଭାଷଣ ଦେଇଥିଲେ । ସେ କହିଥିଲେ, "ଇଂରେଜମାନେ ୧୫୦ ବର୍ଷ ହେଲା ଏ ରାଜ୍ୟ ଦଖଲ କରିଥିଲେ ସୁଦ୍ଧା ଓଡ଼ିଆମାନେ ତାଙ୍କ ସୁଶାସନର ଫଳ କିଛି ପାଇନାହାନ୍ତି । ସେମାନଙ୍କୁ ବିଭିନ୍ନ ପ୍ରଦେଶରେ ବିଚ୍ଛିନ୍ନ କରି ରଖାହୋଇଛି । ଅନ୍ୟାନ୍ୟ ପ୍ରଦେଶ ପରି ଇଂରେଜୀ ଶିକ୍ଷା ଓ ସଭ୍ୟତାର ସୁଯୋଗ ପାଇଥିଲେ ଆଜି ଆପଣ ଇଂରେଜୀ ଶିକ୍ଷିତ ଓଡ଼ିଆଙ୍କର ନାତି ଅଣନାତିଙ୍କଦ୍ୱାରା ଅଭ୍ୟର୍ଥିତ ହୋଇଥାଆନ୍ତେ; କିନ୍ତୁ ଆପଣଙ୍କୁ ଯେ ଅଭ୍ୟର୍ଥନା କରୁଛନ୍ତି ସେ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ । ଓଡ଼ିଆ ଗୋଟିଏ ଇତିହାସପ୍ରସିଦ୍ଧ ଜାତି । ସେ ଜାତିକୁ ମାରିବା ଓ ତାରିବାର ଗୁରୁ ଦାୟିତ୍ୱ ବର୍ତ୍ତମାନ ଆପଣଙ୍କ ଉପରେ ଦିଆଯାଇଛି । ଆପଣ ଉଚିତ ଅନୁସନ୍ଧାନ ଓ ନ୍ୟାଯ୍ୟ ବିଚାର କରି ଏପରି ଗୋଟିଏ ପୁରାତନ ଜାତିକୁ ରକ୍ଷାକରିବେ ଓ ସେମାନଙ୍କ ପ୍ରତି ନ୍ୟାଯ୍ୟ ବିଚାର କରିବେ ବୋଲି ଆମ୍ଭମାନଙ୍କର ଆଶା । ଭଗବାନ ଆପଣଙ୍କୁ ସେ କର୍ତ୍ତବ୍ୟ ପୂରଣ କରିବାର ଶକ୍ତି ଦିଅନ୍ତୁ, ଏହାହିଁ କାମନା । × × ("ଉତ୍କଳପ୍ରଦେଶ ପ୍ରସଙ୍ଗରୁ ଉଦ୍ଧୃତ । ଲେଖକ ଭୀମସେନ ପାଣିଗ୍ରାହୀ, ଦିଗପହଣ୍ଡି, ଗଞ୍ଜାମ) ମଧୁବାବୁ ନିଜ କୋଠିରେ କମିଟିର ସଭ୍ୟମାନଙ୍କୁ ସମ୍ବର୍ଦ୍ଧନା କରିଥିଲେ ।

ଓଡୋନେଲ୍ କମିଟି ଉପାନ୍ତ ଅଞ୍ଚଳର ଖ୍ରୀ: ୧୯୩୧ରେ ଲୋକମତ ସଂଗ୍ରହ ଓ ସାକ୍ଷ୍ୟ ଗ୍ରହଣ କରିବାପାଇଁ ଗସ୍ତ କରୁଥିଲାବେଳେ ମଧୁବାବୁ ଜାମ୍ସେଦ୍‌ପୁର, କଲିକତା ପ୍ରଭୃତି ସ୍ଥାନକୁ ଯାଇ ସଭାସମିତି କରି ପ୍ରଚାର କରିଥିଲେ ଏବଂ ସ୍ଥାନୀୟ ଓଡ଼ିଆ ନେତାମାନଙ୍କୁ

ସାକ୍ଷ୍ୟ ଦେବାରେ ସାହାଯ୍ୟ କରିଥିଲେ । ସେହି ବର୍ଷର ନଭେମ୍ବର ମାସରେ ଜାମସେଦ-ପୁରରେ ଏକ ସାଧାରଣ ସଭାରେ ସେ ବକ୍ତୃତା ଦେଇ ସିଂହଭୂମି ଓ ମେଦିନୀପୁରର ଓଡ଼ିଶା ସହିତ ମିଶ୍ରଣର ଯଥାର୍ଥତା ସମ୍ବନ୍ଧରେ ଲୋକଙ୍କୁ ବୁଝାଇଥିଲେ । ଟାଟା କମ୍ପାନୀର ଉଚ୍ଚ କର୍ମକର୍ତ୍ତାମାନଙ୍କର ସହାନୁଭୂତି ଆକର୍ଷଣ କରିବାକୁ ମଧ୍ୟ ସେ ଉଦ୍ୟମ କରିଥିଲେ ।

ଓଡ଼ିଶା ସୀମା କମିଟିଙ୍କ ରିପୋର୍ଟ ଖ୍ରୀ: ୧୯୩୨ରେ ପ୍ରକାଶିତ ହୋଇଥିଲା । ପାରଳାଖିମୁଣ୍ଡି ସମ୍ବନ୍ଧରେ କମିଟିର ସଭ୍ୟମାନଙ୍କ ଭିତରେ ମତଭେଦ ଦେଖାଦେଇଥିଲା । ଅଧ୍ୟକ୍ଷ ଓଡ଼ୋନେଲ୍ ପାରଳା ଜମିଦାରୀ ମିଶ୍ରଣ ବିପକ୍ଷରେ ମତଦେଇଥିଲେ; କିନ୍ତୁ ଅନ୍ୟ ଦୁଇଜଣ ସଭ୍ୟ ସପକ୍ଷରେ ମତ ଦେଇଥିଲେ । ମେଦିନୀପୁର, ସିଂହଭୂମି ଓ ଅନ୍ୟାନ୍ୟ ସୀମାନ୍ତ ଓଡ଼ିଆ ଅଞ୍ଚଳର ମିଶ୍ରଣ ପାଇଁ କମିଟି ସୁପାରିସ୍ କରିନଥିଲେ । ସୀମା କମିଟିର ସୁପାରିସର ବିରୋଧ କରି ଓଡ଼ିଶାରେ ତୀବ୍ର ଆନ୍ଦୋଳନ ହୋଇଥିଲା । ବହୁ ସଭା ସମିତିରେ ଏହାର ସମାଲୋଚନା କରାଯାଇଥିଲା । ଖ୍ରୀ: ୧୯୩୩ ଫେବୃଆରୀରେ କଟକରେ 'ଉତ୍କଳ ସମ୍ମିଳନୀ କମିଟି'ର ୨ୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ଶ୍ରୀ ଭୁବନାନନ୍ଦ ଦାସ ସଭାପତି ହୋଇଥିଲେ । ମଧୁବାବୁ, ପାରଳା ରାଜା, କନିକା ଯୁବରାଜ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜ, କମିଟିର ସମ୍ପାଦକ ଶ୍ରୀ ବ୍ରଜବନ୍ଧୁ ଦାସ (ଓକିଲ) ଏଥିରେ ଅଂଶ ଗ୍ରହଣ କରିଥିଲେ ।

**ରୋଗଶଯ୍ୟାରେ ମଧୁବାବୁ** : ଖ୍ରୀ: ୧୯୩୨ ଅକ୍ଟୋବର ବେଳକୁ ମଧୁବାବୁ ପୀଡ଼ିତ ହୋଇ ପଡ଼ିଥିଲେ । କ୍ରମେ ସେ ଦୁର୍ବଳ ହୋଇଯାଉଥିବା ଲକ୍ଷ୍ୟ କରାଯାଇଥିଲା । ଏକେତ ବୃଦ୍ଧାବସ୍ଥା, ସେଥିରେ ପୁଣି କ୍ରମାଗତ ରୋଗଭୋଗ, ଏଥିରେ ଯଥେଷ୍ଟ ଆଶଙ୍କା ଉପୁଜିବା ସ୍ୱାଭାବିକ । ପ୍ରକୃତରେ, ଓଡ଼ିଶାବାସୀ ଚିନ୍ତିତ ହୋଇ ପଡ଼ିଥିଲେ । ତାଙ୍କର ଆରୋଗ୍ୟ ଓ ଦୀର୍ଘଜୀବନ କାମନା କରି ଉତ୍କଳର ବିଭିନ୍ନ ସ୍ଥାନରେ ସଭା ସମିତି ଓ ପ୍ରାର୍ଥନା ହୋଇଥିଲା । କଟକରେ ଅକ୍ଟୋବର ମାସ ୨୦ ତାରିଖରେ ଶ୍ରୀରାମଚନ୍ଦ୍ର ଭବନରେ ଏକ ପ୍ରାର୍ଥନା ସଭା ହୋଇଥିଲା । ବାବୁ ବ୍ରଜସୁନ୍ଦର ଦାସ (ମୁକୁର ସମ୍ପାଦକ) ସଭାପତି ହୋଇଥିଲେ । ବ୍ରଜସୁନ୍ଦର ବାବୁ ମଧୁବାବୁଙ୍କ ଗୁଣ ଗାନକରି ସୁନ୍ଦର ବକ୍ତୃତାଟିଏ ଦେଇଥିଲେ । ଗୋଟିଏ ପ୍ରାର୍ଥନା ସଙ୍ଗୀତ ବୋଲିସିବା ପରେ ସମସ୍ତେ ଦଣ୍ଡାୟମାନ ହୋଇ ମଧୁବାବୁଙ୍କ ଆରୋଗ୍ୟ କାମନା କରି ପ୍ରାର୍ଥନା କରିଥିଲେ । ସଭା ପରେ ସଭାପତି ଓ ଆଉ କେତେ ଜଣ ବିଶିଷ୍ଟ ଭଦ୍ରବ୍ୟକ୍ତି ମଧୁବାବୁଙ୍କ କୋଠିକୁ ଯାଇ ତାଙ୍କୁ ସଭାର ସମବେତ ପ୍ରାର୍ଥନା ବିଷୟ ଜଣାଇଥିଲେ । ମଧୁବାବୁ କ୍ଷୀଣସ୍ୱରରେ ସେହି ରୋଗଶଯ୍ୟାରୁ କହିଲେ, "ଦେଶବାସୀ ଯେଉଁ ପ୍ରାର୍ଥନା ସଭା କରିଛନ୍ତି ସେଥିପାଇଁ ମୁଁ କୃତଜ୍ଞ । ମୋର ଏ ସମୟରେ ଜାତିର ଏ ସ୍ନେହଟି ଭୁଲି ପାରିବି ନାହିଁ ।" ମଧୁବାବୁ କଠିନ ରୋଗରେ ପୀଡ଼ିତ ଥିଲେ ମଧ୍ୟ ତାଙ୍କର ମାନସିକ ଶକ୍ତି ସତେଜ ଥିଲା । ସେ ଯାହା ଖାଉଥିଲେ, ତାହା ଭଲଭାବେ

ଜୀର୍ଣ୍ଣ ହେଉ ନଥିଲା, ପ୍ରସା କଲାବେଳେ ଟିକିଏ ଅଟକି ଯାଇ ଊର୍ଦ୍ଧ୍ୱଗତି କରୁଥିଲା । ସେ ହର୍ଲିକ୍ସ ଓ ଗୁଣ୍ଡ ଦୁଧ ଅଳ୍ପ ଅଳ୍ପ ପିଉଥିଲେ । ଅସ୍ତ୍ରୋପଚାର କରିବା ପାଇଁ କେହି କେହି ଡାକ୍ତର ପରାମର୍ଶ ଦେଇଥିଲେ । ଏଥିନିମନ୍ତେ ମଧୁବାବୁଙ୍କୁ କଲିକତା ନେବା କଥା ମଧ୍ୟ ଉଠିଥିଲା; କିନ୍ତୁ ବୃଦ୍ଧାବସ୍ଥା ଯୋଗୁ ଅସ୍ତ୍ରୋପଚାର କିମ୍ବା କଲିକତା ଗମନ ନିରାପଦ ନୁହେଁ ବୋଲି କେହି କେହି ବନ୍ଧୁ ମତ ଦେବାରୁ ସେ କଥା ବନ୍ଦ ହେଲା । ୮୫ ବର୍ଷ ବୟସରେ ରୋଗଶଯ୍ୟାରେ ପଡ଼ି ମଧ୍ୟ ସେ "ଦୁଃଖିନୀ ଉତ୍କଳ ଜନନୀ" କଥା ଭୁଲି ନଥିଲେ । ନିଜ ସମ୍ବନ୍ଧରେ ସେ ଶେଷରେ କହିଥିଲେ, "ଯଦି ଈଶ୍ୱର ବିବେଚନା କରନ୍ତି ଯେ ମୋଦ୍ୱାରା କୌଣସି କାର୍ଯ୍ୟ ପୂର୍ଣ୍ଣହେବାକୁ ବାକି ଅଛି, ତେବେ ସେ ଆଉ କିଛିକାଳ ବଞ୍ଚାଇ ରଖିବେ । ନହେଲେ, ଦେଶବାସୀଙ୍କ କଲ୍ୟାଣ ମୁଣ୍ଡେଇ ଚାଲିଯିବି ।"

**ମଧୁବାବୁଙ୍କ ମୃତ୍ୟୁ ସମ୍ବନ୍ଧରେ ମହାତ୍ମାଜୀଙ୍କ ଭ୍ରମ ଧାରଣା :** ଖ୍ରୀ: ୧୯୩୨ ନଭେମ୍ବର ମାସରେ ମହାତ୍ମା ଗାନ୍ଧି ହରିଜନ ଆନ୍ଦୋଳନ ସମ୍ପର୍କରେ ମଧୁବାବୁଙ୍କର କାର୍ଯ୍ୟକୁ ପ୍ରଶଂସା କରି 'ହରିଜନ' ପତ୍ରିକାରେ ଏକ ପ୍ରବନ୍ଧ ଲେଖିଥିଲେ । ସେଥିରେ ସେ ମଧୁବାବୁଙ୍କୁ 'ସ୍ୱର୍ଗୀୟ' ବୋଲି ଲେଖିଥିଲେ । କିନ୍ତୁ ଏ ସମ୍ବାଦ ସତ୍ୟ ନୁହେଁ ବୋଲି ମହାତ୍ମାଜୀଙ୍କୁ ଜଣାଇ ଦେବା ପରେ ସେ ଅତ୍ୟନ୍ତ ଦୁଃଖ ପ୍ରକାଶ କରି 'ହରିଜନ'ରେ ଲେଖିଥିଲେ, "ଜଣେ ଆଶ୍ରମବାସୀ, ଯେ କି ଓଡ଼ିଶାରେ ବାସ କରୁଛନ୍ତି, ମୋତେ ଟେଲିଗ୍ରାମ କରି ଜଣାଇଲେ ଯେ, ଯେଉଁ ମଧୁସୂଦନ ଦାସ ଟାନେରି ସକାଶେ ଉତ୍ତମ କାର୍ଯ୍ୟ କରିଥିବା ଆପଣ ବିବୃତିରେ ଲେଖିଛନ୍ତି, ସେ ମରିନାହାନ୍ତି । ସେ ମଲେଣି ବୋଲି ମୋ ମନରେ କାହିଁକି ଧାରଣା ହେଲା, ମୁଁ ବୁଝିପାରୁନାହିଁ । ଏହା ମୋର ବୋକାମି । ଏହି ଟେଲିଗ୍ରାମ ପାଇବା ପରେ ମୁଁ ତାଙ୍କ (ମଧୁବାବୁଙ୍କ)ଠାକୁ ଏକ ଟେଲିଗ୍ରାମ୍ ପଠାଇଥିଲି—"ମଧୁସୂଦନ ଦାସ ଦୀର୍ଘଜୀବୀ ହୁଅନ୍ତୁ । ମୋର ମନରେ ଧାରଣା ହେଲା ଯେ ଆପଣ ଆଉ ଇହଧାମରେ ନାହାନ୍ତି । କାହିଁକି ମୋର ଏ ଧାରଣା ହେଲା ତାହା ମୁଁ ଜାଣିପାରୁନାହିଁ । ମୋର ବୋକାମିର ଏ ଜ୍ୱଳନ୍ତ ନିଦର୍ଶନ; କିନ୍ତୁ ଭଗବାନ ଭବିଷ୍ୟତରେ ଆପଣଙ୍କଠାରୁ ଆହୁରି ଦୀର୍ଘକାଳ ସେବା ନିମନ୍ତେ ଇଚ୍ଛା କରିଛନ୍ତି ।"

**କଟକରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଘୋଷଣାକୁ ସ୍ୱାଗତ :** ଭାରତମନ୍ତ୍ରୀ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବାକୁ ଘୋଷଣା କରିଥିବାରୁ ସରକାରଙ୍କୁ ଧନ୍ୟବାଦ ଦେବା ନିମନ୍ତେ ଖ୍ରୀ: ୧୯୩୨ ଡିସେମ୍ବର ୨୮ ତାରିଖରେ କଟକ ଟାଉନ୍‌ହଲ୍‌ରେ ଏମାରମଠ ମହନ୍ତ ଶ୍ରୀ ଗଦାଧର ରାମାନୁଜ ଦାସଙ୍କ ସଭାପତିତ୍ୱରେ ଏକ ସାଧାରଣ ସଭା ହୋଇଥିଲା । ଶ୍ରୀ ବ୍ରଜସୁନ୍ଦର ଦାସ, ଦେବାନ ବାହାଦୂର ଶ୍ରୀକୃଷ୍ଣ ମହାପାତ୍ର, ଲାଲ ନଗେନ୍ଦ୍ର କୁମାର ରାୟ, ରାୟ ବାହାଦୂର ଲକ୍ଷ୍ମୀଧର ମହାନ୍ତି, ମଧୁପୁର ରାଜା ସାହେବ ପ୍ରଭୃତି ବକ୍ତୃତା ଦେଇ ଆନନ୍ଦ ପ୍ରକାଶ କରିଥିଲେ । ସଭାରେ ବ୍ରିଟିଶ୍ ସରକାରଙ୍କୁ ଧନ୍ୟବାଦ

ଅର୍ପଣଙ୍କର ପ୍ରସ୍ତାବ ଗୃହୀତ ହୋଇଥିଲା । କୁଳବୃଦ୍ଧ ମଧୁବାବୁ ଏ ଓଡ଼ିଆ ଆନ୍ଦୋଳନର ମୂଳ ବୋଲି ତାଙ୍କୁ ମଧ୍ୟ ଧନ୍ୟବାଦ ଦିଆଯାଇଥିଲା । ଖ୍ରୀ: ୧୮୯୭ ସାଲରେ ଓଡ଼ିଶା ଉପକୂଳରେ ଇଷ୍ଟ କୋଷ୍ଟ ରେଲବାଇ ହେଲବେଳେ ବର୍ତ୍ତମାନର ଭାରତମନ୍ତ୍ରୀ ସାର୍ ସାମୁଏଲ ହୋର୍ ମେନେଜିଂ ଡିରେକ୍ଟର ହୋଇ ଆସିଥିଲେ । ଏତେ ଦିନେ ତାଙ୍କଦ୍ୱାରା ଏ ଦାବୀ ଗୃହୀତ ହୋଇଥିବାରୁ ସମସ୍ତେ ଏ ସଭାରେ ତାଙ୍କୁ ମଧ୍ୟ ଧନ୍ୟବାଦ ଜଣାଇଥିଲେ ।

**"ତୁମେମାନେ ସମସ୍ତେ ଯୋଦ୍ଧା । ଲଢ଼େଇ କର, କାର୍ଯ୍ୟ ସଫଳ ହେବ" :** ଖ୍ରୀ: ୧୯୩୩ ଫେବୃଆରି ୧୨ ଓ ୧୩ ତାରିଖରେ କଟକରେ ଶ୍ରୀରାମଚନ୍ଦ୍ର ଭବନରେ ଶ୍ରୀ ଭୁବନାନନ୍ଦ ଦାସଙ୍କର ସଭାପତିତ୍ୱରେ "ନେତା ସମ୍ମିଳନୀ" ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶାର ସୀମା ସରହଦ ନେଇ ବହୁ ଆଲୋଚନା ହୋଇ କେତେଗୁଡ଼ିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ୧୨ ତାରିଖର ସଭା ଶେଷରେ ମଧୁବାବୁ କହିଥିଲେ—"ଓଡ଼ିଆ ଆନ୍ଦୋଳନର ମୁଁ କର୍ତ୍ତା । ଓଡ଼ିଆ ଜାତିର ଜାଗରଣ ମୁଁ ଆଣିଅଛି । ମୁଁ କର୍ଜନଙ୍କ ଅମଳରେ ଲଢ଼େଇ କରି ସବୁ ସୀମା ଆଣେଇଥିଲି; ମାତ୍ର କର୍ଜନ ଛୁଟିରେ ଯିବାରୁ ମାନ୍ଦ୍ରାଜର ଲାଟ ନୂଆ ଭାଇସ୍‌ରାୟ ହେଲେ । ସେ କର୍ଜନଙ୍କ ସୁପାରିସ୍‌କୁ ଗ୍ରହଣ ନ କରିବାରୁ ତାହା ହୋଇ ପାରିଲା ନାହିଁ । ଏତେ କାଳ ବିତିଗଲା । ଏବେ ସରକାରର ବିବେକଦ୍ୱାର ଟିକିଏ ଫିଟିଛି । ଏତିକବେଳେ ସେଠାରେ ଡାକ ମାଇଲେ ଫଳ ଲାଭ ହୋଇପାରେ । ତୁମ୍ଭେମାନେ ଏଠାରେ ଉପସ୍ଥିତ ଅଛ । ମୁଁ ତୁମ୍ଭମାନଙ୍କୁ ଯୋଦ୍ଧା ବୋଲି ଜ୍ଞାନ କରେ । ତୁମେ ଲଢ଼େଇ କର, କାର୍ଯ୍ୟ ସଫଳ ହେବ ।"

ନେତା ସମ୍ମିଳନୀରେ ୧୩ ତାରିଖ ଦିନ ମଧୁବାବୁ ଇଂରେଜୀରେ ଏକ ଚିନ୍ତୋଦ୍ଦୀପକ ବକ୍ତୃତା ଦେଇଥିଲେ । ସେ କହିଥିଲେ, "ମୋର ବହୁକାଳର ଆକାଙ୍କ୍ଷିତ କାମନା ପୂର୍ଣ୍ଣ ହୋଇଛି । ଏହା ଦେଖିବାନିମନ୍ତେ ମୁଁ ଏଠାରେ ଠିଆହୋଇଛି । ଧନରେ, ବଳରେ ଓ ବୁଦ୍ଧିରେ ମୋଠାରୁ ଅଧିକ ବଳବାନ୍ ଲୋକଙ୍କ ବିରୁଦ୍ଧରେ ମୋତେ ଠିଆ ହେବାକୁ ପଡ଼ିଛି । ଊର୍ଦ୍ଧ୍ୱରେ ଭଗବାନ ଓ ଅନ୍ତରରେ ହୃଦୟକୁ ସାକ୍ଷୀ ରଖି ଏକାକୀ ମୋତେ ଲଢ଼େଇ କରିବାକୁ ହୋଇଛି । ଦିନେ ମୋର ମନରେ ଏହି ଭାବ ଜାଗ୍ରତ ହେଲା, ମୁଁ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ଥିବାରୁ ଏ ଜାତିକୁ ଏକତ୍ର କରିବା ଭାବନା ଭଗବାନ ମୋ ହୃଦରେ ଜାଗ୍ରତ କରାଇଅଛନ୍ତି । ମୁଁ ଏ ସମ୍ବନ୍ଧରେ ଚିନ୍ତାକଲି ଏବଂ ଦେଖିପାରିଲି ଯେ ମୋ ଜାତିର ଇତିହାସ ମୋ ସପକ୍ଷରେ ଅଛି । ଯେ କୌଣସି ଜାତି ପକ୍ଷରେ ମୋ ଜାତିର ଏହି ଇତିହାସ ଗୌରବର ବିଷୟ ହେବ । ମୋ ଜାତିପାଇଁ ମୋତେ କିଛି କରିବାକୁ ପଡ଼ିବ; କିନ୍ତୁ ମୁଁ ସେତେବେଳେ ଏକାକୀ । ଏପରି କି, ଆମ ଓଡ଼ିଆ ରାଜାମାନଙ୍କ ଭିତରୁ କେହି କେହି ଓଡ଼ିଆ ବୋଲି ପରିଚୟ ଦେବାକୁ ଘୃଣା କରୁଥିଲେ ଏବଂ ଓଡ଼ିଆ ଛାତ୍ରମାନେ ନିଜକୁ ବଙ୍ଗାଳୀ

ବୋଲି ପରିଚୟ ଦେଉଥିଲେ । ଜଣେ ଖ୍ୟାତନାମା ରାଜା, ଯାହାଙ୍କ ନାମ ସହିତ ଏହି ହଲ୍‌ର ନାମ ଜଡ଼ିତ (ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ), ତାଙ୍କୁ ବଙ୍ଗଦେଶର ଲୋକେ ବଙ୍ଗାଳୀ ବୋଲି କହୁଥିଲେ । ମନେରଖନ୍ତୁ, ଧନେ ରାତି ୮ଟା ଠାରୁ ୧ଟା ପର୍ଯ୍ୟନ୍ତ ତାଙ୍କ ସହିତ ଦୀର୍ଘ କଥାବାର୍ତ୍ତା କରିଥିଲି । ମୁଁ କହିଲି, 'ମୁଁ ଆପଣଙ୍କୁ ଆଜି ଓଡ଼ିଆ କରିବା ପାଇଁ ବଦ୍ଧ-ପରିକର ।' ଏହାର କେତେ କାଳ ପରେ ସେ ଉତ୍କଳ ସମ୍ମିଳନୀର ପ୍ରଥମ ବୈଠକରେ ସଭାପତିତ୍ୱ କରିଥିଲେ । ଓଡ଼ିଶା ଗଡ଼ଜାତ ସମୂହର ସୁପରିଂଟେଣ୍ଡେଣ୍ଟ (ଓଡ଼ିଶା ଡିଭିଜନ୍‌ର କମିଶନର) ଓଡ଼ିଆମାନଙ୍କୁ ଏକତ୍ର କରିବା ଲକ୍ଷ୍ୟରେ ଗଠିତ ଉତ୍କଳ ସମ୍ମିଳନୀରେ (୧ମ ସମ୍ମିଳନୀରେ) ଯୋଗ ଦେବାକୁ ଗଡ଼ଜାତ ରାଜା, ମହାରାଜା ଓ ସରକାରୀ କର୍ମଚାରୀମାନଙ୍କୁ ମନାକରି ଆଦେଶ ଜାରି କରିଥିଲେ । ସେ କହିଥିଲେ, 'ମି. ଦାସଙ୍କ ସମ୍ମିଳନୀରେ କେହି ଯୋଗ ଦିଅନାହିଁ।' ମୁଁ ବଡ଼ଲାଟ ଲର୍ଡ କର୍ଜନଙ୍କଠାକୁ ଏକ ପତ୍ର ଲେଖି ଜଣାଇଥିଲି, 'ଆପଣ ଏହି ଚିଠିଟି ପାଠକରିବା ସମ୍ଭାବନା ନାହିଁ । ହୁଏତ, ଆପଣଙ୍କ କୋତାତଳେ ଏ ସ୍ଥାନ ପାଇପାରେ । ଯେ ଏ ପତ୍ର ପାଠକରୁ, ମୋର ଓଡ଼ିଆ ଜାତି ପ୍ରତି କର୍ତ୍ତବ୍ୟ ରହିଛି ଏବଂ ଏହି ଜାତିର ହୃଦୟର ବେଦନା ଆପଣଙ୍କୁ ଜଣାଇବାକୁ ଇଚ୍ଛା କରୁଛି ।' କର୍ଜନଙ୍କ ପ୍ରାଇଭେଟ ସେକ୍ରେଟାରୀଙ୍କଠାରୁ ଉତ୍ତର ପାଇଲି । ସେ ଲେଖିଥିଲେ ଯେ, 'ଆପଣ ଜଣେ ଶକ୍ତିଶାଳୀ ଓ ସଂସ୍କୃତିସମ୍ପନ୍ନ ଭଦ୍ରବ୍ୟକ୍ତି । ଯଦି ଭାଇସ୍‌ରୟଙ୍କ ସହିତ ଆପଣ ସାକ୍ଷାତ୍ କରିବାକୁ ଯାଆନ୍ତି, ତାହାହେଲେ ଭାଇସ୍‌ରୟ ଆପଣଙ୍କ ସହିତ ଆଲୋଚନା କରିବେ ।' ଲର୍ଡ କର୍ଜନ ତୀକ୍ଷ୍ଣଦୃଷ୍ଟି ସମ୍ପନ୍ନ ଓ ସାହସୀ ବ୍ୟକ୍ତି ଥିଲେ । ସେ ଜଣେ ଏକଛତ୍ର ଶାସକରୂପେ କାର୍ଯ୍ୟ କରୁଥିଲେ ମଧ୍ୟ ତାଙ୍କର ହୃଦୟରେ ଦୟା ଥିଲା ।

"ହୁଏତ ସେ ଭାବିଥିବେ, ମୁଁ ଜଣେ ବୋକା; କିନ୍ତୁ ଦେଖାସାକ୍ଷାତ୍‌ରେ ମୁଁ ଜଣେ ସଚ୍ଚା ଦେଶସେବକ ଓ ସ୍ୱଜାତିପ୍ରେମୀ ଥିବା ସେ ବୁଝିପାରିଥିଲେ । ମୁଁ ମୋ ଓଡ଼ିଆ ଜାତିର ଦାବୀ ଉପସ୍ଥାପିତ କରିବାବେଳେ ମୋ ଆଖିରୁ ଧାରଧାର ଲୁହ ବୋହିଥିଲା । ମୁଁ କହିଥିଲି, 'ମୁଁ କଲିକତାରେ ପଢ଼ୁଥିଲାବେଳେ ବଙ୍ଗଦେଶରେ ଏକମାତ୍ର ଓଡ଼ିଆ ଛାତ୍ରଥିଲି । ସବୁ ପ୍ରକାର ତାଚ୍ଛଲ୍ୟ ମୋ ଉପରେ ବର୍ଷଣ ହେଉଥିଲା । ସେମାନେ ମୋତେ 'ମଧୁ ଉଡ଼େ, ମଧୁ ଉଡ଼େ' ବୋଲି ଡାକୁଥିଲେ ।' ଲର୍ଡ କର୍ଜନ୍ ତାଙ୍କ ମିଲିଟାରୀ ସେକ୍ରେଟେରୀଙ୍କୁ ସଙ୍ଗେ ସଙ୍ଗେ ଡକେଇ ଆଦେଶ ଦେଲେ, 'ଓଡ଼ିଶାର କମିଶନରଙ୍କୁ କହ, ମୁଁ ସେଠାକୁ ଯାଉଛି ।' କର୍ଜନ ଓଡ଼ିଶାକୁ ଆସିଥିଲେ । ପୁରୀରେ ଏକ ଦରବାର ଆୟୋଜନ ହୋଇଥିଲା; କିନ୍ତୁ ମୋ ଭଳି ଜଣେ ଲୋକକୁ ସେଠାକୁ ନିମନ୍ତ୍ରଣ କରାଯାଇନଥିଲା । କର୍ଜନ କମିଶନରଙ୍କୁ ପଚାରିଲେ, 'ମିଃ ଦାସ କାହାନ୍ତି ? ମୁଁ ତାଙ୍କୁ ଏଠାରେ ଦେଖିବାକୁ ଚାହେଁ ।'

"ଏହି ଆନ୍ଦୋଳନର ପୃଷ୍ଠଭୂମିକୁ ପର୍ଯ୍ୟାଲୋଚନା କଲେ କଣ ମୁଁ ଦେଖୁଛି ? ମୁଁ ଯେତେବେଳେ ଏ ଆନ୍ଦୋଳନ କଲି, ସେତେବେଳେ ଜାତି ବୋଲି କିଛି ନଥିଲା । ମୁଁ

କେବଳ କୁଚ୍ କୁଚ୍ ଅସ୍ଥି ଦେଖିଥିଲି; ଗୃହଆଡ଼େ କେବଳ ଅସ୍ଥି ଅସ୍ଥି ଅସ୍ଥି । ଏହି ଅସ୍ଥିକଙ୍କାଳ ଭିତରେ ପ୍ରାଣ ସଂଞ୍ଚାର କରି ହସ୍ତ ପଦ ଓ ପେଶି ଯୋଗାଇବା ନିମନ୍ତେ ମୋତେ ବହୁତ କାର୍ଯ୍ୟ କରିବାକୁ ପଡ଼ିଛି । ମୋ ଜାତିକୁ ଯୁଦ୍ଧ ସରଞ୍ଜାମରେ ସଜ୍ଜିତ କରିବାପାଇଁ ମୋତେ ଏକାକୀ କାର୍ଯ୍ୟ କରିବାକୁ ହୋଇଛି । ଏଥିରେ ମୋତେ ଭଗବାନଙ୍କ ବ୍ୟତୀତ ଆଉ କେହି ସାହାଯ୍ୟ କରିନାହାନ୍ତି ।

"ଓଡ଼ିଆ ଜାତି ପ୍ରତି ହୋଇଥିବା ଅନ୍ୟାୟର ପ୍ରତିକାର ପାଇଁ ଲର୍ଡ଼ କର୍ଜନ ଚିନ୍ତା କରୁଥିଲେ । ସେ କାଗଜପତ୍ର ମଗାଇ ଦେଖିଲେ ଏବଂ ଯେଉଁ ଯେଉଁ ଅଞ୍ଚଳ ମିଶିବା ଆବଶ୍ୟକ ତାହା ସ୍ଥିର କଲେ । ସେ ଯେଉଁ ସିଦ୍ଧାନ୍ତ ଗ୍ରହଣ କଲେ, ସେଥିରୁ ପାରଳାଖେମୁଣ୍ଡି ପ୍ରଶ୍ନ ଉଦ୍‌ଭବ ହୋଇନାହିଁ । ଏହା ପରେ କିଛି ସମୟ ପାଇଁ ମାନ୍ଦ୍ରାଜର ଲାଟ ଅସ୍ଥାୟୀ ବଡ଼ଲାଟ ହେଲେ । ମୁଁ ତାଙ୍କୁ କହିଲି, 'ଏ ମକଦ୍ଦମାରେ ଆପଣ ଜଣେ ପକ୍ଷ । ଏପରି ସ୍ଥଳେ ମୋ ମକଦ୍ଦମାରେ ରାୟ ଦେବା ଅଧିକାର ଇଂରେଜ ନ୍ୟାୟ ନୀତି ଅନୁସାରେ ଆପଣଙ୍କର ନାହିଁ । ମୁଁ ପଚାରୁଛି, ଏହା କଣ ନ୍ୟାୟ ? ତୁମେ ଏବେ କେଉଁଠି ଠିଆ ହୋଇଛ ? କର୍ଜନଙ୍କ ସମୟରେ ମୁଁ ଯେଉଁଠାରେ ଠିଆ ହୋଇଥିଲି, ଏବେ ମୁଁ ସେହିଠାରେ ଠିଆ ହୋଇଛି । ସେତେବେଳେ ଆମର ଯେଉଁ ଦାବୀ ଥିଲା, ଏବେ ମଧ୍ୟ ସେହି ଦାବୀ ରହିଛି ଏବଂ ସେହି ଆନ୍ଦୋଳନଠାରୁ ବର୍ତ୍ତମାନର ଆନ୍ଦୋଳନ ଆରମ୍ଭ କରୁଛୁ । ପାରଳାଖେମୁଣ୍ଡି ପ୍ରଶ୍ନ ଆଦୌ ଉଠୁନାହିଁ ।' ମୁଁ ସଂକ୍ଷେପରେ ଏହା କହିଲି । "ଜାତିର ଚେତନାକୁ ଉଦ୍‌ବୁଦ୍ଧ କରନ୍ତୁ । ମୋ କର୍ଣ୍ଣରେ ସେହି ପଦ ବାଜୁଛି—

"ଯାର ଜୟଭେରୀ ଗଙ୍ଗା ଗୋଦାବରୀ ଶୁଣିଥିଲେ ଚକିତେ, ଓଡ଼ିଶା ବୋଲିଣ ଘୃଣିତ ଏବେତ ବଦନେ । ମୋ ଜାତିର ପୀଠରେ ତୁମର ଜୀବନକୁ ବଳିଦାନ କର । ପୂର୍ବେ ଏ ଜାତି ଯେଉଁ ଗୌରବର ଅଧିକାରୀ ହୋଇଥିଲା ସେ ଗୌରବ ଲଭ କର ।"

ଏହାପରେ ସେ ଇଂରେଜ ରାଜତ୍ୱରେ ଓଡ଼ିଶାର ବଙ୍ଗୀୟମାନଙ୍କର 'ମଧ୍ୟବର୍ତ୍ତୀ-କାଳୀନ ଶାସକ ଜାତି' ରୂପେ ଆବିର୍ଭାବର କଥା ବର୍ଣ୍ଣନା କରି କହିଥିଲେ, "ସେତେ-ବେଳେ ବଙ୍ଗାଳୀମାନେ ଇଂରେଜମାନଙ୍କ ସହିତ ସହଯୋଗ କରି ଓଡ଼ିଆଙ୍କୁ ଦବାଇ ରଖିଥିଲେ । ମୁଁ ଏହି ଅବସ୍ଥାର ପରିବର୍ତ୍ତନ ପାଇଁ ଚେଷ୍ଟା କରିଥିଲି । ଏହାର ପରିବର୍ତ୍ତନ ସମ୍ଭବ ନୁହେଁ । ପ୍ରତ୍ୟେକ ଶାସନ ପରିବର୍ତ୍ତନ ଆମକୁ ଅସୁବିଧାରେ ପକାଇଛି । ଏ ପ୍ରସଙ୍ଗରେ ସେ କହିଥିଲେ, ବ୍ରିଟିଶ ଜାତିର ହୃଦୟ ଓ ସହାନୁଭୂତି ପାଇବାକୁ ହେଲେ ତାଙ୍କ ଦ୍ୱାରରେ ହାତରେ ଠୁକ୍ ଠୁକ୍ କର; କିନ୍ତୁ ଗୋଇଠା ମାର ନାହିଁ । ଏହା ନିଶ୍ଚୟ ଖୋଲି ଯିବ ।"

ସେ ଖ୍ରୀ: ୧୯୦୭ରେ ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ସମ୍ବନ୍ଧରେ ବିଲାତରେ ଯେଉଁସବୁ କାର୍ଯ୍ୟ କରିଥିଲେ, ତାହାର ଏକ ସଂକ୍ଷିପ୍ତ ସୂଚନା ଏଠାରେ ଦେଇଥିଲେ ।

ମଧୁବାବୁ ପୁଣି ଉପଦେଶ ଦେଇ କହୁଥିଲେ, "କୌଣସି ଜାତିର ଅକଲ୍ୟାଣ ଚିନ୍ତା କରନାହିଁ । ଭଗବାନ ଆପଣଙ୍କୁ ଆଶୀର୍ବାଦ କରିବେ । ଯଦି ତୁମେ ଜାତିର ନେତା ହେବାକୁ ଚାହଁ, ତାହାହେଲେ ତୁମେ ମୁଖିଆ ହେବାକୁ ଚେଷ୍ଟା କରନାହିଁ । ଯୁଦ୍ଧ ଚାଲିଲାବେଳେ ଓ କମାଣ ଗର୍ଜୁଥିଲାବେଳେ ସେନାପତି ବହୁ ଦୂରରେ ଥାଏ । ଏ ଗଛଟିକୁ ଦେଖ, ଏହାର ଚେରଗୁଡ଼ିକ ମାଟି ଭିତରେ ଲୁଚି ରହିଛି । ମନୁଷ୍ୟର ହୃତ୍‌ପିଣ୍ଡକୁ ଦେଖ । ଏହା ଜୀବନ-ଦାୟକ; ଏହି ହେତୁ ଏ ଲୁକ୍‌କାୟିତ ରହିଛି । ନହେଲେ ନାକ ଅଗରେ ଏ ରହିଥାଆନ୍ତା । ଗୋଟିଏ ଓ୍ୱାଚକୁ ଦେଖ । ସମ୍ମୁଖ ଭାଗଟି (ମାନପତ୍ରଟି) ଉପରେ ଅଛି, କିନ୍ତୁ ଲିଭର୍‌ଟି ଭିତରେ (ପଛରେ) ଅଛି । ଯୁଦ୍ଧ ଚଳାଇଯାଅ ।"

ଜନସଂଖ୍ୟା ସମ୍ପର୍କରେ ସେ କହିଲେ, "ଜନସଂଖ୍ୟା ସମସ୍ୟା ବର୍ତ୍ତମାନ ଉଠୁଛି । କିନ୍ତୁ ପ୍ରକୃତ ପ୍ରଶ୍ନ ହେଉଛି, ଅନ୍ୟ ଜାତିକୁ ଶାସନ କରିବାପାଇଁ କେଉଁ ଜାତି ବେଶି ଶକ୍ତି ଦେଖାଇଅଛି ? ଅନ୍ୟ ଜାତିମାନଙ୍କ ଅପେକ୍ଷା କେଉଁ ଜାତିର ବେଶି ଜୀବନୀଶକ୍ତି ଅଛି ? ପଡ଼ୋଶୀ ଜାତିମାନେ ଆମର ଆତ୍ମାକୁ ଲୋପ କରିଦେବା ପାଇଁ ଚେଷ୍ଟା କରିଥିଲେ; କିନ୍ତୁ ସେମାନେ ଜୟଯୁକ୍ତ ହୋଇଛନ୍ତି କି ? ତୁମକୁ କେହି ମାରିପାରିବେ ନାହିଁ । ଓଡ଼ିଆ ଜାତି ଭିତରେ ଯେଉଁ ଜୀବନୀଶକ୍ତି ଅଛି, ତାକୁ କେହି ଲିଭାଇ ପାରିବେ ନାହିଁ । ଗୋଟିଏ ଜାତିର ଅନ୍ୟ ଜାତି ଉପରେ ପ୍ରାଧାନ୍ୟ କରିବାର ଶକ୍ତି ଅଛି କି ନାହିଁ, ତାହା ବିଜିତ ଜାତି ଉପରେ ତାହାର ପ୍ରଭାବରୁ ଜଣାପଡ଼ିବ । ବଙ୍ଗାଳୀମାନଙ୍କୁ ଦେଖ । ସେମାନେ ଆମ୍ଭମାନଙ୍କୁ ଦବେଇ ରଖିବାପାଇଁ ଚେଷ୍ଟା କରିଛନ୍ତି । କିନ୍ତୁ, ତୁମେ ଜାଣ ଯେ ଜଣେ ବଙ୍ଗୀୟ ମହିଳା ଜଣେ ଓଡ଼ିଆଙ୍କ ଘରେ ରହି ଭାରତର ପ୍ରଥମ ମହିଳା ଓକିଲ ହୋଇଥିଲେ (ମଧୁବାବୁ ଏଠାରେ ତାଙ୍କ ଘରେ ରହୁଥିବା ଓ ତାଙ୍କ ପାଳିତା କନ୍ୟା ଶୈଳବାଳାଙ୍କ ଭଉଣୀ କୁମାରୀ ସୁଧାଂଶୁବାଳା ହାଜରାଙ୍କ କଥାହିଁ ମନରେ । ଆଣିଛନ୍ତି ଭାରତ ଦେଶ ଭିତରେ ସର୍ବତ୍ର ଓଡ଼ିଆ ଧର୍ମମତକୁ ଲୋକେ ଗ୍ରହଣ କରିଛନ୍ତି । ଜଗନ୍ନାଥ ମନ୍ଦିର ପ୍ରତି କେଉଁ ଜାତିର ଦୃଷ୍ଟି ନପଡ଼ୁଛି ? ଓଡ଼ିଆ ଭାଷାର ଜୀବନୀ ଶକ୍ତିକୁ ଦେଖ । ଓଡ଼ିଆ ଚୈତନ୍ୟ ଦେବଙ୍କୁ ବଙ୍ଗାଳୀମାନେ ବହୁ ପ୍ରଶଂସା (ମାନ୍ୟ) କରୁଛନ୍ତି ।

"ତୁମ୍ଭେମାନେ ବେଶି ଅନୁଶୀଳନ କରୁଛ । ବର୍ତ୍ତମାନ ମୋର ବୃଦ୍ଧ ବୟସ । ମୋର ଜୀବନର କେତେକ ଦିଗର ବର୍ଣ୍ଣନା ଦେଲି । ତୁମଠାରେ କେବେ ବ୍ୟକ୍ତିଗତ ଭାବ ବା ପାର୍ଥକ୍ୟର ବିକାଶ ନ ହେଉ । ଆକାଶରୁ ଯେଉଁ ବର୍ଷାର ଜଳଧାରା ପଡ଼ୁଛି, ତାହା ନଦୀର ଧାରରେ ମିଶୁଛି । ନଦୀ ସମୁଦ୍ର ଅଭିମୁଖରେ ପାଖ ବାଟରେ ଦୌଡ଼ୁଛି ଏବଂ ବାଟରେ ଭୂମି, ପଶୁ ଓ ମନୁଷ୍ୟଙ୍କୁ ସାହାଯ୍ୟ କରୁଛି । ଦେଖ, ଏହି ଜାତି ଅନ୍ୟ ଜାତିମାନଙ୍କର କେତେ ଉପକାର କରୁଛି । ସମୁଦ୍ର କହୁଛି, 'ତୁମର ବର୍ଣ୍ଣର ଗର୍ବକୁ ଫୋପାଡ଼ିଦିଅ' ।"

ଏହା ପରେ ସେ ଉଦ୍‌ବୋଧନ ଦେଇ କହିଲେ, "ତୁମେମାନେ ଯୁବକ । ମୁଁ, ବୋଧହୁଏ, ଓଡ଼ିଶା ଭିତରେ ବଞ୍ଚିଥିବା ସର୍ବାପେକ୍ଷା ବୃଦ୍ଧଙ୍କ ଭିତରୁ ଜଣେ । ମୋ କଥା ଶୁଣ । ଆମେ ଶାନ୍ତିପ୍ରିୟ ଲୋକ ବୋଲି ଭାରତର ଶାସକମାନେ ଆମ ପ୍ରତି କଟାକ୍ଷ କରନ୍ତି । ଭଗବାନଙ୍କଠାରେ ବିଶ୍ୱାସ ରଖି ସତ୍ୟ ପଥରେ, ଏକନିଷ୍ଠ ଭାବରେ ଜାତୀୟ କାର୍ଯ୍ୟରେ ଲାଗିପଡ଼ । ପଡ଼ୋଶୀ ଜାତିଙ୍କ ଚିତ୍ତକୁ ତୁମେ ନିଶ୍ଚୟ ଆକର୍ଷଣ କରିପାରିବ । ଅନ୍ୟକୁ ସାହାଯ୍ୟ କରିବାପାଇଁ ସର୍ବଦା ପ୍ରସ୍ତୁତ ରହ । ଶେଷ ସମୟରେ ଭଗବାନଙ୍କ ଦ୍ୱାରରେ ତୁମ କାର୍ଯ୍ୟର ମୂଲ୍ୟାୟନ ହେବ । ତୁମେ ଯଦି ଭଲ କରିଥିବ, ତେବେ ତୁମ ଆଗକୁ ଭଗବାନ ଆସି କହିବେ, ଆସ ମୋର ପ୍ରିୟ ଶିଷ୍ୟ, ତୁମକୁ ମୁଁ ଜୀବନର ମୁକୁଟ ଦେବି ।" ବାଇବେଲର ଏ ଉକ୍ତିକୁ ଉଦ୍ଧାର କରି ସେ ବକ୍ତବ୍ୟ ଶେଷ କରିଥିଲେ । ବିରାଟ ଜନତା ନିଃଶବ୍ଦରେ ଏ ଉପଦେଶଗୁଡ଼ିକ ଶୁଣିଥିଲେ ।

**ଓଡ଼ିଶା ଶାସନ କମିଟି (ହବାକ୍ କମିଟି)** : ଲଣ୍ଡନରେ ପ୍ରଥମ ଗୋଲଟେବୁଲ୍ ବୈଠକ ପରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରୂପେ ଗଠିତ ହେଉଥିବା ଜଣାପଡ଼ିଥିଲା । ସରକାରୀ 'ଶ୍ୱେତପତ୍ର' ( White Paper ) ରେ ଖ୍ରୀ: ୧୯୩୩ ମାର୍ଚ୍ଚ ୧୭ ତାରିଖ ଦିନ ଏହି ସ୍ୱତନ୍ତ୍ର ପ୍ରଦେଶ କଥା ଘୋଷିତ ହୋଇଥିଲା; କିନ୍ତୁ ଏହାର ସୀମା ସରହଦର ବିବରଣ ପ୍ରଦତ୍ତ ହୋଇ ନଥିଲା । ଏଥିରେ କୁହାଯାଇଥିଲା ଯେ, ସୀମା ପରେ ନିର୍ଣ୍ଣୀତ ହେବ । ପାର୍ଲିଆମେଣ୍ଟର ଜଏଣ୍ଟ ସିଲେକ୍ଟ କମିଟିରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶର ସୀମା ସମ୍ବନ୍ଧରେ ଆଲୋଚନା ହୋଇଥିଲା । ସିଲେକ୍ଟ କମିଟିର ଅଧିବେଶନ ଚାଲିଥିବାବେଳେ ଭାରତ ସଚିବ ସାର ସାମୁଏଲ୍ ହୋର୍ (Sir Samuel Hoare) କମିଟିକୁ ଜଣାଇଲେ ଯେ ଓଡ଼ିଶା ପ୍ରଦେଶର ସୀମା ଭିତରେ ପାରଳାଖେମୁଣ୍ଡି ଜମିଦାରୀ ଓ ଜୟପୁର ମିଶାଇବା ସମ୍ପର୍କରେ ବିଚାର ଚାଲିଛି । ପାରଳାଖେମୁଣ୍ଡିକୁ ଭାଗକରିବା ପ୍ରସ୍ତାବ ମଧ୍ୟ ବିଚାର ଚାଲିଛି । ଭାରତ ସଚିବଙ୍କ ସୁପାରିସ୍‌କୁ ଜଏଣ୍ଟ ସିଲେକ୍ଟ କମିଟି ଗ୍ରହଣ କରିନେଇଥିଲେ । (ଜଏଣ୍ଟ ସିଲେକ୍ଟ କମିଟି ରିପୋର୍ଟ, ଭାଗ ୧, ଅଧ୍ୟାୟ ୧ ଓ ଭାଗ ୨, ପୃ: ୩୬୯) । କମିଟିଙ୍କ ବୈଠକବେଳେ ଓଡ଼ିଶାର ସ୍ୱାର୍ଥରକ୍ଷା ହେଉଛି କି ନାହିଁ ତାହା ଦେଖିବାପାଇଁ ପାରଳାଖେମୁଣ୍ଡିର ରାଜା, ଖଲିକୋଟ ରାଜା, ଶ୍ରୀ ଭୁବନାନନ୍ଦ ଦାସ ଓ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଲଣ୍ଡନରେ ବରାବର ଉପସ୍ଥିତ ରହିଥିଲେ ।

ଜଏଣ୍ଟ ସିଲେକ୍ଟ କମିଟିଙ୍କ ବିଚାର ଚାଲିଥିଲାବେଳେ ଖ୍ରୀ: ୧୯୩୩ ଜୁନ୍‌ରେ ଭାରତ ସରକାର ଓଡ଼ିଶା ଶାସନ କମିଟି (Orissa Administrative Committee) ନିଯୁକ୍ତ କରିଥିଲେ । ସାର୍ ଜନ୍ ହବାକ୍ ( Sir John Hubback ) ଏହି କମିଟିର ସଭାପତି ହୋଇଥିଲେ । ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ଓଡ଼ିଶା ସଭ୍ୟମାନେ ଏଥିର ସଭ୍ୟ ରହିଲେ । ଏମାନଙ୍କ ବ୍ୟତୀତ ମଧୁବାବୁ ଓ ଅନ୍ୟାନ୍ୟ କେତେ ଜଣ ମଧ୍ୟ ସଭ୍ୟ

ମନୋନୀତ ହୋଇଥିଲେ । ସେତେବେଳକୁ ମଧୁବାବୁଙ୍କ ବୟସ ୮୫ । ସୀମା ନିର୍ଦ୍ଧାରଣ ବିଷୟରେ ବିଚାର ଚାଲିଥିଲାବେଳେ ମଧୁବାବୁ କମିଟିରେ ନିଜେ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସଭ୍ୟମାନଙ୍କୁ ପରାମର୍ଶ ମଧ୍ୟ ଦେଉଥିଲେ ।

ଖ୍ରୀ: ୧୯୩୩ ଅଗଷ୍ଟଠାରୁ ଅକ୍ଟୋବର ପର୍ଯ୍ୟନ୍ତ ମଧୁବାବୁ ଅସୁସ୍ଥତାବଶତଃ କମିଟିର କାର୍ଯ୍ୟରେ ଯୋଗଦେଇ ପାରି ନଥିଲେ । ଅକ୍ଟୋବର ମାସରେ କମିଟିର ରିପୋର୍ଟ ସ୍ୱାକ୍ଷରିତ ହୋଇଥିଲା । ମଧୁବାବୁ ଶେଷ ପର୍ଯ୍ୟାୟରେ ଆଲୋଚନାରେ ଯୋଗ ଦେଇଥିଲେ ଓ ରିପୋର୍ଟରେ ସ୍ୱାକ୍ଷର କରିଥିଲେ ।

**ସ୍ୱାସ୍ଥ୍ୟର ଅବନତି**—ଖ୍ରୀ: ୧୯୩୩ ଜୁନ୍ ମାସ ପ୍ରଥମ ସପ୍ତାହରେ ମଧୁବାବୁଙ୍କ ଶରୀର ସାମାନ୍ୟ ଖରାପ ହେବାରୁ ସେ ଚିକିତ୍ସାପାଇଁ କଲିକତା ଯାଇଥିଲେ । ପ୍ରସ୍ରା କରିବାବେଳେ ତାଙ୍କୁ କଷ୍ଟ ହେଉଥିଲା । ସେ ରଶ୍ମି ଚିକିତ୍ସା ସାହାଯ୍ୟରେ ଧୀରେ ଧୀରେ ଆରୋଗ୍ୟଲାଭ କରିଥିଲେ । ଏହାପରେ ତାଙ୍କର ସ୍ୱାସ୍ଥ୍ୟ କ୍ରମେ ଖରାପ ହେବାକୁ ଲାଗିଲା । ତାଙ୍କଠାରେ 'ବାର୍ଦ୍ଧକ୍ୟ ରୋଗ'ର ଲକ୍ଷଣ ଦେଖାଦେଇଥିଲା । ସେ ଆଉ ବେଶି ବୁଲାଚାଲା କରୁନଥିଲେ । ଖ୍ରୀ: ୧୯୩୪ ବର୍ଷ ଆରମ୍ଭରୁ ତାଙ୍କ ସ୍ୱାସ୍ଥ୍ୟର କୌଣସି ଉନ୍ନତି ଦେଖାଯାଇ ନଥିଲା, ବରଂ ଅବନତି ଦିଗରେ ଗତି କରୁଥିଲା ।

ମଧୁସୂଦନ ବାଲ୍ୟକାଳରୁ ରୁଗ୍ଣ ଥିଲେ । ପେଟରେ କର୍କଟରୋଗ (Abdominal Ulcer) ଯୋଗୁଁ ସେ ସମଗ୍ର ଜୀବନ କଷ୍ଟ ଭୋଗ କରୁଥିଲେ । ଏହି ସକାଶେ ସେ ଗୋଟିଏ ବଡ଼ ଗରମପାଣି ବୋତଲ କୋଟ୍‌ପକେଟ ଭିତରେ ସବୁବେଳେ ଧରି ରଖୁଥିଲେ । ଏହାଦ୍ୱାରା ପେଟ ଯନ୍ତ୍ରଣା ଟିକେ ହ୍ରାସ ପାଉଥିଲା । ଏହି ରୋଗ ଯୋଗୁଁ ସେ ଅଳ୍ପ ବୟସରୁ ଅଳ୍ପାହାରୀ ହୋଇପଡ଼ିଥିଲେ ।

ଦିନ ଭିତରେ ସେ ଏକ ଛଟାଙ୍କି (୫ ତୋଳା) ଓଜନର ଭାତ, ସିଝା ବାଇଗଣ ଫଡ଼ାଏ, ପାଣିମିଶା ଅଧ କପ୍ ଦୁଧ ଏତିକି ମାତ୍ର ଖାଉଥିଲେ । ଏହି କାରଣରୁ ବହୁ କାଳରୁ ତାଙ୍କର ଶରୀର ଅତି କ୍ଷୀଣ ହୋଇଯାଇଥିଲା । ଦେଖିଲେ ମନେହେଉଥିଲା ଯେପରି ହାଡ଼ ଚମର ଦେହଟାଏ । ସେ ଅନେକ ସମୟରେ ହିଡ଼ମିଚ୍ଛ ଶାଗ ଖାଉଥିଲେ । ତାଙ୍କର କେତେକ ବନ୍ଧୁ କହନ୍ତି, ମଧୁବାବୁଙ୍କ ଚିଡ଼ା ପ୍ରକୃତି ଏହି ଚିର ଭଗ୍ନସ୍ୱାସ୍ଥ୍ୟର କାରଣ । ଏହା ସତ୍ୟ ଏବଂ ସେ ମଧ୍ୟ ଏହା ସ୍ୱୀକାର କରୁଥିଲେ । କ୍ରୋଧରେ କାହାକୁ କିଛି କହିବା ପରେ ପରେ ତାଙ୍କର ମନରେ ଅନୁତାପ ଆସୁଥିଲା । ସେ ଏଥିପାଇଁ ଦୁଃଖ ପ୍ରକାଶ କରି କ୍ଷମାପ୍ରାର୍ଥନା କରୁଥିଲେ । ଚିରରୋଗୀ ମଧୁସୂଦନଙ୍କର କ୍ଷଣକୋପର ମଧ୍ୟ ଏହାହିଁ କାରଣ । ସେ ଭୋଜି ସଭାମାନଙ୍କରେ ଯୋଗ ଦେଉଥିଲେ ମଧ୍ୟ କିଛି ଖାଉନଥିଲେ ।

ତାଙ୍କର ଶରୀରଟି ଅଳ୍ପ ଥଣ୍ଡାଅଂଶିଆ ଥିବାରୁ ସେ ସବୁବେଳେ ପାଦ, ଗୋଡ଼, ଦେହ ପ୍ରଭୃତି ଘୋଡ଼ାଇ ରଖୁଥିଲେ ଏବଂ ଶରୀରକୁ ଉତ୍ତାପ ଦେବା ନିମନ୍ତେ ଗୋଟିଏ

କ୍ଷୁଦ୍ର ଇଲେକ୍‌ଟ୍ରିକ୍ ତାପଯନ୍ତ୍ର ପେଟ ଉପରେ ରଖି ତାହା ଉପରେ ଜାମା ପିନ୍ଧୁଥିଲେ । ମଧୁବାବୁ କୋଟ୍ ପେଣ୍ଟ୍ ପୋଷାକରେ ସବୁବେଳେ ରହୁଥିଲେ । ସେ ଖୁବ୍ ଅଳ୍ପ ଗାଧୋଉଥିଲେ ଏବଂ ବହୁଦିନ ଅଗାଧୁଆ ରହୁଥିଲେ; କେବଳ ପୋଛିପୋଛି ହେଉଥିଲେ । ବେଳେବେଳେ ସଭାସମିତିରେ ଯୋଗଦେବାକୁ ଗଲେ ଦେଶୀ ଲୁଗା ଓ ଦେଶୀ ଚଦର ବ୍ୟବହାର କରୁଥିଲେ । ଉତ୍କଳ ସମ୍ମିଳନୀର ଅଧିବେଶନମାନଙ୍କରେ ସେ 'ସମ୍ମିଳନୀ ପଗଡ଼ି' ବ୍ୟବହାର କରୁଥିଲେ । ଏହି ସମ୍ମିଳନୀ ଟୋପି ତାଙ୍କଦ୍ୱାରା ପ୍ରଥମେ ପ୍ରବର୍ତ୍ତିତ ହୋଇଥିଲା ଏବଂ ଓଡ଼ିଆ ଅଞ୍ଚଳରେ ସର୍ବତ୍ର ଏହା ବହୁକାଳ ପର୍ଯ୍ୟନ୍ତ 'ଜାତୀୟ ପଗଡ଼ି' ରୂପେ ବ୍ୟବହୃତ ହୋଇଥିଲା ।

ତାଙ୍କର କଟକ କ୍ୟାଣ୍ଟନ୍‌ମେଣ୍ଟ୍ ରୋଡ୍‌ସ୍ଥିତ ଅଟ୍ଟାଳିକା ଓ ପାଟନାସ୍ଥ (ବିହାର) ଅଟ୍ଟାଳିକା ୟୁରୋପୀୟ ରୀତିରେ ସଜ୍ଜିତ ଥିଲା । ମୂଲ୍ୟବାନ୍ ଟେବୁଲ, ଚୌକି, ଆଲମିରା, ଦର୍ପଣ, ପରଦା ଓ ଅନ୍ୟାନ୍ୟ ସାଜସଜ୍ଜା ପ୍ରଭୃତିରେ ତାଙ୍କର ଘର ସଜାହୋଇଥିଲା । ସେ ୟୁରୋପୀୟ କାଏଦାରେ ଚଳୁଥିଲେ; କିନ୍ତୁ ତାଙ୍କର ନମସ୍କାର ଓ ଆଶୀର୍ବାଦ ପ୍ରଭୃତି ଭାରତୀୟ ରୀତିର ଥିଲା । ୟୁରୋପୀୟ ଓ ଉଚ୍ଚ ଭାରତୀୟ ହାକିମମାନଙ୍କ ସହିତ ସେ ୟୁରୋପୀୟ ରୀତିରେ ଅଭିବାଦନ କରୁଥିଲେ ଓ ଅଭିବାଦନ ଗ୍ରହଣ କରୁଥିଲେ ।

ସେ କଟକରେ ଓକିଲାତି ଆରମ୍ଭ କଲାବେଳେ କେବଳ ଘୋଡ଼ାଗାଡ଼ିର ପ୍ରଚଳନ ଥିଲା । ମଧୁବାବୁ ଏକାଧିକ ସୌଖିନ ଘୋଡ଼ାଗାଡ଼ି ରଖିଥିଲେ ଏବଂ ତାଙ୍କର ଘୋଡ଼ାଶାଳରେ ମୂଲ୍ୟବାନ ଘୋଡ଼ା ରହୁଥିଲେ । କଟକକୁ ଯେତେବେଳେ ଯେତେ ବଡ଼ ବଡ଼ ହାକିମହୁକୁମା ଓ ମହାରାଜା ଆସୁଥିଲେ, ପ୍ରାୟ ସମସ୍ତେ ମଧୁବାବୁଙ୍କ ଘୋଡ଼ାଗାଡ଼ି ବ୍ୟବହାର କରୁଥିଲେ ।

ମଧୁବାବୁ ହୁକାପ୍ରିୟ ଥିଲେ ଏବଂ ସବୁବେଳେ ହୁକା ଟାଣୁଥିଲେ । କଚେରୀରେ ମଧ୍ୟ ମିସିଲ୍‌କୁ ଯିବା ପର୍ଯ୍ୟନ୍ତ ସେ ହୁକା ଟାଣୁଥିଲେ । ହୁକା ସଜାଡ଼ି ତାଙ୍କ ହାତକୁ ବଢ଼ାଇବାପାଇଁ ଜଣେ ସ୍ୱତନ୍ତ୍ର ଚାକର ଥିଲା ।

ତାଙ୍କର ବହୁ ଚାକର ଓ ମାଳୀ ଥିଲେ । ସେ ଫୁଲରସିକ ଥିବାରୁ ତାଙ୍କର ହତା ଭିତରେ ବହୁପ୍ରକାର ଫୁଲ୍‌ଫଳ ଗଛ ଥିଲା । ହତାଭିତର ବଗିଚାର ସାଜସଜ୍ଜା ଓ ରକ୍ଷଣାବେକ୍ଷଣ ଓ ପରିଚ୍ଛନ୍ନତା ପ୍ରତି ସେ ବିଶେଷ ଦୃଷ୍ଟି ଦେଉଥିଲେ । ଦେଶୀୟ ଓ ବିଦେଶୀୟ ଫୁଲ, ଲତା, ଗଛ ପ୍ରଭୃତି ତାଙ୍କର ବଗିଚାର ଶୋଭାବର୍ଦ୍ଧନ କରୁଥିଲା । ପ୍ରତିଦିନ ମଧୁବାବୁ ବଗିଚାରେ କିଛି ସମୟ ଭ୍ରମଣକରି ତାହାର ତତ୍ତ୍ୱ ନେଉଥିଲେ । ପ୍ରତ୍ୟହ ସକାଳେ ସେ ବଗିଚାରେ କିଛି ସମୟ ବୁଲିଚାଲି ମଧ୍ୟ କରୁଥିଲେ ।

ଗତ ଶତାବ୍ଦୀରେ ଓ ଏ ଶତାବ୍ଦୀର କିଛିକାଳ ପର୍ଯ୍ୟନ୍ତ କଟକ ସହରର ପୂର୍ବାଞ୍ଚଳରେ ଅବସ୍ଥିତ ଚାଉଳିଆଗଞ୍ଜରେ ଘୋଡ଼ାଦୌଡ଼ ଖେଳ ହେଉଥିଲା । ମଧୁବାବୁ

ଘୋଡ଼ାଦୌଡ଼ ଖେଳ ( Horse race ) ଉପଯୋଗୀ କେତୋଟି ମୂଲ୍ୟବାନ ଘୋଡ଼ା ମଧ୍ୟ ରଖିଥିଲେ । ଏହି ଖେଳ ବନ୍ଦ ହୋଇଯିବା ପରେ ଘୋଡ଼ାଗାଡ଼ିଗୁଡ଼ିକ ବିକ୍ରୀ ହୋଇ-ଯାଇଥିଲା ।

ତାଙ୍କର କୁକୁର ରଖିବା ସୌଖିନ୍ ମଧ୍ୟ ଥିଲା । ସେ ଏକାଧିକ ଭଲ ଦେଶୀ ଓ ବିଦେଶୀ କୁକୁର ପୋଷିଥିଲେ ।

ବାର୍ଦ୍ଧକ୍ୟ ଅବସ୍ଥାରେ ସେ ସକାଳବେଳା କ୍ୟାଣ୍ଟୋନ୍‌ମେଣ୍ଟ୍ ରୋଡ୍‌ରେ କିଛି ସମୟ ଚାଲି ଚାଲି ପ୍ରାତଃଭ୍ରମଣ କରୁଥିଲେ । ବେଳେବେଳେ ମହାନଦୀ ଓ କାଠଯୋଡ଼ି କୂଳକୁ ମଧ୍ୟ ଯାଉଥିଲେ ।

ସେ ଖ୍ରୀଷ୍ଟିଆନ୍ ଥିଲେ ମଧ୍ୟ ନିୟମିତ ଭାବରେ ଗୀର୍ଜାକୁ ଯାଉନଥିଲେ । ଇଂରେଜୀ ବାଇବେଲ୍‌ର ବହୁ ଅଂଶ ତାଙ୍କର ମୁଖସ୍ଥ ଥିଲା । ସେ ସଭାସମିତି ଓ ଆଲାପ-ଆଲୋଚନାବେଳେ ପ୍ରସଙ୍ଗକ୍ରମେ ବାଇବେଲ୍‌ର ଉକ୍ତି ଉଦ୍ଧାରକରି ବକ୍ତବ୍ୟ ବିଷୟର ଗୁରୁତ୍ୱ ବୃଦ୍ଧି କରୁଥିଲେ ।

ବହୁ ଢଗଢମାଳି ତାଙ୍କର ମୁଖସ୍ଥ ଥିଲା । ପ୍ରାଚୀନ ଓଡ଼ିଆ କବିମାନଙ୍କର ଅତି ପରିଚିତ ଉକ୍ତି ଓ ପଦ୍ୟାଂଶ ସେ ଉଦ୍ଧାରକରି ଆଲାପକୁ ଜମାଇ ଦେଉଥିଲେ । ଓକିଲାତି ବ୍ୟବସାୟରେ ତାଙ୍କର ବହୁ ସମୟ ବ୍ୟୟ ହେଉଥିବାରୁ ସେ କାବ୍ୟକବିତା ବା ଅନ୍ୟାନ୍ୟ ବହି ପଢ଼ିବାପାଇଁ ଯଥେଷ୍ଟ ସମୟ ପାଉ ନ ଥିଲେ । ତେବେ ସାହିତ୍ୟ-ଚର୍ଚ୍ଚାର ସୁଯୋଗ ଘଟିଲେ, ସେ ସେହି ସୁଯୋଗର ସଦ୍‌ବ୍ୟବହାର କରୁଥିଲେ । କିଏ କପରି ଲେଖୁଛି, କି କି ବହି ପ୍ରକାଶ ପାଉଛି ପ୍ରଭୃତି ବିଷୟର ଖବର ସେ ରଖୁଥିଲେ । ବହୁ କବି ତାଙ୍କୁ ଉପହାର ସ୍ୱରୂପ ନିଜର ଲେଖା ଦେଉଥିଲେ ।

ସେ ଓକିଲାତି କାର୍ଯ୍ୟର କିଛି ସମୟ ନିର୍ଘଣ୍ଟ ରଖି ନଥିଲେ । ମହକିଲମାନେ ସକାଳୁ ତାଙ୍କ ଘରେ ଉପସ୍ଥିତ ଥାଆନ୍ତି । ମଧୁବାବୁ ବୈଠକଖାନାକୁ ଆସି ଜୁନିଅର୍‌ମାନଙ୍କ ସହ ହସଖୁସିଗପ କରନ୍ତି । ସେଥିରେ କିଛି ସମୟ ବିତିଯାଏ । ଯେଉଁ ମହକିଲର ମକଦ୍ଦମା ସେହି ଦିନ ଥାଏ, ସେ ବ୍ୟସ୍ତ ହୁଅନ୍ତି, କିନ୍ତୁ ମଧୁବାବୁଙ୍କୁ କିଛି କହିପାରନ୍ତି ନାହିଁ । ମଧୁବାବୁ ରାଗିବେ, ଏହି ଭୟରେ ସେମାନେ ତାଙ୍କ ନିକଟକୁ ଭରସିକରି ଯାଇପାରନ୍ତି ନାହିଁ । ମହକିଲଙ୍କ ଭିତରେ ଧନୀ ବଡ଼ଲୋକଙ୍କ ସଂଖ୍ୟାହିଁ ବେଶି, ଗରିବ ଲୋକଙ୍କ ସଂଖ୍ୟା ଅଳ୍ପ । ରାତିବେଳା ବୈଠକର ସମୟ ଠିକ୍ ନଥାଏ । ଦିନେ ଦିନେ ଗପ ବେଶି ହୋଇଗଲେ ମକଦ୍ଦମା କାମ ଆରମ୍ଭ ହେଉ ହେଉ ବହୁତ ରାତି ହୋଇଯାଏ । ମଧୁବାବୁଙ୍କ ହୁକା ତାଙ୍କୁ ଦମ୍ ଦେଉଥାଏ ।

ବେମାର ହେଲେ ସେ ସବୁ ଚିକିତ୍ସା ପଦ୍ଧତିର ଔଷଧ ବ୍ୟବହାର କରୁଥିଲେ; କିନ୍ତୁ ହୋମିଓପାଥିରେ ତାଙ୍କର ବେଶି ବିଶ୍ୱାସ ଥିଲା ।

ସେ ବେଶି ଲେଖାଲେଖି କରିପାରନ୍ତି ନାହିଁ । ସେ ଡାକନ୍ତି ଓ ଜୁନିଅର୍‌ମାନେ ଲେଖନ୍ତି । ତାଙ୍କ ହାତର ଇଂରେଜୀ ଅକ୍ଷର ଠିକ୍‌ଏ ଲମ୍ବା; ଭାଷା ଶୁଦ୍ଧ । କଥାବାର୍ତ୍ତା ଓ ବକ୍ତୃତାରେ ସେ ଇଂରେଜୀ ଓ ଓଡ଼ିଆ ଉଭୟ ଭାଷାରେ ଧୁରନ୍ଧର ଥିଲେ, ଲୋକଙ୍କୁ ହସାଇ ଓ କନ୍ଦାଇ ପାରୁଥିଲେ । ବକ୍ତୃତା ଦେଲାବେଳେ ମନରୁ ଗଢ଼ି ଦୁ'ଗୁଡ଼ିପଦ କବିତା ଉଦ୍‌ଗାର ଢ଼ମାଳ ବୋଲି ଜମେଇ ରଖୁଥିଲେ । ସେ ନିଜ ହାତରେ ଓଡ଼ିଆରେ ବେଶି ଲେଖୁ ନଥିଲେ । ସେ ଡାକୁଥିଲେ, ଅନ୍ୟମାନେ ଲେଖୁଥିଲେ । ତାଙ୍କର ଓଡ଼ିଆ ଲିପି କରଣୀ ଅକ୍ଷର ଢଙ୍ଗର ଥିଲା ।

ମଧୁବାବୁଙ୍କ ସମୟାନୁବର୍ତ୍ତିତା ସମ୍ବନ୍ଧରେ ଗୋଟିଏ ଗଳ୍ପ ଶୁଣାଯାଏ । ଗଡ଼ଜାତର ଜଣେ ବିଶିଷ୍ଟ ରାଜା ନିଜ କାର୍ଯ୍ୟରେ ମଧୁବାବୁଙ୍କ ପରାମର୍ଶ ଲୋଡ଼ିଥିଲେ । ଉଭୟଙ୍କ ଦେଖାସାକ୍ଷାତ୍ ମଧୁବାବୁଙ୍କ କୋଠାରେ ରାତି ଆଠଟାବେଳେ ନିର୍ଦ୍ଦିଷ୍ଟ ହୋଇଥିଲା । ଆଠଟା ଗଡ଼ିଯିବା ପରେ ରାଜା ମଧୁବାବୁଙ୍କ କୋଠାକୁ ଗଲେ; କିନ୍ତୁ ମଧୁବାବୁ ଦେଖା କରିବାକୁ ପ୍ରଥମେ ମନା କରିଦେଲେ । ରାଜା ଠିକ୍‌ଏ ବିଚଳିତ ହୋଇ ନିଜର ଦୋଷ ସ୍ୱୀକାର କରିଥିଲେ । ମଧୁବାବୁ ତାଙ୍କୁ କହିଥିଲେ, "ଏ କ୍ଷୁଦ୍ର ଘଡ଼ିଟି ଆପଣଙ୍କ ପାଇଁ ଅପେକ୍ଷା କଲା-ନାହିଁ ମୁଁ ବା କାହିଁକି ଅପେକ୍ଷା କରିବି ?" ଏହା କହିସାରିବା ପରେ ରାଜାଙ୍କୁ ସମୟାନୁ-ବର୍ତ୍ତିତା ପ୍ରଭୃତି ବିଷୟରେ କିଛି ଉପଦେଶ ଦେଲେ । ଶେଷରେ ସେ ରାଜାଙ୍କୁ କହିଲେ, "ଆଜି ଆଉ ଆଲୋଚନା କରିବି ନାହିଁ । ଆପଣ କାଲି ଠିକ୍ ସମୟରେ ଆସିବେ ।"

ଯେବେ ସଭାସମିତିକୁ ମଧୁବାବୁ ଡେରିରେ ଆସନ୍ତି, ସେତେବେଳେ ସେ ଚୁପ୍-ଚାପ୍ ଆସି ଶେଷ ଧାଡ଼ିରେ ବସନ୍ତି । ମଧୁବାବୁ ପଛଧାଡ଼ିରେ ବସିଥିବା ଦେଖି ଅନ୍ୟମାନେ ବ୍ୟସ୍ତ ହୁଅନ୍ତି, ଉଦ୍‌ଯୋକ୍ତାମାନେ ତାଙ୍କପାଖକୁ ଆସି ତାଙ୍କୁ ସଭାମଣ୍ଡପକୁ ନେଇଯାଆନ୍ତି । ସେ କୌତୁକରେ କହନ୍ତି, ଓଡ଼ିଶା ତ ସବୁବେଳେ ପଛୁଆ, ମୁଁ ବା କାହିଁକି ଆଗରେ ବସିବି ?

## ୩୬. ମହାପ୍ରୟାଣ

ମଧୁବାବୁଙ୍କ ଶେଷଦିନମାନଙ୍କର କେତେକ ଅଦ୍‌ଭୁତ ଘଟଣା ତାଙ୍କର ବନ୍ଧୁମାନେ ଲିପିବଦ୍ଧ କରିଯାଇଛନ୍ତି । କୁମାରୀ ସୁଧାଂଶୁବାଳା ହାଜରା ( ଶୈଳବାଳାଙ୍କ ସହୋଦରା ) ଲେଖିଛନ୍ତି ଯେ ଖ୍ରୀ: ୧୯୩୪ ଜାନୁଆରୀ ୩୧ ତାରିଖ ରାତିରେ ମଧୁବାବୁଙ୍କ ଅବସ୍ଥା ବେଶି ଖରାପ ଆଡ଼କୁ ଗତିକଲା । ସେ ଶଯ୍ୟାଶାୟୀ ଥିଲେ । ପାଖରେ ଯେଉଁମାନେ ଥିଲେ ସେମାନେ ଚକିତ ହୋଇପଡ଼ିଲେ । ସେହି ଅବସ୍ଥାରେ ମଧୁବାବୁ "I heard the voice of Jesus

say" ପ୍ରାର୍ଥନାଟି ଗାନକଲେ । ଗାନବେଳେ ତାଙ୍କର ଗଳାଟି ସ୍ପଷ୍ଟଥିଲା । ସେ ଉଚ୍ଚପାଟିରେ ଗାନ କରିଥିଲେ । ଏ ଦୃଶ୍ୟ ଦେଖି ସମସ୍ତେ ଅବାକ୍ ହୋଇଯାଇଥିଲେ । ଅହା ଅସ୍ୱାଭାବିକ ଦୀପଶିଖାର ଜ୍ୱଳନ ବୋଲି ସମସ୍ତେ ଭାବିଲେ । ଅବଶ୍ୟ ଏହା ତାଙ୍କର ଈଶ୍ୱରବିଶ୍ୱାସର ଫଳ । ଭଗବାନ ତାଙ୍କୁ ନୂତନ ବଳ ଦେଇ ତାଙ୍କର ପ୍ରାର୍ଥନା ଶୁଣିଲେ ।

ସେହି ଦିନ ରାତିରେ ମଧୁସୂଦନ ଏକ ସ୍ୱପ୍ନ ଦେଖିଲେ । ଶୁକ୍ଳାମ୍ବର ପରିଧାନ କରିଥିବା ଜଣେ ବୃଦ୍ଧ ତାଙ୍କ ଶଯ୍ୟାର ଚାରିପଟେ ବୁଲୁଛନ୍ତି । ମଧୁବାବୁ ଏହି ସ୍ୱପ୍ନ ବିଷୟ କୁମାରୀ ହାଜରାଙ୍କୁ ସେହି ରାତିରେ କହିଥିଲେ । ଏହା ଶୁଣିବା ପରେ ଆତ୍ମୀୟମାନଙ୍କ ମନରେ ଶଙ୍କା ଜାତ ହେଲା । ସେମାନେ ଭାବିଲେ, ବୋଧହୁଏ ଶେଷ ସମୟ ନିକଟ ହୋଇ ଆସିଲା । ସୁଧାଂଶୁବାଳା ମଧୁବାବୁଙ୍କୁ କହିଲେ, "ତୁମେ କଣ ସତେ ଆମକୁ ଛାଡ଼ି ଚାଲିଯିବ ?" ମଧୁବାବୁ କହିଲେ,"ଏହା ସ୍ୱର୍ଗୀୟ ପିତା (ଭଗବାନ)ଙ୍କ ନିର୍ଦ୍ଦେଶ ଉପରେ ନିର୍ଭର କରେ । ସେ ମୋତେ ଯାହା କରିବାକୁ ଆଦେଶ ଦେବେ, ତାହାହିଁ ହେବ । ଈଶ୍ୱରଙ୍କ ଇଚ୍ଛା ହିଁ କାର୍ଯ୍ୟକାରୀ ହେବ, ତାକୁ କେହି ଅଟକାଇ ପାରିବେ ନାହିଁ ।"

୩୧ ତାରିଖ ରାତିଠାରୁ ତାଙ୍କର ମୁଖମଣ୍ଡଳରେ ଏକ ଅସ୍ୱାଭାବିକ ଜ୍ୟୋତି ଖେଳୁଥିବାପରି ବୋଧ ହେଉଥିଲା । ଶେଷ ସମୟ ନିକଟ ହୋଇଆସିଲେ କୌଣସି କୌଣସି ଈଶ୍ୱରବିଶ୍ୱାସୀ ଜନସେବୀଙ୍କର ମୁଖମଣ୍ଡଳ ଏପରି ପ୍ରଭାମୟ ଦେଖାଯାଇଥାଏ । ମଧୁବାବୁଙ୍କର ଯେ ଶେଷ ସମୟ ନିକଟ ହୋଇ ଆସୁଛି, ଏହା ସମସ୍ତେ ଜାଣି ସାରିଥିଲେ । କିପରି ସେ କଷ୍ଟ ନ ପାଆନ୍ତୁ, ଏହାହିଁ ସମସ୍ତେ କାମନା କରୁଥିଲେ ।

ଫେବୃୟାରୀ ଆରମ୍ଭ ବେଳକୁ ତାଙ୍କର ଅବସ୍ଥା ଆହୁରି ଶୋଚନୀୟ ହୋଇପଡ଼ିଥିଲା । ସେ ବେଳେ ବେଳେ ଅସ୍ୱସ୍ତି ବୋଧ କରୁଥିବା ପରି ଜଣାଯାଉଥିଲା । ୩ ଓ ୪ ତାରିଖରେ ତାଙ୍କର ଅବସ୍ଥା ନିରାଶଜନକ ଥିବା ସମସ୍ତେ ଲକ୍ଷ୍ୟ କରିଥିଲେ ।

**"ପ୍ରାଣୀର ଭଲମନ୍ଦ ବାଣୀ, ମରଣକାଳେ ତାହା ଜାଣି" :** ଏହି ଶିରୋନାମାରେ 'ସମାଜ'ର ସମ୍ବାଦଦାତା ଏହି ଦୁଇଦିନର ଅବସ୍ଥା ଏହିପରି ଭାବରେ ବର୍ଣ୍ଣନା କରିଥିଲେ । "୩ ତାରିଖ ଦିନ ସକାଳୁ ମଧୁବାବୁଙ୍କ କୋଠରୀରେ ଅପୂର୍ବ ଦୃଶ୍ୟ ଦେଖିଲି । ଶ୍ରୀମତୀ ଶୈଳବାଳାଙ୍କୁ ପତ୍ନୀର ଖବର ନେବାରେ ଓ ମଧୁବାବୁଙ୍କ ପାଖର ଦୃଶ୍ୟ ଦେଖିବାରେ ମନେହେଲା—ସତେ ଯେପରି ସେ କହୁଛନ୍ତି, 'ଆଉ ବେଶି ବେଳ ନୁହେଁ ।' ସକାଳେ ଯେତେବେଳେ ମୁହଁ ଧୋଇବାର କଥା ପଡ଼ିଲା, ମଧୁବାବୁ ମନା କରିଦେଲେ । କହିଲେ, 'ନା, ଯେତେବେଳେ କଫିନ୍ (କବର ଦେଲାବେଳେ ଯେଉଁ କାଠ ବାକ୍ସରେ ଶବକୁ ରଖାଯାଏ) ଭିତରେ ନେଇ ପୂରାଇବ, ସେତେବେଳେ ମୁହଁ ଧୋଇଦେବ; ବର୍ତ୍ତମାନ ନୁହେଁ ।' ଏକଥା ଶୁଣିଲାବେଳକୁ ସମସ୍ତଙ୍କ ମନରେ ଗୋଟାଏ ବିଷାଦ ଭାବ ଆସିଗଲା ।

"'ଢ଼'ପତ୍ରରକୁ ଖବର ବାଜିବାରୁ ମଧୁବାବୁଙ୍କର ଅବସ୍ଥା ଟିକିଏ ଭଲ ଆଡ଼କୁ ଆସିଲା-ପରି ବାହାରକୁ ଜଣାଉଥିଲେ ସୁଦ୍ଧା କଫ ବରାବର ଭରପୂର ହୋଇ ରହିଥିଲା ।

"ଦଶହରା ହେଲା ମଧୁବାବୁଙ୍କର ସ୍ୱାସ୍ଥ୍ୟ କ୍ରମେ ଖରାପ ହେଉଥିଲା । ବିଛଣାରୁ ସେ ଉଠି ପାରୁ ନଥିଲେ । ରୋଗର ଅନ୍ୟ କୌଣସି ଲକ୍ଷଣ ନଥିଲା । କେବଳ ମୂତ୍ରାଶୟ ଭିତରେ ଗୋଟାଏ ମାଂସପେଶୀ ଅଧିକ ବଢ଼ିଯାଇଥିଲା । ତାଙ୍କର ହୋମିଓପାଥିକ୍ ଔଷଧରେ ବିଶ୍ୱାସ ଥିବାରୁ ସେ ହୋମିଓପାଥିକ୍ ଔଷଧ ବ୍ୟବହାର କରୁଥିଲେ । କର୍ଣ୍ଣେଲ୍ ପାଲିତ ତାଙ୍କର ପଥ୍ୟର ବ୍ୟବସ୍ଥା କରିଥିଲେ ।" (ସମାଜ ୭ । ୨ । ୧୯୩୪)

**ଶେଷ ବେଳର ଅବସ୍ଥା:** ୩ ତାରିଖ ରାତି ୮ଟା ବେଳେ ହାତ ଦୁଇଟା ପ୍ରଥମେ ଥଣ୍ଡା ହୋଇଗଲା । ୯ଟା ବେଳକୁ ମୁହଁରେ ଝାଳ ଦେଖାଗଲା । ହାତର ଥଣ୍ଡା କ୍ରମେ ବଢ଼ିବାକୁ ଲାଗିଲା । ୧୦ଟା ବେଳେ ଡାକ୍ତର ଆସି ଦେଖିଲେ ଯେ ନାଡ଼ୀ ଖରାପ ଅଛି । ସକାଳୁ ସେ ବରାବର କହୁଥାନ୍ତି—'ମୋର ମୁହଁ ଧୋଇବାର ଦରକାର ନାହିଁ, ମୋର ପେଟ ପରିଷ୍କାର କରାଅ ।"

"ରାତି ୧୨ଟା ପରେ ମଝିରେ ମଝିରେ ନିଜେ ମୁଣ୍ଡରେ ହାତ ବୁଲାଉ ଥାନ୍ତି । ୧୨ଟା ବେଳେ ନାକଠାରୁ ମୁହଁ ଏକାବେଳକେ ଥଣ୍ଡା ହୋଇଗଲା । ତା'ପରେ ଦେହରୁ ଝାଳ ବୋହିବାକୁ ଲାଗିଲା । ସେତେବେଳେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର ସଙ୍ଗୀତ ଗାଇ ତାଙ୍କୁ ଶୁଣାଇବାକୁ ସେ ଇଙ୍ଗିତ ଦେଲେ । ସଙ୍ଗୀତ ବୋଲାହେଲା । ସେ ବଡ଼ ଆଗ୍ରହରେ ତାହା ଶୁଣୁଥାନ୍ତି । ରାତି ଗୋଟାଏ ୧୫ ମିନିଟ୍‌ଠାରୁ ନିଃଶ୍ୱାସ ଜୋର୍‌ରେ ଚାଲିଲା । ରାତି ଗୋଟାଏ ୨୦ ମିନିଟରେ (୪ ତାରିଖରେ) ସବୁ ଶେଷ ।

"ସେତେବେଳେ ତାଙ୍କ ପାଖରେ ତାଙ୍କ ଘରର ଲୋକଙ୍କ ବ୍ୟତୀତ ଡାକ୍ତର ଜୟନ୍ତ ରାଓ, ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ଡାକ୍ତର ବିଭୂତିଭୂଷଣ ପଟ୍ଟନାୟକ, ବାବୁ ବ୍ରଜସୁନ୍ଦର ଦାସ, ଶ୍ରୀ ଏନ୍. କେ. ରାୟ, ଶ୍ରୀମତୀ ବସନ୍ତ କୁମାରୀ ଦେବୀ, ଶ୍ରୀମତୀ ରମା ଦେବୀ, ବାବୁ ବିଚିତ୍ରାନନ୍ଦ ଦାସ, ରାୟବାହାଦୂର ଲକ୍ଷ୍ମୀଧର ମହାନ୍ତି, ମି. ପି. ସି. ବୋଷ, ବାବୁ ଗୁଣନିଧି ମହାନ୍ତି ଓ ୬।୭ ଜଣ ଖ୍ରୀଷ୍ଟିଆନ୍ ଯୁବକ ପ୍ରଭୃତି ଉପସ୍ଥିତ ଥାନ୍ତି ।

"ମୃତ୍ୟୁ ପରେ ଚାରିଆଡ଼େ ଖବର ବାଜିଗଲା । ମଧୁବାବୁ ଶେଷ ମୁହୂର୍ତ୍ତରେ ଖ୍ରୀଷ୍ଟୀୟରୀତିରେ ତାଙ୍କର କବର ଦେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସେଥିପାଇଁ ଖ୍ରୀଷ୍ଟିଆନ୍ ଯୁବକ ଓ ତାଙ୍କ ସମ୍ପ୍ରଦାୟ ଭାଇମାନେ ପାହାନ୍ତିଆ ୩ଟା ବେଳେ ମଧୁବାବୁଙ୍କୁ ପରିଷ୍କାର ରୂପେ ସ୍ନାନ କରାଇଦେଲେ । ୧୯୦୩ରେ ମଧୁବାବୁ ନିଜେ ଯେଉଁ ତନ୍ତ ଲୁଗାବୁଣା ଶିଳ୍ପ ଆରମ୍ଭ କରାଇଥିଲେ, ସେହି ଦେଶୀ ତିଆରି ତନ୍ତବୁଣା କପଡାର ଖଣ୍ଡେ କୋଟ୍, ଖଣ୍ଡପଡ଼ାର ସ୍ୱଦେଶୀ ଚାଦର ଓ ଧୋତି, ଯାହା ପିନ୍ଧି ସେ ସାଧାରଣ ସଭାକୁ ଯାଆନ୍ତି , ତାକୁହିଁ ପିନ୍ଧାଇ ଦିଆଯାଇଥିଲା । ତା'ପରେ ତାଙ୍କୁ ଆଣି ତାଙ୍କର ବୈଠକଖାନା ଘରେ ପଲଙ୍କ ଉପରେ

ଶୁଆଇ ଦିଆଗଲା । ସକାଳେ ପ୍ରାୟ ଦୁଇହଜାର ସରକ ଲୋକ ଦେଖିବାକୁ ଆସିଥିଲେ । ହିନ୍ଦୁପରିବାରର ଭଉଣୀମାନେ ଆସି ଫୁଲ ଓ କର୍ପୂରମାଳ ସଜାଇ ଦେଇଥିଲେ । × ×"

"ଶ୍ରୀମତୀ ବସନ୍ତ କୁମାରୀ ଦେବୀ ମଧୁବାବୁଙ୍କ ଭାଇ ସ୍ୱର୍ଗୀୟ ଗୋପାଳବଲ୍ଲଭ ଦାସଙ୍କ ସହଧର୍ମିଣୀ ଏବଂ ରମା ଦେବୀ ଗୋପାଳବଲ୍ଲଭଙ୍କ କନ୍ୟା । ବସନ୍ତ କୁମାରୀଙ୍କର ବରାବର ଇଚ୍ଛାଥିଲା—ଆଜି ହିନ୍ଦୁରୀତିରେ ତାଙ୍କର ସତ୍କାର ହେଉ; କିନ୍ତୁ ମଧୁବାବୁଙ୍କର ଖ୍ରୀଷ୍ଟଧର୍ମରେ ବିଶ୍ୱାସ ଥିଲା । ସେହି ଭାବରେ ସବୁ ହେବ ବୋଲି ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ, ଶ୍ରୀ ଚନ୍ଦ୍ରାମଣି ଆଚାର୍ଯ୍ୟ ପ୍ରମୁଖ ବୁଝାଇ ଦେଇଥିଲେ । ତାଙ୍କ ଖ୍ରୀଷ୍ଟଧର୍ମ ରୀତି ଅନୁସାରେ ପ୍ରାର୍ଥନା ପରେ ତାଙ୍କର ମୃତଦେହକୁ ପଲଙ୍କ ଉପରେ ସଜାଇ, ତାଙ୍କର ମୁହଁଟିକୁ ମୁକ୍ତ ସୂର୍ଯ୍ୟାଲୋକ ପାଇଁ ଖୋଲିରଖି ବିରାଟ ପଟୁଆରରେ ନିଆଗଲା । ଏଭଳି ପଟୁଆର କଟକରେ କ୍ୱଚିତ ଦେଖାଯାଉଛି । ସରକାରୀ, ବେସରକାରୀ ଶିକ୍ଷକ, ସାଧାରଣ ଛଅ ହଜାର ଲୋକ "ଭୂମିକମ୍ପ ହେବ, ମେଦିନୀ ଫାଟିବ, ଉଠିବେ ସହସ୍ରଭୂଜା" ତାଙ୍କର ଏହି ଗୀତଟି ଗାଇ ଗାଇ ଚାଲିଥାଆନ୍ତି । ମଧୁବାବୁଙ୍କ ବୁକୁ ଉପରେ ନିମ୍ନଲିଖିତ ପଦ ଲେଖାହୋଇ ରହିଥାଏ—

"ଅମର ଜୀବନ ଆଣିଥିଲି ଯାର ସାଥେ,
ଦେଇ ଚାଲିଗଲି ଉତ୍କଳ ଜନନୀ ହାତେ ।"

ଏ କଥା କଫିନ୍ ଦେହରେ ମଧ୍ୟ ଲେଖାହୋଇ ରହିଛି ।

"୪।୨।୩୪ ତାରିଖ ଦିନ ଗୋଟାକ ବେଳେ ମଧୁବାବୁଙ୍କ ମୃତପିଣ୍ଡକୁ ପୁଷ୍ପମାଳଦ୍ୱାରା ସୁଶୋଭିତ କରି ବିଭିନ୍ନ ଗ୍ରୁପ୍ ମଧ୍ୟରେ ରଖି ଫଟୋ ନିଆଗଲା । ସେତେବେଳେ ପ୍ରାୟ ହଜାରେ ସରକ ଲୋକ ଜମା ହୋଇଥାଆନ୍ତି । ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ଉପସ୍ଥିତ ଜନତାକୁ ସମ୍ବୋଧନ କରି କହିଲେ—'ମଧୁବାବୁଙ୍କର ଖ୍ରୀଷ୍ଟଧର୍ମରେ ବିଶ୍ୱାସ ଥିଲା । ତେଣୁ ତାଙ୍କର ଶବ କଫିନ୍ ମଧ୍ୟରେ ବନ୍ଦ କରି ନେବାର କଥା; କିନ୍ତୁ ଆମ୍ଭେମାନେ ତାଙ୍କର ମୃତପିଣ୍ଡକୁ ଉନ୍ମୁକ୍ତ ଭାବରେ ପଟୁଆର କରିନେବାକୁ ବାହାରିଛୁ । ସମସ୍ତଙ୍କୁ ଅନୁରୋଧ, ତାଙ୍କର ବିଶ୍ୱାସକୁ ସମ୍ମାନ ଦେଖାଇବାପାଇଁ କେହି ଯେପରି ହରିନାମ କିମ୍ବା ରାମନାମ ଉଚ୍ଚାରଣ କରିବେ ନାହିଁ ।"

"ତାପରେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ, ବିଚିତ୍ରାନନ୍ଦ ଦାସ, ପ୍ରାଣକୃଷ୍ଣ ପରିଜା ପ୍ରମୁଖ କେତେକ ବିଶିଷ୍ଟ ଭଦ୍ରବ୍ୟକ୍ତି ଓ କେତେକ କଲେଜ ଛାତ୍ର ପ୍ରଥମେ ଶବକୁ କାନ୍ଧରେ ରଖି ପଟୁଆରରେ ବାହାରିଲେ । ଆଗରେ ସଂକୀର୍ତ୍ତନ ଦଳ ଜାତୀୟ ସଙ୍ଗୀତ ଗାଇ ଗାଇ ଚାଲିଥାଆନ୍ତି । ପ୍ରାୟ ୫।୬ ହଜାର ଲୋକଙ୍କର ବିରାଟ ଜନତା ଜାତି, ଧର୍ମ,ବର୍ଣ୍ଣ-ନିର୍ବିଶେଷରେ ନିସ୍ତବ୍ଧ ଭାବରେ ପଟୁଆରରେ ଯୋଗଦେଇଥିଲେ । ଭିନ୍ନ ଭିନ୍ନ ସ୍ଥାନରେ ପ୍ରାୟ ୮।୧୦

ଜାଗାରେ ଫଟୋ ନିଆହୋଇଥିଲା । କେତେକ ସ୍ଥାନରେ ମଧ୍ୟ ଲୋକେ ପୁଷ୍ପମାଳା, କର୍ପୂର-ମାଳା ଉପହାର ଦେଉଥାନ୍ତି । ବାଟରେ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଦାସ, ନବକିଶୋର ଦାସ ପ୍ରମୁଖ ଜାତୀୟ ସଙ୍ଗୀତର ପ୍ଲାକାର୍ଡ଼ ଧରି ପଟୁଆରରେ ଯୋଗଦେଲେ । ମଧ୍ୟେ ମଧ୍ୟେ ହରିବୋଲ ଧ୍ୱନି ଓ ହୁଳହୁଳି ହେଉଥିଲା । ପଟୁଆରଟି ବକ୍‌ସିବଜାର, ଚୌଧୁରୀବଜାର, ବାଲୁବଜାର, ଖୁନ୍ଦମଣିଚୌକ, ମହମଦିଆବଜାର ଓ ତୁଳସୀପୁର ଦେଇ ଉପରବେଳା ପାଞ୍ଚଟାରେ କବରଖାନାରେ ଉପସ୍ଥିତ ହେଲା । ବାଟରେ ତୁଳସୀପୁର ଛକଠାରେ ମହିଳା-ମାନେ ଶବାଧାରର ଠିକ୍ ଆଗେ ଆଗେ ପ୍ରାର୍ଥନା ସଙ୍ଗୀତ ଗାଇ ଗାଇ କବର ସ୍ଥାନ ପର୍ଯ୍ୟନ୍ତ ଯାଇଥିଲେ । ଫାଟକରୁ ଶବଟିକୁ କଫିନ୍ ମଧ୍ୟରେ ନିଆଯାଇଥିଲା ।

"ହଜାର ହଜାର ଜନତା କବର ଭୂମିରେ ଜମାହୋଇ ଥାଆନ୍ତି । ରାଜଦ୍ୱାରରେ ଶ୍ମଶାନେ ଚ ଯସ୍ତିଷ୍ଠତି ସବାନ୍ଧବଃ' । ହିନ୍ଦୁ, ମୁସଲମାନ, ଶିଖ, ଖ୍ରୀଷ୍ଟିଆନ୍, ଦେଶୀ, ବିଦେଶୀ, କଳା, ଗୋରା ସମସ୍ତେ ଯେ ତାଙ୍କର ବନ୍ଧୁଥିଲେ, ଏହି ପ୍ରମାଣ ସେହି କବର ଭୂମିରେ ମିଳିଗଲା । ହାଇକୋର୍ଟ ଜଜ୍ ମିଷ୍ଟର ଜେମ୍‌ସ, ଜିଲ୍ଲା ଜଜ୍ ମିଃ ମେଡମ୍, ପଞ୍ଜାବର ମିଃ ବେଣିଲ୍‌ଙ୍କଠାରୁ ଆରମ୍ଭ କରି କଟକର ସମସ୍ତ ବିଶିଷ୍ଟ ସରକାରୀ ଲୋକେ, ଶ୍ରୀଯୁକ୍ତ ଜାନକୀନାଥ ବୋଷଙ୍କଠାରୁ ଆରମ୍ଭ କରି କଟକର ସମସ୍ତ ଓକିଲ, ଅଧ୍ୟାପକ ପରିଜାଙ୍କଠାରୁ ଆରମ୍ଭ କରି କଲେଜର ପ୍ରାୟ ସମସ୍ତ ଅଧ୍ୟାପକ, ବହୁ ସ୍କୁଲ କଲେଜ ଛାତ୍ର, କଂଗ୍ରେସ ବେକଂଗ୍ରେସ ସକଳ କର୍ମୀ, ଖ୍ରୀଷ୍ଟ ସମାଜର ସକଳ ଲୋକ, ରାଜା, ଜମିଦାର, ଜନସାଧାରଣ, ଖବରକାଗଜର ବହୁ ପ୍ରତିନିଧି, ସ୍କୁଲର ଶିକ୍ଷକସମାଜ ସମସ୍ତେ ଉପସ୍ଥିତ ଥିଲେ । ରାୟବାହାଦୂର ଲୋକନାଥ ମିଶ୍ର, ଶ୍ରୀ ଜଗବନ୍ଧୁ ସିଂହ, ଶ୍ରୀ ଜଗନ୍ନାଥ ମିଶ୍ର, ଶ୍ରୀ ବ୍ରହ୍ମାନନ୍ଦ ମହାନ୍ତି ପ୍ରଭୃତି ମଧ୍ୟ ପୁରୀରୁ ଧାଇଁ କବର ଭୂଇଁକୁ ଆସିଥିଲେ । ମଖମଲ କଳାକନାରେ ଆବୃତ ସୁନ୍ଦର କଫିନ୍ ବାକ୍‌ସ ଭିତରେ ପୁଷ୍ପସଜ୍ଜିତ ମଧୁବାବୁଙ୍କର ଦେହକୁ ଭର୍ତ୍ତିକରି ଦିଆଗଲା । ଛବିସମ୍ବଳିତ 'ସମାଜ' ଓ ଅନ୍ୟାନ୍ୟ କାଗଜ ମଧ୍ୟ ସେଥି ଭିତରେ ସ୍ଥାନ ପାଇଲା । ଲୋକେ କର୍ପୂର ଚନ୍ଦନ ଦେଲେ । କଫିନ୍ ବନ୍ଦ ହେଲା ପରେ ଗୋରାକବର ପକ୍‌କା ଗହ୍ୱର ଭିତରେ ସଜାଇ ରଖିଦିଆଗଲା । ବିଶିଷ୍ଟ ପାଦ୍ରୀ ଓଡ଼ିଆରେ ଯୀଶୁଙ୍କର ଜୟଗାନ କରୁଥାନ୍ତି । ସମଗ୍ର ଖ୍ରୀଷ୍ଟସମାଜ ସ୍ତ୍ରୀ, ପୁରୁଷ ପ୍ରାଣର ଆବେଗରେ ପ୍ରାର୍ଥନା ବୋଲୁଥାଆନ୍ତି । ଏହିଭଳି ଭାବରେ ଉତ୍କଳର ବରପୁତ୍ର ମଧୁବାବୁଙ୍କୁ ଛଳଛଳ ଆଖିରେ କବର ଭୂଇଁରେ ବିଦାୟ ଦେଇ, ଶୋକଭରରେ ବିପର୍ଯ୍ୟସ୍ତ ହୋଇ ଦଳ ଦଳ ଲୋକ ଫେରୁଥାନ୍ତି—' ଲୋକେ କହୁଥାନ୍ତି, ଓଡ଼ିଶାର ଗୋଟିଏ ଶ୍ରେଷ୍ଠ ସମ୍ପଦକୁ ମାଟିରେ ପୋତିଦେଇ ଗଲୁ । ତାଙ୍କର ମାଟିର ଦେହ ମାଟିରେ ମିଶିଯିବ; କିନ୍ତୁ କୀର୍ତ୍ତି କାଳକାଳକୁ ରହିବ ।"

କବରର ଶେଷ ଲେଖା—

I came to Jesus as I was
Weary and worn and sad,
I found in Him a resting place
And He has made me glad.

ଯେଣୁ ଦୁଃଖ ଜଞ୍ଜାଳରେ ଅଥୟ
ଅବସାଦ ଭଜାଇ
ଏ ମର ସଂସାରେ ଯୀଶୁଙ୍କୁ
ଏକା ଆଶା ମଣିଲି ।
ଦେଖିଲି ସେହିଟି ଅଟନ୍ତି
ମୋର ଆଶ୍ରୟ ସ୍ଥଳୀ
ମୋ ପ୍ରାଣେ ଆନନ୍ଦ ସେ ଏକା
ଦେଇ ଅଛନ୍ତି ଢାଳି ।" (ସମାଜ—୭ । ୨ । ୩୪, ବୁଧବାର)

'ସମାଜ'ର ଶ୍ରଦ୍ଧାଞ୍ଜଳି—

"ଶତେ ବର୍ଷର ଶୃଙ୍ଗ ଖସିଲା"

"ଯେ କାଲି କଟକରେ ଥିଲେ ସେ ଆଜି ନାହାନ୍ତି । ଦୁଃଖ ବିପଦରେ ଯାହାଙ୍କ ପରାମର୍ଶ ନେବାପାଇଁ କାଲି ଯୁଏତ କେତେ ଲୋକ ବସିରହିଥିବେ, ସେ ଦେଖିବେ ଆଜି ସେ ନାହାନ୍ତି । ସେ ପ୍ରାୟ ଶତେ ବର୍ଷର ଲୋକ । ହେଉ ପାଇଲି ବନ୍ଧୁ ୭°।୭୫ ବର୍ଷର ଅଭିଜ୍ଞତା ଯେ ବୁକୁରେ ଧରି ବସିଥିଲେ, କେତେ ଦୁଃଖ, କେତେ ବିଘ୍ନ କେତେ କୌଶଳ ଭିତରେ ସେ ନିଜର ଜୀବନ ଗଢ଼ିଆସିଥିଲେ, କାର୍ଯ୍ୟ କରି ଆସିଥିଲେ । ତାଙ୍କ ମସ୍ତିଷ୍କରେ, ତାଙ୍କ ଅନ୍ତରରେ, ତାଙ୍କ ଅନୁଭୂତିରେ, ତାଙ୍କ ସ୍ମୃତିରେ କେତେ ସମ୍ପଦ ନଥିଲା ! ରକ୍ତ ମାଂସ ଦେହ ଶୁଖି ଶୁଖି କଲାକାଠ ହୋଇଥିଲା, ପ୍ରତ୍ୟେକ ଅଙ୍ଗ କ୍ଷୀଣ ହୋଇଯାଇଥିଲା; କିନ୍ତୁ ଦୃଷ୍ଟି ଓ ଶ୍ରୁତି ଛଡ଼ା ମାତ୍ର କ୍ଷୁଣ୍ଣ ହୋଇ ନ ଥିଲା । ସେ ଗୁରୁ ଗମ୍ଭୀର କଣ୍ଠ ବରାବର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବୀଣାପରି ବାଜୁଥିଲା । ଯାହା ବୁକୁରେ ଯାହା ମନରେ ଏତେ କଥା, ଏତେ ସ୍ମୃତି ସଞ୍ଚିତ ହୋଇ ରହିଥିଲା, ତାଙ୍କର ନିଃଶ୍ୱାସ ଟିକକ ବନ୍ଦ ହେବା ମାତ୍ରେ ସେ ସବୁ କୁଆଡ଼େ ଉଭେଇଗଲା । ସେ ପବନଟିକ ରହିଥିଲେ ସବୁ ରହିଥାନ୍ତା । ସମ୍ପତ୍ତି ହଜିଗଲେ, ନାଶ ପାଇଲେ ଲୋକ ସମ୍ପତ୍ତି କରିନେଇପାରେ; କିନ୍ତୁ ତାକୁତ ମନୁଷ୍ୟ କରି ନଥିଲା । ଦୈବ ଯେ ବୁଦ୍ଧି ଦେଇଥିଲେ, ଯେ ଶକ୍ତି ଦେଇଥିଲେ, ପାରିପାର୍ଶ୍ୱିକ ଅବସ୍ଥାରେ ସେ ଯେପରି ଆକାର ପ୍ରକାର ଓ ବିକାଶ ଧାରଣ କରିଥିଲା—ସେ କ'ଣ ସହଜରେ କାହାର ହେବ ? ହଁ, ଲୋକ ଉତ୍ତର ପାରନ୍ତି, କିନ୍ତୁ ସେ ଏ କାଳର ଲୋକ ହେବେ । ତାଙ୍କ

ଅଭିଜ୍ଞତା ଅଳ୍ପଦିନର ହେବ; କିନ୍ତୁ ପ୍ରାୟ ଶହେ ବର୍ଷର ସ୍ମୃତି, ଶହେ ବର୍ଷର ଅନୁଭୂତି ଥାଇ ସେ ଯେ ମୂଳଦୁଆ ହୋଇ ରହିଥିଲେ ସେ ଆଉ କାହୁଁ ଆସିବ ? ଭୁଲ୍ ଭ୍ରାନ୍ତି କାହାର ନାହିଁ ? ଆତ୍ମକୃତ ଭୁଲ ଓ ପାରିପାର୍ଶ୍ୱିକ ଅବସ୍ଥା ଏବଂ ପ୍ରଭାବ ହେତୁରୁ ଭୁଲ ଲୋକ କରିଥାଏ; ମଧୁବାବୁ କରିଥିବା ବିଚାର ନୁହେଁ; କିନ୍ତୁ ଓଡ଼ିଆ ଜାତି ପ୍ରତି ମମତା, ପ୍ରୀତି ତାଙ୍କ ପ୍ରାଣରେ ପରିପୂର୍ଣ୍ଣ ଥିଲା । ଯେତେବେଳେ ଓଡ଼ିଶା ବାହାରକୁ ଆଖି ଫେରାଇ ଭାରତର ଜାତୀୟତାରେ ଉତ୍କଳର ମୁକ୍ତି ଦେଖିବାକୁ ପଡ଼ିଲା, ସେତେବେଳେ ପନ୍ଥା ଓ କାର୍ଯ୍ୟର ପରିସର ନେଇ ପ୍ରଭେଦ ଆସିଯାଇଥିଲେ ସୁଦ୍ଧା, ପ୍ରାଣ ଦୁହିଁଙ୍କର ଜଡ଼ିତ ହୋଇଥିଲା । ଗୋପବନ୍ଧୁଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବରୁ ମଧୁବାବୁ ତାଙ୍କୁ ଯେଉଁ ଚିଠି ଲେଖିଥିଲେ ତାହା, ଅନ୍ୟତ୍ର ପ୍ରକାଶ କରାଯାଇଛି । ଶେଷ ଅବଧି ଗୋପବନ୍ଧୁଙ୍କୁ ଦେଖିବାପାଇଁ ପ୍ରାଣରେ କି ବାସନା ଥିଲା, କି ସରଳ ଭାବରେ ସେ ତାଙ୍କର ସ୍ୱଦେଶ ପ୍ରୀତି ଓ ନିଜର ତ୍ରୁଟୀ ପର୍ଯ୍ୟନ୍ତ ସ୍ୱୀକାର କରିପାରିଥିଲେ ! ହିମାଳୟର ଶୃଙ୍ଗପରି ମଧୁବାବୁ ଉତ୍କଳର ଶ୍ରେଷ୍ଠ ଶୃଙ୍ଗ ଥିଲେ । ସେ ଶୃଙ୍ଗ ଯେତେବେଳେ ଟଳିପଡ଼ିଲା, ସେତେବେଳେ ହଜାର ହଜାର ଲୋକଙ୍କ ପ୍ରାଣରେ ବ୍ୟଥା ଲାଗିଥିବ ।

ମଧୁବାବୁଙ୍କର ବୁଦ୍ଧିବଳ ଅସାଧାରଣ ଥିଲା । ସ୍ମୃତିଶକ୍ତି ଅଲୌକିକ ଥିଲା । ତାଙ୍କ ମୃତ୍ୟୁରେ ଶହେ ବର୍ଷର ସମ୍ପଦ ଲିଭିଗଲା । ବୁଦ୍ଧି ଖେଳେଇ ଅଭିଜ୍ଞତାର ପ୍ରେରଣା ଦେଇ, ସେହି ବଳରେ ଲଢ଼ିବା ପୁଅ ସେ ଜଣେ ଥିଲେ । ବିଚକ୍ଷଣ ମୋତିଲାଲଜୀ ଯେତେବେଳେ ମରିଗଲେ, ଗାନ୍ଧିଜୀ ସେତେବେଳେ କହିଥିଲେ—

"Rock of ages cleft for me,
Let me hide myself in Thee."

"ଆଜି ଉତ୍କଳବାସୀ ଶତବର୍ଷର ଜୀବନ୍ତ ସ୍ମୃତିସ୍ତମ୍ଭ ବିଦୀର୍ଣ୍ଣ ହେବାରେ ଠିକ୍ ସେହି କଥା କହୁଛନ୍ତି । ମଧୁବାବୁ ଭାରତର ଅଗ୍ରଗାମୀ ଜାତୀୟ ଭାବ ଗ୍ରହଣ କରିପାରି ନ ଥିଲେ ସତ, ଏ ଯୁଗର ଜାତୀୟ ଜୀବନରେ ସେ ଅଗ୍ରଗାମୀ ପ୍ରେରଣା ଦେଇ ପାରି ନ ଥିଲେ ମଧ୍ୟ ଲୋକେ ତାଙ୍କୁ ତାଙ୍କର ଉପଯୁକ୍ତ ଭକ୍ତି ଦେବେ ଓ ଦେଉଛନ୍ତି । ତାଙ୍କ ନାମ ଚିରକାଳ ସ୍ୱର୍ଣ୍ଣାକ୍ଷରରେ ଉତ୍କଳ ବକ୍ଷରେ ଲେଖା ହୋଇ ରହିବ ।"

(ସମାଜ ୭ । ୨ । ୩୪, ସମ୍ପାଦକୀୟ)

"ମଧୁବାବୁ ଓଡ଼ିଆମାନଙ୍କର ସର୍ବାଗ୍ରଣ୍ୟ ନେତା : ୭ । ୨ । ୩୪ ତାରିଖରେ କଟକ ଟାଉନ୍‌ହଲ୍‌ରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ଶ୍ରୀ ବୈଦ୍ୟନାଥ କର ('ଉତ୍କଳ ସାହିତ୍ୟ'ର ସମ୍ପାଦକ) ସଭାପତି ହୋଇଥିଲେ । ପ୍ରସ୍ତାବ ଶ୍ରୀ ବ୍ରଜସୁନ୍ଦର ଦାସ ଆଗତ କଲେ ଏବଂ ଏହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

'କଟକବାସୀଙ୍କର ଏହି ସାଧାରଣ ସଭା ମଧୁବାବୁଙ୍କ ମୃତ୍ୟୁରେ ଗଭୀର ଦୁଃଖ ପ୍ରକାଶ କରୁଅଛନ୍ତି । ମଧୁବାବୁ, ଯେ ଆମ୍ଭମାନଙ୍କର ଉତ୍କଳରେ ଆଧୁନିକ ଜାତୀୟ ଜୀବନର ପ୍ରଥମ ସୂଚନାର ସ୍ପନ୍ଦନକର୍ତ୍ତା, ଯେ ଆଜି ଖଣ୍ଡବିଖଣ୍ଡିତ ଉତ୍କଳର ଏକତ୍ରୀକରଣରେ, ଶିଳ୍ପର ଉନ୍ନତି ଦିଗରେ, ପୁରାତନ ନଷ୍ଟ ଶିଳ୍ପର ଉଦ୍ଧାରରେ ଅଜସ୍ର ଧନବ୍ୟୟ କରିଥିଲେ । ଗତ ଅର୍ଦ୍ଧଶତାବ୍ଦୀରେ ଓଡ଼ିଆମାନଙ୍କର ସର୍ବାଗ୍ରଣୀ ନେତା ଥିଲେ । ତାଙ୍କର ଏ ବିୟୋଗରେ କଟକର ସବୁ ଶ୍ରେଣୀର ଜନସାଧାରଣ ଗଭୀର ଦୁଃଖପ୍ରକାଶ କରୁଛନ୍ତି ଏବଂ ତାଙ୍କର ଆତ୍ମାର ସଦ୍‌ଗତି କାମନା କରୁଛନ୍ତି ।''

**"ଉତ୍କଳର ଶ୍ରେଷ୍ଠନାୟକ ଓ ଓଡ଼ିଆ ଜାତିର ପ୍ରାଣ"**— ବ୍ରହ୍ମପୁରରେ ୭ । ୨ । ୩୪ ତାରିଖ ଦିନ ସନ୍ଧ୍ୟା ୫-୩୦ରେ ସ୍ଥାନୀୟ ନାଟ୍ୟମନ୍ଦିରରେ ଶ୍ରୀ ଶଶି-ଭୂଷଣ ରଥଙ୍କ ସଭାପତିତ୍ୱରେ 'ଏକ ଶୋକସଭା ହୋଇଥିଲା ଏବଂ ଶୋକ-ପ୍ରସ୍ତାବ ଗୃହୀତ ହୋଇଥିଲା । ୧୩ତାରିଖ ମଙ୍ଗଳବାର ଦିନ ଶ୍ରାଦ୍ଧ ଦିବସ ପାଳିତ ହୋଇଥିଲା । ଏହାର ଆୟୋଜନ କରିଥିଲେ ସମ୍ପାଦକ ଶ୍ରୀ ଶ୍ରୀଧର ମହାପାତ୍ର ଓ ସହକାରୀ ସମ୍ପାଦକ ଶ୍ରୀ ବୃନ୍ଦାବନ ପାଲ ।

ଏହି ସଭାରେ ଶ୍ରୀଧର ମହାପାତ୍ରଙ୍କ ରଚିତ ଶୋକସଙ୍ଗୀତ ଗାନ କରାଯାଇଥିଲା । ତାହାର ପ୍ରଥମ ପଦ—

ଜନମ ଭୂଇଁର ଧମନୀରୁ ଆଜି ଶୁଖିଛୁ ଶୋଣିତ ଧାର ହେ ।
କରମ ଗଗନ ଗରଭୁ ଲିଭିଛୁ ଆଶାର ଆଲୋକ ଗାର ହେ ।

ଏହି ଗୀତ ସୁଗାୟକ ସ୍ୱର୍ଗତ ଗୋପୀନାଥ ଦାଶ ଗାନ କରିଥିଲେ ।

**"ଉତ୍କଳର ଶ୍ରେଷ୍ଠ ନାୟକ ଓ ଓଡ଼ିଆଜାତିର ପ୍ରାଣ"** : ମଧୁସୂଦନଙ୍କ ମୃତ୍ୟୁରେ ପୁରୀ ସିଂହଦ୍ୱାରଠାରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । ପ୍ରସ୍ତାବ— "ଓଡ଼ିଆ ଜାତିର ପ୍ରାଣ ଓ ଶ୍ରେଷ୍ଠ ନାୟକ କୁଳବୃଦ୍ଧ ତେଜସ୍ୱୀ ମଧୁସୂଦନଙ୍କ ବିୟୋଗରେ ଉତ୍କଳର ଯେଉଁ ପ୍ରଭୂତ କ୍ଷତି ହୋଇଅଛି, ତାହା ପୂରଣ ହେବା ଅସମ୍ଭବ । ବିଶେଷତଃ ଉତ୍କଳର ଦେଶମିଶ୍ରଣ ନେଇ ଓଡ଼ିଆଜାତିର ଯେଉଁ ସଙ୍କଟ ଅବସ୍ଥା ଉପସ୍ଥିତ ହୋଇଅଛି, ସେପରି ଅବସ୍ଥାରେ ମଧୁସୂଦନଙ୍କ ଭଳି ମନସ୍ୱୀ ନିର୍ଭୀକଚେତା ବ୍ୟକ୍ତିଙ୍କୁ ହରାଇ ପୁରୀବାସୀଙ୍କର ଏ ସାଧାରଣ ସଭା ଗଭୀର ଦୁଃଖ ଓ ଶୋକ ପ୍ରକାଶ କରୁଅଛି ଏବଂ ତାଙ୍କର ଆତ୍ମାର ସଦ୍‌ଗତି ନିମିତ୍ତ ଭଗବାନଙ୍କଠାରେ ପ୍ରାର୍ଥନା କରୁଅଛି ।''

ସତ୍ୟବାଦୀରେ ମଧ୍ୟ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା ।

**କଲିକତା କର୍ପୋରେସନ୍** ୭ । ୨ । ୩୪ ତାରିଖରେ କଲିକତା କର୍ପୋରେସନ୍ ବୈଠକରେ ଉତ୍କଳର ମଧୁସୂଦନ ଦାସ ସି. ଆଇ. ଇ. ଓ ମାନ୍ଦ୍ରାଜର ରଙ୍ଗାସ୍ୱାମୀ ଆୟଙ୍ଗାରଙ୍କ ପରଲୋକରେ ଶୋକ ପ୍ରକାଶ କରାଯାଇ ସେମାନଙ୍କ ପ୍ରତି

ସମ୍ମାନର ଚହ୍ନ ସ୍ୱରୂପ ୧୫ ମିନଟ୍‌କାଳ ବୈଠକ ବନ୍ଦ ହୋଇଥିଲା । ଶ୍ରୀଯୁକ୍ତ ବୀରେନ୍ଦ୍ର ସାମଲ୍ ଓ ଜେ. ସି. ଗୁପ୍ତ ମଧୁବାବୁଙ୍କ ଦେଶସେବା ଶିଳ୍ପର ଉନ୍ନତିପାଇଁ ଅଦମ୍ୟ ଚେଷ୍ଟା ଲାଗି ଖୁବ୍ ପ୍ରଶଂସା କରିଥିଲେ ।

**ଖୋରଧା :** ଏଠା ସ୍କୁଲ୍ ହଲରେ **ଶୋକସଭା** ହୋଇଥିଲା ।

**କମାପଡ଼ା :** ବାରବାଟୀ ପଡ଼ିଆରେ ଶ୍ରୀ ଦାମୋଦର ମିଶ୍ରଙ୍କ ସଭାପତିତ୍ୱରେ ଶୋକସଭା ହୋଇଥିଲା ।

**କଟକ ଖ୍ରୀଷ୍ଟ ସମାଜ :** ୮ । ୨ । ୩୪ ତାରିଖ ଦିନ କଟକ ଖ୍ରୀଷ୍ଟ ସମ୍ପ୍ରଦାୟର ଏକ ବୈଠକରେ "ଉତ୍କଳର ଶ୍ରେଷ୍ଠ ଖ୍ରୀଷ୍ଟିଆନ୍ ନେତା, ନିଖିଳ ଭାରତ ଖ୍ରୀଷ୍ଟିଆନ୍ ସମ୍ମେଳନର ଭୂତପୂର୍ବ ସଭାପତି ଓ ବିହାର-ଓଡ଼ିଶାର ଭୂତପୂର୍ବ ମନ୍ତ୍ରୀ" ମଧୁବାବୁଙ୍କ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରାଯାଇଥିଲା ।

**ପାଟନା** ୫ । ୨ । ୩୪ ଦିନ ଗେଟ୍ ଲାଇବ୍ରେରୀରେ ଏକ ସାଧାରଣସଭା ହୋଇଥିଲା । ହାଇକୋର୍ଟର ଡେପୁଟି ରେଜିଷ୍ଟ୍ରାର ଶ୍ରୀ ରମେଶଚନ୍ଦ୍ର ମିତ୍ର ସଭାପତି ହୋଇଥିଲେ । ଶ୍ରୀ ଗଜେନ୍ଦ୍ରପ୍ରସାଦ ଦାସ ଓ ପୀତାମ୍ବର ମିଶ୍ର ଓକିଲମାନେ ବକ୍ତୃତା ଦେଇଥିଲେ ।

**ବାଲେଶ୍ୱର :** ସୁବୋଧଚନ୍ଦ୍ର ବାଣୀଭବନରେ ଏକ ଶୋକସଭା ହୋଇଥିଲା । ଓକିଲ ସଙ୍ଘ ତରଫରୁ ଶ୍ରୀଯୁକ୍ତ ଜି. ପି. ଦାସଙ୍କ ସଭାପତିତ୍ୱରେ ଏକ ସଭା ହୋଇଥିଲା ।

ଖଡ଼ଗପୁର, କେନ୍ଦ୍ରାପଡ଼ା, ଯାଜପୁର, ଆଠଗଡ଼, ହୁମା, କୁଜଙ୍ଗ, ଗୁରୁଜଙ୍ଗ, ରାଞ୍ଚି, କଲ୍ୟାଣପୁର, ଶସଡ଼ା, ରସୁଲକୁଣ୍ଡା, ଜାମସେଦପୁର, ପାରଳାଖେମୁଣ୍ଡି ଆଦି ସ୍ଥାନମାନଙ୍କରେ ମଧ୍ୟ ଶୋକସଭା ହୋଇଥିଲା ।

ବିହାର-ଓଡ଼ିଶାର ଲାଟ୍‌ଙ୍କ ତରଫରୁ ତାଙ୍କର ପ୍ରାଇଭେଟ୍ ସେକ୍ରେଟେରୀ, ହାଇକୋର୍ଟର ପ୍ରଧାନ ବିଚାରପତି ଓ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ସିଂହ ପ୍ରଭୃତି ତାରବାର୍ତ୍ତା ପଠାଇ ଶୋକ ପ୍ରକାଶ କରିଥିଲେ ।

**କଟକରେ ଶ୍ରାଦ୍ଧସଭା :** ୧୩-୨-୩୪ ତାରିଖ ଦିନ ଶ୍ରାଦ୍ଧ ଦିବସ ପାଳିତ ହୋଇଥିଲା । ଲୋକଙ୍କ ପକ୍ଷରୁ ଦରିଦ୍ରନାରାୟଣସେବା ହୋଇଥିଲା । ସନ୍ଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ ଏକ ସଭା ଶ୍ରୀ ବିଶ୍ୱନାଥ କରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ପଣ୍ଡିତ ଶ୍ରୀ ବିଶ୍ୱନାଥ ରଥ କାବ୍ୟତୀର୍ଥ ଶାନ୍ତି ଶ୍ଳୋକ ପାଠ କରିଥିଲେ ।

ଏହିପରି ଓଡ଼ିଶାର ସର୍ବତ୍ର ଶୋକସଭାମାନ ଅନୁଷ୍ଠିତ ହୋଇଥିଲା ।

## ୩୩. ମଧୁବାବୁଙ୍କ ସମ୍ବନ୍ଧରେ କେତୋଟି ଗଳ୍ପ

ରାଜନୈତିକ, ସାମାଜିକ, ଅର୍ଥନୈତିକ ପ୍ରଭୃତି ବହୁ କ୍ଷେତ୍ରରେ ମଧୁବାବୁ ଆଧୁନିକ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଓ କର୍ଣ୍ଣଧାର ଥିଲେ । ଗତ ଶତାବ୍ଦୀର ଶେଷପାଦ-ଠାରୁ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ଅର୍ଦ୍ଧଶତାବ୍ଦୀ କାଳ ଓଡ଼ିଶା କହିଲେ ମଧୁବାବୁ ଓ ମଧୁବାବୁ କହିଲେ ଓଡ଼ିଶାକୁ ହିଁ ବୁଝାଉଥିଲା । ନେତା ହିସାବରେ ସେ ଉଚ୍ଚକୋଟୀର ନେତା ଥିଲେ । ନାଗରିକ ହିସାବରେ ମଧ୍ୟ ଆଦର୍ଶ ସ୍ଥାନୀୟ ଥିଲେ । ଗାମ୍ଭୀର୍ଯ୍ୟ, ସରସତା, ସରଳତା ସମଭାବରେ ତାଙ୍କଠାରେ ବିଦ୍ୟମାନ ଥିଲା । ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ତାଙ୍କ କର୍ମମୟ ଜୀବନରେ ସେ ଦେଶବିଦେଶରେ ବହୁ କ୍ଷେତ୍ରରେ ବହୁ ଲୋକ ଓ ନେତାଙ୍କ ସଂସ୍ପର୍ଶରେ ଆସିଛନ୍ତି, ବହୁ ଲୋକଙ୍କର ଚାଲିଚଳଣି ଦେଖିଛନ୍ତି । ଜୀବନକୁ ସରସ କରିବା ପାଇଁ ଓ ଉନ୍ନତ କରିବା ପାଇଁ ସେ ସତତ ଚେଷ୍ଟା କରିଛନ୍ତି ।

ସେ ବନ୍ଧୁମାନଙ୍କ ମେଳରେ ସରସ ଆଳାପ କରି ସମସ୍ତଙ୍କୁ ଖୁସି କରି ଦେଉଥିଲେ । ସେ ଉଚ୍ଚକୋଟୀର ଗାଳ୍ପିକ ମଧ୍ୟ ଥିଲେ । ସରସତାପ୍ରିୟ, ସ୍ୱଦେଶପ୍ରେମିକ ଏହି ମହାନ୍ ନେତାଙ୍କ ଜୀବନର କେତେକ ଘଟଣା ବର୍ତ୍ତମାନ ସୁଦ୍ଧା କାହାଣୀ ଆକାରରେ ଶୁଣାଯାଏ । ଶତାଧିକ କାହାଣୀ ମଧ୍ୟରୁ ଅଳ୍ପ କେତୋଟି ମାତ୍ର ଏଠାରେ ପ୍ରଦତ୍ତ ହେଲା । ଭାତହାଣ୍ଡିରୁ ଗୋଟିଏ ଭାତ ଚିପିଲେ ସବୁ ଜଣାପଡ଼େ । ମଧୁବାବୁଙ୍କର ଜୀବନରେ ଏହି କେତୋଟି କାହାଣୀ ତାଙ୍କର ଚାଲିଚଳନ, ଆଚାର ବ୍ୟବହାର, ଚେଷ୍ଟା, ଚରିତ୍ର ପରିଚୟ ପ୍ରଦାନ କରୁଛି ।

(୧) ବିପିନବିହାରୀ ମିତ୍ରଙ୍କ ବନ୍ଧୁ ନିମନ୍ତ୍ରଣ—ମଧୁବାବୁ କଲିକତାରୁ ଆସି କଟକରେ ଓକିଲାତି କରିବା ସମୟକୁ ଶ୍ରୀ ବିପିନବିହାରୀ ମିତ୍ର ଜଣେ ଖ୍ୟାତନାମା ଫୌଜଦାରୀ ଓକିଲ ଥିଲେ । ସେ ସାକ୍ଷୀ ଜେରାରେ ଧୁରନ୍ଧର ଥିଲେ । ସାଧାରଣତଃ ମୁଦାଲି ପକ୍ଷମାନେ ତାଙ୍କ ଆଶ୍ରୟ ନେଉଥିଲେ । ଜେରାରେ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ କରି ସାକ୍ଷୀଠାରୁ ତାହାର ବିରୋଧାତ୍ମକ ବହୁ କଥା ବାହାର କରି ଅଭିଯୋଗକୁ ସେ ଦୁର୍ବଳ କରିଦେଉଥିଲେ । ମହକିଲଙ୍କଠାରୁ ବହୁତ ଟଙ୍କା କରାର କରିନେଉଥିଲେ ଏବଂ କଡ଼ାଏ ସୁଦ୍ଧା ଛାଡ଼ୁ ନ ଥିଲେ । କଟକରେ ସେତେବେଳେ ଜଣେ ବଡ଼ ରୋଜଗାରିଆ ଓକିଲ ବୋଲି ତାଙ୍କର ଖ୍ୟାତି ଥିଲା । ସେ କେବେ କାହାକୁ ମୁକ୍ତହସ୍ତରେ କିଛି ଦାନ କରିଥିବା କେହି ଜାଣି ନ ଥିଲେ । ତାଙ୍କ ଦାଣ୍ଡଦ୍ୱାରରୁ ମୁଠାଏ ଭିକ ନ ପାଇ ଭିକାରି ଫେରେ । ଏହା ସତ୍ତ୍ୱେ ତାଙ୍କର ନିଜର ଆଚାର-ବ୍ୟବହାର ଶୁଦ୍ଧପୂତ ଥିଲା । କାହାରି ପ୍ରତି ଘୃଣା ନଥିଲା ।

ସମସ୍ତଙ୍କୁ ଆଦର କରୁଥିଲେ । କାହାର ପଇସାଟିଏ ସୁଦ୍ଧା ନିଜେ ବାକୀ ରଖୁ ନଥିଲେ । ସେ ମଧୁବାବୁଙ୍କଠାରୁ ବୟସରେ ବଡ଼ ଥିଲେ । ମଧୁବାବୁଙ୍କ ଯୌବନାବସ୍ଥା ବେଳକୁ ତାଙ୍କର ବୃଦ୍ଧାବସ୍ଥା । ଯୁବକ ଓକିଲମାନେ ତାଙ୍କୁ ସମ୍ମାନ କରୁଥିଲେହେଁ ତାଙ୍କ ସହିତ ଅଜାନାତି ଭାବରେ ଥଟ୍ଟା ପରିହାସ ମଧ୍ୟ କରୁଥିଲେ । ତାଙ୍କର କୃପଣତାକୁ ଲକ୍ଷ୍ୟକରି କୌତୁକରେ ବହୁତ କଥା ତାଙ୍କୁ କହୁଥିଲେ । ବୃଦ୍ଧ ଏସବୁ ଶୁଣି ହସରେ ଉଡ଼ାଇଦେଉଥିଲେ ଏବଂ ଥଟ୍ଟା ତାମସାରେ ଯୋଗଦେଉଥିଲେ ।

ତାଙ୍କୁ ଯୁବକ ଓକିଲମାନେ, ବହୁତ ଥର ଭୋଜି ମାଗୁଥିଲେ । ସେମାନେ ଜାଣିଥିଲେ ଯେ ବିପିନବାବୁ ରାଜି ହେବେନାହିଁ । ତାଙ୍କଠାରୁ ନାସ୍ତି ବାଣୀ ସହ କୌତୁକ ଟୀକାଟିପ୍ପଣୀ ଶୁଣି ଆନନ୍ଦ ଉପଭୋଗ କରିବା ନିମନ୍ତେ ସେମାନେ ବାରମ୍ବାର ଏପରି କରୁଥିଲେ ।

ଥରେ ମଧୁବାବୁ ଓ ଅନ୍ୟ ଯୁବକମାନେ ଏକ ଷଡ଼ଯନ୍ତ୍ର କଲେ । ମଧୁବାବୁ ଏଥିରେ ଅଗ୍ରଣୀ ହୋଇ ବୁଢ଼ାଙ୍କୁ ଅଡ଼ୁଆରେ ପକାଇଲେ । ନିଜେ ବିପିନବାବୁଙ୍କ ନାମରେ ଏକ ନିମନ୍ତ୍ରଣପତ୍ର ଛାପି ତାଙ୍କ ଅଜ୍ଞାତସାରରେ ଓକିଲମାନଙ୍କ ଭିତରେ ବାଣ୍ଟିଦେଲେ । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ଆଗରୁ ଷଡ଼ଯନ୍ତ୍ରଟି ଜାଣିଥିଲେ । ନିର୍ଦ୍ଦିଷ୍ଟ ଦିନ ଜଣ ଜଣ ହୋଇ ସମସ୍ତେ ସନ୍ଧ୍ୟାବେଳେ ବିପିନବାବୁଙ୍କ କୋଠାରେ ଉପସ୍ଥିତ ହେଲେ । ବୃଦ୍ଧ ଏମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସମସ୍ତେ କହିଲେ, "ଆମେ ଆପଣଙ୍କ ନିମନ୍ତ୍ରଣ ପାଇ ଆସିଛୁ ଖାଇବାକୁ ଦିଅନ୍ତୁ ।" ବୃଦ୍ଧ କହିଲେ, "ଏ କି କଥା ! ମୁଁ ତ କାହାକୁ ନିମନ୍ତ୍ରଣ କରିନାହିଁ, କିଛି କାରଣ ମଧ୍ୟ ନାହିଁ ।" ଓକିଲମାନେ କହିଲେ, "ଆମେ ତ ଆସିଗଲୁଣି, ଆଉ କ'ଣ ଫେରିବୁ ? ଭୋଜି ଖାଇବାକୁ ଯାଉଛୁ ବୋଲି କହିବାରୁ ଘରେ ଆମପାଇଁ ସେପରି ବ୍ୟବସ୍ଥା ହୋଇ ନ ଥିବ; ଉପାସରେ ରହିବୁ କିନା ।" ବୃଦ୍ଧ କହିଲେ, ଏଥିରେ ମୋର ଦୋଷ ବା କ'ଣ ? କ'ଣ ଜଣେ ଦୁଇ ଜଣ ଯେ କେଉଁଠୁ କ'ଣ ଆଣି ଦେବ ? ଆଜି ଫେରିଯାଅ, ଆଉ ଦିନେ ନିମନ୍ତ୍ରଣ କରି ଖୁଆଇବି ।" ଓକିଲମାନେ ନାଛୋଡ଼ବାନ୍ଧ । ସେମାନେ କହିଲେ, "ଏହା କିମିତି ହେବ ? ଆପଣ ଆମ୍ଭମାନଙ୍କୁ ନିମନ୍ତ୍ରଣ କରିଛନ୍ତି, ନିଶ୍ଚୟ ଖାଇବାକୁ ଦେବେ । ଏହି ଦେଖନ୍ତୁ ଆପଣଙ୍କ ନିମନ୍ତ୍ରଣ ପତ୍ର ।" ଛପା ନିମନ୍ତ୍ରଣପତ୍ର ଦେଖି ବୁଢ଼ା ହସିଲେ—କହିଲେ, "ଏହା ଆଉ କାହାର କାରସାଦି ହୋଇଥିବ । ମଧୁ ଛଡ଼ା ଆଉ କିଏ ଏହା କରିଥିବ ?" ସେତେବେଳକୁ ମଧୁବାବୁ ସେଠାରେ ଉପସ୍ଥିତ ନ ଥିଲେ ।

ବୃଦ୍ଧଙ୍କ ସହିତ ଏହିପରି କୌତୁକ କଥାବାର୍ତ୍ତା ଚାଲିଥିଲାବେଳେ ମଧୁବାବୁ ତିନି ଚାରିଟା ଘୋଡାଗାଡିରେ ତିଆରି ହୋଇଥିବା ଖାଦ୍ୟ ଧରି ଆସି ପହଞ୍ଚିଗଲେ । ଆଗରୁ ମଧୁବାବୁ ସମସ୍ତଙ୍କ ପାଇଁ ଅନ୍ୟ ସ୍ଥାନରେ ସେପରି ବ୍ୟବସ୍ଥା କରି ସବୁ ପ୍ରସ୍ତୁତ କରିଥିଲେ ।

ବୃଦ୍ଧ ଏ କାଣ୍ଡ ଦେଖି ହସିଲେ । ନିଜେ ଓଭ୍ୟ ନେଇ ସମସ୍ତଙ୍କୁ ଚର୍ଚ୍ଚା କଲେ । ଭୋଜିର ସମସ୍ତ ଖର୍ଚ୍ଚ ମଧୁବାବୁଙ୍କୁ ଦେଇଦେଲେ । ଏ ଅବଶ୍ୟ ବାଦଶାହି କୌତୁକର ଏକ ନମୁନା । ଏତେ ଖର୍ଚ୍ଚାନ୍ତ ହେବାକୁ ପଡ଼ିଥିବାରୁ ବୃଦ୍ଧଙ୍କ ମନରେ କିଛିଏ ଦୁଃଖ ଆସିଥିଲା ବୋଲି କେହି କେହି କହନ୍ତି ।

ଏହି ବିପିନବାବୁ ଅତି ବୃଦ୍ଧ ହୋଇଯିବାରୁ ଓକିଲାତି ଛାଡ଼ିଦେଲେ । ଓକିଲାତି କରି ନିଜ ବୁଦ୍ଧିବଳରେ ଯେତେ ପକ୍ଷଙ୍କର ସର୍ବନାଶ କରିଥିଲେ, ତାହା ମନେ ପକାଇ ନିତାନ୍ତ ଦୁଃଖିତ ହେଉଥିଲେ । କାହାର କୁଳରେ କେହି ନାହିଁ; ସେ ପୋଷ୍ୟପୁତ୍ର କଲା ତ ମିତ୍ରବାବୁ ବୁଦ୍ଧି ବଳରେ ତାକୁ ନାକଚ କରି କୁଳ ବୁଡ଼ାଇଥିଲେ । କେଉଁ ବିଧବା ନିଜର ଭରଣପୋଷଣ ପାଇଁ କିଛି ଜମି ଓ ଘରବାଡ଼ି ଭୋଗ କରୁଥିଲା ତ, ତାକୁ ବୁଦ୍ଧିବଳରେ ବେଦଖଲ କରି ଦାଣ୍ଡର ଭିକାରୁଣୀ କରିଦେଇଥିଲେ । ଏପରି ବହୁ ଦୁଷ୍କୃତିକୁ ସେ ମନେପକାଇ ଏ ପାପର ପ୍ରାୟଶ୍ଚିତ୍ତ ନାହିଁ ବୋଲି କହୁଥିଲେ, ମୁଣ୍ଡ ବାଡ଼େଇହୋଇ କାନ୍ଦୁଥିଲେ ।

ବୃଦ୍ଧ ମୃତ୍ୟୁ ପୂର୍ବରୁ ନିଜର ଅର୍ଜିତ ଧନରୁ ଏକ ଲକ୍ଷ ଟଙ୍କା କଲିକତା ବିଶ୍ୱ-ବିଦ୍ୟାଳୟକୁ ଦାନ କରି ଅମର ହୋଇଛନ୍ତି । କୃପଣର ପାପରେ ଅର୍ଜିତ ଧନ ପୁଣ୍ୟର କାରଣ ହେଲା ।

(୬) **"ସାଗରର ପାଣି ମିଠା ନୁହେଁ"** : ବଙ୍ଗର ବିଖ୍ୟାତ ପଣ୍ଡିତ ଓ ସଂସ୍କାରକ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ସରକାର ସି. ଆଇ. ଇ. ଉପାଧି ଦେଇଥାଆନ୍ତି । ତାଙ୍କୁ ଦେଖିବା ପାଇଁ ମଧୁବାବୁ କଲିକତାରେ ବିଦ୍ୟାସାଗରଙ୍କ ଘରକୁ ଯାଇଥିଲେ । କୌତୁକରେ ମଧୁବାବୁ କହିଲେ, "ଆପଣ ତ ବିଦ୍ୟାସାଗର, ଆମକୁ କିଛି ବିଦ୍ୟା (ଉପଦେଶ) ଦାନ କରନ୍ତୁ ।" ବିଦ୍ୟାସାଗର ହସି ହସି କହିଲେ, "ରାମକୃଷ୍ଣ ପରମହଂସ ମୋତେ ଥରେ ଏପରି କହିଥିଲେ । ମୁଁ ତାଙ୍କୁ ଉତ୍ତର ଦେଇଥିଲି, ସାଗରର ପାଣି ମିଠା ନୁହେଁ, ଲୁଣି ।" ବିଦ୍ୟାସାଗରଙ୍କର ନିରଭିମାନତା ଦେଖି ମଧୁବାବୁ ମୁଗ୍ଧ ହୋଇ-ଯାଇଥିଲେ ।

ମଧୁବାବୁ ସେତେବେଳକୁ କଟକ ଜିଲ୍ଲାବୋର୍ଡ଼ର ଭାଇସ୍-ଚେୟାରମ୍ୟାନ୍ ଥିଲେ । ସେତେବେଳେ ଜିଲ୍ଲା କଲେକ୍ଟର୍‌ମାନେ ବୋର୍ଡର ଚେୟାରମ୍ୟାନ୍ ହେଉଥିଲେ । ହେଲେହେଁ ସବୁ କାର୍ଯ୍ୟ ଭାଇସ୍-ଚେୟାରମ୍ୟାନ୍ ବୁଲାଉଥିଲେ । ମଧୁବାବୁ ପ୍ରାଥମିକ ପାଠ୍ୟ ସମ୍ବନ୍ଧରେ ଆଲୋଚନା କରି କି କି ବିଷୟରେ ପାଠ୍ୟ ରଚନା କଲେ ଭଲ ହେବ, ସେ ସମ୍ବନ୍ଧରେ ବିଦ୍ୟାସାଗରଙ୍କ ପରାମର୍ଶ ଲୋଡ଼ିଥିଲେ । ବିଦ୍ୟାସାଗର କହିଥିଲେ, "ମୁଁ ଏ କ୍ଷେତ୍ରରେ କେତୋଟି ପାଠ୍ୟପୁସ୍ତକ ବଙ୍ଗ ଭାଷାରେ ଲେଖିଛି । ଓଡ଼ିଆର୍ ସ୍ୱତନ୍ତ୍ର ମୌଳିକ୍ ପାଠ୍ୟପୁସ୍ତକ ରଚନା ହେବା ପର୍ଯ୍ୟନ୍ତ ମୋର ବହିଗୁଡ଼ିକୁ ଅନୁବାଦ କରି ଚଳାଅ ।"

**(୩) ଜଗନ୍ନାଥଙ୍କର ଏକମାତ୍ର ଆଦେଶ :** ପ୍ରଥମ ବିଲାତଯାତ୍ରା ବେଳେ ସୁଏଜ୍ କେନାଲ୍ ପାଖରେ ଜେରୁଜେଲମ୍ ଆଡକୁ ଅଙ୍ଗୁଳି ଦେଖାଇ ମଧୁବାବୁ ଯାତ୍ରୀ ବନ୍ଧୁମାନଙ୍କୁ କହିଲେ, "ଏହିଠାରେ ସିନା ମାଉଣ୍ଟ୍ ସେନାଇ (ସେନାଇ ପର୍ବତ) ଦେଖୁଛନ୍ତି । ଏଠାରେ ମୋଜେସ୍ ଦଶଟି କମାଣ୍ଡମେଣ୍ଟ୍ ବା ଆଦେଶ ଦେଇଥିଲେ । ମୋ ଦେଶର ସମୁଦ୍ରକୂଳରେ ନୀଳାଚଳ ନାମରେ ଏକ ଗିରି ବା ପାହାଡ଼ ଅଛି । ସେଠାରେ ଭଗବାନ ଗୋଟିଏ ମାତ୍ର କମାଣ୍ଡମେଣ୍ଟ୍ ବା ଆଦେଶ ଦେଇଛନ୍ତି । ତାହା ହେଉଛି, ସାର୍ବଜନୀନ ଭ୍ରାତୃଭାବ । "ଏହି ଗୋଟିକରୁ ବହୁତ କମାଣ୍ଡମେଣ୍ଟ୍ ବା ନିର୍ଦ୍ଦେଶ ବାହାରିଛି ।" ସେ ଏଠାରେ ଜଗନ୍ନାଥ ଧର୍ମର ଉଦାରତା ଖ୍ରୀଷ୍ଟିଆନ୍ ଧର୍ମର ଉଦାରତାଠାରୁ ନ୍ୟୁନ ନଥିବା ସୂଚାଇଛନ୍ତି ।

**(୪) "ହୁକା ମୋ ଜୀବନ" :** ମଧୁବାବୁଙ୍କର ହୁକାଟଣା ଅଭ୍ୟାସ ଥିଲା । ତାଙ୍କର ହୁକାଟି ବାଦଶାହି ପରି ଚକ୍‌ଚକ୍ ଦିଶୁଥାଏ । ଚାକର ସକାଳୁ ହୁକାଟିକୁ ମଜାମଜି ଓ ପୋଛିପାଛି କରି ରଖିଥାଏ । ମଧୁବାବୁ କୋର୍ଟରେ ମଧ୍ୟ ହୁକା ଟାଣୁଥିଲେ । ଓକିଲଖାନାରେ ତାଙ୍କର ଏକ ସ୍ୱତନ୍ତ୍ର କୋଠରି ଥିଲା । ସେଠାରେ ସେ କାଗଜପତ୍ର ଦେଖନ୍ତି । ମିଶଲ୍‌କୁ ଆସିଲବେଳେ ମୋହରିର ବହିପତ୍ର ଧରିଥାନ୍ତି । ଚାକରଟିଏ ଗାଉନ୍ ଧରିଥାଏ । ମଧୁବାବୁ ବାଟଯାକ ହୁକା ଟାଣି ଟାଣି ଚାଲୁଥାନ୍ତି । ମିଶଲ୍ (ହାକିମ ବସିବା କୋଠରି) ଦ୍ୱାର ମୁହଁଠାରେ ସେ ଚାକର ହାତକୁ ହୁକାଟି ଦେଇପକାନ୍ତି ଓ ଗାଉନ୍ ପିନ୍ଧି କୋଠରିରେ ପଶନ୍ତି । ଚାକର ସବୁବେଳେ ହୁକା ସଜାଡ଼ି ଓ ନିଆଁ ଦେଇ ଠିକ୍ କରି ରଖିଥାଏ । ମଧୁବାବୁ ମିଶଲ୍‌ରୁ ନିଜ କୋଠରିକୁ ଫେରିବା ସଙ୍ଗେ ସଙ୍ଗେ ଚାକର ହୁକା ବଢ଼ାଇଦିଏ । ମଧୁବାବୁ କହନ୍ତି, "ହୁକା ମୋ ଜୀବନ ।"

ସେ ପାନ, ବିଡ଼ି, ସିଗାରେଟ୍ ଖାଉ ନଥିଲେ । ତାଙ୍କର କୌଣସି ନିଶା ଅଭ୍ୟାସ ନଥିଲା ।

**(୫) "ଆପଣ ବଙ୍ଗାଳୀ କି ?" "ନା, ମୁଁ ଜଣେ ଓଡ଼ିଆ" :** ଖ୍ରୀ: ୧୮୯୭ରେ ମଧୁବାବୁ ପ୍ରଥମ ଥର ବିଲାତ ଯାତ୍ରା କଲେ । ଜାହାଜ ଚଢ଼ିବା ପାଇଁ ବମ୍ବେ ଡକ୍ ନିକଟରେ ସବୁ ଯାତ୍ରୀ ଏକତ୍ର ହେଲେ । ମଧୁବାବୁଙ୍କ ଟ୍ରଙ୍କ୍ ଉପରେ ଇଂରେଜୀ ହରପରେ "ମି: ଏମ୍ ଏସ. ଦାସ, ମେମ୍ବର ବେଙ୍ଗଲ୍ କାଉନ୍‌ସିଲ୍" ଲେଖାଥିବା ଦେଖି କେହି କେହି ତାଙ୍କୁ ବଙ୍ଗାଳୀ ବୋଲି ଭାବି କଥାବାର୍ତ୍ତା କଲେ ଓ ବଙ୍ଗଦେଶର କେତେକ କଥା ପଚାରିଲେ । ମଧୁବାବୁ କହିଲେ, "ମୁଁ ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶାର ଲୋକ । ମୁଁ ଜଣେ ଓଡ଼ିଆ, "ବଙ୍ଗାଳୀ ନୁହେଁ ।" କେତେକ ସମୟ କଥାବାର୍ତ୍ତା ପରେ ଜଣେ ଯାତ୍ରୀ ତାଙ୍କୁ କହିଲେ, "ଆପଣ ଜଣେ ବୁଦ୍ଧିମାନ୍ ଲୋକ ।" ମଧୁବାବୁ କହିଲେ, "କିନ୍ତୁ ମୁଁ Wise man of the East ନୁହେଁ । ମୋ ଦେଶର ଜଣେ ବୁଦ୍ଧିମାନ୍ ବ୍ୟକ୍ତି

ଅଛୁ, ଯେ କ କାଠ ଦଖଣ୍ଡ ହାତରେ ଧରି ଆକାଶର ତାରମାନଙ୍କ ସଙ୍ଗେ କଥାବାର୍ତ୍ତା କରୁଛୁ ।" ମଧୁବାବୁ ଏଠାରେ ଖଣ୍ଡପଡ଼ାର ବିଖ୍ୟାତ ଜ୍ୟୋତିଷବିଶାରଦ (ମହାମହୋପାଧ୍ୟାୟ) ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କୁ ଲକ୍ଷ୍ୟ କରିଥିଲେ ।

**(୬) "ଆଜ୍ଞା, ଆପଣ ତ କେନ୍ଦ୍ର ! ଆମକୁ ଧରି ବୃତ୍ତ ଟାଣୁଛନ୍ତି ।"**: ଥରେ ତାଳଚେରର ସାପ୍ତାହିକ 'ଗଡ଼ଜାତବାସିନୀ'ର ସମ୍ପାଦକ ପଣ୍ଡିତ ଭଗୀରଥି ପଦ୍ମାଳଙ୍କାର କଟକ ଆସିଥିଲେ । ମଧୁବାବୁଙ୍କ ସହିତ ଦେଖାକରିବାକୁ ସେ ତାଙ୍କ କୋଠିକୁ ଗଲେ । ମାନ୍ୟଧର୍ମ ଆଦାନ ପ୍ରଦାନ ପରେ ପଣ୍ଡିତଙ୍କୁ ମଧୁବାବୁ ପଚାରିଲେ, "ପଣ୍ଡିତେ, ଖବର କଣ ?" ପଣ୍ଡିତେ ଉତ୍ତର ଦେଲେ, "ଆଜ୍ଞା, ଆପଣ ତ କେନ୍ଦ୍ର ! ଆମକୁ ବ୍ୟାସାର୍ଦ୍ଧ ଧରି ଆପଣ ଓଡ଼ିଶାରେ ବୃତ୍ତ ଅଙ୍କନ କରୁଅଛନ୍ତି ।" "ଆଚ୍ଛା, କଏ କଏ ବ୍ୟାସାର୍ଦ୍ଧ କହିଲେ ?" ବୋଲି ମଧୁବାବୁ ପଚାରିଲେ । ପଣ୍ଡିତେ ଉତ୍ତର ଦେଲେ, "ପୁରୀର ଜଗବନ୍ଧୁ ସିଂହ, ଏମାରମଠ ମହନ୍ତ ଗଦାଧର ରାମାନୁଜ ଦାସ, ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ, ଭାଗବତ ପ୍ରସାଦ ମହାପାତ୍ର; ଯାଜପୁରର କୃଷ୍ଣପ୍ରସାଦ ସିଂହ; ସମ୍ବଲପୁରର ରାମନାରାୟଣ ମିଶ୍ର, ବାଳୁଙ୍କେଶ୍ୱର ମିଶ୍ର, ଗଞ୍ଜାମର ହରିହର ପଣ୍ଡା ଓ ଶଶିଭୂଷଣ ରଥ, କଟକର ବ୍ରଜସୁନ୍ଦର ଦାସ, ଗୋପାଳଚନ୍ଦ୍ର ପ୍ରହରାଜ ଓ ବିଶ୍ୱନାଥ କର ପ୍ରଭୃତି ।" ଦୁଇବନ୍ଧୁ ହସିଲେ ।

**(୭) "ମୋ କପାଳରେ ପ୍ରଶଂସା ଶୁଣିବା ନାହିଁ"** ମଧୁବାବୁ ଥରେ ଥରେ ଜୁନିଅରମାନଙ୍କ ସହିତ ଖୁସିଗପ କଲାବେଳେ କହୁଥିଲେ, "ଜାଣିଲ, ମୋ କପାଳରେ ପ୍ରଶଂସା ଶୁଣିବା ନାହିଁ । ଯାହାର ଉପକାର କଲି, ସେ ଗାଳି ଦେଲା । ଓଡ଼ିଶାରେ ସ୍ଥାୟୀ ବଙ୍ଗାଳୀମାନେ ତ ଏ ଦେଶର ଅଧିବାସୀ ପରି ସବୁ ସୁବିଧା ଭୋଗ କରୁଛନ୍ତି । ନବାଗତ ଏଠାରେ ଘରଦ୍ୱାର କରି ରହୁଛନ୍ତି । ଏମାନଙ୍କ ଭିତରୁ କେତେଜଣ ଡୋମିସାଇଲ୍ ସାର୍ଟିଫିକେଟ ମୋଠାରୁ ନେଇ ଓଡ଼ିଶାବାସୀଙ୍କ ପରି ସବୁ ସୁବିଧା ଭୋଗ କରୁଛନ୍ତି । ଉଚ୍ଚ ହାକମମାନେ ବଙ୍ଗାଳୀଥିବାରୁ ନବାଗତ ବଙ୍ଗାଳୀମାନେ ସରକାରୀ ଚାକିରି ପାଇଯାଉଛନ୍ତି । ଓଡ଼ିଆମାନେ ଓ ପ୍ରାଚୀନ ବାସିନ୍ଦା ବଙ୍ଗାଳୀମାନେ ବଞ୍ଚିତ ହେଉଛନ୍ତି । ନବାଗତ ବଙ୍ଗାଳୀମାନେ ଏତେ ସୁବିଧା ପାଇ ମଧ୍ୟ ମୋତେ ଦୋଷ ଦେଇ କହୁଛନ୍ତି, "ଯତ କଷ୍ଟୁ ନଷ୍ଟେର ଗୋଡ଼ା ଏଇ ମିଷ୍ଟର୍ ଦାସ୍" (ସବୁ ଅନିଷ୍ଟର ମୂଳ ଏହି ମିଃ ଦାସ) । ଓଡ଼ିଆମାନେ ଗାଳିଦେଇ କହୁଛନ୍ତି, "ଯେ ମାଗଲା ତାକୁ ଡୋମିସାଇଲ ସାର୍ଟିଫିକେଟ ଦେଇ ଓଡ଼ିଆମାନଙ୍କ ଗୋଡ଼ କାଟୁଛି । ଏ ଗୋଟିଏ କୁଳାଙ୍ଗାର । ଏହା ଯୋଗୁଁ ସବୁ ଚାକିରି ବଙ୍ଗାଳୀମାନେ ମାରିନେଲେ ।"

ପୁରୀରେ ଓଡ଼ିଆ ଓକିଲଙ୍କ ସଂଖ୍ୟା ଅଳ୍ପ ଥାଏ । ବଙ୍ଗୀୟ ଓକିଲଙ୍କ ସଂଖ୍ୟା ଖୁବ୍ ବେଶି । ସେମାନେ ଏ ବ୍ୟବସାୟଟାକୁ ଏକଚାଟିଆ କରି ନେଇଥାଆନ୍ତି କହିଲେ ଚଳେ ।

ସର୍ବଶ୍ରୀ ଜଗବନ୍ଧୁ ସିଂହ, ପୀତବାସ ପଟ୍ଟନାୟକ ଓ ରାଧାଶ୍ୟାମ ମହାନ୍ତି ଓକିଲାତି ପାସ କରି କଟକରେ ମଧୁବାବୁଙ୍କର ଜୁନିଅର୍ ହୋଇ କାର୍ଯ୍ୟ ଶିଖିଲେ । ମଧୁବାବୁ ଏମାନଙ୍କୁ କହିଲେ, "ପୁରୀ ଯାଅ । ସେଠାରେ ଓଡ଼ିଆ ଓକିଲ ନାହାନ୍ତି । ତୁମେମାନେ ଓକିଲାତି କର ଓ ତାହା ସହିତ ଦେଶହିତକର କାର୍ଯ୍ୟରେ ମଧ୍ୟ ଯୋଗଦିଅ ।" ସେମାନେ ପୁରୀକୁ ଗିବା ପରେ ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ମଧୁବାବୁ ପୁରୀର ସବୁ ମହନ୍ତମାନଙ୍କୁ କହିଲେ । ଖୋର୍ଦ୍ଧାର ସରବରାକାରମାନଙ୍କୁ ମଧ୍ୟ କହିଲେ । ଏଥିରେ କେତେଜଣ ବଙ୍ଗାଳୀ ଓକିଲ ଚିଡ଼ିଲେ । ବଙ୍ଗଦେଶର ଶାନ୍ତିଶେଖରେଶ୍ୱର ରାୟ ଚୌଧୁରୀ ନାମକ ଜଣେ ବଙ୍ଗାଳୀ ଜମିଦାର ପୁରୀରେ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ବାସ କରୁଥାଆନ୍ତି । ସେ 'ରତ୍ନାକର' ନାମରେ ଏକ ବଙ୍ଗଳାଛପାର କାଗଜ ପ୍ରକାଶ କରି ମଧୁବାବୁଙ୍କୁ ବହୁତ ସମାଲୋଚନା କରିଥିଲେ ।

(୮) **"ମୋଚି ଶିରୋମଣି"** : କଟକ ରେଭେନ୍‌ସା କଲେଜର ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ (ରାୟବାହାଦୁର)ଙ୍କୁ ପୁରୀ ଜଗନ୍ନାଥ ମନ୍ଦିରର ମୁକ୍ତିମଣ୍ଡପ ସଭା 'ବିଦ୍ୟାନିଧି' ଉପାଧି ଦେଇଥିଲେ । ତାଙ୍କୁ ଅଭିବାଦନ ଜଣାଇବା ପାଇଁ ମଧୁବାବୁ ତାଙ୍କ ବସାକୁ ଯାଇଥିଲେ । ମଧୁବାବୁ ଯୋଗେଶବାବୁଙ୍କୁ କୌତୁକରେ କହିଥିଲେ, "ବୁଝିଲେ, ଯୋଗେଶବାବୁ ! ଆପଣ ତ ବିଦ୍ୟାନିଧି ବା ବିଦ୍ୟାସାଗର । ଆପଣଙ୍କୁ ମନ୍ଥନ କଲେ କଣ ମିଳିବ ? ଆପଣଙ୍କର ବୁଦ୍ଧି ଥିବାରୁ ପଣ୍ଡିତମାନେ ଉପାଧି ଦେଲେ । ମୋତେ ବା କି ଉପାଧି ଦେବେ ? ମୁଁ ତ ଏକେ ଖ୍ରୀଷ୍ଟିଆନ, ଦ୍ୱିତୀୟରେ ବିଦ୍ୟାହୀନ । ପୁଣି ସବୁବେଳେ ମୋଚି, ପାଣ ପ୍ରଭୃତିଙ୍କ ସଙ୍ଗେ କାମ କରୁଛି (ନିଜର ଚମଡ଼ା କାରଖାନାକୁ ଲକ୍ଷ୍ୟ କରି ଏହା କହିଥିଲେ) । ଜୋତା ତିଆରିରେ ମୁଁ ବିଶେଷ ଜ୍ଞାନ ଅର୍ଜନ କରିଥିବାରୁ ପଣ୍ଡିତମାନେ ମୋତେ 'ମୋଚି ଶିରୋମଣି' ଉପାଧି ଦେଇପାରନ୍ତି । ଯଦି ବେନାମି ଚିଠି ଲେଖିବାରେ ପାରଙ୍ଗମ ହୁଅନ୍ତି, ତାହାହେଲେ 'ପେଞ୍ଚସାଗର' ଉପାଧି ମିଳିଥାଆନ୍ତା ।" ଦୁଇବନ୍ଧୁ ହସିଲେ ।

(୯) **"ସି. ଆଇ. ଇ. ଉପାଧି"** : ଖ୍ରୀ: ୧୯୦୪ର ନବବର୍ଷ ଦିନ ସରକାର ମଧୁବାବୁଙ୍କୁ 'ସି. ଆଇ. ଇ' ( C. I. E.—Companion of the Indian Empire ) ଉପାଧି ଦେଇଥିଲେ । କଟକର ବହୁ ଭଦ୍ରବ୍ୟକ୍ତି ତାଙ୍କ ଘରକୁ ଯାଇ ତାଙ୍କୁ ସମ୍ବର୍ଦ୍ଧନା କରିଥିଲେ । ମଧୁବାବୁ କୌତୁକରେ ଏହି ଉପାଧିର ବର୍ଣ୍ଣମାନଙ୍କର ଉଚ୍ଚାରଣଗତ ଅର୍ଥ କରି କହୁଥିଲେ "ସରକାର କହୁଛନ୍ତି, I see you—ଅର୍ଥାତ୍ ତୁମକୁ ଆମେ ଦେଖୁଛୁ" । C. (ସି)—See—ଦେଖିବା I. (ଆଇ)—Eye—ଆଖି, E (ଇ) —ye—you—ତୁମେ ବା ତୁମକୁ । ସେ ହସି ହସି କହୁଥିଲେ, "ସରକାର ତ ଆମକୁ ଦେଖୁଛନ୍ତି, ଆମର ଅଉ କଣ ଚିନ୍ତା ଅଛି ?"

(୧୦) **"ବାର ମାସକୁ ତେର ରଜା, ଅଣ୍ଟ ନଅଣ୍ଟକୁ ପଟିଆ ରଜା"**: କଟକ ଜିଲ୍ଲା ପଟିଆର ରାଜା ମଧୁବାବୁଙ୍କର ଜଣେ ମହକିଲ । ମାଲି ମକଦ୍ଦମା ସମ୍ପର୍କରେ ରାଜା ମଧୁବାବୁଙ୍କ ଘରକୁ ଆସନ୍ତି । ମଧୁବାବୁଙ୍କ ଜୋତା କାରଖାନା ପାଇଁ

ବହୁତ ସୁନାଗ ଗ୍ଲୁ ଦରକାର ହୁଏ । ଚମଡ଼ା କଷ କରିବା ପାଇଁ ସୁନାଗ ଗ୍ଲୁ ବ୍ୟବହୃତ ହୁଏ । ପଟିଆ ଜମିଦାରୀ ଭିତରେ ଓ ନିକଟରେ ବହୁ ଜଙ୍ଗଲ ଅଛି । ଏହି ଜଙ୍ଗଲମାନଙ୍କରୁ ବହୁ ସୁନାଗ ଗ୍ଲୁ ସଂଗୃହୀତ ହୋଇ କାରଖାନାକୁ ଆସେ । ପଟିଆ ରାଜା ନିଜେ ଏ ଦିଗରେ ମଧୁବାବୁଙ୍କୁ ବହୁତ ସାହାଯ୍ୟ କରୁଥିଲେ । ଥରେ କୌଣସି କାରଣରୁ ପଟିଆ ଜଙ୍ଗଲରୁ ବେଶି ପରିମାଣରେ ଗ୍ଲୁ ଆସିପାରିଲା ନାହିଁ । ପଟିଆର ଦେୱାନଙ୍କ ସହିତ ଦେଖା ହେବାରୁ ମଧୁବାବୁ କହିଲେ, "ଆମେ ତ ସବୁବେଳେ ରାଜାଙ୍କୁ ଆମର ଜଣେ ପ୍ରଧାନ ସମର୍ଥକ ଓ କର୍ମୀ ବୋଲି ଭାବୁଛୁ । ଆପଣଙ୍କୁ ଆଉ ଟିକିଏ ଅଧିକ ଦୃଷ୍ଟି ଦେବାକୁ ପଡ଼ିବ ।" ଏହା କହି ହସି ହସି ମଧୁବାବୁ ଢଗ ମେଲିଲେ—

"ବାର ମାସକୁ ତେର ରଜା, ଅଣ୍ଟ ନଅଣ୍ଟକୁ ପଟିଆ ରଜା ।"

**(୧୧) "ତଳେ କଅାଁ ଉପରେ କଅାଁ, ମଝିରେ ବସିଛି ବୁଢ଼ାମିଅାଁ":** ଖ୍ରୀ: ୧୯୦୩ରେ କଟକରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଥିଲା । ମହାନଦୀ କୂଳ ନିକଟରେ ଥିବା ଇଦ୍‌ଗା ପଡ଼ିଆ ନାମକ ବିରାଟ ପଡ଼ିଆରେ ସଭାମଣ୍ଡପ ନିର୍ମିତ ହୋଇଥିଲା । ସେ ସ୍ଥାନଟି ମଧୁବାବୁ କିଣିଥିଲେ । ସମ୍ମିଳନୀ ଅତି ଜାକଜମକରେ ହୋଇଥିଲା । ଏଥିପାଇଁ ବହୁ ସ୍ୱେଚ୍ଛାସେବକ ମଧ୍ୟ ଟ୍ରେନିଂ ପାଇଥିଲେ । ଅଧିବେଶନ ପୂର୍ବରୁ ଏକାଧିକ ଛୋଟ ଛୋଟ ବୈଠକ ବସି ବିଭିନ୍ନ ପ୍ରସଙ୍ଗରେ ଆଲୋଚନା ହେଉଥିଲା । ମଧୁବାବୁ ସବୁ ବିଷୟରେ ଦୃଷ୍ଟି ରଖୁଥିଲେ । ଦେଶମିଶ୍ରଣର ବିଚାର ଆଲୋଚନାମାନଙ୍କର ମୁଖ୍ୟ ବିଷୟବସ୍ତୁ ଥିଲା । ଥରେ ଥରେ ଯୁବକ, ବୃଦ୍ଧ, ସବୁ ଶ୍ରେଣୀର ନେତା, ରାଜାମହାରାଜା, ସ୍ୱେଚ୍ଛାସେବକ, ପ୍ରତିନିଧି ପ୍ରଭୃତିଙ୍କର ଆଲୋଚନା ସଭାରେ ପଡ଼ୋଶୀ ରାଜ୍ୟମାନଙ୍କରେ ସରକାରମାନେ କିପରି ଦେଶମିଶ୍ରଣର ବିରୋଧ କରୁଛନ୍ତି ତାହା ଆଲୋଚିତ ହେଉଥିଲା । ବେଳେବେଳେ ଉପାନ୍ତ ଅଞ୍ଚଳର ପ୍ରତିନିଧିମାନେ ନିରୁତ୍ସାହିତ ହୋଇପଡ଼ୁଥିବା ଦେଖାଯାଉଥିଲା । ମଧୁବାବୁ ସବୁବେଳେ ନିର୍ଭୟ ବାଣୀ ଶୁଣାଉଥିଲେ ଏବଂ ସର୍ବୋଚ୍ଚ ତ୍ୟାଗ ପାଇଁ ପ୍ରସ୍ତୁତ ହେବାକୁ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଉଥିଲେ । ସେ କହୁଥିଲେ, "ବିରୁଦ୍ଧବାଦୀ ପଡ଼ୋଶୀମାନେ ଯେତେ ଷଡ଼ଯନ୍ତ୍ର କଲେ ମଧ୍ୟ ଆମର ଉଦ୍ୟମକୁ ପଣ୍ଡ କରିଦେଇ ପାରିବେ ନାହିଁ ।" ଥରେ ଏପରି ଅବସ୍ଥାରେ ସେ ଉତ୍ସାହ ସହକାରେ ହସି ହସି କହିଥିଲେ, "ଆମର କେହି କିଛି ଅନିଷ୍ଟ କରିପାରିବେ ନାହିଁ ।" ସେ ଢଗଟିଏ ବୋଲି ତାଙ୍କ କଥାକୁ ସରସ ଓ ବଳିଷ୍ଠ କରିଥିଲେ—ତଳେ କଅାଁ, ଉପରେ କଅାଁ, ମଝିରେ ବସିଛି ବୁଢ଼ା ମିଅାଁ । ଉପରେ କଅାଁ ଜଳୁଛି, ତଳେ କଅାଁ ଜଳୁଛି । ବୁଢ଼ାମିଅାଁ ମଝିରେ ବସିଛି; କିନ୍ତୁ ବୁଢ଼ା ମିଅାଁର କିଛି କ୍ଷତି ହେବନାହିଁ । ଓଡ଼ିଶାବାସୀ ହିଁ ବୁଢ଼ା ମିଅାଁ । ଓଡ଼ିଶାର ନେତା ମଧୁବାବୁ ମଧ୍ୟ ବୁଢ଼ା ମିଅାଁ ରୂପେ ଆବିର୍ଭୂତ ହୋଇଥିଲେ ।

ଏହି ପ୍ରସଙ୍ଗରେ ସେ ପୁଣି ଅନ୍ୟ ଏକ ଢଗ ମେଲୁଥିଲେ :

"ଏ ମୁଣ୍ଡ ଡାକଇ    ସେ ମୁଣ୍ଡ ଡାକଇ
ମଝିରେ ହୋଇଛୁ ଠିଆ,
ମୁଁ ସେହି ଗାଁଚଉକିଆ ।"

ମଧୁବାବୁ ହିଁ ଉତ୍କଳ-ଗାଁର ଚଉକିଆ, ଏଥିରେ ସନ୍ଦେହ ନାହିଁ । ଚଉକିଆ ପରି ସମସ୍ତେ ଜାଗ୍ରତ ରହିବାକୁ ହେବ, ଏହାହିଁ ମଧୁବାବୁଙ୍କର କହିବାର ତାତ୍ପର୍ଯ୍ୟ ଥିଲା ।

**(୧୬) "ସମସ୍ତେ ତ ଘୋଡ଼ା ଚଢ଼ିବେ, ଘାସ କାଟିବ କିଏ ?":** କଟକ ସହର ବକ୍ସିବଜାରର ଜଣେ ଯୁବକଙ୍କ କଥା । ସେ ଏବେ ଓଡ଼ିଶା ସରକାରଙ୍କ ପଲିଟିକାଲ୍ ବିଭାଗର ଚାକିରିରୁ ଅବସର ଗ୍ରହଣ କରିଛନ୍ତି । ବେଶ୍ ମେଳାପୀ ଲୋକ । ନାନା ଅସୁବିଧା ଭିତରେ ପଡ଼ି ଅଳ୍ପ ବୟସରେ ଉଚ୍ଚଶିକ୍ଷାଲାଭ ବନ୍ଦକରି ଚାକିରି ଆଡ଼େ ଧ୍ୟାନ ଦେଲେ । ସେ ଜଣେ ଭଲ ଫୋଟ୍‌ବଲ୍ ଖେଳୁଅଡ଼ି ହିସାବରେ ନାମ କରିଥିଲେ । ଚାକିରି କରିବାକୁ ସଂକଳ୍ପ କରିବା ପରେ କେତେ ଜାଗାକୁ ଗଲେ, କେତେ ଲୋକଙ୍କୁ କୁହାସୁଣା କଲେ । ଏହା ପ୍ରଥମ ବିଶ୍ୱଯୁଦ୍ଧ ସମୟର କଥା । ଯୁବକ ଦିନେ ମଧୁବାବୁଙ୍କ ଘରକୁ ଯାଇ ତାଙ୍କ ସହିତ ଦେଖାକଲେ ଏବଂ ନିଜର ଦୁଃଖ କଥା କହିଲେ ଓ ଜଣେ ଉଚ୍ଚ ସରକାରୀ ଅଫିସରଙ୍କଠାକୁ ଖଣ୍ଡିଏ ଚିଠି ଦେଲେ, ସେ ନିଶ୍ଚୟ ଚାକିରି ପାଇଯିବେ ବୋଲି ମଧ୍ୟ କହିଲେ । ମଧୁବାବୁ ସବୁ ବିଷୟ ବୁଝିସାରି ଶେଷରେ କହିଲେ, "ସମସ୍ତେ ତ ଘୋଡ଼ା ଚଢ଼ିବେ, ଘାସ କାଟିବ କିଏ ?" ଯୁବକ ଏ କଥା ଶୁଣି ଅବାକ୍ । ସେ ନମସ୍କାର କରି ବିଦାୟ ନେଲେ ।

ଭଦ୍ରବ୍ୟକ୍ତିଙ୍କ ମନରେ ଜିଦ୍ ଭାବ ଆସିଲା । ସେ ଉଚ୍ଚଶିକ୍ଷା ଲାଭ କରିବା ନିମନ୍ତେ ଦୃଢ଼-ସଂକଳ୍ପ କଲେ । ପ୍ରଥମ ବିଶ୍ୱଯୁଦ୍ଧରେ ସେ ଜଣେ ଅଫିସରରୂପେ ପଶିଲେ । ୟୁରୋପର ବହୁସ୍ଥାନ ଭ୍ରମଣ କରିବାର ସୁଯୋଗ ମଧ୍ୟ ପାଇଥିଲେ । ମଧ୍ୟପ୍ରାଚ୍ୟରେ ଥିବା ସମୟରେ ସେ ଜଣେ ଆରମେନିଆନ୍ ମହିଳାଙ୍କୁ ବିବାହ କଲେ । ଯୁଦ୍ଧ ଶେଷ ହେବା ପରେ ଭାରତକୁ ଫେରିଲେ । ସରକାର ତାଙ୍କୁ ବିହାର ପ୍ରଦେଶର ପାଟନାଠାରେ ବୈଦେଶିକ ବିଭାଗରେ ଜଣେ କର୍ମଚାରୀରୂପେ ନିଯୁକ୍ତ କଲେ । ସେ ପାଟନାରେ ରହି କ୍ରମେ ଉନ୍ନତି ଲାଭକଲେ । ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ସେଠାରୁ ଓଡ଼ିଶା ସରକାରଙ୍କ ଅଧୀନକୁ ଆସି ସେକ୍ରେଟେରିଏଟ୍‌ରେ କାମ କଲେ ।

ଯୁବକ ପାଟନାରେ ଚାକିରି କରୁଥିବାବେଳେ ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ମନ୍ତ୍ରୀ ହେଲେ । କାର୍ଯ୍ୟ ଉପଲକ୍ଷରେ ମନ୍ତ୍ରୀ ମାନ୍ୟବର ମି: ଦାସଙ୍କଠାକୁ ଯୁବକଙ୍କୁ ଯିବାକୁ ପଡ଼ୁଥିଲା । ପ୍ରଥମ ଥର ଯୁବକ ମଧୁବାବୁଙ୍କ ସଙ୍ଗେ ଓଡ଼ିଆରେ କଥାବାର୍ତ୍ତା କରିବାକୁ

ତାଙ୍କର କୌତୂହଳ ବୃଦ୍ଧି ପାଇଲା । ମଧୁବାବୁ ତାଙ୍କର ପରିଚୟ ମାଗିବାରୁ ସେ ନିଜ ଜୀବନର ସମସ୍ତ ଘଟଣା ବର୍ଣ୍ଣନା କରିସାରି, ସେ କଟକର ଅଧିବାସୀ ଥିବା ଜଣାଇଲେ । କିଛି ଦୁଃଖସୁଖ ପରେ ଯୁବକ କହିଲେ, "ମୁଁ ଆଜି କଟକର ଜଣଙ୍କ ଯୋଗୁ ମଣିଷ ହୋଇଛି ।" ଏତିକି କହି ମଧୁବାବୁଙ୍କ ନାମ ବ୍ୟକ୍ତ ନ କରି "ସମସ୍ତେ ତ ଘୋଡ଼ା ଚଢ଼ିବେ, ଘାସ କାଟିବ କିଏ" ଏହି ଚଗ କଥାଟି କହିଲେ । ସେତେବେଳେ ପର୍ଯ୍ୟନ୍ତ ମଧୁବାବୁଙ୍କ ପୂର୍ବ ପ୍ରସଙ୍ଗ ମନେ ପଡ଼ୁନଥିଲା । ମଧୁବାବୁ କୌତୂହଳରେ ପଚାରିଲେ, "ସେ ଲୋକଟି କିଏ ?" ଯୁବକ ପ୍ରଥମେ ନାମ ପ୍ରକାଶ କରିବାକୁ ଅମଙ୍ଗ ହେବାରୁ ମଧୁବାବୁ ନାମ ପ୍ରକାଶ କରିବାକୁ ତାଙ୍କୁ ଅନୁରୋଧ କଲେ । ଯୁବକ ହସି ହସି କହିଲେ, "ସେ ଲୋକଟି ମିଃ ମଧୁସୂଦନ ଦାସ ।" ମଧୁବାବୁ ଏକଥା ଶୁଣି ଆନନ୍ଦ ଉପଭୋଗ କଲେ ଏବଂ ଭଦ୍ରବ୍ୟକ୍ତିଙ୍କୁ ଆଲିଙ୍ଗନ କରି ତାଙ୍କର ଦୀର୍ଘଜୀବନ ଏବଂ ଉନ୍ନତି କାମନା କଲେ ।

**(୯୩) "ପଠୋପନାସ୍ତି ପଟିଆ"** : ମଧୁବାବୁ କଟକ ଜିଲ୍ଲାବୋର୍ଡ଼ର ଭାଇସ୍‌ଚେୟାରମ୍ୟାନ ଥିଲାବେଳେ ପଟିଆର ପ୍ରାଥମିକ ବିଦ୍ୟାଳୟ ଦେଖିଥିଲେ । ସେଠାରେ ଛାତ୍ରସଂଖ୍ୟା ନିତାନ୍ତ ଅସନ୍ତୋଷଜନକ ଥିଲା । ସ୍ଥାନୀୟ ସ୍କୁଲର ପଣ୍ଡିତ କୌତୁକରେ ଉଦ୍‌ଭଟ ଶ୍ଳୋକଟିଏ ବୋଲି ମଧୁବାବୁଙ୍କୁ ଶୁଣାଇଲେ—

ପଠୋପନାସ୍ତି ପଟିଆ ଗୋଡ଼ ଟାଙ୍ଗଣ ମୃତ୍ତିକା,
କଠାଏ ତଣ୍ଡୁଲ ନାସ୍ତି, ସଙ୍ଗୀତେ ପରିପୂରିତା ।

ପଟିଆ ଟାଙ୍ଗରା ସ୍ଥାନ, ଭଲ କୃଷି ହୁଏ ନାହିଁ । ଏହି କାରଣରୁ ଲୋକଙ୍କ ଅବସ୍ଥା ମଧ ସେତେ ଭଲନଥାଏ । ପଣ୍ଡିତଙ୍କୁ ଗୃହଲାଗଣ୍ଡେ ମଧ ସୁବିଧାରେ ମିଳେନାହିଁ । ରାଜାଙ୍କ ସାହାଯ୍ୟ ଅଭାବ ପୂରଣ କରେ । ଏହି ଆର୍ଥିକ ଦୁରବସ୍ଥାକୁ ଲକ୍ଷ୍ୟକରି ପଣ୍ଡିତେ କୌତୁକରେ ଏ ଶ୍ଳୋକଟି ବୋଲିଥିଲେ । ପିଲମାନେ ମଧ ବହୁ ଦିନ ପର୍ଯ୍ୟନ୍ତ ଏହି ଉଦ୍‌ଭଟ ଶ୍ଳୋକଟି କୌତୁକରେ ଦାଣ୍ଡରେ ନିଜ ନିଜ ଭିତରେ ବୋଲୁଥାନ୍ତି ।

**(୯୪) "ଦାଢ଼ି ରଖିବା କାରଣ;'ମୁଁ ଯେ ମଧୁକୁ ସେ ମଧୁ'"**: ମଧୁବାବୁ ପ୍ରଥମେ ନିଶ ରଖିଥିଲେ । ବୟସ ବେଶୀ ହେବାରୁ ଦାଢ଼ି ରଖିଲେ । କେହି କେହି ବନ୍ଧୁ ତାଙ୍କୁ କୌତୁକରେ ପଚାରନ୍ତି, "ଆପଣ କାହିଁକି ଦାଢ଼ି ରଖିଛନ୍ତି ?" ମଧୁବାବୁ ଥରେ ହସି ହସି କହିଥିଲେ, "ମୁଁ ତ ଆଗରୁ ଦାଢ଼ି ରଖୁନଥିଲି । ବୃଦ୍ଧ ହୋଇଯିବାରୁ ଦାଢ଼ି ରଖିବାକୁ ବାଧ ହେଲି । ଖିଅର ହେଲେ କାଟିଲି, ଆଖିଶକ୍ତି କମିଗଲା ।" ପୁଣି କହିଲେ, "କେତେ ଲୋକ ମାନସିକ କରି ଦାଢ଼ି ରଖନ୍ତି; ଦାଢ଼ି ତାଙ୍କୁ ତାଙ୍କର ସଂକଳ୍ପ କଥା ମନେ ପକେଇ ଦିଏ । ଲକ୍ଷ୍ୟସିଦ୍ଧି ପାଇଁ ସଂକଳ୍ପ ଦୃଢ଼ ରହେ ଏବଂ ସେ ଲକ୍ଷ୍ୟରେ ପହଞ୍ଚିବା ପାଇଁ କର୍ମନିଷ୍ଠା ମଧ ରହେ । ମୋର ତ ସଂକଳ୍ପ ନାହିଁ କି ଲକ୍ଷ୍ୟ ହାସଲ ପାଇଁ କାର୍ଯ୍ୟପନ୍ଥା ନାହିଁ; ଏ ଗୋଷ୍ଠୀ ଭିତରେ ମୁଁ ପଡ଼ୁନାହିଁ । ମୁଁ ଯେ ମଧୁକୁ ସେ ମଧୁ ।"

(୧୫) **"ଶିକ୍ଷାର୍ଥୀଙ୍କ ନିର୍ବାଚନ"** : ଖ୍ରୀ: ୧୮୯୯-୧୯୦୦ରେ ବଙ୍ଗ-ବିହାର-ଓଡ଼ିଶା ସରକାର କେତେ ଜଣ କୃତୀ ଛାତ୍ରଙ୍କୁ ବୃତ୍ତି ଦେଇ ଜାପାନ ପଠାଇବା ସ୍ଥିର କରିଥିଲେ । ଓଡ଼ିଶାରୁ ମଧ୍ୟ ପ୍ରାର୍ଥୀ ଦରଖାସ୍ତ କଲେ । ଓଡ଼ିଆ ଛାତ୍ରମାନଙ୍କୁ ପରୀକ୍ଷା କରି ନିର୍ବାଚନ କରିବା ପାଇଁ ମଧୁବାବୁଙ୍କ ଉପରେ ସରକାର ଭାର ଅର୍ପଣ କରିଥିଲେ । ପରୀକ୍ଷାର୍ଥୀଙ୍କ ଭିତରେ ହରିହର ଦାଶ (ଆଚାର୍ଯ୍ୟ) ଜଣେ ପ୍ରାର୍ଥୀ ଥିଲେ । ସେତେବେଳକୁ ସେ ଏଫ୍. ଏ. (ଆଇ. ଏ.) ପାସ୍ କରିସାରିଥିଲେ । ମଧୁବାବୁ ପରୀକ୍ଷା କରିବା ସମୟରେ ଆଚାର୍ଯ୍ୟଙ୍କଠାରୁ ଯେଉଁ ଉତ୍ତର ପାଇଥିଲେ, ତାହା ଯେପରି କୌତୁକପୂର୍ଣ୍ଣ, ସେହିପରି ମାର୍ମଗର୍ଭକ ।

ଦିନ ୧୦ଟାରେ ହରିହର ଦାଶ ମି: ଦାସଙ୍କ ଘରେ ପହଞ୍ଚିଲେ । ଇଂରେଜୀରେ ପ୍ରଶ୍ନ ହେଲା, "ତୁମେ ଜାପାନ ଯିବାକୁ ଦରଖାସ୍ତ କରିଛ ?" ହରିହର ଉତ୍ତର ଦେଲେ, 'ହଁ ।' ତାଙ୍କ କଲେଜ ସାର୍ଟିଫିକେଟ ଓ ଅନ୍ୟାନ୍ୟ ପରିଚୟ ପତ୍ରଗୁଡ଼ିକ ମି: ଦାସ ଦେଖିଲେ । ଶେଷରେ ପଚାରିଲେ—"ତୁମର ଚରିତ୍ର (କ୍ୟାରେକ୍ଟର) ସାର୍ଟିଫିକେଟ କାହିଁ ?" ହରିହର ମନକୁ ମନ କହିଲେ, "ମୁଁ ଭଲ କି ମନ୍ଦ, ଅନ୍ୟର ଏ କଥା କହିବାର କଣ ଅଛି ?" ତହୁଁ ନିଃସଙ୍କୋଚରେ ସେ ଜବାବ ଦେଲେ, "ମୋ ଚରିତ୍ର ସିନା ମୁଁ ଜାଣେ, ଅନ୍ୟ ଜଣେ ଜାଣିବ କିପରି ? ଏଥିପାଇଁ ଚରିତ୍ର ପ୍ରଶଂସାପତ୍ର ଆବଶ୍ୟକ ମନେ କରିନାହିଁ ।" ମଧୁବାବୁ ହରିହରଙ୍କ ଉତ୍ତରରେ ଖୁସି ହେଲେ । ଗୁଣୀ ଗୁଣ ଚିହ୍ନେ । ହରିବାବୁ ନିର୍ବାଚିତ ହେଲେ; କିନ୍ତୁ ସ୍ୱାସ୍ଥ୍ୟଦୃଷ୍ଟିରୁ ସେ ଜାପାନ ଯିବାକୁ ଅନୁପଯୁକ୍ତ ବିବେଚିତ ହୋଇଥିଲେ ।

(୧୬) **"ତୁମେ ବେହିସିଆରୀ ହେଲେ ମୋର ମାନ ରହିବ ନାହିଁ"**: ସେ ପ୍ରାୟ ୪୦-୪୫ ବର୍ଷ ତଳର କଥା । ଜଣେ ଯୁବକ ଉକିଲ ମଧୁବାବୁଙ୍କର ଜୁନିଅର୍ ହୋଇଥାଆନ୍ତି । ମଧୁବାବୁ ଚଡ଼ା ପ୍ରକୃତିର ଲୋକ ବୋଲି ତାଙ୍କ ପାଖରେ କାମ କରିବାକୁ କେହି ଜୁନିଅର୍ ଉକିଲ ସାହସ କରୁନଥିଲେ । ଟିକିଏ ବେହିସିଆରୀ ଦେଖିଲେ ସେ ରାଗିଯାଆନ୍ତି; ଥରେ ଥରେ ଖରାପ ବ୍ୟବହାର ମଧ୍ୟ କରନ୍ତି । ଥରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ କୋର୍ଟରେ ଏକ ମକଦ୍ଦମାରେ ଏହି ନୂତନ ଜୁନିଅର୍ ମଧୁବାବୁଙ୍କ ସାଙ୍ଗରେ ଥାଆନ୍ତି । ଶୁଣାଣି ପୂର୍ବଦିନ ରାତିରେ ମଧୁବାବୁ ଏହି ମକଦ୍ଦମାର କାଗଜପତ୍ର ଦେଖିବାବେଳେ କେତେକ ଆଇନ୍ ବହିରୁ ନଜିର ଦେଖାଇବାକୁ ସ୍ଥିର କରି ଜୁନିଅରଙ୍କୁ କହିଲେ, "ଆଇନ୍ ବହିରେ କାଗଜ ଟୁକୁରା ଦାଗ ଦେଇ ସଜାଡ଼ି ରଖ । ସୁଆଲ ଜବାବ ବେଳେ ମୋତେ ବହିଗୁଡ଼ିକ ଖୋଲି ଦେଖାଇଦେବ ।" ସୁଆଲ ଜବାବ ବେଳେ ମଧୁବାବୁ ଜୁନିଅର୍ଙ୍କୁ ବହିର ଦାଗଥିବା ଅଂଶ ବାହାର କରିବାକୁ କହିଲେ । ଜୁନିଅର ବହି ଦେଲାବେଳେ ନଜିର ପୃଷ୍ଠା ଭୁଲ୍ କରି ଦେଖାଇଲେ । ମଧୁବାବୁ ଭୁଲ ପୃଷ୍ଠା ଦେଖି ରାଗିଗଲେ ଓ ନିଜେ ବହି ଦେଖି ଠିକ୍ ଅଂଶଟି ବାହାର କରି ହାକିମଙ୍କୁ ଦେଖାଇଲେ ।

ତା ପରେ ସେ ରାଗରେ ସେଇ ମୋଟା ଆଇନ୍ ବହିଟି ଜୋର୍‌ରେ ଜୁନିଅର୍‌ଙ୍କ ମୁହଁ ଉପରକୁ ଫୋପାଡ଼ି ଦେଲେ । ଏ ମାଡ଼ରେ ଜୁନିଅର୍‌ଙ୍କ ମୁହଁ ଟିକିଏ ଫୁଲିଗଲା । ହାକିମ ଓ ଅନ୍ୟ ଓକିଲମାନଙ୍କ ଆଗରେ ମଧୁବାବୁ ଏପରି ବ୍ୟବହାର କରିବାରୁ ଜୁନିଅର୍ ମନରେ କଷ୍ଟ କଲେ । ପରଦିନ ମଧୁବାବୁ ତାଙ୍କୁ ଦେଖି କହିଲେ, "ଦୁଃଖ କରୁଛ କି ? ମୁଁ ତୁମର ଭଲପାଇଁ ଏପରି କଲି । ମୁଁ ଯଦି ଭୁଲ୍ ନଜର ଦେଇଥାନ୍ତି, ତାହାହେଲେ ହାକିମ କଣ କହନ୍ତେ ? ମୋତେ ବେହୁସିଆର୍ ଲୋକ ବୋଲି ସିନା କହନ୍ତେ ? ମୋର ମାନ ବା କେଉଁଠି ରହନ୍ତା ? କର୍ତ୍ତବ୍ୟରେ ଅବହେଳା ହେଲେ ସେ ରାଗିଯାଆନ୍ତି ବୋଲି ମଧୁବାବୁ ତାଙ୍କୁ କହିଲେ । ସେ ପୁଣି ଉପଦେଶ ଦେଇ କହିଲେ, "ଯୁବକମାନେ ଯଦି ଏପରି ବେହୁସିଆର କାମ କରିବେ, ତେବେ କମିତି କାମ ତୁଲାଇବ ? ତୁମେ ବା କଣ ଶିଖିବ ?" ମଧୁବାବୁ ଚଡ଼ାପ୍ରକୃତିର ଲୋକ ଓ କ୍ଷଣକୋପୀ ଥିବା ଜୁନିଅର୍ ବାବୁ ଶୁଣିଥିଲେ । ପ୍ରତ୍ୟକ୍ଷରେ ତାହା ପ୍ରମାଣ ପାଇ ଭବିଷ୍ୟତରେ ହୁସିଆର୍ ହୋଇଗଲେ । ଏହାଦ୍ୱାରା ତାଙ୍କର ଓକିଲତିରେ ଉନ୍ନତି ହୋଇଥିଲା ।

(୧୬) **"ଆମ୍ବ ଗଛରେ ମାଙ୍କଡ଼"** : ଅସହଯୋଗ ଆନ୍ଦୋଳନ ଆରମ୍ଭ ବେଳର କଥା । ମହାତ୍ମା ଗାନ୍ଧିଙ୍କ ନେତୃତ୍ୱକୁ କଂଗ୍ରେସ ମାନିନେଇ ଅସହଯୋଗ ଆନ୍ଦୋଳନ କରିବା ସ୍ଥିର କଲା । ଓଡ଼ିଶାରେ ଏହି ଆନ୍ଦୋଳନର ଯଦି ମଧୁବାବୁ ନେତୃତ୍ୱ ନିଅନ୍ତି, ତାହାହେଲେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ତୀବ୍ର ହେବା ସଙ୍ଗେ ସଙ୍ଗେ ସମଗ୍ର ଭାରତବର୍ଷରେ ମଧ୍ୟ ଓଡ଼ିଶାର ମର୍ଯ୍ୟାଦା ବୃଦ୍ଧି ପାଇବ, ଏହି ଧାରଣାରେ ସେତେବେଳର ମୁଷ୍ଟିମେୟ କଂଗ୍ରେସ-ପ୍ରେମୀ ଯୁବକନେତା ମଧୁବାବୁଙ୍କୁ କଂଗ୍ରେସରେ ଯୋଗ ଦେବାପାଇଁ କହୁଥିଲେ । ଦିନେ ଶ୍ରୀ ଯଦୁମଣି ମଙ୍ଗରାଜ ମଧୁବାବୁଙ୍କ ସହିତ ଦେଖାକରି କଂଗ୍ରେସରେ ଯୋଗ ଦେବାପାଇଁ ତାଙ୍କୁ ଅନୁରୋଧ କଲେ । ପୂର୍ବରୁ ଯଦୁମଣି ବାବୁଙ୍କ ସହ ମଧୁବାବୁଙ୍କର ଘନିଷ୍ଠତା ଥିଲା । ମଙ୍ଗରାଜଙ୍କୁ ମଧୁବାବୁ 'କେନ୍ଦ୍ରାପଡ଼ା ରଜା' ଓ 'ମଙ୍ଗରାଜେ' ବୋଲି ସ୍ନେହରେ ସମ୍ବୋଧନ କରୁଥିଲେ । ସେହିଦିନ ମଧ୍ୟ 'କେନ୍ଦ୍ରାପଡ଼ା ରଜା' ବୋଲି ତାଙ୍କୁ ସମ୍ବୋଧନ କରି କହିଲେ, "ଦେଖ, ଆମ୍ବ ଗଛରେ ଫଳ ପାଚିଛି । ମାଙ୍କଡ଼ ଆମ୍ବ ଗଛରେ ବସି ଆମ୍ବ ଖାଉଛି । ତଳେ ତୁମେ ଠିଆହୋଇ ହାତଯୋଡ଼ି ତାକୁ କହିବ, 'ହେ ରାମଭକ୍ତ ! ମୋ ଗଛର ଆମ୍ବଗୁଡ଼ିକ କାହିଁକି ନଷ୍ଟକରୁଛ ? ଦୟାକରି ମୋ ଗଛରୁ ବାହାରିଯାଅ ।' ଏଥିରେ କଣ ମାଙ୍କଡ଼ ଚାଲିଯିବ ? ମାଙ୍କଡ଼କୁ ବାଡ଼ିଖଡ଼ା ନ ଦେଖାଇବା ପର୍ଯ୍ୟନ୍ତ ସେ କଣ ଯିବ ? ତୁମର ବଳ କାହିଁ ? ଆମେ ହାତ ଯୋଡ଼ି 'ହେ ବ୍ରିଟିଶ୍, ତୁମେ ଭାରତ ଛାଡ଼ି ଚାଲିଯାଅ' ବୋଲି କହିଲେ କଣ ସେ ଚାଲିଯିବେ ? ତୁମେ ବ୍ରିଟିଶଙ୍କ ପ୍ରକୃତି ଜାଣନାହିଁ । ଏ କଥାରେ ସେ ଭୁଲିବା ବ୍ୟକ୍ତି ନୁହନ୍ତି । ଏଭଳି ଆନ୍ଦୋଳନ ସଫଳ ହେବନାହିଁ । ମୁଁ ଏଥିରେ ଯୋଗଦେବି କାହିଁକି ?" ମଙ୍ଗରାଜେ ସହଜେ ଛାଡ଼ିବା ବ୍ୟକ୍ତି ନୁହନ୍ତି । ସେ ବହୁ ଯୁକ୍ତିତର୍କ କଲେ ସିନା, କିଛି ଫଳ ହେଲାନାହିଁ ।

(୧୮) **"ବନାର କଟକବାପା"** : ବନାର ଘର ମଫସଲରେ । ହାଲେ ପିତା ମରିଯିବାରୁ ଘର ଚଳିବାକୁ କଷ୍ଟହେଲା । ବାପ ମଲାଦିନୁ କୁଟୁମ୍ବର ଅବସ୍ଥା କହିଲେ ନସରେ । ରୋଜଗାରିଆ ଚାଲିଯିବାରୁ ସମସ୍ତଙ୍କ ବଳ ଭାଙ୍ଗିଗଲା । କୁଟୁମ୍ବ ଓଳିଏ ଖାଇଲେ ତ ଓଳିଏ ଉପାସ ରହିଲେ । ପିଲାଟିମାନଙ୍କର ନାକଦଣ୍ଡାରେ ପ୍ରାଣ ରହିଲାଣି; ଫୁଙ୍କିଦେଲେ ପଡ଼ିଯିବେ । ମା'କଥା ତ ଗୁଡ଼, ଅଧା ହାନ ଅବସ୍ଥା ହେଲାଣି । ପିନ୍ଧିବାକୁ ଖଣ୍ଡେ ଲୁଗା ନାହିଁ କି ଖଣ୍ଡେ ଭଲ କନା ମଧ୍ୟ ନାହିଁ । ବହୁକଷ୍ଟରେ ପେଜ ତୋରାଣି କରି ମୁଠାଏ ଲେଖେ ପିଲାଙ୍କୁ ଦେଉଛି, ବଳିଲେ ଖାଉଛି, ନହେଲେ ଓପାସ ରହୁଛି । ଏମିତି ବା କେତେ ଦିନ ଚଳିବ ! ବନ୍ଧୁବାନ୍ଧବ, ସାଇପଡ଼ିଶା ଯେ ଯାହା ପାରିଲେ ସାହାଯ୍ୟ କଲେ । ମାସେ ପକ୍ଷେ ଗଲା ପରେ ନିଜ ବାଟକୁ କଣ୍ଟି ପଛେଇଲେ । କୁଟୁମ୍ବଟି ଏକାବେଳକେ ଅନାଥ ହୋଇଗଲେ ।

ବନା ଦଶ ବାର ବର୍ଷର ପିଲା । ବାପ ସାଙ୍ଗରେ ବିଲକୁ ଯାଉଥିଲା; ଯାହା ପାରୁଥିଲା ସେତିକି କରୁଥିଲା । ବାପାର ଖଟଣି ମଧ୍ୟ ଟିକିଏ କମିଯାଉଥିଲା । ବାପ ମରିଯିବା ପରେ ସେ ଏବେ ଘରର ଚିନ୍ତା ଦେଖୁଛି । ବାପ କପରି ମୁଣ୍ଡର ଝାଳ ତୁଣ୍ଡରେ ମାରି ଧାନ ମୁଗ ଗଣ୍ଡେ ସଂଗ୍ରହ କରୁଥିଲା । ସେ ତାହା ଜାଣିଥିଲା । ତେବେ ଭବିଷ୍ୟତ୍ ଅବସ୍ଥାର ଶୋଚନୀୟ ଚିତ୍ର ତାହାର ବାଳକପ୍ରାଣକୁ ଦୋହଲାଇ ଦେଉଥିଲା । ସବା ସାନଭାଇ ହରିଆ ତ ବର୍ଷକର ପିଲା । ସେ ଯଦି ଦୁଧ ଟୋପାଏ ନ ପିଇବ, ତାହାହେଲେ କିମିତି ବଞ୍ଚିବ ? ଗ୍ରାମ ବେହେରା ତ ପଇସାଟିଏ ଦେଲେ ଟୋପାଏ ଦୁଧ ଦେଉଛି, ଏବେ ପଇସା ଆସିବ କୁଆଡ଼ୁ, ଯେ ପିଲାଟି ଦୁଧ ପିଇବ । ଗୋବିନ୍ଦଦାସୀର କଣ୍ଠରେ ସମ୍ବେଦନା ବଳେ ହେଲେ ବୋଲି ସେ ଏ ସାତଆଠ ଦିନ ହେଲା ଗିନାଏ ଲେଖେ ଦୁଧ ଦେଉଛନ୍ତି । ସେତକ ପିଇ ସିନା ହରିଆ ବଞ୍ଚିଛି । ଅନ୍ୟମାନଙ୍କର ଚିତ୍ର ମଧ୍ୟ ତା ଆଖି ଆଗରେ ନାଚିଲା । ସେ ମା'କୁ ବୁଝାଇ ଚାକିରି ଖୋଜିବାକୁ କଟକ ଆସିଲା । ବାଟ ଚାରି ଛଅ ମାଇଲ । କେଶବ ଗରଡ଼ା ଦୁଧଭାର ନେଇ ନିତି କଟକ ଯାଏ, ତା ସାଙ୍ଗରେ ଚାଲିଆସିଲା । କେଶବ ଦି ତିନି ଦିନ ତାକୁ ଖାଇବା ବ୍ୟବସ୍ଥା କରିଦେଇ କଟକରେ ରଖେଇଲା । କେଶବର ପରାମର୍ଶରେ ବନା ଚାକିରି ଖୋଜାରେ ଲାଗିଲା ।

ଦିନେ ଦି ଦିନ ବୁଲି ବୁଲି ବନା ଥକିଲାଣି । ସେ ବା କେତେ ଲୋକଙ୍କୁ ଚିହ୍ନିଛି ? ଏତେ ଛୋଟ ଛୁଆକୁ ବା କିଏ ପସନ୍ଦ କରିବ ? ଦଶ ବାରଟାକୁ ଗଲାଣି । କେଉଁଠି ସୁବିଧା ହେଉନାହିଁ । ସମସ୍ତେ କହିଲେ, "ଆଉ ଟିକିଏ ବଡ଼ପିଲା ଦରକାର ।"

ତୃତୀୟ ଦିନ ବନା କଟକ ସହରର ଚଣ୍ଡୀ ମନ୍ଦିର ନିକଟ ବଜାରରେ ବୁଲୁଛି, ହଠାତ୍ ତାର ଆଖି ଗୋଟିଏ ବଡ଼ ଫାଟକ ଉପରେ ପଡ଼ିଲା । ସେ ଭାବିଲା, ଏ ଘରକୁ ଯାଇ ବୁଝିବ । ବଡ଼ବାବୁ ହୋଇଥିବେ, ନ ହେଲେ ଏତେ ବଡ଼ ହତା ଆଉ କାହାର ହେବ ? ମୁଁ ସିନା ଯିବି, ସେ ରଖିବେ କି ନ ରଖିବେ ? ସମସ୍ତେ କହିଲାପରି ସେ ଯଦି କହିବେ,

ତୁ ଗ୍ରେଟ ପିଲଟେ, ତୁ ବା କ କାମ କରିବୁ, ମୁଁ ଆଉ କଣ କରିବି ? ଆଉ ତ କିଛି ବାଟନାହିଁ । ଯାହାହେଉ ପଛକେ ମୁଁ କହିବି, 'ମୁଁ ସବୁ କାମ କରିବି, ଘର ଦାଣ୍ଡ ସଫା-କରିବି, କୂଅରୁ ପାଣି କାଢ଼ିବି, ପିଲମାନଙ୍କୁ ଗାଧୁଆ ପାଧୁଆ କରିଦେବି, ଥାଳ ହାଣ୍ଡି ମାଜିବି, ଗ୍ଲେଷେଇ କାମକୁ ପାଣି ଦେବି ।'' ଏମିତି ସେ କେତେ କଥା ଭାବି ଭାବି ହତା ଭିତରେ ପଶିଲା ।

ସକାଳବେଳା, ଛଅଟା ହେବ । ଖରାଦିନ, ବାବୁ ବାଡ଼ିଖଣ୍ଡେ ଧରି ବୁଲି ବାହାରିଛନ୍ତି । ବୟସ ବେଶି ନୁହେଁ, ଚାଳିଶି ଭିତରେ ହେବ । କାଳିଆ ନୁହଁନ୍ତି, କି ଗୋରା ନୁହଁନ୍ତି, ବେଶି ଡେଙ୍ଗା ନୁହଁନ୍ତି କି ଗେଡ଼ା ନୁହଁନ୍ତି । ଜାମା ପିନ୍ଧିଥିବାରୁ ଦେହର ଆକାର ଦିଶୁନଥିଲେ ମଧ୍ୟ ହାତ ଗୋଡ଼ର ଆକାର ଚହ୍ନେଇ ଦେଉଛି, ଚେମଡ଼ାଟିଏ ।

ବାବୁ ଘରୁ ବାହାରି ଚାଳିଶି ପଚିଶ ପାହୁଣ୍ଡ ଆଗେଇଲେଣି, ଟିକିଏ ତଳକୁ ମୁହଁକରି ଚାଲିଛନ୍ତି । ବନା ତାଙ୍କ ସାମନା ଆଡ଼କୁ ଟିକିଏ ଝୁଙ୍କିପଡ଼ି ତଳକୁ ଲଇଁ ନମସ୍କାରଟିଏ କଲା । କିଏ ଜଣେ ନମସ୍କାର କରୁଥିବା ବାରିପାରି ବାବୁ ମୁହଁ ଟିକିଏ ଉପରକୁ କଲେ । ଆଗରେ ପିଲଟିକୁ ଦେଖି କୋମଳ କଣ୍ଠରେ ପଚାରିଲେ, ''କଣ ବାପା ? କୁଆଡ଼େ ଆସିଛ ?'' ବାବୁଙ୍କର ଏ କେତୋଟି ପଦରେ ଯେପରି ଅମୃତ ବୋଳାହୋଇଛି, ଦୟା ଭରିରହିଛି । ବନାଆଡ଼କୁ ବାବୁ ଭଲକରି ଚାହିଁବାରୁ ତା ମନରେ ବଳ ଆସିଲା । ତାହାର ହୃଦୟରେ ଯେତେ ଦୁଃଖ ସଞ୍ଚିତ ହୋଇଥିଲା, ସେ ସବୁ ତାର ପାଟିପାଖକୁ ଉଠି-ଆସିଲା । ସେ ଆଖି ଛଳ ଛଳ କରି କହିଲା, ''ବାବୁ, ମୋର ବାପ ନାହିଁ । ଚାକରି କରିବାକୁ ଆସିଛି । ଚାକରି ମିଳିବ ? ମୁଁ ସବୁ କାମ କରିବି । ମୁଁ ଘର ଓଳେଇବି, ବାସନ ମାଜିବି, ପିଲଙ୍କୁ ଖେଳାଇବି, ପାଣି···''—ବନା ଆଉ କହିପାରିଲା ନାହିଁ । କୋହ ଉପରେ କୋହ ମାଡ଼ିଆସିଲା । ସେ କଇଁ କଇଁ ହୋଇ କାନ୍ଦିଲା ।

ବାବୁ ବନାର ଅବସ୍ଥା ଦେଖି ସମ୍ଭାଳି ପାରିଲେ ନାହିଁ । ଭାବିଲେ, ''ଆହା, ଛୁଆଟା କେଡ଼େ ଦୁଃଖରେ ଅଛି !'' ପାଖକୁ ଯାଇ ବନାର ମୁଣ୍ଡ ଉପରେ ହାତ ବୁଲାଇ କହିଲେ, ''କରେ, ତୁ କାନ୍ଦୁଛୁ କାହିଁକି ? ତୋର ଆଉଜଣେ ବାପା କଟକରେ ଅଛି ବୋଲି ତୁ ଜାଣିନାହୁଁ ? ମୁଁ ତୋର ବାପା । ଆସ୍, ମୋ ଘରେ ରହିବୁ ।''

ବନାର ଦେହରେ ପ୍ରାଣ ପଶିଲା । ସେ ଗଦ୍ ଗଦ୍ କଣ୍ଠରେ ବାବୁଙ୍କୁ କହିଲା, ''ବାବୁ, ଘରେ ଗାଣ୍ଡେ କୁଟୁମ୍ବ, ସମସ୍ତେ ଭୋକ ଓପାସରେ ରହିଛନ୍ତି ।'' ବାବୁଙ୍କ ସ୍ନେହବୋଳା ଚାହାଣି ଦେଖି ତା କଣ୍ଠରୁ ଆପେ ଆପେ ବାହାରିପଡ଼ିଲା, ''ହଁ, ଆପଣ ମୋର ଆଉ ଜଣେ ବାପା ।'' ବାବୁଙ୍କ ଗୋଡ଼ ତଳେ ପଡ଼ିଲା । ବାବୁ ବନାକୁ ସାଙ୍ଗରେ ଧରି ଘରକୁ ଗଲେ; ସେଦିନ ଆଉ ବୁଲିବାକୁ ଯାଇନାହାନ୍ତି ।

ସେହିଦିନଠୁ ବନା ବାବୁଙ୍କର ପୁଅ ପରି ରହିଲା । ସବୁ ସେବା କଲା । ପ୍ରତ୍ୟେକ କଥାରେ ବାବୁ ସବୁବେଳେ ବନାକୁ ଲୋଡ଼ିଲେ । ବନାର ବୋଉ, ଭାଇଭଉଣୀମାନଙ୍କ ଭରଣପୋଷଣ ପାଇଁ ଯାହା ଦରକାର ତାହା ପ୍ରତି ମାସରେ ଦେଲେ ।

ବନା ଚାକର ହେଲେ କଣ ହେଲା, ବାବୁଙ୍କ ଚାଲିଚଳଣି, ମାନମର୍ଯ୍ୟାଦା ରକ୍ଷାକରି ତାଙ୍କ ଘର କାମ କରେ । ସେ ଏଡ଼େଠିଁ ଏଡ଼ୁଟିଏ ହେଲାଣି । ବାବୁ ତାର ଗାଁରେ ଘରଟିଏ କରିଦେଲେ, ଭଲ କନ୍ୟାଟିଏ ଖୋଜି ବିବାହ ମଧ୍ୟ କରିଦେଲେ ।

ବାବୁଙ୍କୁ ବନା କେବେ ଅବଜ୍ଞା କରିନାହିଁ । ଛାଇପରି ତାଙ୍କୁ ଅନୁସରଣ କରିଛି, ତାଙ୍କର ସେବା ଶୁଶ୍ରୂଷା କରିଛି । ବାବୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବନା ତାଙ୍କ ପାଖରେ ପାଖରେ ଥିଲା ।

ଏବେ ବନା ବୁଢ଼ା ହୋଇଗଲାଣି । ବାବୁଙ୍କ ଦେହାନ୍ତ ପରେ ବାବୁଙ୍କ ଘରେ ରହିବା ସୁବିଧା ହେଲାନାହିଁ । ତେବେହେଁ, ସେ ବାବୁଙ୍କ ଘରକୁ ବେଳେ ବେଳେ ଆସୁଛି, ବାଡ଼ିବଗିଚା ଦେଖୁଛି, ବାବୁଙ୍କର ପ୍ରିୟ ଗୋଲାପ ଗଛରେ ପାଣିଟିକିଏ ଦେଉଛି, କ୍ରୋଟନ୍ ଗଛ ତଳ ମାଟି ଖେଳେଇଦେଉଛି, ଘାସ ଥିଲେ ଉପାଡ଼ି ଦେଉଛି ।

ଏ ବାବୁ ହେଉଛନ୍ତି ମଧୁସୂଦନ ଦାସ । (ଚାକରର ନାମ କଳ୍ପିତ)

(୧୯) "ବୁଝିବଟି, ମୋପାଇଁ କନ୍ୟାଟିଏ ମିଳିବ ପରା" ଦିନେ ମଧୁବାବୁ କଟକ ଜଜ୍ କୋର୍ଟ ଓକିଲ ବୈଠକଖାନାରେ ବସି ଗପସପ କରୁଥିଲେ । ସେତେବେଳକୁ ତାଙ୍କୁ ପ୍ରାୟ [illegible]୦ ବର୍ଷ ବୟସ ହେବ । ତେବେ ମଧ୍ୟ ତାଙ୍କର ଧୀଶକ୍ତି ମଳିନ ହୋଇନଥିଲା । ସେ ଆଳାପ ବେଳେ ବହୁ ଢଗଢମାଳି ବୋଲି ଜୁନିୟର୍ ଓକିଲ-ମାନଙ୍କ ପରିହାସ କରୁଥିଲେ । ସେ ଦିନ ଜଣେ ଓକିଲ ନିଜ ଦ୍ୱିତୀୟ ପକ୍ଷ ସ୍ତ୍ରୀଙ୍କୁ ସଙ୍ଗରେ ଆଣିଥିଲେ । ସେତେବେଳକୁ ଓକିଲଙ୍କୁ ପ୍ରାୟ ୫୦ ବର୍ଷ ବୟସ ହେବ । ସ୍ତ୍ରୀଙ୍କ ବୟସ ତାଙ୍କଠାରୁ ବହୁତ କମ୍ । ଓକିଲ ମହାଶୟ ନବବିବାହିତା ପତ୍ନୀଙ୍କୁ ଓକିଲ ବନ୍ଧୁମାନଙ୍କ ସହ ପରିଚିତ କରାଇଦେବାପାଇଁ ଉତ୍ସାହରେ ଆଣିଥିଲେ । ବୃଦ୍ଧ ରସିକ ମଧୁବାବୁଙ୍କର ଦୃଷ୍ଟି ନବଦମ୍ପତିଙ୍କ ଉପରେ ପଡ଼ିଲା । ସେ ଧୀର କଣ୍ଠରେ ଓକିଲବାବୁଙ୍କୁ ନିଜ ପାଖକୁ ଡାକି ଗମ୍ଭୀର ସ୍ୱରରେ କହିଲେ, "ବାବୁ, ଟିକିଏ ବୁଝିବଟି ମୋ ପାଇଁ ଗୋଟିଏ କନ୍ୟା ମିଳିବ ପରା !" ଏକଥା ଶୁଣି ଓକିଲମାନେ ମୁରୁକିହସା ଦେଲେ । ନବେ ଓକିଲବାବୁ କିଛି ନ କହି ଚୁପ୍ ହୋଇ ରହିଲେ । ତାଙ୍କ ବୁଦ୍ଧିମତୀ ସ୍ତ୍ରୀ ପରିହାସର ମର୍ମ ବୁଝିପାରି ସେ ମଧ୍ୟ ପରିହାସ କରି କହିଲେ, "ମୋର ନାତୁଣୀଟିଏ ହେଲେ ଆପଣଙ୍କ ସହିତ ନିଶ୍ଚୟ ବିବାହ କରିଦେବି ।" ସମସ୍ତେ କୌତୁକରେ ହସିଲେ ।

(୨୦) "ବାବୁ, ଆପଣଙ୍କ ଉମର କେତେ ?" ମଧୁବାବୁଙ୍କ ରସିକତା ସମ୍ବନ୍ଧରେ ଆଉ ଗୋଟିଏ ଗଳ୍ପ ଶୁଣାଯାଏ । ଥରେ କଟକ ଜିଲ୍ଲା ପଟିଆ କିଲ୍ଲାର

ଜମିଦାର ମଧୁବାବୁଙ୍କ ପାଖକୁ କୌଣସି ଏକ ମକଦ୍ଦମା ସଂକ୍ରାନ୍ତରେ ଆସିଥିଲେ । ପରାମର୍ଶ କାମ ସରିବା ପରେ ବିଦାୟ ନେବାବେଳେ ରାଜାଙ୍କ ସହ ତାଙ୍କ ପାତ୍ର ଆଦି ଭଲଲୋକମାନେ ମଧୁବାବୁଙ୍କୁ ପ୍ରଣାମ କରି ବିଦାୟ ନେଲେ । ସେ ଦିନ ମଧୁବାବୁ ବହୁତ ସମୟ ଧରି ଆଲାପ ଆଲୋଚନା କରିଥିଲେ । ପଟିଆର ପାତ୍ରେ ମଧୁବାବୁଙ୍କ ପରିଶ୍ରମ ଦେଖି ମୁଗ୍ଧ ଓ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେତେବେଳକୁ ମଧୁବାବୁଙ୍କ ବୟସ ୭୦।୭୫ ଯାଏ ହେବ । ପାତ୍ରଙ୍କର ମଧୁବାବୁଙ୍କ ବୟସ ଜାଣିବା ପାଇଁ ଆଗ୍ରହ ହେଲା; କିନ୍ତୁ ମଧୁବାବୁଙ୍କୁ ସାହସ କରି ପଚାରି ପାରୁ ନଥାନ୍ତି । କଣ ପଚାରିବେ, କଣ ପଚାରିବେ ବୋଲି ଥା ଥା ମା ମା ହେଉଛନ୍ତି, ଏପରି ସମୟରେ ମଧୁବାବୁଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଲା । ସେ ପାତ୍ରଙ୍କୁ ପଚାରିଲେ, "ଆଉ କଣ କହିବାର ଅଛି ?" ମଧୁବାବୁଙ୍କୁ ପଚାରିଲେ କାଳେ ସେ ରାଗିବେ, ଏଥିପାଇଁ ସେ ସାହସ କରୁ ନଥାନ୍ତି । ମଧୁବାବୁ ପ୍ରଶ୍ନ କରିବାରୁ ପାତ୍ରଙ୍କର ଆଗ୍ରହ ବୃଦ୍ଧି ପାଇଲା । 'ଦେଖାଯାଉ କଣ ହେଉଛି' ଭାବରେ ସେ କଥା ଆରମ୍ଭ କଲେ, "ଆଜ୍ଞା, ପଚାରିବି ପଚାରିବି ହେଉଛି, କିନ୍ତୁ ପଚାରିପାରୁନାହିଁ ।" ମଧୁବାବୁ କହିଲେ, "କଣ, କଣ ?" ପାତ୍ରେ ସାହସ ବାନ୍ଧି ପଚାରିଲେ, "ଆଜ୍ଞା, ଆପଣଙ୍କ ଉମର (ବୟସ) କେତେ ?" ମଧୁବାବୁ ପ୍ରଶ୍ନ ଶୁଣି ଟିକିଏ ମୁରୁକିହସା ଦେଲେ । କହିଲେ, "ପାତ୍ରେ, ବୟସ ପଚାରୁଛ କାହିଁକି ? ନାତୁଣୀ-ଫାତୁଣୀ ଅଛନ୍ତି କି ? ମୋତେ ଦେବା ମତଲବରେ ଅଛ କି ?"

ସମସ୍ତେ ଜାଣନ୍ତି ମଧୁବାବୁଙ୍କ ସ୍ତ୍ରୀ ମଧୁବାବୁଙ୍କ ଯୌବନାବସ୍ଥାରେ ମରିଯାଇ-ଥିଲେ । ସେ ଆଉ ବିବାହ କରିନାହାନ୍ତି । ମଧୁବାବୁ ବୃଦ୍ଧ ହେଲେଣି । ସେ ସମସ୍ତଙ୍କୁ ନାତି ନାତୁଣୀ ହିସାବରେ ପରିହାସ କରନ୍ତି ଏବଂ ଏଥିରେ ଆନନ୍ଦ ଉପଭୋଗ କରନ୍ତି । ବେଳେବେଳେ ନାପସନ୍ଦ ବିଷୟକୁ ମଧ୍ୟ ପରିହାସ ଛଳରେ ଏପରି ଭାବରେ କହିଥାନ୍ତି ଯେ ଲକ୍ଷିତ ବ୍ୟକ୍ତି ମର୍ମ ବୁଝିପାରି ଲଜ୍ଜିତ ବା ମର୍ମାହତ ହୋଇପଡ଼ନ୍ତି ।

(୬୧) "ବାନପ୍ରସ୍ଥୀଙ୍କ ପୁଅ ତେପନପ୍ରସ୍ଥୀ" : ଥରେ ସମ୍ବଲପୁରର ଜଣେ ଯୁବକ ଓକିଲ ମଧୁବାବୁଙ୍କ ସହିତ ଦେଖାକରିବା ପାଇଁ ତାଙ୍କ କଟକ କୋଠିକୁ ଗଲେ । ତାଙ୍କ ପିତାଙ୍କ ସହିତ ମଧୁବାବୁଙ୍କର ବେଶ ବନ୍ଧୁତ୍ୱ ଥିଲା । ଓକିଲଙ୍କୁ ଦେଖି ମଧୁବାବୁ ହସି ହସି କହିଲେ, "କି ହୋ ବାନପସ୍ଥୀଙ୍କ ପୁଅ, ତୁମେ କଣ ତେପନପ୍ରସ୍ଥୀ କି ? ଯୁବକ ହସି ହସି ଉତ୍ତର ଦେଲେ, "ଆଜ୍ଞା, ବର୍ତ୍ତମାନ ଏମିତି ମଧ୍ୟ ଚଳୁଛି । ବାପାଙ୍କ ସଂଜ୍ଞା ପ୍ରକାରେ ହେଲେ ପୁଅଙ୍କ ସଂଜ୍ଞା ପ୍ରକାରେ । ମୁଁ ଯଦି 'ତେପନପ୍ରସ୍ଥୀ' ବୋଲାଇ ଥାଆନ୍ତି, ତାହାହେଲେ ପୁରୁଷ ସଂଖ୍ୟାରେ ଠିକ୍ ହୋଇଥାଆନ୍ତା ।" ମଧୁବାବୁ ମଧ୍ୟ ହସିଲେ । ଓକିଲଙ୍କ ବାପ ମଧ୍ୟ ଓକିଲ ଥିଲେ ଏବଂ ସେ ତାଙ୍କ କୁଳସଂଜ୍ଞା ସହିତ 'ବାନପ୍ରସ୍ଥୀ' ବ୍ୟବହାର କରୁଥିଲେ । ଗୃହସ୍ଥାବସ୍ଥାର ପରବର୍ତ୍ତୀ ଅବସ୍ଥାର ନାମ ବାନପ୍ରସ୍ଥ ।

(୬୨) ଏ ପଦଧୂଳି ଆଶୀର୍ବାଦ ଥରେ ଉତ୍କଳ ସମ୍ମିଳନୀ ମଣ୍ଡପରେ ଗଞ୍ଜାମର ସମ୍ମିଳନୀ ଭକ୍ତ ପଣ୍ଡିତ ହରିହର ସଦସ୍ୟରୂପେ ଭାଷଣ ଦେଉଥିଲେ । ସଭା

ପରେ ସେ ସମ୍ମିଳନୀ ମଣ୍ଡପ ଫାଟକ ପାଖରେ ମୁଣ୍ଡିଆ ମାରିଲେ । ଏହା ମଧୁବାବୁଙ୍କ ଦୃଷ୍ଟିରେ ପଡ଼ିଲା । ସେ ସଦସ୍ୟଙ୍କ ପାଖକୁ ଯାଇ ତାଙ୍କ ପାଦଧୂଳି ନେଲେ ଏବଂ ରୁମାଲ୍‌ରେ ବାନ୍ଧି ମୁଣ୍ଡକୁ ଛୁଇଁଲେ । ମଧୁବାବୁ ନିଜେ ମୁଣ୍ଡିଆ ମାରି କହିଲେ, "ଏହା ଲୋକଙ୍କ ଓ ସର୍ବସାଧାରଣଙ୍କ ଆଶୀର୍ବାଦ ସ୍ୱରୂପ ମୁଁ ଏ ଧୂଳିକୁ ରଖିଛି । ଏମାନଙ୍କ ଆଶୀର୍ବାଦରେ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାରେ ନିଶ୍ଚୟ ମିଶିବ ।" ଭକ୍ତି ସହିତ ଆନ୍ଦୋଳନ ପରିଚାଳନା ସମ୍ପର୍କରେ ମଧୁବାବୁ ବ୍ୟବସାୟ-ବୁଦ୍ଧିର ପରିଚୟ ଦେଇଥିବାରୁ ପ୍ରତିନିଧିମାନେ ବିଶେଷ ଭାବେ ଉତ୍ସାହିତ ହୋଇଥିଲେ ଏବଂ ବହୁ ପ୍ରତିନିଧି ସଭାସ୍ଥଳରେ ଧୂଳି ନେଇ ମୁଣ୍ଡରେ ଲଗାଇଥିଲେ ।

(୬୩) ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ (କଟକ, ୧୯୦୩)ରେ କବି ଗଙ୍ଗାଧର ମେହେର ଯୋଗଦେଇଥିଲେ । ସେତେବେଳକୁ ତାଙ୍କର କବିପ୍ରତିଭା ଓଡ଼ିଶାରେ ସୁପ୍ରତିଷ୍ଠିତ ହୋଇସାରିଲାଣି । ତାଙ୍କୁ ସମ୍ମିଳନୀ ମଣ୍ଡପ ନିକଟରେ ଦେଖି ମଧୁବାବୁ କୁଣ୍ଢେଇପକାଇଲେ । କୁଶଳାଦି ପଚାରିବା ପରେ ସେ କବିଙ୍କୁ କହିଲେ, "ଆପଣ ତ ସ୍ୱାଭାବିକ କବି । ବହୁତ କାବ୍ୟ-କବିତା ଲେଖିଛନ୍ତି । ଆମ ଏ ସମ୍ମିଳନୀକୁ ଦେଖି ଏକ କବିତା ଲେଖନ୍ତୁ ।" ମଧୁବାବୁଙ୍କ ଅନୁରୋଧ ରକ୍ଷାକରି ମେହେର ସେଠାରେ ଏକ କବିତା ରଚନା କରି ମଧୁବାବୁଙ୍କ ହାତରେ ଦେଇଥିଲେ ।

(୬୪) ଲାଲବିହାରୀ ଦେଙ୍କ ସହିତ ଆଳାପ : "ଫୋକ୍ ଟେଲସ ଅଫ୍ ବେଙ୍ଗଲ" (Folk Tales of Bengal), "ବେଙ୍ଗଲ ପେଜେଣ୍ଟ ଲାଇଫ୍" (Bengal Peasant Life)"ର ଲେଖକ ଖ୍ରିଷ୍ଟିଆନ ପ୍ରଚାରକ ରେଭେରେଣ୍ଡ ଲାଲବିହାରୀ ଦେଙ୍କ ସହିତ ଥରେ ମଧୁବାବୁଙ୍କର କଲିକତାରେ ଦେଖା ହୋଇଥିଲା । ମଧୁବାବୁ ତାଙ୍କୁ କହିଲେ, "ଆପଣ ବଙ୍ଗଦେଶର ଓ ସେଠାର ସମାଜର ଯେଉଁ ଚିତ୍ର ଆପଣଙ୍କ ବହିରେ ଦେଇଛନ୍ତି, ସେହିସବୁ ଓଡ଼ିଶାରେ ମଧ୍ୟ ଅଛି । ଏତିକି କେବଳ ପ୍ରଭେଦ ଯେ, ବଙ୍ଗର ନୀଳଗୃହ ଓଡ଼ିଶାରେ ନାହିଁ; କିନ୍ତୁ ଏହା ସ୍ଥାନରେ ଲୁଣମରା ଗୃହ ଅଛି । ଅଧିକ ଗୋଟିଏ କଥା ହେଉଛି, ସୂର୍ଯ୍ୟାସ୍ତ ଆଇନ୍ (Sunset Law) ଅଛି ।" ଏହା କହିବାର ମର୍ମ ହେଉଛି, ଇଂରେଜମାନେ ଓଡ଼ିଶା ଦଖଲ କରିବା ପରେ, ଅର୍ଥାତ୍ ଖ୍ରୀ: ୧୮୦୩ ପରେ, ସୂର୍ଯ୍ୟାସ୍ତ ଆଇନ୍ ପ୍ରଚଳିତ କରିଥିଲେ । ସେତେବେଳେ କଲିକତା ରାଜଧାନୀ ଥିଲା । ଓଡ଼ିଶାର ରାଜା ଜମିଦାରମାନେ କଲିକତା ଯାଇ ନିର୍ଦ୍ଦିଷ୍ଟ ସମୟରେ ସରକାରୀ ଖଜଣା ଓ ପେସକସ ଦାଖଲ କରିପାରୁନଥିଲେ । ସେତେବେଳେ କଲିକତା ଯିବାକୁ ହେଲେ ବହୁ କଷ୍ଟ ସ୍ୱୀକାର କରିବାକୁ ହେଉଥିଲା । ପାଦ, ବଳଦଗାଡ଼ି, ଡଙ୍ଗା, ଷ୍ଟିମର ପ୍ରଭୃତି ଚଢ଼ି କଲିକତା ଯିବାକୁ ହେଉଥିଲା । କଟକରୁ କଲିକତାରେ ପହଞ୍ଚିବା ପାଇଁ ପ୍ରାୟ ପନ୍ଦର ଦିନ ଲାଗିଯାଉଥିଲା । ରାଜା, ଜମିଦାର, ଜାଗିରଦାର ପ୍ରମୁଖ ଠିକ୍ ସମୟରେ ନିଲାମ ନୋଟିସ ମଧ୍ୟ ପାଇ ପାରୁନଥିଲେ । ସରକାରୀ ଅଫିସରେ ଚକ୍ରାନ୍ତ ମଧ୍ୟ ହେଉଥିଲା । ସରକାରୀ ପେସ୍

କେସ୍ ଓ ଖଜଣାର ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଦେଇପାରି ନଥିବା ଅଭିଯୋଗରେ ଜମିଦାରୀ ପ୍ରଭୃତି ଦେୟର ଡାଖଲର ନିର୍ଦ୍ଦିଷ୍ଟ ଦିନରେ ସୂର୍ଯ୍ୟାସ୍ତ ପୂର୍ବରୁ ଏହି ଜମିଦାରୀ ଓ ଜାଗିରୀ ପ୍ରଭୃତି ନିଲାମ ହୋଇଥିଲା । ବଙ୍ଗ ଦେଶର ଲୋକେ ଅତି ଅଳ୍ପ ମୂଲ୍ୟରେ ଭଲଭଲ ଜମିଦାରୀ ଓ ଜାଗିରୀ ପ୍ରଭୃତି ନିଲାମରେ କିଣି ନେଉଥିଲେ । ଏହି ସୂର୍ଯ୍ୟାସ୍ତ ଆଇନ ଯୋଗୁ ଓଡ଼ିଶାର ବହୁ ପ୍ରାଚୀନ ଜମିଦାର ଲୋପପାଇଗଲେ ଏବଂ ଓଡ଼ିଶାରେ ବିଦେଶୀୟ ବଙ୍ଗୀୟ ଜମିଦାରଙ୍କ ସଂଖ୍ୟା ଅସମ୍ଭବ ଭାବରେ ବୃଦ୍ଧି ପାଇଲା । ବିଦେଶୀ ଓ ନୂତନ ଜମିଦାରଙ୍କ ଅବହେଳା ଯୋଗୁଁ ପ୍ରଜାକୁଳର ଦୁର୍ଦ୍ଦଶା ବୃଦ୍ଧି ପାଇଲା, ଲୋକେ କ୍ରମଶଃ ଗରିବ ହୋଇଗଲେ । ଓଡ଼ିଶାର ଏ ଦୁର୍ଦ୍ଦଶାକୁ ଲକ୍ଷ୍ୟ କରି ମଧୁବାବୁ ଲାଲ ବିହାରୀ ଦେଙ୍କୁ ସୂର୍ଯ୍ୟାସ୍ତ ଆଇନ୍ କଥା କହିଥିଲେ । ଯଦି ଲାଲବିହାରୀଙ୍କ ପରି କେହି ଜଣେ ସିଦ୍ଧହସ୍ତ ଲେଖକ ତାଙ୍କର ବହି ଗ୍ରନ୍ଥରେ ଓଡ଼ିଶାର ପ୍ରଜାଜୀବନ ସମ୍ବନ୍ଧରେ ବହି ଲେଖନ୍ତେ, ତାହାହେଲେ ଏ ପ୍ରସଙ୍ଗ ନିଶ୍ଚୟ ବର୍ଣ୍ଣିତ କରିଥାନ୍ତେ ଏବଂ ଓଡ଼ିଶା ଲୋକେ କିପରି ସର୍ବସ୍ୱାନ୍ତ ହୋଇଗଲେ, ତାହା ପୃଥିବୀ ଜାଣିପାରିଥାଆନ୍ତା ବୋଲି ମଧୁବାବୁ ଇଙ୍ଗିତରେ ସୂଚାଇ ଦେଇଥିଲେ ।

ଲାଲବିହାରୀଙ୍କ ସହିତ ମଧୁବାବୁଙ୍କର ବନ୍ଧୁତା ଥିଲା । ଉଭୟେ ଖ୍ରୀଷ୍ଟିଆନ ଥିବାରୁ ଉଭୟଙ୍କ ଭିତରେ କେତେକ ପରିମାଣରେ ସମଚିନ୍ତାର ଅବକାଶ ମଧ୍ୟ ଥିଲା । କୌତୁକରେ ମଧୁବାବୁ ନିରିଟ ସତ୍ୟ କଥାଟି ବ୍ୟକ୍ତ କରିଥିଲେ । ଲାଲବିହାରୀ ଏଥିରେ ଦୁଃଖିତ ହୋଇ ନ ଥିଲେ ।

**(୨୫) "ମୋ କଣ୍ଠଟି ମଧୁର ହୋଇଥିଲେ ମୁଁ ନିଶ୍ଚୟ ଉପାଧି ପାଇଥାଆନ୍ତି"** : ପଣ୍ଡିତ ମୃତ୍ୟୁଞ୍ଜୟ ରଥ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲରେ ପଣ୍ଡିତ-ଶିକ୍ଷକ ଥିଲେ । ସେ ଜଣେ ଉଚ୍ଚକୋଟୀର ସାହିତ୍ୟସମାଲୋଚକ ମଧ୍ୟ ଥିଲେ । ତାଙ୍କୁ 'ବାଣୀଭୂଷଣ' ପଦବୀ ମିଳିଥିଲା । ମଧୁବାବୁ ଥରେ ତାଙ୍କୁ କୌତୁକରେ କହିଲେ, 'ପଣ୍ଡିତେ, ଆପଣଙ୍କ କଣ୍ଠଟି ମଧୁର ଥିବାରୁ ବାଣୀଭୂଷଣ ପଦ ପାଇଲେ । ମୋ କଣ୍ଠଟି ଯଦି ମଧୁର ହୋଇଥାଆନ୍ତା, ତାହାହେଲେ ମୁଁ ନିଶ୍ଚୟ ଗୋଟିଏ ପଦ ପାଇଥାଆନ୍ତି ।'' ପଣ୍ଡିତେ ମଧୁବାବୁଙ୍କ ଏ କୌତୁକ ମନ୍ତବ୍ୟ ଶୁଣି ହସିଲେ ।

**(୨୬) ''ଅଗଣି, ଲୋକ ଆଣିଛ ଗଣି ଗଣି"** : କଟକରେ ରାମକୃଷ୍ଣ କଳ୍ପତରୁ ଉତ୍ସବ ଉପଲକ୍ଷେ ରାମକୃଷ୍ଣ କଟେଜ ହତାରେ ଏକ ସାଧାରଣ ସଭା ପ୍ରତିବର୍ଷ ହୁଏ । ଥରେ ଏପରି ଏକ ସଭାର ଆୟୋଜନ କରିବା ଭାର କଟକର ହିତାକାଂକ୍ଷୀ ଯୁବକ ଶ୍ରୀ ଅଗଣି ଦାଶଙ୍କୁ ଅର୍ପଣ କରାଯାଇଥିଲା । ଅଗଣିବାବୁ ଭିକ୍ଟୋରିଆ ସ୍କୁଲ (ପରେ ଏହାର ନାମ ହେଲା ଭକ୍ତମଧୁ ବିଦ୍ୟାପୀଠ)ର ଜଣେ ଶିକ୍ଷକ ଥିଲେ । ମଧୁବାବୁଙ୍କୁ ସଭାପତି ହେବାପାଇଁ ନିମନ୍ତ୍ରଣ କରାଯାଇଥିଲା । ସଭାସ୍ଥଳରେ ନିର୍ଦ୍ଦିଷ୍ଟ ସମୟରେ ମଧୁବାବୁ ପହଞ୍ଚିଗଲେ । ସେ ସମୟାନୁବର୍ତ୍ତିତା ପ୍ରତି ସବୁବେଳେ ଲକ୍ଷ୍ୟ ରଖୁଥିଲେ । ସଭା ଆରମ୍ଭର ସମୟକୁ ଅଳ୍ପ ଲୋକ ଆସିଥିବାରୁ ସେ ଟିକିଏ ବ୍ୟସ୍ତ ହୋଇପଡ଼ିଲେ; କିନ୍ତୁ ଏଥିରେ

ଅଗଣିବାବୁଙ୍କ କିଛି ଛୁଟି ନଥିଲା । ଅଗଣିବାବୁଙ୍କୁ ଡାକି ସେ କୌତୁକରେ କହିଲେ, "ଅଗଣି, ଲୋକ ଆଣିଛୁ ଗଣି ଗଣି ।" ଏ ବ୍ୟଙ୍ଗୋକ୍ତି ଶୁଣି ବନ୍ଧୁମାନେ ମୁରୁକିହସା ଦେଲେ । ସଭାରେ ଯେପରି ବେଶି ଲୋକଙ୍କ ସମାଗମ ହୁଏ, ସେଥିପାଇଁ ତତ୍‌କ୍ଷଣାତ୍ ବହୁଲୋକ ଲାଗିପଡ଼ିଲେ ।

(୬୭) **"ବଙ୍ଗଭଙ୍ଗ ଆନ୍ଦୋଳନର କଣ ପ୍ରାଦେଶିକତା ନଥିଲା ?"** ଥରେ କଲିକତାରୁ ବଙ୍ଗଭଙ୍ଗ ଆନ୍ଦୋଳନର ଜଣେ ପ୍ରଧାନ ନେତା ଶ୍ରୀ ବିପିନଚନ୍ଦ୍ର ପାଲ୍ କଟକ ଆସିଥିଲେ । ମଧୁବାବୁ ଓ ପାଲ୍‌ଙ୍କର ଆଗରୁ ବନ୍ଧୁତା ଥିଲା । ବିପିନବାବୁଙ୍କ ସହିତ ମଧୁବାବୁଙ୍କର ଓଡ଼ିଶା ଦେଶମିଶ୍ରଣ ପ୍ରସଙ୍ଗରେ କଥାବାର୍ତ୍ତା ଚାଲିଥିଲା । ବିପିନବାବୁ କହିଲେ, "ଓଡ଼ିଶା ଦେଶମିଶ୍ରଣ ଆନ୍ଦୋଳନରେ ସଙ୍କୀର୍ଣ୍ଣ ପ୍ରାଦେଶିକତା ଅଛି । ଏଥିରେ ମାତିବା ଉଚିତ ନୁହେଁ; ମହାଭାରତୀୟ ଭାବରେ ଅନୁପ୍ରାଣିତ ହେବା ଉଚିତ ।" ମଧୁବାବୁ କହିଲେ, "ତେବେ ଆପଣ ବଙ୍ଗଭଙ୍ଗର ପ୍ରତିବାଦ କରି ଆନ୍ଦୋଳନ କଲେ କାହିଁକି ? ଏଥିରେ କଣ ସଙ୍କୀର୍ଣ୍ଣ ପ୍ରାଦେଶିକତାର ଗନ୍ଧ ନାହିଁ ? ଆମ ବେଳକୁ କାହିଁକି ଯୁକ୍ତିରେ ବ୍ୟତିକ୍ରମ ଘଟୁଛି ?" ଦୁଇବନ୍ଧୁ ଏ ସମ୍ବନ୍ଧରେ ଆଉ ଅଧିକ ଯୁକ୍ତିତର୍କ କରିନଥିଲେ ।

(୬୮) **"ତୁମେ ଜଣେ ରାମଚନ୍ଦ୍ର ମଙ୍ଗରାଜ କଥା ଲେଖିଛ, ମୁଁ ତ ପ୍ରତିଦିନ ଗୋଟିଏ ଗୋଟିଏ ରାମ ମଙ୍ଗରାଜ ଦେଖୁଛି":** ବାଲ୍ୟବନ୍ଧୁ ଫକୀରମୋହନ ସେନାପତିଙ୍କୁ ଥରେ ମଧୁବାବୁ କହିଲେ, "ଫକୀର, ତୁମେ 'ଛମାଣ ଆଠଗୁଣ୍ଠ'ରେ ଜଣେ ରାମଚନ୍ଦ୍ର ମଙ୍ଗରାଜ କଥା ଲେଖି ଅମର ହେଲ । ମୁଁ ତ ପ୍ରତିଦିନ ଗୋଟିଏ ଗୋଟିଏ ରାମ ମଙ୍ଗରାଜ ଦେଖୁଛି ।" ମକଦ୍ଦମା ସଂକ୍ରାନ୍ତରେ ବହୁ ଟାଉଟରଙ୍କ କାରସାଦି ପ୍ରସଙ୍ଗ ମଧୁବାବୁ ଜାଣିପାରୁଥିଲେ । ଏପରି ଟାଉଟରଙ୍କ ସଂଖ୍ୟା ଅନେକ ଥିବା ମଧୁବାବୁ ଭଙ୍ଗୀରେ ପ୍ରକାଶ କରିଥିଲେ ।

(୬୯) **"ମୋ ବାପା ଯଦି ସୁନ୍ଦରନାରାୟଣ ରାୟ ହୋଇଥାଆନ୍ତେ, ତାହେଲେ ମୁଁ ତ ଖ୍ରୀଷ୍ଟିଆନ୍ ହୋଇପାରିନଥାନ୍ତି !** : ମଧୁବାବୁ, ଫକୀରମୋହନ ସେନାପତି ଓ ରାଧାନାଥ ରାୟ ସମବୟସର ଲୋକ । ତିନିହେଁ ବାଲେଶ୍ୱରରେ ଯୌବନାବସ୍ଥାରେ କେତେକ ସମୟ କଟାଇଥିଲେ । ତିନିହେଁ ସାଙ୍ଗ । ତିନିହେଁ ସ୍ଥିର କରିଥିଲେ ଯେ ଏକସଙ୍ଗରେ ଖ୍ରୀଷ୍ଟିଆନ ହେବେ; କିନ୍ତୁ ଫକୀରମୋହନ ମତ ପରିବର୍ତ୍ତନ କରି ବ୍ରାହ୍ମ ହେଲେ, ରାଧାନାଥ ହିନ୍ଦୁ ରହିଲେ ଓ ମଧୁବାବୁ କେତେ ବର୍ଷ ପରେ କଲିକତାରେ ଖ୍ରୀଷ୍ଟିଆନ ହେଲେ । ରାଧାନାଥବାବୁଙ୍କ ପିତା ସୁନ୍ଦରନାରାୟଣଙ୍କ ଭୟରେ ରାଧାନାଥ ଧର୍ମାନ୍ତର ଦୀକ୍ଷା ଗ୍ରହଣ କଲେନାହିଁ । ଏହି କଥାକୁ ଲକ୍ଷ୍ୟକରି ଥରେ ମଧୁବାବୁ କୌତୁକରେ ରାଧାନାଥଙ୍କୁ କହିଲେ, "ଫକୀରମୋହନ ଆମ ସାଙ୍ଗରୁ ଯାଇ ବ୍ରାହ୍ମ ହେଲା । ତୁମେ ଚତାଦାଟି ଫସିଗଲ । ମୋ ବାପ ଯେବେ ସୁନ୍ଦରନାରାୟଣ ରାୟ ହୋଇଥାଆନ୍ତେ,

ତାହାହେଲେ ମୁଁ ତ ଖ୍ରୀଷ୍ଟିଆନ ହୋଇପାରନଥାନ୍ତି ?" ସୁନ୍ଦରନାରାୟଣ ଜଣେ ରକ୍ଷଣଶୀଳ ହିନ୍ଦୁ ଥିଲେ ଓ ପରିବାର ପରିଚାଳନାରେ ଶୃଙ୍ଖଳାର ପକ୍ଷପାତୀ ଥିଲେ । ରାଧାନାଥ ପିତାଙ୍କୁ ବେଶି ଭୟ କରୁଥିଲେ । ଏହାକୁହିଁ ଏଥିରେ ଲକ୍ଷ୍ୟ କରାଯାଇଥିବା ଅନୁମାନ ହୁଏ ।

(୩୦) **"ତେବେ ଆମେ ସମସ୍ତେ କଣ ଜାରଜ ସନ୍ତାନ ?"** : କଲିକତା ହାଇକୋର୍ଟର ଜଣେ ଜଜ ପାର୍ଜିଟର ସାହେବ "Dynasties of the Kali Age" (କଳିଯୁଗର ରାଜବଂଶାବଳୀ) ପୁସ୍ତକରେ ପୁରାଣମାନଙ୍କରୁ ଉପାଦାନ ସଂଗ୍ରହ କରି ଲେଖିଛନ୍ତି ଯେ, ପୂର୍ବେ ଇଲ ନାମକ ଜଣେ ରାଜା ଥରେ ବନବିହାର କରିବାକୁ ଯାଇଥିବାବେଳେ ଭ୍ରମବଶତଃ 'ଶିବକାନନ'ରେ ପ୍ରବେଶ କଲେ । ଶିବକାନନରେ ଯେଉଁ ପୁରୁଷ ପ୍ରବେଶ କରୁଥିଲା ସେ ସ୍ତ୍ରୀ ପାଲଟିଯିବେ ବୋଲି ଶିବଙ୍କ ଆଜ୍ଞା ଥିଲା । ଏହି ବିଧି ଅନୁସାରେ ମହାରାଜା ଇଲ ସ୍ତ୍ରୀ ପାଲଟିଗଲେ । ଏହିଠାରେ ଜଣେ ଗନ୍ଧର୍ବଙ୍କ ସହ କ୍ରୀଡ଼ା କରିବାରୁ ତାଙ୍କର ଗର୍ଭରୁ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର, ସୁହ୍ମ ନାମକ ପୁତ୍ରମାନେ ଜନ୍ମଗ୍ରହଣ କଲେ । ପରେ ଇଲା ପୁନର୍ବାର ପୁରୁଷ ରୂପ ଧାରଣକରି ରାଜତ୍ୱ କଲେ । ସେ ନିଜ ସାମ୍ରାଜ୍ୟକୁ ପୁତ୍ରମାନଙ୍କ ମଧ୍ୟରେ ବଣ୍ଟନ କରିଦେଲେ । ପୁତ୍ରମାନଙ୍କର ନାମାନୁସାରେ ସେମାନଙ୍କ ରାଜ୍ୟମାନଙ୍କର ନାମ ମଧ୍ୟ ହେଲା । ଅନ୍ୟ ଏକ କିମ୍ବଦନ୍ତୀରୁ ଜଣାଯାଏ, ଇଲ ନାମକ ମହାରାଜା ଜଣେ ଋଷିଙ୍କ ଅଭିଶାପରେ ଦିବସରେ ସ୍ତ୍ରୀ ଓ ରାତ୍ରିରେ ପୁରୁଷ ଏପରି ଉଭୟ ରୂପ ଧାରଣ କରୁଥିଲେ । ସ୍ତ୍ରୀରୂପ ଧାରଣ କରିବା ପରେ ସେ ଇଲା ନାମରେ ପରିଚିତ ଥିଲେ । କଳିଙ୍ଗର ଉତ୍ପତ୍ତି ସମ୍ବନ୍ଧରେ ଅନ୍ୟ ଏକ ଉପାଖ୍ୟାନ ମଧ୍ୟ ପୁରାଣରେ ଅଛି । ମହାରାଜା ଅନୁଙ୍କ ଅନୁରୋଧକ୍ରମେ ଅନୁଙ୍କ ରାଣୀଙ୍କ ସହିତ ଦୀର୍ଘତମା ଋଷି ସହବାସ କରିବାରୁ ରାଣୀଙ୍କ ଗର୍ଭରୁ କଳିଙ୍ଗ, ଅଙ୍ଗ, ବଙ୍ଗ, ପୁଣ୍ଡ୍ର ଓ ସୁହ୍ମ ଏ ପାଞ୍ଚପୁତ୍ର ଜନ୍ମଗ୍ରହଣ କରିଥିଲେ । ଏ ଉପାଖ୍ୟାନରୁ ଜଣାଯାଏ ଯେ, କଳିଙ୍ଗର ଆଦି ରାଜା କଳିଙ୍ଗ ଜଣେ ଜାରଜ ସନ୍ତାନ । ମଧୁବାବୁ ଏହି ଉପାଖ୍ୟାନକୁ ଲକ୍ଷ୍ୟକରି ପାର୍ଜିଟର୍ ସାହେବଙ୍କୁ କୌତୁକରେ କହିଥିଲେ, "ଆପଣ ଆମ ଜାତି ଓ ଦେଶର ଉତ୍ପତ୍ତି ପ୍ରସଙ୍ଗରେ କେଉଁଠି ଜାରଜ ସନ୍ତାନ, କେଉଁଠି ନପୁଂସକ ଥିବା ନିଜ ବହିରେ ଲେଖିଛନ୍ତି । ଆମେ କଣ ତେବେ ଜାରଜ ସନ୍ତାନ ?" ସେତେବେଳେ ପାର୍ଜିଟର୍ କଟକର ଜିଲା ଜଜ୍ ଥିଲେ । ସେ ପରେ କଲିକତା ହାଇକୋର୍ଟର ଜଜ୍ ମଧ୍ୟ ହୋଇଥିଲେ ।

(୩୧) **"ମୁଁ ବାରବାଟୀ ଦୁର୍ଗ ଦେଖି ଆନନ୍ଦ ଉପଭୋଗ କରୁଛି"**—କଟକ ସହରରେ ଚାନ୍ଦିନୀଚୌକ ନିକଟରେ ମଧୁବାବୁ ନୂତନ କୋଠା ତିଆରି କରୁଥିଲେ । କାଠଯୋଡ଼ି ନଈକୂଳ ଉପରେ ଥିବା କଚେରି ଓ ଦରଘାବଜାରସ୍ଥ ଜଜ୍ କୋର୍ଟଠାରୁ ଏହି କୋଠାଟି ଟିକିଏ ଦୂରରେ । ଥରେ ମଧୁବାବୁଙ୍କୁ ଜଣେ ବରିଷ୍ଠ ମହୁରିଲ ପଚାରିଲେ, "କଚେରିଠାରୁ ଏତେ ଦୂରରେ କୋଠା କାହିଁକି କଲେ ?" ମଧୁବାବୁ କହିଲେ

"ଜଗନ୍ନାଥମନ୍ଦିର ଦର୍ଶନ କରିବାପାଇଁ କେତେ ଦୂରରୁ ବା ଲୋକେ ଆସୁନାହାନ୍ତି, କେତେ ଦୁଃଖ କଷ୍ଟ ବା ସହୁନାହାନ୍ତି ? ଯାହାର ଦରକାର ଅଛି ସେ କଣ ଆଉ ଦୂର ନିକଟ କଥା ଭାବିବ ? ପୁଣି ଦେଖନ୍ତୁ, ମୋ କୋଠାକୁ ମହାନଦୀ କୂଳ, ବାରବାଟୀ ଦୁର୍ଗର ନବତଳ ପ୍ରାସାଦର ଭଗ୍ନାବଶେଷ, ପ୍ରତାପରୁଦ୍ରଙ୍କ ସମାଧି ଏସବୁ ନିକଟ । ଶାହାଜାହାନ ଏହି ବାରବାଟୀ ଦୁର୍ଗରେ ରହି ଦିଲ୍ଲୀ ଆଡ଼କୁ ଚାହିଁ ଆନନ୍ଦ ଉପଭୋଗ କରୁଥିଲେ । ମୁଁ ପ୍ରତିଦିନ ସେଆଡ଼େ ବୁଲିଯାଏ ଏବଂ ଓଡ଼ିଶାର ଏ ପ୍ରାଚୀନ କୀର୍ତ୍ତିକୁ ଦେଖେ । ମୋତେ ଆନନ୍ଦ ଲାଗେ ।" ଏହା ସହିତ ଅନ୍ୟାନ୍ୟ ବହୁ କଥା ମଧ୍ୟ ସେ କୌତୁକରେ କହୁଥିଲେ ।

**(୩୨) ମଲ୍ଲରୁ ରାଉତରାୟ, ରାଉତରାୟରୁ ଚୌଧୁରୀ, ଚୌଧୁରୀରୁ ଦାସ—** କଟକର ବିଶିଷ୍ଟ ଓକିଲ ଓ ଐତିହାସିକ ଶ୍ରୀ ବ୍ରଜବନ୍ଧୁ ଦାସ ଏମ୍. ଏ. ବି. ଏଲ୍.ଙ୍କୁ ଦିନେ ଦେଖି ମଧୁବାବୁ କୌତୁକରେ ପଚାରିଲେ, "ବ୍ରଜ, କେଉଁ ଦିନରୁ ଦାସ ହେଲଣି ?" ସେ ଜାଣନ୍ତି ବ୍ରଜବାବୁଙ୍କ ପିତା କେଶବାନନ୍ଦ କାନୁନ୍‌ଗୋ ପଟିଆର ଦେବାନ ଥିଲେ । ପୁଣି କାନଗୋଇ ନହୋଇ ଦାସ ହେଲେଣି । ମନେ ମନେ ହସି ବୁଢ଼ା ଢଗ ମେଲିଲେ—

"କେଳା ରାଇଜ ଯେ ପଟିଆ ଗାଁ,
ଧନ ପୁରୁଷରେ ଧନ ନାଁ,
ପୁରୁଷେ କାନଗୋଇ, ପୁରୁଷେ ମହାନ୍ତି,
ତହିଁର ପୁଅ ଦାସ ବୋଲନ୍ତି ।"

ସେ ନିଜ କଥା ମଧ୍ୟ ଶୁଣେଇଲେ । "ମୋର ପୂର୍ବପୁରୁଷମାନଙ୍କ ସଂଜ୍ଞା ମଲ୍ଲ ଥିଲା, ତା'ପରେ ରାଉତରାୟ ଓ ଚୌଧୁରୀ ମଧ୍ୟ ହୋଇଗଲେ । ମୋ ପିତା ରଘୁନାଥ ନିଜକୁ ଚୌଧୁରୀ ରଘୁନାଥ ଦାସ ବୋଲି ପରିଚୟ ଦେଉଥିଲେ । ଏବେ ମୁଁ କେବଳ ଶୁଣ୍ଢା 'ଦାସ' ହେଲି ।"

**(୩୩) ଏ ପରବୃତ୍ତିଆ**—ମଧୁବାବୁ ବେଳେ ବେଳେ ଜାତି ପ୍ରକୃତିକୁ ଲକ୍ଷ୍ୟକରି କୌତୁକରେ ଢଗଢମାଳି ବୋଲି ଯୁବକମାନଙ୍କୁ ହସାଉଥିଲେ । ସେ ଥରେ ଢଗ ବୋଲିଲେ—

"ବାଉଁଶ କଦଳୀ କରଣ କଆ,
ଏମାନେ ସବୁ ପରବୃତ୍ତିଆ ।
ବେଳ ଉଣ୍ଡି ଦେଉଥିବ କାଟି,
ନହେଲେ ସବୁ ଖାଇବେ ଲୁଟିଲିଟି ।"

ଏ ମର୍ମରେ ଓଡ଼ିଶାରେ ଆଉ ଢଗ ମଧ୍ୟ ପ୍ରଚଳିତ ଅଛି । ବ୍ରାହ୍ମଣ, ବାଉରି, କୁମୁଟି, ରାଜା, ଷଣ୍ଢ, ଖଣ୍ଡେଇତ ପ୍ରଭୃତିଙ୍କ ସମ୍ବନ୍ଧରେ ଅନେକ ପରିହାସର ଢଗ ଅଛି । ବେଳେ-ବେଳେ ଏଥିରୁ କିଛି ସେ ବୋଲୁଥିଲେ । ପୂର୍ବରୁ ପ୍ରଚଳିତ ବହୁ ଢଗଢମାଳି ପିଲାଦିନରୁ ତାଙ୍କର ମୁଖସ୍ଥ ଥିଲା । ସେ ପୁଣି ଅବସ୍ଥାକୁ ଦେଖି ତତ୍କ୍ଷଣାତ୍ ନୂତନ ଢଗ ଗଢ଼ି ଦେଇ ବକ୍ତବ୍ୟକୁ ରସାଳ କରିଦେଉଥିଲେ ।

**(୩୪) "ବ୍ରାହ୍ମଣ ଗୁମାସ୍ତା କାହିଁକି ରଖୁନାହାନ୍ତି, ଚୌଧୁରୀ ମହାଶୟେ ?"** : ପୁରୀ ଜିଲ୍ଲାର ପ୍ରସିଦ୍ଧ ଜମିଦାର ଶ୍ରୀ କାଶୀନାଥ ଦାଶ ଚୌଧୁରୀ ଇଂରେଜୀ ଶିକ୍ଷାଲାଭରୁ ବଞ୍ଚିତ ହୋଇଥିଲେ ମଧ୍ୟ ତାଙ୍କର ପ୍ରଖର ବୁଦ୍ଧି ଥିଲା । ସେ ଜଣେ ଧୀରସ୍ଥିର ବୁଦ୍ଧିମାନ୍ ଜମିଦାରରୂପେ ସମ୍ମାନ ପାଉଥିଲେ । ଖ୍ରୀ: ୧୮୮୨ରେ 'ଉତ୍କଳ ସଭା' ମଧୁବାବୁ, ଗୌରୀଶଙ୍କର ରାୟ, ରାମଶଙ୍କର ରାୟ ପ୍ରଭୃତିଙ୍କ ଉଦ୍ୟମରେ ଗଠିତ ହୋଇଥିଲା । ସେଥିରେ ଶ୍ରୀ ଚୌଧୁରୀଙ୍କୁ ପ୍ରଥମ ସଭାପତି ନିର୍ବାଚିତ କରାଯାଇଥିଲା । ନିଜେ ମଧୁବାବୁ ଉପସଭାପତି ହୋଇଥିଲେ । ମଧୁବାବୁ ଓ ଚୌଧୁରୀଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ଥିଲା । ଚୌଧୁରୀଙ୍କ ଜମିଦାରୀ ଅଫିସରେ ବ୍ରାହ୍ମଣ ଗୁମାସ୍ତା କେହି ନଥିଲେ, ସେ ଜାଣିଶୁଣି ରଖୁନଥିଲେ । ଦିନେ ମଧୁବାବୁ ଚୌଧୁରୀଙ୍କୁ କୌତୁକରେ ପଚାରିଲେ, "ଆପଣ ବ୍ରାହ୍ମଣ ଗୁମାସ୍ତା ରଖୁ ନାହାନ୍ତି କାହିଁକି ?" ଚୌଧୁରୀ ଉତ୍ତରରେ କହିଲେ, "ଓଳିଗୁଡ଼ାକ ତ ଖାଇ ଜାଣନ୍ତି ନାହିଁ, ଆମକୁ ଖୁଆଇବେ କେମିତି ?"

**(୩୫) "ଉମେଶ, କଳାକୃଷ୍ଣଙ୍କୁ ଭଜିଲଣି କି ?"** : ଉମେଶ ନାମରେ ଜଣେ ମୋହରିର ଥାଆନ୍ତି । ସେ ଅଫିମ ଖାଉଥିଲେ । ତାଙ୍କୁ ଦେଖିବା ମାତ୍ରେ ମଧୁବାବୁ ହସି ହସି କହନ୍ତି, "କି ହୋ ଉମେଶ, କଳାକୃଷ୍ଣଙ୍କୁ ଭଜିଲଣି କି ?" ମଧୁବାବୁ ହୁକା ଟାଣୁଥିଲେ । ଥରେ ଥରେ ସେ କୌତୁକରେ କହନ୍ତି, "ହୁକାର ସଙ୍ଗୀତମୟ ଶବ୍ଦ ଓ ଧୂଆଁ ନ ବାହାରିଲେ ମୋ ମୁଣ୍ଡରୁ ବୁଦ୍ଧି ବାହାରେ ନାହିଁ ।"

**(୩୬) "ପବ୍ଲିକ୍ ଓମ୍ୟାନ୍ ହେବା ସହଜ; ପବ୍ଲିକ୍ ମ୍ୟାନ୍ ହେବା ସହଜ ନୁହେଁ"**: ଓଡ଼ିଶାର ଜଣେ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ କାର୍ଯ୍ୟରୁ ଅବସର ଗ୍ରହଣ କରିସାରି ମଧୁବାବୁଙ୍କୁ ଦେଖାକଲେ । ମଧୁବାବୁଙ୍କ ସହିତ ସେ ଅନେକ ବିଷୟରେ କଥାବାର୍ତ୍ତା କରିସାରିଲା ପରେ କହିଲେ, "ମୁଁ ତ ଅବସର ନେଲିଣି, ଏଥର ପବ୍ଲିକ୍ ମ୍ୟାନ୍ (Public man, ଅର୍ଥାତ୍ ଦେଶସେବକ) ହେବାକୁ ଚାହେଁ ।" ମଧୁବାବୁ ଧୀର ଗମ୍ଭୀର ଭାବରେ କହିଲେ, "ପବ୍ଲିକ୍ ଓମ୍ୟାନ (Public woman, ଅର୍ଥାତ୍ ବେଶ୍ୟା) ହେବା ସହଜ, କିନ୍ତୁ ପବ୍ଲିକ୍ ମ୍ୟାନ୍ (ଦେଶସେବକ) ହେବା ସହଜ ନୁହେଁ ।"

**(୩୭) "ଗୋପାଳ, ତୋ କୋଣାର୍କ କେତେ ଦୂର ଗଲା ?"** : କଟକର ପ୍ରସିଦ୍ଧ ଓକିଲ (ରାୟ ବାହାଦୂର) ଗୋପାଳଚନ୍ଦ୍ର ପ୍ରହରାଜ ମଧୁବାବୁଙ୍କର ଜୁନିଅର୍ ଥିଲେ । ପରେ ସେ ବିରାଟ ଗ୍ରନ୍ଥ "ଓଡ଼ିଆ ଭାଷାକୋଷ" ପ୍ରଣୟନରେ ନିଜକୁ ନିୟୋଜିତ କଲେ । ଭାଷାକୋଷର କେତେ ଖଣ୍ଡ ବନ୍ଧ ପ୍ରକାଶିତ ହୋଇ ସାରିବା ପରେ ଦିନେ ମଧୁବାବୁ ତାଙ୍କୁ କହିଲେ, "ଗୋପାଳ, ତୋ କୋଣାର୍କ ତିଆରି କେତେଦୂର ଗଲା ? ଗଢ଼ା ଶେଷ ହେଲଣି ? କର, କର । ଲୁଣି ହାଉଆରେ ପଥର ଘୋରିହୋଇ ଯିବ, ଦେଉଳ ଭୁଶୁଡ଼ି ପଡ଼ିବ ; କିନ୍ତୁ ତୁ ମନେରଖ, ତୁ ଓଡ଼ିଆଙ୍କ ପିଣ୍ଡ ଟାଣ କରିଦେଉଛୁ ।" ଓଡ଼ିଶାର

ବାତାବରଣ ଏଭଳି ବିରାଟ ଉଦ୍ୟମର ଅନୁକୂଳ ନୁହେଁ, ଶ୍ରମ ପଣ୍ଡ ହୋଇଯିବାର ଆଶଙ୍କା ଅଛି, ଏହାକୁ ଲକ୍ଷ୍ୟକରି ମଧୁବାବୁ ଏହି ମନ୍ତବ୍ୟ ପ୍ରକାଶ କରିଥିଲେ । ତାଙ୍କ ନିଜ ଜୀବନରେ, ନିଜ ଉଦ୍ୟମରେ ଗଠିତ ବ୍ୟବସାୟ ଓ ସାମାଜିକ ସଂସ୍ଥାଗୁଡ଼ିକ ଭାଙ୍ଗି ପଡ଼ି ଧ୍ୱଂସ ହୋଇଯାଇଥିବା ଓ ଉଦ୍ୟମକାରୀ ସେ ନିଜେ ଧ୍ୱଂସ ହୋଇଯାଇଥିବା କଥାକୁ ମଧୁବାବୁ ମନରେ ରଖି ଏହା କହିଥିଲେ । ଓଡ଼ିଶାରେ ଗୋପାଳ ପ୍ରହରାଜଙ୍କ ଭାଷାକୋଷ ପ୍ରତି ଉପଯୁକ୍ତ ଆଗ୍ରହ ଓ ପୃଷ୍ଠପୋଷକତାର ଅଭାବ ହିଁ ଏହାର କାରଣ । ତେବେ, ମଧୁବାବୁ ଜାତିପ୍ରତି ଗୋପାଳଙ୍କ ଦାନକୁ ପ୍ରଶଂସା କରିଛନ୍ତି ।

(୩୮) **"ମିତ୍ର ମହାଶୟ, କୋଣାର୍କ ଆଦି ମନ୍ଦିରମାନଙ୍କର ନିର୍ମାତାମାନେ କଣ ଓଡ଼ିଆ ନଥିଲେ ?"** : ବଙ୍ଗର ବିଖ୍ୟାତ ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର କେନ୍ଦ୍ର ସରକାରଙ୍କଦ୍ୱାରା ନିଯୁକ୍ତ ହୋଇ ଓଡ଼ିଶାର ପ୍ରାଚୀନ କୀର୍ତ୍ତି (ପୁରୀ, ଭୁବନେଶ୍ୱର, କୋଣାର୍କ ଓ ଯାଜପୁରର ମନ୍ଦିର) ସମ୍ବନ୍ଧରେ ଇଂରେଜୀରେ, 'Antiquities of Orissa' ନାମକ ଏକ ଗ୍ରନ୍ଥ ଲେଖିଥିଲେ । ଗ୍ରନ୍ଥଟି ମୁଦ୍ରିତ ହୋଇଥିଲା । ଓଡ଼ିଆ ଭାଷାକୁ ଲୋପ କରିଦେଇ ତାହା ସ୍ଥାନରେ ବଙ୍ଗଭାଷା ପ୍ରଚଳନ ପାଇଁ ବଙ୍ଗ ଓ ଓଡ଼ିଶା ଦେଶରେ ନ'ଅଙ୍କ ଦୁର୍ଭିକ୍ଷ ପରେ ଯେଉଁ ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ତାହାର କର୍ଣ୍ଣଧାର ଥିଲେ ରାଜେନ୍ଦ୍ରଲାଲ ମିତ୍ର । ସେ 'ରାଜା' ଓ 'ଡକ୍ଟର' ଉପାଧିରେ ମଧ୍ଯ ଭୂଷିତ ହୋଇଥିଲେ । ଖ୍ରୀ: ୧୮୮୬ରେ କଲିକତାରେ କଂଗ୍ରେସର ଅଧିବେଶନ ବସିଥିଲା । ସେଥିରେ ଶ୍ରୀ ମିତ୍ର ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ବୋମ୍ବେର ଦାଦାଭାଇ ନଓରୋଜୀ ସଭାପତି ଥିଲେ । ମଧୁବାବୁ ଏହି ଅଧିବେଶନରେ ଯୋଗ ଦେଇଥିଲେ । ମିତ୍ରଙ୍କ ସହିତ ଦେଖା ହେବାରୁ ମଧୁବାବୁ କହିଲେ, "ରାଜେନ୍ଦ୍ର ବାବୁ, ଆପଣ ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କ ସମ୍ବନ୍ଧରେ ବହି ଲେଖି ପ୍ରକାଶ କଲେ । ଆପଣ କଣ ଭାବୁଛନ୍ତି ଯେ, ଏହି ବିଶାଳ ମନ୍ଦିରମାନଙ୍କର ନିର୍ମାତାମାନେ ଓଡ଼ିଆ ଭାଷାଭାଷୀ ଲୋକ ନଥିଲେ ।" ଏଥିରେ ମିତ୍ରଙ୍କ ଓଡ଼ିଆ ବିଦ୍ୱେଷ ଭାବକୁ ହିଁ ଲକ୍ଷ୍ୟ କରାଯାଇଛି । ମିତ୍ର ଆଉ କଣ ଉତ୍ତର ଦେବେ ? ତାଙ୍କ ମୁହଁ ଶୁଖିଯାଇଥିଲା ବୋଲି କେହି କେହି କହୁଥିଲେ ।

(୩୯) **କଳା ପଥର, ଧଳା ପଥର** : ଦିନେ କଟକଜିଲ୍ଲା ବାଙ୍କୀ ନିକଟସ୍ଥ ପ୍ରସିଦ୍ଧ କଳା ପଥର ଗ୍ରାମର ଜଣେ ମହାଜନ ମଧୁବାବୁଙ୍କଠାକୁ ଆସିଥିଲେ । କଳା ପଥର, ଧଳା ପଥର ଦୁଇଟି ଗ୍ରାମର ନାମ । ଦୁଇଟି ଲଗାଲଗି ହୋଇ ଅଛି ଓ ମଝିରେ ନାଳଟିଏ ବହିଯାଉଛି । ନାଳଟି ଦୁଇ ଗ୍ରାମର ସୀମା । ମଧୁବାବୁ ଏ ଦୁଇଟି ଗ୍ରାମ ଲଗାଲଗି ହୋଇ ରହିଥିବା ଜାଣିପାରି କୌତୁକରେ ମହାଜନଙ୍କୁ ପଚାରିଲେ, "ତୁମ ଗ୍ରାମ ଦୁଇଟିରେ ଜଗନ୍ନାଥ ବଳଭଦ୍ର ମହାପ୍ରଭୁ ବିଜେ ହୋଇଛନ୍ତି କି ?" ଜଗନ୍ନାଥ କଳା, ବଳଭଦ୍ର ଧଳା— ଏ ଦୁହେଁ ପଥର ପାଲଟି ଏଠାରେ ରହିଯାଇଛନ୍ତି ; ଏହି ଭାବକୁ ଲକ୍ଷ୍ୟ କରି ମଧୁବାବୁ କୌତୁକରେ ଏହି କଥାଟି କହିଥିଲେ ।

**(୪୦) "ଆଠଖଣ୍ଡ କାଠକୁ ଷୋଳଖଣ୍ଡ ଯନ୍ତ୍ରୀ,**
**ମେଳମର୍ଜି ପୋଡଛନ୍ତ ପାଳବଣ୍ଡା ମନ୍ତ୍ରୀ" :**

ସେତେବେଳେ କେତେକ ଗଡ଼ଜାତରେ ବାରମ୍ବାର ମେଳି ହେଉଥିଲା । ପଲିଟିକାଲ୍ ଡିପାର୍ଟମେଣ୍ଟଙ୍କ ସୁପାରିସକ୍ରମେ ବିଭିନ୍ନ ଗଡ଼ଜାତରେ ଦେବାନ (ବା ମନ୍ତ୍ରୀ) ନିଯୁକ୍ତ ହେଉଥିଲେ । ଏ ଦେବାନମାନଙ୍କ ମଧ୍ୟରେ କେତେକ ସେ ପଦ ପାଇଁ ଏକାବେଳକେ ଅଯୋଗ୍ୟ ଥିଲେ । ଆଉ କେତେକ ପୁଣି ବେଶି ବୁଦ୍ଧିଆ ଥିଲେ; ଏମାନେ ଟାଉଟରିଆ ବୁଦ୍ଧିରେ ଭିତରେ ଭିତରେ ମେଳି ଲଗାଇ ଦେଇ ତାକୁ ଦମନ କରିବାରେ ଲାଗିଯାଆନ୍ତି ଓ ବାହାଦୁରି ନିଅନ୍ତି । ଏଥିରେ ରାଜ୍ୟ ସର୍ବସ୍ୱାନ୍ତ ହୋଇଯାଏ, ପ୍ରଜାମାନେ ଦୁଃଖରେ କାଳ କାଟନ୍ତି, ବହୁ ଲୋକ ବିନା ଦୋଷରେ ଦଣ୍ଡ ପାଆନ୍ତି । କେନ୍ଦୁଝର, ଦଶପଲ୍ଲା ପ୍ରଭୃତିରେ ଏପରି କେତେ ଥର ମେଳି ହୋଇଥିଲା । ଏ ମେଳିର ଭୟାବହ ଫଳପାଇଁ ଅଯୋଗ୍ୟ ଦେବାନମାନେ ମୁଖ୍ୟଭାବରେ ଦାୟୀ ବୋଲି ମଧୁବାବୁ କହୁଥିଲେ । ଦୁଷ୍ଟ ରାଜାମାନଙ୍କୁ ମଧ୍ୟ ସେ ଦୋଷୀ ବୋଲି ମତ ବ୍ୟକ୍ତ କରୁଥିଲେ । ଏ ସମ୍ପର୍କରେ ଏହି ପ୍ରାଚୀନ ଢଗଟି ସେ ବୋଲୁଥିଲେ ।

**(୪୧) "ଆଳୀ ରାଇଜର ବାଳୀ ବୁଝାମଣା, ଫାଟରୁ କୁମ୍ଭୀର ଖାଏ ।"**

ସେତେବେଳେ ମୋଗଲବନ୍ଦୀର ଜମିଦାରମାନଙ୍କ ଭିତରେ ମଧ୍ୟ ଦୋଷଦୁର୍ବଳତା ଦେଖାଯାଉଥିଲା । କେତେ ଜଣ ଜମିଦାର ସବୁବେଳେ ଅଯଥା ମକଦ୍ଦମା ଓ ଗଣ୍ଡ-ଗୋଳରେ ବୁଡ଼ି ରହୁଥିଲେ । ଯେଉଁ ଜମିଦାରୀକୁ ବାଟ ଯେତେ ଅଗମ୍ୟ, ସେଠାରେ ସେତେ ବେଶି ଅତ୍ୟାଚାର ଦେଖାଯାଉଥିଲା । ଜମିଦାର ଓ ପ୍ରଜା ସମସ୍ତେ ହଇରାଣ ହେଉଥିଲେ । ନିଜ ଜମିଦାରୀ ଭିତରେ ବାହାଦୁରି ଦେଖାଉଥିଲେ ମଧ୍ୟ କୋର୍ଟ କଚେରି ବେଳକୁ ଜମିଦାରଙ୍କ ବୁଦ୍ଧି ବଣା ହୋଇଯାଏ, ବାରଦ୍ୱାରି ହୁଅନ୍ତି । ପ୍ରଜାମାନେ ସର୍ବସ୍ୱାନ୍ତ ହୋଇଯାଆନ୍ତି । ଜମିଦାରୀ ପରିଚାଳନାରେ ଅପାରଗତାହିଁ ଏହାର ପ୍ରଧାନ କାରଣ । ଏହି ସମ୍ପର୍କରେ ମଧୁବାବୁ ଏହି ପ୍ରଚଳିତ ଢଗଟି ବୋଲୁଥିଲେ ।

**(୪୨) "ମୁଁ ଜଣେ ପାପୀ"** : ମଧୁବାବୁ କୌତୁକ କରିବାରେ ପଟୁ ଥିଲେ । ଥରେ ଏକ ସଭାରେ ବକ୍ତୃତା ଦେବାବେଳେ ସେ କହିଲେ, "ମୁଁ ଜଣେ ପାପୀ । ଗୋଧି, ବୋଡ଼ା, କୁମ୍ଭୀରମାନଙ୍କ ଚମଡ଼ା ସକାଶେ ମରାଉଛି ।" ମଧୁବାବୁ ଚମଡ଼ା କାରଖାନା କରିଥିବା ପ୍ରସଙ୍ଗକୁ ଏଠାରେ ଲକ୍ଷ୍ୟ କରିଥିଲେ । ଏକଥା ଶୁଣି ସଭାରେ ହାସ୍ୟରୋଳ ଉଠିଥିଲା । ବ୍ୟବସାୟରେ ପାରଙ୍ଗମ ନହେଲେ ଓ ବ୍ୟବସାୟ ପ୍ରତିଷ୍ଠାନର ସଂଖ୍ୟା ଓ ମାନ ବୃଦ୍ଧି ନପାଇଲେ, ଦେଶର ସମୃଦ୍ଧି ଉନ୍ନତି ଅସମ୍ଭବ—ଏହା ସେ ବାରମ୍ବାର କହୁଥିଲେ । ବ୍ୟବସାୟ କରିବା ପାଇଁ କିପରି ଭଲ ମନ୍ଦ ସବୁ କାର୍ଯ୍ୟ କରିବାକୁ ପଡ଼େ, ତାହା ମଧୁବାବୁ ନିଜ ଜୀବନର ଅନୁଭୂତିରୁ ( ଚମଡ଼ା କାରଖାନାକୁ ଲକ୍ଷ୍ୟ କରି ) କହୁଥିଲେ ।

(୪୩) **"ଗୋଠ ମାଡଲେ ଖଣ୍ଡିଆ ମାଡେ"** : ଥରେ ଉତ୍କଳ ସମ୍ମିଳନୀର ଅଧିବେଶନକୁ ଜଣେ ଶ୍ରେଷ୍ଠ ଅବଧାନ ଆସିଥାଆନ୍ତି । ସେ ଅଧିବେଶନର ସାଜସଜ୍ଜା, କାର୍ଯ୍ୟମୁଖରତା ଓ ମଧୁବାବୁଙ୍କ ଅକ୍ଳାନ୍ତ ପରିଶ୍ରମ ଓ ପ୍ରେରଣାର ପ୍ରଭାବ ଦେଖି ମୁଗ୍ଧ ହୋଇ ଯାଇଥାଆନ୍ତି । ଅଧିବେଶନବେଳେ ସେ ଭାବାବେଶରେ ଗ୍ରେଣ୍ଟେଇ ଗ୍ରେଣ୍ଟେଇ ଯାଇ ମଣ୍ଡପ ଉପରକୁ ଉଠିଗଲେ ଓ ବଡ଼ ପାଟି କରି ପଦେ ଗୀତ ଗାଇଲେ—

କି ମନ୍ତ୍ର ଫୁଙ୍କିଲୁ ସୁମନ୍ତ୍ର ବୁଢ଼ା,
ଯେମନ୍ତେ ଏ ଜାତି ହୋଇବ ଗଢ଼ା ।

ଦର୍ଶକମାନେ ଗୀତ ପଦକ ଶୁଣି ମୁଗ୍ଧ ହୋଇଗଲେ । ଘନ ଘନ କରତାଳି ହେଲା । ମଧୁବାବୁ ଏ ଦୃଶ୍ୟ ଦେଖି ଟିକିଏ ହସିଲେ । ତାଙ୍କୁ ଗୀତରେ ଲକ୍ଷ୍ୟ କରାଯାଇଥିବା ସମସ୍ତେ ବୁଝିଲେ । ମଧୁବାବୁ ସ୍ୱେଚ୍ଛାସେବକମାନଙ୍କୁ କୌତୁକରେ କହିଲେ, "ଗୋଠ ମାଡଲେ ଖଣ୍ଡିଆ ମାଡେ । ଏ ବାବୁଙ୍କୁ ଗୋଟିଏ ସମ୍ମିଳନୀ ପଗଡ଼ି ଦିଅ ।" ଏହି ଉପହାର ଲାଭକରି ଅବଧାନ ନିଜକୁ ଗୌରବାନ୍ୱିତ ମନେକରିଥିଲେ ।

(୪୪) **"ପାଠ ପଢ଼ିବ ଓକିଲ ହେବ, ମଧୁବାବୁ ସଙ୍ଗେ ଲଢ଼ିବ"** : ଏ ପଦକ ସେ ସମୟର ଶିଶୁପାଠରେ ଥିଲା । ବାଙ୍କୀର ଗୋବିନ୍ଦ ରଥ ଜଣେ ଦେଶଭକ୍ତ । ଓଡ଼ିଆ ଭାଷା ଶିକ୍ଷା ପାଇଁ ସେତେବେଳେ ପାଠ୍ୟପୁସ୍ତକର ଅଭାବ ଥିଲା । ମଧୁ ରାଓଙ୍କର 'ଓଡ଼ିଆ ବର୍ଣ୍ଣବୋଧ' ସର୍ବତ୍ର ପ୍ରଚଳିତ ଥିଲା । ରଥେ 'ଓଡ଼ିଆ ବର୍ଣ୍ଣବୋଧକ' ଲେଖିଲେ । ସେଥିରେ ଏ ପଦଟି ଲେଖାଥିବା ଜଣାଯାଏ ।

ମଧୁବାବୁ ୧୦ ବର୍ଷ କାଳ କଟକ ଜିଲ୍ଲାବୋର୍ଡର ଭାଇସ୍ ଚେୟାରମ୍ୟାନ୍ ଥିଲେ । ସେ ବହୁ ଶିକ୍ଷକଙ୍କୁ ଆଧୁନିକ ଧରଣର ଶିକ୍ଷା ଦେବାପାଇଁ ଉପଯୁକ୍ତ ଟ୍ରେନିଂ ଦିଆଇଲେ । ମାଷ୍ଟ୍ରମାନଙ୍କର ଦରମା ମଧ୍ୟ ବୃଦ୍ଧି ପାଇଥିଲା । ସେତେବେଳେ ଓଡ଼ିଶାରେ ମଧୁବାବୁ ପ୍ରଥମ ଏମ୍. ଏ. ବି. ଏଲ୍. । ବି. ଏଲ୍. ପାଶ କରି ଓକିଲାତି କରିବା ଓଡ଼ିଆ ଓକିଲଙ୍କ ଭିତରେ ମଧୁବାବୁ ସର୍ବପ୍ରଥମ । ଭଲ ଓକିଲରୂପେ ତାଙ୍କର ଖ୍ୟାତି ଥିଲା । ସେ ଭଲ ଯୁକ୍ତିତର୍କ କରିପାରୁଥିଲେ ଓ ଭଲ ବକ୍ତୃତା ମଧ୍ୟ ଦେଇପାରୁଥିଲେ । ଦେଶପ୍ରୀତି ମଧ୍ୟ ତାଙ୍କର ଅଦ୍ୱିତୀୟ ଥିଲା । ସେଥିପାଇଁ ସବୁ କ୍ଷେତ୍ରରେ ସେ ଆଦର୍ଶ ସ୍ଥାନୀୟ ଥିଲେ । ସେହି ହେତୁ ରଥେ ଏ ପଦଟି ପିଲାଙ୍କୁ ଉପଦେଶ ଦେବା ଉଦ୍ଦେଶ୍ୟରେ ଲେଖିଥିଲେ । ମଧୁବାବୁଙ୍କୁ ଥରେ ଜଣେ ଭଦ୍ରବ୍ୟକ୍ତି ଏ ପଦଟିର ଅର୍ଥ ପଚାରିବାରୁ ସେ କୌତୁକରେ କହିଲେ, "ମୁଁ କଣ ପହିଲମାନ ହୋଇଛି ଯେ ମୋ ସଙ୍ଗେ ଲଢ଼େଇ ହେବ ? ଦେଖୁଛ ତ ମୋ ରୂପ, ଫୁଙ୍କିଦେଲେ ପଡ଼ିଯିବ ।" ଲଢ଼ିବା କଥାଟା ପାଠକୁ ଲକ୍ଷ୍ୟ କରାଯାଇଥିବ । ପିଲାମାନେ ପାଠରେ ଲଢ଼ନ୍ତୁ, ବଡ଼ ହେଲେ ମୋପରି ଓକିଲ ହୋଇ ଜବାବସୁଆଲରେ ମୋତେ ହରେଇ ପାରିଲେ ବାହାଦୁରି ହେବ, ଏହାହିଁ ତାତ୍ପର୍ଯ୍ୟ । ସେ ପୁଣି କହନ୍ତି, "ମାଷ୍ଟ୍ରମାନେ

କୃତଜ୍ଞତା ଜ୍ଞାପନ କରିବାପାଇଁ ଏପରି ପଦ ମଧ୍ୟ ପିଲାଙ୍କୁ ଶିଖାଇଥାଆନ୍ତି । ମୁଁ ସେମାନଙ୍କର ଉପକାର କରିଛି ବୋଲି ସେମାନେ ମାନନ୍ତି । ଏ ପଦଟି ମାଷ୍ଟରମାନଙ୍କର ସୃଷ୍ଟି । ପରେ ପୁସ୍ତକ ଲେଖକ ପୁଣି ଏହାକୁ ପାଠ୍ୟପୁସ୍ତକରେ ସ୍ଥାନ ଦେଲେ ।"

(୪୫) **"ନିଭୃତ ନିଳୟ ଶାନ୍ତିନିବାସ—ମୋ ଭାଗ୍ୟକୁ ନିଭୃତ ନାହିଁ, କି ଶାନ୍ତି ନାହିଁ"** : ରାଧାନାଥ, ଫକୀରମୋହନ ଓ ମଧୁବାବୁ ଏ ତିନିହେଁ ଯୌବନାବସ୍ଥାରେ ବାଲେଶ୍ୱରରେ ଶିକ୍ଷକତା କରୁଥିଲାବେଳେ ଘନିଷ୍ଠ ବନ୍ଧୁ ଥିଲେ । ତିନିହେଁ ଓଡ଼ିଶାରେ ଖ୍ୟାତି ଅର୍ଜିଥିଲେ । ଏହାର ବହୁ ପରେ ମଧୁବାବୁ ବନ୍ଧୁମାନଙ୍କୁ ଲକ୍ଷ୍ୟକରି କୌତୁକରେ ବେଳେବେଳେ କେତେ କଥା କହୁଥିଲେ, "ରାଧାନାଥ ରାୟ କଟକ ନିକଟସ୍ଥ ଧବଳେଶ୍ୱର ଦ୍ୱୀପ ଭିତରେ ଏକ କୁଟୀର ନିର୍ମାଣ କରି ତାହାର ନାମ ଦେଇଥିଲେ 'ନିଭୃତ ନିଳୟ' । ଫକୀରମୋହନ ବାଲେଶ୍ୱରରେ 'ଶାନ୍ତି ନିବାସ' ନିର୍ମାଣ କରି ସେଠାରେ ରହି କବିତା ଲେଖିଲେ । ମୋ ଭାଗ୍ୟକୁ ଏପରି 'ନିଳୟ' କି 'ନିବାସ' ମିଳିଲା ନାହିଁ । ମୋ ଭାଗ୍ୟରେ କବିତା ଲେଖା ଘଟିଲା ନାହିଁ, କି ଘଟିବ ମଧ୍ୟ ନାହିଁ ।"

(୪୬) **"ରାଧାନାଥ ଭଲ ଜାଗାରେ ଘର କଲା, ନନ୍ଦିକେଶ୍ୱରୀ ଲେଖିଲା"** : ମଧୁବାବୁ ବେଳେ ବେଳେ କାଠଯୋଡ଼ି ନଦୀ କୂଳରେ ବୁଲିବାକୁ ଯାଉଥିଲେ । ଦିନେ ନଦୀ ଭିତରର ନନ୍ଦିକେଶ୍ୱରୀ ପଠାକୁ ଦେଖି ସେ ବନ୍ଧୁମାନଙ୍କୁ କହି ପକାଇଲେ, "ରାଧାନାଥ ନଈକୂଳରେ ରହିନଥିଲେ ଏ ପଠାର ମାହାତ୍ମ୍ୟ କିପରି ଜାଣିଥାଆନ୍ତା ? ରାଧାନାଥ ଭଲ ଜାଗାରେ ଘର କଲା 'ନନ୍ଦିକେଶ୍ୱରୀ' ଲେଖିଲା ।"

(୪୭) **"କର୍ଜନ ବଙ୍ଗରେ ଦୁର୍ଜ୍ଜନ ତ ଓଡ଼ିଶାରେ ସଜ୍ଜନ"** : କଲିକତାର ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ପିତାଙ୍କ ସହିତ ମଧୁବାବୁଙ୍କର ମିତ୍ରତା ଥିଲା । ବଙ୍ଗାଳୀମାନେ ବଡ଼ଲାଟ ଲର୍ଡ଼ କର୍ଜନଙ୍କୁ ବଙ୍ଗ ଭଙ୍ଗ ଯୋଗୁଁ ଗାଳିଦେଉଥିଲେ ଏବଂ ହାସ୍ୟଚ୍ଛଳରେ 'କର୍ଜ୍ଜନ'ଙ୍କୁ 'ଦୁର୍ଜ୍ଜନ' ବୋଲି କହୁଥିଲେ । ଥରେ ଏହି କଥା ଉଠାଇ ମଧୁବାବୁ କୌତୁକରେ କହିଲେ, "ତୁମେ କର୍ଜ୍ଜନଙ୍କୁ ଦୁର୍ଜ୍ଜନ କହିଲେ ମଧ୍ୟ ତାଙ୍କୁ ଆମେ ଓଡ଼ିଶାବାସୀ 'ସଜ୍ଜନ' ବୋଲି କହିବୁ ।" ଓଡ଼ିଶା ଦେଶମିଶ୍ରଣ ଓ ଓଡ଼ିଆମାନଙ୍କର ବହୁ ଦାବୀପ୍ରତି କର୍ଜନଙ୍କ ସହାନୁଭୂତି ଥିଲା ଏବଂ ତାଙ୍କ ଅମଳରେ ଓଡ଼ିଶାର କେତେକ ଉନ୍ନତି ସାଧିତ ହୋଇଥିଲା । ମଧୁବାବୁ ଏହି ସୁକାର୍ଯ୍ୟକୁ ଲକ୍ଷ୍ୟକରି କର୍ଜନଙ୍କୁ 'ସଜ୍ଜନ' ବୋଲି କହିଥିଲେ ।

(୪୮) **"ସପ୍ତକୋଟି ନା ପଞ୍ଚକୋଟି"** : ଥରେ ବଙ୍ଗର ବିଖ୍ୟାତ କବି ଓ ଗାୟକ ଦ୍ୱିଜେନ୍ଦ୍ରଲାଲ ରାୟଙ୍କୁ କଲିକତାରେ ଦେଖି ମଧୁବାବୁ କହିଲେ, "ଆପଣ ବିଖ୍ୟାତ ଜାତୀୟ କବିତା 'ବଙ୍ଗ ଆମାର, ଜନନୀ ଆମାର, ଧାତ୍ରୀ ଆମାର'ରେ 'ସପ୍ତକୋଟି ସନ୍ତାନ' ବୋଲି ଲେଖିଛନ୍ତି ; କିନ୍ତୁ ପ୍ରକୃତରେ ବଙ୍ଗୀୟ ଲୋକଙ୍କ ସଂଖ୍ୟା ୧୮୯୧ ସାଲର

ଜନଗଣନା ଅନୁସାରେ ପାଞ୍ଚକୋଟି ମାତ୍ର । ଆପଣ ବିହାର ଓ ଓଡ଼ିଶାର ଜନସଂଖ୍ୟାକୁ ଏଥିରେ କାହିଁକି ମିଶାଇଲେ ? 'ପାଞ୍ଚକୋଟି ସନ୍ତାନ' କହିଥିଲେ ଠିକ୍ ହୋଇଥାଆନ୍ତା ।

ଦ୍ୱିଜେନ୍ଦ୍ରଲାଲ ରାୟ ( ଡି. ଏଲ୍. ରାୟ ) ଏହାର ଯଥାର୍ଥ ଉତ୍ତର ଦେଇ ପାରି ନଥିଲେ ମଧ୍ୟ ତାଙ୍କ ଲେଖାରେ ବୃହତ୍ତର ଜାତୀୟଭାବ ନିହିତ ଥିବା ବ୍ୟକ୍ତ କରିଥିଲେ । କିନ୍ତୁ ବଙ୍ଗାଳୀମାନଙ୍କ ଭିତରୁ କେତେକ ବିଶିଷ୍ଟ ନେତା ଓଡ଼ିଶାର ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଦାବୀର ବିରୋଧ କରୁଥିବାରୁ ଏବଂ ଅଳ୍ପ କେତେ ବର୍ଷ ପୂର୍ବେ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ଆନ୍ଦୋଳନ କଲିକତାରେ ଚାଲିଥିବାରୁ ମଧୁବାବୁ ରାୟଙ୍କ ଉକ୍ତିରେ ଏହି ସଂକୀର୍ଣ୍ଣ ମନୋଭାବର ଗୁପ୍ତ ଆଶଙ୍କା କରିଥିଲେ । ସେତେବେଳେ ବହୁ ବଙ୍ଗୀୟ ନେତା ବଙ୍ଗଭଙ୍ଗ ଆନ୍ଦୋଳନରେ ଯୋଗଦେଇ ବହୁ ତ୍ୟାଗ ସ୍ୱୀକାର କରିଥିଲେ ମଧ୍ୟ ଓଡ଼ିଶା ଦେଶମିଶ୍ରଣ ପ୍ରସଙ୍ଗ ଉଠୁଥିବା ବେଳେ ଏହାକୁ 'ସଂକୀର୍ଣ୍ଣ ପ୍ରାଦେଶିକତା' ବୋଲି ଉଡ଼ାଇ ଦେଉଥିଲେ; ବଙ୍ଗଠାରୁ ଓଡ଼ିଶା ବିଚ୍ଛିନ୍ନ ହେବା ସପକ୍ଷରେ ସେମାନେ ନଥିଲେ ।

**(୪୯) "ଆହା ! ଜାନକୀ ପରି ହର୍ଷମୁଖା ଓ ଗୋକୁଳାନନ୍ଦ ପରି ରାହୁଆ ହୋଇଥାନ୍ତି କି ?"** : କଟକର ନାମଜାଦା ଓକିଲ ଶ୍ରୀ ଜାନକୀ ନାଥ ବସୁ ଦେଖିବାକୁ ସୁନ୍ଦର ଥିଲେ । ଅନ୍ୟତମ ଖ୍ୟାତିସମ୍ପନ୍ନ ଓକିଲ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀଙ୍କ ମୁହଁଟି ବାଘମୁହଁ ପରି । ନିଜର ଦୁର୍ବଳ ଶରୀର, ଅସୁନ୍ଦରିଆ ଚେହେରାକୁ ଲକ୍ଷ୍ୟ କରି ମଧୁବାବୁ କୌତୁକରେ କହନ୍ତି, "ଯଦି ଜାନକୀଙ୍କ ପରି 'ହର୍ଷମୁଖା' କି ଗୋକୁଳାନନ୍ଦଙ୍କ ପରି 'ରାହୁଆ' ହୋଇଥାଆନ୍ତି, ତାହାହେଲେ ମୁଁ ନିଜକୁ କେଡ଼େ ଭାଗ୍ୟବାନ ମନେ ନ କରନ୍ତି ! ମୋ ଏ ଚେମଡ଼ ଚେହେରାକୁ ଦେଖି କିଏ ପସନ୍ଦ କରିବ ? ଏ ଦୁଇଜଣଙ୍କ ଆକର୍ଷଣୀୟ ଚେହେରା ଦେଖିଲେ ମୁଁ ମନେ ମନେ ଦବିଯାଏ ।"

**( ୫୦ ) କଚେରୀ ଗୋଟିଏ ଚିଡ଼ିଆଖାନା** ତାଳଚେରର ରାଜା ନୂଆ କରି ଗୋଟିଏ ଚିଡ଼ିଆଖାନା ( Zoo ) ଖୋଲିଥିଲେ ଓ ବହୁପ୍ରକାର ଜନ୍ତୁ ସଂଗ୍ରହ କରି ସେଠାରେ ରଖିଥିଲେ । ଥରେ ସେ କାର୍ଯ୍ୟାନ୍ତରରେ କଟକ ଆସି ମଧୁବାବୁଙ୍କୁ ଦେଖା କରିଥିଲେ । ଆଳାପ ଭିତରେ ମଧୁବାବୁଙ୍କୁ ତାଙ୍କ ଚିଡ଼ିଆଖାନା ଦେଖିବା ନିମନ୍ତେ ଥରେ ତାଳଚେର ଯିବାକୁ ନିମନ୍ତ୍ରଣ ଜଣାଇଲେ । ମଧୁବାବୁ ହସି ହସି କହିଲେ, "ରାଜାସାହେବ, ଆପଣଙ୍କ ଚିଡ଼ିଆଖାନାରେ ସିନା ଜୀବଜନ୍ତୁ ଦେଖିବି, ଏଠାରେ ପ୍ରତିଦିନ ମନୁଷ୍ୟ ଚିଡ଼ିଆଖାନା ଦେଖୁଛି । ମୋ ଘରେ ଓ କଚେରିରେ ହରେକ ରକମର ଲୋକ ଆସୁଛନ୍ତି । ଏଥିରୁ ନିଶ୍ଚୟ କେତେକ ଚିଡ଼ିଆଖାନାରେ ରହିବା ଯୋଗ୍ୟ ।" ରାଜା ଏହା ଶୁଣି ହସିଦେଇ ଚୁପ୍ ହେଲେ ।

**(୫୧) କୋର୍ଟ ଯେତେ ତଳିଆ ହେବ ଫିସ୍ ସେତେ ବଢ଼ିବ (Lower the court, higher the fee ) :** ବଡ଼ ବଡ଼ ଓକିଲମାନେ

ସାଧାରଣତଃ ତଳ କୋର୍ଟରେ ମକଦ୍ଦମା ଧରନ୍ତି ନାହିଁ । ସେମାନେ ଏହାକୁ ଏକ ଅପମାନ ବୋଲି ଭାବନ୍ତି; କିନ୍ତୁ ମଧୁବାବୁଙ୍କର ସେ ଧାରଣା ନଥିଲା । ଥରେ କଟକର ଜଣେ ଧନୀ ମହକିଲ ତଳ କୋର୍ଟରେ ମକଦ୍ଦମା କରିଥିଲେ । ତାଙ୍କର ଇଚ୍ଛା ଥିଲା ଜଣେ ବଡ଼ ଓକିଲଙ୍କୁ ନେଇ କୋର୍ଟରେ ଲଢ଼ିବେ । ସେ ଜଣେ ସିନିଅର୍ ଓକିଲଙ୍କଠାକୁ ଯାଇ ଅନୁରୋଧ କରିବାରୁ ସେ ମନା କରିଦେଲେ । ସେ କହିଥିଲେ, "ତଳିଆ ମାଜିଷ୍ଟ୍ରେଟ୍-ମାନଙ୍କ କୋର୍ଟରେ ଆଇନକାନୁନ୍‌ର ଭଲ ବ୍ୟବହାର ହୁଏନାହିଁ, ସେଥିପାଇଁ ଯିବାକୁ ଇଚ୍ଛା ହୁଏନାହିଁ ।" ମହକିଲ ନିରାଶ ହୋଇ ମଧୁବାବୁଙ୍କଠାକୁ ଗଲେ । ମଧୁବାବୁ ସବୁକଥା ମହକିଲଠାରୁ ଶୁଣି ତାଙ୍କର ଜୁନିଅର୍‌ମାନଙ୍କୁ କହିଲେ, "ଓକିଲମାନେ ମହକିଲଙ୍କୁ ନ୍ୟାୟ ପାଇବାରେ ସାହାଯ୍ୟ କରିବା କଥା । ଏ ହେଲା ମୂଳ ନୀତି । ଯଦି ମହକିଲ ଚାହୁଁଛି ଯେ ତଳ କୋର୍ଟରେ ବଡ଼ ଓକିଲଙ୍କୁ ଠିଆକଲେ ତାର ଉପକାର ହେବ, ତାକୁ ନ୍ୟାୟ ମିଳିବ, ତାହାହେଲେ ବଡ଼ ଓକିଲମାନେ ତଳକୋର୍ଟକୁ ଯିବା ଅନୁଚିତ ହେବନାହିଁ । ନ୍ୟାୟ ବିଚାର ଦୃଷ୍ଟିରେ କୌଣସି କୋର୍ଟ ଶ୍ରେଷ୍ଠ ନୁହେଁ । ପ୍ରତ୍ୟେକ କୋର୍ଟ ସମ୍ରାଟଙ୍କ ପ୍ରତିନିଧି । ତେବେ, ଗୋଟିଏ କଥା ମନେରଖ—ଆମେ ତ ବ୍ୟବସାୟ କରି ପେଟ ପୋଷୁଥାଇଁ, ମହକିଲ ଯେଉଁ କୋର୍ଟକୁ ଡାକିବ ସେଠାକୁ ଯିବା । କିନ୍ତୁ, Lower the court higher the fee (କୋର୍ଟ ଯେତେ ତଳିଆ ହେବ, ଫିସ୍ ଯେତେ ବଢ଼ିବ) ।" ମଧୁବାବୁ ମହକିଲକୁ ବେଶି ଫିସ୍ ଦାବୀ କଲେ । ମହକିଲ ରାଜି ହେବାରୁ ମଧୁବାବୁ ତଳକୋର୍ଟକୁ ଗଲେ । ମଧୁବାବୁଙ୍କର ଏ ନୀତିଟିକୁ କଟକର ବହୁ ଓକିଲ ଗ୍ରହଣ କରିବାକୁ କୁଣ୍ଠାବୋଧ କରି ନଥିଲେ । ଏପରି ପରିସ୍ଥିତି ଉଠିଲେ ସେମାନେ ମଧୁବାବୁଙ୍କ ନୀତିବାକ୍ୟକୁ ଉଦ୍ଧାର କରି ବର୍ଦ୍ଧିତ ହାରରେ ଓକିଲତି ଫିସ୍ ଦାବୀ କରିଥାଆନ୍ତି ।

(୫୬) "ଆପଣମାନେ କଣ ଘୋଡ଼ା ଯେ ଗାଡ଼ି ଟାଣିବେ"; ଥରେ ଗଞ୍ଜାମର ବ୍ରହ୍ମପୁର ସହରରେ ଉତ୍କଳୀୟମାନଙ୍କର ଏକ ବିରାଟ ସଭା ହୋଇଥିଲା । ମଧୁବାବୁ ସେ ସଭାରେ ଯୋଗ ଦେବାପାଇଁ ବ୍ରହ୍ମପୁର ରେଳ ଷ୍ଟେସନରେ ପହଞ୍ଚିବା ମାତ୍ରେ ଉତ୍ସୁକ ଜନତା ମଧୁବାବୁଙ୍କୁ ଘୋଡ଼ାଗାଡ଼ିରେ ବସାଇଦେଇ ଘୋଡ଼ାଙ୍କୁ ଫିଟାଇ ଦେଲେ ଏବଂ ଶହ ଶହ ଲୋକ ଗାଡ଼ିକି ଟାଣିବାକୁ ଲାଗିଲେ । ମଧୁବାବୁ ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଲୋକେ ଗାଡ଼ି ଟାଣି ତାଙ୍କୁ ନେବେ, ଏହା ସ୍ନେହ ଓ ଶ୍ରଦ୍ଧାର ନିଦର୍ଶନ ହେଲେ ମଧ୍ୟ ମାନବିକତା ଦୃଷ୍ଟିରୁ ଏହା ଉଚିତ ନୁହେଁ ବୋଲି ସେ ଭାବିଲେ ଓ ଏପରି କାର୍ଯ୍ୟରୁ ବିରତ ହେବାପାଇଁ ଲୋକଙ୍କୁ ବୁଝାଇଲେ । ଲୋକେ କହିଲେ, "ଆମ ନେତା ଆସିଛନ୍ତି, ଆମ ମଧୁବାବୁ ଆସିଛନ୍ତି । ଆମ ପାଇଁ ସେ କେତେ କାମ କରୁନାହାନ୍ତି ? ତାଙ୍କ ଋଣ ଆମେ କିମିତି ଶୁଝିବୁ ? ତାଙ୍କୁ ଆମେ ଗାଡ଼ିରେ ବସାଇ ଟାଣିନେବା ଆମ ପକ୍ଷେ ଗୌରବ ହେବ ।" ମଧୁବାବୁ ଏକଥାର ମର୍ମ ହୃଦୟଙ୍ଗମ କରିଥିଲେ ମଧ୍ୟ ଲୋକଙ୍କୁ

କହିଲେ, "ଆପଣ ମାନେ ଗାଡ଼ି ଟାଣିବେ, ମୁଁ ଗାଡ଼ିରେ ବସିଥିବି, ଏହା କିମିତି ହେବ ? ଆପଣମାନେ କଣ ଘୋଡ଼ା ଯେ ଗାଡ଼ି ଟାଣିବେ ?" ମଧୁବାବୁ ଏତିକି କହି ଗାଡ଼ିରୁ ଓହ୍ଲାଇ ପଡ଼ି ଚାଲିଲେ ଓ ଅତି ଜୋର୍‌ରେ ଚାଲି ଚାଲି ଯାଇ ସଭାସ୍ଥଳରେ ପହଞ୍ଚିଲେ ।

## ୩୪ । ମଧୁବାବୁଙ୍କର କେତେକ ମତାମତ

ମଧୁବାବୁ ତାଙ୍କର ପ୍ରାୟ ଅର୍ଦ୍ଧଶତାବ୍ଦୀର କର୍ମମୟ ଜୀବନ ଭିତରେ ବହୁ ସମୟରେ ବହୁ କ୍ଷେତ୍ରରେ ଶତ ଶତ ମତ ପ୍ରକାଶ କରିଛନ୍ତି । ସମସ୍ୟା ସମ୍ବନ୍ଧରେ ତାଙ୍କର ଅନୁଧ୍ୟାନରେ ନୂତନତା ଥିଲା, ତୀକ୍ଷ୍ଣତା ଥିଲା । ତାଙ୍କର ମତ ଶୁଣିଲାକ୍ଷଣି ପ୍ରଥମେ ଶ୍ରୋତା ପକ୍ଷରେ କଥାର ମର୍ମ ବୁଝିବା କଷ୍ଟକର ହେଉଥିଲା ; କିନ୍ତୁ ତାଙ୍କ ଯୁକ୍ତିର କୌଶଳ ବଳରେ ସେ ସୂକ୍ଷ୍ମାତିସୂକ୍ଷ୍ମ ବିଷୟର ବିଶ୍ଳେଷଣ ଅତି ଚମତ୍କାର ଭାବରେ କରିପାରୁଥିଲେ । ତାଙ୍କର ଯୁକ୍ତି ଓ ସିଦ୍ଧାନ୍ତରେ ନୂତନତ୍ୱ ଥିବା ସମସ୍ତେ ଲକ୍ଷ୍ୟ କରିପାରୁଥିଲେ । ବହୁ ବିଷୟ ଭିତରୁ କେତୋଟି ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା ।

( ୧ ) **ଦେଶମାତୃକା ପୂଜା :** ଉତ୍କଳ ସମ୍ମିଳନୀରେ ଦେଶମାତୃକା ପୂଜାର ଭାବଟି ମଧୁବାବୁଙ୍କଦ୍ୱାରା ଉଦ୍‌ଭାବିତ ହୋଇଥିଲା । ସେ ନିଜର ପ୍ରଜ୍ଞାବଳରେ ଏହି ପୂଜାର ଆବଶ୍ୟକତା ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରି ଆଶାତୀତ ଭାବରେ ଜଡ଼ବତ୍ ପଡ଼ିରହିଥିବା ଜାତିର ପ୍ରାଣରେ ଆବେଗ ସୃଷ୍ଟି କରିପାରିଥିଲେ । ଖ୍ରୀ: ୧୯୧୮ରେ କଟକରେ ଅନୁଷ୍ଠିତ ହୋଇଥିବା ସମ୍ମିଳନୀରେ ୧୩ଶ ଅଧିବେଶନରେ ସେ ଏ ସମ୍ବନ୍ଧରେ ଏକ ଚମତ୍କାର ବକ୍ତୃତା ଦେଇଥିଲେ ।

"ମୋତେ ସଭାପତି ମହାଶୟ ମାଙ୍କ ଅବାହନର କାର୍ଯ୍ୟ ଦେଇଅଛନ୍ତି । ଏ ମଣ୍ଡପ ମାତୃପୂଜାର ମଣ୍ଡପ । ଅନ୍ୟାନ୍ୟ ସ୍ଥାନମାନଙ୍କରେ ସମ୍ମିଳନୀ(Conference) ହୁଏ; କିନ୍ତୁ ସବୁଠାରେ ମାତୃପୂଜା ହୁଏନାହିଁ । ସବୁଭାଇ ଏକତ୍ର ମିଳିତ ହୋଇ ପରସ୍ପର ମନର ଭାବ ପ୍ରକାଶ କରିବାକୁ ଏପରି ସମ୍ମିଳନୀ ହୋଇଥାଏ । ଏ ଉତ୍କଳବାସୀଙ୍କ ସମ୍ମିଳନୀ— ଜନନୀ ଜନ୍ମଭୂମିଙ୍କ ପୂଜା ମଣ୍ଡପ । ପୂଜାକାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ । ଆବାହନ ବ୍ୟତୀତରେକେ ପୂଜା ଆରମ୍ଭ ହୋଇ ନପାରେ । ବର୍ତ୍ତମାନ ଏଠାରେ ଯେତେ ଭାଇଭଉଣୀ ଉପସ୍ଥିତ ଅଛନ୍ତି, ସମସ୍ତଙ୍କ ହୃଦୟରେ ଜନନୀ ଜନ୍ମଭୂମିଙ୍କ ପ୍ରତିମୂର୍ତ୍ତି ବା ପିତୁଳା ସ୍ଥାପନ କରିବା ଉଚିତ । ଭାଇମାନେ, ସମସ୍ତେ ଥରେ ତାଙ୍କ ପୁଣ୍ୟ ପିତୁଳା **ହୃଦୟରେ ସ୍ଥାପନ କର । ଏହି କାର୍ଯ୍ୟ ପାଇଁ ଆପଣମାନଙ୍କୁ ଅନୁନୟ ବିନୟ କରୁଅଛି,**

ମାତାଙ୍କ ନାମରେ ଆଜ୍ଞା ଦେଉଅଛୁ । ( କରତାଳ ) ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ମାତାଙ୍କ କୋଡ଼ରେ ବସିଅଛୁ । ଯଦି କେହି ପଚ୍ଚାରନ୍ତି, ମାତାଙ୍କ କୋଡ଼ରେ ବସିଥିବାର କପରି ଅନୁଭବ କରାଯାଇପାରେ, ତାଙ୍କର ପିଉଳା ହୃଦୟରେ କପରି ସ୍ଥାପନ କରାଯାଇ-ପାରେ, ତେବେ କେବଳ ଏହା ଉପରେ ଲେଖାହୋଇଥିବା 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବି । ଏହି ବାକ୍ୟଟି ବହୁକାଳରୁ ଶୁଣାଅଛୁ; କନ୍ତୁ ତାହାର ଅର୍ଥ ବୁଝିବାକୁ ବୋଧହୁଏ କେହି ଚେଷ୍ଟା କରନ୍ତି ନାହିଁ । ଦେଖନ୍ତୁ, ପ୍ରଥମେ ଜନନୀ, ଦ୍ୱିତୀୟରେ ଜନ୍ମଭୂମି, ତୃତୀୟରେ ସ୍ୱର୍ଗ । ମନୁଷ୍ୟ ଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ବୋଲି ମନେକଲେ ଦେଖିବେ, ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି ଓ ଶେଷରେ ସ୍ୱର୍ଗ । ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ ଜୀବନରେ ଆଦ୍ୟ ଜନନୀ, କାର୍ଯ୍ୟ ଜନ୍ମଭୂମି, ପୁରସ୍କାର ମୁକ୍ତି ବା ସ୍ୱର୍ଗ ( କରତାଳି ) । ଏଥିପାଇଁ ଜନନୀ ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।

"ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମା ଅଛି । ତାହା ଈଶ୍ୱରଙ୍କର ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟ କରି ଈଶ୍ୱରଙ୍କଠାରେ ମିଶିଯିବ । ଏ ଆତ୍ମା କେଉଁଠାରେ କାର୍ଯ୍ୟ କରୁଛି ? କପରି ସ୍ୱର୍ଗ ଲାଭ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟ କରେ । ଏ ପୃଥିବୀରେହିଁ ମନୁଷ୍ୟ ଦୟା, ଧର୍ମ, ପରୋପକାର କରି ସ୍ୱର୍ଗ ପ୍ରାପ୍ତ ହୁଏ । ମନେକରନ୍ତୁ ଆଜି ପୃଥିବୀ ସମୁଦ୍ରରେ ମିଶିଯିବ । ତେବେ କେଉଁଠାରେ ଠିଆହୋଇ ମୁକ୍ତିମାର୍ଗ—ସ୍ୱର୍ଗଲାଭର ଉପାୟ ଖୋଜିବ ? ଅତଏବ କହେଁ, ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।

"ଆମ୍ଭେମାନେ ସମସ୍ତେ ଦିନେ ମାତୃଗର୍ଭରେ ଥିଲୁ । ସେତେବେଳେ ଆମ୍ଭ-ମାନଙ୍କର ଜ୍ଞାନ ନଥିଲା, ଜ୍ଞାନଚକ୍ଷୁ ନଥିଲା । ସେତେବେଳେ ଆମ୍ଭମାନଙ୍କର ଏପରି ଏକ ଅବସ୍ଥା ଥିଲା ଯେ ସଂସାର ସଙ୍ଗେ ଆମ୍ଭମାନଙ୍କର ସମ୍ପର୍କ କିଛି ଜାଣିନଥିଲେଁ । ଯେଉଁ ବାୟୁ ଆମ୍ଭମାନଙ୍କର ଜୀବନ ରକ୍ଷା କରୁଅଛି, ତାହାର ପରିଚୟ ପାଇ ନଥିଲୁ । ଯେଉଁ ଚକ୍ଷୁରେ ସମସ୍ତ ବସ୍ତୁ ଦେଖୁଥାଉଁ, ଯେଉଁ କର୍ଣ୍ଣରେ ଶୁଣୁଥାଉଁ, ଏସବୁ ସେତେବେଳେ ଉପକାର କରି ନଥିଲେ । ସେ ଜୀବନ ମାତୃଗର୍ଭରେ ଥିଲା । ପରେ ପୁଣି ମନୁଷ୍ୟ ଅନ୍ତିମ ଅବସ୍ଥା ଭାବନା କର । କେହି ପ୍ରିୟଜନର ମୃତ୍ୟୁକାଳରେ ଉପସ୍ଥିତ ଥିଲେ ଦେଖିଥିବ, କଣ ହେଲା ସେତେବେଳେ :-ଆଜି ଅବସ୍ଥାରେ ଯେପରି, ସେପରି କାନକୁ ଶୁଭିଲନାହିଁ, ଚକ୍ଷୁକୁ ଦିଶିଲ ନାହିଁ । ଭିତରେ ଯେଉଁ ଈଶ୍ୱର ଅଂଶ ଅଛି" ସେହି ଅବସ୍ଥା ଉପସ୍ଥିତ ହେଲା । ସେହି ଅବସ୍ଥା ମାତୃଗର୍ଭର ଅବସ୍ଥା ସହ ସମାନ । ଯେଉଁ ଅବସ୍ଥାରେ ପ୍ରତ୍ୟେକେ ଅନ୍ୟର ମୃତ୍ୟୁ ଦେଖିଅଛନ୍ତି, ସେହି ଅବସ୍ଥା ଦିନେ ସମସ୍ତଙ୍କର ହେବ । ଭାବି ଦେଖି, ଯେତେବେଳେ କାନ ଶୁଣୁ ନାହିଁ, ଆଖି ଦେଖୁନାହିଁ—କେବଳ ମାତ୍ର ଆତ୍ମା ଜାଗ୍ରତ ରହିଅଛି, ସେ ଅବସ୍ଥା କପରି ? ମୃତ୍ୟୁ ଉତ୍ତାରୁ ଏ ମାଟିର

ଦେହ ମାଟିରେ ମିଶିଯିବ । ପ୍ରାଣବାୟୁ ବାହାରି ଯିବାପୂର୍ବରୁ ତାହା ମଧ୍ୟ ମାଟିତୁଲ୍ୟ । ପ୍ରିୟଜନମାନେ ଏ ମୃତ୍ପିଣ୍ଡକୁ ମାଟିରେ ପକାଇ ଦେବେ । ଯେତେବେଳଯାଏ ମୃତ ବ୍ୟକ୍ତିର ଦେହ ମଧ୍ୟରେ ଜୀବନ ଥାଏ, ସେତେବେଳ ଯାଏ ମଧ୍ୟ ତାହାର ଦେହ ମୃତ୍ତିକା ସହିତ ସମାନ । ମୃତ୍ତିକାଠାରୁ ତାହାର ତଫାତ୍ କଣ ? ସେତେବେଳର ଦେହ, ଏତେ ଯତ୍ନରେ ଲାଳନ-ପାଳନର ଏ ଶରୀର, ଆଉ ମାଟି ମଧ୍ୟରେ ପ୍ରଭେଦ କଣ ? ସେତେ-ବେଳେ କେବଳ ଈଶ୍ୱରଙ୍କ ଅଂଶ ସେହି ଆତ୍ମା ଶରୀର ମଧ୍ୟରେ ଥାଏ । ବାହାରେ ତାହାର କୌଣସି ଚିହ୍ନନାହିଁ । ଅଉ ଚବିଶପାଞ୍ଚ ଘଣ୍ଟା ପରେ ଏ ଦେହ ମାଟିରେ ମିଶି-ଯିବ । ସେ ସମୟରେ ଦେହ ମାଟି ସମାନ । ଅର୍ଥାତ୍ ଆତ୍ମା ସେ ଶରୀର ମଧ୍ୟରେ ବା ମାଟିରେ ବସିଛି । ଅର୍ଥାତ୍ ସେହି ମାତୃଭୂମିର କୋଳରେ ପିଣ୍ଡ ଥାଉ ଥାଉ ଆତ୍ମା ବାହାରିଯିବ । ଦିନେ ଆମ୍ଭମାନଙ୍କର ସମସ୍ତଙ୍କର ଏହି ଅବସ୍ଥା ହେବ । ସେତେବେଳେ ବୁଝିପାରିବ, ତୁମ୍ଭେ ମାତୃକୋଳରେ ବସିଅଛ ।

"ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବାପାଇଁ ମୋ ଜନ୍ମଭୂମି ମୋତେ ଶସ୍ୟାଦି ଦେଉଅଛି । ଅତଏବ ଶରୀରର ଆଦ୍ୟ ପଦାର୍ଥ ଦିଏ ମାତା, ତାହାର ରକ୍ଷକ ଓ ବର୍ଦ୍ଧକ ଜନ୍ମଭୂମି । ଆମ୍ଭେମାନେ ପ୍ରଥମେ ପ୍ରଥମେ ପ୍ରସବ ହେଲାବେଳେ ଭୂମିଷ୍ଠ ହେଲୁ ବୋଲି କହନ୍ତି । ଅର୍ଥାତ୍ ଆମ୍ଭମାନଙ୍କୁ ମାତା ଜନ୍ମଭୂମି କୋଡ଼ରେ ଅର୍ପଣ କରି ସେହି ଜନ୍ମଭୂମିର ପୂଜା କରିବାକୁ ଆଦେଶ ଦିଅନ୍ତି । ଏହି କଥା ଥରେ ଅନ୍ତଃକରଣରେ ଭାବ, ଶେଷ ଅବସ୍ଥା ସ୍ମରଣ କର । ମାତା ଯେଉଁ ରକ୍ତ ଦେଇଥିଲେ, ତାହା ନିଃଶେଷ ହେଲାଣି । କେବଳ ସେ ଶରୀର ଅଛି । ତାହା ମାତୃଭୂମିର ମାଟି ସଙ୍ଗେ ସମାନ । ମାତୃଭୂମି ଉତ୍କଳ ଦେହରେ ଆତ୍ମା ରହିଛି । ମା' ଉତ୍କଳ କୋଡ଼ରେ ବସି ଚକ୍ଷୁ ବୁଜି ଥରେ ପ୍ରାର୍ଥନା କର; ହୃଦୟରେ ଜନ୍ମଭୂମିର ପିତୁଳା ଆପେ ଜାଗ୍ରତ ହେବ (କରତାଳି) ଚକ୍ଷୁ ବନ୍ଦକର । ଦେଖିବ, ତୁମ୍ଭ ଭିତରେ ମା' ଅଛନ୍ତି । ଏହି ତ ମାତୃଭୂମିର ପୂଜା: ଭାଇମାନେ ପୂଜା ନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳମାତାଙ୍କର ଆହ୍ୱାନ କର । ସମସ୍ତେ କହ, ବନ୍ଦଇ ଜନ୍ମଭୂମି ।"

(୨) ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ କଟକସ୍ଥ କନିକା ରାଜବାଟିର ୨୫।୧୦।୧୯୦୩ ତାରିଖରେ ଉତ୍କଳ ସମ୍ମିଳନୀ ଗଠନ ପୂର୍ବରୁ ତହିଁର ଉଦ୍ଦେଶ୍ୟ ବିଷୟ ଆଲୋଚନାବେଳେ ମଧୁବାବୁ କହିଥିଲେ—

"ଇଉରୋପର ନେଶନ୍ ଅର୍ଥାତ୍ ଜାତି ଶବ୍ଦ ଗୋଟିଏ ରାଷ୍ଟ୍ର ବା ଦେଶର ଲୋକ ସମୂହକୁ ବୁଝାଏ । ଇଉରୋପୀୟ ଜାତିସମୂହ ପରସ୍ପରଠାରୁ ଯେଉଁ ପରିମାଣରେ ବିଭିନ୍ନ, ଭାରତବର୍ଷର ପ୍ରାଦେଶିକ ଲୋକସମୂହ ସେହିପରି ନାନା ବିଷୟରେ ପରସ୍ପରଠାରୁ ସେହି ପରିମାଣରେ ବିଭିନ୍ନ । ଏହି ହେତୁ ଭାରତବର୍ଷରେ 'ଜାତୀୟତା ଏହି ଶବ୍ଦ ଗୋଟିଏ

ବିଶେଷ ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ । ଏକ ଜାତିର କେତେକ ବ୍ୟକ୍ତି ସହିତ ଅନ୍ୟ ଏକ ଜାତିର କେତେକ ବ୍ୟକ୍ତିଙ୍କର ପରସ୍ପର ବିରୋଧୀଭାବ ଥିବାର ଦେଖାଗଲେ ଲୋକେ ଭ୍ରମରେ ପଡ଼ି ବ୍ୟକ୍ତିଗତ ବିରୋଧକୁ ଜାତୀୟ ବିଦ୍ୱେଷରେ ପରିଣତ କରିବାକୁ ଚେଷ୍ଟା କରନ୍ତି । ଏହା ଦୁଇ ଜାତି ବା ସମାଜ ମଧ୍ୟରେ ମିତ୍ରଭାବ ରକ୍ଷା ପକ୍ଷରେ ଗୋଟିଏ ମହା ପ୍ରତିବନ୍ଧକ ଅଟେ । ଲୋକେ ଧୀର ଭାବରେ ବିଚାର ନକରି ଯେତେ ଦିନ ଯାଏ ଏହିପରି ଦ୍ୱେଷଭାବରେ ଉତ୍ତେଜନାରେ ଚାଳିତ ହେଉଥିବେ, ସେ ପର୍ଯ୍ୟନ୍ତ ଦୁଇ ଜାତି ମଧ୍ୟରେ ମିତ୍ରଭାବ ବର୍ଦ୍ଧିତ ହେବା ଅସମ୍ଭବ । ଅତଏବ ଦୁଇ ଜାତି ବା ସମାଜ ମଧ୍ୟରେ ମିତ୍ରତା ବର୍ଦ୍ଧନ କରିବା ପାଇଁ ଦୃଢ଼ ନିବନ୍ଧ ସହିତ କୌଣସି ଜାତୀୟ ଅନୁଷ୍ଠାନ କରିବା ଏକାନ୍ତ ଆବଶ୍ୟକ । ତାହା ହେଲେ କେତେକ ବ୍ୟକ୍ତିଙ୍କ ମଧ୍ୟରେ ବିରୋଧ ଥିଲେ ସୁଦ୍ଧା ଦୁଇ ଜାତି ବା ସମାଜ ମଧ୍ୟରେ ବନ୍ଧୁଭାବ ସୁରକ୍ଷିତ ହୋଇ ଅବିଚ୍ଛିନ୍ନ ରହିପାରିବ ।

"ବିଧାତା ଓଡ଼ିଶାର ଲୋକମାନଙ୍କୁ ଅନ୍ୟ ଯେଉଁ ଯେଉଁ ଜାତିମାନଙ୍କ ସଂସ୍ରବରେ ଆଣିଅଛନ୍ତି, ସେମାନଙ୍କଠାରୁ ଉତ୍କଳୀୟମାନେ ବହୁ ଶିକ୍ଷା ଲାଭ କରିଅଛନ୍ତି ଏବଂ ଆହୁରି ଅନେକ ଶିକ୍ଷା ଲାଭ କରିପାରିବେ । ବ୍ୟକ୍ତି ସମ୍ବନ୍ଧରେ ଯେପରି, ଜାତି ସମ୍ବନ୍ଧରେ ମଧ୍ୟ ସେହିପରି ବକ୍ତବ୍ୟ ଯେ, ଯେ ଶିକ୍ଷାର୍ଥୀ ହେବ, ତାହାର ପ୍ରଥମେ ନିଜର ଅଭାବ ଓ ତ୍ରୁଟି ଜାଣିବା ଆବଶ୍ୟକ । ଅପର ସହିତ ଆପଣାର ସମ୍ବନ୍ଧ ଭଲରୂପେ ବୁଝି ନ ପାରିଲେ, ନିଜର ଦୋଷ ଓ ଅଭାବ ଉତ୍ତମରୂପେ ଜଣା ପଡ଼େ ନାହିଁ । ଅତଏବ ଏକ ଜାତିର ଉନ୍ନତି ନିମିତ୍ତ ଅପର ଜାତିର ସଙ୍ଗ ଆବଶ୍ୟକ ଏବଂ ପ୍ରସ୍ତାବିତ ଉତ୍କଳୀୟ ସାର୍ବଜନୀନ ସଭା ସେହି ନୀତି ଅନୁସାରେ ପ୍ରତିଷ୍ଠିତ ହେବା ଉଚିତ । ଉକ୍ତ ମହାସଭାରେ ଓଡ଼ିଆ ଜାତି ଓ ସେଥି ସଙ୍ଗେ ଏକୀଭୂତ ଉତ୍କଳୀୟମାନେ ନିମନ୍ତ୍ରଣକାରୀ ଓ ଶିକ୍ଷାର୍ଥୀର ସ୍ଥଳାଭିଷିକ୍ତ ହେବେ ଏବଂ ଅନ୍ୟ ଜାତିର ଲୋକମାନେ ନିମନ୍ତ୍ରିତ ଅତିଥି ଏବଂ ମାନନୀୟ ଶିକ୍ଷକର ଆସନରେ ପ୍ରତିଷ୍ଠିତ ହେବେ । ବର୍ତ୍ତମାନ ଅବସ୍ଥାରେ ଦୋଷାଦୋଷ ବିଚାର ଅପେକ୍ଷା ଆତ୍ମନିର୍ଭରତା ସହି ଉଦ୍ୟୋଗ ଅଧିକ ଶ୍ରେୟସ୍କର । ଏହା ଜାଣି ଶାସନତନ୍ତ୍ରର ସମାଲୋଚନା ଓ ଧର୍ମବିଷୟକ ତର୍କାଦି ସମ୍ପୂର୍ଣ୍ଣରୂପେ ବର୍ଜନ କରିବା ଉଚିତ ।"

**(୩) ଉତ୍କଳ ସମ୍ମିଳନୀ ଓ ଜାତୀୟ ଜୀବନ** ଉତ୍କଳ ସମ୍ମିଳନୀର ଅଷ୍ଟମ ଅଧିବେଶନ ଉପଲକ୍ଷେ, ୧୯୧୨ ମସିହାରେ ବ୍ରହ୍ମପୁରଠାରେ ସମ୍ମିଳନୀର କାର୍ଯ୍ୟନିର୍ବାହିକା ସମିତି ଗଠନ ବିଷୟରେ ମଧୁବାବୁଙ୍କର ବକ୍ତୃତା—

"ଭାଇମାନେ ! ମୋ ଉପରେ ଆପଣମାନେ ଏ ଭାର ଦେଇ ଅଛନ୍ତି ଯେ ମୁଁ ଆପଣମାନଙ୍କ ନିକଟରେ ଆଗାମୀ ବର୍ଷରେ ଏ ସମ୍ମିଳନୀ କାର୍ଯ୍ୟ ଯେଉଁମାନେ କରିବେ ସେମାନଙ୍କର ନାମ ପଢ଼ିକରି ଶୁଣାଇବି । ମୋତେ କ୍ଷମା କରିବେ । ମୁଁ ବିଶ୍ୱାସ କରେ, ଏପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରେ ସମ୍ମିଳନୀର ପ୍ରକୃତ ଅର୍ଥ ଅନେକେ ଗ୍ରହଣ କରି ପାରି

ନାହାନ୍ତି । ଯେଉଁମାନେ ଏ ବିଷୟରେ ଅଜ୍ଞ, ସେମାନଙ୍କ ମଧ୍ୟରେ ମୁଁ ପ୍ରଥମ । ସମ୍ମିଳନୀ କାର୍ଯ୍ୟ କି ଉପାୟରେ କରିବାକୁ ହେବ ଓ ତହିଁର ପରିଣାମ କଣ ହେବ, ତାହା ମୁଁ ସମସ୍ତଙ୍କ ଅପେକ୍ଷା କମ୍ ଜାଣେ । ସମ୍ମିଳନୀର ପ୍ରଥମାବସ୍ଥାରେ ସମ୍ମିଳନୀ ସହିତ ମୋର କିଛି ସମ୍ପର୍କ ଥିଲା । ନାନାପ୍ରକାର ଆଶା ମନରେ ଉଦିତ ହୋଇଥିଲା; କିନ୍ତୁ ପରିପୂର୍ଣ୍ଣ ହୋଇ ନାହିଁ । ସୁତରାଂ ମୁଁ ସମ୍ମିଳନୀ ବିଷୟରେ ଅତି ଅଜ୍ଞ; କିନ୍ତୁ ଏହି ପର୍ଯ୍ୟନ୍ତ ବୁଝିଅଛି ଯେ ସମ୍ମିଳନୀ ଜାତିର ସର୍ବ ଓ ମନୁଷ୍ୟ ପ୍ରାଣରେ ଜାତୀୟ ଜୀବନ ଉଦ୍ରେକ କରିବା ଏହାର ଉଦ୍ଦେଶ୍ୟ । ପ୍ରତ୍ୟେକଙ୍କର ଦୁଇଗୋଟି ଜୀବନ— (୧) ବ୍ୟକ୍ତିଗତ ଜୀବନ, (୨) ଜାତୀୟ ଜୀବନ । ମୁଁ ଖାଉଛି, ପିନ୍ଧୁଛି, ଅର୍ଥ ଉପାର୍ଜନ କରୁଛି, ମୋ ପିଲା ବଡ଼ଲୋକ ହେବ, ଏ ଇଚ୍ଛା ବ୍ୟକ୍ତିଗତ ଜୀବନର ଇଚ୍ଛା; ମାତ୍ର ଜାତୀୟ ଜୀବନ ତାହା ନୁହେଁ । ଉଦାହରଣ ଦିଏ—ଯେବେ ଜଣେ କହେ 'ଓଡ଼ିଆଙ୍କୁ ମାର', ତେବେ ସମସ୍ତଙ୍କ ରକ୍ତ ଗରମ ହେବ । ଏଥିରୁ ଜାତୀୟ ଜୀବନ ଅଛି, ପରିଚୟ ମିଳିଲା; କିନ୍ତୁ ଆମ୍ଭମାନଙ୍କର ଜାତୀୟ ଜୀବନ ବଡ଼ ଶିଥିଳ । ତାକୁ ଉତ୍ତେଜିତ କରି ବ୍ୟକ୍ତିଗତ ଜୀବନ ପରି ବଳବାନ୍ କରିବାକୁ ହେବ, ଏହାହିଁ ସମ୍ମିଳନୀର ଉଦ୍ଦେଶ୍ୟ ।

"ମୁଁ ଓଡ଼ିଆ, ଓଡ଼ିଶାରେ ଜନ୍ମଗ୍ରହଣ କରିଅଛି ଏବଂ ବାସ କରୁଅଛି । ଉତ୍କଳମାତାଙ୍କ କୋଳରେ ମୋର ଅସ୍ଥି ମାଂସ ରହିବ । ଯେଉଁମାନେ କୀର୍ତ୍ତି କରି ଯାଇଅଛନ୍ତି, ସେମାନେ ମୋର ପୂର୍ବପୁରୁଷ । ତାଙ୍କର କୀର୍ତ୍ତିରକ୍ଷାର ଭାର ମୋ ଉପରେ ନ୍ୟସ୍ତ । ପ୍ରତ୍ୟେକ ଲୋକ ମନରେ ଏହିପରି ଭାବ ସଞ୍ଚାର କରିବା ସମ୍ମିଳନୀର ଉଦ୍ଦେଶ୍ୟ । ବ୍ୟକ୍ତିଗତ ଜୀବନ ସ୍ୱାର୍ଥପରତା ପରିପୂର୍ଣ୍ଣ; ମାତ୍ର ଜାତୀୟ ଜୀବନରେ ସ୍ୱାର୍ଥ ନାହିଁ । ମୁଁ ବଡ଼ଲୋକ ହେବି, ମୋ ପୁଅ ସୁଖରେ ଜୀବନ ଯାପନ କରିବ, ଏହା ବ୍ୟକ୍ତିଗତ ଜୀବନ । ମୁଁ ମରିବି, ମୋତେ କେହି ଚିହ୍ନିବେ ନାହିଁ, ମୋର ମୃତ୍ୟୁ ପରେ ମୋର ନାମ ଲେଶ ମାତ୍ର ରହିବ ନାହିଁ, ମୋର ଶରୀରର ବଳ, ମୋର ଶରୀରର ରକ୍ତ ଜାତିକୁ ବଳବାନ୍ କରିବ, ଏହାହିଁ ଜାତିସ୍ୱ ଜୀବନ । ସମ୍ମିଳନୀ ଜାତୀୟ ଜୀବନର ସନ୍ତାନସ୍ୱରୂପ । ମନେକରନ୍ତୁ, ଉପେନ୍ଦ୍ର ଭଞ୍ଜ ଏହିଠାରେ ଜନ୍ମଗ୍ରହଣ କରିଥିଲେ । କୋଟି କୋଟି ଓଡ଼ିଆ ତାଙ୍କୁ ଆମ ଜାତିର କବି ବୋଲି କହୁଅଛନ୍ତି; କିନ୍ତୁ ଉପେନ୍ଦ୍ରଙ୍କ ପିତାମାତାଙ୍କର ନାମ, ତାଙ୍କ ବାଲ୍ୟକାଳର କଥା ଅଧିକାଂଶ କହି ପାରିବେ ନାହିଁ; ମାତ୍ର ସମସ୍ତେ କହନ୍ତି, 'ଆମ୍ଭର ଉପେନ୍ଦ୍ର ଭଞ୍ଜ ।' ମୁଁ ପ୍ରଶ୍ନ କରେ, 'ତୁମ୍ଭର କିପରି ହେଲେ ?' ଜାତି କହିଲା— ଜାତିର ଯୋଗ୍ୟ ସୁସନ୍ତାନ ଜାତିର ଏବଂ କୁସନ୍ତାନ ବାପମାଆଙ୍କର । ଏହା ଜାତିର ବିଚାର ଅଟେ । ସମ୍ମିଳନୀ ଜାତୀୟ ଅନୁଷ୍ଠାନ । ଏହାକୁ ନେଇ ଯେ କାର୍ଯ୍ୟ କରିବ, ସେ ଜାତି ନିକଟରେ ଯାଇ ପହଞ୍ଚିବ । ଟଙ୍କା ମାଗିବ, କେହି ଦେବେନାହିଁ । ଉପେନ୍ଦ୍ରଙ୍କୁ ପଢ଼ାଇବାକୁ ଟଙ୍କା ମାଗିଲେ କେହି ଦେଇ ନ ଥାନ୍ତେ । କାଲି ରିପୋର୍ଟରେ ପଢ଼ିଲୁ, କେହି ଟଙ୍କା ଦେଲେ ନାହିଁ । ସମ୍ମିଳନୀ ଜାତିର ପୁତ୍ର ହୋଇ ନାହିଁ । ଯୁବକ-ସମିତିଙ୍କ ପକ୍ଷରୁ ତାହା

ପ୍ରକାଶ । ଜାତିର ସମ୍ମିଳନୀ ହେଲେ, ବ୍ୟକ୍ତିର ନାମ ମଧୁସୂଦନର ନାମ ହୁଅନ୍ତା ନାହିଁ । ବର୍ତ୍ତମାନ ଏ ସମ୍ମିଳନୀର କାର୍ଯ୍ୟ ଯେ ଚଳାଇବେ, ତାଙ୍କର ଏ ସମ୍ମିଳନୀକୁ ନିଜର ସନ୍ତାନ ତୁଲ୍ୟ ଜ୍ଞାନ କରିବା ଉଚିତ । ମୁଁ ବଢ଼ାଇବି, ମୁଁ ଲାଳନପାଳନ କରିବି, ଯୋଗ୍ୟ ହେଲେ ଜାତି ମୋ କୋଳରୁ କାଢ଼ି ନେବ । ଯେପରି ଚୈତନ୍ୟଙ୍କୁ ତାଙ୍କର ପିତାମାତା ନିଜର ସବୁକିଛି ଦାନକରି ପାଳିଥିଲେ; କିନ୍ତୁ ବର୍ତ୍ତମାନ ତାଙ୍କ ପିତାମାତାଙ୍କୁ କେହି ଜାଣନ୍ତି ନାହିଁ, ମାତ୍ର ଚୈତନ୍ୟ ବର୍ତ୍ତମାନ ଲକ୍ଷ ଲକ୍ଷଙ୍କର; ଇତିହାସ ପାଠକର । ସବୁ ଦେଶର ଏହି ନିୟମ ।

"ମିଲଟନ୍ ଶେଷକାଳକୁ ଅନାହାରରେ ପ୍ରାଣ ତ୍ୟାଗ କଲେ, ସେକ୍ସପିୟର ଥିଏଟରଯାତ୍ରୀଙ୍କ ଘୋଡ଼ା ଧରି ପେଟ ପାଳୁଥିଲେ । ବର୍ତ୍ତମାନ ବିଲାତର ଲୋକେ କହନ୍ତି, ଆମର ମିଲଟନ୍ ଏବଂ ଆମର ସେକ୍ସପିୟର । କାଳିଦାସ ପାଲିଙ୍କି ବୋହୁଥିଲେ, ସେତେବେଳେ କେହି କହୁ ନ ଥିଲେ; ମାତ୍ର ବର୍ତ୍ତମାନ କହୁଅଛନ୍ତି, ଆମର କାଳିଦାସ । ଏହା ଜାତିର ରୀତି ଅଟେ । ଏ ପ୍ରସଙ୍ଗ କହିବା ପୂର୍ବରୁ ମୁଁ କହେ, ଯେ ସ୍ୱାର୍ଥ ତ୍ୟାଗ କରିବାକୁ ପ୍ରସ୍ତୁତ ନୁହେଁ, ସେ ବ୍ୟକ୍ତି ସମ୍ମିଳନୀରୁ ନାମ କଟାଇ ଚାଲିଯିବା ଉଚିତ । ଭାର ନେଇ ଏ କଥା କହିଲେ ଚଳିବ ନାହିଁ । ଯେତିକି ପାରିବ ସେତିକି ଭାର ନିଅ ।

"ମୁଁ ଆହ୍ଲାଦର ସହିତ ଜଣାଉଛି ଯେ, ଉତ୍କଳ-ସୁପୁତ୍ର ଚିକିଟି ରାଜାଙ୍କୁ ଆମ୍ଭେମାନେ ପାଇଅଛୁ । ସେ ଆଗାମୀ ବର୍ଷର ସମସ୍ତ ଖରଚ ଦେବାକୁ ପ୍ରସ୍ତୁତ । ଯେ ପୁଅକୁ ଖୁଆଇ ପିଆଇ ଉତ୍କଳମାତାଙ୍କ କୋଳରେ ଦେବ, ସେ ସୁପୁତ୍ର ।

"ସମ୍ମିଳନୀର ଅର୍ଥ ମୁଁ ବୁଝି ପାରିନାହିଁ ଏବଂ ଅନେକେ ମଧ୍ୟ ବୁଝି ନାହାନ୍ତି । ଇନ୍‌ସୁରାନ୍‌ସ କମ୍ପାନୀ, କରଣସଭା, ବ୍ରାହ୍ମଣସଭା ଭଳି ଏହା ଗୋଟିଏ ସଭା ନୁହେଁ । କେତେକ ମହାଜନ ତାଙ୍କର ସ୍ୱାର୍ଥ ରକ୍ଷା ପାଇଁ ଗୋଟିଏ ସଭା ଗଠନ କଲେ । କରଣମାନେ, ବ୍ରାହ୍ମଣମାନେ ମଧ୍ୟ କଲେ । ସମ୍ମିଳନୀର ସଂଖ୍ୟା ବା ସୀମା ନାହିଁ । ଅନ୍ୟ ସଭାର ସଭ୍ୟ ତାଲିକା ଅଛି, ମାତ୍ର ଉତ୍କଳ ସମ୍ମିଳନୀର ସଭ୍ୟମାନଙ୍କର ସଂଖ୍ୟା ନାହିଁ କି ତାଲିକା ନାହିଁ । ସମସ୍ତ ଓଡ଼ିଆ ଜାତି ଏହାର ସଭ୍ୟ । ଶିଶୁଠାରୁ ଭବିଷ୍ୟତ ବଂଶଧର ଓଡ଼ିଆମାନେ ସମସ୍ତେ ଏଥିରେ ସଭ୍ୟ । ପ୍ରଥମେ ଏହା ବୁଝିଯିବା ଉଚିତ ଯେ, ଏ ସଭା ନୁହେଁ କମ୍ପାନୀ ନୁହେଁ; ଏ ଜାତିର ଅଟେ । ଯାହା ହୋଇଅଛି, ସେଥିରେ ଜାତିର ଦାବୀ ଅଛି, ପୁଣି ଯାହା ହେବ, ସେଥିରେ ସୁଦ୍ଧା ଦାବୀ ହେବ । ଏହି ପ୍ରଭେଦ ମନେରଖିଲେ ଅନେକ ଗୋଲମାଲ ତୁଟିଯିବ ।

"ମାଳତୀ ଲତା ଆମ୍ବଗଛରେ ଉଠେ, ମୋଟ ହୁଏ । ଶେଷରେ ଆମ୍ବ ଗଛକୁ ମାରି ପକାଏ । ଆମ୍ବଗଛର ଫଳ କମ୍ ଲୋକ ଖାଉଥିଲେ । ଆମ୍ବ ଅପେକ୍ଷାକୃତ କମ୍ ଲୋକଙ୍କୁ ଆନନ୍ଦ ଦେଉଥିଲା । ମାଲତୀର ସୁଗନ୍ଧ ପୁଷ୍ପ ସହସ୍ର ଲୋକଙ୍କୁ ମୋହିତ କରୁଅଛି । କାଳୀସୁ

ଜୀବନ ଯେତେବେଳେ ବ୍ୟକ୍ତିକୁ ମାଳିଗାଳିତା ପରି ବେଢ଼ି ଧରିବ, ସେତେବେଳେ ସେ ମରିବ; କିନ୍ତୁ ମାଳିଗାର ସୁଗନ୍ଧ ଘୃରିଆଡ଼େ ମହକିବ । ନିଜ ସକାଶେ ଜୀବନ ଧାରଣ କରିବା ମନୁଷ୍ୟ ଜୀବନର କଦାପି ଉଦ୍ଦେଶ୍ୟ ନୁହେଁ । ଈଶ୍ୱର ଏ ଉଦ୍ଦେଶ୍ୟରେ କାହାକୁ ସୃଷ୍ଟି କରି ନାହାନ୍ତି । ପଶୁ ଓ ମନୁଷ୍ୟର ପ୍ରଭେଦ କଣ ? ପଶୁ ତାର ନିଜ ପାଇଁ ସବୁ କରେ । ବ୍ୟକ୍ତିଗତ ଜୀବନ ନ ମଲେ ଜାତୀୟ ଜୀବନ ହେବ ନାହିଁ । ମଞ୍ଜି ବା ଟାକୁଆ ପୋତିଲେ, ଆଗେ ଟାକୁଆ ପଚିଲେ ପଛେ ଗଛ ଉଠିବ, ନ ପଚିବା ପର୍ଯ୍ୟନ୍ତ ଗଛ ଉଠିବ ନାହିଁ । ସେହିପରି ଯହିଁରୁ ଜାତୀୟ ଜୀବନ ଉଠିବ, ସେ ମରିବ, ସେ ପଚିବ । ଗୋଟିଏ ଟାକୁଆ ମଲେ ଲକ୍ଷେ ଆମ୍ବ ଫଳିବ । ଆମ୍ବର ଜାତି ରକ୍ଷା ହେଲି, କିନ୍ତୁ ପ୍ରଥମେ ଟାକୁଆ ମଲି ।

"ମୁଁ ବିଶ୍ୱାସ କରେ ନାହିଁ ଯେ, ଈଶ୍ୱରଙ୍କର ଜଗତରେ କେହି ମନୁଷ୍ୟ ସ୍ୱାର୍ଥପର ହୋଇପାରେ । ଯେ ସ୍ୱାର୍ଥପର, ସେ ଈଶ୍ୱରଙ୍କ ଆଜ୍ଞା ଲଙ୍ଘନ କରିଅଛି । ଈଶ୍ୱର କାହାରିକୁ ସ୍ୱାର୍ଥପର ହେବାକୁ ଦିଅନ୍ତି ନାହିଁ । ଅତି କୃପଣକୁ ଲୋକେ ସ୍ୱାର୍ଥପର କହନ୍ତି, ମାତ୍ର ମୁଁ କହେ ସେ ସ୍ୱାର୍ଥହୀନ । ସେ ନିଜ ପାଇଁ ରଖୁ ନାହିଁ, ରଖୁଅଛି କେବଳ ପର ପାଇଁ । ଈଶ୍ୱର କହନ୍ତି, 'ତୁ ଖର୍ଚ୍ଚ କଲୁ ନାହିଁ, ତୋ ପୁଅ ନାତି ଖରଚ କରିବେ ।' ଘଣାରେ ବଳଦ ବୁଲୁଛି, ମାତ୍ର ତେଲ ଲଗାଏ ଆଉ ଜଣେ । ଅତଏବ ମୁଁ ଏ ପ୍ରସ୍ତାବ ଉପସ୍ଥାପିତ କରୁଅଛି ।" (ମଧୁବାବୁ ଉତ୍କଳସମ୍ମିଳନୀ ରୂପକ ଆମ୍ବଗଛର ଟାକୁଆ)

**(୪) ଜାତୀୟ ସଂହତି :** ଖ୍ରୀ ୧୯୦୪ରେ ଉତ୍କଳ ସମ୍ମିଳନୀର କଟକ ଅଧିବେଶନରେ ମଧୁସୂଦନ ଦାସ ଜାତୀୟ ସଂହତିର ଆବଶ୍ୟକତା ସମ୍ପର୍କରେ ନିବେଦନ କରି କହିଥିଲେ—

"ପ୍ରଥମେ ଆକାଶର କ୍ଷୁଦ୍ର ଜଳବିନ୍ଦୁ ପୃଥିବୀ ଉପରେ ପଡ଼େ । ତତ୍ପରେ ଜଳବିନ୍ଦୁଗୁଡ଼ିକ ଗୋଟିଏ ଜଳଧାର ହୋଇ ତଳକୁ ବହିଯାଏ । ଏହିପରି କେତେଗୁଡ଼ିଏ ଜଳଧାର ମିଶି ଗୋଟିଏ ନାଳରେ ପରିଣତ ହୁଏ । ଏହିପରି କେତେଗୁଡ଼ିଏ ନାଳ ନଦୀରେ ପରିଣତ ହୋଇ ତଳକୁ ବହିଯାଏ ଓ ଶେଷରେ ସମୁଦ୍ରରେ ଯାଇ ପଡ଼େ । ସବୁ ସ୍ଥଳରେ, ସବୁ ଅବସ୍ଥାରେ ଜଳ ନିଜର ଜାତୀୟ ଗୁଣକୁ ଧାରଣ କରି ନିଜର ଜାତୀୟ ଜୀବନର ଟେକ ରଖିଛି । ଜଳର ଜାତୀୟ ଗୁଣ ନିମ୍ନଗତି । ବିନ୍ଦୁଏ ଜଳରେ ସେହି ଗୁଣ ବିଦ୍ୟମାନ ଅଛି ଏବଂ ମହାସମୁଦ୍ରର ଜଳ ମଧ୍ୟ ସେହି ଜାତୀୟ ଗୁଣକୁ ହରାଇ ପାରିନାହିଁ । ଆମ ସମସ୍ତଙ୍କର ସବୁବେଳେ ମନେରଖିବା ଉଚିତ ଯେ, ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି । ସବୁ ଅବସ୍ଥାରେ, ସବୁ କାଳରେ ଆମେ ସେହି ଜୀବନର ଟେକ ରଖି କାର୍ଯ୍ୟ କରିବା । × × × ଲୋକେ ଯେତେବେଳ ପର୍ଯ୍ୟନ୍ତ ବ୍ୟକ୍ତିଗତ ଜୀବନକୁ ଜାତି ନିମନ୍ତେ ବଳି ଦେବାକୁ ଶିଖି ନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଜାଣିବାକୁ ହେବ ।"

**(୫) ଦେଶମିଶ୍ରଣ କାହିଁକି :** ଓଡ଼ିଶା ଦେଶମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଦାବୀରେ ମେଦିନୀପୁରର ବିଖ୍ୟାତ ଜାତୀୟତାବାଦୀ ନେତା ବୀରେନ୍ଦ୍ରନାଥ ଶାସମଲ ଏକମତ ହେଉନଥିଲେ; ଓଡ଼ିଶା ସହିତ ମେଦିନୀପୁରର ମିଶ୍ରଣ ଦାବୀକୁ ସେ ବିରୋଧ କରୁଥିଲେ । ତାଙ୍କର ଯୁକ୍ତି ଭିତରେ ବଙ୍ଗାଳୀଜାତିର ବର୍ତ୍ତମାନର ଗୌରବ ଏକ ଯୁକ୍ତି ଥିଲା; ଏ ଗୌରବର ଅଧିକାରୀ ହେବାକୁ ସେ ଚାହୁଁଥିଲେ । ଶାସମଲ ନିଜେ ଓଡ଼ିଆ ହେଲେ ମଧ୍ୟ ବଙ୍ଗାଳୀ ବୋଲି ପରିଚୟ ଦେଉଥିଲେ । ମେଦିନୀପୁରରେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ସଂଖ୍ୟା ବହୁତ ଥିବାରୁ ଓ ବହୁ ପ୍ରାଚୀନ କାଳରୁ ମେଦିନୀପୁର ଓଡ଼ିଶା ଶାସନାଧୀନରେ ଥିବାରୁ, ଓଡ଼ିଶା ସହିତ ମିଶ୍ରଣ ଦାବୀକୁ ଗ୍ରହଣ କରିବା ପାଇଁ ସରକାରଙ୍କଠାରେ ଓଡ଼ିଶାବାସୀ ଦାବୀ କରୁଥିଲେ ।

ଶାସମଲଙ୍କ 'ବାଙ୍ଗାଲାର ଗୌରବ' ଯୁକ୍ତିର ଉତ୍ତରରେ ମଧୁବାବୁ ଶାସମଲଙ୍କୁ କହିଥିଲେ—"ଇଂରେଜ ରାଜତ୍ୱରେ ବଙ୍ଗାଳୀ ଜାତିର ପ୍ରଭାବ ଖୁବ୍ ବୃଦ୍ଧି ପାଇଛି, କଲିକତା କେନ୍ଦ୍ର ସରକାରଙ୍କ ରାଜଧାନୀ ହୋଇଛି ଏବଂ ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ହୋଇ ପଡ଼ିଛି । 'ବଙ୍ଗୋପସାଗର' ନାମଟି ମଧ୍ୟ ଇଂରେଜ ରାଜତ୍ୱରେ ହୋଇଛି । ଇଂରେଜମାନେ କଲିକତାକୁ ଗଢ଼ି ନଥିଲେ ଏ ଉନ୍ନତିର ସମ୍ଭାବନା ନଥିଲା । ଐତିହାସିକ ଘଟଣାଚକ୍ର ଯୋଗୁଁ ଓଡ଼ିଶା ଏ ଗୌରବର ଅଧିକାରୀ ହୋଇ ପାରିଲା ନାହିଁ । ଇଂରେଜମାନଙ୍କ ନେତା ଯବ୍ ଚାର୍ଣକ୍ (Job Charnock) ଯଦି ବାଲେଶ୍ୱର ଜିଲ୍ଲାର ବାଣିଜ୍ୟ କେନ୍ଦ୍ର ପିପିଲିକୁ ସେତେବେଳେ ପରିତ୍ୟାଗକରି କଲିକତାକୁ ଯାଇନଥାନ୍ତେ, ତାହାହେଲେ ପିପିଲିହିଁ ଭାରତର ରାଜଧାନୀ ହୋଇଥାଆନ୍ତା ଏବଂ ସାଗରର ନାମ ବଙ୍ଗୋପସାଗର ନହୋଇ 'ଓଡ଼ିଶା ଉପସାଗର' ହୋଇଥାଆନ୍ତା । ଏହା କେବଳ ଐତିହାସିକ ଭାଗ୍ୟ ପରିବର୍ତ୍ତନର ଫଳ, ଏହା ଅକସ୍ମାତ ଘଟିଛି ।"

ଏ ପ୍ରସଙ୍ଗରେ ମଧୁବାବୁ ମିଶର (ଇଜିପ୍ଟ)ର ପ୍ରାଚୀନ ଇତିହାସରୁ ଏକ ଦୃଷ୍ଟାନ୍ତ ଦେଇ କହୁଥିଲେ, "ଯଦି ପରମାସୁନ୍ଦରୀ କ୍ଲିଓପାଟ୍ରାଙ୍କ ନାକଟି ଖଣ୍ଡାଧାର ପରି ନହୋଇ ଚେପ୍ଟା ହୋଇଥାଆନ୍ତା, ତେବେ ଇଜିପ୍ଟର ଇତିହାସର ଧାରା ଭିନ୍ନ ଗତି ଧାରଣ କରିଥାଆନ୍ତା ।" ଶାସକମାନଙ୍କ ଭିତରେ କ୍ଲିଓପାଟ୍ରାଙ୍କ ପ୍ରେମ ପାଇଁ ପ୍ରତିଦ୍ୱନ୍ଦ୍ୱିତା ହୋଇ ବହୁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା ।

**(୬) ବଙ୍ଗଭଙ୍ଗ ପ୍ରସ୍ତାବ ଓଡ଼ିଆ ରାଜ୍ୟ-ମିଶ୍ରଣ ଆନ୍ଦୋଳନର ଫଳ :** ମଧୁବାବୁ ବଙ୍ଗଭଙ୍ଗ ପ୍ରସ୍ତାବ ପଛରେ ଇଂରେଜ ସରକାରଙ୍କ ଗୂଢ଼ ଉଦ୍ଦେଶ୍ୟ ଥିବା କହୁଥିଲେ ଏବଂ ଏହା ଓଡ଼ିଶା ଦେଶମିଶ୍ରଣ ଆନ୍ଦୋଳନର ଏକ ପ୍ରଭାବ ବୋଲି ମତ ବ୍ୟକ୍ତ କରୁଥିଲେ । ଇଂରେଜମାନେ ବୁଝିଥିଲେ ଯେ ସବୁ ଓଡ଼ିଆ ଭାଷା ଭାଷୀ ଅଞ୍ଚଳକୁ ଏକତ୍ର କରି ବଙ୍ଗପ୍ରଦେଶର ଶାସନାଧୀନ କରିଦେବା ଦାବୀ ବିଚାରଯୋଗ୍ୟ । ଯଦି ସବୁ

ଓଡ଼ିଆ ଅଞ୍ଚଳ ମିଶିଯାଏ, ତାହାହେଲେ ବଙ୍ଗପ୍ରଦେଶ ଗୋଟିଏ ବଡ଼ ପ୍ରଦେଶ ହୋଇଯିବ ଏବଂ ଶାସନ ପରିଚାଳନାରେ ବିଶୃଙ୍ଖଳା ଦେଖାଯିବ । ଯଦି ବଙ୍ଗପ୍ରଦେଶକୁ ଦୁଇଭାଗ କରି ଦିଆଯାଏ ଏବଂ ପଶ୍ଚିମ-ବଙ୍ଗ ସହିତ ସବୁ ଓଡ଼ିଆଭାଷୀ ଅଞ୍ଚଳକୁ ମିଶାଇ ଦିଆଯାଏ, ତାହାହେଲେ ଓଡ଼ିଆମାନେ ଏକ ଶାସନାଧୀନରେ ରହିଲେ ବୋଲି ଖୁସି ହୋଇଯିବେ । ଏହା ସଙ୍ଗେ ସଙ୍ଗେ ମୁସଲମାନମାନେ ମଧ୍ୟ ପୂର୍ବ-ବଙ୍ଗକୁ ଏକ ମୁସଲମାନ ଅଧ୍ୟୁଷିତ ପ୍ରଦେଶରୂପେ ପାଇ ଖୁସି ହେବେ । ଏହି କାରଣରୁ ମୁର୍ଶିଦାବାଦର-ନବାବ ଓ ଢାକାର ନବାବ ବଙ୍ଗଭଙ୍ଗ ପ୍ରସ୍ତାବକୁ ସ୍ୱାଗତ କରିଥିଲେ ।

ମଧୁବାବୁ ପୁଣି କହୁଥିଲେ—ବଙ୍ଗଦେଶରେ ବଙ୍ଗଭଙ୍ଗ ବିରୁଦ୍ଧରେ ଆନ୍ଦୋଳନ ହେଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳର କ୍ଷେତ୍ର ଓ ଜନ ସଂଖ୍ୟାର ହିସାବ ମଧ୍ୟ ହେଲା । ଓଡ଼ିଆ ଲୋକଙ୍କ ସଂଖ୍ୟା ପ୍ରାୟ ଏକ କୋଟି ଓ ଓଡ଼ିଆ ଅଞ୍ଚଳର କ୍ଷେତ୍ରଫଳ ପ୍ରାୟ ୫୦,୦୦୦ ବର୍ଗମାଇଲ ହେବ ବୋଲି ଇଂରେଜ ଶାସକମାନେ ହିସାବ କରି ବଡ଼ଲାଟ ଲର୍ଡ କର୍ଜନଙ୍କୁ ଦେଖାଇବାରୁ ସେ କହିଲେ ଯେ, 'ଏତେ ବେଶି ଜନସଂଖ୍ୟା ଓ ଏତେ ବିସ୍ତୃତ ଅଞ୍ଚଳ ଯଦି ମିଶିଯାଏ, ତାହା ବଙ୍ଗପ୍ରଦେଶ ଭଙ୍ଗ ପରେ ମଧ୍ୟ ବହୁତ ବୃଦ୍ଧି ପାଇଯିବ । ଏହାଦ୍ୱାରା 'ବୃହତ ଆକାର' ଯୁକ୍ତିଟି ଆଉ ବଳବତ୍ତର ରହିପାରିବ ନାହିଁ ଏବଂ ବଙ୍ଗଭଙ୍ଗ ପ୍ରସ୍ତାବ ଭିତରେ ଇଂରେଜ ଶାସନର କୁଉଦ୍ଦେଶ୍ୟଥିବା ଅଭିଯୋଗଟି ପ୍ରମାଣିତ ହୋଇଯିବ । ଏ ପ୍ରସ୍ତାବକୁ ଆଉ କାର୍ଯ୍ୟକାରୀ ନ କରିବା ପାଇଁ ଉଚ୍ଚ ମହଲରେ ବିଚାର ହୋଇଥିଲା । ଏହା ପରେ ବଙ୍ଗଳାକୁ ଦ୍ୱି'ଭାଗ କରିଦେବାରୁ, ବଙ୍ଗଭଙ୍ଗ ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥିଲା । ଅବସ୍ଥାଚକ୍ରରେ ପ୍ରସ୍ତାବକୁ ୬ବର୍ଷ ଆନ୍ଦୋଳନ ପରେ ରଦ୍ଦ କରିବାପାଇଁ ସରକାର ବାଧ୍ୟ ହୋଇଥିଲେ । ଏହାର କେତେ ବର୍ଷ ପରେ ଖ୍ରୀ:୧୯୨୨ରେ ସରକାର ବଙ୍ଗ ପ୍ରଦେଶକୁ ପୁଣି ଭାଗ କରି ବିହାର ଓ ଓଡ଼ିଶାକୁ ଅଲଗା କରି ସ୍ୱତନ୍ତ୍ର ପ୍ରଦେଶ ଗଠନ କଲେ ।

**(୭) ବିହାର-ଓଡ଼ିଶା ପ୍ରଦେଶଗଠନ ମଧ୍ୟ ଏହି ବଙ୍ଗଭଙ୍ଗର ଫଳ :** ମଧୁବାବୁ କହୁଥିଲେ—ଉତ୍କଳ ସମ୍ମିଳନୀର ଦେଶମିଶ୍ରଣ ଆନ୍ଦୋଳନର ଶେଷ ଲକ୍ଷ୍ୟ ହେଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ । ଓଡ଼ିଆମାନେ ଓଡ଼ିଶାରେ ଓ ବିହାରୀମାନେ ବିହାରରେ ସ୍ୱତନ୍ତ୍ର ଅସ୍ତିତ୍ୱ ଦାବୀ କରି ଆସୁଥିଲେ । ବିହାରର ନେତା ସାର୍ ଆଲି ଇମାମ୍ ଓ ଡାକ୍ତର ସଚ୍ଚିଦା ନନ୍ଦ ସିଂହ ବିହାରକୁ ବଙ୍ଗଳା ପ୍ରଦେଶରୁ ଅଲଗା କରିଦେବାପାଇଁ ଦାବୀ କରୁଥିଲେ । କେନ୍ଦ୍ର ସରକାର ଖ୍ରୀ: ୧୯୧୧ରେ ବଙ୍ଗ ପ୍ରଦେଶରୁ ବିହାର ଓ ଓଡ଼ିଶାକୁ ଅଲଗା କରିଦେଇ ସ୍ୱତନ୍ତ୍ର ପ୍ରଦେଶ କରିବା ଘୋଷଣା ଏବଂ ପ୍ରଦେଶର ନାମ ରଖିଲେ "ବିହାର ଓ ଓଡ଼ିଶା ପ୍ରଦେଶ" । ଓଡ଼ିଶାକୁ ବିହାରରେ ରଖିବା ପାଇଁ ବିହାରୀ ନେତାମାନେ ଭିତରି ଉଦ୍ୟମ କରି ଥିବା ସନ୍ଦେହ କରାଯାଇଥିଲା । ବିହାରୀ ନେତାମାନଙ୍କ ପରାମର୍ଶରେ ଓଡ଼ିଶାକୁ ନୂତନ ପ୍ରଦେଶ ସଙ୍ଗେ ଯୋଡ଼ି ଦିଆଯାଇଥିବା ସ୍ପଷ୍ଟ ହେଲା । ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନକୁ ଆଣି ବିହାର ସହିତ ଯୋଡ଼ିଥିଲେ ଓଡ଼ିଆମାନଙ୍କର ଦାବୀ

ଆଂଶିକ ଗୃହୀତ ହେଲ ବୋଲି ଓଡ଼ିଆମାନେ ଭାବିଥାଆନ୍ତେ; କିନ୍ତୁ ସେହି ଦାଗରେ ବିହାରୀ ନେତାମାନେ କିଛି ଚେଷ୍ଟା କରିନାହାନ୍ତି । ମଧୁବାବୁ ଥରେ ତାଙ୍କର ଦୁଇଜଣ ବିହାରୀ ବନ୍ଧୁ ଓ ନେତା ସାର୍ ଆଲି ଇମାମ୍ ଓ ଡାକ୍ତର ସଚ୍ଚିଦାନନ୍ଦ ସିଂହଙ୍କୁ ପାଟନା ଓକିଲଖାନାରେ ଏହାର ସୂଚନା ଦେଇ ଆକ୍ଷେପ କରି କହିଥିଲେ, "ଓଡ଼ିଶାକୁ ବିହାର ସଙ୍ଗେ ମିଶାଇବା ପାଇଁ ଯୋଗାଡ଼ଯନ୍ତ୍ର କରି ସଫଳ ହେଲ ସିନା, ଓଡ଼ିଆଙ୍କ ପିଠିରେ ମାଡ଼ି ବସେଇଲ ।"

ଲର୍ଡ଼ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ଏକଜିକ୍ୟୁଟିଭ କାଉନ୍ସିଲର ସଭ୍ୟ ଥିଲେ । ସେ ଇସ୍ତଫା ଦେବାରୁ ତାଙ୍କ ସ୍ଥାନରେ ସାର୍ ଆଲି ଇମାମ ସଭ୍ୟ ହେଲେ । ସଚ୍ଚିଦାନନ୍ଦ ସିଂହଙ୍କର ପରାମର୍ଶକ୍ରମେ ଆଲି ଏକ୍‌ଜିକ୍ୟୁଟିଭ କାଉନ୍‌ସିଲର ହୋଇଥିବା ସେତେବେଳେ ଶୁଣାଯାଉଥିଲ । ମଧୁବାବୁ ବୁଝାଇ କହୁଥିଲେ, ବଙ୍ଗ ପ୍ରଦେଶରୁ ବିହାରକୁ ଅଲଗା କରିଦେବା ପ୍ରସ୍ତାବ ହେବାରୁ ବିହାରୀ ନେତାମାନେ କହିଲେ, ଓଡ଼ିଶାକୁ ମଧ୍ୟ ବଙ୍ଗ ପ୍ରଦେଶଠାରୁ ଅଲଗା କରିଦିଆଯାଉ ଏବଂ ବିହାର ସଙ୍ଗେ ମିଶାଇ ଦିଆଯାଉ । ନୂତନ ପ୍ରଦେଶ ମଧ୍ୟ ଏହା ଫଳରେ ସମୁଦ୍ରକୁ ବାଟ ପାଇବ । ସମୁଦ୍ର ଉପକୂଳ ଅଞ୍ଚଳ ପାଇଲେ ନୂତନ ପ୍ରଦେଶର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେବ । ବିଶେଷତଃ ବିହାରୀ ଓ ଓଡ଼ିଆଙ୍କ ଚାଲିଚଳଣୀ, ଆଚାର-ବ୍ୟବହାର ପ୍ରଭୃତିରେ ସାମଞ୍ଜସ୍ୟ ଥିବାରୁ ଓ ଉଭୟ ରାଜ୍ୟ ଅନୁନ୍ନତ ଅବସ୍ଥାରେ ଥିବାରୁ କିଏ କାହାକୁ ଦବେଇ ଦେବାର ଅବକାଶ ରହିବ ନାହିଁ । ବିହାର ଅଞ୍ଚଳ ଗରିଷ୍ଠ ହେଲେ ମଧ୍ୟ ଓଡ଼ିଶା ଅଞ୍ଚଳକୁ ଦାବି ଦେବାର ଆଶଙ୍କା ରହିବ ନାହିଁ । ଏହି ଯୁକ୍ତି ବଳରେ ବିହାର ସହିତ ଓଡ଼ିଶାକୁ ଯୋଡ଼ି ନୂତନ ପ୍ରଦେଶ କରିଦିଆଗଲା ଏବଂ ଉଭୟ ବଙ୍ଗକୁ ଏକତ୍ର କରି ନୂତନ ବଙ୍ଗ ପ୍ରଦେଶ ଗଠନ କରାଗଲା ।

**(୮) "ଓଡ଼ିଶାରେ ଓଡ଼ିଆ ଓ ଅଣ-ଓଡ଼ିଆ ସମସ୍ତେ ଉତ୍କଳୀୟ"** : "ଉତ୍କଳୀୟମାନେ ଅନ୍ୟ ଯେଉଁ ଜାତିମାନଙ୍କ ସଂସ୍ରବରେ ଆସି ଅଛନ୍ତି, ସେମାନଙ୍କ ସଙ୍ଗେ ଉତ୍କଳୀୟମାନଙ୍କର ସଖ୍ୟ ଓ ଭ୍ରାତୃଭାବର ସଂରକ୍ଷଣ ଏବଂ ସମ୍ବର୍ଦ୍ଧନ ଏକାନ୍ତ ବାଞ୍ଛନୀୟ" ବୋଲି ଉତ୍କଳ ସମ୍ମିଳନୀ ସ୍ଥିର କରୁଥିବା ପ୍ରସ୍ତାବକୁ ବାଲେଶ୍ୱରର ବଙ୍ଗୀୟ ତନ୍ତୀକୁଳୋଦ୍ଭବ ରାଜା ବୈକୁଣ୍ଠନାଥ ଦେ ଆଗତ କରିଥିଲେ ଏବଂ ମନ୍ତ୍ରପାର ରାଜଗୁରୁ ତାମିଲ୍ ଦେଶାଗତ ଶ୍ରୀ ରାଜଗୋପାଳ ଆଚାରୀ ଅନୁମୋଦନ କରିଥିଲେ । ଉଭୟେ ଉତ୍କଳର ସ୍ଥାୟୀ ବାସିନ୍ଦା, ଏ ମାଟିର ସୁଖ ଦୁଃଖ ସଙ୍ଗେ ନିଜକୁ ମିଶାଇ ଦେଇଛନ୍ତି । ପ୍ରସ୍ତାବର ମର୍ମ ସହିତ ପ୍ରସ୍ତାବକ ଓ ଅନୁମୋଦକଙ୍କ ସାମାଜିକ ସ୍ଥିତି ଯେ ସଙ୍ଗତ ହୋଇଛି, ଏଥିରେ ସନ୍ଦେହ ନାହିଁ ।

ଏ ପ୍ରସ୍ତାବକୁ ସମର୍ଥନ କରିଥିଲେ ମେଦିନୀପୁରର ଶ୍ରୀ ରାଧାନାଥ ପତି, ବି. ଏଲ୍., ବାବୁ ବ୍ରଜନାରାୟଣ ମିଶ୍ର, ସମ୍ବଲପୁର, ରେଭେରେଣ୍ଡ ଏ. ଏଚ୍, ୟଙ୍ଗ ( A. H.) Young, କଟକ ); ଶ୍ରୀଯୁକ୍ତ ମଧୁସୂଦନ ଦାସ ଏମ୍. ଏ. ବି., ଏଲ୍ ।

ଓଡ଼ିଆ ଓ ଅଣଓଡ଼ିଆ ସମସ୍ତେ ଉତ୍କଳବାସୀ, ସମସ୍ତେ ଉତ୍କଳମାତାର ସନ୍ତାନ, ଉତ୍କଳ ଉପରେ ସମସ୍ତଙ୍କର ଦାବୀ ସମାନ ଥିବା ଘୋଷଣା କରି ସାମ୍ପ୍ରଦାୟିକ ସଦ୍ଭାବ ପ୍ରତିଷ୍ଠା କରିବାହିଁ ଏହି ପ୍ରସ୍ତାବର ମୁଖ୍ୟ ଉଦ୍ଦେଶ୍ୟ । ପ୍ରସ୍ତାବର ପ୍ରଭାବ ଅତି ଚମତ୍କାର-ଭାବରେ ଦେଶରେ କାର୍ଯ୍ୟ କରିଛି । ବଙ୍ଗାଲୀ, ତେଲୁଗୁ, ବିହାରୀ ପ୍ରଭୃତି ଭିନ୍ନଭାଷୀ ସ୍ଥାୟୀବାସିନ୍ଦାମାନଙ୍କ ଭିତରୁ ଅଧିକାଂଶ ନିଜକୁ ଉତ୍କଳସନ୍ତାନରୂପେ ପରିଚୟ ଦେବାକୁ କୁଣ୍ଠାବୋଧ କରିନାହାନ୍ତି; ଉତ୍କଳର ପ୍ରତ୍ୟେକ ଜାତୀୟ କାର୍ଯ୍ୟରେ ପୂର୍ଣ୍ଣପ୍ରାଣରେ ସହଯୋଗ କରିଛନ୍ତି ।

ମଧୁବାବୁ ପ୍ରସ୍ତାବକୁ ସମର୍ଥନ କରି ଇଂରେଜୀ ଓ ଓଡ଼ିଆରେ ଏକ ଜ୍ୱାଳାମୟୀ ବକ୍ତୃତା ଦେଇ ସମ୍ମିଳନୀ ସଭାରେ ଅପୂର୍ବ ଉନ୍ମାଦନା ସୃଷ୍ଟି କରିଥିଲେ । ସେ କହିଥିଲେ (ସାର ମର୍ମ)—"ସ୍ଥିର ସମୁଦ୍ରରେ ଚନ୍ଦ୍ରର ଗୋଟିଏ ପ୍ରତିବିମ୍ବ ଦେଖାଯାଏ; ମାତ୍ର ତରଙ୍ଗ ଉଠିଲେ ଶତଶତ ପ୍ରତିବିମ୍ବ ଦେଖାଯାଏ । ଆଜି ଭାଇମାନଙ୍କୁ ଦେଖି ମୋହର ହୃଦୟରେ ପ୍ରେମତରଙ୍ଗ ଉଠିବାରୁ ମୁଁ ଭାଇମାନଙ୍କୁ ଦେଖି ସେହିପରି ଆନନ୍ଦିତ ହେଉଅଛି । ଧାତୁ ଅଗ୍ନି ସାହାଯ୍ୟରେ ତରଳା ଯାଇଥାଏ ଏବଂ ହିନ୍ଦୁଙ୍କର ବିଶ୍ୱାସ ଯେ ଅଷ୍ଟଧାତୁ ଏକତ୍ର ମିଶି ଏମନ୍ତ ଏକ ଧାତୁମୟ ପଦାର୍ଥ ଉତ୍ପନ୍ନ ହୁଏ, ଯାହାକି ଅନେକ ମହତ୍ତ୍ୱ କାର୍ଯ୍ୟ ସାଧନ କରିଥାଏ । ଅତଏବ ଏହି ଭ୍ରାତୃପ୍ରେମଦ୍ୱାରା ଆମ୍ଭେମାନେ ଏପରି ଭାବରେ ଦ୍ରବୀଭୂତ ହେବୁଁ ଯେ ଏହି ନବଗଠିତ ଉତ୍କଳଖଣ୍ଡ ଅନେକ ଶୁଭ-କାର୍ଯ୍ୟ ସମ୍ପାଦନ କରିପାରିବ । ଇତିହାସକୁ ଅବଲୋକନ କଲେ ଜଣାଯାଏ ଯେ, ନାନା ସ୍ଥାନର ଲୋକେ ଇଂଲଣ୍ଡକୁ ଆସି ଏକତ୍ର ବାସ ଏବଂ ମିଶ୍ରଣଦ୍ୱାରା ଇଂରେଜ ଜାତି ହୋଇଅଛି ଏବଂ ଏହି ଜାତି କିପରି ମହତ୍ତ୍ୱ କାର୍ଯ୍ୟମାନ ସାଧନ କରୁଅଛି ଏହା ବୋଲିବା ବାହୁଲ୍ୟ । ଆମ୍ଭମାନଙ୍କର ମାତୃଭୂମି ସକାଶେ ସେହିପରି ମିଶ୍ରଣ ଆବଶ୍ୟକ ।

ତୁମ୍ଭମାନଙ୍କ ମଧ୍ୟରୁ ଯଦି କେହି ମାତୃବିୟୋଗ ଦୁଃଖ ଭୋଗ କରିଥାଆନ୍ତି, ତେବେ ମାତୃବିୟୋଗରୂପ ଦାରୁଣ କ୍ଳେଶ ସେ ଅବଶ୍ୟ ବୁଝି ପାରୁଥିବେ । ବର୍ତ୍ତମାନ ଉତ୍କଳ ଜନନୀର ଦୁଃଖ ଦେଖି ଆମ୍ଭମାନଙ୍କ ମନରେ ତତୋଽଧିକ ଗଭୀର ଦୁଃଖ ହେବା ଅବଶ୍ୟମ୍ଭାବୀ । କିପରି ଜନନୀର ଦୁଃଖ ମୋଚନ ହେବ, ଏହାବିଷୟ ଆମ୍ଭମାନଙ୍କର ଏହା ଭାବିବା ଉଚିତ । ଅନ୍ୟାନ୍ୟ ଉନ୍ନତ ଜାତିମାନଙ୍କ ସଙ୍ଗେ ତୁଳନା କରିବାକୁ ଗଲେ ଉତ୍କଳର ଅବସ୍ଥା ଅତି ଶୋଚନୀୟ । ଏହି ଅବସ୍ଥା ଦୂର କରିବା ନିମନ୍ତେ ଆମ୍ଭମାନଙ୍କର ଉନ୍ନତ ଜାତିମାନଙ୍କ ସଙ୍ଗେ ମିଶିବା ଏକାନ୍ତ ଆବଶ୍ୟକ । ମିଶିବାକୁ ଗଲେ ପ୍ରଥମେ ସମସ୍ତଙ୍କ ସଙ୍ଗେ ଭାଇଭାବ ରହିବା ଆବଶ୍ୟକ । ଭ୍ରାତୃଚକ୍ଷୁରେ ନ ଦେଖିଲେ ଉନ୍ନତ ଜାତିଙ୍କ ସଙ୍ଗେ ସମକକ୍ଷ ହେବା କାଠିକର ପାଠ ।

"ମହାତ୍ମା ମହମ୍ମଦ କହିଅଛନ୍ତି ଯେ, ଯେତେବେଳେ ସେ ପିଲାଥିଲେ, ସେ ସମୟରେ ଗୋଟିଏ ସ୍ୱର୍ଗଦୂତ ଆସି ତାହାଙ୍କ ଛାତିକୁ କାଟି ମେଲା କଲେ ଏବଂ ହୃଦୟରୁ

ପିଣ୍ଡଟି ବାହାର କରି ଆଣିଲେ । ସେହି ପିଣ୍ଡରେ ଗୋଟିଏ କଳାଦାଗ ଥିଲା । ସ୍ୱର୍ଗୀୟ ଦୂତ ସେହି କଳାଦାଗଟି ଉଠାଇ ସେଇ ପିଣ୍ଡକୁ ପୁନର୍ବାର ଗ୍ରୁଢରେ ବସାଇଦେଲେ । ସେହିପରି ଆମ୍ଭେମାନେ ସମସ୍ତଙ୍କ ହୃଦୟରୁ କଳାଦାଗଟିକିକ ଉଠାଇ ଦେବା ଉଚିତ । କଳାଦାଗଗୁଡ଼ିକ ଆଉ କିଛି ନୁହେଁ, ତାହା ଆମ୍ଭମାନଙ୍କର ଗର୍ବ ଓ ଅଭିମାନ । ଏଗୁଡ଼ିକୁ ହୃଦୟରୁ ବାହାର କରି ଦେବାକୁ ହେବ । ବିଜ୍ଞାନର ସିଦ୍ଧାନ୍ତ ଏହି ଯେ ମନୁଷ୍ୟ ଦେହରେ ମାଂସ ଓ ହାଡ଼ର କଣିକାଗୁଡ଼ିକ ସାତବର୍ଷରେ ଥରେ ବଦଳିଯାଏ । ତଥାପି ଶରୀର ବଢ଼ିଥାଏ । ସେହିପରି ତୁମ୍ଭେ ଓ ଆମ୍ଭେ ଉତ୍କଳୀୟ ଜାତିର ମାଂସ ଓ ଅସ୍ଥିକଣିକା ମାତ୍ର । ଆଜି ତୁମ୍ଭେ ଓ ଆମ୍ଭେ ଅଛୁ, କାଲି ତୁମ୍ଭେ ଆମ୍ଭେ ଚାଲିଯିବା; ତଥାପି ମନୁଷ୍ୟ ଶରୀର ପରି ଆମ୍ଭର ଜାତିଟି ଦିନକୁ ଦିନ ବଢ଼ୁଥିବ । ଜନନୀ ସେବାରେ ଆତ୍ମଗର୍ବ, ସ୍ୱାର୍ଥପରତା ତ୍ୟାଗ କରିବାକୁ ହେବ । ମୁଁ ବା ତୁମ୍ଭେମାନେ କାଲି ଇହସଂସାରରୁ ଚାଲିଯିବା; କିନ୍ତୁ ଜାତି ଅମର ଓ ଚିରଜୀବୀ । ସ୍ୱାର୍ଥତ୍ୟାଗ ଓ ପ୍ରେମ ଜାତୀୟ ଉନ୍ନତିର ପ୍ରଧାନ ସହାୟ ।''

(ଉତ୍କଳସମ୍ମିଳନୀ-୧ମ ବିବରଣ—ପୃ. ୬୨)

ଉତ୍କଳୀୟେତର ଜାତିମାନଙ୍କ ସହିତ ସୌହାର୍ଦ୍ଦ୍ୟ ଓ ଭ୍ରାତୃଭାବ ସ୍ଥାପନ ସମ୍ବନ୍ଧରେ ମଧୁବାବୁ ବହୁବାର ଦେଶବାସୀଙ୍କୁ ଆବେଦନ କରୁଥିଲେ । ସଂକୀର୍ଣ୍ଣ ଜାତୀୟତା ଦେଶପକ୍ଷେ କ୍ଷତିକାରକ, ଏହା ସେ ଉପଲବ୍ଧି କରି ଏହା ବିରୁଦ୍ଧରେ ପ୍ରଚାର କରିଥିଲେ । ଏ ପ୍ରସଙ୍ଗରେ ଉତ୍କଳ ସମ୍ମିଳନୀର ୪ର୍ଥ ଅଧିବେଶନ (ବ୍ରହ୍ମପୁର)ରେ ଏକ ପ୍ରସ୍ତାବ ସମର୍ଥନ କରିବା ବେଳେ କହିଥିଲେ, "ଆମ୍ଭେମାନେ ଅନ୍ୟାନ୍ୟ ଉତ୍କଳୀୟେତର ଜାତିମାନଙ୍କ ସହିତ ସୌହାର୍ଦ୍ଦ୍ୟ ଓ ଭ୍ରାତୃଭାବ ସଂସ୍ଥାପନ କରିବା ଉଚିତ । କାରଣ ଅନ୍ୟାନ୍ୟ ଉତ୍କଳୀୟେତର ଜାତିମାନେ ଆମ୍ଭମାନଙ୍କଠାରୁ ଉଚ୍ଚ ଶିକ୍ଷିତ, ଧୀଶକ୍ତିସମ୍ପନ୍ନ ଓ କର୍ମବୀର ଅଟନ୍ତି । ସେମାନଙ୍କର ମହତ୍ତ୍ୱ କାର୍ଯ୍ୟର ପଦାଙ୍କାନୁସରଣ ଆମ୍ଭମାନଙ୍କର ଅନୁକରଣୀୟ । ଆମ୍ଭେମାନେ ସକଳ ବିଷୟରେ ଅନୁନ୍ନତ । ଏପରି ଅବସ୍ଥାରେ କି ସାମାଜିକ ଉନ୍ନତି, କି ଜାତୀୟ ଉନ୍ନତି, କି ଶିକ୍ଷୋନ୍ନତି ପ୍ରଭୃତି ଉନ୍ନତି ବିଷୟକ ପରାମର୍ଶ ସେମାନଙ୍କଠାରୁ ଗ୍ରହଣ କରିବା କର୍ତ୍ତବ୍ୟ ।

"ଭାଇମାନେ, ଯଦି ଉନ୍ନତି ଲଭିବାକୁ ଇଚ୍ଛା କର, ବୀଜ ଯେପରି ନୀଚକୁ ଯାଇ ବୃକ୍ଷକୁ ଉଚ୍ଚକୁ ଉଠାଏ, ସେହିପରି ନିଜେ ନୀଚକୁ ଯାଅ ଓ ଜାତିକୁ ଉଚ୍ଚକୁ ଉଠାଅ ।''
(ଉତ୍କଳ ସମ୍ମିଳନୀ କାର୍ଯ୍ୟ ବିବରଣ, ୪ର୍ଥ ଅଧିବେଶନ, ୧୯୦୭, ବ୍ରହ୍ମପୁର)

**ଓଡ଼ିଶା ଦେଶମିଶ୍ରଣ ଓ ରାଜାଜମିଦାରଙ୍କ ବୈବାହିକ ସମ୍ପର୍କ :** ଓଡ଼ିଶାର ଦେଶମିଶ୍ରଣ ଆନ୍ଦୋଳନରେ ଓଡ଼ିଶାର ରାଜପରିବାରମାନଙ୍କର ବୈବାହିକ ସମ୍ପର୍କ ଯଥେଷ୍ଟ ପ୍ରଭାବ ପକାଇଥିଲା ଏବଂ ଆନ୍ଦୋଳନକୁ ଫଳବତୀ କରିବାରେ ସାହାଯ୍ୟ କରିଥିଲା ବୋଲି ମଧୁବାବୁ କହୁଥିଲେ । ବିଚ୍ଛିନ୍ନାଞ୍ଚଳ ଓ ଓଡ଼ିଶାର ଏ ପାରିବାରିକ ସମ୍ପର୍କ କାଳକାଳରୁ ରହିଆସିଥିଲା ।

ମୟୂରଭଞ୍ଜ ରାଜାଙ୍କ ବୃଦ୍ଧଭାଇ ଖଲକୋଟ ରାଜା ହରିହର ମର୍ଦ୍ଦରାଜ ବିବାହ କରିଥିଲେ । ହରିହର ମର୍ଦ୍ଦରାଜ ସଂଗ୍ରାମରେ ଦେଶମିଶ୍ରଣ ଆନ୍ଦୋଳନର ଜଣେ ଅଗ୍ରଣୀ ହୋଇଥିବାରୁ ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ମଧ୍ୟ ଏଥିରେ ପୂର୍ଣ୍ଣମାତ୍ରାରେ ସହଯୋଗ କଲେ । ଢୁମା ଓ ପଟିଆ, ପଟିଆ ଓ ଘୁମୁସର, ନୟାଗଡ଼ ଓ ଘୁମୁସର, କନକା ଓ ଚକେଟୀ ଏପରି ବହୁ ରାଜପରିବାର ବୈବାହିକ ବନ୍ଧନରେ ଆବଦ୍ଧ ଥିବାରୁ ପରସ୍ପର ପ୍ରତି ସ୍ନେହ ଓ ସହାନୁଭୂତି ଥିଲା ଏବଂ ବିଚ୍ଛିନ୍ନାଞ୍ଚଳର ଦୁଃଖଦୁର୍ଦ୍ଦଶା ଓଡ଼ିଶାବାସୀ ହୃଦୟଙ୍ଗମ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଦୁର୍ଦ୍ଦଶା ପାଇଁ ପ୍ରଶାସନିକ ବିଭକ୍ତିକରଣ ଦାୟୀ ଥିବା ସେମାନେ ବୁଝିପାରିଥିଲେ ।

ସେ ପୁଣି କହୁଥିଲେ, ଦେଶମିଶ୍ରଣ ଆନ୍ଦୋଳନରେ ଓଡ଼ିଶା, ଓଡ଼ିଶା ଗଡ଼ଜାତ ଓ ବିଚ୍ଛିନ୍ନାଞ୍ଚଳର ରାଜା ଜମିଦାରଙ୍କ ଅଂଶର ଗୁରୁତ୍ୱ କେହି ଅସ୍ୱୀକାର କରିପାରିବେ ନାହିଁ । ପ୍ରକୃତରେ କହିବାକୁ ଗଲେ ଏମାନଙ୍କ ପ୍ରତ୍ୟକ୍ଷ ସାହାଯ୍ୟ ବିନା ଦେଶମିଶ୍ରଣ ଆନ୍ଦୋଳନ ଆଦୌ କ୍ଷିପ୍ର ଗତିରେ ଅଗ୍ରସର ହୋଇପାରିନଥାନ୍ତା ଓ ଓଡ଼ିଆମାନେ ନିଜ ଘରେ ପରବାସୀ ଭଳି ରହିଥାଆନ୍ତେ; କେହି କାହାକୁ ଜାତି ଭାଇ ବୋଲି ଚିହ୍ନି ନଥାନ୍ତେ । ମଧୁବାବୁ ବାରମ୍ବାର ଏହି କଥା ସ୍ୱୀକାର କରୁଥିଲେ । ଏହି ବିଶିଷ୍ଟ ପାରିବାରିକ ସମ୍ପର୍କ ପ୍ରଚାର ଓ ସଂଗଠନରେ ବହୁତ ସାହାଯ୍ୟ କରିଥିଲା ଏବଂ ଉତ୍କଳ ସମ୍ମିଳନୀର ବାଣୀ ପ୍ରତ୍ୟେକ ଅଞ୍ଚଳର ଘରେ ଘରେ ପ୍ରବେଶ ଲାଭ କରି ଲୋକଙ୍କ ଭିତରେ ଦେଶାତ୍ମବୋଧ ଭାବ ଅପୂର୍ବ ଭାବରେ ଜାଗ୍ରତ କରିପାରିଥିଲା ।

ଏହି ସମ୍ପର୍କରେ ମଧୁବାବୁ ଉତ୍କଳର ପ୍ରାଚୀନ ଇତିହାସରୁ ଏକ ଦୃଷ୍ଟାନ୍ତ ଦେଇ କହୁଥିଲେ ଯେ, ଉତ୍କଳର କେଶରୀବଂଶୀୟ ରାଜା ସୁବର୍ଣ୍ଣ କେଶରୀ ଓ କଳିଙ୍ଗାଧିପତି ଗଙ୍ଗବଂଶୀୟ ରାଜା ଚୋରଗଙ୍ଗଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରିଥିବାରୁ ଦକ୍ଷିଣ ଓଡ଼ିଶା ଓ ଉତ୍ତର ଓଡ଼ିଶାର ମିଶ୍ରଣ ସମ୍ଭବ ହୋଇଥିଲା । ପରବର୍ତ୍ତୀ ଯୁଗରେ ପ୍ରତାପରୁଦ୍ର ଓ କର୍ଣ୍ଣାଟ ରାଜା କୃଷ୍ଣଦେବ ରାୟଙ୍କ ବୈବାହିକ ସମ୍ପର୍କର ପ୍ରଭାବ ମଧ୍ୟ ସେ ଉଲ୍ଲେଖ କରୁଥିଲେ । ଏ ପ୍ରସଙ୍ଗରେ ସେ କହୁଥିଲେ ଯେ ଯଦି ପୃଥ୍ୱୀରାଜଙ୍କ ସହ ଜୟଚନ୍ଦ୍ର ସ୍ୱଇଚ୍ଛାରେ ନିଜ କନ୍ୟାର ପାଣିଗ୍ରହଣ କରିଦେଇଥାଆନ୍ତେ, ତାହାହେଲେ ଭାରତ ପରାଧୀନ ହୋଇନଥାଆନ୍ତା ।

**(୧୦) ଦେଶମିଶ୍ରଣ ଓ ଅସହଯୋଗ ଆନ୍ଦୋଳନ !** ଓଡ଼ିଶାବାସୀଙ୍କ ପକ୍ଷେ ଅସହଯୋଗ ଆନ୍ଦୋଳନ ଦେଶମିଶ୍ରଣ ପରି ଜରୁରୀ ନୁହେଁ, ଏ କଥା ମଧୁବାବୁ ବାରମ୍ବାର କହୁଥିଲେ । "ଶରୀରର ଅଙ୍ଗପ୍ରତ୍ୟଙ୍ଗ ସମଭାବରେ କାର୍ଯ୍ୟକାରୀ ହେଲେ ଶରୀର ସୁସ୍ଥ ରହିବ । ଯଦି ବଡ଼ ବଡ଼ କେତୋଟି ଅଙ୍ଗ ସାନ ସାନ ଅଙ୍ଗ ଉପରେ ଅସଦ୍‌ଭାବ କି ବୈରଭାବ ପୋଷଣ କରନ୍ତି କି 'ଆମେ ବଡ଼, ଏ ଶ୍ରେଷ୍ଠ' ଏହି ମନୋଭାବରେ ମାଡ଼ି ଦଳି ଚାଲନ୍ତି, ତାହାହେଲେ ସାନ ସାନ ଅଙ୍ଗର ଉନ୍ନତି କେବେ ସମ୍ଭବ ହୋଇ ପାରିବ ନାହିଁ ।

ଓଡ଼ିଆଙ୍କ ଅବସ୍ଥା ଭାରତବର୍ଷରେ ଏହାହିଁ ହୋଇଛି । ବଙ୍ଗ, ବିହାର, ମାନ୍ଦ୍ରାଜ ପ୍ରଭୃତି ରାଜ୍ୟ ଇଂରେଜ ରାଜତ୍ୱରେ ବହୁ ଆଗରୁ ସ୍ୱତନ୍ତ୍ର ବା ଏକଶାସନାଧୀନରେ ରହି ଆସିଛନ୍ତି । ଏହି କାରଣରୁ ସେମାନେ ଖଣ୍ଡବିଖଣ୍ଡିତ ଓଡ଼ିଆଭାଷାଭାଷୀ ଅଞ୍ଚଳର ଲୋକଙ୍କ ଅପେକ୍ଷା ବେଶି ଉନ୍ନତି କରିପାରିଛନ୍ତି । ଏମାନଙ୍କ ତୁଳନାରେ ଓଡ଼ିଆଙ୍କ ଅସ୍ତିତ୍ୱ କିଛି ନୁହେଁ । ଏମାନଙ୍କୁ ଏକ ସ୍ୱତନ୍ତ୍ର ଗଣ୍ୟମାନ୍ୟ ଜାତି ବୋଲି ସ୍ୱୀକାର କରିବାକୁ ପଡ଼ୋଶୀମାନେ ନାରାଜ । ନିଜ ଘର ତ ଭାଙ୍ଗିଯାଇଛି, ରହିବାକୁ ଜାଗା ନାହିଁ; ନିଜ ଘରେ ପରବାସୀ ହୋଇ ଓଡ଼ିଆମାନେ ରହିଛନ୍ତି । ନିଜେ ବଞ୍ଚି ରହିଲେ ସିନା ମହାଭାରତୀୟ ଭାବ ଦେଖେଇବ ? ସ୍ୱତନ୍ତ୍ର ପ୍ରଦେଶ କିମ୍ବା ଏକଶାସନାଧୀନରେ ସମସ୍ତେ ନ ରହିଲେ ଓଡ଼ିଆଜାତି ରହିବା ସମ୍ଭବ ନୁହେଁ । ଏହା ଅତି ଜରୁରୀ ହୋଇ ପଡ଼ିଲାଣି । ଅସହଯୋଗ ଆନ୍ଦୋଳନ କିଛି ଦିନ ଅପେକ୍ଷା କରିପାରେ; କିନ୍ତୁ ଦେଶମିଶ୍ରଣ କେବେ ଅପେକ୍ଷା କରିପାରିବ ନାହିଁ ।" ଏହି ଭାବରେ ମଧୁବାବୁ ଦରୁବେଳେ କହୁଥିଲେ ।

ସେ ପୁଣି କହୁଥିଲେ, "ଅସହଯୋଗ ଆନ୍ଦୋଳନର ବହୁ ନେତାଙ୍କର ନିଜ ରାଜ୍ୟରେ ଓଡ଼ିଆଙ୍କ ପରି ସମସ୍ୟା ନାହିଁ । ସେମାନେ ଆମର ସମସ୍ୟାର ଗୁରୁତ୍ୱ କିପରି ବୁଝିବେ ? ବ୍ରିଟିଶ ସରକାରଙ୍କଦ୍ୱାରା ହିଁ ଦେଶମିଶ୍ରଣ ସମ୍ଭବ । ପଡ଼ୋଶୀ ରାଜ୍ୟର ବଡ଼ ବଡ଼ ନେତାମାନେ ଯେତେ ମହାଭାରତୀୟ ଭାବ ଦେଖାଇଲେ ମଧ୍ୟ ଦେଶମିଶ୍ରଣ ବେଳକୁ ଆମ ବିରୁଦ୍ଧରେ ଲଢ଼ିବେ ।"

"ବଙ୍ଗ ଭଙ୍ଗ ହେବାରୁ ଅରବିନ୍ଦ ତୀବ୍ର ଆନ୍ଦୋଳନ କଲେ; କିନ୍ତୁ ଓଡ଼ିଆମାନେ ତ ପୁଣି ଶହେ ବର୍ଷ ହେଲା ଖଣ୍ଡ ବିଖଣ୍ଡିତ ହୋଇ ପଡ଼ିଛନ୍ତି, ସେଥିପାଇଁ ସେ କି ଆନ୍ଦୋଳନ କରିଥିଲେ ?"

**"What Orissa thinks today. India thinks tomorrow"** : ବଙ୍ଗଭଙ୍ଗ ଆନ୍ଦୋଳନ ସମୟରେ ବଙ୍ଗର ନେତାମାନଙ୍କ କାର୍ଯ୍ୟକଳାପରେ ସନ୍ତୁଷ୍ଟ ହୋଇ ଗୋପାଳକୃଷ୍ଣ ଗୋଖଲେ ପ୍ରଶଂସା କରି କହିଥିଲେ, "What Bengal thinks today, rest of India thinks tomorrow". (ଆଜି ବଙ୍ଗ ଯାହା ବିଚାର କରୁଛି, ଭାରତର ଅନ୍ୟ ଅଞ୍ଚଳମାନେ ତାହା କାଲିକି ବିଚାର କରୁଛନ୍ତି) । ଏହି ପ୍ରଶଂସାବାକ୍ୟ ଶୁଣି ବଙ୍ଗ ଦେଶର ବହୁନେତା ଗର୍ବ କରୁଥିଲେ ଏବଂ ଏହାକୁ ବହୁ ସଭା ସମିତିରେ ପ୍ରକାଶ କରି ଅନ୍ୟମାନଙ୍କଠାରୁ ବଙ୍ଗୀୟମାନେ ସବୁ ବିଷୟରେ ଉନ୍ନତ, ଏହା କହୁଥିଲେ । ଯଦି ଏ ପ୍ରଶଂସାର ଯୋଗ୍ୟ କେହି ଥାଏ, ତାହାହେଲେ କଲିକତା ସିନା, ସମଗ୍ର ବଙ୍ଗ ନୁହେଁ ବୋଲି ମଧୁବାବୁ ମତ ଦେଉଥିଲେ । What Calcutta thinks today, rest of India thinks tomorrow" ହେଲେ ଚଳନ୍ତା—ଏହା ମଧ୍ୟ ସେ କହୁଥିଲେ ।

ମଧୁବାବୁ ପ୍ରଶଂସା ବାକ୍ୟଟିକୁ ମାନ୍ୟ କରୁଥିଲେ ମଧ୍ୟ ଏହା ଯଥାର୍ଥ ନ ଥିବା ବୁଝାଉଥିଲେ । ଓଡ଼ିଆମାନଙ୍କର ଦେଶମିଶ୍ରଣ ଦାବୀ ଭାରତରେ ଏ କ୍ଷେତ୍ରରେ ଅଗ୍ରଗାମୀ । ବଙ୍ଗଭଙ୍ଗ ଆନ୍ଦୋଳନର ବହୁ ପୂର୍ବରୁ ଓଡ଼ିଆମାନେ ଏପରି ଆନ୍ଦୋଳନ କରି ଆସୁଥିଲେ । ବଙ୍ଗ କିମ୍ବା ଅନ୍ୟ କୌଣସି ଅଞ୍ଚଳରେ ଏପରି ବ୍ୟାପକ ଆନ୍ଦୋଳନ ଦେଖା ଦେଇ ନଥିଲା । ଅତଏବ ଦେଶମିଶ୍ରଣ ଆନ୍ଦୋଳନ କ୍ଷେତ୍ରରେ ବଙ୍ଗ ପଥପ୍ରଦର୍ଶକ ନୁହେଁ, ପଥପ୍ରଦର୍ଶକ ହେଉଛି ଓଡ଼ିଶା । ଅତଏବ ପ୍ରଶଂସା ବାକ୍ୟଟି "What Orissa thinks today, rest of India thinks tomorrow"—ଏହିପରି ହେବା ଉଚିତ ଥିଲା ବୋଲି ମଧୁବାବୁ କହିଲେ ।

**(୧୧) ଜଗନ୍ନାଥ ଗଣଦେବତା :** ପୁରୀର ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ପୁରୀ ରାଜାଙ୍କର ଅଧିକାର ନେଇ ଖ୍ରୀ: ୧୯୧୮ରେ ସନ୍ଦେହ ଉପୁଜିବାରୁ ସରକାରଙ୍କଠାରେ ରାଜା ଆପତ୍ତି କରିଥିଲେ ଏବଂ ଏ ପ୍ରସଙ୍ଗରେ ମକଦ୍ଦମା ମଧ୍ୟ ହୋଇଥିଲା । ମଧୁବାବୁ ପୁରୀ ରାଜାଙ୍କ ପକ୍ଷ ସମର୍ଥନ କରୁଥିଲେ । ମକଦ୍ଦମା ବ୍ୟତୀତ ଅନ୍ୟ ସମୟରେ ମଧ୍ୟ ଘରୋଇ ଆଲାପମାନଙ୍କରେ ମଧୁବାବୁ ଜଗନ୍ନାଥ ମନ୍ଦିର, ପୁରୀ ରାଜା ପ୍ରଭୃତିଙ୍କ ବିଷୟରେ ବହୁ କଥା କହୁଥିଲେ ଏବଂ ସେ ଜଣେ ଓଡ଼ିଶାବାସୀ ହେତୁ ଏଥିରେ ଗର୍ବ ଅନୁଭବ କରୁଥିବା ବ୍ୟକ୍ତ କରୁଥିଲେ । ଅବଶ୍ୟ ଏଥିରେ ତାଙ୍କର ଖ୍ରୀଷ୍ଟିଆନ୍ ବନ୍ଧୁମାନେ ଟିକିଏ କ୍ଷୁବ୍ଧ ହେଉଥିଲେ । ଥରେ ପୁରୀ ମନ୍ଦିର ସମ୍ବନ୍ଧରେ ଆଲୋଚନା ହେଉଥିବାବେଳେ ମି. ସାଣ୍ଡେଲ (Mr. Sandell) ମଧୁବାବୁଙ୍କୁ ପଚାରିଲେ, "ଆପଣ ଖ୍ରୀଷ୍ଟିଆନ୍ ହୋଇ କିପରି ଏକ ହିନ୍ଦୁଦେବତାଙ୍କର ଏତେ ଯଶୋଗାନ କରୁଛନ୍ତି ?" ମଧୁବାବୁ ଉତ୍ତର ଦେଲେ, "ଆମ୍ଭ ଦେଶରେ ଜଗନ୍ନାଥଙ୍କ ପ୍ରଭାବ ଅସ୍ୱୀକାର କରିଯାଇ ପାରିବ ନାହିଁ । ଜଗନ୍ନାଥ ଧର୍ମ ଏକ ଉଦାର ଧର୍ମ । ଏଥିରେ ସଙ୍କୀର୍ଣ୍ଣତାର ସ୍ଥାନ ନାହିଁ । ଜଗନ୍ନାଥଙ୍କୁ ନିରାକାର ରୂପରେ ଭକ୍ତମାନେ ମଧ୍ୟ ଆରାଧନା କରୁଥିବାରୁ ଏ ଆରାଧନାରେ ପ୍ରତିମାପୂଜାର 'ସଙ୍କୀର୍ଣ୍ଣତା' ନାହିଁ । ଜଗନ୍ନାଥ ମନ୍ଦିରରେ ଜାତିଭେଦ ଭାବ ନାହିଁ । ଜଗନ୍ନାଥଙ୍କ ପ୍ରସାଦ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଗ୍ରହଣ କରୁଥିବାରୁ ଜାତିବିଭାଗର ସଙ୍କୀର୍ଣ୍ଣତା ମଧ୍ୟ ଏଥିରେ ନାହିଁ । ପୁଣି ଜଗନ୍ନାଥ ଓଡ଼ିଶାର ରାଜା; କାରଣ ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶର ପ୍ରତାପୀ ସମ୍ରାଟ ଅନଙ୍ଗଭୀମ ଦେବ ସମଗ୍ର ସାମ୍ରାଜ୍ୟଟିକୁ ଜଗନ୍ନାଥଙ୍କୁ ସମର୍ପଣ କରିଦେଇଥିବା ଘୋଷଣା ଜାରି କରିଥିଲେ ଏବଂ ସେ ଜଗନ୍ନାଥଙ୍କ ପ୍ରତିନିଧି ରୂପରେ ରାଜ୍ୟଶାସନ କରୁଥିଲେ । ପରବର୍ତ୍ତୀ ସମୟରେ ରାଜାମାନେ ଏ ଭାବନାରୁ ବିଚଳିତ ହୋଇ ନ ଥିଲେ ଏବଂ ନିଜକୁ ଜଗନ୍ନାଥଙ୍କ ପ୍ରତିନିଧି ମନେକରି ରାଜ୍ୟଶାସନ କରିଆସୁଥିଲେ । ଓଡ଼ିଶା ରାଜାଙ୍କର ଏ ତ୍ୟାଗ ଅତୁଳନୀୟ । ପୁରୀ ରାଜାଙ୍କର ହିନ୍ଦୁ-ଧର୍ମ ରାଜ୍ୟରେ ଏକ ବିଶିଷ୍ଟ ସ୍ଥାନ ରହିଛି; କାରଣ ତାଙ୍କୁ ହିନ୍ଦୁମାନେ ଠାକୁରରାଜା ବୋଲି ମାନନ୍ତି । ଇଂଲଣ୍ଡର ଆର୍ଚ-ବିସପ୍ (Arch-Bishop)ଙ୍କ ପରି ପୁରୀ ରାଜା ହିନ୍ଦୁମାନଙ୍କଦ୍ୱାରା ସମ୍ମାନିତ ହେଉଛନ୍ତି ।" ଏପରି ବହୁ ଯୁକ୍ତି ଦେଖାଇ ମଧୁବାବୁ ଆଲୋଚନା କରୁଥିଲେ ।

ଗଣଙ୍କ ଭିତରେ ଏକତା ଓ ଦେଶାତ୍ମବୋଧ ଜାଗ୍ରତ କରାଇବା ପାଇଁ ମହାରାଷ୍ଟ୍ରରେ ବାଳଗଙ୍ଗାଧର ତିଲକ ଗଣପତି ପୂଜାକୁ ବ୍ୟାପକ ଭାବରେ ପ୍ରଚଳନ କଲେ । ବଙ୍ଗ ଦେଶରେ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ, ଅରବିନ୍ଦ ଘୋଷ ପ୍ରଭୃତି ମା' ଭବାନୀଙ୍କ ଆରାଧନାକୁ ସାର୍ବଜନୀନ କଲେ ; କିନ୍ତୁ ଆମ ଓଡ଼ିଆମାନେ ବହୁ ପ୍ରାଚୀନ କାଳରୁ ଜଗନ୍ନାଥଙ୍କୁ କଳ୍ପନା କରି ଗଣ-ଆନ୍ଦୋଳନର ସୂତ୍ରପାତ କରିଥିଲେ । ଏହିହେତୁ ଜଗନ୍ନାଥ ଗଣଦେବତା ବୋଲି ମଧୁବାବୁ କହୁଥିଲେ ।

**(୧୨) ଜଗନ୍ନାଥ ଓଡ଼ିଶାର ରାଜା—ରାଜା ତାଙ୍କର ପ୍ରତିନିଧି ମାତ୍ର ଓ ଜାତୀୟ ଗୌରବ :** ଯେଉଁ ସମୟରେ ଅନଙ୍ଗଭୀମ ଦେବ (ଖ୍ରୀ: ଦ୍ୱାଦଶ ଶତାବ୍ଦୀରେ) ଶ୍ରୀଜଗନ୍ନାଥଙ୍କ ହାତରେ ସମଗ୍ର ଓଡ଼ିଶା ସାମ୍ରାଜ୍ୟକୁ ସମର୍ପଣ କରିଦେଇ ଘୋଷଣା କରିଥିଲେ, ପ୍ରାୟ ସେହି ସମୟରେ ଇଂଲଣ୍ଡର ରାଜା ଜନ୍ (King John) ମାଗ୍ନାକାର୍ଟା (Magna Charta) ବା ମହାଅଧିକାର ପତ୍ର ଘୋଷଣା କରିଥିଲେ । ଅନଙ୍ଗଭୀମଙ୍କ କାର୍ଯ୍ୟଟି ଉଦାରତା ଓ ଜନହିତ ଦୃଷ୍ଟିରୁ ବେଶି ମୂଲ୍ୟବାନ୍ । ଏଭଳି ତ୍ୟାଗ ଓ ଉଦାରତା ପୃଥିବୀ ଇତିହାସରେ କ୍ୱଚିତ ଦେଖାଯାଏ । ମଧୁବାବୁ ଏହି ପ୍ରସଙ୍ଗରେ କହୁଥିଲେ, "ଆମ୍ଭମାନଙ୍କର ଏତେ ପୂର୍ବ ଗୌରବ ଥିଲେ ମଧ୍ୟ ତାହା ଲୋକଙ୍କ ଦୃଷ୍ଟିକୁ ଆସୁନାହିଁ । ଜାତୀୟ ଗୌରବ ପ୍ରସଙ୍ଗକୁ ଜଗତ ଆଗରେ ନ ଥୋଇଲେ, ଆମକୁ କେହି ସମ୍ମାନ କରିବେ ନାହିଁ ।"

**(୧୩) ପ୍ରିଣ୍ଟିଂ କମ୍ପାନୀ କୋଠରୀଟି ଏକ ଜାତୀୟ ସମ୍ପଦ :** 'ଉତ୍କଳ ଦୀପିକା' ସାପ୍ତାହିକ କାଗଜଟି ଖ୍ରୀ: ୧୮୬୬ରେ ପ୍ରକାଶ ପାଇ ଖ୍ରୀ: ୧୯୨୪ ପର୍ଯ୍ୟନ୍ତ ଚାଲିଥିଲା । ଏହା ପରେ ମଧ୍ୟ ଖ୍ରୀ: ୧୯୩୬ରେ ଦୈନିକ ରୂପେ କେତେକ ସଂଖ୍ୟା ପ୍ରକାଶ ପାଇଥିଲା । ମଧୁବାବୁ ଖ୍ରୀ: ୧୯୨୪ରେ ଥରେ 'ଉତ୍କଳ ଦୀପିକା'ର ତତ୍କାଳୀନ ସହସମ୍ପାଦକଙ୍କୁ କଟକ ସହର ଦରଘାବଜାରସ୍ଥ ପ୍ରିଣ୍ଟିଂ କମ୍ପାନୀ କୋଠା ସାମନାରେ ଠିଆ ହୋଇ କହିଲେ, "ଦେଖ, ଏହି କୋଠାର ହଲ୍‌ରେ ଓଡ଼ିଶାର ଜାତୀୟ ଜୀବନର ସୂତ୍ରପାତ ହୋଇଛି । ଖ୍ରୀ: ୧୮୮୨ରେ ଏହିଠାରେ ଓଡ଼ିଆ ଆସୋସିଏସନ୍ ବା ଉତ୍କଳସଭା (Orissa Association) ଜନ୍ମଗ୍ରହଣ କରିଥିଲା । ପ୍ରଥମେ ପ୍ରଥମେ ମୋଗଲବନ୍ଦୀ ଓଡ଼ିଶା ଭିତରେହିଁ ଏହାର କାର୍ଯ୍ୟ ସୀମାବଦ୍ଧ ଥିଲା । କ୍ରମେ ଏହା ଗଡ଼ଜାତ ଓ ଅନ୍ୟାନ୍ୟ ପ୍ରଦେଶର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବ୍ୟାପିଗଲା । ପରେ ଉତ୍କଳ ସମ୍ମିଳନୀ ଏହାର କାର୍ଯ୍ୟ ଆଗେଇ ନେଲା । ଓଡ଼ିଆଜାତିର ଐକ୍ୟ, ଜାତୀୟଭାବ ଜାଗରଣ, ଦେଶମିଶ୍ରଣ ପ୍ରଭୃତି ଏହି କୋଠରୀରୁ ବାହାରିଛି । ଏହା ଓଡ଼ିଆ ଜାତି ପକ୍ଷେ ଏକ ଜାତୀୟ ସମ୍ପଦ ।"

**(୧୪) ମଧ୍ୟବର୍ତ୍ତୀ ଶାସକଜାତିଦ୍ୱାରା ଓଡ଼ିଶାର କ୍ଷତି :** ମଧୁବାବୁ କହୁଥିଲେ, "ଇଂରେଜ ରାଜତ୍ୱର ପ୍ରଥମାବସ୍ଥାରେ କଲିକତାରେ ଇଂରେଜ ଶାସକ ଓ ବଣିକମାନେ

ରହୁଥିଲେ । କଲିକତା କେନ୍ଦ୍ର ସରକାରଙ୍କ ରାଜଧାନୀ ଥିଲା । ଇଂରେଜୀ ପଦ୍ଧତିରେ ଶିକ୍ଷାର ବ୍ୟବସ୍ଥା ଏଠାରେ ପ୍ରବର୍ତ୍ତିତ ହେବାରୁ ପ୍ରଥମେ ସ୍ଥାନୀୟ ବଙ୍ଗୀୟମାନେ ବିଶେଷ ଭାବରେ ଉପକୃତ ହେଲେ । ଏମାନଙ୍କର ସଂଖ୍ୟା ବୃଦ୍ଧି ପାଇବାରୁ ରାଜ୍ୟଶାସନ କ୍ଷେତ୍ରରେ ଏମାନେ ବେଶି ସଂଖ୍ୟାରେ ନିଯୁକ୍ତି ପାଇଲେ ଏବଂ ବିଭିନ୍ନ ପ୍ରଦେଶକୁ ବ୍ୟାପିଗଲେ । ଓଡ଼ିଶା ମଧ୍ୟ ଏଥିରୁ ବାଦ୍ ପଡ଼ିଲା ନାହିଁ । ଓଡ଼ିଶାରେ କ୍ରମେ ଏମାନଙ୍କର ସଂଖ୍ୟା ଓ ପ୍ରଭାବ ଏତେ ବୃଦ୍ଧି ପାଇଲା ଯେ ସମଗ୍ର ଶାସନଡୋରି ଏମାନଙ୍କ ହାତରେ ରହିଗଲା । କଲିକତାର ବହୁ ବଙ୍ଗୀୟ ବ୍ୟବସାୟୀ ଓ ଧନୀ ଓଡ଼ିଶାରେ ଶାଗମୁଗ ଦରରେ ଜମିଦାରୀ ନିଲାମରେ କିଣି ଜମିଦାର ହୋଇଗଲେ । ସବୁ କ୍ଷେତ୍ରରେ ଏମାନଙ୍କ ପ୍ରଭାବ ବୃଦ୍ଧି ପାଇଲା । ଇଂରେଜ ଶାସକ ଓ ପ୍ରଜାଙ୍କ ମଧ୍ୟରେ ଏମାନେ ଏକ ମଧ୍ୟବର୍ତ୍ତୀ ଶାସକଗୋଷ୍ଠୀ ବା କାନ୍ଥ ହୋଇ ରହିଲେ । ସବୁ ସୁବିଧା ଏମାନେ ପାଇଲେ, ପ୍ରଜାମାନେ ସବୁ ଦୁଃଖ ଭୋଗ କଲେ । ଓଡ଼ିଶାକୁ ଏ ମଧ୍ୟବର୍ତ୍ତୀ ଶାସକଗୋଷ୍ଠୀ କାଳ ହେଲେ, ଓଡ଼ିଶାର ସର୍ବନାଶ ହେଲା ।''

(୧୫) **ବ୍ରିଟିଶ୍‌ଙ୍କଠାରୁ କାମ ଆଦାୟ କରିବା ଉପାୟ** : ବ୍ରିଟିଶ୍‌ମାନଙ୍କର ଗୁଣଗ୍ରାମ ମଧୁବାବୁ ଭଲ ଭାବରେ ଜାଣିଥିଲେ । ଖାଲି ବକ୍ତୃତା ଦେଇ ବ୍ରିଟିଶ୍‌ମାନଙ୍କଠାରୁ କାମ ହାସଲ୍ କରିବା ସହଜ ନୁହେଁ, ଏଥିପାଇଁ ଟାଣୁଆ ପନ୍ଥା ଆବଶ୍ୟକ ବୋଲି ସେ କହୁଥିଲେ । ଏ ସମ୍ପର୍କରେ ସେ ଉଦାହରଣ ଦେଇ କହୁଥିଲେ, ''ମାଙ୍କଡ଼ ଆମ୍ବ ଗଛରେ ଚଢ଼ି ଆମ୍ବ ଖାଉଛି । ତାକୁ ଖେଦେଇ ଦେଲେ କଣ ସେ ଗଛରୁ ପଳାଇଯିବ ? ତାକୁ ତଡ଼ିବାକୁ ହେଲେ ବାଟୁଳି ଦରକାର ବାଟୁଳି, ବାଜିଲେ ସେ ଗୁଡ଼ ପଳେଇବ ।'' ବ୍ରିଟିଶ୍‌ଙ୍କୁ ତଡ଼ିବାକୁ ହେଲେ ଏହିପରି କଠୋର ପନ୍ଥା ଦରକାର ବୋଲି ସେ ମତ ଦେଉଥିଲେ ।

(୧୬) **ଯୀଶୁ ଓ କୃଷ୍ଣ** : ଖ୍ରୀ ୧୯୦୯ରେ ପଞ୍ଜାବର ବିଖ୍ୟାତ ଆର୍ଯ୍ୟସମାଜ ସଭ୍ୟ ଶ୍ରୀ କାହାନଚନ୍ଦ୍ର ବର୍ମା କଟକ ଆସିଥିଲେ । କଟକ ମ୍ୟୁନିସିପାଲିଟି ପଡ଼ିଆରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ସେ ''ଯୀଶୁ ଏକ କଳ୍ପିତ ପୁରୁଷ'' ସମ୍ବନ୍ଧରେ ଇଂରେଜୀରେ ବକ୍ତୃତା ଦେଇଥିଲେ । କେବଳ ଐତିହାସିକ ତଥ୍ୟର ବିଶ୍ଳେଷଣ ଏହି ଭାଷଣର ପ୍ରଧାନ ଆକର୍ଷଣ ଥିଲା । ମଧୁବାବୁ ମଧ୍ୟ ସେହି ସଭାରେ ଉପସ୍ଥିତ ଥିଲେ ।

ଶ୍ରୀ ବର୍ମା ଯୀଶୁଖ୍ରୀଷ୍ଟଙ୍କୁ କୃଷ୍ଣଙ୍କ ପରବର୍ତ୍ତୀ କଳ୍ପିତ ଅବତାର ବୋଲି କହିଥିଲେ । କୃଷ୍ଣଙ୍କ ଚରିତ, ଚରିତ୍ର ଓ ନାମର ବିଶେଷତ୍ୱ ସହିତ ସାମଞ୍ଜସ୍ୟ ରଖି ପରବର୍ତ୍ତୀ ସମୟରେ ମଧ୍ୟ-ପ୍ରାଚ୍ୟରେ କେହି କଳ୍ପନାବଳରେ ଯୀଶୁ ଚରିତକୁ ସୃଷ୍ଟି କରିଛି, ଏହା ତାହାଙ୍କର ମତଥିଲା । ଶ୍ରୀବର୍ମାଙ୍କ ମତ କୌତୂହଳ ସୃଷ୍ଟି କରିଥିଲା ଏବଂ ଐତିହାସିକ ଗବେଷଣା ଦୃଷ୍ଟିରେ କେବଳ ଏହି ବିଷୟର ବିଚାର କରାଯାଇଥିଲା । ଯୀଶୁ ଓ କୃଷ୍ଣଙ୍କ ଜୀବନର ମୁଖ୍ୟ ଘଟଣାଗୁଡ଼ିକ ବର୍ଣ୍ଣନା କରି ସେଥିରେ ଥିବା ସାମଞ୍ଜସ୍ୟମାନ ବର୍ମା ଦର୍ଶାଇଥିଲେ ଏବଂ ବହୁ ମୁଖ୍ୟ ବିଷୟରେ ଉଭୟଙ୍କ ଚରିତ ପ୍ରାୟ ଏକପ୍ରକାର ଥିବା ପ୍ରମାଣ କରିଥିଲେ ।

ମଧୁବାବୁ ଏହି ସଭାରେ ଭାଷଣ ଦେଇ ଯୀଶୁ ଜଣେ ଐତିହାସିକ ପୁରୁଷ ଥିବା ବ୍ୟକ୍ତ କରିଥିଲେ । ଯୀଶୁ ଓ କୃଷ୍ଣଙ୍କ ଜୀବନର ବହୁ ଘଟଣାରେ ତାତ୍ତ୍ୱିକ ସାମଞ୍ଜସ୍ୟ ଥିଲେ ମଧ୍ୟ କେତେକ ପାର୍ଥକ୍ୟ ମଧ୍ୟ ରହିଥିବା ମଧୁବାବୁ ପ୍ରତିପାଦନ କରିଥିଲେ । ମଧୁବାବୁ ପାର୍ଥକ୍ୟ ସମ୍ବନ୍ଧରେ କହିଥିଲେ—

(୧) କୃଷ୍ଣ ଜଣେ ରାଜକୁମାର, ଯୀଶୁ ଜଣେ ବଢ଼େଇର ସନ୍ତାନ ।

(୨) ପାଲେଷ୍ଟାଇନ୍‌ର ରାଜା ହିରୋଡ୍ ଜନସାଧାରଣଙ୍କ ଉପରେ ଅତ୍ୟାଚାର କରୁଥିଲେ, କଂସ ଓ ତାଙ୍କର ଶ୍ୱଶୁର ଜରାସନ୍ଧ ରାଜାମାନଙ୍କ ଉପରେ ଉତ୍ପୀଡ଼ନ କରୁଥିଲେ ।

(୩) ଯୀଶୁ ଘୋଡ଼ାଶାଳରେ ଘୋଡ଼ାଦାନାଖିଆ କୁଣ୍ଡରେ ଜନ୍ମଗ୍ରହଣ କରିଥିଲେ । କୃଷ୍ଣ କାରାଗାରରେ ଜନ୍ମ ହୋଇଥିଲେ ।

(୪) କୃଷ୍ଣ ଜଣେ ଯୋଦ୍ଧା, କ୍ଷତ୍ରିୟ । କିନ୍ତୁ ଯୀଶୁ ଯୁଦ୍ଧ କରିନଥିଲେ ।

(୫) ଯୀଶୁଙ୍କ କାର୍ଯ୍ୟକଳାପ ଜୋର୍ଡ଼ାନ ନଦୀ, ଡେଡ୍‌ସି (ମୃତସାଗର) ଓ ଗାଲିଲି ସାଗର ଚତୁଃପାର୍ଶ୍ୱ ଅଞ୍ଚଳରେ ଆବଦ୍ଧ ଥିଲା । କୃଷ୍ଣ ଯମୁନା କୂଳରେ ତାଙ୍କ କାର୍ଯ୍ୟକଳାପ ଆରମ୍ଭ କରିଥିଲେ ।

(୬) ଯୀଶୁ ଜଣେ ଐତିହାସିକ ପୁରୁଷ । ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀରେ ତାଙ୍କର ଜନ୍ମ । କୃଷ୍ଣ ଏହାର ବହୁ ଶତ ବର୍ଷ ପୂର୍ବରୁ ଜନ୍ମଗ୍ରହଣ କରିଥିଲେ । ଉଭୟେ ଗଣତନ୍ତ୍ରବାଦୀ ଥିଲେ ।

(୭) ଯୀଶୁ ଇହୁଦୀ (ଜିଉ) ମାନଙ୍କ ମନ୍ଦିର ଓ ପର୍ବତ ଶିଖର ସ୍ଥାନରେ ପ୍ରଚାର କରୁଥିଲେ ଓ ସେ ଜନସାଧାରଣଙ୍କୁହିଁ ଉପଦେଶ ଦେଉଥିଲେ । କୃଷ୍ଣ ଯୁଦ୍ଧକ୍ଷେତ୍ରରେ ଧର୍ମ ପ୍ରଚାର କରିଥିଲେ ।

(୮) କୃଷ୍ଣ ଜଣେ ରାଜନୀତିଜ୍ଞ ଥିଲେ; ରାଜନୀତିରେ ଲିପ୍ତ ଥିଲେ । ସେ ଜଣେ କୌଶଳୀ କୂଟନୀତିଜ୍ଞ ଓ ଶାସକ ମଧ୍ୟ ଥିଲେ । ସେ ଅତ୍ୟାଚାରୀ ରାଜାମାନଙ୍କ ସମ୍ମେଳନ ବିରୁଦ୍ଧରେ ଲଢ଼େଇ କରିଥିଲେ । ଯୀଶୁ ଧର୍ମଯାଜକମାନଙ୍କର ରକ୍ଷଣଶୀଳତା ବିରୁଦ୍ଧରେ ପ୍ରଚାର କରିଥିଲେ ।

(୯) ପ୍ରାଚ୍ୟର ଜ୍ଞାନୀମାନେ ଯୀଶୁଙ୍କ ନକ୍ଷତ୍ରକୁ ଅନୁସରଣକରି ଯାତ୍ରା କରିଥିଲେ ଏବଂ ଗୋପାଳମାନେ ଯୀଶୁଙ୍କୁ ସ୍ୱାଗତ କରିଥିଲେ । କୃଷ୍ଣଙ୍କୁ ଋଷିମାନେ ସ୍ୱାଗତ କରିଥିଲେ ଏବଂ କୃଷ୍ଣ ଗୋପାଳମାନଙ୍କ ମେଳରେ ଲାଳିତପାଳିତ ହୋଇଥିଲେ ।

(୧୦) ସାମାଜିକ, ନୈତିକ ଓ ଧାର୍ମିକ କ୍ଷେତ୍ରରେ ଯୀଶୁ ପ୍ରଚାର କରିଥିଲେ । ଜନ୍ (John), ମାଥ୍ୟୁ (Mathew), ଲୁକ୍ (Luke), ମାର୍କ (Mark)ଙ୍କ ଭଳି ସମ୍ବାଦଦାତାମାନେ ଯୀଶୁଙ୍କୁ ଦେଖିଥିଲେ ଏବଂ ସେମାନେ ତାଙ୍କର ଜୀବନକାହାଣୀକୁ ବର୍ଣ୍ଣନା

କରିଥିଲେ । ବ୍ୟାସଦେବ କୃଷ୍ଣଙ୍କୁ ଦେଖିଥିଲେ ଏବଂ ଭାରତର ରାଜନୈତିକ ପୁନର୍ଗଠନ ଏବଂ ନୈତିକ ଓ ଧାର୍ମିକ କ୍ଷେତ୍ରରେ ତାଙ୍କର ଅବଦାନ ବର୍ଣ୍ଣନା କରିଥିଲେ ।

(୧୧) ଯୀଶୁ ଈଶ୍ୱରଙ୍କ ପୁତ୍ର । ବ୍ୟାସ କୃଷ୍ଣଙ୍କୁ ଈଶ୍ୱରଙ୍କ ଅବତାରରୂପେ ବର୍ଣ୍ଣନା କରିଛନ୍ତି ।

**(୧୭) କାଠଯୋଡ଼ୀ ବନ୍ଧ ନିର୍ମାଣରେ କେତେ ଶହ ବଢ଼େଇ ଲାଗିଥିବେ, କିଏ ହିସାବ ରଖିଛି ? :** ବେଳେ ବେଳେ ମଧୁବାବୁ କାଠଯୋଡ଼ି କୂଳକୁ ବୁଲିବା ପାଇଁ ଯାଉଥିଲେ । ବନ୍ଧୁମାନେ ମଧ୍ୟ ସମସ୍ତ ସମୟରେ ସାଙ୍ଗରେ ଜୁଟୁ-ଥିଲେ । ସେ ବନ୍ଧୁମାନଙ୍କୁ କହୁଥିଲେ, "ଦେଖ, କାଠଯୋଡ଼ୀର ପଥରବନ୍ଧ ନିର୍ମାଣରେ ଯେଉଁ ଶ୍ରମ, ନିଷ୍ଠା ଓ କୌଶଳ ପ୍ରଦର୍ଶିତ ହୋଇଛି, ତାହା କୋଣାର୍କ ମନ୍ଦିରଠାରୁ ଊଣା ନୁହେଁ । କୋଣାର୍କରେ ବାରଶହ ବଢ଼େଇ ବାରବର୍ଷ କାମ କରିଥିଲେ ବୋଲି କିମ୍ବଦନ୍ତୀ ଅଛି, ପଦ ମଧ୍ୟ ଅଛି—'ବାରଶହ ବଢ଼େଇରେ ଦାସ୍ୟୀ କ ପୁଅରେ ଦାସ୍ୟୀ ।' 'ଶିବେଇ ସାନ୍ତରା କ୍ଷୀରି ଖାଇଲି ପରି ପଦ୍ମତୋଳା ଗଣ୍ଡ ପୋତାଉଛି ।' ଏପରି କେତେକ ଗୀତ ପଦ ମଧ୍ୟ ଅଛି । କାହିଁ, ଏହି ଧରଣର ପଦ ତ କାଠଯୋଡ଼ୀ ନିର୍ମାଣ ସମ୍ବନ୍ଧରେ ନାହିଁ ? କୋଣାର୍କରେ ବାରଶହ ବଢ଼େଇ ବାରବର୍ଷ ଲାଗିଥିଲେ; କିନ୍ତୁ ଏଠାରେ କେତେ ବାରଶହ ବଢ଼େଇ, କେତେ ବାରଶହ ନାଉରି, କେତେ ବାରଶହ ପଥୁରିଆ ଲାଗିଥିବେ, ତାହାର ହିସାବ କିଏ ରଖିଛି ?"

**(୯୮) ସାମ୍ପ୍ରଦାୟିକ ଉନ୍ନତି ତ୍ୟାଗରେ ହିଁ ସମ୍ଭବ !** ମଧୁବାବୁ ସମ୍ପ୍ରଦାୟ ନାମ ପରିବର୍ତ୍ତନକୁ ସେତେ ପସନ୍ଦ କରୁ ନ ଥିଲେ । କୋର୍ଟ କଚେରିମାନଙ୍କରେ ଅନେକ ଦରଖାସ୍ତ ଓ ମକଦ୍ଦମା ଏ ବିଷୟରେ ହେଉଥିବା ଦେଖି ତାଙ୍କ ମନରେ ଦୁଃଖ ହେଉ-ଥିଲା । ସେ କହୁଥିଲେ, "ଲୋକେ ସମ୍ପତ୍ତି ଲୋଭରେ ଏପରି କରିଯାଉଛନ୍ତି । କେହି କେହି ମିଥ୍ୟା ଆଭିଜାତ୍ୟ ବୃଦ୍ଧି ପାଇଁ ଏପରି କରୁଥିବା ବ୍ୟକ୍ତ କରୁଛନ୍ତି । ତାଙ୍କର କେହି ଜଣେ ମୁକ୍ତିଆର ବନ୍ଧୁ ନିଜର କୁଳଫଙ୍କା ପରିବର୍ତ୍ତନ ଦାବୀ କରୁଥିବା ଶୁଣି ସେ ଦୁଃଖିତ ହେଉ-ଥିଲେ । ତାଙ୍କ ବନ୍ଧୁଙ୍କୁ ସେ କହିଥିଲେ, "ତୁମେ ତ ଜାତିରେ ଗୋପାଳ, ଏବେ ଯାଦବ ବୋଲାଇବା ପାଇଁ କାହିଁକି ବ୍ୟାକୁଳ ହେଉଛ ? ଯଦୁବଂଶ କଂସ ଓ ବସୁଦେବଙ୍କ ଜାତିକୁ ବୁଝାଏ । କୃଷ୍ଣ ଗୋପପୁରରେ ଥିଲାବେଳେ ଗୋପାଳ ବୋଲି ପରିଚିତ ଥିଲେ; ଦ୍ୱାରକାକୁ ଗଲା ପରେ ଯାଦବ ବୋଲି ପରିଚିତ ହେଲେ । ଯାଦବମାନେ କ୍ଷତ୍ରିୟ ବୋଲାନ୍ତି । ତୁମେ ଏବେ ଗୋପାଳରୁ ଯାଦବ ବୋଲି ପରିଚୟ ଦେଇ ନିଜେ କ୍ଷତ୍ରିୟ ବଂଶୀୟ ବୋଲାଇବା ଉଦ୍ଦେଶ୍ୟ କରିଛ । କଂସ ମଧ୍ୟ ଯାଦବ । ସେ କ୍ଷତ୍ରିୟ ଥିଲେ । ସେହି ପ୍ରମାଣରେ ତୁମେ ନିଜକୁ କ୍ଷତ୍ରିୟ ବୋଲି ପ୍ରମାଣ କରିବାକୁ ଚାହୁଁଛ । କାହିଁ, ମଥୁରାରେ କଂସ ତ ଗୋପାଳ ନୁହେଁ ?

"ତୁମେ କଣ ଭାବୁଛ ଯେ ଗୁହକ ଶବର ରାମଙ୍କୁ ସେବା କରିଥିଲା ବୋଲି ସେ ନିଜେ କ୍ଷତ୍ରିୟ ବୋଲି ପରିଚୟ ଦେଇଥିଲେ ତାହାର ମାନ ବୃଦ୍ଧି ପାଇଥାଆନ୍ତା ?

"ଏପରି କେତେ ବ୍ରାହ୍ମଣ ନିଜ ସଂଜ୍ଞା 'ଦାଶ' ବୋଲି ଲେଖୁଛନ୍ତି, 'ଦାସ' ଠାରୁ ପୃଥକ୍ ଥିବା ଦେଖାଉଛନ୍ତି । କେତେକ କରଣ ମଧ୍ୟ ଏବେ ବର୍ମା ଇତ୍ୟାଦି ସଂଜ୍ଞା ବ୍ୟବହାର କରି କ୍ଷତ୍ରିୟ ବୋଲି ପରିଚିତ ହେବା ନିମନ୍ତେ ଚାହୁଁଥିବେ ।

"ଏସବୁ କ୍ଷେତ୍ରରେ ଏମାନଙ୍କର କେବଳ ବୃଥା ଆଭିଜାତ୍ୟବାଦ ଛଡ଼ା ଅନ୍ୟ କୌଣସି ଉଚ୍ଚ ଆଦର୍ଶ ଥିବା ଦେଖାଯାଉ ନାହିଁ । ଏହାଦ୍ୱାରା ଜାତିର ଉନ୍ନତି କଳ୍ପନା କରିବା ବୃଥା । ଜାତିର ଉନ୍ନତି ତ୍ୟାଗ ବିନା ଅସମ୍ଭବ । ଯେଉଁମାନେ ଜାତିର ନେତୃସ୍ଥାନୀୟ ଲୋକ ସେମାନେ ନିଜେ ତ୍ୟାଗ ସ୍ୱୀକାର କରି ଜାତିର ଲୋକଙ୍କୁ ଶିକ୍ଷିତ, ସ୍ୱଚ୍ଛଳ ଓ ଅବସ୍ଥାସମ୍ପନ୍ନ କରିବା ପାଇଁ ଉଦ୍ୟମ କରିବା ଦରକାର । ଏଥିରେହିଁ ପ୍ରକୃତ ଗୌରବ ରହିଛି ।"

**(୧୯) ବେସରକାରୀ ବ୍ୟବସ୍ଥାପକ ସଭାର ସଭ୍ୟଙ୍କ ଦାୟିତ୍ୱ !** ଥରେ ମାନ୍ୟବର ମଧୁସୂଦନ ଦାସ ବ୍ୟବସ୍ଥାପକ ସଭାରେ ଆଲୋଚନାବେଳେ କହିଥିଲେ—

"ଏ କାଉନ୍‌ସିଲ୍‌ର ବେସରକାରୀ ମେମ୍ବରମାନଙ୍କର ସମାଲୋଚନାକୁ ଅସଙ୍ଗତ ଓ ଅବାସ୍ତବ ବୋଲି କୁହାଯାଇଥାଏ । ଏହି କାଉନସିଲ୍‌ର ଦୁଇବର୍ଷ ଜୀବନକାଳ ଭିତରେ କେବଳ ଯୋଡ଼ିଏ ଦିନ ଭିତରେ ବେସରକାରୀ ସଭ୍ୟମାନେ ପ୍ରଧାନ ପ୍ରଧାନ ସଭ୍ୟମାନଙ୍କ ଉପରେ ସେମାନଙ୍କର ମତାମତ ଦେଇ ପାରିବେ । ଏହି ଦୁଇଦିନରେ ତାଙ୍କର ଯେଉଁ ଅବସ୍ଥା ହୁଏ, ତାହା ଦେଖି ସେମାନେ ନିଜେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଆନ୍ତି ଏବଂ ଯେଉଁ ଲୋକଙ୍କର ସ୍ୱାର୍ଥ ରକ୍ଷା ନିମନ୍ତେ ସେ ଆସିଛନ୍ତି, ଏହି ଅବସ୍ଥା ଦେଖି ତାଙ୍କର ନୈରାଶ୍ୟ ଜାତହୁଏ । ବେସରକାରୀ ମେମ୍ବରମାନଙ୍କର କର୍ତ୍ତବ୍ୟ ଓ ସମ୍ମାନ ସମ୍ବନ୍ଧରେ ଅସମ୍ପୂର୍ଣ୍ଣ ଓ ଅଯଥାର୍ଥ ଧାରଣାହିଁ ବହୁଳାଂଶରେ ଏଥିପାଇଁ ଦାୟୀ । କେହି କେହି ଏହି କାଉନ୍‌ସିଲର ବେସରକାରୀ ସଭ୍ୟମାନଙ୍କୁ ବ୍ରିଟିଶ ପାର୍ଲିମେଣ୍ଟର ଉଦାରପନ୍ଥୀ ସଭ୍ୟ (Liberal Member)ଙ୍କ ସହିତ ତୁଳନା କରିବାକୁ ଇଚ୍ଛା କରନ୍ତି; କିନ୍ତୁ ଏହା ଯଥାର୍ଥ ନୁହେଁ । ଅନ୍ୟମାନେ ଏମାନଙ୍କ ଜୀବନହୀନ ପ୍ରତିମୂର୍ତ୍ତି ସହିତ ତୁଳନା କରନ୍ତି ଓ ଏମାନେ ଏକ ସାମ୍ବିଧାନିକ ସୃଷ୍ଟି ବୋଲି କହିଥାନ୍ତି । ପୁଣି ତୃତୀୟ ଦଳ କହିଥାଆନ୍ତି ଯେ, ଏମାନେ ସରକାରଙ୍କ ବିରୋଧୀ କିନ୍ତୁ ସମାଲୋଚକ ଓ ବିଶ୍ୱାସର ପାତ୍ର ନୁହନ୍ତି । ମୁଁ ଏଠାରେ କହିବାକୁ ଚାହେଁ ଯେ ମୋର ସ୍ଥାନ ଓ କର୍ତ୍ତବ୍ୟ ସମ୍ବନ୍ଧରେ ସମ୍ୟକ୍ ଧାରଣା ହେବା ଉଚିତ ଏବଂ ମୁଁ କିପରି ଭାବରେ କାର୍ଯ୍ୟ କରୁଛି, ତାହା ଦେଖିବା କଥା । ମୁଁ ସବୁବେଳେ ଏଠାରେ ସରକାର ଓ ଲୋକଙ୍କ ଭିତରେ ଜଣେ ନିରପେକ୍ଷ ବ୍ୟାଖ୍ୟାକାର ଲୋକପ୍ରତିନିଧି । ଏହାହିଁ ବେସରକାରୀ ସଭ୍ୟଙ୍କ ସ୍ଥାନର ପ୍ରକୃତ ତାତ୍ପର୍ଯ୍ୟ । କାଉନସିଲର କାର୍ଯ୍ୟ ପ୍ରଣାଳୀକୁ ନିୟନ୍ତ୍ରିତ କରିବାପାଇଁ ଯେଉଁସବୁ ନିୟମକାନୁନ୍ ଗଠିତ ହୋଇଛି, ତାହା ସହିତ ଏହାର

ସମନ୍ୱୟ ରହିଛି । ଆଉ ଆମ୍ଭମାନଙ୍କର ଅଭିଜ୍ଞତା ସହିତ ମଧ୍ୟ ଏହାର ସଂହତି ରହିଛି । ଜଣେ ଦୋଭାଷୀ ଭାଷ୍ୟକାର (Interpreter) ମଧ୍ୟସ୍ଥ ରୂପରେ ସରକାରଙ୍କ ନିକଟରେ ଲୋକଙ୍କର ହାହାକାର, ଅଭାବ ଅସୁବିଧା ପ୍ରଭୃତି ଜଣାଇବା ପାଇଁ ବେସରକାରୀ ସଭ୍ୟ ଅଛନ୍ତି । ତା ସହିତ ସରକାରଙ୍କ ଉଦ୍ଦେଶ୍ୟକୁ ଯେପରି ଲୋକେ ଭୁଲ ନ ବୁଝନ୍ତି, ସେଥିପ୍ରତି ମଧ୍ୟ ଏମାନଙ୍କୁ ଦୃଷ୍ଟି ରଖିବାକୁ ହେବ । ବେସରକାରୀ ସଭ୍ୟମାନଙ୍କର ସ୍ଥାନ ଭାରତବର୍ଷ ପରି ଏକ ଦେଶରେ ନଗନ୍ୟ ହେଲେ ମଧ୍ୟ ଅନାବଶ୍ୟକ ନୁହେଁ । ଏଠାରେ ଶାସକ ଓ ଶାସିତମାନଙ୍କ ଭିତରେ ଶିକ୍ଷା, ଜୀବନ-ଯାପନ, ଚିନ୍ତା ଓ ଧର୍ମରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ପୃଥିବୀର କୌଣସି ସ୍ଥାନରେ ତାହା ଦେଖାଯାଏ ନାହିଁ । ସରକାର ଓ ଲୋକଙ୍କ ଭିତରେ ବ୍ୟାଖ୍ୟାକାରୀ ଭାଷ୍ୟକାର ରୂପରେ ଏମାନଙ୍କର କାର୍ଯ୍ୟ ଯେତେ ନଗଣ୍ୟ ହେଉନା କାହିଁକି, ଏଥିରେ ଅତି ବେଶି ବାଧାବିଘ୍ନ ରହିଛି । ଅନେକ ସମୟରେ ବେସରକାରୀ ମେମ୍ବରମାନେ ସରକାରଙ୍କଦ୍ୱାରା ଗ୍ରହଣୀୟ ହେଉ ନ ଥିବା ବିଷୟରେ କିଛି କହିବାକୁ ଗଲେ ଯଥେଷ୍ଟ ପରିମାଣରେ ଖବରାଖବର ପାଇ ପାରୁନାହାନ୍ତି । ସରକାରଙ୍କର ଶାସନକ୍ଷେତ୍ରରେ ଅତି ଦକ୍ଷ ଆଇ. ସି. ଏସ୍. ଅଫିସରମାନେ ଯେଉଁ ଖବରାଖବର, ପରିସଂଖ୍ୟାନ ପ୍ରଭୃତି ପାଆନ୍ତି, ସେସବୁ ବେସରକାରୀ ସଭ୍ୟଙ୍କ ପାଖରେ ପାଇବା ସମ୍ଭବ ହୋଇନଥାଏ । ବେସରକାରୀ ସଭ୍ୟମାନେ ଏସବୁ ଆବଶ୍ୟକୀୟ ତଥ୍ୟ ପାଇବା ପାଇଁ ସରକାରଙ୍କୁ ଜଣାଇଲେ ମଧ୍ୟ ଅତି ଅଯୌକ୍ତିକ ଭାବରେ ଏହା ନାମଞ୍ଜୁର ହେଉଛି । କାଉନ୍‌ସିଲରେ ଯେତେବେଳେ ଗ୍ରେଟନାଗପୁର ପ୍ରଜାସ୍ୱତ୍ୱ ବିଲ୍ ବିଚାର ହେଉଥିଲା, ସେତିକବେଳେ ଏ ସମ୍ବନ୍ଧରେ ସରକାରଙ୍କଦ୍ୱାରା ଆଗତ ହୋଇଥିବା ପୂର୍ବର ଏକ ବିଲ୍‌ର ଏକ ନକଲ ମୋତେ ଦେବାପାଇଁ ଆବେଦନ କରିଥିଲି । ବର୍ତ୍ତମାନ ଆଗତ ହୋଇଥିବା ଏହି ବିଲ୍ ସମ୍ବନ୍ଧରେ ଭାଷଣ ଦେଲା ପରେ ମାନ୍ୟବର ସରକାରୀ ମେମ୍ବର ମଧ୍ୟ ଏହା ଉଲ୍ଲେଖ କରିଥିଲେ ।

"କିନ୍ତୁ ସେତେବେଳେ ବିଲ୍ ଆଗତକାରୀ ମାନ୍ୟବର ସରକାରୀ ମେମ୍ବର ମୋ ଆବେଦନକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ମାନ୍ୟବର ଗ୍ରେଟଲାଟ ମଧ୍ୟ ତାଙ୍କ ସହିତ ଏକମତ ହୋଇଥିଲେ ।

"ଦୁଇବର୍ଷ ଭିତରେ, କେତୋଟି ମିନିଟ ଭିତରେ, ଯେଉଁ ଲୋକଙ୍କର ଆମ୍ଭେମାନେ ପ୍ରତିନିଧି ହେଉଛୁ, ସେମାନଙ୍କର ଆପତ୍ତି, ଅଭିଯୋଗ ଓ ଆକାଂକ୍ଷା ଜଣାଇବା ପାଇଁ ଯୋଗଦେବା ନିମନ୍ତେ ସୁଯୋଗ ଦେବା ବାସ୍ତବିକ ସମୟର ଅପବ୍ୟବହାର ଛଡ଼ା ଆଉ କିଛି ନୁହେଁ । ନିଜ କ୍ଷମତାଦ୍ୱାରା ଲୋକଙ୍କର ଆପତ୍ତି ଅଭିଯୋଗ ସଙ୍ଗେ ସଙ୍ଗେ ଦୂର କରିବାକୁ ସମର୍ଥ ନ ହେଲେ ମଧ୍ୟ ଏକ ବିଚକ୍ଷଣ ଓ ସହାନୁଭୂତିଶୀଳ ସରକାର ସେମାନଙ୍କର ଦୁଃଖ ଓ ଗୁହାରି ଶୁଣିବା କର୍ତ୍ତବ୍ୟ ନୁହେଁ କି ? ଜଣେ ବୁଦ୍ଧିମାନ ଗୃହକର୍ତ୍ତା ତାଙ୍କର କୁଟୁମ୍ବଙ୍କଠାରୁ ସ୍ନେହ ଓ ଭକ୍ତିପୂର୍ଣ୍ଣ ବାଧ୍ୟତା ଆଶା କରନ୍ତି ଓ କୁଟୁମ୍ବରେ ଶାନ୍ତି ଓ

ସୁଖ ବର୍ଜନମାନ କରୁ ଏହା ମଧ ଗ୍ରହ୍ୟାନ୍ତ । ଏଭଳି ଆକାଂକ୍ଷା ରଖିଥିବା ଗୃହକର୍ତ୍ତା କେବେ ତାଙ୍କର ସନ୍ତାନସନ୍ତତିମାନଙ୍କୁ ବିରୋଧୀ ସମାଲୋଚକ ବୋଲି ଭାବନ୍ତି ନାହିଁ । ସେମାନଙ୍କର ଦାବୀ ଅଯଥାର୍ଥ ଓ ସେଗୁଡ଼ିକ ପୂରଣ ତାଙ୍କ କ୍ଷମତାର ବହିର୍ଭୂତ ଥିବା ଜାଣି ମଧ ସେ କେବେହେଲେ ଏପରି କରନ୍ତି ନାହିଁ ।

ସାର୍ ଆଶୁତୋଷ ମୁଖାର୍ଜି ମଧ ମଧୁବାବୁଙ୍କ ଅଭିଯୋଗକୁ ସମର୍ଥନ କରିଥିଲେ । ସରକାର ଓ ଲୋକଙ୍କ ମଧ୍ୟରେ ବେସରକାରୀ ସଭ୍ୟମାନେ ମଧ୍ୟସ୍ଥ ବା ଭାଷ୍ୟକାରରୂପେ କାର୍ଯ୍ୟ କରନ୍ତି ବୋଲି ଯାହା ସେ କହିଥିଲେ, ତାହାକୁ ମଧ ସମର୍ଥନ କରୁଥିଲେ । ସରକାରୀ ପକ୍ଷ ମଧୁବାବୁଙ୍କ ଯୁକ୍ତିର ଯଥାର୍ଥ୍ୟ ଉପଲବ୍ଧି କରିଥିଲେ ଏବଂ ବେସରକାରୀ ସଭ୍ୟମାନଙ୍କୁ ଯଥାସମ୍ଭବ ତଥ୍ୟ ଯୋଗାଇବା ଓ ଆଲୋଚନା ନିମନ୍ତେ ଅପେକ୍ଷାକୃତ ବେଶି ସମୟଦେବା ବିଷୟରେ ଅନୁକୂଳ ମତ ପ୍ରକାଶ କରିଥିଲେ ।

**(୬୦) ଛାତ୍ରର କର୍ତ୍ତବ୍ୟ :** ଖ୍ରୀ ୧୯୦୬ ଅକ୍ଟୋବର ୬୦ ତାରିଖରେ ମଧୁବାବୁ କଟକରୁ ଶୈଳବାଳାଙ୍କଠାକୁ ବିଲାତ ଠିକଣାରେ ପଠାଇଥିବା ଚିଠିରେ ଶୈଳବାଳାଙ୍କୁ ବିଲାତ ପଠାଇବାର ଉଦ୍ଦେଶ୍ୟ ସମ୍ବନ୍ଧରେ ସୂଚାଇଥିଲେ । ସ୍ୱଦେଶରେ ନାରୀଶିକ୍ଷାର ପ୍ରସାର ଦିଗରେ ତାଙ୍କର ବିଲାତଶିକ୍ଷା ସହାୟକ ହେବ, ଏହି ଆଶା ମଧୁବାବୁ ରଖିଥିଲେ ଏବଂ ଏହି କାରଣରୁ ଝିଅଟିକୁ ବିସ୍ତାର ସହିତ ଶିକ୍ଷା କରିବାପାଇଁ ଉପଦେଶ ଦେଇଥିଲେ । ଶୈଳବାଳା ଉଚ୍ଚ ଶିକ୍ଷା ନିମନ୍ତେ ବିଲାତ ଯାଇଥିଲେ ।

ଏହି ଚିଠିରେ ବିଲାତରେ ଶୈଳବାଳା କିପରି ଭାବରେ ଲୋକମାନଙ୍କ ସହିତ ମିଳାମିଶା କରିବେ, ସେହି ସମ୍ପର୍କରେ ମଧ କିଛି ଉପଦେଶ ଦେଇଥିଲେ । ସେଥିରୁ ବିଲାତବାସୀଙ୍କ ଚରିତ୍ର ସମ୍ବନ୍ଧରେ ତାଙ୍କର ସମ୍ୟକ୍ ଜ୍ଞାନ ଥିବା ପରିଚୟ ମିଳୁଛି । ଭଲ ଓ ମନ୍ଦ ଉଭୟ ଦିଗ ସେ ଆଲୋଚନା କରିଛନ୍ତି । ଚିଠିରେ ସୂଚନା ସଂକ୍ଷିପ୍ତ ହେବା ସ୍ୱାଭାବିକ ହେଲେ ମଧ ମଧୁବାବୁ ସୁନ୍ଦର ଭାବରେ ନିଜର ଭାବକୁ ବ୍ୟକ୍ତ କରିଛନ୍ତି । ଚିଠି ଭିତରେ ସେ ଶୈଳବାଳାଙ୍କୁ ଆଚାର-ବ୍ୟବହାର ଓ ଚରିତ୍ରକୁ ଉତ୍ତମ ରଖିବା ପାଇଁ ଉପଦେଶ ଦେଇଛନ୍ତି; କୃତ୍ରିମ ଭାବଭଙ୍ଗୀ ଓ ଅହମିକା ଇଂରେଜମାନେ ସହ୍ୟ କରୁନଥିବା ଜଣାଇଛନ୍ତି ।

"××× ସେଠାରେ ଉତ୍ତମ ଗୌରବ ରକ୍ଷା କରିବା ତୁମର ଲକ୍ଷ୍ୟ ହେବା ଉଚିତ । ସେ ଦେଶରେ ତୁମର ଗୋଟିଏ ଦିଗ ପ୍ରତି ସତର୍କ ରହିବାକୁ ହେବ, ତାହା ହେଉଛି କୃତ୍ରିମ ଭାବଭଙ୍ଗୀ ପ୍ରକାଶ । ଗର୍ବକୁ ଇଂରେଜମାନେ ଘୃଣା କରନ୍ତି । (ରାଜଚକ୍ରବର୍ତ୍ତୀ) ସପ୍ତମ ଏଡ୍‌ୱାର୍ଡଙ୍କ ଗର୍ବ ବ୍ୟବହାର ମଧ ସେମାନେ ସହ୍ୟ କରିପାରିବେ ନାହିଁ; କିନ୍ତୁ ଏହା ହେଲେ ମଧ ଅତି ଦୁର୍ବଳ ସାଧାରଣ ଲୋକକୁ ସବୁପ୍ରକାର ସାହାଯ୍ୟ କରିବେ । ଇଂରେଜମାନେ ଖ୍ରୀଷ୍ଟଙ୍କ ଚରିତ୍ରକୁ ଯେପରି ବୁଝନ୍ତି, ସେଥିରେ ଏହାର ଯଥେଷ୍ଟ ପ୍ରମାଣ

ରହିଛି । ଖ୍ରୀଷ୍ଟ ମେଷଶାବକ ସଦୃଶ ଅମାୟିକ ଥିଲେ । ଲୋକଙ୍କ ସହିତ ସବୁପ୍ରକାର ବ୍ୟବହାରରେ ସର୍ବଦା ଏହି କଥା ମନେ ରଖିଥିବ ।

ସେହି ଚିଠିରେ ଗୃହର କର୍ତ୍ତବ୍ୟ ସମ୍ବନ୍ଧରେ ମଧ୍ୟ ମଧୁବାବୁ ଏକ ଉଚ୍ଚକୋଟୀର ଆଲୋଚନା କରି ଗୃହଜୀବନର ବିବିଧ ଦିଗ ଉପରେ ନିଜର ମତ ବ୍ୟକ୍ତ କରିଛନ୍ତି । ଏହା ଯେ ଉଚ୍ଚକୋଟୀର ମାନ ଏଥିରେ ସନ୍ଦେହ ନାହିଁ । ବିଲାତ ଗଲାବେଳକୁ ଶୈଳବାଳାଙ୍କ ବୟସ ୩୧ ହୋଇଥିଲା । ପୌଢ଼ାବସ୍ଥାରେ ସେ ଉପନୀତ ହୋଇସାରିଥିଲେ । ସେ ପ୍ରୌଢ଼ା, ଧନିକ ପିତାର କନ୍ୟା । ସ୍ୱଦେଶସେବା, ଉତ୍କଳୀୟ ନାରୀସମାଜର ଶିକ୍ଷାଦି ନାନା କ୍ଷେତ୍ରରେ ଉନ୍ନତି ସାଧନ ଦିଗରେ ଶୈଳବାଳାଙ୍କୁ ନିୟୋଜିତ କରିବା ମହତ୍ ଲକ୍ଷ୍ୟରେ ମଧୁବାବୁ ବହୁ ଅର୍ଥ ବ୍ୟୟ କରି ତାଙ୍କୁ ବିଲାତ ପଠାଇଥିଲେ । ତାଙ୍କ ପ୍ରାଣର ଭାବ ଏହି ଚିଠିରେ ପ୍ରକାଶ ପାଇଛି । ସେ ପ୍ରସଙ୍ଗକ୍ରମେ ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷା ବ୍ୟର୍ଥ ହୋଇଥିବା ମଧ୍ୟ ସ୍ପଷ୍ଟଭାବରେ କହିଛନ୍ତି ।

ମଧୁବାବୁ ଲେଖିଛନ୍ତି—"ତୁମେ ଇଂଲଣ୍ଡରେ କେଉଁ ସ୍ଥାନରେ ରହିବ ସେ ବିଷୟରେ ମୁଁ ଗତ ପତ୍ରରେ ବହୁତ ଚିନ୍ତାକରିଛି । ତୁମ ସ୍ଥାନରେ ମୁଁ ଅଛିବୋଲି ଭାବି, ମୁଁ ଏ ପରିସ୍ଥିତିରେ କଣ କରିଥାଆନ୍ତି, ତାହା ତୁମକୁ କହୁଛି । ନିଜକୁ ମୁଁ ସର୍ବପ୍ରଥମେ ପ୍ରଶ୍ନ କରିଥାଆନ୍ତି, ମୁଁ ଏତେ ବର୍ଷ ମୋର ନିଜର ମୁନିବ ହେବା ପରେ ଏବେ ଛାତ୍ରାବସ୍ଥା ସ୍ତରକୁ ଖସି ଆସି ପାରିବି କି ?' ଜ୍ଞାନ ଅର୍ଜନ କରିବାର ସାମୟିକ ଉନ୍ମାଦନା ଓ ଅବିମୃଶ୍ୟକାରୀ ଉତ୍ତେଜନାଦ୍ୱାରା ମୋର ମନକୁ ଠକାନ୍ତି ନାହିଁ । ଯେଉଁ ଯେଉଁ ଅବସ୍ଥାରେ ଜ୍ଞାନର ବିକାଶ ହୋଇପାରିବ, ତାହାକୁ ମୁଁ ଧୀର ସ୍ଥିର ଭାବରେ ବିଚାର କରନ୍ତି । ଧନିଲୋକଙ୍କ ପିଲାମାନେ ଉନ୍ନତି କରି ପାରନ୍ତି ନାହିଁ, ବିଫଳ ହୁଅନ୍ତି, ଏହା ସତ୍ୟ ନୁହେଁ କି? ଏହା କାହିଁକି ହୁଏ ? ଜ୍ଞାନର ବିକାଶପାଇଁ ଯେଉଁ ଅନୁକୂଳ ବାୟୁମଣ୍ଡଳ ଆବଶ୍ୟକ, ତାହା ମିଳେ ନାହିଁ । ଭାରତବର୍ଷରେ ବିଶ୍ୱବିଦ୍ୟାଳୟ ଶିକ୍ଷା ବିଫଳ ହୋଇଛି । ଇଂରେଜ ବିଦ୍ୟାଳୟମାନଙ୍କର ଫଳ ଏକାବେଳକେ ଅନ୍ୟ ପ୍ରକାର । ଆମ୍ଭମାନଙ୍କର ଅଧୁନାତନ ଚେଷ୍ଟା ହେଉଛି, ଜ୍ଞାନ ଅର୍ଜନ ପାଇଁ ଛାତ୍ରାବାସ ପ୍ରତିଷ୍ଠା କରିବା । ଏହା ଉପରେ ଆମେ ବେଶି ଦୃଷ୍ଟି ଦେଉନ୍ତୁ । ଛାତ୍ରର ଜୀବନରେ ଏହା ଏକ ପ୍ରଧାନ ବିଷୟ । ଛାତ୍ରଜୀବନରେ ସହାଧ୍ୟାୟୀମାନଙ୍କ ସଙ୍ଗ ଏକ ମୂଲ୍ୟବାନ୍ ଉତ୍ତେଜକ । ମନୁଷ୍ୟ ଜଳରେ ବଞ୍ଚିପାରେ ନାହିଁ; ମାଛ ଶୁଖିଲା ଜମିରେ ବଞ୍ଚିପାରେ ନାହିଁ । ଉଭୟ କ୍ଷେତ୍ରରେ ଅନ-ଅନୁକୂଳ ବାତାବରଣ (ପରିବେଷ୍ଟନୀ) ହିଁ ଏହାର କାରଣ । ଆମ୍ଭେମାନେ ସମସ୍ତେ ଆମ୍ଭମାନଙ୍କ ଜୀବନର ପରିବେଷ୍ଟନୀରୁ ସାର ସଂଗ୍ରହ କରୁ । ଏହା ଶାରୀରିକ ଜୀବନ ପକ୍ଷରେ ଯେପରି ସତ୍ୟ, ନୈତିକ ଜୀବନ ଓ ଜ୍ଞାନଜୀବନ ପକ୍ଷେ ମଧ୍ୟ ସେହିପରି ସତ୍ୟ ।

"ଯଦି ବିଦ୍ୟାର୍ଥୀ ତାହାର ସବୁ ସମୟ ବା ଯଥାଯୋଗ୍ୟ ସମୟ ଏପରି ଛାତ୍ରମାନଙ୍କ ସଙ୍ଗରେ କାଳ କଟାଏ, ଯେଉଁମାନେ କି ଛାତ୍ରଜୀବନ ନିଜର ଲକ୍ଷ୍ୟ ବୋଲି ପରିଚୟ

ଦେଉଥିଲେ ମଧ୍ୟ ବନ୍ଧୁ ସମସ୍ତ ଅଣ୍ଟ୍ରେଜ କାର୍ଯ୍ୟକଳାପରେ ଲିପ୍ତ ରହନ୍ତି, ତାହାହେଲେ ସେ ନିଷ୍ଟୟ ଗ୍ରୁଜ ଜୀବନ ବେଷ୍ଟନୀ ଭିତରୁ ବାହାର ପଡ଼ି ଲଙ୍ଗରହୀନ ହୋଇପଡ଼ନ୍ତି । ଯଦି ନୂତନ ବେଷ୍ଟନୀ ସହିତ ଖାପଖୁଆଇ ଖୁସିରେ ଚଳି ନପାରିବ, ତାହାହେଲେ ମୁଁ ବିଦ୍ୟାଶିକ୍ଷାର ଉଦ୍ଦେଶ୍ୟ ତ୍ୟାଗ କରନ୍ତି । ମୁଁ ବିଦେଶର ନୂତନ ବନ୍ଧୁମାନଙ୍କୁ ଏହା କେବେହେଲେ ଜାଣିବାକୁ ଦିଅନ୍ତି ନାହିଁ ଯେ, ମୁଁ ଶିକ୍ଷା କରିବା ପାଇଁ ଏ ଦେଶକୁ ଆସିଛି । କାରଣ, ଏପରି ବିଦ୍ୟା ଶିକ୍ଷା କରିବା ପାଇଁ ମୁଁ ଆସିଛି ବୋଲି କହି ଶିକ୍ଷାର୍ଥୀ ହେବା ପରିବର୍ତ୍ତେ ଜଣେ ଇଂଲଣ୍ଡ ପର୍ଯ୍ୟଟକ ହୋଇଛି, ଏହା ସେମାନେ ଜାଣିଲେ ମୋତେ ଆଉ ସେତେ ସମ୍ମାନ କରିବେ ନାହିଁ । ଯଦି ମୋର ସହାଧ୍ୟାୟୀମାନେ ଗରିବ ହୋଇଥାଆନ୍ତି, ତାହାହେଲେ ମୋର ଉନ୍ନତ ଆର୍ଥିକ ଅବସ୍ଥାର ମୁଁ ପୂରା ସୁଯୋଗ ନିଅନ୍ତି । ମୁଁ ନିଜକୁ କହନ୍ତି, ସେମାନେ ଗରିବ, କିନ୍ତୁ ସେମାନେ ଜ୍ଞାନୀ, ସମସ୍ତେ ଗ୍ରାଜୁଏଟ୍ । ଏମାନଙ୍କ ସହିତ ଦୁଇବର୍ଷ ବାସ କରିବା ହିମାଳୟ ପର୍ବତରେ ସମତଳ ଦେଶର ଲୋକ ରହିବା ସଦୃଶ ହେବ । ଏହି ଜ୍ଞାନୀସଦୃଶ ଗିରିଶୃଙ୍ଗମାନଙ୍କର ସୂକ୍ଷ୍ମ ବାୟୁ ସେବନ କରନ୍ତି, ମୋର ଶ୍ୱାସକୋଷ ପୂର୍ଣ୍ଣକରି ଆନନ୍ଦ ଉପଭୋଗ କରନ୍ତି । ଯଦି ଗିରିଶୃଙ୍ଗଗୁଡ଼ିକ ବୃକ୍ଷଗୁଳ୍ମବିହୀନ ହୋଇଥାଆନ୍ତି, ପ୍ରାକୃତିକ ଅଳଙ୍କାରରେ ବିଭୂଷିତ ହୋଇ ନଥାନ୍ତି, ତାହାହେଲେ ମୁଁ ଏହାକୁ ଏକ ସୁବିଧା ବୋଲି ଭାବନ୍ତି । କାରଣ, ଏହାଦ୍ୱାରା ମୁଁ ବିନା ବାଧାରେ ପର୍ବତର ସମ୍ପୂର୍ଣ୍ଣ ଦୃଶ୍ୟ ଦେଖି ଆନନ୍ଦ ଉପଭୋଗ କରନ୍ତି, ପର୍ବତର ଯେ କୌଣସି ଅଂଶକୁ ସହଜରେ ଯାଇପାରନ୍ତି । ଏହି ପର୍ବତମାଳା ଅନ୍ତର୍ଗତ ପ୍ରାଚୀନ ପର୍ବତମାନଙ୍କ ଉପରେ ଯେଉଁ ବୃହତ୍ ଦେବଦାରୁ ବୃକ୍ଷ ଦେଖାଯାଉଛି ତାହାର ଜନ୍ମସ୍ଥାନର ଅନାବୃତ ମାଟି ଦେଖି ପରୀକ୍ଷା କରନ୍ତି । ଯେଉଁ ମାଟି ଉପରେ ଯେଉଁ ଅତ୍ୟୁନ୍ନତ, ମୂଲ୍ୟବାନ୍ ଦେବଦାରୁ ବୃକ୍ଷ ଦଣ୍ଡାୟମାନ ହୋଇଛି, ତାହାକୁ ପରୀକ୍ଷା କରି ଦେଖି ମାଟିର ମୂଲ୍ୟ ନିରୂପଣ ସମ୍ବନ୍ଧରେ ମୂଲ୍ୟବାନ୍ ତଥ୍ୟ ଲିପିବଦ୍ଧ କରନ୍ତି ।"

**(୨୧) ବ୍ୟାୟାମ ଚର୍ଚ୍ଚାର ମହତ୍ତ୍ୱ** : ଖ୍ରୀ: ୧୯୧୧ରେ ରେଭେନ୍‌ସା କଲେଜର କ୍ରୀଡ଼ା ପୁରସ୍କାର ବିତରଣ ସଭାରେ ମଧୁବାବୁ ମୁଖ୍ୟବକ୍ତା ଥିଲେ । କଲେଜର ପ୍ରିନ୍‌ସିପାଲ ଆର୍. ଶା (R. Shaw) ସଭାପତିତ୍ୱ କରିଥିଲେ । ମଧୁବାବୁ ବକ୍ତୃତାରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ—ଓଡ଼ିଆ ଜାତି ଏକ ଯୋଦ୍ଧା ଜାତି । ଏମାନେ କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବଙ୍କ ରାଜତ୍ୱବେଳେ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ରାଜ୍ୟ ଜୟ କରିଥିଲେ । ଏହା ଚାରି ପାଞ୍ଚ ଶହ ବର୍ଷ ତଳର କଥା । ବ୍ରିଟିଶ ରାଜତ୍ୱରେ ମଧ୍ୟ ଆମ ଦେଶର ପାଇକମାନେ ଖ୍ରୀ: ୧୮୧୭-୧୮ରେ ବିଦ୍ରୋହ କରି ବୀରତ୍ୱ ଦେଖାଇଥିଲେ । ପାଇକ ବିଦ୍ରୋହ ଯଶସ୍ୱୀ ହୋଇଥିଲେ, ଓଡ଼ିଶାରୁ ବ୍ରିଟିଶ୍ ରାଜତ୍ୱ ଲୋପ ହୋଇଯାଇଥାଆନ୍ତା । ପୂର୍ବେ ପ୍ରତ୍ୟେକ ଗ୍ରାମରେ ବ୍ୟାୟାମ ଓ କ୍ରୀଡ଼ାପାଇଁ ଆଖଡ଼ା ଥିଲା । ଯୋଦ୍ଧାଜାତି ପକ୍ଷରେ କ୍ରୀଡ଼ା କସରତଦ୍ୱାରା ସ୍ୱାସ୍ଥ୍ୟ ରକ୍ଷା କରିବା ଅତି ଆବଶ୍ୟକ

ହୋଇଥାଏ । ତୁମର ଓ ମୋର ପୂର୍ବପୁରୁଷମାନେ ବଳ ସଞ୍ଚୟ କରିବା ନିମନ୍ତେ ନିୟମିତରୂପେ ବିଭିନ୍ନ କ୍ରୀଡ଼ାକୌତୁକ, କସରତ ଓ ଖେଳ କରୁଥିଲେ ଏବଂ ସେମାନେ ବଳବାନ୍ ଯୋଦ୍ଧା ମଧ୍ୟ ଥିଲେ । ଏହି କାରଣରୁ ସେମାନେ ଗୌରବ ମଧ୍ୟ ଅର୍ଜ୍ଜନ କରିଥିଲେ । ତୁମେମାନେ ପୂର୍ବ ଗୌରବକୁ ଭୁଲିଯାଅ ନାହିଁ । ପୂର୍ବପୁରୁଷମାନଙ୍କ ଗୌରବକୁ ରକ୍ଷାକରିବା ପାଇଁ ପଶ୍ଚାତ୍‌ପଦ ହୁଅନାହିଁ ।"

ସେ ପୁଣି କହିଥିଲେ, "ଯୁବକମାନେ ସ୍ୱଦେଶ ଓ ବିଦେଶର ଯାବତୀୟ ଶିକ୍ଷଣୀୟ କ୍ରୀଡ଼ା କୌତୁକ ପ୍ରତି ଧ୍ୟାନ ଦେବା ଉଚିତ । ପାଶ୍ଚାତ୍ୟ ଦେଶର ଅଲିମ୍ପିକ୍ କ୍ରୀଡ଼ା (Olympic Games)ର ଆଦର୍ଶରେ ମଧ୍ୟ ଅନୁପ୍ରାଣିତ ହେବା ଦରକାର ।" ସ୍ୱାସ୍ଥ୍ୟ ଓ ମନର ସମ୍ବନ୍ଧ ବିଷୟରେ ମଧ୍ୟ କେତେକ ଉପାଦେୟ ଉଦାହରଣ ଦେଇ ସେ ସୁନ୍ଦର ବ୍ୟାଖ୍ୟାନ ଦେଇଥିଲେ ।

ଓଡ଼ିଶାର ଭୂତପୂର୍ବ କମିଶନର ଶ୍ରୀ କେ. ଜି. ଗୁପ୍ତ (ତତ୍କାଳୀନ ଭାରତ-ସଚିବଙ୍କ କାଉନ୍‌ସିଲର ସଭ୍ୟ) ଙ୍କ ନାମରେ ମଧୁବାବୁ ଏକ କପ୍ (Cup) ଯୋଗାଡ଼ କରି ଦେଇଥିଲେ ଏବଂ ନିଜର "ଓଡ଼ିଶା ଆର୍ଟ ୱେଅରସ୍" ନାମରେ ଏକ ସିଲ୍‌ଡ଼ (Orissa Art-Wares Challenge Shield) ଦେଇଥିଲେ । ଏହି ସିଲ୍‌ଡ଼ଟି ତାଙ୍କ ନିଜ କାରଖାନାରେ ତିଆରି ହୋଇଥିଲା ।

**(୬୬) ଇଂରେଜ ସଂସ୍କୃତି ଓ ଭାରତବର୍ଷ :** ମଧୁବାବୁ ଇଂରେଜମାନଙ୍କୁ ବସ୍ତୁତାନ୍ତ୍ରିକ ରୂପେ ଚିହ୍ନଣ କରୁଥିଲେ । ଏହି କାରଣରୁ ଇଂରେଜମାନଙ୍କଠାରୁ କୌଣସି ଉପକାର ପାଇଥିଲେ କୃତଜ୍ଞତା ସ୍ୱୀକାର କରିସାରି ହାତରେ କିଛି ପଦାର୍ଥ ଉପହାର ସ୍ୱରୂପ ଧରିଥିବାକୁ ହେବ, ଏହା ସେ ଥରେ ଶୈଳବାଳାଙ୍କୁ ତାଙ୍କ ବିଲାତ ରହଣିବେଳେ ଉପଦେଶ ଦେଇଥିଲେ ।

ଶୈଳବାଳା ମଧୁବାବୁଙ୍କୁ ଜଣାଇଥିଲେ ଯେ, ସାର କର୍ଜ୍ଜନ ୱିଲି (Sir Curzon Wyllie, Political A. D. C.) ଓ ତାଙ୍କ ସ୍ତ୍ରୀ, ସାର ଆଲବର୍ଟ ସ୍ପାଇସର୍ (Sir Albert Spicer) ଓ ତାଙ୍କ ସ୍ତ୍ରୀ ଲେଡ଼ି ଇଲିଏଟ୍, ମିସ୍ ସାମୁଏଲ୍. ମିଃ ଆଷ୍ଟନ (Ashton) ପ୍ରଭୃତି କେତେଜଣ ଉଚ୍ଚ ରାଜକର୍ମଚାରୀ, ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ତାଙ୍କୁ ନାନାଭାବରେ ସାହାଯ୍ୟ କରିଛନ୍ତି । ମଧୁବାବୁ କଟକରୁ ଏମାନଙ୍କ ନିକଟକୁ କୃତଜ୍ଞତା ପତ୍ର ଲେଖି ପଠାଇବା ସଙ୍ଗେ ସଙ୍ଗେ ତାରକସି କାମର କିଛି ଦ୍ରବ୍ୟ ଉପହାର ସ୍ୱରୂପ ପଠାଇଥିଲେ । ଏ ସମ୍ବନ୍ଧରେ ଶୈଳବାଳାଙ୍କଠାକୁ ସେ ଲେଖିଥିଲେ—

"× × ବିଦେଶରେ ଏତେ କୃତଜ୍ଞତା ଭାର ବହନ କରିବା ଉଚିତ ନୁହେଁ । ତୁମେ ଜଣେ ଦୁର୍ବଳ ଶ୍ରେଷ୍ଠ ବାଳିକା, କୌଣସି ପ୍ରକାର ଭାର ବହନ କରିବା ପାଇଁ ଅସମର୍ଥ ।

ମୁଁ ଭାବୁଛି, ତୁମ ପାଖରେ କଟକ ଉଆର ତାରକସି ଉପହାରଯୋଗ୍ୟ କିଛି ରୌପ୍ୟ ଦ୍ରବ୍ୟ ଥିବ; ଆଜି ଡାକରେ କିଛି ଅଧିକା ରୁପା ଜିନିଷ ମଧ୍ୟ ପଠାଉଛି । କେବଳ କଥାରେ କୃତଜ୍ଞତା ଜ୍ଞାପନ ନକରି ନିଜର ମନୋଭାବକୁ କିଛି ଦ୍ରବ୍ୟରେ ପ୍ରକାଶ କରିବାପାଇଁ ଚେଷ୍ଟା କର । ଇଂରେଜମାନେ ବସ୍ତୁତାନ୍ତ୍ରିକ; ସେମାନେ ଉପଯୁକ୍ତ ଦ୍ରବ୍ୟରେ ଭାବର ପ୍ରକାଶକୁ ପସନ୍ଦ କରନ୍ତି । ଯଦି ଦୃଶ୍ୟ ଭାବରେ ଭାବନା ପ୍ରକାଶ ନପାଏ ତାହାହେଲେ ଏ ଭାବନାର ମୂଲ୍ୟ କିଛି ନୁହେଁ । ବର୍ଷାବିହୀନ ଜଳପୂର୍ଣ୍ଣ ମେଘପରି ଏହା ଦେଖାଯିବ । ଭାବନା କିଛି ନୁହେଁ । ସେଗୁଡ଼ିକ କାର୍ଯ୍ୟର ଜଳାଧାର ମାତ୍ର । ଯଦି ସେଥିରୁ ବାହାରକୁ ଜଳ ବହି ନଯାଏ ତାହାହେଲେ ତାହା ମୃତ ନିର୍ଝର ହୋଇଯାଏ ।" × × (୧୯୦୭ ଫେବୃଆରି, ୧୦ ତାରିଖରେ ମଧୁବାବୁ ଶୈଳବାଳାଙ୍କଠାକୁ ଲେଖିଥିବା ପତ୍ରର ଅଂଶ ।)

କଟକର ତାରକସି କାମ ଉପହାରଯୋଗ୍ୟ ବିବେଚିତ ହେଉଥିଲା । ବିଲାତର ଉଚ୍ଚ ସମାଜର ଲୋକଙ୍କୁ ମଧ୍ୟ ଏ ଦ୍ରବ୍ୟ ଉପହାର ସ୍ୱରୂପ ଦିଆଯାଇ ପାରୁଥିଲା । ଏଥିର ଉଚ୍ଚ କାରିଗରିହିଁ ଏହାର କାରଣ ।

ଥରେ ଶୈଳବାଳାଙ୍କୁ ବିଲାତରେ ରାଜପରିବାରର ଜଣେ ଆତ୍ମୀୟାଙ୍କ ଘରେ 'ଭାରତବର୍ଷ' ସମ୍ବନ୍ଧରେ କିଛି କହିବା ପାଇଁ ଆମନ୍ତ୍ରଣ କରାଯାଇଥିଲା । ଶୈଳବାଳା ମଧୁବାବୁଙ୍କୁ ଚିଠି ଲେଖି ଏ ସମ୍ବନ୍ଧରେ କେତେକ ପରାମର୍ଶ ମାଗିଥିଲେ । ମଧୁବାବୁ ଖ୍ରୀ: ୧୯୦୭ ଅପ୍ରେଲ ୧୭ ତାରିଖର ଇଂରେଜୀରେ ଲିଖିତ ଚିଠିରେ କେତେକ ସୂଚନା ଦେଇଥିଲେ । ସେ କହିଥିଲେ, ରାଜନୀତି ପଥ ଖସଡ଼ା ଥିବାରୁ ରାଜନୀତି ସମ୍ବନ୍ଧରେ କିଛି କହିବା ନିରାପଦ ନୁହେଁ । କେବଳ ଖ୍ରୀଷ୍ଟିଆନ୍ ଧର୍ମ ଓ ଭାରତରେ ତାର ପ୍ରଭାବ ସମ୍ବନ୍ଧରେ କିଛି କହିବା ସମୟୋପଯୋଗୀ ହେବ । ବ୍ରିଟିଶ୍ ଜାତି ନିଜ ସରକାରଙ୍କୁ ଖ୍ରୀଷ୍ଟିୟାନ୍ ସରକାର ବୋଲି କହି ଗର୍ବ ଅନୁଭବ କରୁଥିଲେ । ଭାରତରେ ଖ୍ରୀଷ୍ଟିଆନ ରାଜତ୍ୱ ପ୍ରତିଷ୍ଠା କରି ସେମାନେ ଆଲୋକ ଆଣିଦେଇଥିଲେ; ଏହି ପ୍ରସଙ୍ଗ ସେମାନେ ବାରମ୍ବାର ଉତ୍ଥାପନ କରନ୍ତି । କଥା ଓ କାର୍ଯ୍ୟରେ ଏହା କିପରି ହେଉଛି, ତାହା ଶାସକ ଜାତିକୁ ନିଜ ଘରେ ବୁଝାଇଦେବା କର୍ତ୍ତବ୍ୟ ବୋଲି ଶାସିତଙ୍କ ଭିତରୁ ସମଧର୍ମୀ ଜଣେ ଭାବିବା ସ୍ୱାଭାବିକ । ନିଜର ଦୋଷଗୁଣ ଜାଣିପାରିଲେ ଶାସକଗୋଷ୍ଠୀ ହୁଏତ ସତର୍କ ହେବେ, ଭୁଲ୍ କରିବେ ନାହିଁ, ଏହା ଆଶା କରିବା ସ୍ୱାଭାବିକ । ସ୍ତ୍ରୀମାନଙ୍କ ସଭାରେ ବକ୍ତୃତା ଦେବାପାଇଁ ବ୍ୟବସ୍ଥା ହୋଇଥିବା ଜଣାଯାଏ । ସ୍ତ୍ରୀମାନେ ସଚରାଚର ଧର୍ମବିଶ୍ୱାସୀ ଓ ଧର୍ମସମ୍ପର୍କୀୟ ବ୍ୟାଖ୍ୟାନ ଶୁଣିବାପାଇଁ ଅନୁରାଗୀ । ଏହି ଗୁଣରେ ସୁଯୋଗ ନେଇ ଖ୍ରୀଷ୍ଟିଆନ ଧର୍ମ କଥାରେ ଓ କାର୍ଯ୍ୟରେ କିପରି ପାଳିତ ହେଉଛି, ତାହା ବୁଝାଇବା କର୍ତ୍ତବ୍ୟ ବୋଲି ମଧୁବାବୁ ଭାବିଲେ ଏବଂ ଏହି ସମ୍ବନ୍ଧରେ ବିଶେଷ ଭାବରେ ବକ୍ତୃତାକୁ ଆବଦ୍ଧ ରଖିବା ନିମନ୍ତେ ଶୈଳବାଳାଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଖ୍ରୀଷ୍ଟଧର୍ମ ଉପରେ ମଧୁବାବୁଙ୍କ ମତାମତ ମଧ ଏହି ଚିଠିରେ ସୁନ୍ଦର ଭାବରେ ପ୍ରକାଶ ଲାଭ କରିଛି । ଖ୍ରୀଷ୍ଟଧର୍ମ ପରି ହିନ୍ଦୁ ଓ ବୌଦ୍ଧଧର୍ମରେ ମଧ୍ୟ କପରି କରୁଣା ଓ କ୍ଷମାର ପ୍ରାଧାନ୍ୟ ରହିଛି, ତାହା ସେ ବୁଝାଇ ଦେଇଥିଲେ । ହିନ୍ଦୁ ଅବତାରବାଦର ବିଶେଷତ୍ୱ ସମ୍ବନ୍ଧରେ ମଧ ସେ ମତ ବ୍ୟକ୍ତ କରିଛନ୍ତି । ଶୈଳବାଳା ଏ ତତ୍ତ୍ୱ କେତେଦୂର ହୃଦୟଙ୍ଗମ କରିପାରିଥିବେ, ତାହା କହି ନହେଲେ ମଧ, ଏଥିରେ ମଧୁବାବୁଙ୍କ ମନୋଭାବ ଯେ ରୂପ ଧାରଣ କରିଛି, ଏଥିରେ ସନ୍ଦେହ ନାହିଁ ।

ମଧୁବାବୁ ଚିଠିରେ ଲେଖିଥିଲେ—"ତୁମକୁ ଭାରତବର୍ଷ ସମ୍ବନ୍ଧରେ କିଛି କହିବା ପାଇଁ କୁହାଯାଇଛି । ଏହା ଏକ ବୃହତ୍ତ ବିଷୟ । ତୁମେ ଖ୍ରୀଷ୍ଟଧର୍ମ ଓ ଭାରତ ଉଭୟରେ ଏହାର ପ୍ରଭାବ ସମ୍ବନ୍ଧରେ ବିଶେଷ ଭାବରେ କହିବ । ରାଜନୀତି ଭିତରକୁ ଆଦୌ ଯିବ ନାହିଁ । ଏହା ବିପଜ୍ଜନକ ଓ ବିଶେଷ ଦକ୍ଷତା ଆବଶ୍ୟକ କରେ । ଭାରତର ଲୋକଙ୍କ ସୁଖସମୃଦ୍ଧି ନିମନ୍ତେ ବିଲାତର ଖ୍ରୀଷ୍ଟିଆନ୍ ଜନସାଧାରଣ କପରି ବିଶେଷ ଧ୍ୟାନ ରଖିଛନ୍ତି, ତାହା କହି ବ୍ୟାଖ୍ୟାନ ଆରମ୍ଭ କରିବା ଉଚିତ । ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ବିଲାତି କୋଟି କୋଟି ମୁଦ୍ରା ବ୍ୟୟ କରିଛି । ଯେଉଁମାନେ ଏହି ଧର୍ମର ପ୍ରଚାର ପାଇଁ ଏତେ ଧନ ବ୍ୟୟ କରିଛନ୍ତି, ସେମାନେ ଯଦି ଜାଣିବେ ଯେ, ଆଜିପର୍ଯ୍ୟନ୍ତ ଭାରତବର୍ଷର ସମୂହ ଜନସଂଖ୍ୟାର ଅତି ଅଳ୍ପ ଅଂଶ କେବଳ ଖ୍ରୀଷ୍ଟଧର୍ମ ଗ୍ରହଣ କରିଛନ୍ତି, ତାହାହେଲେ ସେମାନଙ୍କ ମନରେ ହତାଶାର ଭାବ ଦେଖାଯିବ । ଏହା ସତ୍ୟ ଯେ ଭାରତରେ ଖ୍ରୀଷ୍ଟିଆନ ଲୋକଙ୍କ ସଂଖ୍ୟା ବଢ଼ୁଛି; ପଚିଶ ବର୍ଷ ପୂର୍ବେ ଯେଉଁ ସଂଖ୍ୟା ଥିଲା, ତାହା ଅପେକ୍ଷା ବର୍ତ୍ତମାନର ସଂଖ୍ୟା ବଢ଼ୁଛି । ହେଲେ କଣ ହେବ, ଭାରତର ଜନସଂଖ୍ୟା ମଧ ବୃଦ୍ଧି ପାଇଛି । ମୁଁ ଭାବୁଛି, ସମଗ୍ର ଜନସଂଖ୍ୟାର ଯେତେ ଭାଗ ଖ୍ରୀଷ୍ଟିଆନ୍ ଅଛନ୍ତି, ସେହି ଅଂଶଟି ଆଖିଦୃଶିଆ ଭାବରେ ବୃଦ୍ଧି ପାଇନାହିଁ । ଯଦି ଏହା ସହିତ ଜନ୍ମଦ୍ୱାରା ଖ୍ରୀଷ୍ଟିଆନ ବୃଦ୍ଧି ପାଇଥିବା ଜନସଂଖ୍ୟାକୁ ମିଶାଇଦେଇ ସଂଖ୍ୟାଦ୍ୱାରା ଖ୍ରୀଷ୍ଟଧର୍ମର ପ୍ରସାର ପରିମାଣ ନିର୍ଦ୍ଧାରଣ କରାଯାଏ, ତାହାହେଲେ ଏ ସଂଖ୍ୟାରୁ ଜଣାଯିବ ଯେ ଏଥିରେ ଆନନ୍ଦିତ ହେବାର କିଛି କାରଣ ନାହିଁ; କିନ୍ତୁ ମୁଣ୍ଡଗଣତିଦ୍ୱାରା ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ଯେଉଁମାନେ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି, ସେମାନଙ୍କ ଶ୍ରମକୁ ମାପିବା ଠିକ୍ ହେବନାହିଁ । ଯେଉଁ ଲୋକ ଜମିକୁ ଶସ୍ୟ ଉତ୍ପାଦନ ଉପଯୋଗୀ କରୁଛି, ତାହାର ପରିଶ୍ରମର ଗୁରୁତ୍ୱ ଶସ୍ୟ ଆଦାୟକାରୀର ପରିଶ୍ରମଠାରୁ ବେଶି । ଦୀକ୍ଷାନ୍ତ ଭାଷଣ ସମୟରେ ବିଶ୍ୱବିଦ୍ୟାଳୟରେ ଯେ ଉପାଧି ବିତରଣ କରନ୍ତି, ତାଙ୍କ ଶ୍ରମ ଅପେକ୍ଷା ଯେ ଛାତ୍ରମାନଙ୍କୁ ଶିକ୍ଷା ଦେଇଛନ୍ତି, ସେହି (ଶିକ୍ଷକ)ମାନଙ୍କ ଶ୍ରମ ବେଶି । (ଶତ୍ରୁପକ୍ଷର) ଏକ ସହର ଆକ୍ରମଣ କଲାବେଳେ ଯେ ଦୁର୍ଗପ୍ରାଚୀରକୁ ଖଣ୍ଡବିଖଣ୍ଡିତ କରି ଧୂଳିସାତ୍ କରିଛି, ତାହାର ପରିଶ୍ରମ, ଦୁର୍ଗ ଅଧିକାର ପରେ ଦୁର୍ଗ-ଶିଖରରେ ପତାକା ଉତ୍ତୋଳନକାରୀର ଶ୍ରମଠାରୁ ବେଶି ।

"ଇଂରେଜୀ ସାହିତ୍ୟର ପ୍ରସାର, ପାଶ୍ଚାତ୍ୟ ଚିନ୍ତା ଓ ବାଇବେଲ୍‌ର ବାଣୀ ଭବିଷ୍ୟତରେ ଖ୍ରୀଷ୍ଟଙ୍କୁ ଗ୍ରହଣ କରିବା ପାଇଁ ଲୋକଙ୍କ ମନକୁ ପ୍ରସ୍ତୁତ କରୁଛି, ଏଥିରେ ସନ୍ଦେହ ନାହିଁ । ଇଂରେଜୀ ସାହିତ୍ୟ ଓ ଇଂରେଜୀ ଇତିହାସରେ ଯେଉଁ ସବୁ ଉତ୍ତମ ଓ ଗୌରବମୟ ଚିନ୍ତା ଅଛି, ସେଥିରୁ ଭାରତବାସୀ ଖ୍ରୀଷ୍ଟଙ୍କୁ ଅଲଗା କରିଦେଇ ପାରିବେ ନାହିଁ । ଖ୍ରୀଷ୍ଟଧର୍ମ ଯେପରି ନିର୍ମାଣ କରିଛି, ୟୁରୋପ ସେପରି ଗଠିତ ହୋଇଛି । ଇଂଲଣ୍ଡରେ ଯାହାକିଛି ଉତ୍ତମ ଓ ଗୌରବମୟ ତାହାର ମୂଳ ଖ୍ରୀଷ୍ଟଧର୍ମରେ ରହିଛି । ତୁମର ପ୍ରାଥମିକ ଶିକ୍ଷାର ବିଚାର କର । ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ବିଦ୍ୟାପୀଠଗୁଡ଼ିକ ଧର୍ମ ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହୋଇଛି । ବର୍ତ୍ତମାନ ଏଗୁଡ଼ିକର ପରିଚାଳନା ଓ ଉଦ୍ଦେଶ୍ୟ ଯାହା ହେଲେ ମଧ୍ୟ ଅନୁସନ୍ଧାନ କଲେ ଏହାର ମୂଳ ଖ୍ରୀଷ୍ଟଧର୍ମରେ ଥିବା ଜଣାପଡ଼ିବ । ଇଂରେଜ ଜାତି ସହିତ ଯେତେ ବିଷୟ ସମ୍ପୃକ୍ତ, ସେ ସବୁଥିରେ ଆମେ ଭାରତୀୟମାନେ ଖ୍ରୀଷ୍ଟଙ୍କ ପ୍ରଭାବ ଦେଖିବୁ । ଖ୍ରୀଷ୍ଟଧର୍ମ ଇଂରେଜ ଜାତିର ଚରିତ୍ରକୁ ଗଠିତ କରିଛି । ଖ୍ରୀଷ୍ଟଙ୍କୁ ନିମ୍ନ ଜାତିରୂପେ ନ ଦେଖି ବଳିତକୁ ଚିନ୍ତା କରି ହେବନାହିଁ; କିନ୍ତୁ ନିଜ ଜୀବନ, ନିଜ ବାଣୀ ଓ ଭାରତୀୟଙ୍କ ସହ ତାହାର ବ୍ୟବହାରରେ ଇଂରେଜ ଲୋକ ଖ୍ରୀଷ୍ଟଧର୍ମ ସହିତ ତାହାର କୌଣସି ସମ୍ପର୍କ ଥିବା ସ୍ୱୀକାର କରୁନାହିଁ । ସରକାରୀ କଲେଜର ଗୁରୁମାନଙ୍କର ଇଂରେଜୀ ଭାଷା, ଇତିହାସ ଓ ଇଂରେଜୀ ସାହିତ୍ୟ ଶିକ୍ଷା ସହିତ ଖ୍ରୀଷ୍ଟଙ୍କର କିଛି ସମ୍ପର୍କ ନରହୁ, ଏହା ସେଠାର ଅଧ୍ୟାପକମାନେ ଇଚ୍ଛା କରୁଛନ୍ତି । ଶାସନକ୍ଷେତ୍ରରେ ଅଫିସର ଖ୍ରୀଷ୍ଟଧର୍ମ ସହିତ କୌଣସି ସମ୍ପର୍କ ଥିବା ପ୍ରକାଶ୍ୟରେ ସ୍ୱୀକାର କରୁନାହିଁ । ସେ ଯେପରି କେବଳ ଦୀକ୍ଷାରେ ଖ୍ରୀଷ୍ଟିଆନ୍ ହୋଇଛି, ସେପରି ବ୍ୟବହାର କରୁଛି । ଶାସନ କ୍ଷେତ୍ରରେ ସେ ଖ୍ରୀଷ୍ଟିଆନେତର ପରି ବାହାନା କରୁଛି, ଖ୍ରୀଷ୍ଟଧର୍ମର ସାରମର୍ମ ଘୋଷଣା କରିବା ସାହସ ତାର ନାହିଁ । ହିନ୍ଦୁ ଓ ମୁସଲମାନମାନଙ୍କ ଉପରେ ଖ୍ରୀଷ୍ଟିଆନ୍ ନୀତିଗୁଡ଼ିକ ଜାରି କରିବା ପାଇଁ ମୁଁ ଚାହେଁନାହିଁ । ମୁଁ ନିଜର ଅଣଖ୍ରୀଷ୍ଟିଆନ୍ ଅଧସ୍ତନ କର୍ମଚାରୀଙ୍କ ଉପରେ ଖ୍ରୀଷ୍ଟିଆନ୍ ନୀତିକୁ ବଳପୂର୍ବକ ପ୍ରୟୋଗ କରାଯାଉ ଏହା ମଧ୍ୟ ମୁଁ କହୁନାହିଁ; କିନ୍ତୁ ଖ୍ରୀଷ୍ଟିଆନ ନୀତିବିରୋଧ କୌଣସି କାର୍ଯ୍ୟ ହେଲେ ତାହା ସେ ନିଶ୍ଚୟ ଦେଖାଇ ପାରିବେ ଓ ନିଜର ଅସମର୍ଥନକୁ ପ୍ରକାଶ କରିପାରିବେ । କିଛିସ୍ଥଳରେ କ୍ଷମତାସୀନ କର୍ମଚାରୀର ଏ କାର୍ଯ୍ୟକୁ ବିଶ୍ୱନୈତିକ ମାନଦଣ୍ଡରେ ବିଚାର କରେ ଏହା ନିନ୍ଦନୀୟ ବିବେଚିତ ହେବ । କାରଣ, ଯେଉଁମାନେ ଏଭଳି କର୍ମଚାରୀଙ୍କ କାର୍ଯ୍ୟଦ୍ୱାରା କ୍ଷତିଗ୍ରସ୍ତ ହେବେ, ଏ ଦୋଷ ସେମାନଙ୍କର ସଂସ୍କାରକାରୀ କ୍ଷମତାର ବହିର୍ଭୂତ । ତାଙ୍କର ଏ ନିନ୍ଦାଯୋଗ୍ୟ କାର୍ଯ୍ୟ ଖ୍ରୀଷ୍ଟିଆନ୍ ବାତାବରଣ ମଧ୍ୟରେ ତାଙ୍କର ଜୀବନଯାତ୍ରାର ଫଳ ବୋଲି ଲୋକେ ଭାବୁଛନ୍ତି । ଲୋକେ ବିଚାର କରୁଛନ୍ତି ଓ କହୁଛନ୍ତି ଯେ ଏହା ଖ୍ରୀଷ୍ଟିଆନ୍ ଦେଶର ଖ୍ରୀଷ୍ଟିଆନ ଶିକ୍ଷାର ଫଳ ।

"ଭାରତବର୍ଷର କୌଣସି ଅଞ୍ଚଳରେ କୌଣସି ମିଶନାରୀ ରାଜକର୍ମଚାରୀମାନଙ୍କ ଉପରେ ପ୍ରଭାବ ବିସ୍ତାର କରିବା ତାଙ୍କର କାର୍ଯ୍ୟ ବୋଲି ବିଚାର କରୁନାହାନ୍ତି । କର୍ମଚାରୀ ଓ

ମିଶନାରୀ ଏ ଦୁଇ ସମ୍ପ୍ରଦାୟ, ଭାରତୀୟମାନେ ୟୁରୋପୀୟଙ୍କଠାରୁ ଦୂରରେ ରହିଲା ପରି, ପରସ୍ପର ବହୁ ଦୂରରେ ରହୁଛନ୍ତି । ଭାରତକୁ ଉନ୍ନତ କରି ଶିକ୍ଷିତ ଦେଶଶ୍ରେଣୀର ଅନ୍ତର୍ଭୁକ୍ତ କରିବା ପାଇଁ ଉଭୟେ ଲାଗିପଡ଼ିଛନ୍ତି । ଜଣକର କାର୍ଯ୍ୟ ଅନ୍ୟର କାର୍ଯ୍ୟ ପରି ଗୁରୁତ୍ୱପୂର୍ଣ୍ଣ । କୌଣସି ଦେଶ ଖ୍ରୀଷ୍ଟିଆନ୍ ଧର୍ମନୀତିରେ ବିଶ୍ୱାସ ରଖି ତଦନୁସାରେ କାର୍ଯ୍ୟ ନକଲେ ତାହାର ଉନ୍ନତି ଅସମ୍ଭବ । ଅଳ୍ପ କେତେକାଳ ପୂର୍ବେ ଜାପାନ ଯୁଦ୍ଧକ୍ଷେତ୍ରରେ ଯେପରି ଉନ୍ନତି ଦେଖାଇଛି, ତାହାର ଦୃଷ୍ଟାନ୍ତ ଦେଇ କେହି କେହି ଯୁକ୍ତିକରୁଛନ୍ତି ଯେ ଅଣ-ଖ୍ରୀଷ୍ଟିଆନ୍ ଦେଶ ପକ୍ଷରେ ମଧ୍ୟ ଉନ୍ନତି ସମ୍ଭବ, କିନ୍ତୁ ଏହି ଯୁକ୍ତିକର୍ତ୍ତାମାନେ ଜାଣିବା ଉଚିତ ଯେ, ପ୍ରତ୍ୟେକ ଜାପାନୀ ପକ୍ଷେ ଖ୍ରୀଷ୍ଟଧର୍ମର ନୀତି ଅତି ପ୍ରିୟ । ଜାପାନୀମାନେ ବୌଦ୍ଧ । ବୁଦ୍ଧ ତ୍ୟାଗ ଓ ନିରହଙ୍କାରିତାର ଅତି ଉଜ୍ଜ୍ୱଳ ନିଦର୍ଶନ । ଖ୍ରୀଷ୍ଟଧର୍ମକୁ ଦୀକ୍ଷାରୂପେ ଗ୍ରହଣ କରିବା ଅର୍ଥ ଖ୍ରୀଷ୍ଟଧର୍ମ ନୀତିକୁ ପସନ୍ଦ କରିବା ନୁହେଁ । ଜଣେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ନହୋଇ ପାରେ, କିନ୍ତୁ ସେ ଖ୍ରୀଷ୍ଟଜୀବନୀରୁ ଜାତ ହୋଇଥିବା ନୀତିମାନଙ୍କୁ ବିଶ୍ୱାସ କରିପାରେ । ଖ୍ରୀଷ୍ଟଙ୍କ ଜୀବନୀରେ ନିରହଙ୍କାରିତା ଓ କ୍ଷମାଶୀଳ ଏ ଦୁଇଟି ଉତ୍କୃଷ୍ଟ ଗୁଣ । ଖ୍ରୀଷ୍ଟଙ୍କର ଶିଷ୍ୟ ପାଦ ପ୍ରକ୍ଷାଳନ ଓ ତାଙ୍କୁ କ୍ରୁଶବଦ୍ଧ କରିଥିବା ଶତ୍ରୁଙ୍କୁ ସୁଦ୍ଧା କ୍ଷମା ଦେବାପାଇଁ ଈଶ୍ୱରଙ୍କୁ ତାଙ୍କର ପ୍ରାର୍ଥନା ଏହାର ନିଦର୍ଶନ । ଏ ଦୁଇଟି କାର୍ଯ୍ୟ ପ୍ରାଚ୍ୟ ଲୋକଙ୍କୁ ବିଶେଷଭାବରେ ପ୍ରଭାବିତ କରୁଛି । ଉଭୟ ସ୍ଥଳରେ ତ୍ୟାଗ ବିଶିଷ୍ଟ ସ୍ଥାନ ଅଧିକାର କରିଛି; ଭଗବାନଙ୍କ ସହସ୍ର ଅବତାରରେ ହିନ୍ଦୁ ବିଶ୍ୱାସକରେ । ଭଗବାନଙ୍କର ଅସଂଖ୍ୟ । ଅବତାର, ରାମ, କୃଷ୍ଣ, ଚୈତନ୍ୟ—ଏମାନେ ସମସ୍ତେ ଅବତାର । ଭଗବାନଙ୍କ ମର୍ତ୍ତ୍ୟରେ ଅବତରଣହିଁ ଅବତାର । ସ୍ୱର୍ଗରେ ଭଗବାନ ଥିଲାବେଳେ ଲୋକେ ତାଙ୍କୁ ପୂଜା କରନ୍ତି ଓ ଭୟ କରନ୍ତି; କିନ୍ତୁ ମର୍ତ୍ତ୍ୟକୁ ଆସି ଲୋକଙ୍କ ସହିତ ବିଚରଣ କଲେ, ତାଙ୍କୁ ଲୋକେ ପ୍ରେମ କରନ୍ତି । ଏହା ସମ୍ମାନଯୁକ୍ତ ଅଥଚ ଭୟବିବର୍ଜିତ ପ୍ରେମ ।" (କୁମାରୀ ଶୈଳବାଳା ଦାସଙ୍କର ଇଂରେଜୀରେ ଲିଖିତ ଆତ୍ମଜୀବନୀ)

ଶେଷବାକ୍ୟରେ ମଧୁବାବୁ ସ୍ୱର୍ଗତା ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କ ଜୀବନୀରୁ ଏକ ଦୃଷ୍ଟାନ୍ତଦେଇ ଶେଷୋକ୍ତ ପ୍ରସଙ୍ଗର ସତ୍ୟତା ପ୍ରତିପାଦନ କରିଛନ୍ତି । ସେ କହିଛନ୍ତି, ମନୁଷ୍ୟ ବା ମାନବିକ ପ୍ରକୃତିକୁ ଦୃଷ୍ଟାନ୍ତ ସ୍ୱରୂପ ଧରିଗଲେ ଜଣାଯିବ ଯେ, ମହାମାନ୍ୟବର ଦିବ୍ୟମୂର୍ତ୍ତି ସ୍ୱର୍ଗତା ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କୁ ଲୋକେ ଅତି ସ୍ନେହ କରନ୍ତି । କାରଣ, ଯେତେବେଳେ ସେମାନେ ଶୁଣିଛନ୍ତି ଯେ ସାମ୍ରାଜ୍ଞୀ ନିଜେ କୌଣସି ଏକ ଗରିବ ସ୍ତ୍ରୀର କୁଟୀରକୁ ଯାଇଛନ୍ତି କିମ୍ବା କୌଣସି ଏକ ଗରିବକୁ ତାଙ୍କର ବ୍ୟକ୍ତିଗତ ଦାନ କରିଛନ୍ତି, ସେତେବେଳେ ସେମାନଙ୍କର ସାମ୍ରାଜ୍ଞୀଙ୍କ ପ୍ରତି ସ୍ନେହ ଜାତ ହୋଇଛି ।"

ଏଠିରେ ଶେଷୋକ୍ତ ଦୃଷ୍ଟାନ୍ତଟି ବକ୍ଷ୍ୟମାଣ ବିଷୟର ଗୁରୁତ୍ୱର ସୂଚନା ପ୍ରଦାନ କରିବା ନିମନ୍ତେ ପ୍ରଦତ୍ତ ହୋଇଥିଲେ ମଧ୍ୟ ପତ୍ରଲେଖକଙ୍କ ଅତିରିକ୍ତ ରାଜଭକ୍ତିର ଗନ୍ଧ ଥିବା

ସମାଲୋଚକମାନେ ସନ୍ଦେହ କରିପାରନ୍ତି । ଏହି ପ୍ରସଙ୍ଗଟି ଅନାବଶ୍ୟକ ହେଲେ ମଧ୍ୟ ମଧୁବାବୁଙ୍କୁ ଯେଉଁମାନେ 'ରାଜଭକ୍ତ' ବୋଲି ଅତି କଟୁ ସମାଲୋଚନା କରନ୍ତି, ସେମାନଙ୍କୁ ଏହା ଆହାର ଯୋଗାଉଛି । ଅନ୍ୟ ଏକ ଦିଗପ୍ରତି ଦୃଷ୍ଟି ରଖି ମଧୁବାବୁ ଏପରି ଦୃଷ୍ଟାନ୍ତ ଦେଇଥିବା ଅନୁମାନ ହେଉଛି । ସାଧାରଣତଃ ଲୋକେ କହନ୍ତି "ଯେ ଦେଶ ଯାଇ ସେ ଫଳ ଖାଇ", "ଯଥା ରାଜା ତଥା ପ୍ରଜା", "ରାଜାନୁଗତୋଧର୍ମ" ପୁଣି, "ଯେଉଁ ଦେଶକୁ ଯିବ ସେ ଦେଶର ଲୋକଙ୍କ ପରି ବ୍ୟବହାର କରିବ ।" ଶୈଳବାଳା ବିଲାତରେ ଅବସ୍ଥାନ କରୁଥିବାରୁ ସେ ବିଲାତର ଲୋକଙ୍କପରି ବ୍ୟବହାର କରିବା ଉଚିତ । ବିଲାତର ଲୋକେ ବଡ଼ ରାଜଭକ୍ତ, ରାଜାଙ୍କୁ ଈଶ୍ୱର ତୁଲ୍ୟ ମାନନ୍ତି । ବିଲାତରେ ରହି ଇଂରେଜମାନଙ୍କ ମନକୁ ପାଇବା ଭଳି ଦୃଷ୍ଟାନ୍ତଟିଏ ଦେବା ଆବଶ୍ୟକ ବୋଲି ଉପଲବ୍ଧି କରି ଏଠିରେ ମଧୁବାବୁ ଏହି ଉଦାହରଣଟି ଟିପିଦେଇଥିବା ସମ୍ଭବ । ଦରକାରବେଳେ ଶୈଳବାଳା ଏହାର ସଦ୍‌ବ୍ୟବହାର କରିବେ ଏହାହିଁ ଲକ୍ଷ୍ୟ ଥିବା ଅନୁମାନ କରାଯାଇ ପାରେ । ମଧୁବାବୁ ରାଜଭକ୍ତ ଥିଲେ ସତ୍ୟ, କିନ୍ତୁ ତାଙ୍କର ରାଜଭକ୍ତି ଅନ୍ଧ ରାଜଭକ୍ତି ନୁହେଁ । ଆବଶ୍ୟକ ସ୍ଥଳେ ସେ ରାଜାଙ୍କ ସରକାରଙ୍କୁ କଠୋର ସମାଲୋଚନା ନକରି ଛାଡ଼ୁ ନଥିଲେ । ତାଙ୍କ ସମୟରେ ତାଙ୍କପରି ଇଂରେଜ ସରକାରଙ୍କ କଟୁ ସମାଲୋଚକ ଅତି ଅଳ୍ପ ଥିଲେ । ଉଚ୍ଚ ଇଂରେଜ ରାଜକର୍ମଚାରୀମାନେ ମଧ୍ୟ ଏହା ପ୍ରକାଶ୍ୟରେ କହୁଥିଲେ ।

(୬୩) **ସରକାରୀ ଚାକିରି କରିବା ବିରୁଦ୍ଧରେ ମତ** : ସରକାରୀ ଚାକିରିରେ ପ୍ରତିଭାବାନ୍ ଯୁବକମାନେ ପଶିବା ବିରୁଦ୍ଧରେ ମଧୁବାବୁ ମତ ବ୍ୟକ୍ତ କରୁଥିଲେ । ଏହି ଶତାବ୍ଦୀର ପ୍ରଥମ ପାଦରେ ମଧ୍ୟ ଉଚ୍ଚଶିକ୍ଷିତ ମେଧାବୀ ଓଡ଼ିଆମାନଙ୍କୁ ସରକାରୀ ଉଚ୍ଚ ଚାକିରି ( ଡେପୁଟି କଲେକ୍ଟର ଚାକିରି ଓ ତହସିଲଦାରୀ ଚାକିରି ) ଦେବାପାଇଁ ସରକାର ଆଗ୍ରହୀ ନଥିଲେ । ଓଡ଼ିଶାରେ ସେତେବେଳେ ଅଧିକାଂଶ ଉଚ୍ଚ ଚାକିରି ବଙ୍ଗ-ଦେଶୀୟଙ୍କଦ୍ୱାରା ଅଧିକୃତ ଥିଲା । ଏ ବ୍ୟବସ୍ଥାର ପରିବର୍ତ୍ତନ କରି ଉପଯୁକ୍ତ ଯୋଗ୍ୟତା ସମ୍ପନ୍ନ ଓଡ଼ିଆମାନଙ୍କୁ ନିଯୁକ୍ତ କରିବାପାଇଁ ମଧୁବାବୁ ବରାବର ଦାବୀ କରି ଆସୁଥିଲେ ; କିନ୍ତୁ ଖୁବ୍ ପ୍ରତିଭାବାନ୍ ଯୁବକମାନେ ସରକାରୀ ଚାକିରିର ଲୋଭ ଛାଡ଼ି ଦେଶସେବାରେ ନିଜକୁ ନିୟୋଜିତ କରନ୍ତୁ ବୋଲି ସେ ମତ ଦେଉଥିଲେ । ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏ. ବି. ଏଲ୍. ଓ ଶ୍ରୀ ଅଭିରାମ ଭଞ୍ଜ ଏମ୍. ଏ., ବି ଏଲ୍. ବିଦ୍ୟାଶିକ୍ଷା ଶେଷକରି ଉଚ୍ଚ ସରକାରୀ ଚାକିରି କରିବାପାଇଁ ମନ ବଳାଇଥିଲେ । ଏ ଦିଗରେ ସେମାନଙ୍କୁ ସାହାଯ୍ୟ ଓ ସୁପାରିସ୍ କରିବାପାଇଁ ଉଭୟେ ମଧୁବାବୁଙ୍କୁ ଜଣାଇଥିଲେ । ମଧୁବାବୁ କହିଥିଲେ, "ପ୍ରତିଭାବାନ୍ ଯୁବକମାନେ ସରକାରୀ ଚାକିରିରେ ପ୍ରବେଶ କଲେ, ଦେଶର, କ୍ଷତି ହେବ । ସେମାନେ ଦେଶର ଆଉ କୌଣସି ଉନ୍ନତିକର କାର୍ଯ୍ୟ କରିପାରିବେ ନାହିଁ ।" ଦୁହେଁ ମଧୁବାବୁଙ୍କ ପରାମର୍ଶକୁ ଶିରୋଧାର୍ଯ୍ୟ କରି ଦେଶସେବାରେ ମନ ବଳାଇଥିଲେ । ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଜଣେ ଖ୍ୟାତନାମା ଓକିଲରୂପେ ଖ୍ୟାତିଲାଭ କରିଥିଲେ ଏବଂ

ଓଡ଼ିଶା ଦେଶମିଶ୍ରଣ ଆନ୍ଦୋଳନର ଜଣେ ମୁଖ୍ୟ ନେତା ଥିଲେ । ଓଡ଼ିଆ ସାହିତ୍ୟ ଓ ଭାଷାର ଉନ୍ନତିପାଇଁ ତାଙ୍କର ଦାନ ଅତୁଳନୀୟ । ବାଇମହାନ୍ତି ପାଞ୍ଜି, ଚଗଡମାଳ, ଓଡ଼ିଆ ଭାଷାକୋଷ ପ୍ରଭୃତି ଗ୍ରନ୍ଥ ଲେଖି ସେ ଅମର ହୋଇଛନ୍ତି । ଉଚ୍ଚେ ଅଳ୍ପବୟସରେ ମୃତ୍ୟୁବରଣ କରିବାରୁ ଦେଶ ଏହି ପ୍ରତିଭାବାନ ଦେଶପ୍ରେମୀ ଯୁବକଙ୍କ ସେବାରୁ ବଞ୍ଚିତ ହୋଇଥିଲା । ଗୋପାଳ ପ୍ରହରାଜ ମଧୁବାବୁଙ୍କ ଜୁନିୟର୍ ଥିଲେ । ମଧୁବାବୁଙ୍କ ପରାମର୍ଶ ନନେଇ ସେ ପୁରୀ ଜିଲ୍ଲାର ସତ୍ୟବାଦୀ ଓକିଲ ନିଯୁକ୍ତିକୁ ଗ୍ରହଣ କରିଥିଲେ । ପ୍ରହରାଜଙ୍କ ଏ ଚାକିରୀ ଗ୍ରହଣକୁ ମଧୁବାବୁ ପସନ୍ଦ କରିନଥିଲେ । ସେ ପ୍ରହରାଜଙ୍କ କଟକସ୍ଥ ଗୃହକୁ ଯାଇ ତାଙ୍କୁ କହିଲେ, "ଗୋପାଳ, ତୁମେ ବର୍ତ୍ତମାନ ଓଡ଼ିଶା ପ୍ରତି ମୃତ । ତୁମେ ଧନୀ ଓ ପ୍ରତିପତ୍ତିଶାଳୀ ହୋଇପାରିବ; କିନ୍ତୁ ତୁମେ ଜାତିର ଓ ଉତ୍କଳମାତାର ସେବାପାଇଁ ଅଯୋଗ୍ୟ ହେଲ; ଜାତି ଓ ଦେଶ ତୁମ ସେବା ପାଇବାର ସୌଭାଗ୍ୟ ହରାଇଲା ।"

(୨୪) **ୟୁରୋପୀୟ ପ୍ରଥମ ମହାଯୁଦ୍ଧ (୧୯୧୪)** : ମଧୁବାବୁ ୟୁରୋପୀୟ ପ୍ରଥମ ମହାଯୁଦ୍ଧ (୧୯୧୪) ବେଳେ ଇଂରେଜମାନଙ୍କ ସପକ୍ଷରେ ମତ ବ୍ୟକ୍ତ କରୁଥିଲେ । ଭାରତବର୍ଷର ପ୍ରାୟ ସବୁ ଜାତୀୟନେତା ଇଂରେଜମାନଙ୍କୁ ସମର୍ଥନ କରୁଥିଲେ ଏବଂ ଜର୍ମାନୀକୁ ଆକ୍ରମଣକାରୀ ରୂପେ ନିନ୍ଦା କରୁଥିଲେ । ନ୍ୟାୟ ଓ ଧର୍ମ ଇଂରେଜମାନଙ୍କ ସପକ୍ଷରେ ଥିବା ଏମାନେ ବ୍ୟକ୍ତ କରୁଥିଲେ । ମଧୁବାବୁ ଜର୍ମାନୀ ଓ ଇଂଲଣ୍ଡର ଉଦ୍ଦେଶ୍ୟକୁ ବିଶ୍ଳେଷଣ କରି ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ (୧୯୧୪—ପାରଳାଖେମୁଣ୍ଡି) ରେ ଏକ ବକ୍ତୃତା ଦେଇଥିଲେ—"ଏ ଦେଶବାସୀ ନିରସ୍ତ୍ର ଥିବାରୁ ଏମାନେ ଇଂଲଣ୍ଡ ପ୍ରତି ସମସ୍ତ ପ୍ରକାର ସମର୍ଥନ ଜଣାଇବା ସମ୍ଭବ ନ ହେଲେ ହେଁ, ସହାନୁଭୂତି ଓ ଗଭୀର ରାଜଭକ୍ତି ପ୍ରକାଶ କରି ସାହାଯ୍ୟଦାନ କରିବା କର୍ତ୍ତବ୍ୟ" ବୋଲି ସେ ଦୃଢ଼ସ୍ୱରରେ ନିବେଦନ କରିଥିଲେ । ସେ ଜର୍ମାନୀକୁ ରାମାୟଣଯୁଗର ରାବଣ ସହିତ ତୁଳନା କରିଥିଲେ ଏବଂ "ନିଜ ଦୋଷରେ ନିଜେ ଜର୍ମାନୀ ଜଳିଯିବ" ଏହି ଭବିଷ୍ୟତବାଣୀ କରିଥିଲେ ।

(୨୫) **ତ୍ୟାଗ** : ତ୍ୟାଗ ସମ୍ବନ୍ଧରେ ମଧୁବାବୁ ଗ୍ରାମ ଓ ଯୁବକ ଓକିଲମାନଙ୍କୁ ବହୁ ଉପଦେଶ ଦେଉଥିଲେ । ଏ ପ୍ରସଙ୍ଗରେ ସେ ଏକାଧିକ ଥର ଜ୍ୱଳନ୍ତ ପ୍ରଦୀପର ଉଦାହରଣ ଦେଉଥିଲେ । ସେ କହୁଥିଲେ, "ଦେଖ, ଏହି ଯେ ପ୍ରଦୀପଟି ଜଳୁଛି, ସେଥିରେ ଥିବା ବତି ଓ ତେଲ କ୍ରମେ ସରିଯାଉଛି । ତେଲ ଶେଷ ହେଉଛି, ବତି ଶେଷ ହେଉଛି । ଏମାନେ ନିଜେ ଧ୍ୱଂସ ହୋଇଯାଉଛନ୍ତି ଯିନା ଆଲୋକ ଦେବାରେ ପଶ୍ଚାତ୍ପଦ ହେଉ-ନାହାନ୍ତି । ବତିର ତ୍ୟାଗ ଆଦର୍ଶ ସ୍ଥାନୀୟ । ଦେଶପାଇଁ ଦଶପାଇଁ ଏପରି ତ୍ୟାଗ ଆବଶ୍ୟକ ।" ଥରେ ମଧୁବାବୁ ପ୍ରଦୀପ ଆଡ଼କୁ ଅଙ୍ଗୁଳି ଦେଖାଇ ନାଟକୀୟ ଛଟାରେ ଏପରି କହିଥିଲେ ।

ନାଟକୀୟ ଛଟା ବା ସଭାମଣ୍ଡପରେ ବକ୍ତୃତା ଦେବା ଛଟାରେ ସେ ଏହିସବୁ ମଧ୍ୟ ବ୍ୟାଖ୍ୟାନ କରୁଥିଲେ । ସେ ପ୍ରଶ୍ନ ପଚାରି ଟିକିଏ ଅଟିଯାଇ "I pause for an answer" (ମୁଁ ଉତ୍ତରପାଇଁ ଅପେକ୍ଷା କରୁଛି) ବୋଲି କହନ୍ତି । ମନକୁ ନପାଇଲା ଭଳି ଉତ୍ତର ମିଳିଲେ ଯୁକ୍ତି କରନ୍ତି; ଉତ୍ତର ନମିଳିଲେ ନିଜେ ବ୍ୟାଖ୍ୟା କରି ଲମ୍ବେଇ କଥାଟାକୁ ବୁଝାନ୍ତି ।

**(୨୭) ଭଲକୁ ଶ୍ରଦ୍ଧାକଲେ ଯଥେଷ୍ଟ ହେଲା ନାହିଁ, ଭଲ କାର୍ଯ୍ୟ କରିବା ଆବଶ୍ୟକ :** ମଧୁବାବୁ ଭଲ କାର୍ଯ୍ୟର ପ୍ରଶଂସା କରୁଥିଲେ । 'ଭଲକୁ ଶ୍ରଦ୍ଧା କର' ବୋଲି ଯଦି କେହି କହୁଥିଲେ, ମଧୁବାବୁ ତାଙ୍କୁ ଉପଦେଶ ଦେଉଥିଲେ, "ଖାଲି ଭଲକୁ ଶ୍ରଦ୍ଧା କରୁଛୁ ବୋଲି କହିଲେ ହେବନାହିଁ, ଭଲ କାର୍ଯ୍ୟ କରିବାରେ ଶ୍ରଦ୍ଧା ରଖିବାକୁ ହେବ ।" ସେ କହୁଥିଲେ, "Besides being lover of good, be lover of doing good."

**(୨୭) ସବୁଠାରେ କଣ ଭଗବାନଙ୍କର ନ୍ୟାୟ ବିଚାର ଅଛି ?** ଥରେ କଟକ ସହରରେ ଜଣେ ପ୍ରଚାରକ 'Dispensation of Divine Light' ସମ୍ବନ୍ଧରେ ଏକ ବକ୍ତୃତା ଦେଉଥିଲେ । ମଧୁବାବୁ ତାହା ଶୁଣୁଥିଲେ । ବକ୍ତୃତା ପରେ ମଧୁବାବୁ ବକ୍ତାଙ୍କୁ ଡାକି କହିଲେ, "ଭଗବାନଙ୍କ ନ୍ୟାୟ ବିଚାର ଅଛି ବୋଲି ତ କହୁଛ । ପ୍ରାଚୀନ ରୋମର ପ୍ରଧାନ ଶାସକ ବିଖ୍ୟାତ ଜୁଲିଅସ୍ ସିଜର୍‌ଙ୍କୁ ତାଙ୍କ ଅନ୍ତରଙ୍ଗ ବିଶ୍ୱସ୍ତ ବନ୍ଧୁ ଓ ସହକର୍ମୀ ବ୍ରୁଟସ୍ ହତ୍ୟା କରିଥିଲେ । ଆମେରିକାର ପ୍ରେସିଡେଣ୍ଟ ବିଖ୍ୟାତ ସମାଜସେବୀ ଆବ୍ରାହାମ ଲିଙ୍କନ୍‌ଙ୍କୁ କେହି ଆତତାୟୀ ହତ୍ୟା କରିଥିଲେ । ଏପରି ବହୁ ଦୃଷ୍ଟାନ୍ତ ରହିଛି । ଏସବୁ ହତ୍ୟାକାଣ୍ଡରେ ନ୍ୟାୟ ବିଚାର କେଉଁଠି ରହିଲା ?"

## ୩୪. ଚରିତ୍ର-ଦର୍ପଣ

**ଓଡ଼ିଶାରେ ନୀତି :** ତତ୍‌କାଳୀନ ଓଡ଼ିଶାରେ ମଧୁସୂଦନ ଦାସ ସବୁ ବିଷୟରେ ଓଡ଼ିଆଶ୍ରେଣୀର ଅଗ୍ରଣୀ ଥିଲେ । ଆୟୁ, ବ୍ୟୟ, ବୁଦ୍ଧି, କୌଶଳ ପ୍ରଭୃତି ବହୁ ବିଷୟରେ ତାଙ୍କ ସମକକ୍ଷ ଓଡ଼ିଆ ଆଉ କେହି ନଥିଲେ । ପ୍ରାୟ ତିରିଶି ବର୍ଷ କାଳ ସେ ଓଡ଼ିଶାରେ ଆଦର୍ଶ ସ୍ଥାନୀୟ ଥିଲେ । ଜୁନିଅର୍ ଓଡ଼ିଆମାନେ ତାଙ୍କୁ ଅନୁସରଣ କରିବାକୁ ଗର୍ବ ଅନୁଭବ କରୁଥିଲେ । ଛୋଟ ଛୋଟ ପିଲାମାନେ "ପାଠ ପଢ଼ିବି, ବଡ଼ ହେଲେ ମଧୁବାବୁ ସଙ୍ଗେ ଲଢ଼ିବି" ଏ ପ୍ରକାର ଗୀତ ମଧ୍ୟ ବୋଲୁଥିଲେ ।

ଓକିଲ ହିସାବରେ ମଧୁବାବୁ ଅତି ପରିଶ୍ରମ କରୁଥିଲେ । ସେ ଜ୍ୱରରେ ପୀଡ଼ିତ ଥିବା ଅବସ୍ଥାରେ ମଧ୍ୟ କେତେକ ବଡ଼ ମକଦ୍ଦମା ଚଳାଇଥିଲେ । ସେ ଅସାଧାରଣ ମେଧାବୀ ଥିଲେ । ପୁଣି, ମହକିଲମାନଙ୍କ ସହିତ ବ୍ୟବହାରରେ ଅତି ସଚ୍ଚୋଟ ଥିଲେ । ସେ ଆଇନ ସମ୍ବନ୍ଧରେ ବହୁ ଗ୍ରନ୍ଥ ରଖିଥିଲେ । ତାଙ୍କର ନିଜ ଲାଇବ୍ରେରୀରେ ଲକ୍ଷାଧିକ ଟଙ୍କାର ବହି ଥିଲା । ଦେଶବିଦେଶର ବିଭିନ୍ନ ନ୍ୟାୟାଳୟମାନଙ୍କର ମତାମତ ବା ରୁଲିଂ, ସୂତ୍ର ଓ ବ୍ୟାଖ୍ୟା ପ୍ରଭୃତି ଅତି ସାବଧାନତା ସହିତ ସେ ପାଠ କରୁଥିଲେ ଏବଂ ସେଥିରୁ ଅଧିକାଂଶ ତାଙ୍କର ମନେରହିଯାଉଥିଲା । ଅତି ଯତ୍ନସହକାରେ ମକଦ୍ଦମା ସଂକ୍ରାନ୍ତ କାଗଜପତ୍ର ସେ ପାଠ କରୁଥିଲେ ଏବଂ ଟିକିନିଖି ବିଷୟ ମଧ୍ୟ ମନେରଖୁଥିଲେ । ଅର୍ଜିଲେଖା, ଉପସ୍ଥାପନ, ଜବାବ ସୁଆଲ ପ୍ରଭୃତି କ୍ଷେତ୍ରରେ ସେ ଅଦ୍ୱିତୀୟ ଥିଲେ । ଜବାବସୁଆଲ ବେଳେ ବହୁ ନୀତିବଚନ, ଉଦ୍ଧୃତମାଳା, ଗପର ଅବତାରଣା କରି ନିଜ ବକ୍ତବ୍ୟକୁ ଚିତ୍ତାକର୍ଷକ କରି ପାରୁଥିଲେ, ନିର୍ଜୀବ ଘଟନାକୁ ସଜୀବ କରିଦେଉଥିଲେ । ଜଜ୍‌ମାନେ ତାଙ୍କର ଯୁକ୍ତିକୁ ଆଗ୍ରହ ଓ ଶ୍ରଦ୍ଧାର ସହିତ ଶୁଣୁଥିଲେ । ସେ ସମୟରେ ଭାରତରେ ମକଦ୍ଦମା ଅର୍ଜି ଲେଖିବାରେ ତାଙ୍କ ଭଳି ଓକିଲ ଅତି କମ୍ ଥିଲେ ।

ତାଙ୍କର ଜୁନିଅରମାନେ କହନ୍ତି, ମଧୁବାବୁ ମକଦ୍ଦମା କାଗଜପତ୍ର ଦେଖିଲାବେଳେ ସେଥିରେ ତନ୍ମୟ ହୋଇଯାଆନ୍ତି, ତାଙ୍କର ବାହ୍ୟଜ୍ଞାନ ନଥାଏ । ସେ କର୍ମକୁ ଭଗବତ୍‌ ଆରାଧନା ସ୍ୱରୂପ ଜ୍ଞାନ କରୁଥିଲେ ।

ଜଣେ ବରିଷ୍ଠ ଜୁନିଅର୍ ଆଡ଼୍‌ଭୋକେଟ ଶ୍ରୀ ଗଜେନ୍ଦ୍ର ପ୍ରସାଦ ଦାସ ମଧୁବାବୁଙ୍କର ଜୁନିଅର୍ ହୋଇ ପାଟଣା ଓ ଅନ୍ୟାନ୍ୟ ସ୍ଥାନରେ କାମ କରିଥିଲେ । ମଧୁବାବୁଙ୍କର ଜନ୍ମୟତା ସମ୍ବନ୍ଧରେ ଏକ ଗଳ୍ପ ମଧୁବାବୁଙ୍କ ମୁଖରୁ ସେ ଶୁଣିଥିବା ପ୍ରକାଶ କରିଛନ୍ତି ।

"Once he was very much troubled over a question of limitation. He was appearing for a plaintiff who had an excellent case on merits but the bar of limitation raised by the defendant seemed to be insurmountable. All the experience, erudition and the intensive knowledge of the case law which Mr Das possessed seemed to defy solution. He carried his research in his library till 1 O' clock in the morning when he felt the necessity of retiring to his bed. In great despair he prayed to God on his knees to give him light. He retired to his bed, fell asleep, but towerds the early hour of the

morning he dremt a dream that he would find the solution noted in his brief. He got up, went straight to his library, opened his notebook and found a note giving reference to a reported case with the volume and page of the report. He atonce took out the volume of the law report, opened the page and found a decision which was a complete answer to the bar of limitation raised by his opponent. He belived that this was an act of the unseen hand of God. We may not share in his faith, but this clearly demonstrates his deep and religious devotion to his work." (M. S. Das, As seen through many eyes.)

ମଧୁବାବୁ ମକଦ୍ଦମାରେ ବଡ଼ ସାନ ବିଚାର କରୁ ନଥିଲେ । ବେଶି ପାରିଶ୍ରମିକ ନେଇଥିବା ମକଦ୍ଦମାକୁ ଯେପରି ଦେଖୁଥିଲେ, ଅଳ୍ପ ପାରିଶ୍ରମିକ ନେଇଥିବା ମକଦ୍ଦମାକୁ ମଧ୍ୟ ସେହିପରି ଧ୍ୟାନ ଦେଉଥିଲେ । ବହୁତ ମକଦ୍ଦମା ସେ ବିନା ପାରିଶ୍ରମିକରେ ଚଳାଉଥିଲେ ।

ଓକିଲମାନଙ୍କ ଗତିବିଧି ଓ ବ୍ୟବହାର ଯେପରି ଅତି ଉଚ୍ଚସ୍ତରର ହେବ, ସେଥିପାଇଁ ସେ ଲକ୍ଷ୍ୟ ରଖିଥିଲେ । ଏ କ୍ଷେତ୍ରରେ ସେ ନିଜେ ଆଦର୍ଶ ସ୍ଥାପନ କରୁଥିଲେ ଏବଂ ଜୁନିଅର୍‌ମାନଙ୍କୁ ସ୍ୱବ୍ୟବସାୟର ମର୍ଯ୍ୟାଦା ରକ୍ଷା କରିବାପାଇଁ ଉପଦେଶ ଦେଉଥିଲେ । ଯଦି କେହି ଜୁନିଅର୍ ନିଜ କର୍ତ୍ତବ୍ୟରେ ହେଳା କଲେ କି ସମୟାନୁବର୍ତ୍ତିତା ପ୍ରତି ଲକ୍ଷ୍ୟ ନ ରଖିଲେ, କିମ୍ବା ମକଦ୍ଦମା ସଂକ୍ରାନ୍ତ କାଗଜପତ୍ର ଭଲ ଭାବରେ ନବୁଝିଲେ, ତାହାହେଲେ ସେ ବିରକ୍ତ ହେଉଥିଲେ ଏବଂ ଜୁନିଅର୍‌ଙ୍କୁ କଟୁଭାଷାରେ ଭର୍ତ୍ସନା ମଧ୍ୟ କରୁଥିଲେ, ଦୋଷତ୍ରୁଟି ନିରାକରଣହିଁ ତାଙ୍କର ଉଦ୍ଦେଶ୍ୟ ଥିବାରୁ ଜୁନିଅରମାନେ ମଧୁବାବୁଙ୍କ ଭର୍ତ୍ସନାକୁ ଆଶୀର୍ବାଦ ତୁଲ୍ୟ ଗ୍ରହଣ କରୁଥିଲେ । ଅବଶ୍ୟ ଏ କଡ଼ା ବ୍ୟବହାର ଯୋଗୁଁ ନୂତନ ଓକିଲମାନେ ତାଙ୍କ ପାଖକୁ ଯିବାପାଇଁ ମନ ବଳାଉ ନଥିଲେ । ତାଙ୍କର ଜୁନିଅର୍ ହୋଇପାରିଲେ ଓକିଲମାନେ ନିଜକୁ ଭାଗ୍ୟବାନ୍ ମନେକରୁଥିଲେ । 'ମଧୁବାବୁଙ୍କ ଜୁନିଅର୍' କହିଲେ ଲୋକେ ସେ ଓକିଲଙ୍କୁ ବହୁତ ମାନ୍ୟ କରୁଥିଲେ ।

**ଓକିଲତିରେ ମର୍ଯ୍ୟାଦା ଜ୍ଞାନ୍ :** ମଧୁସୂଦନ ଦାସ ଓକିଲତି ବ୍ୟବସାୟରେ କନିଷ୍ଠମାନଙ୍କୁ ନାନାବିଧ ସାହାଯ୍ୟ କରୁଥିଲେ । ତେବେ ମର୍ଯ୍ୟାଦା ଜ୍ଞାନ ଉପରେ ତାଙ୍କର ବିଶେଷ ଦୃଷ୍ଟି ଥାଏ । ଓକିଲମାନେ ମକ୍କେଲର ମକଦ୍ଦମା ଭଲଭାବରେ ବୁଝନ୍ତୁ, ଭଲ ଭାବରେ ଅର୍ଜି ଲେଖନ୍ତୁ, ଭଲ ଭାବରେ ଜବାବସୁଆଲ କରନ୍ତୁ ଏହା ସେ ସବୁବେଳେ

କାମନା କରୁଥିଲେ । ଯଦି କାହାର କାର୍ଯ୍ୟରେ କୌଣସି ତ୍ରୁଟି ଦେଖୁଥିଲେ, ତାହା ସଙ୍ଗେ ସଙ୍ଗେ ଜଣାଇ ତାହାର ନିରାକରଣ ପାଇଁ ଉପଯୁକ୍ତ ପରାମର୍ଶ ଦେଉଥିଲେ । ସ୍ୱପକ୍ଷ ଓକିଲଙ୍କର ଭଲ ତର୍କବିତର୍କକୁ ମଧ୍ୟ ସେ ପ୍ରଶଂସା କରିବାକୁ ଭୁଲୁ ନ ଥିଲେ । ସେ ଏହାଦ୍ୱାରା ବହୁ କନିଷ୍ଠ ଓକିଲଙ୍କର ଉପକାର ସାଧନ କରିଯାଇଛନ୍ତି ।

ମଧୁବାବୁ ଯଦି କାହାର କୋର୍ଟ କ ପେଣ୍ଟ ମଇଳା କମ୍ବା ଛିଣ୍ଡାଫଟା ଥିବା ଦେଖିଥିଲେ, ତାହାହେଲେ ତାଙ୍କୁ ଡାକି ଏପରି ପରିଚ୍ଛଦ ନ ପିନ୍ଧିବା ପାଇଁ ପରାମର୍ଶ ଦେଉଥିଲେ । ସେ କହୁଥିଲେ, "ଭେକ ଥିଲେ ଭିକ ମିଳିବ ।" ମର୍ଯ୍ୟାଦା ଜ୍ଞାନ ପ୍ରତି ବିଶେଷ ନଜର ରଖିବା ପାଇଁ ସେ ଓକିଲମାନଙ୍କୁ ପରାମର୍ଶ ଦେଉଥିଲେ । ସେ କହୁଥିଲେ, "ଆଲେ, ସଖି, ଆପଣା ମହତ ଆପେ ରଖି ।" ମଧୁବାବୁଙ୍କର ଯଥୋପଯୁକ୍ତ ଉପଦେଶ ଓ ନୀତିବଚନ କନିଷ୍ଠମାନଙ୍କୁ ପ୍ରଭାବିତ କରୁଥିଲା । ସେ ନିଜେ ମଧ୍ୟ ପରିଷ୍କାର ପରିଚ୍ଛନ୍ନ ପୋଷାକ ପିନ୍ଧି କଚେରୀକୁ ଯାଉଥିଲେ ।

ଓକିଲମାନଙ୍କ ବ୍ୟବସାୟ ପ୍ରତି ତାଙ୍କର ଉଦାର ମନୋଭାବ ଥିଲା । ଦିନେ ଏକ ମକଦ୍ଦମାରେ ପ୍ରତିପକ୍ଷ ଓକିଲଙ୍କର କୌଣସି ଅସୁବିଧା ଥିବାରୁ ସେ କୋର୍ଟରେ ହାଜର ହୋଇନପାରି ମହଲତ ମାଗିଥିଲେ । ଏହି କାରଣରେ ମହଲତ ନେଲେ ଅପର ପକ୍ଷକୁ କିଛି ଖର୍ଚ୍ଚା ଦେବାକୁ ପଡ଼ୁଥାଏ । ମଧୁବାବୁ ଖର୍ଚ୍ଚା ଦାବୀ କରିବାକୁ କୁଣ୍ଠାବୋଧ କରିଥିଲେ । ସେ କହିଥିଲେ, "ଓକିଲ ପୁଣି ତ ମଣିଷ ! ତାହାର ମଧ୍ୟ ଦୁଃଖ ସୁଖ ଅଛି । ସେ ଅନିବାର୍ଯ୍ୟ କାରଣ ଯୋଗୁଁ ଆସି ପାରିଲା ନାହିଁ ବୋଲି ଖର୍ଚ୍ଚା ଦାବୀ କରିବା କଣ ଠିକ୍ ହେବ ? ଖର୍ଚ୍ଚା ଦାବୀକୁ କୋର୍ଟ ଅନୁମୋଦନ ନ କରି ମହଲତ ଦେଲେ ଭଲହୁଅନ୍ତା । ମଧୁବାବୁ ଖର୍ଚ୍ଚା ଦାବୀ କରିନଥିଲେ ।

**ଓକିଲଙ୍କ ଶ୍ରମ ଓ ପଦମର୍ଯ୍ୟାଦା ଦେଖି ଫି ଦିଅ :** ଥରେ ଗୋଟିଏ ମକଦ୍ଦମାରେ କମିଶନ୍ ବସିବା ପାଇଁ ମଧୁବାବୁଙ୍କ ପକ୍ଷରୁ ଦାବୀ ହେବାରୁ କୋର୍ଟ ଜଣେ ଓକିଲଙ୍କୁ କମିଶନ୍ ନିଯୁକ୍ତ କଲେ ଏବଂ ଖର୍ଚ୍ଚ ବାବଦ ୫୦ (ପଚାଶଟଙ୍କା) ଦେବାକୁ ଆଦେଶ ଦେଲେ । ମଧୁବାବୁ କହିଲେ, "ପଚାଶ ଟଙ୍କା ଯଥେଷ୍ଟ ନୁହେଁ । ଜଣେ ଓକିଲ ତାର ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଅନ୍ୟ ସ୍ଥାନକୁ ଯିବ, ତଦନ୍ତ କରିବ । ଏଥିରେ ପଚାଶ ଟଙ୍କା ଫି ଆଦେଶ କରିବା ନୁହେଁ, ଶହେ ଟଙ୍କା ହେଲେ ମଧ୍ୟ ଚଳିବ । ମକ୍କେଲ ପଇସା ଖର୍ଚ୍ଚ କରିବା ପାଇଁ ରାଜି ଅଛି, ତାର ସାମର୍ଥ୍ୟ ମଧ୍ୟ ଅଛି । ସେ ଅମଙ୍ଗ ହେବା ଅନୁଚିତ । ମୋ ମକ୍କେଲ ଆପତ୍ତି କରିବ ନାହିଁ ।" ମଧୁବାବୁଙ୍କର ଏ ଯୁକ୍ତିକୁ ହାକିମ ପସନ୍ଦ କରିଥିଲେ ମଧ୍ୟ ପ୍ରଚଳିତ ନିୟମ ଅନୁସାରେ ଦାବୀକୁ ଗ୍ରହଣ କରି କେବଳ ପଚାଶ ଟଙ୍କା ରଖିଥିଲେ ।

**ବିତରଣରେ ଆନନ୍ଦ :** ମଧୁବାବୁଙ୍କ ପୋଖରୀରେ ବହୁତ ମାଛ ଥାଆନ୍ତି । ବର୍ଷକୁ ଥରେ ଦି'ଥର ମାଛ ଧରାଇ କଟକର ବଡ଼ ବଡ଼ ହାକିମହୁକୁମା, ସାଙ୍ଗସାଥୀ ଓ ବନ୍ଧୁ ଓକିଲମାନଙ୍କ ଘରକୁ ପଠାନ୍ତି । ଏହା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇଥିଲା କହିଲେ ଚଳେ । ଏଥିରେ ସେ ଆନନ୍ଦ ଉପଲବ୍ଧି କରୁଥିଲେ ।

**ସମ୍ବର୍ଦ୍ଧନାରେ ଶ୍ରଦ୍ଧା :** ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ କଟକରେ ସର୍କ୍ୟୁଟ୍ କୋର୍ଟ ( Circuit Court ) ବସୁଥିଲା । ପାଟନାରୁ କେତେ ଜଣ ହାଇ-କୋର୍ଟ ଜଜ୍ ସାମୟିକ ଆସି ଓଡ଼ିଶାର ମକଦ୍ଦମା ବିଚାର କରୁଥିଲେ । ଜଜ୍‌ମାନେ ଆସିଲା-ବେଳେ ଓ ବିଦାୟ ନେଇ ଫେରିଗଲାବେଳେ ମଧୁବାବୁ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଉଥିଲେ । ସମ୍ବର୍ଦ୍ଧନାବେଳେ ମଧୁବାବୁ ଭାଷଣ ମଧ୍ୟ ଦେଇ ନ୍ୟାୟ ବିଚାର, ନ୍ୟାୟାଧୀଶଙ୍କ କର୍ତ୍ତବ୍ୟ ପ୍ରଭୃତି ବିଷୟରେ କିଛି କିଛି କହୁଥିଲେ । ତାଙ୍କର ପ୍ରତ୍ୟେକ ଭାଷଣରେ କିଛି ନୂତନତ୍ୱ ଥିଲା । ବେଳେ ବେଳେ ବଡ଼ ହାକିମମାନଙ୍କୁ ସେ ଭୋଜି ମଧ୍ୟ ଦେଉଥିଲେ । ଏଥିନିମନ୍ତେ କଲିକତାର ବଡ଼ ବଡ଼ ହୋଟେଲରୁ ଲୋକ ଆସି ରୋଷେଇ ଓ ପରଷିବା ଭାର ନେଉଥିଲେ । ଏ କ୍ଷେତ୍ରରେ ସେ ବହୁ ଅର୍ଥ ବ୍ୟୟ କରୁଥିଲେ । ଓଡ଼ିଶାର ସୁନାମ ବୃଦ୍ଧି ଏହିପରି ସମ୍ବର୍ଦ୍ଧନାର ଏକ ଲକ୍ଷ୍ୟ ଥିଲା ।

**ହାକିମଙ୍କୁ ଉପଦେଶ :** ଥରେ ଜଜ୍ କୋର୍ଟରେ ମଧୁବାବୁ ଜବାବସୁଆଲ କରୁଥିଲେ । ବହୁ ସମୟ ଧରି ଏହା ଚାଲିଲା । ଜଜ୍ ମଧ୍ୟ କ୍ଳାନ୍ତ ହୋଇପଡ଼ିଲେ । ସେ ଜଣେ ବଙ୍ଗୀୟ ଥିଲେ । ସେ ବଙ୍ଗଳାରେ ମଧୁବାବୁଙ୍କୁ କହିଲେ, "ଆଉ ଶୁଣାଯିବ ନାହିଁ, ସମୟ ହୋଇଗଲାଣି, ବନ୍ଦ କରନ୍ତୁ ।" ମଧୁବାବୁ ସେ କଥା ନ ଶୁଣିବାରୁ ଜଜ୍ ବିରକ୍ତ ହୋଇ କହିଲେ, "ଆମି ମର୍‌ବ ନା କି ?" (ମୁଁ ମରିବି ନା କଣ ?) ମଧୁବାବୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ଆମି ହୁଜୁରକେ ମର୍‌ତେ ବଲ୍‌ଛିନା, ବାଞ୍ଚିତେଓ ବଲ୍‌ଛିନା ।" (ମୁଁ ହଜୁରଙ୍କୁ ମରିବାକୁ କହୁନାହିଁ କି ବଞ୍ଚିବାକୁ କହୁନାହିଁ ।) ଏହାପରେ ମହକିଲ ଓ ଜନସାଧାରଣଙ୍କ ସୁବିଧା ପାଇଁ କଷ୍ଟ ସ୍ୱୀକାର କରିବାକୁ ହେବ ବୋଲି ସେ କହିଥିଲେ ଓ ଜଜ୍ ଆଉ କିଛି ସମୟ ଶୁଣିଥିଲେ । କଲଟରୀ କଚେରୀମାନଙ୍କରେ ମଧ୍ୟ ସେ ହାକିମମାନଙ୍କୁ ବହୁ ଉପାଦେୟ ଉପଦେଶ ଦେଉଥିଲେ । ତାଙ୍କର ଅଭିଜ୍ଞତା ଓ ମର୍ଯ୍ୟାଦାବୋଧକୁ ହାକିମମାନେ ପସନ୍ଦ କରୁଥିଲେ ।

ପକ୍ଷମାନଙ୍କ ସୁବିଧା ପ୍ରତି ଜଜ୍‌ମାନେ ଉଚିତ ଧ୍ୟାନ ଦେବା ଆବଶ୍ୟକ ବୋଲି ଏକାଧିକ କୋର୍ଟରେ ମଧୁବାବୁ କଥାପ୍ରସଙ୍ଗରେ କହୁଥିଲେ ।

କଚେରିରେ ପେସ୍‌କାରମାନଙ୍କୁ ସେ କେବେ ପାରିତୋଷିକ ଦେଇ ମହଲତ କରାଉ ନଥିଲେ । ସେ କହୁଥିଲେ, "ବିଧି ଅନୁସାରେ କ୍ରମାନ୍ୱୟରେ ମକଦ୍ଦମା ବିଚାର ହେଉ । ମହଲତ ନେବା ଦରକାର ନାହିଁ । ସେ ଏହି ପ୍ରସଙ୍ଗରେ ବିଖ୍ୟାତ କବି ମିଲ୍‌ଟନଙ୍କ ଏକ ନୀତିବାକ୍ୟ ଉଦ୍ଧାର କରୁଥିଲେ, "They also serve who stand and

wait'' ( ଯେ ଦଣ୍ଡାୟମାନ ହୁଅନ୍ତି ଓ ଅପେକ୍ଷା କରନ୍ତି, ସେମାନେ ମଧ୍ୟ ସେବା କରନ୍ତି) ।

**ଓଡ଼ିଆରେ ଜବାବ୍ସୁଆଲ** : ମଧୁବାବୁ କଲିକତାରୁ କଟକ ଆସି ଓକିଲାତି ଆରମ୍ଭ କରିବା ସମୟରେ ଓଡ଼ିଶାର କଚେରି ଓ କୋର୍ଟମାନଙ୍କରେ ବହୁ ବଙ୍ଗାଳୀ ହାକିମ, କିରାଣି, ଓକିଲ ଥିଲେ । ପ୍ରାୟ ସବୁ କଥାବାର୍ତ୍ତା ବଙ୍ଗଳାରେ ହେଉଥିଲା କହିଲେ ଚଳେ । ହାକିମମାନେ ଓ ଓକିଲମାନେ ବଙ୍ଗାଳୀ ଥିବାରୁ ଓଡ଼ିଆ ଓକିଲମାନେ ବାଧ୍ୟ ହୋଇ ଅନେକ ସମୟରେ ବଙ୍ଗଳାରେ ଜବାବସୁଆଲ୍ କରୁଥିଲେ । ମଧୁବାବୁ କଟକ ଆସିବା ପରେ ଏ ଦିଗରେ ପରିବର୍ତ୍ତନ ଆଣିଲେ । ଓଡ଼ିଆରେ ଜବାବ ସୁଆଲ୍ ଓ ଜୁରିମାନଙ୍କୁ ଭାଷଣ ଦେବା ଆରମ୍ଭ କରିଦେଲେ । ମାର୍ଜିତ ଓ ସାହିତ୍ୟିକ ଭାଷାରେ ସେ କୋର୍ଟ କଚେରିରେ ଜବାବସୁଆଲ କରିବାରୁ ଅନ୍ୟ ଓଡ଼ିଆ ଓକିଲମାନେ ମଧ୍ୟ ସେହିପରି କରିବା ଆରମ୍ଭ କଲେ । ମାର୍ଜିତ ସାହିତ୍ୟିକ ଭାଷା ଉପରେ ମଧୁବାବୁ ଜୋର୍ ଦେଉଥିଲେ । ସେ ନିଜେ ଦୀର୍ଘ ବାକ୍ୟ ବ୍ୟବହାର କରୁଥିଲେ ।

ଏହା ବ୍ୟତୀତ, ମୋହରିରମାନଙ୍କୁ ଶୁଦ୍ଧ ଓ ମାର୍ଜିତ ଭାଷାରେ ଅର୍ଜି ଲେଖିବାକୁ ପରାମର୍ଶ ଦେଉଥିଲେ । ବର୍ଣ୍ଣାଶୁଦ୍ଧି ପ୍ରତି ବିଶେଷ ଧ୍ୟାନ ଦେବାପାଇଁ ବାରମ୍ବାର ଉପଦେଶ ଦେଉଥିଲେ । କରଣୀଲିପିକୁ ସେ ଓଡ଼ିଆ ସର୍ଟହେଣ୍ଡ (short hand) ବୋଲି କହୁଥିଲେ ।

**ପିତାମାତାଙ୍କ ପ୍ରତି ଶ୍ରଦ୍ଧା** : ମଧୁବାବୁଙ୍କ ପିତାମାତା ଦୀର୍ଘାୟୁ ଥିଲେ । ପିତା ୮୫ ବର୍ଷ ବୟସରେ ଖ୍ରୀ: ୧୯୦୧ରେ ଓ ମାତା ୮୩ ବର୍ଷ ବୟସରେ ଖ୍ରୀ: ୧୯୦୩ରେ ଇହଲୀଳା ଶେଷ କରିଥିଲେ ।

ମଧୁବାବୁଙ୍କର ବାଲ୍ୟକାଳରୁ ପିତାମାତାଙ୍କ ପ୍ରତି ପ୍ରଗାଢ଼ ଭକ୍ତିଥିଲା । ସେ ମଧ୍ୟେ ମଧ୍ୟେ ଗ୍ରାମକୁ ଯାଇ କିଛି ସମୟ ରହୁଥିଲେ । ଗ୍ରାମରେ ରହଣିପାଇଁ ସେ ପିତାଙ୍କ ବାସଭବନ ନିକଟରେ କୋଠାଟିଏ ନିର୍ମାଣ କରିଥିଲେ ଏବଂ ବହୁ ବର୍ଷ ପରେ ଏହି କୋଠାଟି ମହାଜନଙ୍କ ଋଣ ପରିଶୋଧ କରିବା ନିମନ୍ତେ ବିକ୍ରୀ ହୋଇଗଲା ।

ପୁତ୍ରବାତ୍ସଲ୍ୟ ଯୋଗୁଁ ତାଙ୍କୁ ନଦେଖିଲେ ପିତାମାତା, ବିଶେଷତଃ ମାତାଙ୍କ ମନରେ ଦୁଃଖ କରୁଥିଲେ । ମଧୁବାବୁ ପିତାମାତାଙ୍କୁ ଭୂମିଷ୍ଠ ପ୍ରଣାମ କରୁଥିଲେ । ସେ ମାତାଙ୍କୁ ବେଶି ସ୍ନେହ କରୁଥିଲେ । ମା'ଙ୍କ ଗୋଡ଼ତଳେ ପଡ଼ି ତାଙ୍କର ଆଶୀର୍ବାଦ ଭିକ୍ଷା କରୁଥିଲେ । ତାଙ୍କ ହାତରେ କିଛି କିଛି ଅର୍ଥ ମଧ୍ୟ ଦେଉଥିଲେ । ମଧୁସୂଦନ ଖ୍ରୀଷ୍ଟିଆନ୍ ହୋଇଯିବାରୁ ସ୍ୱଗୃହରେ ତାଙ୍କର ଅବାଧ ପ୍ରବେଶ ନଥିଲା । ଘର 'ମାରି' ବା 'ଅପବିତ୍ର' ହୋଇଯିବା ଧାରଣା ଯୋଗୁଁ ତାଙ୍କର ଘର ଭିତରକୁ ଯିବା ନିଷେଧ ଥିଲା । ଶେଷ ପର୍ଯ୍ୟନ୍ତ

ପିତାମାତା ତାଙ୍କୁ ଧର୍ମାନ୍ତର ଗ୍ରହଣ କରିଥିବାରୁ କ୍ଷମା ଦେଇ ନଥିଲେ, ଏହା କହିବା ବାହୁଲ୍ୟ ମାତ୍ର ।

**କବିତାରସିକ :** ଦିନେ ମଧୁବାବୁ ସର୍କ୍ୟୁଟ୍ କୋର୍ଟ ବାରଣ୍ଡାରେ ବୁଲୁଛନ୍ତି, ଏପରି ସମୟରେ ଦଳେ ବଗ ଆକାଶରେ ଉଡ଼ି ଯାଉଥିବାର ଦେଖିଲେ । ବଗଗୁଡ଼ିକୁ ଦେଖି ସେ ଟିକିଏ ଉଚ୍ଚସ୍ୱରରେ ଉପେନ୍ଦ୍ର ଭଞ୍ଜଙ୍କର ପ୍ରସିଦ୍ଧ ଓ ସର୍ବଜନପ୍ରିୟ ଛାନ୍ଦର ପଦଟିଏ ବୋଲିଲେ—"ଦେଖି ନବକାଳିକା ବକାଳିକା ମାଳିକା ଆଳୀ କାଳିକା-କାନ୍ତ ସ୍ମର" ଇତ୍ୟାଦି । ପାଖରେ କେତେଜଣ ଯୁବକ ଓକିଲ ବୁଲୁଥିଲେ । ମଧୁବାବୁ ଗୁଣୁଗୁଣୁ ହୋଇ ଗୀତ ବୋଲୁଥିବାର ଦେଖି ସେମାନେ ତାଙ୍କ ପାଖକୁ ଆସିଲେ । ମଧୁବାବୁ କହିଲେ, "ମୁଁ ପିଲିଦିନେ ପ୍ରାଚୀନ କବିମାନଙ୍କର ବହୁ ଛାନ୍ଦ, ସଂସ୍କୃତ ଶ୍ଳୋକ, ଭଗବତମାଳ ମୁଖସ୍ଥ କରିଥିଲି । ଗ୍ରୀଷ୍ଟଶାଳୀରେ ଅବଧାନ ଆମକୁ ଏସବୁ ଶିଖାଇ ଥାଆନ୍ତି ।

**ଫୁଲରସିକ :** ମଧୁବାବୁ ଜଣେ ଫୁଲରସିକ ଥିଲେ । ସେ ନିଜ ବଗିଚାରେ ବହୁପ୍ରକାର ଫୁଲ ଗଛ ଲଗେଇଥିଲେ । ଥରେ ସେ କିଛି ଫୁଲ କୋର୍ଟକୁ ଆଣି ଫୁଲରସିକ ଜଜ୍ ରୁବେନ୍ (Reuben)ଙ୍କୁ ଉପହାର ଦେଇଥିଲେ ।

**ଓଡ଼ିଆ ରନ୍ଧଣା ପ୍ରତି ଆଦର :** ମଧୁବାବୁଙ୍କ ଘରେ ସାହେବୀ ଢଙ୍ଗରେ ରନ୍ଧନ ଓ ଭୋଜନ ହେଉଥିଲା । ସେ କଲିକତା ଓ ଦିଲ୍ଲୀ ଗଲେ ବଡ଼ ବଡ଼ ହୋଟେଲରେ ରହି ସାହେବୀ ଖାନା ଖାଉଥିଲେ ; କିନ୍ତୁ ଓଡ଼ିଶାରେ ଓଡ଼ିଆ ଘରର ବିବାହାଦି ଭୋଜିରେ ଓଡ଼ିଆ ରନ୍ଧାକୁ ପସନ୍ଦ କରୁଥିଲେ, ଓଡ଼ିଆ ପିଠାପଣା ଓ ତରକାରି ପ୍ରଭୃତିକୁ ଶ୍ରଦ୍ଧା କରୁଥିଲେ । ଓଡ଼ିଆ ବଡ଼ଲୋକଙ୍କ ଭୋଜିରେ କଲିକତା ଢଙ୍ଗର ରନ୍ଧଣାକୁ ସେ ପସନ୍ଦ କରୁନଥିଲେ ।

ଓଡ଼ିଶାର ଶତ ଶତ ବ୍ରାହ୍ମଣ କଲିକତା ଯାଇ ସେଠାରେ ବଙ୍ଗୀୟଙ୍କ ଘରେ ପାଚକ କାର୍ଯ୍ୟ କରି ଜୀବିକା ନିର୍ବାହ କରିଆସୁଛନ୍ତି । ସେମାନେ ଓଡ଼ିଶାକୁ ଫେରିଆସିଲେ, ଓଡ଼ିଆ ରୋଷେଇକୁ ପସନ୍ଦ କରୁନାହାନ୍ତି । ଶିକ୍ଷିତ ସମ୍ପ୍ରଦାୟ ହାକିମ-ହୁକୁମାମାନେ ମଧ୍ୟ ସହରମାନଙ୍କରେ କଲିକତା ରୋଷେଇକୁ ପସନ୍ଦ କରୁଛନ୍ତି । କ୍ରମେ ଓଡ଼ିଆ ରନ୍ଧା ଲୋପ ପାଇ ଯାଉଅଛି ।

ମଧୁବାବୁ ବିବାହାଦି ଉତ୍ସବକୁ ନିମନ୍ତ୍ରଣ ରକ୍ଷାକରି ଯାଆନ୍ତି । ତାଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଦୃଷ୍ଟିରୁ ସେ ସ୍ୱଳ୍ପ ଆହାର କରୁଥିଲେ ; କିନ୍ତୁ ଭୋଜିରେ କିଛି ଖାଉ ନଥିଲେ । ଭୋଜିରେ ଏଣେ ତେଣେ ବୁଲି ପଚରାଉଚରା କରି ଆନନ୍ଦ ଲାଭ କରୁଥିଲେ । କଲିକତା ରୋଷେଇ ଦେଖିଲେ ସେ ବିରକ୍ତ ହୋଇ କହୁଥିଲେ, "କଲିକତା ରୋଷେଇ ତ କଲ, ଆଉ କଣ ହେଲା ! ବେସର, ମହୁର, କାକରା, ମାଲପୁଆ, ହରଡ଼, ଆମ୍ବିଲ, ଆରିଷା, ମୁଗପଇଡ଼ ମଣ୍ଡା ରାଇ ପ୍ରଭୃତି କାହିଁ ?"

**"ମୁଁ ଜଣେ ଓଡ଼ିଆ"** : ମଧୁବାବୁ କଲିକତାରେ ଥିଲାବେଳେ ସେ ହାଜରା ପରିବାରରେ ଚଳୁଥିଲେ । ସବୁବେଳେ ତାଙ୍କୁ ବଙ୍ଗଳାଭାଷାରେ କଥାବାର୍ତ୍ତା କରିବାକୁ ପଡ଼ୁଥିଲା । ଏହି କାରଣରୁ ବଙ୍ଗଳାଭାଷାରେ କଥାବାର୍ତ୍ତା କରିବାରେ ତାଙ୍କର କିଛି ଅସୁବିଧା ହେଉନଥିଲା । ଉଚ୍ଚାରଣ, କଥାବାର୍ତ୍ତା, ଢଙ୍ଗ ପ୍ରଭୃତି କଲିକତାବାସୀ ଉଚ୍ଚଶିକ୍ଷିତ ବଙ୍ଗାଳୀଙ୍କ ପରି ହେଉଥିଲା । ତାଙ୍କ ବେଶ, କଥାବାର୍ତ୍ତା ଦେଖି କଲିକତାର ବହୁ ଲୋକ ତାଙ୍କୁ ବଙ୍ଗାଳୀ ବୋଲି ଭାବୁଥିଲେ । ବିଶେଷତଃ ସେ ଘରେ, ବାହାରେ ଓ ଓଡ଼ିଆମାନଙ୍କ ସହିତ ମଧ୍ୟ କଥାବାର୍ତ୍ତା କଲାବେଳେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । ଓଡ଼ିଆଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ ସେ ନିଜେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ ମଧ୍ୟ ଉତ୍ତର ଓଡ଼ିଆରେ ହିଁ ଆଶା କରୁଥିଲେ । ଓଡ଼ିଆରେ ଉତ୍ତର ନମିଳିଲେ ସେ ରାଗିଯାଉଥିଲେ । ଏହା ମଧୁବାବୁଙ୍କର ଏକ ପ୍ରକୃତିରେ ପରିଣତ ହୋଇଯାଇଥିଲା ।

ସେ ବଙ୍ଗଳାରେ କଥାବାର୍ତ୍ତା କରୁଥିବାରୁ ବହୁ ଓଡ଼ିଆ ତାଙ୍କୁ ସମାଲୋଚନା କରୁଥିଲେ । କଟକରେ ତାଙ୍କ ଘରେ ଯେଉଁ ବଙ୍ଗୀୟ ପରିବାରଙ୍କୁ ସେ ନିଜର ଆତ୍ମୀୟ ସ୍ୱରୂପ ରଖିଥିଲେ, ସେମାନଙ୍କ ଭିତରୁ କେତେ ଜଣ ଓଡ଼ିଆରେ କଥାବାର୍ତ୍ତା କରୁନଥିଲେ । ମଧୁବାବୁ ବଙ୍ଗଳାରେ କଥାବାର୍ତ୍ତା କରୁଥିବାରୁ ସେମାନେ ମଧ୍ୟ ମଧୁବାବୁ ଓ ଅନ୍ୟ ଓଡ଼ିଆଙ୍କ ସଙ୍ଗେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । ମଧୁବାବୁଙ୍କ ପାଳିତା କନ୍ୟା ଶୈଳବାଳା ମଧ୍ୟ ସବୁବେଳେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । ସେ ଓଡ଼ିଶାର ଅଦ୍ୱିତୀୟ ନେତାଙ୍କଦ୍ୱାରା ଲାଳିତପାଳିତ ହୋଇ ପ୍ରାୟ ଅଶୀ ବର୍ଷ କାଳ ଓଡ଼ିଶାର ମୁଖ୍ୟ ସହର କଟକରେ ବାସ କରିଥିଲେ । ସେ ଭ୍ରମବଶତଃ ମଧ୍ୟ କେବେ ଓଡ଼ିଆରେ କଥାବାର୍ତ୍ତା କରିଥିବା ଲକ୍ଷ୍ୟ କରାଯାଇନାହିଁ । ଏଥିପାଇଁ ମଧୁବାବୁ ଓ ମଧୁବାବୁଙ୍କ ପାଳିତ କନ୍ୟାଙ୍କୁ ବହୁ ବିଶିଷ୍ଟ ଓଡ଼ିଆ ନେତା ଆକ୍ଷେପ କରିଥାନ୍ତି ।

ମଧୁବାବୁଙ୍କର ଏହି ଆଚରଣଗତ ତ୍ରୁଟି ସତ୍ତ୍ୱେ ସେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାରେ ଗର୍ବ ଅନୁଭବ କରୁଥିଲେ । ଓଡ଼ିଶାର ଅତୀତ ଗୌରବ ଓଡ଼ିଶାକୁ ଭାରତରେ କାହିଁକି; ସମଗ୍ର ପୃଥିବୀରେ ଏକ ବିଶିଷ୍ଟ ସ୍ଥାନ ଦେଇଛି । ଏହି କାରଣରୁ ଓଡ଼ିଆ ଜାତିର ଗୌରବ ଅତୁଳନୀୟ ବୋଲି ସେ ସର୍ବଦା କହୁଥିଲେ । ତାଙ୍କର ବଙ୍ଗଭାଷାରେ କଥାବାର୍ତ୍ତା ଦେଖି ତାଙ୍କୁ ଭ୍ରମବଶତଃ କେହି ବଙ୍ଗାଳୀ ବୋଲି କହିଦେଲେ, ସେ ସଙ୍ଗେ ସଙ୍ଗେ ତାହାର ତୀବ୍ର ପ୍ରତିବାଦ କରୁଥିଲେ ଏବଂ ସେ "ଓଡ଼ିଆ" ବୋଲି ଦୃଢ଼ କଣ୍ଠରେ ଗର୍ବ ସହକାରେ କହୁଥିଲେ ।

ଥରେ ଯୁବକ ମଧୁବାବୁ କଲିକତାରେ ଏକ ମେସିନ୍ ମେକାନିକ୍ (ଯନ୍ତ୍ର ମିସ୍ତ୍ରୀ)ଙ୍କ ଦୋକାନକୁ ଯାଇଥିଲେ । ଯନ୍ତ୍ର ସମ୍ବନ୍ଧରେ ମଧୁବାବୁଙ୍କର ଯଥେଷ୍ଟ ଜ୍ଞାନ ଥିଲା । ସେ ମିସ୍ତ୍ରୀ ସହି ବଙ୍ଗଳାରେ କଥାବାର୍ତ୍ତା କଲେ । ମଧୁବାବୁଙ୍କ ଭଦ୍ରବ୍ୟବହାର, ଆଳାପ ଆଲୋଚନାର

କାଏଦା, ବୁଦ୍ଧି, ବେଶଭୂଷା ଦେଖି ମିସ୍ତ୍ରୀ ତାଙ୍କୁ ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତି ବୋଲି ଭାବିଥିଲେ । ମିସ୍ତ୍ରୀ କଥାପ୍ରସଙ୍ଗରେ ମଧୁବାବୁ ବଙ୍ଗାଳୀ ଥିବା ଧାରଣାରେ ପ୍ରଶଂସାସୂଚକ ବାକ୍ୟ କହିଥିଲେ । ମଧୁବାବୁ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ମୁଁ ଜଣେ ଓଡ଼ିଆ ।" ସେ ସମୟରେ କଲିକତାରେ ଓଡ଼ିଆମାନଙ୍କୁ ଏକ ମୂର୍ଖଜାତି ରୂପେ କଲିକତା ବଙ୍ଗାଳୀମାନଙ୍କ ଭିତରେ ବହୁ ଲୋକ ଘୃଣା କରୁଥିଲେ । ଓଡ଼ିଆମାନେ ପୂଜାରୀ, ଚାକର, ମାଳୀ ଓ କୁଲି ରୂପେ କଲିକତାରେ ରହୁଥିଲେ । ଓଡ଼ିଆଙ୍କ ଭିତରେ 'ଆଧୁନିକ' ଶିକ୍ଷାରେ ଶିକ୍ଷିତ ଲୋକଙ୍କ ସଂଖ୍ୟା ମଧ୍ୟ ମୁଷ୍ଟିମେୟ ଥିଲି । ଓଡ଼ିଶାରେ ମଧ୍ୟ ବଡ଼ ବଡ଼ ହାକିମ, ଓକିଲ, ଡାକ୍ତର ପ୍ରଭୃତି ବଙ୍ଗୀୟ ଥିଲେ । ଏହା ସତ୍ତ୍ୱେ ମଧୁବାବୁ "ମୁଁ ଜଣେ ଓଡ଼ିଆ" ବୋଲି ପ୍ରକାଶ୍ୟ ଭାବରେ କହିବାରୁ ମିସ୍ତ୍ରୀ ତାଙ୍କୁ ବହୁ ପ୍ରଶଂସା କରିଥିଲେ ଓ ନିଜର ଅସାବଧାନତା ଯୋଗୁଁ କ୍ଷମା ମାଗିଥିଲେ । ସେତେବେଳେ ବହୁ ଶିକ୍ଷିତ ଓଡ଼ିଆ ମଧ୍ୟ କଲିକତାରେ ନିଜକୁ ବଙ୍ଗୀୟ ବୋଲି ପରିଚୟ ଦେଉଥିବା ଅଭିଯୋଗ ହେଉଥିଲି । ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ କଲିକତାରେ ବଙ୍ଗୀୟ ସମାଜରେ ବଙ୍ଗୀୟ ବୋଲି ପରିଚିତ ହେଉଥିବା ଓ ବଙ୍ଗଳାଭାଷାରେ କଥାବାର୍ତ୍ତା କରୁଥିବା ଅଭିଯୋଗ ହେଉଥିଲି । ଏହା ଖ୍ରୀ: ୧୯୦୩ ପୂର୍ବର ଘଟଣା । ସେହି ବର୍ଷ କଟକରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ସଭାପତି ହୋଇଥିଲେ । ଏହି ଅଧିବେଶନ ପରେ ତାଙ୍କର କଥାବାର୍ତ୍ତା ଓ ଢଙ୍ଗ ଢାଙ୍ଗରେ ପରିବର୍ତ୍ତନ ଆସିଥିବା ତାଙ୍କର ସମସାମୟିକମାନଙ୍କଠାରୁ ଶୁଣାଯାଏ । ମଧୁବାବୁ ଏଥିପାଇଁ ବିଶେଷ ଧନ୍ୟବାଦର ପାତ୍ର ହୋଇଥିଲେ ଏବଂ ଓଡ଼ିଶାର ଭାଗ୍ୟ ଉଜ୍ଜ୍ୱଳ ହୋଇପାରିଥିଲି ।

**ଭଗବାନ ଭରସା :** ଭଗବାନଙ୍କ ଉପରେ ମଧୁବାବୁଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲି । ମନ ବିଷଣ୍ଣ ହେଲେ ସେ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । ଦିନେ ଦିନେ ରାତିରେ ସେ ସ୍ୱପ୍ନରେ ଭଗବାନଙ୍କ ବାଣୀ ଶୁଣୁଥିବା ପରି ଅନୁଭବ କରୁଥିଲେ । ତାଙ୍କର କେତୋଟି ସ୍ୱପ୍ନ ସତ୍ୟରେ ପରିଣତ ହୋଇଥିବା କାହାଣୀ ମଧ୍ୟ ତାଙ୍କର ବନ୍ଧୁ ଓ ଆତ୍ମୀୟମାନଙ୍କଠାରୁ ଶୁଣାଯାଏ ।

ସେ ଜଣେ ଗରିବ ଛାତ୍ରକୁ ବିଦ୍ୟା ଶିକ୍ଷା ପାଇଁ ସାହାଯ୍ୟ କରୁଥିଲେ ଏବଂ ସେ ଛାତ୍ରଟି ମାଟ୍ରିକ୍ ପାସ୍ କରିପାରିଥିଲେ । ଛାତ୍ରଟି ମଧୁବାବୁଙ୍କୁ ବହୁବାର ମିଥ୍ୟା କହି ଅର୍ଥ ନେଉ-ଥିଲେ । ଦିନେ ମଧୁବାବୁ ଏହା ଜାଣିପାରି ଅତ୍ୟନ୍ତ ଦୁଃଖିତ ହେଲେ । ସେଦିନ ରାତିରେ ସେ ଭଗବାନଙ୍କୁ ପ୍ରାର୍ଥନା କରି ଶୋଇଲେ ଓ ଏକ ସ୍ୱପ୍ନ ଦେଖିଲେ ଯେ ସେହି ବାଳକଟି ରୋଗାକ୍ରାନ୍ତ ହୋଇପଡ଼ିଛି ଏବଂ ତାଙ୍କ ଫାଟକ ପାଖରେ ଠିଆହୋଇଛି । ରାତି ପାହିଲି । ମଧୁବାବୁ ନିତି ଯେପରି ପ୍ରାତଃକାଳରେ ଭ୍ରମଣ କରନ୍ତି, ସେପରି ବାହାରିଲେ । ତାଙ୍କ ସାଙ୍ଗରେ କୁମାରୀ ସୁଧାଂଶୁବାଳା ମଧ୍ୟ ଥିଲେ । ସେ ଦେଖିଲେ ବାଳକଟି ଫାଟକ ନିକଟରେ ଠିଆ ହୋଇଛି, ତାହାର ଗୋଡ଼ ଦୁଇଟି ଫୁଲିଯାଇଛି । ମଧୁବାବୁ ଏ ଦୃଶ୍ୟ ଦେଖି ଅବାକ୍

ହୋଇଯାଇଥିଲେ । ରାତ୍ରରେ ସେ ଯେଉଁ ସ୍ୱପ୍ନ ଦେଖିଥିଲେ ତାହା ସତ୍ୟରେ ପରିଣତ ହୋଇଥିଲା । ସୁଧାଂଶୁବାଲାଙ୍କୁ ସେ ରାତ୍ରରେ ଦେଖିଥିବା ସ୍ୱପ୍ନ କଥା କହିଲେ ଏବଂ ଭଗବାନଙ୍କଠାରେ ବିଶ୍ୱାସହିଁ ଏହାର କାରଣ ବୋଲି ବୁଝାଇଥିଲେ । ମଧୁବାବୁ ବାଳକଟିକୁ କ୍ଷମା ଦେଇଥିଲେ ।

ଦିନେ ଏକ ମକଦ୍ଦମାର ଅର୍ଜି ଲେଖିବା ସନ୍ଧାନରେ ମଧୁବାବୁ ସ୍ୱପ୍ନରେ ଯାହା ଦେଖିଥିଲେ, ତାହା ସତ୍ୟରେ ପରିଣତ ହୋଇଥିବା କଥା ସେ ତାଙ୍କର ଜୁନିଅର୍‌ମାନଙ୍କୁ ବହୁବାର କହିଥିଲେ । ଏହି ଗଳ୍ପଟି ଏହି ଗ୍ରନ୍ଥରେ ଅନ୍ୟତ୍ର ପ୍ରକାଶ ପାଇଛି ।

**"ମୁଁ ବାକ୍‌ପଟୁ, କିନ୍ତୁ ଚିନ୍ତାଶୀଳ ଲେଖକ ନୁହେଁ"** : ମଧୁବାବୁ ବେଳେବେଳେ ନିଜ ସମ୍ବନ୍ଧରେ ଏହି ମତ ବ୍ୟକ୍ତ କରୁଥିଲେ । ସେ ଆଳାପ-ଆଲୋଚନା, ବକ୍ତୃତା, ପ୍ରଭୃତିରେ ଅତି ପଟୁଥିଲେ । ବହୁ ଶାସ୍ତ୍ର, ପୁରାଣ, ଇତିହାସ ପ୍ରଭୃତିରୁ ଦୃଷ୍ଟାନ୍ତ ଦେଇ ବହୁ ସମୟ ଅକ୍ଲାନ୍ତଭାବରେ ଗଳ୍ପ କରି ବକ୍ତବ୍ୟକୁ ଚିତ୍ତାକର୍ଷକ କରି ପାରୁଥିଲେ ; କିନ୍ତୁ ସେ ନିଜ ଚିନ୍ତାଧାରାକୁ ନିଜେ କଲମ ଧରି ଲିପିବଦ୍ଧ କରିପାରୁ ନଥିଲେ; ସେ ଡାକୁଥିଲେ ଓ ଅନ୍ୟମାନେ ଲେଖୁଥିଲେ । ମଧୁବାବୁ ନିଜର ଏହି ଦୁର୍ବଳତାକୁ ଲକ୍ଷ୍ୟକରି କହୁଥିଲେ, "I am a restless talker, not pinned down to concentrated writing."

**ନିଜ ଜୀବନର ଫଳାଫଳ** : ସେ କହୁଥିଲେ, ବହୁତ ଦିନ ବଞ୍ଚିଲି ସିନା ଜୀବନ ବହୁତ ବ୍ୟର୍ଥ ହୋଇଛି—"I have lived too long, but too fruitless."

**ଆନ୍ତରିକତା ଓ ସମବେଦନା ପ୍ରକାଶ** : ନିଜର ଜୁନିଅର୍ ଓ ବନ୍ଧୁମାନଙ୍କ ପ୍ରତି ମଧୁବାବୁଙ୍କର ସବୁବେଳେ ଆନ୍ତରିକତା ଥିଲା । ବିପଦ ଆପଦ ବେଳେ ସେ ନିଜେ ବନ୍ଧୁଙ୍କ ପଛେ ଠିଆହୋଇ ଯାଉଥିଲେ । ସଦୁପଦେଶ ଓ ସମବେଦନା ଜଣାଇ ଦୁଃଖ ଲଘବ କରୁଥିଲେ ।

ଶ୍ରୀ ସଚ୍ଚିଦାନନ୍ଦ ଦାସ (ସ୍ୱାମୀ) ତାଙ୍କର ଜୁନିଅର ଥିଲେ । ଅତି ଅଳ୍ପ ବୟସରେ ସଚ୍ଚିଦାନନ୍ଦବାବୁଙ୍କର ସ୍ତ୍ରୀବିୟୋଗ ହୋଇଥିଲା । ସଚ୍ଚିଦାନନ୍ଦବାବୁ କୋମଳ ହୃଦୟର ଲୋକ ହେଲେ ମଧ୍ୟ ଉଦାସୀନ ଭାବ ଯୋଗୁଁ ଅଧୈର୍ଯ୍ୟ ହେଉ ନଥିଲେ । ସ୍ତ୍ରୀଙ୍କ ଶବ ସତ୍କାର ହେବା ପରେ ପରେ ମଧୁବାବୁ ସଚ୍ଚିଦାନନ୍ଦଙ୍କ ଘରକୁ ଆସି ନିଜର ସମବେଦନା ଜଣାଇ-ଥିଲେ, ପ୍ରିୟ ଜୁନିଅରଙ୍କୁ କୋଳରେ ବସାଇ ତାଙ୍କ ଲୁହ ପୋଛି ଦେଇଥିଲେ ଓ କେତେ ପ୍ରକାର ପ୍ରବୋଧ ବାକ୍ୟ ଶୁଣାଇଥିଲେ । ସଚ୍ଚିଦାନନ୍ଦଙ୍କ ପତ୍ନୀବିୟୋଗଜନିତ ଦୁଃଖକୁ ଦୂର କରିବାପାଇଁ ମଧୁବାବୁ ପ୍ରାୟ ପ୍ରତିଦିନ ତାଙ୍କ ଘରକୁ ଯାଉଥିଲେ ଓ ସାନ୍ତ୍ୱନା ଦେଉ-ଥିଲେ ।

ଏହି ସମୟରେ ଥରେ ମଧୁବାବୁ ବିଚିତ୍ରାନନ୍ଦବାବୁଙ୍କୁ କହିଲେ, "ତୁମେ ଏତେ ଭାଙ୍ଗି ପଡ଼ିଲେ କିପରି ଚଳିବ ? ତୁମେ ତ ବଙ୍କା, ସ୍ଥିରଚିତ୍ତ, ଅନ୍ୟାନ୍ୟ କାମରେ ମନଦିଅ । ଦେଶସେବା, ଜନସେବାରେ ନିତ୍ୟ କିଛିସମୟ ଦେଇ ଲାଗିଯାଅ । କିଛି ଉପାଧିକୁ ଆଶା କରନାହିଁ । କିଛି ସଞ୍ଚୟ ରଖିଯାଅ ନାହିଁ । ତୁମର ବଂଶଧରଙ୍କ କଥା ଚିନ୍ତା କରନାହିଁ ।" ବିଚିତ୍ରାନନ୍ଦବାବୁ ଓଡ଼ିଶାରେ ଜଣେ ବିଶିଷ୍ଟ ଓକିଲ । ତାଙ୍କର ରୋଜଗାର ଯଥେଷ୍ଟ । ସେ କେବେ ସଞ୍ଚୟ କଥା ଚିନ୍ତା କରିନାହାନ୍ତି । ସ୍ତ୍ରୀଙ୍କ ମୃତ୍ୟୁବେଳକୁ ତାଙ୍କର ଏକମାତ୍ର କନ୍ୟାଟି ଅତି ଶିଶୁ । ସଂସାର ଚଳିବା କଷ୍ଟକର ହେଲେ ମଧ୍ୟ ସେ ଆଉ ଦାର ପରିଗ୍ରହ କରିନାହାନ୍ତି । ଗୁରୁଙ୍କ କଥା ମାନି ଅତି ଅଳ୍ପ ବୟସରୁ ଜନହିତକର କାର୍ଯ୍ୟରେ ନିଜକୁ ନିଯୁକ୍ତ କରିଛନ୍ତି ।

**ଉଦାରତା, ହୃଦୟବତ୍ତା, ଅକାତର ଦାନ :** ମଧୁବାବୁ ଦାନରେ ସବୁବେଳେ ମୁକ୍ତହସ୍ତ ଥିଲେ । ଲୋକଙ୍କ ଦୁଃଖ ସେ କେବେ ସହିପାରୁ ନଥିଲେ । ବିପଦବେଳେ ସାହାଯ୍ୟ କରିବା, ଦୁଃଖୀରଙ୍କୀଙ୍କୁ ସାହାଯ୍ୟ କରିବା ତାଙ୍କର ବ୍ରତ ହୋଇଯାଇଥିଲା । ଏଥିରେ ସେ ଆନନ୍ଦ ଉପଭୋଗ କରୁଥିଲେ, କାରଣ ଏହି କାମକୁ ସେ ଭଗବାନଙ୍କ କାର୍ଯ୍ୟ ବୋଲି ଭାବୁଥିଲେ । ଅବଶ୍ୟ, ସତ୍ପାତ୍ରରେ ଦାନକୁ ସେ ଅଧିକ ସୁଖ ପାଉଥିଲେ ଏବଂ ଏହାକୁ ସେ ଗୃହସ୍ଥର ଧର୍ମସ୍ୱରୂପ ପାଳନ କରୁଥିଲେ ।

(୧) ମଧୁବାବୁଙ୍କର ପ୍ରାୟ ଅର୍ଦ୍ଧ-ଶତାବ୍ଦୀ-ବ୍ୟାପୀ ଓକିଲାତି ଭିତରେ ବହୁ ଯୁବକ ଓକିଲ ତାଙ୍କର ଜୁନିଅର ହୋଇଛନ୍ତି । ସାଧାରଣତଃ ପ୍ରଥମାବସ୍ଥାରେ ଜୁନିଅର୍ ଓକିଲଙ୍କ ରୋଜଗାର କମ୍ ଥାଏ । ଏହି କାରଣରୁ କେହି କେହି ଦୁଃଖକଷ୍ଟରେ ଚଳୁଥାଆନ୍ତି । ମଧୁବାବୁଙ୍କର ସୁଦୃଷ୍ଟି ସବୁବେଳେ ଏମାନଙ୍କ ଉପରେ ରହିଥାଏ ଓ ସେ ନିଜ ରୋଜଗାରରୁ କିଛି କିଛି ପିତୃସୁଲଭ ସ୍ନେହବୋଳା ଭାଷା ସହିତ ସେମାନଙ୍କୁ ଅର୍ପଣ କରିଥାଆନ୍ତି । ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ନିଜ ଜୀବନରେ ଏପରି ଘଟିଥିବା ନିଜେ ପ୍ରକାଶ କରିଛନ୍ତି ଏବଂ ଏଥିପାଇଁ ସେ ଗର୍ବ ମଧ୍ୟ ଅନୁଭବ କରିଛନ୍ତି ।" ମଧୁବାବୁ ଯେଉଁଦିନ ପ୍ରହରାଜଙ୍କୁ ଟିକିଏ ବିମର୍ଷ ଦେଖନ୍ତି, "ସେ ବୁଝିପାରନ୍ତି ଯେ ଅର୍ଥାଭାବହିଁ ଏହାର କାରଣ । ସେ ବାକ୍ସ ଖୋଲି ଖଣ୍ଡିଏ ନୋଟ୍ ଆଣି ପ୍ରହରାଜଙ୍କ ପକେଟରେ ଗୁଞ୍ଜି ଦେଇ କହନ୍ତି, "ଗୋପାଳ, ତୁମର ମୁହଁରୁ ମନ ସୁଖ ନ ଥିବା ମୁଁ ଜାଣିପାରୁଛି । ମନା କରନାହିଁ, ନିଅ ।"

(୨) ଥରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପିତା କଟକ ଯାଇ ମଧୁବାବୁଙ୍କୁ କିଛି ଟଙ୍କା ଧାର ମାଗିଲେ । ପ୍ରହରାଜଙ୍କ ଘର କଟକ ଜିଲ୍ଲାର ଏକ ପ୍ରଧାନ ଜମିଦାର ଘର । କିନ୍ତୁ ପରିବାର ପରିଚାଳନା ଓ ଜମିଦାରୀ ପରିଚାଳନାରେ ଶୃଙ୍ଖଳା ଅଭାବରୁ ବହୁ ସମୟରେ ପ୍ରହରାଜ ପରିବାର ଆର୍ଥିକ ସଙ୍କଟ ଭୋଗକରିଥାଆନ୍ତି । ମଧୁବାବୁ ପ୍ରହରାଜଙ୍କର ଓକିଲ ମଧ୍ୟ ଥିଲେ । ତାଙ୍କର ଅବସ୍ଥା ଦେଖି ମଧୁବାବୁଙ୍କର ଦୟା ହେଲା । ସେ ବିନା ଦ୍ୱିଧାରେ କିଛି

ଟଙ୍କା ଦେଲେ । ଭଦ୍ରତା ଖାତିରରେ ପ୍ରହ୍ଲାଦଙ୍କ ପିତା ଖଣ୍ଡେ ହେଣ୍ଡନୋଟ ଲେଖି ମଧୁବାବୁଙ୍କୁ ଦେଇଥିଲେ । କିଛି ଦିନ ପରେ ପ୍ରହ୍ଲାଦଙ୍କ ପିତା ଟଙ୍କାତକ ପୁଅଠାକୁ ପଠାଇଦେଇ ମନୁବାବୁଙ୍କୁ ଦେଇଦେବାକୁ କହିଲେ । ଗୋପାଳ ବାବୁ ସୁଧମୂଳ ମିଶାଇ ସବୁ ଟଙ୍କା ନେଇ ମଧୁବାବୁଙ୍କ ଆଗରେ ଥୋଇଦେଲେ । ମଧୁବାବୁ ହେଣ୍ଡନୋଟ୍‌ଟି ଉପରେ ସୁଧମୂଳ ସବୁ ଟଙ୍କା ପାଇଲେ ବୋଲି ପାଉତି ଲେଖିଦେଲେ । ହେଣ୍ଡ୍‌ନୋଟ୍ ସହି ସବୁ ଟଙ୍କା ଫେରାଇ ଦେଇ କହିଲେ, "ଗୋପାଳ, ପାଉତିଟି ବାପାଙ୍କୁ ଦେବ, ଟଙ୍କାତକ ତୁମେ ରଖିବ । ତୁମେ ନୂତନ ଜୀବନ ଆରମ୍ଭ କରିଛ । ଏତକ ତୁମକୁ ସାହାଯ୍ୟ କରିବ ।"

ଦେବାଳିଆ ଘୋଷଣା ପରେ ମଧ୍ୟ ତାଙ୍କର ମୁକ୍ତହସ୍ତ କେବେ ସଙ୍କୁଚିତ ହୋଇନଥିଲା ।

ପରପାଇଁ ଓ ନିଜ ସୌକ ପାଇଁ ମଧୁବାବୁଙ୍କ ହାତ ସବୁବେଳେ ମୁକ୍ତ ଥାଏ । ହାତରେ ପଇସା ଅଛି କି ନାହିଁ, ସେଥିପ୍ରତି ତାଙ୍କର ଖାତିର ନଥାଏ । ପିଲା କୁଟୁମ୍ବ ତ କେହି ନ ଥିଲେ, ସ୍ତ୍ରୀ ଯୌବନାବସ୍ଥାରୁ ମରିଯାଇଥିଲେ ଓ ମଧୁବାବୁ ଆଉ ବିବାହ କରିନଥିଲେ । ତାଙ୍କର ଯୁବକକାଳରୁ କଲିକତାର ବନ୍ଧୁ ଶ୍ରୀହାଜରାଙ୍କ କନ୍ୟା ଶୈଳବାଳାଙ୍କୁ କନ୍ୟାରୂପେ ପାଳନ କରିଥିଲେ ଏବଂ ନିଜ ପାଖରେ ରଖି ଉଚ୍ଚ ଶିକ୍ଷା ଦାନ କରିଥିଲେ । ଶୈଳବାଳା ଓ ତାଙ୍କ ଭଉଣୀ ସୁଧାଂଶୁବାଳା ହାଜରା ଉଭୟେ ମଧୁବାବୁଙ୍କ ବାସଭବନରେ ରହୁଥିଲେ । ମଧୁବାବୁ ସେମାନଙ୍କୁ ଅତି ସ୍ନେହ କରୁଥିଲେ ଓ ନିଜର ପିଲାଙ୍କ ପରି ବ୍ୟବହାର କରୁଥିଲେ । ଏମାନଙ୍କ ପ୍ରତି ମଧୁବାବୁଙ୍କର ଆଦର ଯତ୍ନର ଅଭାବ ନଥିଲା । ସେମାନଙ୍କର ସମସ୍ତ ଖର୍ଚ୍ଚ ସେ ନିଜେ ବହନ କରୁଥିଲେ ।

ଘରେ ଘୋଡ଼ାଗାଡ଼ି ଦୁଇ ତିନିଟା ଥାଏ । ଦେଶ ବିଦେଶରୁ ପ୍ରକାର ପ୍ରକାର ରେସ୍ ଘୋଡ଼ା କିଣିଆଣି ଘରେ ଅସ୍ତାବଲରେ ରଖିଆଆନ୍ତି । ପୂର୍ବେ କଟକ ସହରରେ ଚାଉଳିଆଗଞ୍ଜ ଅଞ୍ଚଳର ଚନ୍ଦ୍ରଗ୍ରନ୍ଦ ପଡ଼ିଆରେ ଘୋଡ଼ାଦୌଡ଼ ଖେଳ (horse race) ହେଉଥାଏ । ଓଡ଼ିଶା ଓ କଲିକତାର ବହୁ ହାକିମହୁକୁମା, ଖେଳପ୍ରିୟ ଧନୀ ଓ ସଉକୀ ବ୍ୟକ୍ତି ଏ ଖେଳରେ ଯୋଗ ଦେଉଥିଲେ । କିଏ ଅମୀର ହୋଇଯାଉଥିଲା ତ କିଏ ଫକୀର ହୋଇଯାଉଥିଲା । ଇଂରେଜମାନେ ଭାରତରେ ଏ ଘୋଡ଼ାଦୌଡ଼ ଜୁଆଖେଳ ବିଶେଷ ଭାବରେ ପ୍ରଚାର କରିଥିଲେ । ହାକିମହୁକୁମା ଓ ବଡ଼ ବଡ଼ ଧନୀ ବ୍ୟବସାୟୀ ପ୍ରଭୃତିଙ୍କୁ ଭେଟିବା ପାଇଁ ଏ ଗୋଟିଏ ସୁଯୋଗର ସ୍ଥାନ ବୋଲି ଧରାଯାଉଥିଲା । ମଧୁବାବୁ ଘୋଡ଼ା ସଉକରେ ମଧ୍ୟ ବହୁ ଅର୍ଥ ବ୍ୟୟ କରିଛନ୍ତି । ଏକେ ତ ଘରେ ପାଣି ପରି ପଇସା ଖର୍ଚ୍ଚ, ସେଥିରେ ପୁଣି ଏସବୁ ସଉକ—ବୋଝ ଉପରେ ନଳିତାବିଡ଼ା ପରି ହେଉଥିଲା ।

(ଗ) ସ୍ୱୟଂକୃତ ଅର୍ଥ-ଅନଟନ ପ୍ରତି ତାଙ୍କର ଭ୍ରୂକ୍ଷେପ ନଥାଏ । "ମଧୁବାବୁଙ୍କ ଦ୍ୱାରରୁ କେହି ରିକ୍ତହସ୍ତରେ ଫେରିଯିବ ନାହିଁ"—ଏହି ନୀତିକୁ ସେ ପାଳନ କରିବାପାଇଁ ବରାବର

ଚେଷ୍ଟା କରୁଥିଲେହେଁ ଅଯୋଗ୍ୟ, ଅଳସୁଆ ଓ ଅପାତ୍ରକୁ ଦାନ ଦେବାକୁ ସେ କେବେ-ହେଲେ ସୁଖପାଉନଥିଲେ ।

ବହୁଦିନ ତଳର କଥା, ଖ୍ରୀ: ୧୯୧୫-୧୬ ହେବ । ମଧୁବାବୁଙ୍କର ଟଙ୍କା ଅଭାବ ପଡ଼ିଥାଏ । ରେଭେନ୍‌ସା କଲିଜିଏଟ୍‌ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବ ହେଉଥାଏ । ମଧୁବାବୁ ପିଲାଦିନେ ଏହି ସ୍କୁଲରେ ପାଠ ପଢ଼ିଥିଲେ, ଏହି ସୂତ୍ରଟି ଧରି ଛାତ୍ରମାନେ ତାଙ୍କଠାରେ ପହଞ୍ଚିଲେ । ପିଲାମାନେ ମଧୁବାବୁଙ୍କୁ କହିଲେ, "ଆମ ସ୍କୁଲରେ ପ୍ରତିବର୍ଷ ପୁରସ୍କାର ବିତରଣୀ ଉତ୍ସବ ହେଉଛି; କିନ୍ତୁ ଏ ବର୍ଷ ଉତ୍ସବ ବନ୍ଦ ହେବା ଉପରେ । ସରକାର କିଛି ଗ୍ରାଣ୍ଟ ଦେଉନାହାନ୍ତି । ଆମ୍ଭେମାନେ ମଧ୍ୟ ଉପଯୁକ୍ତ ପରିମାଣରେ ଚାନ୍ଦା ଆଦାୟ କରିପାରୁନାହୁଁ । ଆପଣ ତ ଆମ ସ୍କୁଲର ପୁରାତନ ଛାତ୍ର, ସେଥିପାଇଁ ଆପଣଙ୍କଠାକୁ ଆସିଲୁ ।" ମଧୁବାବୁ ପଚାରିଲେ, "ତୁମର କେତେ ଟଙ୍କା ଦରକାର ?" ଛାତ୍ରମାନେ କହିଲେ, "ପ୍ରାୟ ୫୦୦ ଟଙ୍କା ।" ବୃଦ୍ଧ ମଧୁବାବୁ କିଛି ଉତ୍ତର ନ ଦେଇ ଟଙ୍କା ବାକ୍‌ସଟିକୁ ଆଣିବା ପାଇଁ ଚାକରକୁ କହିଲେ । ବାକ୍‌ସ ଭିତରେ ପ୍ରାୟ ପାଞ୍ଚଶହ ଟଙ୍କା ଥିଲା । ସେ ସବୁ ତକ ଟଙ୍କା ଛାତ୍ରମାନଙ୍କୁ ଦେଇ କହିଲେ, "ଆଉ କାହାପାଖକୁ ଯାଇ ମାଗିବ ନାହିଁ । ମଗାମଗିରେ ସମୟ ନଷ୍ଟ କରନାହିଁ ।" ପିଲାଙ୍କ ଆନନ୍ଦ କହିଲେ ନ ସରେ । ସମସ୍ତେ ପ୍ରଣାମ କରି ଫେରିଲେ ।

ଘରର ଜଣେ ଆତ୍ମୀୟ ଏହା ଦେଖି ମଧୁବାବୁଙ୍କୁ କହିଲେ, "ବାବା, ଏତିକି ଟଙ୍କା ତ ଥିଲା । ଘରଖର୍ଚ୍ଚ ଅଛି, ପୁଣି ରେଭେନ୍‌ସା କଲେଜକୁ ହଜାରେ ଟଙ୍କା ଚାନ୍ଦା ଦେବେ ବୋଲି ଆପଣ କହିଛନ୍ତି; ତାକୁ ମଧ୍ୟ ଦେବାକୁ ହେବ । ସବୁଟଙ୍କା ନଦେଇଥିଲେ ଭଲହୋଇଥାନ୍ତା ।" ମଧୁବାବୁଙ୍କ ମନରେ ଏ କଥା ଆଘାତ ଦେଲା । ସେ ରାଗିଯାଇ ଉତ୍ତର କଲେ, "ମୋ ଟଙ୍କା ମୁଁ ଦେଲି, ତୋ ବାପାର କଣ ଗଲା ? ଏଥିରେ ଆତ୍ମୀୟ ନିତାନ୍ତ ଦୁଃଖିତ ହେଲେ । ମଧୁବାବୁ ହଠାତ୍ ରାଗିଯାଆନ୍ତି । ସେ କେବେହେଲେ ପ୍ରତିବାଦ ସହିପାରନ୍ତି ନାହିଁ । ସମୟସମୟରେ ଗାଳିଗୁଲଜ ମଧ୍ୟ କରନ୍ତି, କିନ୍ତୁ କିଛିକ୍ଷଣ ପରେ କ୍ରୋଧ ଶାନ୍ତ ହେଲେ, ଦୁଃଖିତ ହୁଅନ୍ତି କ୍ଷମା ମଧ୍ୟ ମାଗନ୍ତି । ଏ ମହତ୍ ଗୁଣ ଯୋଗୁଁ ମଧୁବାବୁଙ୍କ ଗାଳିକୁ କେହି ଧରନ୍ତି ନାହିଁ ।

ଚରିତ୍ର ଭିତରେ ଏତିକି ଖଟାମିଠା । ଖଟା ଯୋଗୁଁ ସର୍ବସ୍ୱାନ୍ତ ହୋଇଥିଲେ; ମିଠାଯୋଗୁ ପୂଜା ପାଇଥିଲେ ।

ରେଭେନ୍‌ସା କଲେଜ ଓ ରେଭେନ୍‌ସା କଲିଜିଏଟ୍‌ ସ୍କୁଲର ବହୁ ଉତ୍ସବକୁ ସେ ବିଭିନ୍ନ ସମୟରେ ଯଥେଷ୍ଟ ପରିମାଣରେ ଧନ ଦାନକରିଥିଲେ ।

(୪) ଅକାତର ଦାନର ଆଉ ଗୋଟିଏ ଘଟଣା—ପ୍ରାୟ ପଚାଶ ବର୍ଷ ତଳର କଥା । କଟକ ସ୍କୁଲ ଛାତ୍ରମାନଙ୍କର ଏକ ସ୍ପୋଟସ୍ କମିଟି ବା ଖେଳ କମିଟି ଥାଏ ।

କମିଟିର ଛାତ୍ରମାନେ ତିନିଶହ ଟଙ୍କାର ଏକ ଯୋଜନା ଅଟକଳ କରିଥାଆନ୍ତି । ବହୁତ ଚେଷ୍ଟା କରି ସେମାନେ ପଚିଶି ଟଙ୍କା ପର୍ଯ୍ୟନ୍ତ ଚାନ୍ଦା ଆଦାୟ କରିପାରିଥାଆନ୍ତି । ଦଳ ବାନ୍ଧି ଛାତ୍ରମାନେ ମଧୁବାବୁଙ୍କ କୋଠିକୁ ଗଲେ । ଦେଖା ହେବା ପରେ ମଧୁବାବୁ ପିଲାମାନଙ୍କୁ ପରଦିନ ଏଗାରଟା ବେଳେ ତାଙ୍କୁ ପୁଣି ଦେଖା କରିବା ପାଇଁ କହିଲେ । ପରଦିନ ଠିକ୍ ସମୟ ୧୧ଟା ପୂର୍ବରୁ ପିଲାମାନେ ଉପସ୍ଥିତ ହୋଇ ବାରଣ୍ଡାରେ ଅପେକ୍ଷା କରି ରହିଲେ ।

ସେତେବେଳକୁ ମଧୁବାବୁ କୌଣସି ଏକ ରାଜାଙ୍କ ମକଦ୍ଦମାର କାଗଜପତ୍ର ଦେଖୁଥାଆନ୍ତି ଓ ରାଜାଙ୍କ ସହିତ ପରାମର୍ଶ କରୁଥାଆନ୍ତି । ଏଗାରଟା ବାଜିଲା, ବାରଟା ବାଜିଲା, ଗୋଟାଏ ବାଜିଲା, ତେବେକେ ମଧୁବାବୁଙ୍କ ସହିତ ଦେଖା କରିବା ସୁବିଧା ହେଲାନାହିଁ । ପିଲାମାନେ ଆଉ ସମ୍ଭାଳି ପାରିଲେ ନାହିଁ । ମଧୁବାବୁଙ୍କ ବୈଠକଖାନା ଭିତରେ ପଶି ଠିଆହେଲେ । ଏମାନଙ୍କୁ ଦେଖି ମଧୁବାବୁ ଟିକିଏ ରାଗିଯାଇ କହିଲେ, "ତୁମ୍ଭମାନଙ୍କୁ କେତେବେଳେ ଆସିବାପାଇଁ କହିଥିଲି ?" ପିଲାମାନେ କହିଲେ, "ଏଗାରଟା ।" "ତାହାହେଲେ ତୁମ୍ଭେମାନେ ଏତେ ଡେରିରେ ଆସିଲ କାହିଁକି ? ତୁମର କଣ ସମୟ-ଜ୍ଞାନ ନାହିଁ ।" ମଧୁବାବୁ ସମୟ ଠିକ୍ ରଖିବା ପାଇଁ ସବୁବେଳେ ଜିଦ ଧରନ୍ତି । ସମୟାନୁବର୍ତ୍ତିତା ପ୍ରତି ଦୃଷ୍ଟି ନଦେଲେ ସମାଜର ଉନ୍ନତି ଅସମ୍ଭବ ବୋଲି ସେ ସବୁବେଳେ କହୁଥିଲେ ।

ପିଲାମାନେ କହିଲେ, "ଆମ୍ଭେମାନେ ଠିକ୍ ସମୟରେ ଆସିଥିଲୁ । କିନ୍ତୁ ଆପଣ ରାଜାଙ୍କ ସହିତ ମକଦ୍ଦମା ବିଷୟରେ ଆଲୋଚନା କରୁଥିବାରୁ ଆପଣଙ୍କୁ ବ୍ୟସ୍ତ କରିବାକୁ ମନ ବଳିଲାନାହିଁ । ଆମର ମଧ୍ୟ ଆଉ ସମୟ ନାହିଁ; ଅଳ୍ପ ସମୟ ରହିଲା, ଚାନ୍ଦା ମାଗିବା ପାଇଁ ଅନ୍ୟତ୍ର ଯିବାକୁ ହେବ ।"

ମଧୁବାବୁ କହିଲେ, "ତୁମ୍ଭେମାନେ ଆସି ମୋତେ ମନେ ପକାଇଦେବ ବୋଲି ଆଶା କରିଥିଲି । ବୈଠକ ଭିତରକୁ ତୁମେ ଆସି ମୋତେ ୧୧ଟା ବେଳେ ଦେଖାକରି ପାରିଥାଆନ୍ତ । ମୋର ଯେଉଁ ବ୍ୟବସାୟ ସେଥିରେ ସମୟଜ୍ଞାନ ରହିବା ସମ୍ଭବ ନହେଲେ ମଧ୍ୟ ଚେଷ୍ଟା କରିବାକୁ ହେଉଛି ।" ସେ ଟିକିଏ ରସିକତା କରି କହିଲେ, "ପିଲେ, ତୁମ୍ଭେ-ମାନେ ତ ମୋ ନାତି ଭଳି । ତୁମକୁ କହିଲେ କିଛି ଦୋଷ ନାହିଁ । ଦାସୀ ଘରକୁ ରସିକ ଯିବା କଥା ଜାଣ ? ରସିକକୁ ଯିବାପାଇଁ ଦାସୀ ଯେଉଁ ସମୟ ଦେଇଥିବ, ରସିକ ଠିକ୍ ସମୟରେ ନିଶ୍ଚୟ ପହଞ୍ଚିବ । ସମୟର ବ୍ୟତିକ୍ରମ ହେଲେ ନିରାଶ ହେବାକୁ ହୁଏ । ଦାସୀକି ରସିକ ମଧ୍ୟ ପଇସା ଦେବନାହିଁ; ଦାସୀ ମଧ୍ୟ ଅନ୍ୟ ରସିକ ସହିତ ସମୟ କାଟିବ ।" ପିଲାମାନେ ମୁରୁକି ମୁରୁକି ହସିବାରୁ ବୁଢ଼ା ପୁଣି ହସି ହସି କହିଲେ, "ଏହା କହିଲି ବୋଲି ତୁମ୍ଭେ କଳ୍ପିବୁଛ କି ଏ ବୁଢ଼ା ଜଣେ ରସିକ ? ନାହିଁ ନାହିଁ ।" ସମସ୍ତେ ହସିଲେ ।

ଏହାପରେ ମଧୁବାବୁ ପଚ୍ଛରିଲେ, "ପିଲେ କେତେ ଟଙ୍କା ତୁମର ଦରକାର ? ପିଲାଏ କହିଲେ ଟ୩୦୦ ଦରକାର, ଏପର୍ଯ୍ୟନ୍ତ ଟ୨୫ ପାଇଛୁ ।" ମଧୁବାବୁ ଟ୩୦୦ ଦେଇ ପିଲାମାନଙ୍କୁ ବିଦାକଲେ । ପିଲାଙ୍କ ଆନନ୍ଦ କହିଲେ ନ ସରେ ।

**ଭିକାରୀ, ଅନ୍ଧ ଓ ପାଗଳଙ୍କ ପ୍ରତି ଦୟା** : ମଧୁବାବୁଙ୍କର ଅନ୍ଧ ଗାୟକ ଓ ଭିକାରି ପ୍ରତି ବିଶେଷ ଦୟା ଥାଏ । ଅନ୍ଧ ଗୀତ ଗାଇ ଗାଇ ଭିକ୍ଷା କରୁଥିବା ଦେଖିଲେ, ସେ ତାହା ପାଖକୁ ଯାଆନ୍ତି, ତାହାର ପରିଚୟ, ଘରଖବର, ଦୁଃଖର କାରଣ ସବୁ ବୁଝନ୍ତି । ଭିକ୍ଷା ମଧ୍ୟ ଦିଅନ୍ତି । ବନ୍ଧୁମାନଙ୍କୁ କହନ୍ତି, "ବିଚାରି କେତେ ଦୁଃଖକଷ୍ଟ ସହୁଛି । ଦିନେ ୟୁରୋପର ବିଖ୍ୟାତ ମହାକବି ହୋମର୍ (Homer) ମଧ୍ୟ ଅନ୍ଧ ଥିଲେ । କିଏ ଜାଣେ ଏ ଲୋକଟି ଭିତରେ ସେପରି କବି ପ୍ରତିଭା ନାହିଁ !"

ସାଧାରଣରେ ଭିକାରିକୁ ଦେଖିଲେ ଦୁଷ୍ଟ ପିଲାମାନେ ଦୂର୍ ଦୂର୍ ମାର୍ ମାର୍ କରନ୍ତି, ବଡ଼ମାନେ ମଧ୍ୟ ବେଳେବେଳେ ବିରକ୍ତ ହୁଅନ୍ତି । ଭିକାରିଙ୍କ ପ୍ରତି କେହି ବିରକ୍ତ ହେଉଥିବା ଦେଖିଲେ ମଧୁବାବୁଙ୍କ ମନରେ କଷ୍ଟ ହୁଏ । ସେ ଭିକାରିକୁ ଡାକି ତାର ଦୁଃଖକଷ୍ଟର କାହାଣୀ ଶୁଣୁଥିଲେ, ତାକୁ ଭିକ୍ଷା ଦେଉଥିଲେ ଏବଂ ସାନ୍ତ୍ୱନା ମଧ୍ୟ ଦେଉଥିଲେ ।

ସାଧାରଣତଃ ପାଗଳଙ୍କୁ ଦେଖିଲେ, ଲୋକେ ପାଖରେ ପୂରେଇ ଦିଅନ୍ତି ନାହିଁ । ମଧୁବାବୁ ପାଗଳଙ୍କୁ ଦେଖିଲେ ବଡ଼ ବିକଳ ହୁଅନ୍ତି । ତାକୁ ପାଖରେ ବସାଇ ତା'ର ପାଗଳାମିର କାରଣ ଅନୁସନ୍ଧାନ କରନ୍ତି । ମାନସିକ ଅବସ୍ଥା, ଚାଲିଚଳଣି ଲକ୍ଷ୍ୟ କରନ୍ତି । ସେ କହୁଥିଲେ, "ପାଗଳକୁ ହତାଦର ନକରି ତାର ମନସ୍ତତ୍ତ୍ୱ ବୁଝିବା ଦରକାର । ଏଥିରେ ପାଗଳ ଟିକିଏ ଶାନ୍ତି ପାଏ ଏବଂ ପାଗଳାମିର କାରଣ ମଧ୍ୟ ଜଣାପଡ଼େ । ଏହି ସୂତ୍ରରେ ଚିକିତ୍ସା ହେଲେ ସେ ଭଲହୋଇଯିବାର ମଧ୍ୟ ସମ୍ଭାବନା ଅଛି । କେତେ ଭଲ ଭଲ ଲୋକ ମଧ୍ୟ ପାଗଳ ହୋଇ ବୁଲନ୍ତି । ଉଚିତ ବ୍ୟବହାର ପାଇଲେ ତାଙ୍କର ଟିକିଏ ଉପକାର ହୁଏ ।"

**(୭) ଗରିବଙ୍କୁ ସାହାଯ୍ୟ** : ଗଞ୍ଜାମ ଜିଲ୍ଲାର ଘୁମୁସର ଜମିଦାରୀ ରାଜାଙ୍କ ମେଲି ପରେ ଖାସ୍ ହୋଇଯିବାରୁ ତାଙ୍କ କୁଟୁମ୍ବର ଲୋକେ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଚାଲିଯାଇଥିଲେ । ସେମାନଙ୍କ ଭିତରୁ ଏକ ଶାଖା କଟକ ସହରସ୍ଥ ମାନସିଂହପାଟଣାରେ ବସବାସ କରି ରହିଥିଲେ । ଏମାନଙ୍କର ପଟିଆ ରାଜାଙ୍କ ସହିତ ବୈବାହିକ ବନ୍ଧୁତ୍ୱ ଥିଲା । ଚୂଡ଼ଙ୍ଗ ଦହ (ବାରଙ୍ଗ ନିକଟ, ବର୍ତ୍ତମାନର ବୃହତ୍ତ ନନ୍ଦନକାନନ ଅଞ୍ଚଳର ଅଂଶବିଶେଷ) ବହୁ ମାଇଲ ଲମ୍ବା । ଏଥିରୁ କେତେକ ଭାଗ କାଳକ୍ରମେ ପୋତି ହୋଇ ଆସିଥିଲା । ସେତେବେଳେ ଏସବୁ ଅଞ୍ଚଳ ଦୁର୍ଗମ ଥିଲା । ଦହର ପାଣି ଥିବା ଅଂଶରେ କେଉଟମାନେ ମାଛମାରି ଜୀବିକା ନିର୍ବାହ କରୁଥିଲେ । ଅଳ୍ପ ପାଣି ଥିବା ଅଞ୍ଚଳକୁ ପୋତାଇଦେଇ ଧାନ ଜମିରେ

ପରଣତ କରବାକୁ ଘମୁସର ବଂଶର କଟକବାସୀ ଜଣେ ଭଦ୍ରବ୍ୟକ୍ତ ଉଦ୍ୟମ କରଥିଲେ ଏବଂ ପଟ୍ଟା ସୂତ୍ରରେ ତାଙ୍କୁ ଏହ ଅଞ୍ଚଳରୁ ପ୍ରାୟ ୫୦ (ପଞ୍ଚାଶ) ଏକର ଜମି ଦେବାପାଇଁ ସରକାରଙ୍କୁ ଦରଖାସ୍ତ କରଥିଲେ । ଜିଲ୍ଲା ହାକମ ଓ କମିଶନର ଏହ ସନ୍ତସନ୍ତିଆ ପଡ଼ିଆ ଅଞ୍ଚଳଟି ଦରଖାସ୍ତକାରୀଙ୍କୁ ହସ୍ତାନ୍ତର କରଦେବା ପାଇଁ ଅନୁମତ ଦେଇ ସାରଥିଲେ । କେଉଟମାନେ ଏଥିରେ ଆପତ୍ତି କରୁଥିଲେ; କନ୍ତୁ ହାକମମାନେ ଏହ ଆପତ୍ତି ଗ୍ରହଣ କରନଥିଲେ । ଗରବ କେଉଟମାନେ ନରାଶ ହୋଇ ମଧୁବାବୁଙ୍କ ନକଟରେ ଉପସ୍ଥିତ ହୋଇ ଗୁହାର କରଥିଲେ । ସେମାନଙ୍କର ଜୀବକା ଧ୍ୱଂସ ପାଇଯାଉଥିବା ଦର୍ଶାଇ ସେମାନେ ତାଙ୍କଠାରେ ଶରଣ ପଶିଥିଲେ । ଏ ଗରବ ଲୋକଙ୍କୁ ସାହାଯ୍ୟ କରବାପାଇଁ ମଧୁବାବୁ ପ୍ରତଶ୍ରୁତ ଦେଲେ । ସ୍ଥାନୀୟ ହାକମମାନଙ୍କୁ ପଟ୍ଟା ଦେବାଦ୍ୱାରା ଶହ ଶହ ଲୋକ କପର ବୃତ୍ତିଚ୍ଛେଦ ହୋଇଯାଉଛନ୍ତ, ମଧୁବାବୁ ତାହା ବୁଝାଇଥିଲେ । ପ୍ରାଦେଶିକ ସରକାରଙ୍କଠାରେ ମଧ୍ୟ ଆପତ୍ତି ଜଣାଇ ସେ ଯୁକ୍ତ ସମ୍ବଳିତ ଦାବୀପତ୍ର କଲିକତା ପଠାଇଲେ । ସରକାର ମଧୁବାବୁଙ୍କ ଯୁକ୍ତିକୁ ଗ୍ରହଣ କର ଉକ୍ତ ଜମି ପଟ୍ଟା ଦେବାକୁ ମନା କରଦେଲେ । ଗରବ କେଉଟମାନେ ଏହ ସାହାଯ୍ୟ ପାଇ ଉପକୃତ ହୋଇଥିଲେ ।

(୭) **ଛାତ୍ରଙ୍କ ପ୍ରତ ସ୍ନେହ** : ଥରେ କଟକ ଜିଲ୍ଲାର ଦୂର ଅଞ୍ଚଳର ଗୋଟିଏ ହାଇସ୍କୁଲର ପୁରସ୍କାର ବତରଣୀ ଉତ୍ସବରେ ସଭାପତତ୍ୱ କରବାପାଇଁ ମଧୁବାବୁଙ୍କୁ ନମନ୍ତ୍ରଣ କରାଯାଇଥିଲା । ଛାତ୍ରମାନେ ତାଙ୍କୁ ଭାଷଣ ଦେବାକୁ ମଧ୍ୟ ଅନୁରୋଧ କରଥିଲେ । କାଳେ ମଧୁବାବୁ ଦୂରତା କାରଣ ଦେଖାଇ ନ ଆସିବେ, ଏହ ଆଶଙ୍କାରେ ପିଲାମାନେ ନମନ୍ତ୍ରଣପତ୍ର ପ୍ରେରଣରେ ଏକ ଅଭନବ ପନ୍ଥା ବ୍ୟବହାର କରଥିଲେ । ମଧୁବାବୁଙ୍କଠାରୁ କଛି ଚାନ୍ଦା ଆଦାୟ କରବା ମଧ୍ୟ ଅନ୍ୟ ଏକ ଲକ୍ଷ୍ୟ ଥିଲା । ମଧୁବାବୁ ନଆସିଲେ ଚାନ୍ଦା ମଧ୍ୟ ମିଳବା ସମ୍ଭାବନା ନଥିବା ଆଶଙ୍କାକର ଛାତ୍ରମଣ୍ଡଳୀର ସମ୍ପାଦକ ଟ୧୦୦ (ଶହେ ଟଙ୍କା)କୁ ଭି. ପି.କର ନମନ୍ତ୍ରଣ ପତ୍ରଟି ମଧୁବାବୁଙ୍କଠାକୁ ପଠାଇଦେଲେ । ମଧୁବାବୁ ଭି. ପି. ଚଠି ଦେଖି ପିଲାଙ୍କ ବୁଦ୍ଧିକୁ ପ୍ରଶଂସା କରଥିଲେ ଏବଂ ସେମାନଙ୍କ ଉଦ୍ଦେଶ୍ୟଟି ମଧ୍ୟ ଅନୁମାନ କରନେଇଥିଲେ । କଛି ଦ୍ୱିଧା ନକର ଆନନ୍ଦ ମନରେ ସେ ଶହେ ଟଙ୍କା ଦେଇ ଭି. ପି. ହୋଇଥିବା ନମନ୍ତ୍ରଣ ପତ୍ରଟି ରଖିଲେ ଏବଂ ବନ୍ଧୁମାନଙ୍କୁ କୌତୁକରେ ଏ ଘଟନାଟି ବର୍ଣ୍ଣନା କରଥିଲେ । ଯେଉଁ ବାଳକଟି ଭି. ପି କରଥିଲା, ତାର ବୁଦ୍ଧି ଓ ସାହସକୁ ମନେ ମନେ ବହୁ ପ୍ରଶଂସା କରଥିଲେ । "He is an ideal boy" (ସେ ଜଣେ ଆଦର୍ଶ ବାଳକ) ବୋଲି ବନ୍ଧୁମାନଙ୍କୁ କହଥିଲେ ।

(୮) **ଶିଶୁ ପ୍ରତ ସ୍ନେହ** : ମଧୁବାବୁ ଶିଶୁମାନଙ୍କୁ ଅତ ସ୍ନେହ କରୁଥିଲେ । ଗ୍ରୀଷ୍ମମାସ ସମୟରେ କଟକସ୍ଥ ୟୁରୋପୀୟାନ୍ ସ୍କୁଲ ଓ କନ୍‌ଭେଣ୍ଟର ଛାତ୍ରଛାତ୍ରୀମାନଙ୍କୁ ନମନ୍ତ୍ରଣ କର ଭୋଜି, ଜଳଖିଆ ଦେଉଥିଲେ । ଥରେ ତାଙ୍କଠାରେ ସେହ ସମୟକୁ ବେଶି ଟଙ୍କା ନଥିଲା । ତାଙ୍କୁ ତାଙ୍କ ଆତ୍ମୀୟମାନେ ଏହ ଭୋଜିକୁ ଏଥର ନକର ଅନ୍ୟ ସମୟକୁ

ଘୁଞ୍ଚାଇଦେବା ପାଇଁ ପରାମର୍ଶ ଦେଲେ । ମଧୁବାବୁ କହିଲେ, "ପିଲାମାନେ ସମ୍ବର୍ଦ୍ଧନା ପାଇଁ ଚାହିଁବସିଥିବେ । ସେମାନଙ୍କୁ ମୁଁ କିପରି ନାହିଁ କରିଦେବି ?" ନିଜର ଆର୍ଥିକ ଅନଟନ ନିମନ୍ତେ ସେ ଦୁଃଖ ପ୍ରକାଶ କରି କହିଲେ, "ଏ କାର୍ଯ୍ୟ କେବେହେଲେ ଈଶ୍ୱର ବନ୍ଦ କରିବେ ନାହିଁ । ନିଶ୍ଚୟ ପଇସାର ବ୍ୟବସ୍ଥା କରିବେ ।" ତାଙ୍କର ବିଶ୍ୱାସ କାର୍ଯ୍ୟରେ ପରିଣତ ହେଲା । ସେହିଦିନ ତାଙ୍କର ଜଣେ ବନ୍ଧୁ ଟ୫୦୦ (ପାଞ୍ଚଶହ) ତାଙ୍କଠାକୁ ପଠାଇ ଦେଇଥିଲେ । ମଧୁବାବୁଙ୍କଠାକୁ ସେହି ବନ୍ଧୁ ଲେଖିଥିଲେ, "ମୋ ଅପେକ୍ଷା ଆପଣ ଏ ଟଙ୍କାକୁ ଅଧିକ ପୁଣ୍ୟକାମରେ ଲଗାଇ ପାରିବେ ।" କହିବା ବାହୁଲ୍ୟ, ମଧୁବାବୁ ଏ ଟଙ୍କାର ଆଗମନକୁ ଭଗବାନଙ୍କ କୃପା ବୋଲି ବିଶ୍ୱାସ କରିଥିଲେ ଏବଂ ଆତ୍ମୀୟମାନଙ୍କୁ ଈଶ୍ୱର ବିଶ୍ୱାସର ମହିମା ବୁଝାଇଥିଲେ । ସେହି ଟଙ୍କାରେ ମଧୁବାବୁ ପିଲାମାନଙ୍କପାଇଁ ଭଲ ଖାଇବା ବ୍ୟବସ୍ଥା କରିଥିଲେ ଏବଂ ପିଲାମାନେ ଆନନ୍ଦରେ ଏଥିରେ ଯୋଗଦାନ କରିଥିଲେ । ଭୋଜନ ବ୍ୟତୀତ ଅଧିକା କିଛି ଉପହାର ମଧ୍ୟ ସେମାନଙ୍କୁ ଦିଆଯାଇଥିଲା ।

(୯) **ପ୍ରତି ରବିବାର ଦିନ ଦାନ :** ପ୍ରତି ରବିବାର ଦିନ ମଧୁବାବୁ ଗରିବମାନଙ୍କୁ କିଛି କିଛି ଦାନ କରୁଥିଲେ । ରୋଜଗାର ଭଲ ଥିଲାବେଳେ ଯେଉଁ ପରିମାଣରେ ଦାନ ଦିଆଯାଉଥିଲା, ଅଭାବବେଳେ ମଧ୍ୟ ତାହା ହ୍ରାସ ପାଇ ନଥିଲା । ଥରେ ତାଙ୍କର ଜଣେ ଆତ୍ମୀୟ କହିଲେ, "ସବୁବେଳେ ରବିବାର ଦିନ ଦାନଦେବା ଆଉ ସୁବିଧା ହେବ ବୋଲି ମୁଁ ଭାବୁନାହିଁ । ସାପ୍ତାହିକ ଦାନଟି ବନ୍ଦ କରିଦିଅନ୍ତୁ । ଗରିବ ଲୋକଙ୍କର ଗୋଟିଏ ତାଲିକା କରି କିଛି ଅର୍ଥ ମାସକୁ ସେମାନଙ୍କୁ ଦିଆଯାଉ ।" ଏପରି ହେଲେ ପ୍ରତି ସପ୍ତାହରେ ଅର୍ଥ ଯୋଗାଡ଼ କରିବା ଜଞ୍ଜାଳ ତୁଟିଯିବ, ଏହାହିଁ ଏହି ପରାମର୍ଶର ତାତ୍ପର୍ଯ୍ୟ । ସେତେବେଳକୁ ମଧୁବାବୁ ବୃଦ୍ଧ ହୋଇଯାଇଥାଆନ୍ତି, କୋର୍ଟକୁ ବେଶି ଯାଇପାରନ୍ତି ନାହିଁ । ଫଳରେ ଅର୍ଥର ଅଭାବ ହୁଏ; କିନ୍ତୁ ଖର୍ଚ୍ଚର ପରିମାଣ ଓ ପ୍ରକାର ପୂର୍ବପରି ରଖିବା ବୃଦ୍ଧଙ୍କର ଇଚ୍ଛା ଥାଏ । ଅର୍ଥାଭାବରୁ ସତ୍‌କାର୍ଯ୍ୟରେ ବାଧା ପଡ଼ିବା ସ୍ୱାଭାବିକ ହେଲେ ମଧ୍ୟ ବୃଦ୍ଧ ଏହା ସହିପାରୁନଥିଲେ । ସେ ଅତି ମନକଷ୍ଟରେ କହିଲେ, "ଏ ସତ୍‌କାର୍ଯ୍ୟ ବନ୍ଦ କରିବା ଅପେକ୍ଷା ମୃତ୍ୟୁ ଭଲ । ବର୍ତ୍ତମାନ ତ ମୋର ରୋଜଗାର କିଛି ନାହିଁ, ତୁମ୍ଭେମାନେ ଚଳାଉଛ । ମୁଁ ମଧ୍ୟ ଜଣେ ଭିକାରି । ଯଦି ମୋତେ ତୁମେ ସନ୍ତୁଷ୍ଟ କରି ରଖିବାକୁ ଚାହଁ ତାହାହେଲେ ତୁମ୍ଭେ ହେବ—"ଉତ୍କଳମାତାର ଯୋଗ୍ୟତମ ସୁତ, ତୁମ୍ଭଯୋଗୁଁ ଆମ୍ଭେ ସର୍ବେ ହେଲୁ ପୂତ ।"

(୧୦) **ଅନ୍ଧବିଶ୍ୱାସ :** ମଧୁବାବୁଙ୍କୁ ଅନ୍ଧବିଶ୍ୱାସ ସ୍ପର୍ଶ କରି ନଥିଲା ବୋଲି କହିହେବନାହିଁ । ଅବଶ୍ୟ ସେ ଏଥିରେ ବୁଡ଼ିଯାଇ କୂଳହରା ହୋଇ ଯାଇନଥିଲେ । ରଚନାରେ ଛେଦ ଓ ଅନୁଚ୍ଛେଦାଦିର ସଂଖ୍ୟାର ଶୁଭାଶୁଭ ସମ୍ବନ୍ଧରେ ତାଙ୍କର କେତେକ ଧାରଣା ଥିଲା । ସେ କେବେ ଛେଦ ଓ ଅନୁଚ୍ଛେଦର ମୋଟସଂଖ୍ୟା ଯୁଗ୍ମ ରଖୁନଥିଲେ ଏବଂ ୧୩, ୯୯, ୨୩କୁ ମଧ୍ୟ ଅମଙ୍ଗଳ ବୋଲି ଭାବି ତ୍ୟାଗ କରୁଥିଲେ । ଏହା ଫଳରେ ତାଙ୍କ

ଲେଖାରେ ୧୬, ୧୯, ୨୩ ବ୍ୟତୀତ ଅନ୍ୟାନ୍ୟ ବଯୋଡ଼ ସଂଖ୍ୟକ ଅନୁଚ୍ଛେଦ ବା ପରିଚ୍ଛେଦ ଥାଏ । ମଧୁବାବୁ ନିଜେ ଏହା ବନ୍ଧୁମାନଙ୍କ ଆଗରେ କଥା ପ୍ରସଙ୍ଗରେ କହିଥିଲେ, "There is a soul even in superstition." (ଅନ୍ଧବିଶ୍ୱାସ ଭିତରେ ମଧ୍ୟ ଆତ୍ମା ଅଛି ।)

ପୋଷ୍ଟକାର୍ଡ, ଲଫାଫା ଇତ୍ୟାଦି ଡାକଘରେ ପକାଇଲାବେଳେ ସେ ବରାବର ପୋଷ୍ଟାଲ ସାର୍ଟିଫିକେଟ୍ କରୁଥିଲେ । ସବୁ ରେଜିଷ୍ଟାର୍ଡ ଚିଠିର ଫେରନ୍ତା ରସିଦ (Acknowledgement Due—A/D) ପାଇଁ ମଧ୍ୟ ମୁଦ୍ରା ଦେଉଥିଲେ । ଯାହାଠାକୁ ପତ୍ର ପଠାଉଥିଲେ ସେ ନିଶ୍ଚୟ ଏହାକୁ ପାଇବ, ଏହି ଉଦ୍ଦେଶ୍ୟରେ ଏହା କରୁଥିଲେ । କାଳେ ପତ୍ର ପାଇନାହିଁ ବୋଲି ପତ୍ର ପାଇବା ଲୋକ ଅସ୍ୱୀକାର କରିବ, ଏହି ଲକ୍ଷ ମଧ୍ୟ ଥାଏ । ପୁଣି ଚାକରମାନେ ଚିଠିକୁ ଡାକରେ ପଠାଇଲେ, କି ମିଛ କହି ଷ୍ଟାମ୍ପ ନ କିଣି ନିଜେ ପଇସା ମାରନେଲେ, ଏହି ଆଶଙ୍କା ମଧ୍ୟ ଏ ସାବଧାନତା ଦ୍ୱାରା ଦୂର ହୋଇଯାଉଥିଲା । ଟେଲିଗ୍ରାମ୍ ପଠାଇଥିବା ପ୍ରସଙ୍ଗଟା ଜଣାଇଦେଉଥିଲେ ।

(୧୧) **ସମୟାନୁବର୍ତ୍ତିତା** : ମଧୁବାବୁଙ୍କ ସମୟାନୁବର୍ତ୍ତିତା ପାଳନରେ କଠୋରତା ସମ୍ବନ୍ଧରେ ଏକ ଗପ ଶୁଣାଯାଏ । ଥରେ ଜଣେ ରାଜାଙ୍କର କୌଣସି ଏକ ମକଦ୍ଦମା ସମ୍ବନ୍ଧରେ ମଧୁବାବୁଙ୍କ ସହ କଥାବାର୍ତ୍ତା ହେବାର ସ୍ଥିର ହୋଇଥାଏ । ଏଥିପାଇଁ ସମୟ ନିର୍ଦ୍ଦିଷ୍ଟ ହୋଇଥିଲା । ରାଜା ମଧୁବାବୁଙ୍କ ଘରେ ପହଞ୍ଚିବାବେଳକୁ ସମୟ ଗଡ଼ିଯାଇଥିଲା । ରାଜାଙ୍କୁ ଦେଖି ମଧୁବାବୁ ଟିକିଏ ରୁଷ୍ଟ ହୋଇ କହିଲେ, "ଦେଖନ୍ତୁ, ଆପଣ ୧୦ଟା ବେଳକୁ ଆସିବାର ଥିଲା । ଏବେ ୧୨ଟା ବାଜିବ । କାହିଁ, ଆପଣ ଆସିବେ ବୋଲି ତ ଘଣ୍ଟା ଅପେକ୍ଷା କଲିନାହିଁ, ମୁଁ କାହିଁକି ଅପେକ୍ଷା କରିବ ?" ରାଜା ଏହା ଶୁଣି ଲଜ୍ଜିତ ହେଲେ ଏବଂ କାହିଁକି ସମୟ ରଖିପାରିଲେ ନାହିଁ, ତାର କାରଣ ଦେଇ ଆଶ୍ୱସ୍ତ ମଣିଲେ ।

(୧୨) **ସ୍ପଷ୍ଟବାଦିତା** : ବନ୍ଧୁ ହେଉ ଶତ୍ରୁ ହେଉ, ଚିହ୍ନା ହେଉ ଅଚିହ୍ନା ହେଉ, କିଛି ଦୋଷ ଦେଖିଲେ ମଧୁବାବୁ ଦୋଷୀ ଲୋକଙ୍କୁ ମୁହଁରେ ଖରକଥା ଶୁଣାଇ ଦେଉଥିଲେ । ସେ ଅତି ଶିକ୍ଷିତ, ସମ୍ଭ୍ରାନ୍ତ, ମାନ୍ୟ ବ୍ୟକ୍ତି ଥିବାରୁ ତାଙ୍କ ପାଟିରୁ ଅସଭ୍ୟ ବାଣୀ ବାହାରୁନଥିଲା; କିନ୍ତୁ ମର୍ମଭେଦୀ ଭଦ୍ରଶୋଧନର ଉପଯୁକ୍ତ ବାକ୍ୟବାଣ ବାହାରୁଥିଲା । ନିର୍ଭୀକତା, ସ୍ପଷ୍ଟବାଦିତା ତାଙ୍କର ବିଶିଷ୍ଟ ଗୁଣ ଥିଲା ।

ଥରେ ଜଣେ ବନ୍ଧୁଙ୍କ ଘରେ ସେ ଅନ୍ୟମାନଙ୍କ ସଙ୍ଗରେ ଆଳାପ ଆଲୋଚନା କରୁଥିଲେ । କଥା ପ୍ରସଙ୍ଗରେ କଟକ ଜିଲ୍ଲା କଲେକ୍ଟର ଗେରେଟ୍ ( Garret ) ସାହେବଙ୍କ ନାମ ଉଠିଲା । କୌଣସି ଏକ ଅସୁବିଧା ଦୂର କରିବାପାଇଁ ପନ୍ଥା ଉଦ୍‌ଭାବନ ସମ୍ବନ୍ଧୀୟ ଆଲୋଚନାରେ ସାହେବଙ୍କ ସାହାଯ୍ୟ ନେଲେ ଭଲ ହେବ ବୋଲି କେହି ଜଣେ କହିଲେ । ଏହା ଶୁଣିବା ମାତ୍ରେ ଜଣେ ଡେପୁଟି କଲେକ୍ଟର୍ ଅଭଦ୍ର ଭାଷାରେ କହିଲେ, "ସେ ଶଳାଟି

ଦ୍ୱାରା କିଛି ହେବନାହିଁ ।" ମଧୁବାବୁ ଏଥିରେ ବ୍ୟଥିତ ହେଲେ ଏବଂ ରାଗିଯାଇ କହିଲେ, 'ଏହି ଅଳ୍ପ କେତେ ଦିନ ତଳେ ତୁମେ ଓ ତୁମ ପିଲାମାନେ ପରା ଏହି ସାହେବଙ୍କୁ ପାପା ପାପା ( Papa, Papa—ଅର୍ଥାତ୍ ବାପା ବାପା ) ବୋଲି ଡାକୁଥିଲ, କୁକୁରଛୁଆ ସେବାକୁ ମଧ୍ୟ ଘୁରିବସିଥିଲ । ଏବେ ସେହି 'ପାପା ପାପା' ବୋଲି ଡାକିବା ପାଟି 'ଶଳା, ଶଳା' କହୁଛି । ଧନ୍ୟ ତୁମ ମହିମା !" ହାକିମ ଚୁପ୍ ରହିଗଲେ । ଏକେ ତ ମଧୁବାବୁଙ୍କ ଆଗରେ ଅନ୍ୟ ପ୍ରସଙ୍ଗରେ ମଧ୍ୟ କିଛି ଯୁକ୍ତିତର୍କ କରିବା ସମ୍ଭାବନା ବା ଦାମ୍ଭିକତା ତାଙ୍କର ନଥିଲା; ସେଥିରେ ପୁଣି ଏ ଗୁରୁତର ସମସ୍ୟାରେ ତାଙ୍କ ପାଟି ଫିଟିବା ଏକାବେଳକେ ସମ୍ଭବ ନଥିଲା । ସେ ରାଗରେ ଗରଗର ହୋଇ ତୁନିହୋଇ ରହିଲେ । ଏ ହାକିମ ମଧୁବାବୁଙ୍କ ଜଣେ ସମ୍ପର୍କୀୟ ଥିଲେ ।

**(୯୩) ନାମ ବିଶ୍ଳେଷଣରେ ବ୍ୟଙ୍ଗ**—ଥରେ ଦେଶମିଶ୍ରଣ ସମ୍ପର୍କରେ ଏକ ଆଲୋଚନା ସଭାରେ କଟକର ପ୍ରସିଦ୍ଧ ଓକିଲ ଜାନକୀନାଥ ବୋଷ (ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ପିତା) କେତେକ ଆଶଙ୍କା ପ୍ରକାଶ କରିଥିଲେ । ତାଙ୍କ ସହିତ ମଧୁବାବୁଙ୍କ ଗାଢ଼ ବନ୍ଧୁତ୍ୱ ଥିଲା । ମଧୁବାବୁ ହସି ହସି ବଙ୍ଗଳା ଭାଷାରେ କହିଲେ, "ଓହେ ଜାନକୀ, ତୁମି ଜାନ କି ?" (ଆହେ ଜାନକୀ, ତୁମେ କଣ ଜାଣ ?) ଜାନକୀବାବୁଙ୍କ ନାମକୁ ବିଶ୍ଳେଷଣ କରି ସେ ଏପରି ବ୍ୟଙ୍ଗ କରିଥିଲେ । ଯଦିଓ ଜାନକୀବାବୁ ଏଥିରେ ପ୍ରକାଶ୍ୟ ଭାବରେ ଦୁଃଖ କରିନଥିଲେ ମଧ୍ୟ ତାଙ୍କୁ ଏ ପରିହାସଟି ଭଲ ଲାଗିନଥିଲା । ନାମ ବିଶ୍ଳେଷଣକରି ବ୍ୟଙ୍ଗକରିବା ମଧୁବାବୁଙ୍କର ଏକ ସ୍ୱଭାବ ଥିଲା ।

ଥରେ ବଙ୍ଗର ବିଖ୍ୟାତ କବି ମାଇକେଲ୍ ମଧୁସୂଦନ ଦତ୍ତଙ୍କ ସହିତ କଲିକତାରେ ମଧୁବାବୁଙ୍କର ଦେଖା ହୋଇଥିଲା । ଉଭୟେ ଖ୍ରୀଷ୍ଟିଆନ୍ ଓ ବନ୍ଧୁ ମଧ୍ୟ । ମଧୁବାବୁ କଥା ପ୍ରସଙ୍ଗରେ ହସି ହସି କହିଲେ, "ତୁମେ ତ ନିଜ ନାଁ ସହିତ ଜଣେ ସ୍ୱର୍ଗୀୟ ପକ୍ଷୀଙ୍କ ନାମ ଯୋଡ଼ିଦେଲ । ମୋ ନାଁ ମଧ୍ୟ ମଧୁସୂଦନ । ମୋ ନାଁ ସହିତ ଗୋଟିଏ ପକ୍ଷୀ ଯୋଡ଼ିଦେଇ ପାରିବ କି ?" ଦତ୍ତ ଏହା ଶୁଣି ହସିଥିଲେ ।

କଟକର ଅନ୍ୟତମ ବିଶିଷ୍ଟ ଓକିଲ, ସାହିତ୍ୟିକ ଓ ଦେଶସେବୀ ଭିକାରୀଚରଣ ପଟ୍ଟନାୟକ ମଧୁବାବୁଙ୍କର ଜୁନିଅର୍ ଥିଲେ । ତାଙ୍କୁ ଥରେ ମଧୁବାବୁ ପରିହାସ କରି କହିଲେ, "ଭିକାରୀ, ତୁମେ ଆମର ଭିକାର ଅଫ୍ ଉଏକ୍ ଫିଲ୍ଡ଼ (Vicar of Wakefield—ପ୍ରସିଦ୍ଧ ଇଂରେଜୀ ପ୍ରାଚୀନ କବି ଗୋଲ୍ଡ଼ସ୍ମିଥ୍‌ଙ୍କର ପ୍ରସିଦ୍ଧ କବିତାର ନାୟକ ) ।"

**(୯୪) କ୍ଷଣକୋପୀ**—ମଧୁବାବୁଙ୍କ ଏକ ଦୁର୍ଗୁଣ ଥିଲା, ସେ କ୍ଷଣକୋପୀ ଥିଲେ । ତାଙ୍କ କଥା ଯେ ନଶୁଣିବ, ଯେ ବା ଯୁକ୍ତିତର୍କ କରିବ, ତାଙ୍କ ଉପରେ ମଧୁବାବୁ ହଠାତ୍ ରାଗିଯାଉଥିଲେ ଏବଂ ଭଦ୍ର ଭାଷାରେ ତଗଡମାଲ୍ଲ ମେଲି ତାଙ୍କ୍ଷଣ ପ୍ରଦର୍ଶନ କରୁଥିଲେ ।

ମଧୁବାବୁଙ୍କ ପ୍ରତିଷ୍ଠା ଦୃଷ୍ଟିରେ ବହୁଲୋକ କିଛି ନକହି ଚୁପ ହୋଇ ରହୁଥିଲେ ମଧ୍ୟ ମନମଧ୍ୟରେ ତାଙ୍କ ପ୍ରତି ଏକପ୍ରକାର ଘୃଣା ଓ ଭୟ ରଖୁଥିଲେ । ଏହି କାରଣରୁ ବହୁ ଲୋକ ନିତାନ୍ତ ଜରୁରୀ କାର୍ଯ୍ୟ ନପଡ଼ିଲେ ତାଙ୍କଠାକୁ ଯାଉନଥିଲେ । ଅପମାନିତ ହେଲେ ମଧ୍ୟ ଅପମାନିତ ବ୍ୟକ୍ତି କିଛି ଉତ୍ତର ଦେଉ ନଥିଲେ, କାରଣ ଯାହା ଯାହା ଅଧିକ ଅପମାନର ସମ୍ଭାବନା ଥିଲା । ବହୁଲୋକ ମଧୁବାବୁ କିଛି କହିଲାବେଳେ ତାଙ୍କ ସହିତ ଏକମତ ନଥିଲେ ମଧ୍ୟ ଉତ୍ତର ନ ଦେଇ କେବଳ ମିଛରେ ହୁଁ-ହୁଁ କରି ସମର୍ଥନ ଜଣାଉଥିଲେ ।

ତେବେ, ମଧୁବାବୁଙ୍କ କୋପ କେବଳ କ୍ଷଣସ୍ଥାୟୀ ଥିଲା । କିଛି ସମୟ ପରେ ସେ ଦୁଃଖିତ ହେଉଥିଲେ ଏବଂ ସମ୍ପୃକ୍ତ ବ୍ୟକ୍ତି, ସହକର୍ମୀ ବା ବନ୍ଧୁ ହୋଇଥିଲେ, ତାଙ୍କ ସହିତ ଦେଖାହେବା ମାତ୍ରେ ନିଜର ତ୍ରୁଟି କଥା ସ୍ୱୀକାରକରି ମନବୋଧ କରିଦେଉଥିଲେ । ତାଙ୍କର ସହକର୍ମୀମାନେ "ଗୁଡ଼, ଆମ ବୁଢ଼ା ତ କହୁଛି" ଏହିଭାବରେ ଏହାକୁ ଗ୍ରହଣ କରୁଥିଲେ । ବୟସର ବୃଦ୍ଧି ସଙ୍ଗେ ସବୁ ବୃଦ୍ଧଙ୍କ ପରି ସେ ମଧ୍ୟ 'ଚିଡ଼ଚିଡ଼ା' ପ୍ରକୃତିର ଅଧୀନତା ସ୍ୱୀକାର କରିଥିଲେ । ଏହି ପ୍ରକୃତିକୁ ଲକ୍ଷ୍ୟକରି କେହି କେହି ବନ୍ଧୁ କହୁଥିଲେ, ମଧୁବାବୁ "କ୍ଷଣେ ରୁଷ୍ଟାଃ କ୍ଷଣେ ତୁଷ୍ଟାଃ ରୁଷ୍ଟତୁଷ୍ଟଃ କ୍ଷଣେ କ୍ଷଣେ ।"

ଜୀବନର ଏକ ପରସ୍ପରବିରୋଧୀ ଲକ୍ଷଣ—ମଧୁବାବୁ ଓଡ଼ିଆମାନଙ୍କ ସହିତ କଥାବାର୍ତ୍ତା ହେଲାବେଳେ ଅଧିକାଂଶ ସମୟରେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । ଯଦି କେହି ଓଡ଼ିଆ ତାଙ୍କୁ ବଙ୍ଗଳାରେ ଉତ୍ତର ଦେଲା, ତାହାହେଲେ ସେ ବିଶେଷଭାବରେ ରାଗିଯାଉଥିଲେ । ଉତ୍ତରଦାତା ତାଙ୍କୁ ଥଟ୍ଟା କରୁଛି ବୋଲି ସେ ଭାବୁଥିଲେ । ମଧୁବାବୁ ଓଡ଼ିଆ, ଓଡ଼ିଆରେ କଥାବାର୍ତ୍ତା କରିବା ତାଙ୍କ ପକ୍ଷେ ସ୍ୱାଭାବିକ । ସେ କଲିକତାରେ କେତେ ବର୍ଷ ରହିବା ଭିତରେ ବଙ୍ଗବାସୀମାନଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିବାରୁ ସେମାନଙ୍କ ସହିତ ବଙ୍ଗଳା ଭାଷାରେ କଥାବାର୍ତ୍ତା କରୁଥିଲେ । କଟକରେ ନିଜ ଘରେ ଶୈଳବାଳା ଓ ସୁଧାଂଶୁବାଳାଙ୍କ ସହିତ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । ଏ ଦୁଇଜଣ ମହିଳା ଓଡ଼ିଆରେ କଥାବାର୍ତ୍ତା କରିବା କେହି ଦେଖି ନାହାନ୍ତି କହିଲେ ଚଳେ । ଓଡ଼ିଆ ଭାଷା ଓ ଜାତି ପ୍ରତି ଶୈଳବାଳାଙ୍କ ସ୍ନେହର ଅଭାବ ଏହାର କାରଣ ବୋଲି କେହି କେହି କହିଥାଆନ୍ତି । ସେ ଯାହାହେଉ ମଧୁବାବୁଙ୍କ ଏ ଅଭ୍ୟାସଟି ଯେ ସମ୍ମାନଜନକ ନୁହେଁ ଏହା ସେ ନିଜେ ମଧ୍ୟ ବୁଝୁଥିଲେ । ଏହି ପ୍ରକୃତିକୁ ଏଡ଼ିବା ତାଙ୍କ ପକ୍ଷରେ ସହଜ ହୋଇନଥିଲା । ଏହା ତାଙ୍କ ଜୀବନର ଏକ ପରସ୍ପରବିରୋଧୀ ପ୍ରକୃତି ।

ଥରେ କେତେଜଣ ଜୁନିୟର ଓକିଲ କୋର୍ଟ ବାରଣ୍ଡାରେ ଠିଆହୋଇ କଥାବାର୍ତ୍ତା ହେଉଥିଲେ । ମଧୁବାବୁ ସେ ବାଟେ ଯାଉଥିଲେ । ସେମାନଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ସେ ଜୁନିୟରମାନଙ୍କୁ ଦେଖି କୌତୁକଚ୍ଛଳରେ ପଚାରିଲେ, "କିହେ, ତୁମସବୁ କେମନ୍

ଅଛ ?'' (କହେ, ତୁମେ କପରି ଅଛ) । ଜଣେ ନୂତନ ଯୁବକ ଓଡ଼ିଆ ଓକିଲ ମଧ୍ୟ ସମ୍ମାନ ସହକାରେ ବଙ୍ଗଳାରେ ଉତ୍ତର ଦେଲେ, ''ଭଲୋ ଆଛି ।'' ଓଡ଼ିଆ ଓକିଲଙ୍କଠାରୁ ବଙ୍ଗଳା ଭାଷାର ଉତ୍ତର ଶୁଣି ମଧୁବାବୁ ଟିକିଏ ରାଗିଗଲେ । କହିଲେ, ''ତୁମି କି ଆମାକେ ଠାଟ୍ଟା କରଛ ?'' (ତୁମେ କଣ ମୋତେ ଥଟ୍ଟା କରୁଛ) । ଯୁବକ ଟିକିଏ ଶଙ୍କିଯାଇ କହିଲେ, ''ନେଇ ତ ।'' (ନାହିଁ ତ) । ମଧୁବାବୁ କହିଲେ, ''ତା ହେଲେ ତୁମି ବାଙ୍ଗାଲାୟ କେନ ଉତ୍ତର ଦିଲେ ?'' ଯୁବକ କହିଲେ ''ଆପନି ବାଙ୍ଗାଲାୟ ବୋଲ୍‌ଲେନ୍ ବୋଲେ ଆମି ବାଙ୍ଗ୍‌ଲାୟ ବୋଲ୍‌ଲାମ ।'' (ଆପଣ ବଙ୍ଗଳାରେ କହିଲେ ବୋଲି ମୁଁ ବଙ୍ଗଳାରେ କହିଲି) । ମଧୁବାବୁ ଯୁବକଙ୍କ ସତ୍ ଅଭିପ୍ରାୟ ବୁଝିପାରିଲେ । ସେ ନିଜେ ଦୁଃଖିତ ହୋଇ କେଉଁ ପରିସ୍ଥିତିରେ ପଡ଼ି ତାଙ୍କର ଏହି ଅଭ୍ୟାସଟି ହୋଇଛି ସେମାନଙ୍କୁ ବୁଝାଇଲେ । ତାଙ୍କର ବଙ୍ଗଦେଶରେ ବାସ ଓ ବଙ୍ଗବାସୀଙ୍କ ସହିତ ସମ୍ପର୍କ ପ୍ରଭୃତି ବିଷୟ ସେ ବର୍ଣ୍ଣନା କଲେ । ବହୁ ବର୍ଷ ଧରି କଲିକତାରେ ଓ କଟକରେ ଘରେ ବଙ୍ଗଳାରେ କଥାବାର୍ତ୍ତା କରିବାକୁ ହୋଇଥିବାରୁ ତାଙ୍କର ଏ ଅଭ୍ୟାସଟି ହୋଇଯାଇଛି ବୋଲି କହିଲେ । ଶେଷରେ ମଧୁବାବୁ ଯୁବକ ଓକିଲମାନଙ୍କୁ କହିଲେ, ''Follow me, but do not imitate my mistakes'' : (ମୋତେ ଅନୁସରଣ କର; କିନ୍ତୁ ମୋର ଭୁଲକୁ ଅନୁକରଣ କରନାହିଁ ।

ଏହି ହେତୁ ମଧୁବାବୁଙ୍କଠାରୁ ଏପରି ରାଗ ଓ ଗାଳି ଶୁଣିବା ବହୁଲୋକଙ୍କ ଭାଗ୍ୟରେ ଦେଖାଯାଇଛି । ତାଙ୍କ ଜୀବନରେ ଏହା ଏକ ଦୁର୍ବଳତା ଏବଂ ପ୍ରକୃତିର ଏକ ପରସ୍ପର-ବିରୋଧୀ ଲକ୍ଷଣ । ''ମଧୁ ଓଡ଼ିଆ'' ଓଡ଼ିଆଙ୍କ ସଙ୍ଗେ ବଙ୍ଗଳାରେ କଥାବାର୍ତ୍ତା କରୁଥିବାରୁ ବହୁ ଓଡ଼ିଆ ବିରକ୍ତ ହେଉଥିଲେ; କିନ୍ତୁ ତାଙ୍କର ଓଡ଼ିଆଭାଷା ଓ ଓଡ଼ିଆଜାତି ପାଇଁ ଅପାର ସେବା ନିମନ୍ତେ ତାଙ୍କର ସବୁ ଦୋଷକୁ ଭୁଲି ଯାଉଥିଲେ । ମଧୁବାବୁଙ୍କ ଅଶେଷ ଭଲ-ଗୁଣକୁ ସେମାନେ ମନେପକାଇ କହୁଥିଲେ, ''ଆମର ମଧୁବାବୁ 'ଆମର ମଧୁବାବୁ' ହୋଇ ରହିଥିଲେ, ରହିଛନ୍ତି ଓ ରହିଥିବେ ।''

ମଧୁବାବୁ ଓଡ଼ିଆ ସଭାସମିତି ପ୍ରଭୃତିରେ ଖାଣ୍ଟି ଘରୋଇ ଓଡ଼ିଆରେ କଥାବାର୍ତ୍ତା କରୁଥିଲେ ଓ ବକ୍ତୃତା ଦେଉଥିଲେ । ଶ୍ରୋତାମାନଙ୍କୁ ହସାଉଥିଲେ, କନ୍ଦାଉଥିଲେ, କସାଉଥିଲେ ଓ ନଚାଉଥିଲେ ।

**ଜାତୀୟ ଉନ୍ନତିରେ ଶ୍ରଦ୍ଧା**—ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କି ଅନ୍ୟ କୌଣସି ପ୍ରତିଯୋଗିତାରେ ଓଡ଼ିଶାର କେହି ଛାତ୍ର କୃତିତ୍ୱ ଦେଖାଇଲେ ମଧୁବାବୁ ବଡ଼ ଆନନ୍ଦ ଲାଭ କରନ୍ତି । ଛାତ୍ରଙ୍କୁ ଉତ୍ସାହିତ କରିବା ପାଇଁ ତାଙ୍କ ଘରକୁ ଯାଇ ତାଙ୍କ ପିତାମାତା ଅଭିଭାବକଙ୍କୁ ଧନ୍ୟବାଦ ଦିଅନ୍ତି; ସଙ୍ଗେ ସଙ୍ଗେ ଛାତ୍ରଙ୍କୁ ମଧ୍ୟ ବହୁ ଉତ୍ସାହବାକ୍ୟ ଶୁଣାଇ ଅଧିକ ଉନ୍ନତି ଦିଗରେ ଉଦ୍ୟମ କରିବାକୁ କହନ୍ତି । ସୁଭାଷଚନ୍ଦ୍ର ବୋଷ (ନେତାଜୀ) କୃତିତ୍ୱ

ସହୃକାରେ ଏଣ୍ଟ୍ରାନ୍ସ ପାଶ୍ କରିବା ଦିନ ମଧୁବାବୁ ଓଡ଼ିଆ ବଜାରସ୍ଥ ତାଙ୍କ ବାସଭବନକୁ ଯାଇ ତାଙ୍କୁ ଓ ତାଙ୍କ ପିତା ଜାନକୀନାଥ ବୋଷ (ଓକିଲ)ଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ମଧୁବାବୁ ଏପରି ବହୁ ଲୋକଙ୍କ ଘରକୁ ଯାଇ ସମ୍ବର୍ଦ୍ଧନା ଜଣାଉଥିଲେ ।

ମଧୁବାବୁ ବହୁ ମେଧାବୀ ଗରିବ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିଲେ । କେତେ ଜଣଙ୍କୁ ନିଜ ପାଖରେ ମଧ୍ୟ ରଖିଥିଲେ । କଟକ ରେଭେନ୍ସା କଲେଜର କେତେଜଣ ଅଧ୍ୟାପକ ଯଥା—ନାରାୟଣ ମିଶ୍ର, କାଶୀନାଥ ଦାଶ, ଆର୍ତ୍ତିବଲ୍ଲଭ ମହାନ୍ତି ପ୍ରଭୃତି ଛାତ୍ର ଜୀବନରେ ମଧୁବାବୁଙ୍କଠାରୁ ନାନାରୂପେ ସାହାଯ୍ୟ ପାଇଛନ୍ତି । ନାରାୟଣ ମିଶ୍ର କିଛି କାଳ ମଧୁବାବୁଙ୍କ ଗୃହରେ ରହି ପାଠ ପଢ଼ୁଥିଲେ । ଏମାନେ ସମସ୍ତେ ମେଧାବୀ ଛାତ୍ର ଥିଲେ ।

ମହେଶଚନ୍ଦ୍ର ରାୟ ଓ କୈଳାସଚନ୍ଦ୍ର ନାମକ ଦୁଇଜଣ ମେଧାବୀ ଛାତ୍ରଙ୍କୁ ଉଚ୍ଚଶିକ୍ଷା ଲାଭ ନିମନ୍ତେ ସେ ବିଦେଶକୁ ପଠାଇଥିଲେ ଓ ସେମାନଙ୍କର ସମସ୍ତ ବ୍ୟୟ ନିଜେ ମଧୁବାବୁ ବହନ କରିଥିଲେ ।

ଛାତ୍ରମାନଙ୍କ ଭିତରେ ଜ୍ଞାନଚର୍ଚ୍ଚାର ବୃଦ୍ଧି ପାଇଁ ମଧୁବାବୁ ପ୍ରତିଯୋଗିତା ବ୍ୟବସ୍ଥା କରୁଥିଲେ । ନିର୍ଦ୍ଦିଷ୍ଟ ବିଷୟରେ ପ୍ରବନ୍ଧ ପ୍ରତିଯୋଗିତା କରାଉଥିଲେ ଏବଂ ନିଜ ବ୍ୟୟରେ ପୁରସ୍କାର ଦେଉଥିଲେ ।

**ଜାତିସେବାରେ ଅକାତର ବ୍ୟୟ**—ଜାତିର ସ୍ୱାର୍ଥ ପାଇଁ ମଧୁବାବୁ ଅକାତରରେ ଅଜସ୍ର ଧନ ବ୍ୟୟ କରିଛନ୍ତି ଏବଂ ଏଥିରେ ଆନନ୍ଦ ଉପଭୋଗ କରିଛନ୍ତି ।

ଖ୍ରୀ: ୧୯୦୫ ସାଲର କଥା ହେବ । ମଧ୍ୟପ୍ରଦେଶ ସରକାରଙ୍କ ଅଧୀନରେ ସମ୍ବଲପୁର ଶାସିତ ହେଉଥିଲା । ସରକାର ସମ୍ବଲପୁରରେ ହିନ୍ଦୀ ଭାଷା ପ୍ରଚଳନ ପାଇଁ ପ୍ରସ୍ତାବ କଲେ ଓ ଏ ସମ୍ବନ୍ଧରେ ଲୋକମତ ଜାଣିବା ଉଦ୍ଦେଶ୍ୟରେ ବିଶିଷ୍ଟ ଓଡ଼ିଆମାନଙ୍କର ମତ ଲୋଡ଼ିଥିଲେ । ମଧୁବାବୁଙ୍କଠାରୁ ମଧ୍ୟ ନିଜ ମତ ଦେବାପାଇଁ ମଧ୍ୟ-ପ୍ରଦେଶ ସରକାର ଚିଠି ପଠାଇଥିଲେ । ନିର୍ଦ୍ଦିଷ୍ଟ ତାରିଖ ଭିତରେ ମତ ଦେବାକୁ ସେ ଚିଠିରେ ଅନୁରୋଧ କରାଯାଇଥିଲା । ଚିଠିଟି କଟକର ସ୍କୁଲ ଇନ୍‌ସପେକ୍ଟରଙ୍କ ଜରିଆରେ ଆସିଥିଲା । ସେତେବେଳକୁ ମଧୁସୂଦନ ରାଓ ଇନସପେକ୍ଟର ଥିଲେ । ସେ ଗସ୍ତରେ ଯାଇଥିବାରୁ ତାଙ୍କ ଅଫିସରୁ ମଧୁବାବୁଙ୍କ ଠାକୁ ଚିଠି ଯାଇପାରିଲା ନାହିଁ । ମଧୁସୂଦନ ରାଓ କଟକ ଫେରିବା ପରେ ମଧୁବାବୁ ଚିଠିଟି ପାଇଲେ । ସେତେବେଳକୁ ନିର୍ଦ୍ଦିଷ୍ଟ ସମୟ ପୂରିବାକୁ ଆଉ ଦିନେ ଦୁଇ ଦିନ ମାତ୍ର ବାକୀ ଥିଲା । ଚିଠିର ଉତ୍ତର ଚିଠିରେ ପଠାଇଲେ କେନ୍ଦ୍ର ସରକାରଙ୍କ ରାଜଧାନୀ ଦିଲ୍ଲୀରେ ନିର୍ଦ୍ଦିଷ୍ଟ ଦିନ ଭିତରେ ପହଞ୍ଚିବାର ସମ୍ଭାବନା ନ ଥିଲା । ତେଣୁ ମଧୁବାବୁ ଚିଠିଟି ପାଇ ପ୍ରସ୍ତାବର ଘୋର ବିରୋଧ କରି ଏକ ଯୁକ୍ତିପୂର୍ଣ୍ଣ ପତ୍ର ଟେଲିଗ୍ରାମ୍‌ଦ୍ୱାରା ପଠାଇଲେ । ଏଥିରେ ତାଙ୍କୁ ବହୁ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲେହେଁ ଏ ଅର୍ଥ ବ୍ୟୟରେ ସେ ତିଳେ ହେଲେ ଦୁଃଖିତ ହୋଇନଥିଲେ ।

ଖ୍ରୀ: ୧୯୦୩ରେ କଟକ ସହରର ଇଦ୍‌ଗା ପଡ଼ିଆରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଥିଲା । ସମ୍ମିଳନୀ ନିମନ୍ତେ ସେ ବହୁ ଅର୍ଥ ବ୍ୟୟ କରିଥିଲେ । ସେ ସମ୍ମିଳନୀର ଆବାହକ ଓ ସଂଗଠକ ଥିଲେ ଏବଂ ସମ୍ମିଳନୀକୁ ସାଫଲ୍ୟମଣ୍ଡିତ କରିବାପାଇଁ ବହୁ ପରିଶ୍ରମ ମଧ୍ୟ କରିଥିଲେ । ଉତ୍କଳ ସମ୍ମିଳନୀରେ ମଧୁବାବୁ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ତାଙ୍କର ଅଦମ୍ୟ ଉତ୍ସାହ, ନିର୍ମଳ ଦେଶାତ୍ମବୋଧ, ବାଗ୍ମିତା, ବିଚକ୍ଷଣ ବୁଦ୍ଧି ଓ ସାହସ ଯୋଗୁଁ ସେ ସବୁ ଶ୍ରେଣୀ ଲୋକଙ୍କର ବରେଣ୍ୟ ହୋଇ ପାରିଥିଲେ । ରାଜା, ଜମିଦାର, ମହାଜନ, ଓକିଲ, ଧନୀ, ଦରିଦ୍ର ସମସ୍ତେ ତାଙ୍କୁ ଦେଶର ସର୍ବୋଚ୍ଚ ନେତାରୂପେ ସ୍ୱୀକାର କରିଥିଲେ ଏବଂ ତାଙ୍କ ଉପରେ ଅଟଳ ବିଶ୍ୱାସ ରଖିଥିଲେ । ଉତ୍କଳ ସମ୍ମିଳନୀରେ ମଧୁବାବୁ ଓଡ଼ିଆମାନଙ୍କ ହୃଦୟର ବେଦନାକୁ ରୂପ ଦେଇଥିଲେ, ବାଣୀ ଦେଇଥିଲେ । ସେହି ଦିନଠାରୁ ଓଡ଼ିଆ ଏକ ସ୍ୱତନ୍ତ୍ର ଜାତି ବୋଲି ଇଂରେଜ ସରକାର ବୁଝି ପାରିଥିଲେ ଏବଂ ଓଡ଼ିଆମାନେ ସ୍ୱଜାତିର ଆକାଙ୍‌କ୍ଷାକୁ ନିଃଶଙ୍କରେ, ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶ କରିବା ପାଇଁ ସାହସ ପାଇଥିଲେ । ମଧୁବାବୁ ଅବହେଳିତ ଓଡ଼ିଆ ଜାତିର ମୁଖରେ ଭାଷା ଦାନ କରିଥିଲେ । ସ୍ୱଜାତିକୁ ଏହାହିଁ ତାଙ୍କର ଅମର ଦାନ ।

**ଜାତୀୟ ଗୌରବ ପ୍ରତି ଅଭିମାନ :** ପଟିଆଗଡ଼ର କେଶବାନନ୍ଦ କାନଗୋଇଙ୍କ ଜମିରୁ ତାମ୍ର ଅନୁଶାସନ ଫଳକଟିଏ ମିଳିଥିଲା । ପ୍ରାଚୀନ ମାନବଂଶର ଜଣେ ରାଜା ଏ ତାମ୍ରଫଳକ ଦାନ କରିଥିଲେ । ପଟିଆ ରାଜାଙ୍କ ଓକିଲ ଥିବାରୁ କାନଗୋଇ ଏ ଫଳକଟି ମଧୁବାବୁଙ୍କ ହସ୍ତରେ ଅର୍ପଣ କରିଦେଇଥିଲେ । ମଧୁବାବୁ ସେ ଫଳକଟି କଟକ ଜିଲ୍ଲା କଲେକ୍‌ଟରଙ୍କ ଜିମାରେ ଦେଇଦେଲେ ଏବଂ କଲିକତା ମ୍ୟୁଜିୟମ୍‌ରେ ଅବସ୍ଥିତ ପ୍ରତ୍ନତତ୍ତ୍ୱ ବିଭାଗକୁ ପଠାଇଦେବାପାଇଁ ଅନୁରୋଧ କରିଥିଲେ । ଜିଲ୍ଲା ହାକିମ ତାମ୍ରଫଳକଟି କଲିକତା ପଠାଇଦେଲେ । ମଧୁବାବୁ ସାର୍ ଆଶୁତୋଷ ମୁଖାର୍ଜୀଙ୍କୁ ଚିଠି ଲେଖିଥିଲେ ଏବଂ ତାମ୍ର ଅନୁଶାସନର ପାଠ ଉଦ୍ଧାର କରିବା ବ୍ୟବସ୍ଥା ଆଶୁବାବୁଙ୍କ ଯତ୍ନରେ ହୋଇଥିଲା ।

ଏହା ସେହି ସେହି ସମୟରେ ଓଡ଼ିଶାରେ ପ୍ରାପ୍ତ ସମସ୍ତ ତାମ୍ରଫଳକ ମଧ୍ୟରେ ପ୍ରାଚୀନତମ ଥିଲା । ଖ୍ରୀ: ୬୦୧ (ଗୁପ୍ତାବ୍ଦ ଗଣନାନୁସାରେ) ରେ ମହାରାଜା ଶିବରାଜ କେତେକ ବ୍ରାହ୍ମଣଙ୍କୁ ଭୂମିଦାନ କରିଥିଲେ । 'ଏପିଗ୍ରାଫିକା ଇଣ୍ଡିକା' (ଇଂରେଜୀ) ନାମକ ସରକାରୀ ଐତିହାସିକ ଗବେଷଣା ସମ୍ପର୍କୀୟ ପତ୍ରିକାରେ ତାମ୍ରଫଳକର ପାଠ ପ୍ରକାଶିତ ହୋଇଥିଲା ।

**ଓଡ଼ିଶାର ଇତିହାସ କ୍ଷେତ୍ରରେ ଗବେଷଣା ପାଇଁ ଆହ୍ୱାନ :** ୧୯୦୫ ଖ୍ରୀଷ୍ଟାବ୍ଦରେ ରେଭେନ୍‌ସା କଲେଜିଏଟ ସ୍କୁଲର ଶିକ୍ଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ, କାବ୍ୟତୀର୍ଥଙ୍କୁ ତାଙ୍କର ସାହିତ୍ୟିକ ରଚନା ଓ ଗବେଷଣା ନିମନ୍ତେ 'ଓଡ଼ିଶା ସଂସ୍କୃତ ସଂଘ' (Orissa Sanskrit Association) 'ବାଣୀଭୂଷଣ' ଉପାଧି ପ୍ରଦାନ କରିଥିଲେ ।

କଟକର କାଳିକାପ୍ରସାଦରେ ଥିବା 'ସଙ୍ଗତ ମଧ୍ୟଇଂରାଜୀ ସ୍କୁଲ'ରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ମଧୁବାବୁ ସେ ସଭାରେ ଉପସ୍ଥିତ ହୋଇ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସାହିତ୍ୟ କୃତି ଓ ଅନୁଶୀଳନର ପ୍ରଶଂସା କରିଥିଲେ । ପ୍ରସଙ୍ଗକ୍ରମେ ସେ ଓଡ଼ିଶା ଇତିହାସ ସମ୍ପର୍କରେ ବିଶେଷ ଗବେଷଣା ଆବଶ୍ୟକ ଥିବା ଦର୍ଶାଇ କହିଥିଲେ, "ଇତିହାସ ମନୁଷ୍ୟ-ଠାରେ ଜାତୀୟ ଭାବ ଉଦ୍ରେକ କରେ । ଓଡ଼ିଶା ଇତିହାସରେ ଓଡ଼ିଆମାନଙ୍କର ବହୁ ଗୌରବମୟ ଘଟଣା ଓ କାହାଣୀ ଦେଖାଯାଏ । ସେ ବିଷୟରେ ଗବେଷଣା କରି ମାତୃଭାଷାରେ ସେସବୁ ଲିପିବଦ୍ଧ କଲେ ଦେଶରେ ଜାତୀୟ ଭାବର ସ୍ରୋତ ଯେ ଅଖଣ୍ଡ ଭାବରେ ପ୍ରବାହିତ ହେବ, ଏଥିରେ ସନ୍ଦେହ ନାହିଁ । ଏହାଦ୍ୱାରା ଏ ଖଣ୍ଡ-ବିଖଣ୍ଡିତ ଜାତି ପୁଣି ଏକତାସୂତ୍ରରେ ଆବଦ୍ଧ ହେବ ଏବଂ ଏକ ଜାତି, ଏକ ଦେଶରୂପେ ଦଣ୍ଡାୟମାନ ହୋଇ ସମସ୍ତଙ୍କ ସଙ୍ଗେ ସମକକ୍ଷ ହୋଇପାରିବ । ଜାତିର ପୂର୍ବ ଗୌରବ ଫେରିଆସିବା ସଙ୍ଗେ ସଙ୍ଗେ ଜାତି ଉନ୍ନତି ପଥରେ ଅଗ୍ରସର ହୋଇ ଜଗତର ସମ୍ମାନ ଲାଭ କରିବ । ଜାତିର ପ୍ରାଚୀନ ବିଭବ, ଗୌରବ ଓ ଉଚ୍ଚ ସଂସ୍କୃତି ବର୍ତ୍ତମାନ ଅବହେଳିତଙ୍କ ପ୍ରାଣର ଗୌଣ ମନୋଭାବ ଦୂରକରି ଆତ୍ମପ୍ରତ୍ୟୟ ଓ ଗୌରବବୋଧ ଜାଗ୍ରତ କରାଇବ । ଯୁବକମାନଙ୍କୁ ଜାତୀୟ ଭାଷା ମଧ୍ୟରେ ଜାତୀୟ ଶିକ୍ଷା ଦେବା ବିଷୟରେ ଏଭଳି ଐତିହାସିକ ଅନୁସନ୍ଧାନ ସାହାଯ୍ୟ କରିବ ।"

ମୃତ୍ୟୁଞ୍ଜୟ ଏ କ୍ଷେତ୍ରରେ ଅଗ୍ରଣୀ ହୋଇଥିବାରୁ ମଧୁବାବୁ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ଓ ଯୁବକମାନଙ୍କୁ ତାଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ନିବେଦନ କରିଥିଲେ । ସେ ନିଜେ ଓଡ଼ିଆରେ କେତୋଟି କବିତା ବ୍ୟତୀତ ବିଶେଷ କିଛି ଲେଖି ନ ଥିବାରୁ ଓ ଓଡ଼ିଶା ଇତିହାସ ସମ୍ବନ୍ଧରେ କିଛି ଗବେଷଣା କରି ନ ଥିବାରୁ ଦୁଃଖିତ ହୋଇଥିଲେ । ସେ ପୁଣି କହିଥିଲେ, "ନିଜ ଓକିଲାତି ଧନ୍ଦା ଓ ଜାତି ସଂଗଠନ କାର୍ଯ୍ୟରେ ବିଶେଷ ଭାବରେ ଲିପ୍ତ ଥିବାରୁ ଏ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ମୁଁ ଯଥେଷ୍ଟ ଅବକାଶ ପାଉ ନାହିଁ; କିନ୍ତୁ ଓଡ଼ିଆଭାଷାରେ ଯେଉଁସବୁ ଗ୍ରନ୍ଥ ପ୍ରକାଶିତ ହେଉଛି, ସେସବୁର ଖବର ରଖୁଛି ଓ କେତେକ ବହି ମଧ୍ୟ ପଢ଼ିଛି ।" ଓଡ଼ିଆ ସାହିତ୍ୟ ଓ ଭାଷାର ଉନ୍ନତି ପାଇଁ କବିବର ରାଧାନାଥ ରାୟ ଓ ମଧୁସୂଦନ ରାଓଙ୍କ ସହିତ ସହଯୋଗ କରି, ଉତ୍କଳ ସାହିତ୍ୟ ସମାଜ ପ୍ରତିଷ୍ଠା କରି ମଧୁବାବୁ ନିଜକୁ ଗୌରବାନ୍ୱିତ କରିଥିଲେ । ୧୯୦୩ ଡିସେମ୍ବର ମାସରେ ଅନୁଷ୍ଠିତ ପ୍ରଥମ ଉତ୍କଳ ସମ୍ମିଳନୀ ଅଧିବେଶନବେଳେ 'ଉତ୍କଳ ସାହିତ୍ୟ ସମାଜ' ସମ୍ମିଳନୀର ଏକ ଅଙ୍ଗରୂପେ ସ୍ଥାପିତ ହୋଇଥିଲା । ଉତ୍କଳ ସାହିତ୍ୟ ସମାଜର ପ୍ରତିଷ୍ଠା ଦିନରୁ ତାଙ୍କୁ 'ଆଜୀବନ ଅଭିଭାବକ ସଭ୍ୟ' ରୂପେ ଗ୍ରହଣ କରାଯାଇଥିଲା ।

---

# ପରିଶିଷ୍ଟ (୧)

[ମଧୁବାବୁ ଗୋପବନ୍ଧୁ ଦାସଙ୍କ ପାଖକୁ ଲେଖିଥିବା ଏକ ପତ୍ର । ମଧୁବାବୁଙ୍କ ସ୍ୱହସ୍ତଲିଖିତ ଏହି ଚିଠିର ବ୍ଲକ୍‌ଚିତ୍ର ପରପୃଷ୍ଠାରେ ଦେଖନ୍ତୁ । ]

My dear Gopabandhu,

I enclose some notes on the economic condition in Orissa. You are at liberty to use them in the best way they can be used. The great thing is to induce men to change the law of gravitation of their money.

I am anxious for your health. I have grown desperate and may pass away any day. You are the only person with whom I should like to pray in my death-bed. Take care of your health. Orissa is very unfortunate. If Asutosh (Sir Asutosh Mukherjee) had lived, he would have made a magnificent thing of this tannery. He was personally attached to me and I had lost more than a brother in him.

I commenced public life single-handed and it is natural, I made mistakes, but I hope you believe that nothing but country's interest was my ruling idea.

Yours ever the same
**M. S. Das**

I am enclosing a letter to the Samj over my signature and its enclosure is your letter. Please see that they are published.

# ପରିଶିଷ୍ଟ (୬)

[ ପାରଳାଖେମଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମଧୁବାବୁଙ୍କ ପାଖକୁ ଲେଖିଥିବା ଏକ ଚିଠି । ]

P. & O. S. N. Co.
S. S. Mooltan
2.5.33

My dear Mr. Das,

I just had a talk with your friend the Chief Justice of Bihar and Orissa. He has nothing but praise to you and all of us. I am lucky in having on board this steamer my sincere old friends and colleagues that had worked with me in the first Round Table Conference, Sir Henry Gidney, M. L. A. and N. M. Joshi, M. L. A. and the Dewan of Sangli and glad to say that they are very very sympathetic indeed. As I have got a memorandum on Parlakimidi printed, dealing with all aspects, I have circulated a copy to each one of them. I have to give one to the Chief Justice also, whom I find very sympathetic and a great friend of the Oriya. I hope you have been able to go up to Simla and see your friends. The voyage so far has been very pleasant and comfortable and unlike the other two P & O boats I have travelled by. The food and attention on this one is infinitely better, so much so that all of us feel that one live without our own food though we have our own cooks here and separate cooking accomodation is available. Until my permanent residence is fixed up, my address in London will be C/o. Thomas Cooke and Sons Limited on the Imperial Bank of India. Hope you are feeling fit. With best regards.

Yours sincerely,
**Sd. K. C. Gajapathi**

( ଇଂରେଜୀ ଚଠିର ମର୍ମାନୁବାଦ )

ପି. ଏଣ୍ଡ୍ ଓ. ଏସ୍. ଏନ୍. କୋ.
ଏସ୍. ଏସ୍. ମୁଲ୍ତାନ
ତା ୨ । ୫ । ୩୩

ପ୍ରିୟ ମିଃ ଦାସ,

ଆପଣଙ୍କ ବନ୍ଧୁ ବିହାର-ଓଡ଼ିଶାର ଚିଫ୍ ଜଷ୍ଟିସ୍‌ଙ୍କ ସଙ୍ଗରେ ବର୍ତ୍ତମାନ କଥାବାର୍ତ୍ତା କରିଥିଲି । ସେ ଆପଣଙ୍କୁ ଓ ଆମ ସମସ୍ତଙ୍କୁ ଖୁବ୍ ପ୍ରଶଂସା କରୁଛନ୍ତି । ଏହି ଷ୍ଟିମରରେ, ପ୍ରଥମ ଗୋଲଟେବୁଲ ବୈଠକରେ ଯୋଗ ଦେଇଥିବା ମୋର ପୁରୁଣା ବିଶ୍ୱସ୍ତ ବନ୍ଧୁ ଓ ସହଯୋଗୀମାନଙ୍କୁ ଦେଖି, ନିଜକୁ ଭାଗ୍ୟବାନ୍ ମନେକରୁଛି । ସାର୍ ହେନ୍‌ରି ଗିଡ୍‌ନି ଏମ୍. ଏଲ୍. ଏ., ଏନ୍. ଏମ୍. ଯୋଷି, ଏମ୍. ଏଲ୍ ଏ. ଓ ସାଙ୍ଗଲୀର ଦେବାନ ଅଛନ୍ତି । ସେମାନେ ଅତିଶୟ ସହାନୁଭୂତିଶୀଳ ଥିବା ମୁଁ ଆନନ୍ଦ ସହକାରେ ପ୍ରକାଶ କରୁଛି । ପାରଳାଖେମୁଣ୍ଡି ସମ୍ବନ୍ଧରେ ସବୁ ଦିଗରୁ ବିଚାର କରି ଏକ ସ୍ମାରକ ପତ୍ର ପ୍ରସ୍ତୁତ କରି ମୁଦ୍ରିତ କରାଇଥିବାରୁ ସମସ୍ତଙ୍କୁ ଖଣ୍ଡିଏ ଖଣ୍ଡିଏ ଦେଇଛି । ଚିଫ୍ ଜଷ୍ଟିସ୍‌ଙ୍କୁ ମଧ୍ୟ ଖଣ୍ଡିଏ ଦେଇଛି । ସେ ଏଥିପ୍ରତି ଅତିଶୟ ସହାନୁଭୂତିଶୀଳ ଏବଂ ସେ ଓଡ଼ିଆମାନଙ୍କର ଜଣେ ପରମ ବନ୍ଧୁ । ମୁଁ ଆଶା କରୁଛି, ଆପଣ ସିମିଲା ଯାଇ ଆପଣଙ୍କ ବନ୍ଧୁମାନଙ୍କ ସହିତ ଦେଖା କରିଥିବେ । ବର୍ତ୍ତମାନ ପର୍ଯ୍ୟନ୍ତ ଯାତ୍ରା ଅତି ଆନନ୍ଦଦାୟକ ଓ ସୁଖପ୍ରଦ ହୋଇଛି । ପୂର୍ବେ ମୁଁ ଏହି ପି. ଏଣ୍ଡ୍. ଓ. କମ୍ପାନୀର ଅନ୍ୟ ଦୁଇଟି ଜାହାଜରେ ଯାତ୍ରା କରିଛି । ବର୍ତ୍ତମାନର ଜାହାଜର ସୁଖସ୍ୱାଚ୍ଛନ୍ଦ୍ୟ ପୂର୍ବ ଜାହାଜମାନଙ୍କଠାରୁ ଅତିମାତ୍ରାରେ ଭଲ । ଏହି ସୁଖସ୍ୱାଚ୍ଛନ୍ଦ୍ୟ ଏତେ ବେଶି ଯେ, ଆମ୍ଭେମାନେ ନିଜେ ନିଜର ରନ୍ଧନର ବ୍ୟବସ୍ଥା କରି ନ ଥିଲେ ମଧ୍ୟ କିଛି ଅସୁବିଧା ହୋଇ ନ ଥାଆନ୍ତା । ମୋର ସ୍ଥାୟୀ ବସା ସ୍ଥିର ହେବା ପର୍ଯ୍ୟନ୍ତ C/o. Thomas Cooke & Sons Ltd., on the Imperial Bank of India ମୋର ଠିକଣା ହେବ । ଆଶାକରେ ଆପଣ ସୁସ୍ଥ ଥିବେ ।

ଆପଣଙ୍କର ସ୍ନେହର
କେ. ସି. ଗଜପତି

## ପରିଶିଷ୍ଟ (ଗ)

[ ପାରଳାଖେମଣ୍ଡିର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମଧୁବାବୁଙ୍କ ପାଖକୁ ଲେଖିଥିବା ଅନ୍ୟ ଏକ ଚିଠି । ]

Parlakimidi
Ganjam District
28-9-1933

My dear Mr. Das,

Many thanks for your note. As I have been rather busy since my return form the West, and now that I am without a Dewan as Mr. Rath has gone on leave, I could not write to you earlier. With all the worst formidable difficulties, I must say, Oriya work was carried to our entire satisfaction and from what we could gather while there and after my return to India, I have every reason to belive that, the boundaries of Orissa as was published in the White Paper recommendations will be enlarged and large portions of Jeypore of Vizag District as well as of Parlakimidi and other contiguous parts of this district will be joining in. On my way to Great Britain I had quite a lot to see of the Chief Justice of Bihar and Orissa and the Philips in London. I hope you will find it convenient to come here when you visit this district next month with the Committee.

With best regards.

Yours sincerely,
**Sd. K. C. Gajapathi.**

P. S.

I have not attempted to submit my views before your Committee as I am not interested in its work so long as I do not definitely know what the boundaries of Orissa is going to be.

**Sd. K. C. Gajapathi**

## ( ଇଂରେଜୀ ଚିଠିର ମର୍ମାନୁବାଦ )

ପାରଳାଖେମିଣ୍ଡି, ଗଞ୍ଜାମ ଜିଲ୍ଲା
ତା ୨୮ । ୧୦ । ୩୩

ପ୍ରିୟ ମି: ଦାସ,

ଆପଣଙ୍କ ଚିଠି ପାଇଁ ଅଶେଷ ଧନ୍ୟବାଦ । ପାଶ୍ଚାତ୍ୟ ଭ୍ରମଣରୁ ପ୍ରତ୍ୟାବର୍ତ୍ତନ କରିବା ପରେ ମୁଁ ଟିକିଏ କାର୍ଯ୍ୟବ୍ୟସ୍ତ ଥିଲି । ବର୍ତ୍ତମାନ ଆମ ଦେବାନ ମି: ରଥ ଛୁଟିରେ ଯାଇଥିବାରୁ ଦେବାନ ନ ଥାଇ କାର୍ଯ୍ୟ କରିବାକୁ ହେଉଛି । ଅତି ବିଷମ ଓ ଶକ୍ତିଶାଳୀ ପ୍ରତିବନ୍ଧକ ସତ୍ତ୍ୱେ ମୁଁ ଦୃଢ଼ଭାବରେ କହୁଛି ଯେ, ଆମର ଓଡ଼ିଆ କାର୍ଯ୍ୟ ସନ୍ତୋଷଜନକ ଭାବରେ ପରିଚାଳିତ ହୋଇଛି । ସେଠାରେ ଥିବା ସମୟରେ ଏବଂ ସେଠାରୁ ଭାରତକୁ ଫେରିଆସିବା ପରେ ମୁଁ ଯାହା ଅବଗତ ହୋଇଛି, ଏଥିରୁ ମୋର ବିଶ୍ବାସ କରିବା ପାଇଁ ଯଥେଷ୍ଟ କାରଣ ଅଛି ଯେ, ଶ୍ୱେତପତ୍ରରେ ସୁପାରିସ୍ ପ୍ରକାଶିତ ହୋଇଥିବା ଓଡ଼ିଶାର ସୀମା ବର୍ଦ୍ଧିତ ହେବ; ବିଶାଖାପାଟଣା ଜିଲାର ଜୟପୁର ଓ ପାରଳାଖେମିଣ୍ଡିର ବହୁ ଅଂଶ ଓ ତତ୍‌ସଂଲଗ୍ନ ବହୁ ଅଞ୍ଚଳ ଏଥିରେ ମିଶିବ । ବିଲାତକୁ ଯିବା ବାଟରେ ବିହାର-ଓଡ଼ିଶାର ଚିଫ୍ ଜଷ୍ଟିସ୍‌ଙ୍କୁ ଓ ଲଣ୍ଡନରେ ଫିଲିପ୍ ଦମ୍ପତିଙ୍କୁ ଦେଖିବାପାଇଁ ସୁଯୋଗ ପାଇଥିଲି । ଆଶାକରେ ଆସନ୍ତା ମାସରେ କମିଟି ସଙ୍ଗରେ ଆପଣ ଏଠାକୁ ଆସିବା ପାଇଁ ଯତ୍ନ କରିବେ ।

ଆପଣଙ୍କର ସ୍ନେହର
କେ. ସି. ଗଜପତି

ପୁନଶ୍ଚ :

ମୁଁ ମୋର ମତ ଆପଣଙ୍କ କମିଟି ସମ୍ମୁଖରେ ଉପସ୍ଥାପିତ କରିବାକୁ ଚେଷ୍ଟା କରିନାହିଁ । ଓଡ଼ିଶାର ସୀମା କଣ ହେବ, ସେ ବିଷୟରେ ନିଶ୍ଚିତ ରୂପେ ନଜାଣିବା ଯାଏ ମୁଁ ଏହାର କାର୍ଯ୍ୟରେ ଆଗ୍ରହୀ ନୁହେଁ ।